# ପ୍ରହରାଜ ଗ୍ରନ୍ଥାବଳୀ

## ରମ୍ୟରଚନା ୨ୟ ଖଣ୍ଡ



ଗୋପାଳ ଚନ୍ଦ୍ର ପ୍ରହରାଜ

ବିଦ୍ୟାପୁରୀ

ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ରଚନାର ଏହି ବିପୁଳତା, ଯେକୌଣସି ପାଠକ ପାଇଁ ଏକ ଆଶ୍ଚର୍ଯ୍ୟ । ମାତ୍ର ତାଙ୍କ ଜୀବିତାବସ୍ଥାରେ 'ବାଇ ମାହାନ୍ତି ପାଞ୍ଜି', 'ଭାଗବତ ଟୁଙ୍ଗିରେ ସନ୍ଧ୍ୟା' ଓ ମୃତ୍ୟୁ ପରେ 'ଆମ ଘରର ହାଲଚାଲ' ବହି ଆକାରରେ ପ୍ରକାଶିତ ।

ଏହି ଗ୍ରନ୍ଥ ତାଙ୍କ ରମ୍ୟରଚନା-ଗୁଡ଼ିକର ସର ଘର - ଯାହା ସମକାଳରେ ପ୍ରକାଶିତ ଉତ୍କଳ ସାହିତ୍ୟ, ରସଚକ୍ର, ନବଭାରତ, ସତ୍ୟ ସମାଚାର ଓ ଭଞ୍ଜ ପ୍ରଦୀପ ଆଦି ପତ୍ରିକା ପୃଷ୍ଠାରୁ ସଂଗୃହୀତ ଓ ସମ୍ପାଦିତ ।

# ପ୍ରହରାଜ ଗ୍ରନ୍ଥାବଳୀ

## ରମ୍ୟରଚନା ୨ୟ ଖଣ୍ଡ

ଗୋପାଳ ଚନ୍ଦ୍ର ପ୍ରହରାଜ

ସଂପାଦନା
ଗୌରାଙ୍ଗ ଚରଣ ଦାଶ

ବିଦ୍ୟାପୁରୀ

PRAHARAJ GRANTHABALI
RAMYA RACHANA PART II
Edited by Dr. Gaurang Charan Dash
Published by Vidyapuri, Cuttack-753002
First Published June 2005

ISBN 81-7411-531-5

ପ୍ରଥମ ପ୍ରକାଶ
ଦେବସ୍ନାନ ପୂର୍ଣ୍ଣିମା
୨୨, ଜୁନ ୨୦୦୫

ପ୍ରକାଶକ
ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ଲିପିସଂଯୋଜନ
ବିଦ୍ୟାଶ୍ରୀ ଡିଟିପି ସେଣ୍ଟର
ଆଲାମଚାନ୍ଦବଜାର, କଟକ ୭୫୩୦୦୨

ମୁଦ୍ରଣ
ପଞ୍ଚସଖା ପ୍ରକାଶନ, କଟକ

ମୂଲ୍ୟ ଟ ୨୮୦.୦୦

## ସୂଚୀ

# ନନାଙ୍କ ବସ୍ତାନି

## ୧୯୧୫-୧୭

‘ନନାଙ୍କ ବସ୍ତାନି’ ଉତ୍କଳ ସାହିତ୍ୟ ପତ୍ରିକାର ୧୮ଶ ଭାଗ, ୯ମ ସଂଖ୍ୟା ୧୩୨୨ ସାଲ ପୌଷ ମାସରୁ ଆରମ୍ଭ ହୋଇ ୨୦ଶ ଭାଗ, ୬ଷ୍ଠ ସଂଖ୍ୟା ୧୩୨୪ ସାଲ ଆଶ୍ୱିନ ମାସ ମଧ୍ୟରେ ସତର ଗୋଟି ଅଧ୍ୟାୟରେ ଶେଷ ହୋଇଛି । ପ୍ରହରାଜ ଏହାର ପ୍ରକାଶନ କାଳରେ ଛଦ୍ମ ନାମ ବ୍ୟବହାର କରି ନାହାନ୍ତି ଏବଂ ଏହା ପୁସ୍ତକ ଆକାରରେ ପ୍ରକାଶିତ ହୋଇ ନାହିଁ ।

ନନାଙ୍କ ବସ୍ତାନିର ବିଶେଷତ୍ୱ - ପ୍ରହରାଜ ନିଜ ବାପାଙ୍କ ବସ୍ତାନିରେ ଲେଖାକାରରେ ସଂରକ୍ଷିତ ବିଚାରକୁ ନିଜସ୍ୱ ଶୈଳୀରେ ପ୍ରକାଶ କରିଛନ୍ତି । ଆପଣା ବାପା ଓ ବଂଶ ପରମ୍ପରା ପ୍ରସଙ୍ଗ କହୁ କହୁ, ନିଜ ଜୀବନ ସଂକ୍ରାନ୍ତରେ ବହୁ କଥା ଉଲ୍ଲେଖ କରିଛନ୍ତି । ‘ଶ୍ରୀକ୍ଷେତ୍ରର ହାଲଚାଲ’ ଶୀର୍ଷକରେ ପୁରୀ ସମ୍ବନ୍ଧରେ ବେଶ୍ କିଛି କହିବା ପାଇଁ ସେ ପୂର୍ବରୁ ମନସ୍ଥ କରିଥିଲେ - ତାହା ବସ୍ତାନିର ପନ୍ଦରତମ ଅଧ୍ୟାୟରେ ସୂଚିତ ହୋଇଛି । ଲେଖକଙ୍କ ଆତ୍ମଚରିତ ସହିତ ‘ନନାଙ୍କ ବସ୍ତାନି’ର ବର୍ଣ୍ଣନାଗତ ଓ ତଥ୍ୟଗତ ସାଦୃଶ୍ୟକୁ ଯେକୌଣସି ପାଠକ ସହଜରେ ଅନୁଭବ କରିପାରିବ ।

ସମ୍ପାଦକ

### ।। ଏକ ।।

ତା -ନା -ନା

ଦୁନିଆର୍ ହାଲଚାଲ ପ୍ରସ୍ତାବରେ ‘ନନାଙ୍କ ବସ୍ତାନି’ର ଅବତରଣିକା କରି ପାଠକମାନଙ୍କଠାରୁ ଲେଖକ ବିଦାବିଦି ହୋଇଥିଲା । ସାହିତ୍ୟିକ ସ୍ୱୀକାର୍ଯ୍ୟ ଅନୁସାରେ ଯେଉଁ ପାଠକମାନେ ଲେଖକର ଲେଖାର ଏକ ଅଂଶ ପଢ଼ିବାକୁ ସୁବିଧା ପାଆନ୍ତି, ସେମାନେ ଲେଖକର ଇହକାଳ, ପୂର୍ବକାଳ, ପରକାଳ- ସବୁ କାଳର ଲେଖା ପାଠ କରିବାକୁ ଆଇନ ଅନୁସାରେ ବାଧ୍ୟ । ଅତଏବ ଧରିନେବାକୁ ହେବ ଯେ, ‘ଦୁନିଆର ହାଲଚାଲ’ ଏଣିକି ବନ୍ଦ ହେବାର କାରଣ ଓ ‘ନନାଙ୍କ ବସ୍ତାନି’ ଆରମ୍ଭ ହେବାର କାରଣ

ପାଠକମାନେ ପୂର୍ବରୁ ଜାଣିଅଛନ୍ତି । ଅତଏବ ଅଳମତି ବିସ୍ତରେଣ । କିନ୍ତୁ ସବୁ କ୍ଷେତ୍ରରେ ନିପାତନ ଅଛି । ମା ସରସ୍ୱତୀଙ୍କ ଇଲାକାର ଅପରାଧ କଣ ଯେ ସେଥିରେ ନିପାତନ ନିଦାରଦ ! ମନେକରନ୍ତୁ, କେହି କେହି ଅଭାଗା ପାଠକ ଶେଷ ସଂଖ୍ୟା 'ଦୁନିଆର ହାଲଚାଲ' ପଢ଼ି ନାହାନ୍ତି । ତାଙ୍କ ପାଇଁ ତ ଟିକିଏ କାନନାକ ମୋଡ଼ା କରି ଖଣ୍ଡେ ଦୁଇ ଖଣ୍ଡ 'ଘତ' ଆରମ୍ଭ କରିବାର ଦରକାର । ତତ୍‌ପରେ ଓଡ଼ିଶାରେ ଲେଖକ ହେବାକୁ ଗଲେ କେତେଗୁଡ଼ିଏ ଅସାଧ ସାଧନା, ଅକଳ୍ପ୍ୟ କଳ୍ପନା, ଅଭାବ୍ୟ ଭାବନା, ଅରଚ୍ୟ ରଚନା, ଅକଥ୍ୟ କଥନା କରିବାକୁ ହୁଏ । ପାଠକ ଅବଧାନମାନେ ଆଖି ବୁଜି ଲକ୍ଷଣ ବେହେରାର ବଣିଆତି ଦୋକାନର ପୋଟଳା-ବନ୍ଧା ଓ ସେର ବରିଆ ରଦି କାଗଜ ବିକ୍ରି ଛଡ଼ା ଅନ୍ୟ କାର୍ଯ୍ୟରେ ଲାଗିବ, ଅର୍ଥାତ୍ ଲେଖକର ଲେଖା ଉତ୍କଳ ସରସ୍ୱତୀଙ୍କ କୋଠଭଣ୍ଡାରରେ ଉଜ୍ଜ୍ୱଳ ରତ୍ନସ୍ୱରୂପ ଯୁଗେ ଯୁଗେ ଦାଉ ଦାଉ ହୋଇ ଜଳିବ । ପାଠକ ଅସାଧ ସାଧନା ବଳରେ ସିଦ୍ଧ କରି ନିଅନ୍ତୁ ଯେ, ଉତ୍କଳରେ ସାହିତ୍ୟସେବା କରିବାର ବ୍ରତ ବାର ପଣ ଲୋକଙ୍କର । ଫେର କଳ୍ପନା କରିନିଅନ୍ତୁ ଯେ ଉତ୍କଳ ସାହିତ୍ୟ ପାଠ କରିବା ନିମନ୍ତେ ସେଥିରୁ ବାର ପଣ ପାଠୁଆ ଉଦଗ୍ରୀବ ହୋଇ ରହିଥାନ୍ତି ଆହୁରି ପାହାଚେ ଉଠି ଆଖି ବୁଜି ଭାବନା କରି ନିଅନ୍ତୁ ଯେ, ଏ ଲେଖକର ଲେଖା ପଢ଼ିବା ସକାଶେ ସେଥିରୁ ବାରପଣିଆ ପାଠକ ଉତ୍‌କ୍ଷ୍ଣ ହୋଇ ବସିଥାନ୍ତି । ଆହୁରି ପାହାଚେ ଉଠି କଳ୍ପନା କରନ୍ତୁ ଯେ, ସେଥିରୁ ବାରପଣ ପାଠକ ସେ ଲେଖାରେ ମୁଗ୍ଧ ଓ ଗଦ୍‌ଗଦ । ଫେର ଖୋଞ୍ଚେ ପକାଇ ରଚନ୍ତୁ ଯେ, ସେଥିରୁ ବାରପଣିଆଙ୍କର ଇଚ୍ଛା ଯେ 'ଉତ୍କଳ-ସାହିତ୍ୟ'ର ପରମାୟୁ ଅପେକ୍ଷା ଏ ଲେଖକର ଲେଖନୀନିଃସୃତ ରତ୍ନଗୁଡ଼ିକର ପରମାୟୁ ଢେର ବେଶି ହେବ, ଅର୍ଥାତ୍ ଲେଖାଯାକ ପୁସ୍ତକାକାରରେ ପ୍ରକାଶିତ ହୋଇ ଲେଖକ 'ମରି ଅମରତା ଲଭୁ ମହୀରେ' । ଫେର ପାହୁଣ୍ଡେ ଆଗକୁ ଡେଇଁପଡ଼ି କହନ୍ତୁ ଯେ, ଲେଖକଙ୍କ ଲେଖାଗୁଡ଼ିକ ପୁସ୍ତକାକାରରେ ପ୍ରକଟିତ ହୋଇ ଉତ୍କଳର ଭାବୀ ବଂଶଧର ସାହିତ୍ୟ-ଚରମାନଙ୍କୁ ଯୁଗେ ଯୁଗେ ପୂତ କରିବ ।

ହେ ପାଠକ ଅବଧାନମାନେ, ଏତେକ ଯେବେ ଆଣି ଠିକଣାରେ ପହଞ୍ଚାଇ ପାରିବେ, ତେବେ ଆସନ୍ତୁ, ଟିକିଏ ଚକ୍ଷୁ ଉନ୍ମୀଳନ କରନ୍ତୁ, ଏଥରକ ଟିକିଏ ଆପଣଙ୍କର ଆମର ସଫାସଫି ପଚରାପଚରି ହେବା । ବହି ଛପା ହେଲେ ତ ସେଥିପାଇଁ 'ଗରାଖ' ଓ ବିଶେଷତଃ ପଇସାକାଢ଼ୁଆ ଚହଟ ଚିକଣିଆ ଖରିଦଦାର ଦରକାର । ଏ ବିଷୟ ନିଷ୍ପତ୍ତି ହେବା ପୂର୍ବରୁ ଟିକିଏ ଆପଣ ଆମେ ସଙ୍ଗ ହୋଇ ଉତ୍କଳୀୟ ପୁସ୍ତକ ଦୋକାନମାନଙ୍କର, ଓଡ଼ିଆ ପୁସ୍ତକ ଛାପିବା ଛାପାଖାନାମାନଙ୍କର ଆୟବ୍ୟୟ ହିସାବ ବିଶ୍ୱସ୍ତ ଭାବରେ ଦେଖି ଆସିବା ଦରକାର । ତାହା ହେଲେ ଦେଖି ପାଇବା ଯେ, ଉତ୍କଳରେ ଗ୍ରନ୍ଥକାରମାନେ କେତେଦିନ ପେଟରେ ଓଦାକନା ପକାଇ ଶୋଇ ରହନ୍ତି । ତାହାହେଲେ ବୁଝିପାରିବା ଯେ, ଓଡ଼ିଆ-ସାହିତ୍ୟ ବହି (ଅର୍ଥାତ୍ ମାକ୍‌ମିଲାନ କୋମ୍ପାନୀଙ୍କ ପ୍ରକାଶିତ ଓ ଶିକ୍ଷା

ବିଭାଗ ଦ୍ୱାରା ଅନୁମୋଦିତ ସାହିତ୍ୟ-ପାଠଯାକ ଛାଡ଼ି) ନେବାପାଇଁ ଓଡ଼ିଶାରେ ଦିଆ ପାଠୁଆ କେତେ । ଦିଆ ପାଠୁଆଙ୍କ କଥା ଦୂରେ ଥାଉ, ଲେଖକ ହାତରୁ ଡାକ ଖରଚା ଦେଇ ଓଡ଼ିଶାର ପଦସ୍ଥ ଓ ମାର୍କାମରା ପାଠକଙ୍କ ପାଖକୁ ବହି ପଠାଇଲେ ପନ୍ଦର ପଣ ଊଣେଇଶ ଗଣ୍ଡା ପାଠକଙ୍କୁ ପଇସିକିଆ ପୋଷ୍ଟକାର୍ଡ଼ ଖଣ୍ଡେ ପ୍ରାପ୍ତି ସ୍ୱୀକାର ପାଇଁ ମିଳେ ନାହିଁ । ଏପରି ସ୍ଥଳରେ ଯେ ଭକ୍ତ ଯୋଗାଡ଼ କରି ବେଆରିଙ୍ଗ ପୋଷ୍ଟରେ ବହି ଛାପି ନେବାର ସୂତ୍ର ନ ଜାଣନ୍ତି (ଏପରି ଭାଗ୍ୟବାନ୍ ଭକ୍ତ ଓଡ଼ିଶାରେ କେତୋଟି କଣିକା ତାହା ଅଜ୍ଞ ବହୁତ ସମସ୍ତଙ୍କୁ ଜଣା), ତାଙ୍କ ପ୍ରତି ଅଣ୍ଟାରୁ ପଇସା କାଢ଼ି ଛାପାଖାନାବାଲାଙ୍କୁ ପୋଷିବା ବିଧି ବିଡ଼ମ୍ବନା ମାତ୍ର । ଏପରି ସ୍ଥଳରେ ଖଣ୍ଡିଏ ବହି ଛାପିଲାବେଳକୁ ସେ ଖଣ୍ଡକର କିପରି ଛାପା ଖରଚା ଉଠିବା ଭଳି କାଟତି ହେବ, ତାହା ଭାବି ଭାବି ଗ୍ରନ୍ଥକାର ବିଚାରାର ଦିନ ସରେ ନାହିଁ । ଏପରି ସ୍ଥଳରେ ଯେବେ ଖଣ୍ଡେ ବହିର ପାଠ (allusion) ବୁଝିବା ଲାଗି ଆଉ ଖଣ୍ଡେ ବହିର ଆଶ୍ରୟ ନିଆଯାଏ କିମ୍ବା ଲେଖକର ପୂର୍ବ ଲେଖା ଅନୁସନ୍ଧାନ କରିବାକୁ ହୁଏ, ତାହାହେଲେ ଲେଖକଙ୍କର ଇହକାଳ ଖଲାସ । ଅତଏବ ଏଥିପାଇଁ କହୁଅଛି, ଅବଧାନ ! ଯେଉଁ ପୋଥିର ପାଠ ବୁଝିବା ଆବଶ୍ୟକ, ସେହି ପୋଥିର ପାଠ ସେହି ପୋଥିରେ ରଖିଲେ ଲେଖକର ଭଲା ଗୋଟାଏ କିନାରା ହେବାର କ୍ଷୀଣ ଆଶା ଥାଏ । ଏଥିପାଇଁ ଭବିଷ୍ୟଦ୍ ଉପରେ ସୁରାକ୍ ରଖି ଏଠାରେ ଲେଖକ ଉପସ୍ଥିତ 'ନନାଙ୍କ ବସ୍ତାନି'ର ଅବତରଣିକା ଗ୍ରନ୍ଥ ଆଦ୍ୟରେ ଟିକିଏ ସୂଚେଇ ଦେବାର ଦରକାର । ଏସବୁ ଦୃଷ୍ଟିରେ ପୁନରୁଲ୍ଲେଖ ବା ଚର୍ବିତଚର୍ବଣର ଆଶଙ୍କା ଥିଲେ ମଧ ପାଠକମାନଙ୍କର ବହୁମୂଲ୍ୟ ସମୟ ନଷ୍ଟ କରିବା ନିମନ୍ତେ ଲେଖକ ପ୍ରୟାସୀ ହୋଇଅଛି । ଅପରାଧ କ୍ଷମା କରିବା ହେବେ ।

ଅତଏବ ଅୟମାରମ୍ଭଃ-

'ଦୁନିଆର ହାଲଚାଲ' ଦ୍ୱାରା ମୋର ଐହିକ ଓ କୋଇଲି ବୈକୁଣ୍ଠସ୍ଥ ଶତ୍ରୁ ସଂଖ୍ୟା ବଢ଼ିଅଛି ବୋଲି ମୋ ପିତୃଦେବଙ୍କର ଧାରଣା ହୋଇଥିଲା ଓ ତଜ୍ଜନିତମତେ ବିଦ୍ୟା ନଗରୀରେ କେତେଗୁଡ଼ିଏ ବିପଦ ଘଟିଥିବାର ସେ ନିର୍ଦ୍ଦେଶ କରିଥିଲେ । ସେଥିପାଇଁ 'ଦୁନିଆର ହାଲଚାଲ' ବନ୍ଦ କରିବା ନିମନ୍ତେ ତାଙ୍କର ଅନ୍ତିମ ଉପଦେଶ ଥିଲା । ମୋର କେତେକ କୃତ୍ରିମ ବନ୍ଧୁଙ୍କ ଆଚରଣରୁ ମୋର ମଧ ସେହି ଦିଗକୁ ଚକ୍ଷୁ ଫିଟିଲା । ଅତଏବ ସ୍ଥିର କଲି ଯେ, ଏ ଅନର୍ଥ ବୁଢ଼ୁଲାଟାକୁ ପୋଡ଼ି ପୋତି ପକାଇବାକୁ ହେବ, ତାହା ହେଲେ ବିପଦ ଓ ଗ୍ରହଗୁଡ଼ାକ ଶାନ୍ତ ହୋଇଯିବେ । ଏ ହେଲା ଦୁନିଆର ହାଲଚାଲର ଅନ୍ତ୍ୟେଷ୍ଟିର ସନ୍ତୋଷଜନକ କୈଫିୟଦ୍ । ତା ପରେ 'ନନାଙ୍କ ବସ୍ତାନି'ର ଅଳୁଡ଼ି ଜଳିବା ଆରମ୍ଭ । ପାଠ ଡାକୁଛି- 'ପଠତୋ ନାସ୍ତି ମୂର୍ଖତ୍ୱ, ଜପତୋ ନାସ୍ତି ଦୁର୍ଗତିଃ ।' ଆପୁଖୋରଙ୍କ ଭଳିଆ ସାହିତ୍ୟଖୋରଙ୍କର ମଧ ଗୋଟାଏ କିଛି ହେଲେ ଅବଲମ୍ବନ ଦରକାର, ତାହା ନ ହେଲେ ନିଦ ହୁଏ ନାହିଁ । ଅତଏବ ଲେଖକର ଲେଖାଟା ହେଲା ନିଦଗୁଳା । ସେଥିପାଇଁ

ନେପୋଲିଅନଙ୍କର ନୀତି ଥିଲା- ବରଂ ଉଚ୍ଛୃଙ୍ଖଳତା ଭଲ, ତଥାପି ସ୍ଥିରତା ଭଳି ନୁହେଁ । ନୀତିଟା କେତେଦୂର ଆଇନସଙ୍ଗତ, ଏଠାରେ ତାହା ବିଚାର୍ଯ୍ୟ ନୁହେଁ । ତାହା ହୋଇଥିଲେ ଆପ୍ପୁଖୋର ଉପମାଟା ଏଠାରେ ସ୍ଥାନ ପାଇ ନ ଥାନ୍ତା । କଥା ଏହି କି, ବେଳେ ବେଳେ ଗୁଡ଼ାଏ ରମ୍ଭାରମ୍ଭି କରି ମନବୋଧ କରିବାକୁ ମୋ ଭଳିଆ ଗୋଟାକେତେ ନିଷ୍କର୍ମାଙ୍କର ମନ, ମୂନ ଓ ଚଇତନ ହାଇଁପାଇଁ ହୁଏ । ଲେଖନଟାକୁ ତ ଫେର ବୋଧ କରିବା ଦରକାର । ଏଥିପାଇଁ 'ଦୁନିଆର ହାଲଚାଲ' ବନ୍ଦ ହେଲେ କେଉଁ ଅବଲମ୍ବନ ଧରିବି, ଏହି କଥା ଭାବୁଥିଲି ଏହି ସମୟରେ ବାପା ଛୁ ! ତାଙ୍କର ସେ ମୂର୍ତ୍ତି, ତାଙ୍କର ସୁଗୁଣ, ତାଙ୍କର ମୁରବିପଣିଆ, ତାଙ୍କର ବାତ୍ସଲ୍ୟ ଏ ସବୁ ତାଙ୍କ ସଙ୍ଗେ ଚାଲି ଯାଇଅଛି, ବାକି ରହିଗଲା ତାଙ୍କ ବସ୍ତାନି ଖଣ୍ଡିକ । ସେ ବସ୍ତାନିଟା ପଡ଼ିଲା ମୋ ଜ୍ୟେଷ୍ଠାଂଶ କିସମତରେ । ସେ ବସ୍ତାନିଟି ଫିଟେଇ ଦେଖିଲି, ସେଥିରେ ହରେକ ରକମର ଚିଜ ଓ ଡାବ ଅଛି । ରୋଗର ଔଷଧ, ଟୁଣୁକାଟୁଣୁକି, ଖନା ବଚନ, ଋଷି ବଚନ, ବେଦର ସୂତ୍ର, ମନ୍ତ୍ରଯନ୍ତ୍ର, ମୂଳିମୂଳିକା, ଟିପାଟିପି, ଜମାଖରଚ ଟିପା, ଗୁଣିଟୁଣି, ଡିଗ୍ରିଜାରି ଫଏସଲା, ହାଇକୋର୍ଟ ରାୟ, ପ୍ରାୟଶ୍ଚିତ୍ତ ପଦ୍ଧତି, ସାମାଜିକ ଓ ରାଜନୀତିକ ଟିପ୍ପଣୀ, ପୁତ୍ରପୌତ୍ରାଦିଙ୍କ କୋଷ୍ଠୀ, କେତେ ପରିଚିତ ଓ ଅପରିଚିତ ବ୍ୟକ୍ତିଙ୍କର ଠିକଣା (address) ଆଦି ଅନେକ କିସମର ଜିନିଷ ନନାଙ୍କ ବସ୍ତାନିରେ ଦେଖିଲି । ସେଗୁଡ଼ିକ ଉଆରିଜା କରି ଶ୍ରେଣୀବଦ୍ଧ କରିବାକୁ ସମୟ ଓ ବୁଦ୍ଧି ଦରକାର । ଅତଏବ ଏ ଯାତ୍ରାରୁ ରକ୍ଷା ପାଇବା ସକାଶେ ଗୋଟାଏ ଫନ୍ଦା ପାଞ୍ଚିଲି । ଅନାଧୁନିଆ କରି ସେ ଆଳିମାଳିକା ବସ୍ତାନିରୁ ଯାହା ହାବୁଡ଼ରେ ପଡ଼ିଲା, ତାକୁ ବିଡ଼ା ବିଡ଼ା କରି ଆଖି ବୁଜି ବାନ୍ଧି ପକାଇଲି । ଅତଏବ ଏ ବିଡ଼ାରେ ଆପଣମାନେ ଶ୍ରେଣୀ ବିଭାଗ, ବିଷୟ ବିଭାଗ, ଜାତି ବିଭାଗ, କର୍ମ ବିଭାଗ, କିଛି ପାଇବେ ନାହିଁ, ପାଇବେ କେବଳ କେତେଗୁଡ଼ିଏ ଟିପିଥିବା କଥା । ତହିଁରେ ଅବଶ୍ୟ ଦେଶହିତୈଷିତା ନାହିଁ । ପାଶ୍ଚାତ୍ୟ ସଭ୍ୟତାର ଖେଳା, ସ୍ୱାର୍ଥତ୍ୟାଗର ଢେଉ, ଜାତୀୟ ଉନ୍ନତିର ତାଳମାନ, ଦେଶସେବାର ଚହଟଚମ୍ପା, ସମ୍ବାଦପତ୍ରର ଚଢ଼ାଉ, ସାହିତ୍ୟ ସେବାର ଚମକ, ସମାଜ ସଂସ୍କାରର ତୋଡ଼ତାଡ଼, ବକ୍ତୃତାର ଭଙ୍ଗୀ, ଏ ସବୁ ନଦାରଦ । ଯାହା ପିତୃଦେବଙ୍କ ହାବୁଡ଼ରେ ପଡ଼ିଅଛି, ସେଗୁଡ଼ିକ ସେ ଟିପିଟାପି ରଖିଥିଲେ । ଉଦ୍ଦେଶ୍ୟ କଣ ଥିଲା ତାହା ତାଙ୍କୁ ଜଣା ଓ ଭଗବାନ୍‌ଙ୍କୁ ଅବଶ୍ୟ ଜଣା । କିନ୍ତୁ ଅନେକ ଟିପାର ଅର୍ଥ ମୁଁ ନିଜେ ଠଉରାଇ ପାରିଲି ନାହିଁ । ସେଗୁଡ଼ିକ ଯେ ନିତାନ୍ତ ନିର୍ମୂଲ୍ୟ, ତାହା କହିବାର ତାକତ ମୋର ନାହିଁ । ସେଥିରୁ ଗୁଡ଼ିଏ ଆଣି ଉଦ୍ଧାର କରି ଆପଣମାନଙ୍କ ଆଗରେ ଥୋଇଦିଏ । ସାଇତିବାର ହେଲେ ରଖିବା, ନଚେତ୍ ସେଗୁଡ଼ିକ ମଧ୍ୟ ପିତୃଦେବଙ୍କ ଭୌତିକ ଦେହର ଅବସ୍ଥା ଭୋଗ କରିବ- ଅତଏବ ଚାଲିବା ହେଉନ୍ତୁ, ହେ ଅବଧାନ !

ପ୍ରଥମ ବିଡ଼ା- ଗୋଟିଏ ପୃଷ୍ଠା ।

ସମସ୍ତଙ୍କ ୫୮ ଅଙ୍କ ସନ ୧୫୬୨ ସାଲ- ପିଲାମାନେ କଟକଠାରେ ଗୋଟାଏ ଭାରି ବଡ଼ ସଭା କରିବାରେ ଲାଗିଛନ୍ତି, ସେଥିପାଇଁ ଆମକୁ ମଧ୍ୟ ତଲବ ଆସିଛି । ବାବୁ

ଗୋପାଳ ଲେଖିଅଛି ଯେ, ସେମାନେ ସମସ୍ତେ 'ଦେଶସେବା'ରେ ଲାଗିଛନ୍ତି ଓ 'ଜାତୀୟ ଉନ୍ନତି' ନିମନ୍ତେ ଅଣ୍ଟା ଭିଡ଼ିଛନ୍ତି । 'ଜାତୀୟ ଉନ୍ନତି' କଥାଟା ସମଝ ହେଲା । ଇସ୍କୁଲ ପାଠୁଆଯାକ ଆଗେ ଖିରସ୍ତାନି ପାଠ ପଢ଼ି ଜାତି ଭେଦ ମାନୁ ନ ଥିଲେ, ଚାରି ଜାତି ଛତିଶ ପାଟକ ମଧ୍ୟରେ ବାରଣ କରୁ ନ ଥିଲେ, ଏଥିପାଇଁ ସବୁବେଳେ ଇଂରାଜୀ ପାଠୁଆ ପିଲାଙ୍କ ଉପରେ ଆମେ ମରହଟ୍ଟିଆଯାକ ଭାରି ବିରକ୍ତ ହେଉଥିଲୁଁ । ବର୍ତ୍ତମାନ ବଡ଼ ଆନନ୍ଦର କଥା ଯେ, ପିଲାମାନେ ଆପଣା ମନକୁ ବାହାରି କିପରି 'ଜାତି' ରହିବ, ଏଥିପାଇଁ ସଭା କରୁଛନ୍ତି । ହଉ ହେଲା, ଭଲ କଥା, ମନ୍ଦ ଖୋଜୁଥିଲା ଯାହା, ବଇଦ ବତେଇଲା ତାହା । ଆମେ ଖୋଜୁଥିଲୁଁ- ସବୁ ଯାଉ, ଜାତି ଥାଉ । ସେତକ ଗଲେ ନ ମିଳେ ଆଉ । ଏ କଥା ବାରମ୍ବାର କହି କିଛି ଫଳ ହେଉ ନ ଥିଲା । ବର୍ତ୍ତମାନ ଈଶ୍ୱରଙ୍କ ଅନୁଗ୍ରହରୁ ପିଲାମାନଙ୍କ ମନରେ ସୁବୁଦ୍ଧି ପହଞ୍ଚିଲାଣି । ସେମାନେ ଆପଣା ମନକୁ 'ଜାତି' ସମ୍ଭାଳିବାକୁ ବସିଲେଣି । ହେଉ -ଅତି ସୁଖର କଥା ବାବା ! ଆମେ ଆଶୀର୍ବାଦ କରୁଛୁଁ, ଅଂରେଜୀ ପଢ଼ି ତୁମ୍ଭମାନଙ୍କର ସବୁ ଯାଉ, ଜାତି ଥାଉ, ଜାତୀୟ ଉନ୍ନତି ହେଉ ।

(ନୋଟ୍ - ପାଠକ ସାଆନ୍ତ ! କବି କଣ ମିଛରେ ଡାକି ହାକି କହିଅଛନ୍ତି, "We think our fathers fools the older we grow" ଆମ ଡିକ୍ସନାରିରେ 'ଜାତି'ର ଅର୍ଥ କଣ, ବାପାଙ୍କ ଅଭିଧାନରେ 'ଜାତି'ର ଅର୍ଥ କଣ ? ଆମେ ବସିଛୁଁ କେଉଁ 'ଜାତି'ର ଉନ୍ନତି ପାଇଁ, ବାପା ଦଉଡ଼ିଛନ୍ତି କେଉଁ 'ଜାତି'କୁ ସମ୍ଭାଳିବା ପାଇଁ ? ଯେ ହେଉ, 'ଜାତି' ନାମଟା ଥିଲା ବୋଲି ଉପରେ ଉପରେ ବାପାଙ୍କଠାରୁ ଆମ 'ଜାତୀୟ ଉନ୍ନତି' ଆନ୍ଦୋଳନ ନିମନ୍ତେ ଗୋଟାଏ ଲମ୍ବା ଚଉଡ଼ା ଆଶୀର୍ବାଦ ମାରି ନେଲେଇଁ ।)

'ଜାତୀୟ ଉନ୍ନତି' କଥାଟା ଭଲ ବୁଝାଗଲା । କିନ୍ତୁ 'ଦେଶସେବା' ଲବଜଟା କଣ ? 'ସେବା'ର ଦୁଇଟା ଅର୍ଥ ଆମେ ବାପଅଜାଙ୍କ ଅମଳରୁ ଶୁଣିଆସୁଛୁ । ଏକ ସେବା ମହାପ୍ରସାଦ ସେବା ଅର୍ଥରେ । ସେ ଅର୍ଥଟା ତ 'ଦେଶସେବା'ରେ ଲାଗିବ ନାହିଁ । ଦେଶଟାକୁ ଟୋକାଏ ଏ ଅର୍ଥରେ ସେବା କରିବା ଅସମ୍ଭବ । ତାହା ହେଲେ ପିଲାଯାକ ଦେଶଟାକୁ ତ ସେବା କରି ଦେବେ, ଆଉ ରହିବ କଣ ଯେ, ଏମାନେ ଦେଶରେ ନିର୍ଭାଗତ ହେବେ ? ଏଥିରୁ ଆମେ ଅନୁମାନ କରିଛୁଁ ଯେ ଦେଶଟାକୁ ମହାପ୍ରସାଦ ଭଳିଆ ପାଇ ଦେବା ଆମ ପିଲାମାନଙ୍କର ଅର୍ଥ ନୁହେଁ । ଅନ୍ୟ କିସମର ସେବା 'ସାଧୁସେବା' ଅର୍ଥରେ ଲାଗେ । ସାଧୁ ହେଲେ, ଗୁରୁ ହେଲେ, ଏମାନଙ୍କର ହାତ ଅଛି, ଗୋଡ଼ ଅଛି, ପେଟ ଅଛି, ଦରାଣ୍ଡିଲେ ହାତକୁ ଲାଗିବ । ସେମାନଙ୍କର ସେବା କରାଯାଉଛି । ଦେଶଟାକୁ ପିଲାଏ କିପରି ସେବା କରିବେ ? ଦେଶର ଅର୍ଥ ଯେବେ ଦେଶର ମନୁଷ୍ୟଙ୍କ ପ୍ରତି ଖଟିବ, ତେବେ ଆମ ଦେଶରେ କୋଟିଏ ମନୁଷ୍ୟ ଅଛନ୍ତି, ଗୋଟାକେତେ ଟୋକା କୋଟିଏ ଲୋକଙ୍କର ସେବା କରିବେ କିପରି ? ଅବଶ୍ୟ ପିଲାମାନେ ସେବା କରିବାର ଗୋଟାଏ କିଛି ସୂତ୍ର ଉଣ୍ଡି ରଖିଛନ୍ତି, ତାହା ନ ହେଲେ ଗୋଟାଏ ଜାଗାରେ ସଲା କରି

ଘଡ଼ିଏ ପହରେ ମଧରେ ପିଲାଏ ଦେଶଟାଯାକର ସେବା କରି ଦେବେ, ଏ କଥାଟା ଭାରି ଆଚମ୍ବିତ ଲାଗୁଛି । ଜଣେ ଜଣେ ସାଧୁଙ୍କୁ ସେବା କରିବାକୁ ଆମକୁ ପହରେ ଦୁଇ ପହର ବିତିଯାଏ । ଆଜିକାଲିର ଟୋକାଏ ପହରକ ମଧରେ କୋଟିଏ ଲୋକଙ୍କର ସେବା ଫଏର କରିଦେବେ । ବାହାରେ ଅଂରେଜୀ ପାଠ ! ଏହି ପାଠ ବଳରେ ସରକାର ବାହାଦୁର ଦୁନିଆଟାକୁ ଆୟତ୍ତ କରି ନିକିତିରେ ରଖିଛନ୍ତି । ସେହି ପାଠ ବଳରେ ପିଲାଏ ଆଖିମିଟିକା ମାରିଲା ବେଳକୁ ଦେଶଟାଯାକ ସେବା ସରିଲାଣି ! ହେଉ, ଭଲ କଥା । ଏ ସେବା ଭାର ପିଲାଙ୍କ ଉପରେ ନିର୍ଭା ହୋଇ ଗଲେ ଆମେ ମରହଟିଆଯାକ ଜମାଉତ, ବୈରାଗୀ ଓ ବଦ୍‌ରାଗୀମାନଙ୍କ ଦାଉ ଓ ଜୁଲମରୁ ରକ୍ଷା ପାଇବୁ । ଈଶ୍ୱର ଆମ ପିଲାମାନଙ୍କୁ ଚିରଞ୍ଜୀବୀ କରି 'ଦେଶସେବା'ଓ 'ଜାତୀୟ ଉନ୍ନତି' କାମରେ ଲାଗିବାକୁ ବଳ ଦିଅନ୍ତୁ । ଜାତି ରହୁ, ସନ୍ଥ, ଭକ୍ତ, ବୈଷ୍ଣବ ଓ କାଙ୍ଗାଳଙ୍କର ସେବା ହେଉ । ଅତଏବ ହେ ଦେଶ ! ହେ ସନ୍ଥ, ମହନ୍ତ, ଦୀନ,ଦୁଃଖୀ, ରଙ୍କ, ଖଞ୍ଜ, ଅଖଞ୍ଜ ସମସ୍ତ 'ଜାତି'ର ଦେଶବାସୀ ଅବଧାନମାନେ ! ଥୟ ଧର, ଦମ୍ଭ ପଗଡ଼, ଆମ ପିଲାମାନେ 'ଜାତୀୟ ଉନ୍ନତି' ଓ 'ଦେଶସେବା' ପାଇଁ ଅଣ୍ଟା କଷି ବସିଲେଣି । ଏଥରକ ଦେଶର ଅବସ୍ଥା ବଦଳିଯିବ । ଆମର ମଧ ଇଚ୍ଛା ଯେ ଆମେ ମଧ ଏଥିରେ ଯୋଗ ଦେଇ ଆମର ନିକମା ଜନ୍ମକୁ କୃତାର୍ଥ କରି ନେବା । ସଭାଟିର ନାମ ସମସ୍ତେ ମିଶି ଦେଇଛନ୍ତି 'ଉତ୍କଳ-ସମ୍ମିଳନୀ' । କଥାଟା କିନ୍ତୁ ସାଧାରଣ ଲୋକେ ସମଝି ପାରିବେ ନାହିଁ । ସଭାର ନାମ ଗୋଟାଏ କିଛି ବୁଝଟ ଲବଜ ଦେଇଥିଲେ ସମସ୍ତେ ବୁଝି ପାରିଥାନ୍ତେ । ହେଉ, ନ ବୁଝନ୍ତୁ, କାମ ହେଲେ ଗଲା, ନାଁ କଣ ଚାଟି ଖାଇବେ ? ତେବେ ଦାଣ୍ଡରେ ନାଁଟା ବିକାଏ । 'ମେଳା' 'ମଉଛବ' 'ଯାତ୍ରା' 'ହରିହାଟ' 'ହରିଲୁଟ' ଏହିପରି ଗୋଟାଏ କିଛି ନାମ ଦେଇଥିଲେ ରାମ ପ୍ରଧାନ, ଶାମ ଜେନା, ହରି ସାମଲ ଓଗେର କଥାଟାକୁ ସହଜରେ ସମଝି ପାରିଥାନ୍ତେ । ହେଉ ଯାହା ପିଲାମାନେ କରିଛନ୍ତି, ତାହା କିପରି ସଫଳ ହେଉ । ଆମେ ବଞ୍ଚି ଥାଉଁ ଥାଉଁ ଆମ ଆଖିରେ ପଡୁ ଯେ ଆମ 'ଜାତି' ରହିଲା ଓ ଦେଶର 'ସେବା' ହେଲା ।

ଫେର ଅଭ୍ୟର୍ଥନା କମେଟିରୁ ଖବର ପାଇଲୁଁ ଯେ, ଏ ସମ୍ମିଳନୀକୁ ଯେଉଁ ଭାଇମାନେ ଆସିବେ, ସେମାନଙ୍କର ଚରଚା କରିବାର ଭାର ପିଲାମାନେ ଆଦରିଛନ୍ତି । ଏ କଥାଟା ଆଗରୁ ପକଡ଼ି ପାରିଥିଲେ 'ଦେଶସେବା'ର ଅର୍ଥ ବୁଝିବାକୁ ଆମକୁ ଏତେ ଧନ୍ଦି ହେବାକୁ ପଡ଼ି ନ ଥାନ୍ତା । ଆମ ପିଲାମାନେ ଅଭ୍ୟାଗତମାନଙ୍କ 'ସେବା' କରିବେ ଓ ଅଭ୍ୟାଗତ ଭାଇମାନେ ଏଠାକୁ ଆସି ପ୍ରସାଦ 'ସେବା' କରି ଏ ମେଳା ମଉଛବରେ ଯୋଗ ଦେବେ । ଯାହାହେଉ, ଅଭ୍ୟର୍ଥନା କମେଟିର ଚିଟଉ ଖଣ୍ଡ ପାଇ ମନର ସାଧ ମେଣ୍ଟିଗଲା । ପୂର୍ବେ କୌଣସି ମେଳା ମଉଛବରେ ମହନ୍ତ, ଅଧିକାରୀ, ଡାକୁଆ ସବୁ ଥିଲେ । ଏଣିକି ମେଳା ମଉଛବର ନାମ ଯେପରି ବଦଳିଲା, କାମ କରିବା ଲୋକଙ୍କ ପଦ୍ଧତି ମଧ ସେହିପରି ବଦଳିଲା । ଯଥା: ସମ୍ପାଦକ, ସହକାରୀ ସମ୍ପାଦକ, ଅତିରିକ୍ତ ସମ୍ପାଦକ, ଯୁଗ୍ମ ସମ୍ପାଦକ, ଅନାହାରୀ ସମ୍ପାଦକ, କୋଷାଧକ୍ଷ, ସବ୍-କମେଟି, ଇତ୍ୟାଦି, ଇତ୍ୟାଦି । ଭଲ କଥା ।

ଶୁଣିଲୁ ଯେ, ଆମ ଦେଶର ମୁଖିଆ ମୁଖିଆ ବଡ଼ ପାଠୁଆଯାକ ଏ ମେଳାରେ ହୋତା ହୋଇ ଅଛନ୍ତି ଓ ପିଲାମାନଙ୍କୁ ହେମଦ୍ ଦେଉଅଛନ୍ତି । ଭଲ କଥା ।

ବାବୁ ଗୋପାଳ ନିକଟକୁ ଲେଖିଥିଲୁ ଯେ ଏ ସମ୍ମିଳନୀ ବେଦୀରେ ପ୍ରଥମେ ବେଦ ମନ୍ତ୍ର ପାରାୟଣ କରି କାର୍ଯ୍ୟ ଆରମ୍ଭ କଲେ ମଙ୍ଗଳ ହେବ । ସେ ଆମର ଏ ମରହଚ୍ଛିଆ କଥାକୁ ତାଙ୍କ ଭୟାମାନଙ୍କୁ କହିବାରୁ ସମସ୍ତେ ରାଜି ହୋଇଛନ୍ତି ବୋଲି ଜବାବ ଦେଇଛି ଓ ଆମ୍ଭ ନିକଟକୁ ଚିଠି ଆସିଛି ଗୋଟିଏ ବେଦୋକ୍ତ ମନ୍ତ୍ର ବାଛି ପଠାଇବା ନିମନ୍ତେ । ସମ୍ମିଳନୀ ଆଉ ଦିନ ଦୁଇଟା ରହିଲା, ଏପରି ସ୍ଥଳରେ ଯେନତେନ ପ୍ରକାରେଣ ଏହି ମନ୍ତ୍ରଟି (ଯାହା କି ଆମର ଶ୍ରାଦ୍ଧ, ତର୍ପଣ ଆଦି ମଙ୍ଗଳ କାର୍ଯ୍ୟରେ ବୋଲାଯାଏ) ଠିକଣା କରି ପିଲାଙ୍କ ନିକଟକୁ ଲେଖିଦେଲୁଁ । ଏ ମନ୍ତ୍ରଟିକୁ ସମ୍ମିଳନୀର ମୂଳମନ୍ତ୍ର କରି ପିଲାଏ ଓ ବୁଢ଼ାଏ ଏ ମେଳାଟି ଆରମ୍ଭ କରନ୍ତୁ । ଏ ମନ୍ତ୍ରଟି ସମ୍ମିଳନୀର ଆବାହନ ମନ୍ତ୍ର ଓ ବିସର୍ଜନ ମନ୍ତ୍ର ହେଉ ।

ମନ୍ତ୍ରଟି ଏହି- ''ଓଁ ମଧୁ ମଧୁ ମଧୁ । ଓଁ ମଧୁ ବାତାଋତାୟତେ । ଓଁ ମଧୁ କ୍ଷରନ୍ତି ସିନ୍ଧବଃ । ଓଁ ମାଧ୍ୱୀର୍ନଃସନ୍ତ୍ୱୋଷଧିଃ । ଓଁ ମଧୁନକ୍ତମୁତୋଷସୋ । ଓଁ ମଧୁମତ୍ ପାର୍ଥିବଂ ରଜଃ । ଓଁ ମଧୁଦ୍ୟୌରସ୍ତୁନଃ ପିତା । ଓଁ ମଧୁମାନ୍ନୋ ବନସ୍ପତିଃ । ଓଁ ମଧୁମାନ୍ ଅସ୍ତୁସୂର୍ଯ୍ୟଃ । ଓଁ ମାଧ୍ୱୀର୍ଗାବୋ ଭବନ୍ତୁ ନଃ ।''

ଏହି ମନ୍ତ୍ର ବଳରେ ଋଷି ଯୋଗୀମାନେ ଲୁଣରୁ ମିଠା ବୁହାଇ ପାରୁଥିଲେ ଓ ଏହି ମନ୍ତ୍ର ବଳରେ ଆମ ଓଡ଼ିଶୀ ମେଳାରୁ ଯେ ମିଠା ବୋହିବ, ଏଥିରେ ସନ୍ଦେହ ନାହିଁ । ଏହି 'ମଧୁ' ସ୍ରବିବା 'ଆଶା'ରେ ଏ ମନ୍ତ୍ରଟି ସମ୍ମିଳନୀରେ ଆବୃତ୍ତି ହେବା ସକାଶେ ଆମର ଜିଗର । ପିଲାଏ ଆମ କଥା ନ ମାନିଲେ ଆମର ମଧ ନଜର ଅନୁସାରେ ଅଭିଶାପ ଦେବାର ଅଧିକାର ଅଛି । ସେହି ଅନୁସାରେ ଆମେ ମଧ ସେ ଅଧିକାରର ସଦ୍‌ବ୍ୟବହାର କରିବାକୁ ଛାଡ଼ିବୁଁ ନାହିଁ । 'ମଧୁମନ୍ତ୍ର'ରେ ସମ୍ମିଳନୀର ଷଠି ପଞ୍ଚୁଆତି ହେଉ ଓ 'ମଧୁମନ୍ତ୍ର'ରେ ସମ୍ମିଳନୀର ଶେଷ ହେବ । ପିଲାଏ ଯେଉଁ ଦିନ ଏ ମନ୍ତ୍ରଟି ଛାଡ଼ିଦେବେ, ତହିଁ ବାସି ଦିନ ଏ ମଉଚ୍ଛବଟି ବୁଡ଼ିଯିବ ।

(ନୋଟ୍ - ପାଠକ ଅବଧାନମାନେ ! ଉତ୍କଳ ସମ୍ମିଳନୀକୁ କେବଳ ମାତ୍ର ଆଶୀର୍ବାଦ ମନ୍ତ୍ର ଦେଇ ମୋର ପିତୃଦେବ ବୋଧ ହୋଇ ନ ଥିଲେ- ଯେ ବର୍ଷ ସେ ସମ୍ମିଳନୀର ଅଧିବେଶନରେ ଉପସ୍ଥିତ ହୋଇ ମାତୃ ପୂଜା ଓ ମାତୃ ଶ୍ରାଦ୍ଧରେ ଯୋଗ ଦେଇଥିଲେ । ଉକ୍ତ ଆଶୀର୍ବାଦ ମନ୍ତ୍ରଟା ମୋ ମନକୁ ନ ମାନିବାରୁ ତାହା ସମ୍ମିଳନୀ ମଣ୍ଡପରେ ଗୀତ ହେବାର ପ୍ରସ୍ତାବ ମୁଁ ନେତାମାନଙ୍କ କାନରେ ପକାଇଲି ନାହିଁ । କେବଳ ମୁହଁରେ 'ମଧୁବାତାଋତାୟତେ' ମନ୍ତ୍ର ବୋଲିଲେ ଫଳ ନାହିଁ । ଈଶ୍ୱରଙ୍କ ଅନୁଗ୍ରହରୁ ଯେଉଁ ଦିନ ସମ୍ମିଳନୀର କାର୍ଯ୍ୟ ଓ ପ୍ରଭାବ ଦେଶରେ ବିସ୍ତାରିତ ହେବ ଓ ତଜ୍ଜନିତ ଦେଶ ମଧୁମୟ ହେବ, ସେ ଦିନ ସମ୍ମିଳନୀର ଉଦ୍ଦେଶ୍ୟ ସିଦ୍ଧ ହେବ ଓ ତହିଁର ଉଦ୍ୟୋକ୍ତାମାନେ ପୁରସ୍କୃତ

ହେବେ, ସେହିଦିନ ଦେଶତମାମ ସମସ୍ତେ ମଧୁ ଚାଖିବେ ଓ ଚଖାରୁ ବଳିଲେ ଦେଶ ବିଦେଶରେ ମଧ ମଧୁକୁ ବିକିବେ ।)

ଟିପ୍ପଣୀ- ମୋର ପିତୃଦେବ ସମ୍ମିଳନୀର ଭବିଷ୍ୟତ୍ ସମ୍ବନ୍ଧରେ ଭାରି ଆଶାନ୍ୱିତ ଥିଲେ- ସମ୍ମିଳନୀର ମଫସଲ ଶାଖା- ସମିତିରେ ମଧ ଯୋଗ ଦେଇଥିଲେ ଓ କ୍ଷୁଦ୍ର ଶକ୍ତି ଅନୁସାରେ ସମ୍ମିଳନୀ ନିମନ୍ତେ ଯତ୍‌ସାମାନ୍ୟ ଚାନ୍ଦା ମଧ ଦେଇଥିଲେ । ତାଙ୍କର ଧାରଣା ଥିଲା ଯେ ଉପଯୁକ୍ତ ଓ ଅବିଚଳିତ ନେତୃତ୍ୱାଧୀନରେ ସମ୍ମିଳନୀ ସଭା ଦିନେ ଉତ୍କଳରେ ବିଶେଷ ପରାକ୍ରମଶାଳୀ ମେଳା ହୋଇ ଦେଶର ଅନେକ ଇଷ୍ଟ ସାଧନ କରିପାରିବ । ଏ ତ ସମ୍ମଳିନୀର ଜନ୍ମ ଓ ନାମକରଣ ସମୟ କଥା । ଇତିମଧ୍ୟରେ ସମ୍ମିଳନୀ କେତେକ ବର୍ଷ ଅତିବାହିତ କରିଅଛି । କେଉଁ ବର୍ଷ ଉମେଦବାରି, କେଉଁ ବର୍ଷ ଧକମ୍‌ଧକା, କେଉଁ ବର୍ଷ ଚାକଚମକ, କେଉଁ ବର୍ଷ କୃତଜ୍ଞତା ପ୍ରକାଶ, କେଉଁ ବର୍ଷ ବୀଜମନ୍ତ୍ର ବଦଳି, କେଉଁ ବର୍ଷ ଅନ୍ୟୋଽନ୍ୟ - ସମ୍ବର୍ଦ୍ଧନା, କେଉଁ ବର୍ଷ ରାଜନୀତିକ ଆନ୍ଦୋଳନ, କେଉଁ ବର୍ଷ ପ୍ରଜାନୀତିକ ଅନୁଷ୍ଠାନ, କେଉଁ ବର୍ଷ ଅରାଜକତା, ଏହିପରି ଭାବେ ଅବତାର ଗ୍ରହଣ କରି ବର୍ଷକୁ ବର୍ଷ ଅଧିବେଶନ ସ୍ଥାନମାନ କରତାଳି, କାନ୍ଦବୋବାଳି, ଭୂରି ଭୋଜନ, କୁକୁର ଧାଉଡ଼ି, ଗଧ ରଡ଼ି, କୁଢ଼ିବୋବାଳି, ବକ ପଞ୍ଚକ, ଜଡ଼ା ତେଲ ମେଣ୍ଢା ବାଳରେ ପୂର୍ଣ୍ଣ ହୋଇଅଛି । ଗତ ୧୯୧୪ ସାଲ ବଡ଼ଦିନ ଛୁଟିରେ ପାରଳାଖେମଣ୍ଡିର କିଶୋର ରାଜା ମହୋଦୟ ଆନ୍ତରିକ ଶ୍ରଦ୍ଧା ସହକାରେ ସମ୍ମିଳନୀ ଅଧିବେଶନର ସମସ୍ତ ଭାର ଗ୍ରହଣ କରି ସମ୍ମିଳନୀର ଭାବୀ ଉନ୍ନତିକଳ୍ପେ ଯତ୍ନଶୀଳ ହୋଇଅଛନ୍ତି- ଏହା ଦେଶ ପକ୍ଷରେ ଗୌରବ ଓ ଆସ୍ପର୍ଦ୍ଧାର ବିଷୟ ଅଟେ । ପୁରୀର ଭାଇମାନେ ଓ ସତ୍ୟବାଦୀର ଯୁବକମାନେ ସମ୍ମିଳନୀ ପ୍ରତି ବିଶେଷ ଆଗ୍ରହ ଦେଖାଇ ସମ୍ମିଳନୀର ଉଦ୍ଦେଶ୍ୟ ସାଧନ ପକ୍ଷରେ ଅଗ୍ରସର ହୋଇଅଛନ୍ତି । କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ସିଂହଭୂମ ଆଦି ଅଞ୍ଚଳର ଓଡ଼ିଆ ଭାଇମାନେ ଏ ବର୍ଷ ଯୋଗ ଦେଇଅଛନ୍ତି । ଆଶା କରାଯାଏ ଯେ, ସମ୍ମିଳନୀର ଭବିଷ୍ୟତ୍ ଇତିହାସରେ 'ଦେଶସେବା' ଓ 'ଜାତୀୟ ଉନ୍ନତି', 'ପୋଥି ବାଇଗଣ' ରୀତି ତ୍ୟାଗ କରି ଏଣିକି 'ବାଡ଼ି ବାଇଗଣ'ରେ ପରିଣତ ହେବ ଓ ଆଜନ୍ମପରମ୍ପରା-ରୀତି ଅନୁସାରେ ସମ୍ମିଳନୀ ମଣ୍ଡପଟା ଅନ୍ୟୋଽନ୍ୟ-ସୌହାର୍ଦ୍ଦ୍ୟ-କୋମଳ ଧନ୍ୟବାଦ- କିଳିକିଳାର କ୍ଷେତ୍ର ନ ହୋଇ ଏ ବର୍ଷ ଉତ୍କଳର ଜାତୀୟ ଜୀବନରେ ନବ ଜାଗରଣ ଓ ନବଯୁଗର ସ୍ମୃତି ଚିହ୍ନସ୍ୱରୂପ ବିରାଜିତ ହେବ ଓ ଏଣିକି ଓଡ଼ିଶାଟା ଯାହା କଣବାରିଆ ହୋଇ ଚେଉଁଥିଲା, ତାହା ନ ହୋଇ ଚିତ୍‌ପଟାଙ୍ଗ ହୋଇ ବାନାପଟା ଖେଳିବ ।

ବର୍ତ୍ତମାନ ମୋର ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ମତେ ମୋର ଇଜମାଲି ପରିବାରର ସଂସାର କ୍ଷେତ୍ରରେ ଅବତୀର୍ଣ୍ଣ ହେବାକୁ ପଡ଼ିଅଛି- ଆଗର ସ୍ଫୂର୍ତ୍ତି, ଆଗର ସେବା, ଆଗର ନିଃସ୍ୱାର୍ଥ ପ୍ରେମ ଏଣିକି କ୍ରମଶଃ କମି ଯାଉଅଛି- ସମ୍ମିଳନୀ ମଣ୍ଡପରେ ଉପସ୍ଥିତ ହୋଇ ଦେଶ-ଭକ୍ତ୍ୟେକ-ପ୍ରାଣ ଜାତି ପ୍ରେମିକ ଉତ୍କଳୀୟ ଭାଇମାନଙ୍କ ସଙ୍ଗେ ଯୋଗ ଦେବାର

ସୁଯୋଗ ଘଟୁ ନାହିଁ । ବିଶେଷତଃ ପିତୃ ବିୟୋଗ ଯୋଗୁଁ ମୁଁ ଘଟନାର ଚକ୍ରରେ ଓ ସଂସାର ଆବର୍ତ୍ତରେ ପଡ଼ି ଘୋର ସଂସାରୀ ଓ ଘୋର ନୀଚ, ସ୍ୱାର୍ଥପର ହୋଇ ଯାଇଅଛି । ଏପରି ସ୍ଥଳରେ ଉତ୍କଳ ସମ୍ମିଳନୀରେ ଦେଶ-ସେବା-ବାହକମାନଙ୍କ ସଙ୍ଗେ କାନ୍ଧ ପକାଇବାର ସୁବିଧା ମିଳୁ ନାହିଁ । ତଥାପି ସମ୍ମିଳନୀର ନିମନ୍ତ୍ରଣ ପତ୍ର ପାଇଲେ 'ମୋର ନିଶ ନାହିଁ, ମୋ ବନମାଳିଆ ଭାଇର ନିଶ ଅଛି' ଏହି ହେମତରେ ମୋ ମନଟା କୁଣ୍ଢେମୋଟ ହୋଇଯାଏ ଓ ପାଞ୍ଚ ଦେଶର ପାଞ୍ଚ ଭାଇ ପାଞ୍ଚ ମନ ଏକାଠେଇଁ ହୋଇ ଦେଶ ହିତ ନିମନ୍ତେ ଲାଗିଅଛନ୍ତି, ଏହା ଭାବିଲେ ନିରାଶ ଓ ସଂସାର-ଧନ୍ଦା-ଜଡ଼ିତ ପ୍ରାଣରେ ଆଶାର ସୁଲୁସୁଲିଆ ବାଆ ବହି ହୃଦୟ କନ୍ଦରାରେ ଝଙ୍କାର ମାରେ । ଭଗବାନ୍‌ଙ୍କୁ ଡାକେଁ ଯେ ମୋ ଭାଇମାନଙ୍କୁ ଏକତା, ବଳ, ଧୈର୍ଯ୍ୟ, ଶୌର୍ଯ୍ୟ, ବୀର୍ଯ୍ୟ, ସ୍ଥୈର୍ଯ୍ୟ ପ୍ରଦାନ କରି ସେମାନଙ୍କଦ୍ୱାରା ଦେଶର ସର୍ବବିଧ ଉନ୍ନତି କରନ୍ତୁ । ଏ ତ ଗଲା ଭାଇମାନଙ୍କ କଥା- ପାଠକ ଅବଧାନ ମତେ ପଚାରିପାରନ୍ତି, ''କି ହୋ ଆପଣେ ! ଭାଇମାନଙ୍କ ଉପରେ ସବୁ ତ ପକାଇ ଦେଲ, ଆପଣେ ଦେଶସେବା ପାଇଁ ଖୋଦ କି କାମ କଲ ?''- ସେଥିର ଉତ୍ତର ମୁଁ ଏତିକି ଦେଇ କ୍ଷାନ୍ତ ହେଲି - ସମ୍ମିଳନୀ ଧାର୍ଯ୍ୟ ତାରିଖରେ ବଡ଼ିଭୋର ଗାତ୍ରୋତ୍‌ଥାନ କରି ଆବାଖାବା ମଥାଦହିଟାଏ ମର୍ଦ୍ଦନ ହୋଇ, ଚିକ୍କଣ ଚହଟିଆ ପୋଛାପୋଛିଟାଏ ହୋଇ, ସ୍ନାନ ପ୍ରକାରଟାଏ କରି, ଚିତା ପଟାଏ କାଟି, ଦିକୁ ସରୁଚୁଡ଼ା, ଦିଶୁ-ମାଣିକପାଟଣା ଦହି, ଦିଶୁ-ନବାତକୁ ବୈଜ୍ଞାନିକ ପ୍ରଣାଳୀରେ ରାସାୟନିକ ଚକଟାଟାଏ କରି, ଜାତି ଭାଇ ଦୁଇଜଣଙ୍କୁ ଡାକି ତାଙ୍କର ସେବା କରେଁ ଓ ମୁଁ ନିଜେ ସେବା କରେଁ ଏବଂ ଭୋଜନାନ୍ତେ 'ମଧୁବାତାଋତାୟତେ' ମନ୍ତ୍ରଟି ଆବୃତ୍ତି କରିସାରି କବାଟ କିଳି ଉତ୍କଳ ମାତାଙ୍କୁ ଧ୍ୟାନ କରୁଁ କରୁଁ ଆଖି ବୁଜି ହୋଇଯାଏ ଓ ଘୁଙ୍ଗୁଡ଼ି ମାରୁଥାଏଁ । ଘଣ୍ଟାଏ ଖଣ୍ଡେ ଏହିପରି ଆଖିବୁଜା ଦେଶସେବାରେ ବିତିଗଲା ବାଦ, ଚେତାଳ ଘରଣୀ କିମ୍ବା ତାତ୍‌କାଳିକ ପାକାଧିଷ୍ଠାତା ଆସି ଚେତାଇ ଦେବାରୁ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟଯାକ ଝଟପଟ୍ ଉଦରସ୍ଥ କରିପକାଏଁ । ଏହିପରି ମାତୃ ଶ୍ରାଦ୍ଧ ଦିବସଟି ବିତିଯାଏ । ତତ୍‌ପରେ ଦେହ ଟିକିଏ ହାଲୁକା ଜଣାଗଲେ ସାନ୍ଧ୍ୟ ସମୀରଣ ସେବନ  ଦେହ ଟିକିଏ ଭାରି ବୋଧ ହେଲେ ସାନ୍ଧ୍ୟୌଷଧି ସେବନରେ ବିତିଯାଏ । ଶେଷରେ ନିଦ୍ରାଦେବୀଙ୍କ କ୍ରୋଡ଼ାଶ୍ରୟଣ । ପାଠକ ଅବଧାନ ! ଏଗୁଡ଼ିକ କଣ ଦେଶସେବା ନୁହେଁ ? ଏତେ ସେବାରେ ନିଯୁକ୍ତ ଥାଇ ସୁଦ୍ଧା ଆପଣାର ଓ ଆପଣା ପିଲାପିଲିଙ୍କ ଖାଇବା ଖରଚଟା ଆପଣା ଖୋଷଣିରୁ ବଳି ପଡ଼େ । ସମ୍ମିଳନୀରେ ଯୋଗ ଦେଇଥିଲେ ଭାଇମାନଙ୍କ ସଙ୍ଗେ ଭାଗ ବସାଇ ଖୋଷଣି ଫିଟାଇବାକୁ ଠା' ପିଢ଼ା ହୋଇଥାନ୍ତା । ତାହା ନ ହେଲା ନାହିଁ- ଇତି ପ୍ରକାଶକସ୍ୟ ଟିପ୍ପଣୀ ।

ଆଜି ନନାଙ୍କ ବସ୍ତାନିରୁ ଏହି ବିଡ଼ାକ ।

## ।। ଦୁଇ ।।

'ହରିବୋଲ ଭାଇ ଗୋବିନ୍ଦ ବୋଲ, ଭାସିଲା ପଥର ବୁଡ଼ିଲା ସୋଲ ।' ନନା ଆମର ପୁରୁଣାକାଳିଆ ମରହଟ୍ଟିଆ ବୁଢ଼ା ଥିଲେ । କଥା କଥାକେ ତାଙ୍କର ଗୋଟାଏ ଗୋଟାଏ ଢଗଢମାଳି ଗୀତ ଖନାବଚନ ଶ୍ଳୋକ ଉଲ୍ଲେଖ ଦେବାର ଅଭ୍ୟାସ ଥିଲା । ବସ୍ତାନିରେ ମଧ ଦେଖିଲି, ସେହିପରି କେତେଗୁଡ଼ିଏ ଟିପ୍ପଣୀ ସାଇତା ହୋଇ ରଖା ଯାଇଅଛି ଓ ଗୋଟିଏ ଗୋଟିଏ ଟିପ୍ପଣୀ ତଳେ ଗୋଟିକେତେ ବିଷୟ ଟିପା ହୋଇ ରହିଅଛି । ଗୋଟିଏ ସ୍ଥାନରେ ଖଣ୍ଡିଏ ତାଳପତ୍ରରେ ଲେଖା ଅଛି : ''କିସ ପୁଣି ଦେଖା ନ ଯାଏ ଯେବେ ଥାଇ ଜୀବରେ ।'' ଏ ପଦକ ପିଲାଦିନେ କାଶୀ ଅବଧାନ କେଉଁ ଛାନ୍ଦ ମୁଖସ୍ଥ କରାଇଲା ବେଳେ ଆମକୁ ଘୋଷାଇଥିଲେ, ତାହା ଠିକ୍ ବର୍ତ୍ତମାନ ଅନୁମାନ କରି ହେଉ ନାହିଁ । କିନ୍ତୁ ନନାଙ୍କ ବସ୍ତାନିରେ ଟିପା ହୋଇଥିବା ଗୀତାଂଶଟି ଗୋଟିଏ ବହୁ ଅନୁଭବସିଦ୍ଧ କଥା । ଛାଡ଼, ଆମ ଟୀକା, ଟିପ୍ପଣୀ, ଫୁଟ ନୋଟ୍, ହେଡ୍ ନୋଟ୍, ପାରିପାର୍ଶ୍ୱିକ ନାକ୍ଷତ୍ରିକ ଠରା, ଏ ସବୁ ଦରକାର ନାହିଁ । ନନାଙ୍କ ତାଳପତ୍ରରେ ଯାହା ଟିପା ଅଛି, ତାହାହିଁ ପାଠକ ସାଆନ୍ତଙ୍କ ନିକଟରେ ଅଜ୍ ରଖିଦେବା ଲେଖନକାରଙ୍କର ଉପସ୍ଥିତ କ୍ଷେତ୍ରରେ କର୍ତ୍ତବ୍ୟ । ଅତଏବ ଶୁଭଂ ଭବତୁ, ଶୁଭଂ ଭବତୁ, ଶୁଭାନି ଭବନ୍ତୁ, ପାଠ କରିବା ହେଉନ୍ତୁ, ହେ ଅବଧାନ !

''କିସ ପୁଣି ଦେଖା ନ ଯାଏ ଯେବେ ଥାଇ ଜୀବରେ''- ଯେଉଁମାନେ କହିହୁଅନ୍ତି, ଆମେ ସତିଆ, ସେଇଗୁଡ଼ାକ ନିପଟ ମିଛୁଆ । ନୋଟ୍- ନନା ଆମର ଏଠାରେ ମାତ୍ରାରେ ଭୁଲ କରି ବୋଧହୁଏ ମୁଛିଆ ଲେଖିଅଛନ୍ତି, କିନ୍ତୁ ସେ ଶବ୍ଦଟା ସତିଆଙ୍କଠାରେ ପ୍ରୟୋଗ ହୋଇ ନ ପାରେ ବୋଲି ଆଇନସଙ୍ଗତ କାରଣରୁ ନନାଙ୍କ ମାତ୍ରାଶୁଦ୍ଧିକୁ (ସନ୍ଧି ବିଚ୍ଛେଦ ପୂର୍ବକ ଗ୍ରହଣୀୟାର୍ଥ- ମାତ୍ରା ଅଶୁଦ୍ଧି ମାତ୍ରାଶୁଦ୍ଧି) ଲେଖନକାର ସଂଶୋଧନ କରି 'ମୁଛିଆ' କୁ 'ମିଛୁଆ' ଆକାରରେ ପରିବର୍ତ୍ତନ କରି ପାଠକମାନଙ୍କ ନିକଟରେ ଉପସ୍ଥାପିତ କରିବାକୁ ବାଧ ହେଲେ । ଆମେ ଆଗେ ଆମ ସମାଜରେ ପ୍ରଥମେ ଚୁଟି କାଟିବା ମନୁଷ୍ୟଙ୍କୁ ଜାତିରେ ଅଟକ କରି ମଡ଼ାସାଙ୍ଗିଆ ଭାଇରୁ ମଧ କାଟ କରୁଥିଲୁଁ, ଏବେ ଆମରି ପିଲାଏ ଦଶଣି ଛଅଣି କରି ଲାଙ୍ଗୁଡ଼ ବିବର୍ଜିତ ରୂପେ ଲଣ୍ଡା ହେଲେ । ସେଥିପାଇଁ କହନ୍ତି, 'ବାପ ତେଲଶାଣ୍ଢିରେ ଲଣ୍ଡା, ପୁଅ ବେଣ୍ଟି ରଖୁଛି !' ଆମେ ଉଚ୍ଚ ପିଣ୍ଡାରେ ବସି ନାସ ଶୁଙ୍ଘି ଯେଉଁ କଥା ଲାଗି ପରଙ୍କୁ ଖୁଣ୍ଟା ଦେଉଥିଲୁଁ, ଆମରି ପିଲାଏ ସେହି କଥାମାନ ଆମରି ଆଗେ ଆଗେ ଦାନ୍ତ ନିକୁଟି କରିଗଲେ, ଯା ପେର ଦିହ ସହିଲା ! ଆଗେ ଆମ ବାଡ଼ିଆଢ଼େ ସୁଦ୍ଧା ପିଆଜର ପରା ମିଳୁ ନ ଥିଲା । ଏବେ ପିଲାଙ୍କ କୋଥଳି ଓ ବେଗରୁ ଧଳା, ନାଲି ହରେକ କିସମର ପଦାର୍ଥ ବରାମଦ ହେଲା । ଆଗେ କାହାକୁ କେମିତି ଖିଅର (ହଜାମତ) କରୁ କରୁ ଭଣ୍ଡାରି ମୁହଁରେ ଦି'ଟା ଗୋଟାଏ ରୂଢ଼ଖୁଣ୍ଟି ଛାଡ଼ିଗଲେ ତାଙ୍କୁ ଆମେ ସଭା

ଅଟକ କରୁଥିଲୁଁ; ଏବେ ଆମରି ପିଲାଏ ଗଣ୍ଡାଏ ଦି ଗଣ୍ଡା କେଶ ମୁହଁ ଉପରେ ଓ ତଳେ ରଖି କେତେ କିସମର ବାଙ୍କ ବାଙ୍କୁଅଛନ୍ତି । ଆଗେ କେହି ଖଣ୍ଡେ ଅଙ୍ଗା କୁରୁତା ପିନ୍ଧୁଥିଲେ ସେ ବିନା ଅଣ୍ଡାପାଣି ନ କଲେ ତାକୁ ଆମେ ଦୁଆର ମଡ଼ାଉ ନ ଥିଲୁଁ, ଏବେ ଆମରି ଛୁଆଏ ପାଗପଟୁକା ହୋଇ ଖାଣା ଖାଉଅଛନ୍ତି, ତାହା ମଧ ଏ ଦେହ ସହୁଅଛି । ଆଗେ ଶିଅଳସାହି ବାଟେ ଚାଲିଗଲେ ପଞ୍ଚଗବ୍ୟ ନ କଲେ ଗାଁ ଦାଣ୍ଡ ମନା ଥିଲା । ଏବକୁ ଆମରି ଘର ବାବୁମାନେ ଶିଅଳସାହିରେ ନୈଶ ବିଦ୍ୟାଳୟ ବସାଇ ଶିଅଳଙ୍କ ଚଉଦ ପୁରୁଷକୁ ସଫା କରି ଉଝାଳିବାକୁ ବସିଲେ । ଆଗେ ଶୂଦ୍ରଙ୍କ ଛାଇ ପଡ଼ିଲେ ବାହ୍ମଣେ କୃଚ୍ଛ୍ରଚାନ୍ଦ୍ରାୟଣ କରୁଥିଲେ ଓ ଖାଇଲା ବେଳେ ଆମେ ଶୂଦ୍ରର ପାଟି ଶୁଣିଲେ ଭାତ ପତରରୁ ଦରପନ୍ତରିଆ ହୋଇ ଉଠୁଥିଲୁଁ, ଏବେ ଆମ ପିଲାଙ୍କ ପ୍ରସାଦରୁ ଶୂଦ୍ରଙ୍କ ପ୍ରସାଦ ପର୍ଯ୍ୟନ୍ତ ସବୁ ଆମକୁ ସହି ହୋଇଗଲାଣି । ଆଗେ ଏକା ଜାତିରେ ପାହାଚେ ଦି ପାହାଞ୍ଚ ଖୁସି ସମ୍ବନ୍ଧ କଲେ ଏକ ଘରକିଆ କରୁଥିଲୁଁ, ଏବକୁ ଆମରି ପିଲାଏ ପାହାଞ୍ଚ ପାହାଞ୍ଚ ସବୁ ପୋତି ଗୋଟାଏ ଲେଖାଏଁ ଲମ୍ବଡୋରିଆ ଗଡ଼ାଣିଆ ବାନ୍ଧି ଦେଇ ତାରି ଉପରେ ଉପରୁ ତଳୁ, ତଳୁ ଉପରକୁ ମାକଡ଼ଚିଡି ମାରୁଅଛନ୍ତି । ଆଗେ "ଯାନାରୂଢ଼ଂ ଯତିଂ ଦୃଷ୍ଟ୍ୱା । ସଚେଲଂ ସମ୍ମାନମାଚରେତ୍" କରୁଥିଲୁଁ, ଏବକୁ ଆମରି ଘରେ ଯତିଙ୍କୁ ଖଟ୍ୱାରୂଢ଼ ପର୍ଯ୍ୟନ୍ତ ପିଲାଏ କଲେଣି, ତେବେ ସୁଦ୍ଧା ମନ ବୋଧ ହେବାକୁ ନାହିଁ । ଆଗେ ଯେଉଁ କଥାକୁ ଆମେ ନାକ ଟାଉଁ ଟାଉଁ କରୁଥିଲୁଁ, ଏବେ ବଡ଼ଠାକୁର ଜଗନ୍ନାଥଙ୍କ ଦୟାରୁ ମହାପ୍ରଭୁ ଆମ ନାକର ଫୋଡ଼ଟାମାନଙ୍କରେ ଖଳିବିଣ୍ଡା ମାରି ଦେଇ ସାରିଲେଣି । ହେଉ, ଭଲ କଥା । ନାକ ଅନୁସାରେ ସିନା ଗନ୍ଧ - ଗ୍ରାହକପଣିଆ । ନାକରେ ସହି ହୋଇଗଲେ ଆଉ ଭାବନା କଣ ? ଆମଭଳିଆ କେତେଟା ପ୍ରକୃତିଛଡ଼ା ବୁଢ଼ା ଦିନାକେତେ ପୂର୍ବ ଅଭ୍ୟାସ ଯୋଗୁଁ ନାକ ଫୁଲାଇବେ, କିନ୍ତୁ ଦିନାକେତେ ବାଦ ସବୁ ଦିହରେ ସହି ହୋଇଯିବ ଯେ । ଯାହା ହେଉ, ଆମରି ଗୁଣବନ୍ତ ଓ ବିଦ୍ୟାବନ୍ତ ପିଲାମାନଙ୍କ ଯୋଗୁଁ ଆଜି ଆମରି ଦିହରେ ଆମରି ପରୋପଦେଶେ ପାଣ୍ଡିତ୍ୟଗୁଡ଼ାକ ବିଚିଟି ହୋଇ ଯାଇ ଦିହଯାକ ହେମାଳ କରି ପକାଇଲେଣି ।

ଲୋକେ କହନ୍ତି, ଅମୁକ ଲୋକର 'ଜାତି ଗଲା' । କି ରେ ଭାଇ ! ଯେଉଁ ଜିନିଷଟା ଯାଇପାରେ, ସେ ଜିନିଷଟା ତ ଆସିପାରେ । ଜଙ୍ଗମ ଶବ୍ଦର ଅର୍ଥ, ଯେ ଯାଇ ଆସିପାରେ । କିନ୍ତୁ ଆମ ଦେଶର ସମାଜ 'ଜାତି ଯିବା' କଥାଟାକୁ ଭାରି ଚିହ୍ନିଅଛନ୍ତି, କିନ୍ତୁ 'ଜାତି ଆସିବା' କଥାଟା ପ୍ରତି ନାଲି ଆଖି ଦେଖାନ୍ତି କାହିଁକି ? କୌଣସି ଉଚ୍ଚଜାତିଆ ଲୋକ ମନ୍ଦ କାର୍ଯ୍ୟ କଲେଁ ସମାଜରେ ତାହାର ଜାତି ଯାଏ । ସେହିପରି କୌଣସି ଛୋଟଜାତିଆ ଲୋକ ଭଲ କାର୍ଯ୍ୟ କଲେ ତାର ଜାତି ଆସିବ ନାହିଁ କାହିଁକି ? ଭଗବାନ୍ ପରା କହିଥିଲେ, 'ଚାତୁର୍ବର୍ଣ୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମ ବିଭାଗଶଃ ।' ଏବେ ସେ ବର୍ଣ୍ଣାଶ୍ରମ-ଜାତି ଓ ଜାତିର ମୂଳ କେଉଁଆଡ଼େ ଗଲାଣି ! ଏବେ ଚତୁର୍ବର୍ଣ୍ଣ ମଧରେ ଚାରି ହଜାର 'ଜାତି' ବାହାରିଲାଣି । ଏହି ଜାତିରେ ପାହାଞ୍ଚ ପାହାଞ୍ଚ ଖସି ଫେର ପାହାଞ୍ଚ ପାହାଞ୍ଚ ଉଠୁ ଉଠୁ ସମାଜରେ

ବଡ଼ମୁଣ୍ଡିଆଯାକଙ୍କର ସମୟ ଓ ଧନ ଯାଉଅଛି । ଏଣିକି ଜାତି ବିଭାଗ ଗୁଣମୟ ଓ କର୍ମମୟ ନ ହୋଇ ଧାତୁମୟ ହୋଇ ପଡ଼ୁଅଛି । ହେଉ, ଭଲ କଥା, ଯେତିକି ଘାଣ୍ଟିଆ ମହୁର ହେବ, ସେତିକି ସମାଜ ପକ୍ଷରେ ଶୁଭଦିନ । ଫେର ସମସ୍ତେ ଆସି ସେହି (ମୌଳିକ) ଚାରି ବର୍ଣ୍ଣରେ ପହଞ୍ଚିବେ । ପଇତା ପକା ଜାତି ତିନୋଟି ହେବ ଓ ପଇତା ଅପକା ଗୋଟିଏ 'ଶୂଦ୍ର' ଜାତି ହେବ । ଜାତି ମଧ୍ୟରେ ଜାତ୍ୟନ୍ତର ଏବଂ ଭାତ ମଧ୍ୟରେ ଭାତାନ୍ତର ଏପରି ସବୁ ରହିବା ଉଚିତ ନୁହେଁ । କେହି କେହି ବଡ଼ଲୋକ ଆପଣା ଅନୁଭବରୁ କାଢ଼ି କହି ପକାଇଅଛନ୍ତି ଯେ, 'ଜାତି ତାଙ୍କ ବାକ୍ସ ଭିତର ବଟୁଆରେ ଅଛି ।' କିନ୍ତୁ ଆମେ କହୁଁ, ଆମ ଦେଶର ଜାତି ବ୍ରାହ୍ମଣଙ୍କ କୁଶବଟୁ ଓ ଅଭିଆଡ଼ ସୂତାକେରା ମଧ୍ୟରେ । କାୟସ୍ଥ ଓ କରଣମାନେ କ୍ରମଶଃ ପଇତା ପକାଇବାର ପୂର୍ବ ପ୍ରଥାକୁ ଚଳାଇବା ଦ୍ୱାରା କ୍ଷତ୍ରିୟ ଆଡ଼କୁ ଆଗୋଉଅଛନ୍ତି । କ୍ରମଶଃ ଏହିପରି ହେବା ଦ୍ୱାରା ବର୍ତ୍ତମାନ ଯେ ଉଣେଇଶଶହ ଅଷ୍ଟାବନ ଶହେ ଜାତି, ଉପଜାତି, ଅଜାତି, ଅନୁଜାତି, ସ୍ୱଜାତି, ପରଜାତି ଗୁଡ଼ାଏ ଅଛି, ସେଗୁଡ଼ାକ କମିଯିବ ଓ କ୍ରମଶଃ ଆମ ସାବକ ବୈଦିକ ଅମଳର ଚତୁର୍ବର୍ଣ୍ଣ ଆସି ପହଞ୍ଚିବ । ହେଉ, ଭଲ କଥା । ଈଶ୍ୱର ଆମ ପିଲାଙ୍କୁ ଚିରଞ୍ଜୀବୀ କରନ୍ତୁ ।

ଦିନେ ଜଣେ ଇଂରାଜୀ ପଢ଼ୁଆ ବାବୁ ଆମ ମରହଟ୍ଟିଆଯାକଙ୍କ ଉପରକୁ କଥାଟା ଫୋପାଡ଼ି କରି କହି ପକାଇଥିବେ, ପୁରୁଣା ବୁଢ଼ାଗୁଡ଼ାକ ଭାରି 'ରକ୍ଷଣଶୀଳ' । କଥାଟା କିନ୍ତୁ ସମଝି ହେଲା ନାହିଁ । ଆରେ ବାବୁ, ତୁମ୍ଭେମାନେ ପଢ଼ିଶୁଣି ସବୁ ଦୁର୍ଗୁଣଯାକ ଛାଡ଼ିବାର କଥା, କିନ୍ତୁ ତୁମ୍ଭେ ସବୁ ରଖୁଅଛ- ଯେତକ ଦୁର୍ଗୁଣ, ପର ଛିଦ୍ର, ଅହଙ୍କାର, ହାମବଡ଼ା ରୀତି, ସବୁ ରଖୁଅଛ । ତୁମ୍ଭେମାନେ ହେଲ ଅରକ୍ଷଣଶୀଳ, ଆମେ ହେଲୁଁ ରକ୍ଷଣଶୀଳ ! ବେଳେ ବେଳେ ଦେଖାଯାଉଅଛି ଯେ, ଯେଉଁ କଥାକୁ ପ୍ରଶ୍ରୟ ନ ଦେବ ବୋଲି ବିଚ୍ ବଜାର ଓ ଦାଣ୍ଡ ହାଟରେ ଡେଙ୍ଗୁରା ଦେଇ ଗାଇ ବୁଲୁଥିଲ, ଦିନାକେତେ ବାଦ ସେ ସବୁ କଥା ତୁମ୍ଭେମାନେ ବିରାଡ଼ି ଆଖି ବୁଜି ଦୁଧ ପିଇଲା ନ୍ୟାୟ କରୁଅଛ- ଏଣେ ଦାଣ୍ଡରେ କହି ବୁଲୁଅଛ ଯେ, ନୈତିକ ସାହସ ଓ ଉନ୍ନତି-ବୁଜୁଳାଯାକ ସବୁ ତୁମରି ଏକଚେଟିଆ ! ଆମେ ବରାବର ବଡ଼ ଦେଉଳରେ ଦେଖିଆସିଲୁଁ ମାହାରୀ ନାଚ । ତୁମ୍ଭେମାନେ ବକ୍ତୃତା କଲ ଯେ, ସେଗୁଡ଼ାକ ପ୍ରଶ୍ରୟ ଦେଲେ ଦେଶର ନରକ ଗତି ହେବ; କିନ୍ତୁ ଯେ ଦିନରାତି ମାହାରୀଙ୍କ ବଡ଼ବାପା ଓ ନଣନ୍ଦେଇ ବନିଅଛନ୍ତି, ସେହିମାନଙ୍କ ବାଡ଼ି ପନ୍ଦଡ଼ାରେ ତୁମେ ସଭ୍ୟ ଶିକ୍ଷିତ ଆଲୋକପ୍ରାପ୍ତ ବାବୁଯାକ ଦିନ ରାତି ଲୁଙ୍ଗୁପୁଙ୍ଗୁ ହେଉଅଛ । କହୁଛ କଣ ନା- ଦେଶର ଉନ୍ନତି କରିବା ପାଇଁ ଏମାନଙ୍କ ଅନୁସରଣ କରିବାକୁ ପଡ଼ୁଅଛି ଓ ଏଗୁଡ଼ିକ ପ୍ରଶ୍ରୟ ଦେବାକୁ ପଡ଼ୁଅଛି । ଫେର ଆମ ମରହଟ୍ଟିଆ ଢଗର ନଜର ଦେଇ ଆପଣା ନୈତିକ ସାହସର ପରିଚୟ ଦେଉଅଛ । କହୁଅଛ, 'ଅସମୟରେ ଶ୍ରୀକୃଷ୍ଣ ଗଧ ପାଦ ଧରିଥିଲେ !' ଆମେ ସା'ନ୍ତବାପାଙ୍କ ଅମଳରୁ ଟିକିଏ ଲେଖାଏଁ ପାଚକ ପାଣି ସାରି ଆମ ସଉକି ଓ ତୃଷ୍ଣା ନିବୃତ୍ତି କରୁଥିଲୁଁ । ତୁମ୍ଭେମାନେ ପ୍ରଥମେ ବିଲାତୀ ପାଣିର ସୁଅ

ବୁହାଇଲ । ଫେର ତୁମ୍ଭେମାନେ ବକ୍ତୃତା କଲ ଯେ, ସେଗୁଡ଼ାକ ଛୁଇଁଲେ ମହାପାପ । କିନ୍ତୁ ଯେଉଁମାନେ ସେ ପାଣିରେ ସ୍ନାନପ୍ରକାର ଓ ତର୍ପଣ ସାଙ୍ଗ କରୁଅଛନ୍ତି, ତୁମ୍ଭେମାନେ ସେହିମାନଙ୍କୁ ବିମାନରେ ବସାଇ ତାଙ୍କର ମୁଣ୍ଡରେ ଟିକା ମାରି ତାଙ୍କୁ ବାର ଦ୍ୱାରରେ ବିକାଉଅଛ- ଏଗୁଡ଼ାକ ତୁମ୍ଭମାନଙ୍କ ପକ୍ଷରେ ଶୋଭନୀୟ । ଆମ୍ଭେମାନେ ବାପଅଜା ଅମଳରୁ ତେତ୍ରିଶ କୋଟି ଦେବଦେବୀଠାରୁ ଆରମ୍ଭ କରି 'ଦିଲ୍ଲୀଶ୍ୱରୋ ବା ଜଗଦୀଶ୍ୱରୋ' ପର୍ଯ୍ୟନ୍ତ ସମସ୍ତଙ୍କୁ ସ୍ତୁତି କରି ଆସିଲୁଁ । ତୁମ୍ଭେମାନେ ପଢ଼ି ଶୁଣି ବକ୍ତୃତା କଲ ଯେ, ସ୍ତୁତି କରିବା ଏକପ୍ରକାର ପ୍ରତିମାପୂଜା- ସେଗୁଡ଼ାକ ବର୍ଜନୀୟ । କିନ୍ତୁ ତୁମ୍ଭମାନଙ୍କ ବେଳକୁ ତୁମ୍ଭମାନଙ୍କ ସଭ୍ୟ କିସମର ସ୍ତୁତିପାଠଗୁଡ଼ାକ ତୁମ୍ଭରିମାନଙ୍କ ଆଖିକୁ ଦିଶୁ ନାହିଁ । କାର୍ଯ୍ୟୋଦ୍ଧାର ବେଳକୁ ଗୋବର ଗଣେଶମାନଙ୍କୁ ଜଗନ୍ନାଥଙ୍କ ଆସନ ଦେଉଅଛ ଓ ସ୍ତୁତିପାଠରେ ଦେଶ, ବିଦେଶ, ମାସିକ, ସାମୟିକ, ପାକ୍ଷିକ ପତ୍ରିକାମାନଙ୍କରେ ତୁମ୍ଭେମାନେ ଚହଳ ପକାଇ ଦେଉଅଛ । କଥା ପଡ଼ିଲେ କହୁଅଛ ଯେ, ତୁମେ ମହତ୍ ଉଦ୍ଦେଶ୍ୟ ସାଧନ ନିମନ୍ତେ ଏପରି ଆଖିବୁଜା ରୀତି ଗ୍ରହଣ କରୁଅଛ ! ଏତେ ବକ୍ତୃତା କରୁଅଛ ଯେ ପ୍ରତିମା ପୂଜା ଭାରି ଖରାପ, କିନ୍ତୁ ବସନ୍ତ ପଞ୍ଚମୀକୁ ସରସ୍ୱତୀ ପ୍ରତିମା ଆବାହନ ଓ ବିସର୍ଜନରେ ଗ୍ୟାସ ବତି, ଜରିକାମ ଓ ସୋଡ଼ା ଲେମନେଡ଼କୁ ମହରଗ କରୁଅଛ ! କହୁଅଛ ଯେ କୁସଂସ୍କାରଗୁଡ଼ାକ ଆବର୍ଜନା, ସେଗୁଡ଼ାକ ପୋଡ଼ି ପୋତି ପକାଇବା ଦରକାର; କିନ୍ତୁ ବିରାଡ଼ିବୈଷ୍ଣବଙ୍କ ଭେକ ତୁମ୍ଭରିମାନଙ୍କଠାରେ ଓ ବିରାଡ଼ିବୈଷ୍ଣବଙ୍କୁ ତୁମ ସଭାରେ ପ୍ରଥମ ସ୍ଥାନ । ଚୁରୁକି ଟାଣିବା ଓ ଚିତା କାଟିବା ନୀତିବିରୁଦ୍ଧ । କିନ୍ତୁ ଚୁରୁକି ସେହିତା କରୁଁ କରୁଁ ଓ ପୂଜୁଁ ପୂଜୁଁ ତୁମ୍ଭମାନଙ୍କ ବଳ, ବୀର୍ଯ୍ୟ ଓ ନୈତିକ ସାହସ ଖତମ ହେଉଅଛି । ପ୍ରଭେଦ ଏତିକି, ଆମେ ମରହଟିଆଯାକ କୁସଂସ୍କାରରେ ପଡ଼ି ଯେଉଁଠାରେ ଥିଲୁଁ, ସେହିଠାରେ ପଡ଼ିଅଛୁଁ କିନ୍ତୁ ତୁମ୍ଭେମାନେ ପଢ଼ି ଶୁଣି ପାଶ୍ଚାତ୍ୟ ସଭ୍ୟତାଭିମାନୀ ହୋଇ, ଆମ୍ଭେମାନେ ଯେଉଁ କଥା କରିବାକୁ ଘୃଣା କରୁଁ, ସେହି କଥା ସବୁ ସଭ୍ୟତା ପ୍ରକ୍ରିୟା ଦ୍ୱାରା କାଠମୁହଁ ବାନ୍ଧି, ଦଳ ଦଳ ସାଜି ସମ୍ପାଦନ କରି ଦେଉଅଛ । ଆମର କହିବା ଠାଣି ନାହିଁ, ତୁମ୍ଭମାନଙ୍କୁ ସେତକ ଆସେ ବୋଲି ତୁମ୍ଭମାନଙ୍କୁ ସବୁ ପାର ପାଉଅଛି । ଯାହାଙ୍କଠାରୁ ବିଲାତୀ ପାଣିର ଖଇରି ହାକୁଟି ଉଠୁଅଛି, ସେହିମାନେ ଦୂରରେ ମଞ୍ଚା ଉପରେ ଠିଆ ହୋଇ ଲୋକଙ୍କୁ ମାଦକ ନିବାରଣୀ ସଭାର ସଭ୍ୟ ହେବା ନିମନ୍ତେ ଆହ୍ୱାନ କରି ଦେଶ କାଳ ପାତ୍ର ସବୁ ଫଟାଉଅଛନ୍ତି । ଧନ୍ୟ ତୁମ୍ଭମାନଙ୍କର ନୈତିକ ସାହସ । ମୋ ବାବା ତୁମ୍ଭେମାନେ ଚିରଞ୍ଜୀବୀ ହୋଇ ଦେଶର ବାଇଶ ପାହାଚରେ ଗଡ଼ଗଡ଼ାଉଥାଅ । ଅନ୍ଧାରରେ ଯାଉଥାଅ, ଆଲୁଅରେ ଆସୁଥାଅ । ଆମ୍ଭେମାନେ ବସି ଦେଖି ଶୁଣି ଆମ ମରହଟୀ ଜୀବନକୁ ଚରିତାର୍ଥ କରୁଥାଉଁ ।

ଆଜି ନନାଙ୍କ ବସ୍ତାନିରୁ ଏହି କାଣ୍ଡିକ । ଅବଧାନ, ପାଠକଙ୍କ ଛାମୁ !

ଉତ୍କଳ ସାହିତ୍ୟ/୧୮ଶ ଭାଗ/୧୧ଶ ସଂଖ୍ୟା/୧୩୨୨ ସାଲ ।

## ।। ତିନି ।।

୧୫୭୦ ସାଲ ତୁଳ ମାସ- ଆମ ଓଡ଼ିଶାଟା ବିହାର ସାଙ୍ଗକୁ ଆସିବା ଦିନଠାରୁ ଆମ କପାଳରେ ଅନେକ ମାହେନ୍ଦ୍ର ଯୋଗ ଘଟୁଛି । ଆଗେ ବଡ଼ଲାଟଙ୍କ ସଭା କଥା ଦୂରେ ଥାଉ, ଛୋଟଲାଟଙ୍କ ସଭାକୁ ଓଡ଼ିଶାରୁ ଜଣେ ଲୋକ ଯାଇ ବସିବା ସକାଶେ ଯୁଗକେ ଥରେ ଅଧେ ବାରେଣୀ ପଡୁଥିଲା । ଏବେ ତିସାଲାକୁ ତିସାଲା ଜମିଦାରଙ୍କ ମଧ୍ୟରୁ ଜଣେ, ଜିଲ୍ଲା ବୋର୍ଡ଼ରୁ ଜଣେ, ମ୍ୟୁନିସିପାଲିଟିରୁ ଜଣେ ଏବଂ ଓଡ଼ିଶା ବିହାର ମୁସଲମାନମାନଙ୍କ ମଧ୍ୟରୁ ଜଣେ ଲେଖାଏଁ ଛୋଟଲାଟଙ୍କ ସଭାକୁ ଓଡ଼ିଶାରୁ ରପ୍ତାନି କରାଯିବେ । ହେଉ, ଭଲ କଥା ଓଡ଼ିଶାର କଥା ଲାଟସାହେବଙ୍କ ଦପ୍ତରରେ ଜଗିବା ପାଇଁ ଚାରି ଚାରି ଜଣ ଯିବେ, ଦେଶର ଆଉ ଭାବନା କଣ ? ଆମ ବାବୁ ଗୋପାଳ ମଧ ଏଥରକ କୌଣସି ବିଶିଷ୍ଟ ବ୍ୟକ୍ତିଙ୍କ ଅନୁଗ୍ରହରୁ ଓଡ଼ିଶାର ମ୍ୟୁନିସିପାଲିଟିମାନଙ୍କ ପକ୍ଷରୁ ଲାଟ ସଭାକୁ ଯିବେ ବୋଲି କମର କଷିବାରୁ ତାଙ୍କର ନାମ ସମ୍ବଲପୁର ମୁନିସିପାଲିଟିରେ ପ୍ରସ୍ତାବ ହୋଇ ଯାଇଥିଲା । କିନ୍ତୁ ଦେଖିଲୁଁ ଯେ, ଲାଭର ପରିମାଣଟା ଆମରି କାନ୍ଧରେ ପଡ଼ିବ । ଏଥିପାଇଁ ତାଙ୍କୁ ସେ ଚେଷ୍ଟାରୁ ବିରତ କରାଇବାକୁ ଯୋଗାଡ଼ ଲଗାଇଛୁଁ । ସେଥିପାଇଁ ତାଙ୍କୁ କେତେଗୁଡ଼ିଏ କଥା ସଫାସଫି କରି ବୁଝାଇ ଦେଇଛୁଁ । 'ନିରସ୍ତ ପାଦପେ ଦେଶେ ଏରଣ୍ଡୋଽପି ଦ୍ରୁମାୟତେ ।' ଲାଟସାହେବଙ୍କ ସଭାକୁ ଗଲେ ବାବୁଙ୍କୁ ଜଣେ ଆଠପହରିଆ ମାର୍କାମରା ଅର୍ଦ୍ଦଳି ମିଳିବ, ମୋଟା ସୋଟା ଗସ୍ତ ଖର୍ଚ୍ଚା ମିଳିବ, ଲାଟ ଦପ୍ତରରେ ଆରାମ ଚଉକି ଓ ବିଜୁଳିବତି ଓ ଝକମକି ପଙ୍ଖା ବେପରୁଆ ମିଳିବ । କିନ୍ତୁ ଏଡ଼େ ବଡ଼ ଆସନରେ ବସିବାପାଇଁ ଯେଉଁ ଯୋଗ୍ୟତା, ଶିକ୍ଷା ଓ ଉମେଦ୍‌ବାରି ଲୋଡ଼ା, ବାବୁଙ୍କର ସେଥିରୁ କେତେ କାଣିଚା ଅଛି, ବାବୁ ତାହା ଥରେ ଆଜିପର୍ଯ୍ୟନ୍ତ ଭାବି ନ ଥିଲେ । ବଡ଼ ବଡ଼ ହାକିମହୁକୁମା ଓ ସରଦାର ବିରାଦରମାନଙ୍କ ସଙ୍ଗେ ରଜଘଷଟା ବେଶି ପରିମାଣରେ ହେବ, କିନ୍ତୁ ଦେଶର ଯେତେଗୁଡ଼ିଏ ଅଭାବ ଅଛି, ସେ କଥା ଭଲା ବାବୁଜୀ କିଛି ଚୟନ କରିଛନ୍ତି ? ବାବୁ ଏହି କେତେ ବର୍ଷ ହେଲା ମାମଲତକାର ହୋଇ ଦାଣ୍ଡକୁ ବାହାରିଛନ୍ତି, ଏଥିମଧ୍ୟରୁ ବାବୁଙ୍କ ବାଡ଼ିତଳର, ବାବୁଙ୍କ ଗ୍ରାମର, ବାବୁଙ୍କ ସାଇପଡ଼ିଶାଙ୍କର, ବାବୁଙ୍କ ବନ୍ଧୁବାନ୍ଧବଙ୍କର ଯେଉଁ ଯେଉଁ ଅଭାବଗୁଡ଼ିକ ଅଛି, ସେଗୁଡ଼ିକ ଦୂର କରିବା ନିମନ୍ତେ ବାବୁ କି ଚେଷ୍ଟା କରିଛନ୍ତି ? ବାବୁ ଆଜିପର୍ଯ୍ୟନ୍ତ ଯେତେଗୁଡ଼ିଏ ଅନାହାରୀ ପଦର ମର୍ଯ୍ୟାଦା ରକ୍ଷା କରିଛନ୍ତି, ସେଗୁଡ଼ିକର କେତେଦୂର ପୂରା ସଦ୍‌ବ୍ୟବହାର କରିଛନ୍ତି ? ବାବୁଙ୍କ ହାତରେ ଭଗବାନ୍ ଆଜିଯାକେ ଛୋଟ ପାହିଆରେ ଯେଉଁସବୁ କାର୍ଯ୍ୟ କରିବାକୁ ସୁବିଧା ଦେଇଥିଲେ, ବାବୁ ସେ ସବୁ କାର୍ଯ୍ୟ କେତେଦୂର ଅଞ୍ଜାମ କରିଛନ୍ତି ? ବାବୁ ଆପଣାର କ୍ଷମତା, ଆପଣାର ବଳ, ଆପଣାର ଧନ ଓ ଆପଣାର ବୁଦ୍ଧି ଦ୍ୱାରା ଆପଣା ଘରର, ଆପଣା ପରିବାରର, ଆପଣା ଗ୍ରାମର,

ଆପଣା ବାଗବଗିଚାର, ଆପଣା ଇଲାକାର, ଆପଣା ପାଇପଡ଼ିଶାଙ୍କର, ଆପଣା ଜ୍ଞାତି କୁଟୁମ୍ବଙ୍କର କି ଉନ୍ନତି କରିଛନ୍ତି ଓ ଆପଣା ଘର ପାଖ ଗରିବଗୁରୁବାଙ୍କର ଉପକାର କରିବାଲାଗି ବାବୁଙ୍କ ଖୋଷଣି, ଗଣ୍ଡିଲି ଓ ବାକ୍ସ କେତେଥର ଫିଟିଛି ? ସୁଖର ବିଷୟ ଯେ, ଲାଟସାହେବଙ୍କ ସଭାକୁ ଯିବା ପୂର୍ବରୁ ଏ କଥା କେହି ତନଖନ୍ତି ନାହିଁ । ଯେଉଁମାନଙ୍କ ଉପରେ ଭୋଟ ଦେବାର ଭାର ଅଛି, ସେମାନେ ମଧ୍ୟ କ'ଣ ଦେଖି ଭୋଟ ଦେବେ, ଆମ୍ଭେ ଏହିଭଳି କଥା ଭାବୁଛୁଁ । ଲୋକେ ବେଳେ ବେଳେ ପାଟି ଓ ଗର୍ଜନ କରନ୍ତି ଯେ, ସରକାର ବାହାଦୁର ଆମ ଦେଶୀ ଲୋକଙ୍କୁ ଦେଶ ଶାସନ କରିବାର କ୍ଷମତା ଦେଉ ନାହାନ୍ତି । ଦେଶକୁ ସମ୍ଭାଳିବାର କ୍ଷମତା ଆମ ବାବୁମାନଙ୍କର ହେଲାଣିଟି ? ଏହି ଦେଖୁଥାଇଁ, ମୁନିସିପାଲିଟି । ବାବୁମାନଙ୍କ ଭଳି ଦେଶ ବିଦେଶର ମୁନିସିପାଲିଟିର ଖବର ଆମକୁ ଅବଶ୍ୟ ଜଣା ନାହିଁ । ଆମରି ଦାଣ୍ଡ ଦୁଆର ମୁହଁରେ ମୁନିସିପାଲିଟି କମିସନର ଭୋଟ କଥା ଯାହା ଦେଖିଛୁଁ, ସେଥିରୁ ଏତିକି ବୁଝିପାରୁଛୁଁ ଯେ, ମୁନିସିପାଲିଟିରେ କରଦାତାଙ୍କ ପ୍ରତିନିଧି ହେବାର ଯୋଗ୍ୟତା ପ୍ରାର୍ଥୀମାନଙ୍କ ବାକ୍ସ ଭିତରେ ପୋଟଳା ବନ୍ଧା ହୋଇ ରହିଛି । ଯାହା ପୋଟଳାଟା ବଡ଼, ତାହାର ଯୋଗ୍ୟତା ବେଶି । ଏହାକୁ କହୁଛ 'ସ୍ୱାୟତ୍ତ-ଶାସନ' ! ସରକାର ସବୁ କଥା ତାଙ୍କ ଆୟତ୍ତରେ ରଖିଛନ୍ତି ବୋଲି ରକ୍ଷା ଅଛି । ନଚେତ୍ ତୁମ୍ଭମାନଙ୍କ ହାତରେ ଛାଡ଼ି ଦେଇଥିଲେ ତୁମ୍ଭେମାନେ ଠାକୁରଙ୍କ ପର୍ଯ୍ୟନ୍ତ ଚଳୁ କରିବାକୁ ଡରୁ ନ ଥାନ୍ତ । ଯେ ଏତେ ପରିଶ୍ରମ କରି ବାକ୍ସକୁ ଝାଡ଼ିଝୁଡ଼ି କରି କମିଶନର ହେଲେ, ସେ ତ ଫେର ତାହାର ଖେସରା ଆଦାୟ କରିବେ ? ଭୋଟ ସଂଗ୍ରହ ନିମନ୍ତେ ଏତେ ମହଣ ପୁରୀ, ଲଡୁ, ଏତେ ବୋତଲ ବିଲାତୀ ପାଣି, ଏତେ ଟଙ୍କା ନଗଦ ଦକ୍ଷିଣା, ଏତେ ଖଣ୍ଡ ଭଡ଼ା ଗାଡ଼ି, ଏ ସବୁ ଲୋଡ଼ା । ଏଥିରେ ଶିକ୍ଷା, ସଭ୍ୟତା, ଯୋଗ୍ୟତା, ଏଗୁଡ଼ାକ କେଉଁ ଚୁଲିକୁ ଗଲା ? ତେବେ ଦେଶ ପାଇଁ ନ ଖାଇ ନ ପିଇ ଖଟିବା ନିମନ୍ତେ 'ସ୍ୱାର୍ଥତ୍ୟାଗ' ଅର୍ଥାତ୍ ନିଜର ଅର୍ଥ କିଛି ଶ୍ରାଦ୍ଧ ନ କଲେ ଦେଶ ଭିତରେ ଜଣେ ମୁଖିଆ ବୋଲି ସୁମାରି ହୋଇପାରିବ ନାହିଁ, ଏ କଥାଟା ଠିକ୍ । ଏଇଥିପାଇଁ ଜଣେ ମରହଟ୍ଟିଆ ଆମଭଳିଆ ବୁଢ଼ା କହିଥିଲେ, ''ଘରୁ ଖାଇ ପର କାମ କିଏ କରେ ବାପା ।'' ଆମେ ମରହଟ୍ଟିଆଯାକ ଜାଣୁଥିଲୁଁ, ''ଆଲୋ ମଉସା ! ଜଡ଼ ପଇସା ।'' ତୁମ୍ଭେମାନେ ପଢ଼ି ଶୁଣି, ଦାଣ୍ଡକୁ ବାହାରି, ମଞ୍ଚା ଉପରେ ଠିଆ ହୋଇ, ଜ୍ଞାନାଲୋକରେ ଆଲୋକିତ ହୋଇ ସେହିତା କୁହାଟ ମାଇଲ ! ତୁମର ଆମର ପ୍ରଭେଦ ରହିଲା କେଉଁଠାରେ ? ତେବେ ପ୍ରଭେଦ ଏତିକି ଯେ, ଆମ ବାପ ମା ଆମକୁ କୁଣ୍ଡା ଦେଇ ପାଠ ପଢ଼ାଇଥିଲେ, କିନ୍ତୁ ତୁମ୍ଭମାନଙ୍କୁ ପଢ଼ାଇବା ନିମନ୍ତେ ସିଲେବସ, କିଣ୍ଡରଗାର୍ଟେନ, ରୁଟିନ, ଡ୍ରିଲ, ଜିବନଷ୍ଟି *, ଏ ସବୁ ଦରକାର ହେଲା !

ଆଜି ନନାଙ୍କ ବସ୍ତାନି ଏହିଠାରେ ସମାପ୍ତ ।

ଉତ୍କଳ ସାହିତ୍ୟ/୧୮ଶ ଭାଗ/୧୨ଶ ସଂଖ୍ୟା/୧୩୨୨ ସାଲ ।

## ।। ଚାରି ।।

ପାଠକ ଅବଧାନମାନଙ୍କୁ ଜଣାଇଛନ୍ତି ଯେ, ନନାଙ୍କ ବସ୍ତାନିଟା ମୋର ଷୋଳପଣ ଅବିଭକ୍ତ ହିଂସାରେ ପଡ଼ିଅଛି ଏବଂ ବର୍ତ୍ତମାନ ସେଥିରେ ପୂର୍ଣ୍ଣ ଅଧିକାର ଖୋଦ ଲେଖକର । କିନ୍ତୁ ତାହା ବୋଲି ଯେ ଯେତେବେଳେ ମନ ହେବ, ସେତେବେଳେ ବସ୍ତାନିରୁ ବିଡ଼ାଏ ଆଣି ପାଠକମାନଙ୍କ ସାମନାରେ ଥୋଇଦେବି, ମୋର ଏପରି ତାକତ ନାହିଁ । ମନେକରନ୍ତୁ, ମୋର ଗୋଟିଏ ପୋଖରୀ ଅଛି, ସେଥିରେ ବଡ଼ ଠାରୁ ସାନ ପର୍ଯ୍ୟନ୍ତ, ଭାକୁଡ଼ ଚିତଳଠାରୁ ଗେଣ୍ଡା କୋଚିଆ ପର୍ଯ୍ୟନ୍ତ ସବୁ ପ୍ରକାରର ଖାଦ୍ୟାଖାଦ୍ୟ ଜୀବ ଅଛନ୍ତି । ଆପଣ ଆସି ମତେ ଅନୁସରଣ କଲେ ଓ ମୁଁ ଆପଣଙ୍କ ପ୍ରାର୍ଥନା ଅନୁସାରେ ସେ ପୋଖରୀରୁ ଗୋଟିଏ ବଡ଼ ମାଛ ନେବାକୁ ଆପଣଙ୍କୁ ହୁକୁମ କଲି । ପୋଖରୀଟା ମୋର ଷୋଳପଣ ସମ୍ପତ୍ତି, ସେଥିରେ ମୋ ବିନା କାହାରି ମାନ, ମୁଯାହେମ, ବଳାତ୍କାର, କୁଶିକ୍ଷାରେ ଓ ନିର୍ବିରୋଧରେ ମାଲିକ ଦଖଲକାର ଓ ମାଲଗୁଜାରଦାର ଅଛି; ଏପରି ସ୍ଥଳରେ ସେ ପୋଖରୀରେ ଯେତକ ମାଛ ଅଛନ୍ତି, ତାକୁ ମୁଁ ଯାହା ଚାହିଁବି ତାହା କରି ପାରିବି । ଅତଏବ ଯେତେବେଳେ ମୁଁ ଆପଣଙ୍କୁ ମାଛଟିଏ ହୁକୁମ ଦେଲି, ଆପଣ ମନେ ମନେ ହେଣ୍ଡିଟାଏ ମାଇଲେ ଯେ ମାଛଟି ଆପଣଙ୍କର ହସ୍ତଗତ ହେଲା ! କିନ୍ତୁ ତାହା ଆପଣଙ୍କର ବାତୁଳତା । କାରଣ ମାଛଟିଏ ପୋଖରୀରୁ ଧରିବାପାଇଁ ଜାଲିଆ ଦରକାର, ଜାଲ ଦରକାର, ଜାଲିଆଙ୍କ ପାଇଁ ଟୋପାଏ ମଥାବହି ** ଦରକାର, ସୋଲଟିପେଇ ଦରକାର, ଇତ୍ୟାଦି, ଇତ୍ୟାଦି । ଏ ସବୁ ଉପାଦାନ ସଜିଲ ହେଲେ ମଧ ଆପଣଙ୍କ ବରାଦ ଓ ଅଭାବକୁ ଚାହିଁ ଉପଯୁକ୍ତ ମାଛଟିଏ ଯେ ଜାଲରେ ପଡ଼ିଯିବ, ତାହା କିଏ 'ଗାରାଣ୍ଟି' ଦେବ ? ମାଛ କୌଣସି ଖାଲ ବା ବିବରରେ ଛାପି ଯାଇପାରେ କିମ୍ବା ଜାଲ ଚିରି ବୁ ଦେଇପାରେ କିମ୍ବା ଜାଲରୁ ମାଙ୍କଡ଼ଚିଟିଟାଏ ମାରି ଚିତାକାଟି ଦେଇପାରେ । ଜାଲ ଆଣି କୂଳରେ ଲଗାଇ ଉଣ୍ଡାଳିଲା ବେଳକୁ ଆପଣଙ୍କ କାର୍ଯ୍ୟ ନିମନ୍ତେ ଯୋଗ୍ୟ ମାଛଙ୍କ ଜାତି ସୁଦ୍ଧା ଜାଲରେ ନଦାରଦ । ଆଚ୍ଛା, ଧରିନିଅନ୍ତୁ ଯେ ଆପଣଙ୍କ କର୍ମ ଜୋରକୁ ଆପଣଙ୍କ ମନକୁ ଚାହିଁ ମାଛଟିଏ ହାବୁଡ଼ିଲା । କିନ୍ତୁ ଜଳଚର ଜୀବକୁ ଉଦରଚର ନିର୍ଜୀବରେ ପରିଣତ କରିବାକୁ ଅର୍ଥାତ୍ ମହୁର, ବେସର, ପଲଉ, କାଳିଆ, ଚଡ଼ଚଡ଼ି, ଛେଞ୍ଚଡ଼ା, ଝୁରା ଆଦି କରିବା ନିମନ୍ତେ ରାମ ଶତପଥୀ ବବୁରଚି ଖୋଦ ତେଲ, ଲୁଣ, ଘିଅ, ମସଲା ଓ ତହିଁ ସାଙ୍ଗକୁ ଅନ୍ୟାନ୍ୟ ବହେ ସରଞ୍ଜାମ ଦରକାର । ଏଗୁଡ଼ିକ ଯୋଗାଡ଼ ନ କଲେ ସବୁ ଭଣ୍ଡୁର । ଏହି କଥାଟା ସମ୍ପାଦକ ଅବଧାନଙ୍କ ଛାମୁରେ କେତେଥର ନିବେଦନ କଲେ ସୁଦ୍ଧା ସେ ମହାଶୟ ଏତକ ପକଡ଼ି ପାରୁ ନାହାନ୍ତି ! ସମୟ ଅସମୟ ନାହିଁ, ସ୍ଥାନ

* ଜିମ୍‌ନାଷ୍ଟି ** ତେଲ

ଅସ୍ଥାନ ନାହିଁ, ସୁବିଧା ଅସୁବିଧା ନାହିଁ, ଅଭାବ ଅଭିଯୋଗ ନାହିଁ, ସବୁବେଳେ ମୋ ସଙ୍ଗେ ଜୁଲମ ''କି ହୋ ! ନନାଙ୍କ ବସ୍ତାନି ତ ଘରେ ଥୁଆ ହୋଇଛି, ସେଥିରୁ ବିଡ଼ାଏ ବାହାର କରି ଥୋଇଦେବ; ଏଥିପାଇଁ ଏତେ ଡେରି କିଆଁ ?'' ନନାଙ୍କ ବସ୍ତାନି ସିନା ଥୁଆ ହୋଇଛି- କିନ୍ତୁ ତାକୁ ଆମ ଗହକିଙ୍କ ଲାଖି କରିବାପାଇଁ ଯେଉଁ କସରତ ଓ ଛାପଚିକଣ କରିବା ଦରକାର, ସେତକ ନ କଲେ କିପରି ଆଣି ଅତଣ୍ଟା ଓ ଅବଘରା କରି ପାଠକମାନଙ୍କ ଆଗରେ ଥୋଇଦେବି ? ସମ୍ପାଦକ ମହାଶୟ ଏତକ ବୁଝିପାରିଲେ ମଣିଷ ଏତେ କୈଫିୟତ୍ ଦେବାରୁ ରକ୍ଷା ପାଇଥାନ୍ତା । ସମ୍ପାଦକଙ୍କ ମନ ବୋଧ କରିବା ନିମନ୍ତେ ଆଜି ନନାଙ୍କ ବସ୍ତାନିରୁ ପୁଡ଼ାଏ ତାଙ୍କୁ ଉପହାର ଦେଉଅଛି, ଏଥିରୁ ସମ୍ପାଦକ ଓ ପାଠକମାନେ ଦେଖିପାରିବେ ଯେ, ନନାଙ୍କ ବସ୍ତାନି ଭଳିଆ ଗ୍ରନ୍ଥ ପାଇଁ ଖୋଦ ଲେଖକ ଭଳିଆ ମଲ୍ଲୀନାଥ ନ ହେଲେ ଚଳିବ ନାହିଁ ।

ଉଦାହରଣ ଦେଖିବା ହୁଅନ୍ତୁ- ନନାଙ୍କ ବସ୍ତାନିର ଗୋଟିଏ ପୁଡ଼ାରେ ନିମ୍ନଲିଖିତ ଭାବରେ ଟିପା ଅଛି-

ସତ୍ତ୍ୱାସତ୍ତ୍ୱେ ନମ୍ବର ମକଦମା, ଓକିଲବାବୁ ନରେନ୍ଦ୍ର ସରକାରଙ୍କ ସଙ୍ଗେ ପରାମର୍ଶ କରାଯିବ ।

ମାମଲାର ଖସଡ଼ା

ଘରକରଣା, ଛାପଚିକଣିଆ, ଘଣୁଆ, ଥାନି, ଭଦ୍ରଲୋକ, ବାଲବଚ୍ଚା, ଧନଜନ ଗୋପଲକ୍ଷ୍ମୀ ଭରପୂର । ମାଗୁଣି ସାମଲ । ସାଃ ଆମ ଗ୍ରାମ । ବୟସଃ କଳିଷଠାରୁ ଆଠପଣିଆ; ଜାତିଃ ପାଣ, ପେସାଃ ଜମିବାଡ଼ି, ଘୋଡ଼ା ଓ ଗାଡ଼ି-ବାଦୀ ।

ବନାମ୍

ଜୀବତ୍‌ପିତୃକା, ମୃତମାତୃକା, ସ୍ୱାଧୀନଭର୍ତ୍ତୃକା, ମୃତବତ୍ସିକା, ବେଛପରି ପାହି ଜନାନା, ପାର ଓରଫ ପାର୍ବତ୍ୟ (ମୂଷମାଦ୍ ନୁହନ୍ତି କି ବେଓଆ ନୁହନ୍ତି) ବାଲବଚ୍ଚା ଧନଜନ ଗୋପଲକ୍ଷ୍ମୀ ସବୁ ଖଲାସ ଓ ଯୋଖାଯୋଖି । ସାଃ ଜଣା ନାହିଁ, ଯେଉଁଠାରେ ଥାଆନ୍ତି ସେହିଠାରେ । ବୟସ- ଆଜକୁ ୧୫ ବରଷ ହେଲା ଏକାଭଳି ମାଲୁମ, ଜାତି - ନିର୍ବଳୁଆ ମାଇପିଜାତି, ପେସା- ଈଶ୍ୱର ସାମଲଙ୍କ ଗୃହର ବାହାର କର୍ମ, ଚମଡ଼ା ବେପାର, ହାଟରେ ଟୋକେଇ, ମାଣ, ପେଟରା ବିକ୍ରି- ଅସଲ ପ୍ରତିବାଦିନୀ ।

ଏହାଛଡ଼ା ମୁକାବିଲା ପ୍ରତିବାଦୀ ଶ୍ରେଣୀରେ ବୁଢ଼ା, ଦରବୁଢ଼ା, ଅଧାଡୁଆ, ଅନ୍ଧାରକଣା, ନାଟବଇଠିଆ, ଖୁରକଟୁରିଆ, କଅଁଳମାଧିଆ, ନଇପୋଖରିଆ, ଚଇତନଚୁରିକିଆ, ଚେଙ୍ଗଁଶୁଆ, ଚିତାପଇତିଆ, ପାଠଶାଠୁଆ, ଓଥରା, ଅଭିଆଡ଼ୀ, ଏହିପରି କେତେଜଣ ବଛା ବଛା ପାଣ ଈଶ୍ୱର ସାମଲଙ୍କ ଜାତିଭାଇଙ୍କୁ ଓ ପାର୍ବତୀଙ୍କର

ପୋଷ୍ୟପିତା ଈଶ୍ୱର ସାମଲ । ସା : ବମ୍ଭୁରିଙ୍କୁ । ଏମାନେ ସରିକଦାର ବା ସହାଧ୍ୟାୟୀ ନୁହନ୍ତି । ଏମାନେ ଈଶ୍ୱର ସାମଲଙ୍କ ଜାତିଭାଇ ଥାଇ ତାଙ୍କୁ କୁପରାମର୍ଶ ଦେଉଥିବାର ଅନୁମାନ ହେବାରୁ ସେମାନଙ୍କୁ ମୁକାବିଲା ପ୍ରତିବାଦୀ ଶ୍ରେଣୀଭୁକ୍ତ କରାଯିବ ଓ ଡିଗ୍ରୀଜାରି ସମୟେ ଏମାନଙ୍କ ଉପରେ ଲୁଟିସ ଜାରି କରାଯାଇ ଖାସ ଦଖଲ ନିଆଯିବ ।

ମାମଲାର ଖୋଲାସା - ବାଦୀ ପ୍ରତିବାଦୀଙ୍କ ସଙ୍ଗେ ମୁକାବିଲା, ପ୍ରତିବାଦୀମାନଙ୍କ ଉପସ୍ଥିତି ଓ ଜ୍ଞାତସାରରେ କରିଥିବା ପ୍ରାଜାପତ୍ୟ ସମ୍ବନ୍ଧ ବିଷୟକ ଚୁକ୍ତି ପ୍ରତିବାଦୀ ଭଙ୍ଗ କରିଥିବାରୁ ବାଦୀ ପ୍ରତିବାଦିନୀଠାରୁ କ୍ଷତିପୂରଣ ଓ ସାନ ବିବାହର ଖରଚ ପାଇବା ନିମନ୍ତେ ବାଦୀଙ୍କର ସ୍ୱତ୍ୱ ଥିବାର ପ୍ରଚାର କରାଯିବା କିମ୍ବା ଅଦାଲତ ଯେବେ ସିଦ୍ଧାନ୍ତ କରନ୍ତି ଯେ ଉପରୋକ୍ତ ପ୍ରାଜାପତ୍ୟ ସମ୍ବନ୍ଧ ହଜୁର ଇଲାକାଧୀନରେ ପ୍ରତିଷ୍ଠିତ ନ ହୋଇ ଅନ୍ୟ ଅଦାଲତଙ୍କ ଅଧୀନରେ ସମ୍ପୂର୍ଣ୍ଣ ହୋଇ ଯାଇଅଛି, ତାହାହେଲେ ଯେଉଁ ଧର୍ମ ଓ ସମ୍ପ୍ରଦାୟର ଆଇନ ଅନୁସାରେ ତାହା ହୋଇଅଛି ସେହି ଧର୍ମ ଅନୁସାରେ ବାଦୀଙ୍କ ସଙ୍ଗେ ପ୍ରତିବାଦିନୀ ଦିବାନିଶି ୮ ପ୍ରହର ମଧ୍ୟରୁ ନିତାନ୍ତ ପକ୍ଷରେ ପ୍ରହର ବାସ କରିବା ନିମନ୍ତେ ଆଦେଶ ପ୍ରଚାର ହେବା ବାଦୀଙ୍କର ସ୍ୱତ୍ୱ ଥିବାର ସାବ୍ୟସ୍ତ କରାଯିବ । ମକଦମା-

ନାଲିସର କାରଣ- ବାଦୀ ଓ ପ୍ରତିବାଦୀ, ଏକତ୍ରାବସ୍ଥାନ ସମୟେ ବାଦୀ ଓ ପ୍ରତିବାଦୀଙ୍କ ମଧ୍ୟରେ ମୁକାବିଲା, ବିବାଦୀମାନଙ୍କ ମୁକାବିଲା ଓ ଜ୍ଞାତସାରରେ ହୋଇଥିବା ଗରରେଜିଷ୍ଟରି ଚୁକ୍ତି ଓ ପ୍ରଜାପତି ବନ୍ଧନର ତାରିଖ ସ୍ମରଣ ନାହିଁ, ଉକୁସ୍ଥାନ ସ୍ମରଣ ନାହିଁ ।

ପାଠକ ଅବଧାନ,

ଆମ ବାପା ଏତକ ଟିପି ଯାଇଅଛନ୍ତି, ସେ ବର୍ତ୍ତମାନ ଦେଶାନ୍ତରକୁ ଛୁ । ଆପଣମାନେ ମଲ୍ଲୀନାଥଙ୍କ ବିନା ସାହାଯ୍ୟରେ ଏ ମାମଲାର ଖସଡ଼ାରୁ କିଛି ବୁଝିପାରିବେ ନାହିଁ । ଏଥିପାଇଁ କହୁଥିଲି ଯେ, ବାପାଙ୍କ ବସ୍ତାନିରେ ଯାହା ଲେଖାଅଛି, ତାହା ଆଣି ବଜନିସ ଥୋଇଦେଲେ ସେଥିରେ ଆପଣମାନଙ୍କର ଦନ୍ତସ୍ଫୁଟ ହେବ ନାହିଁ । ସେଥିପାଇଁ ସେଗୁଡ଼ିକ ଠିକଣା କରି, ସରଜମିନ ତଦନ୍ତ, ବାଉଣ୍ଡରି, ହଲପାନ, ଇଜହାର ଆଦି ସଂଗ୍ରହ କରି ଲେଖକ କଥାଟା ଉତ୍ତମରୂପେ ବୁଝି ଆପଣମାନଙ୍କ ଆଗରେ ଥୋଇଦେଲେ ଆପଣମାନେ ପାଣି ପରି ମାଡ଼ିଯିବେ । ଏଥିପାଇଁ ଲେଖକ ଗ୍ରାମକୁ ଯାଇ ଅନୁସନ୍ଧାନ କରି ଏ ମାମଲାର ସବିଶେଷ ହାଲ ସଂଗ୍ରହ କରିବାରେ ବିଳମ୍ବ ଘଟିଲା ।

ଆମ ଗ୍ରାମରେ ମାଗୁଣିଆ ପାଣର କିଛି ଭୂ ସମ୍ପତ୍ତି ଅଛି ଓ ସେ ବେଳକାଳ ଉଣ୍ଡି ଘୋଡ଼ାଗାଡ଼ିରେ ସହିସଗିରି କାମ କରେ । ଧାନ ମୁଠିଏ ଅଛି, ସୁରୁଖୁରୁରେ ଚଳେ ।

ତାର ପ୍ରଥମ ବିବାହର ସ୍ତ୍ରୀ ବର୍ତ୍ତମାନ ଜୀବିତା ଓ ତା ଗର୍ଭରେ ପିଲାପିଲି ଦୁଇ ତିନୋଟି ଅଛନ୍ତି । ଆମ ଗ୍ରାମରେ ତାର ସାତପୁରୁଷି ଘର । ମାଗୁଣି ସାମଲଙ୍କଠାରେ ଟିକିଏ ରସିକତା ମଧ୍ୟ ଅଛି । କିଛି ଟଙ୍କାକଉଡ଼ି କାରବାର କରେ, ଅନ୍ୟ ଗାଁରେ କିଛି ଜମିବାଡ଼ି ଖରିଦ କରିଅଛି, ଚମଡ଼ା ବେପାର ମଧ୍ୟ ଅଛି । ସେ ଏ ମକଦମାର ବାଦୀ । ମାଗୁଣିଙ୍କର ବର୍ତ୍ତମାନ ବୟସ ୫୫ ବରଷ ।

ଦିନାକେତେ ତାଙ୍କ ଘରଆଡ଼ଙ୍କ ସଙ୍ଗେ ମାଗୁଣିଙ୍କର ବନିବନାଉ ନ ହେବାରୁ ମାଗୁଣି ଯାଇ ଅନ୍ୟ ଗ୍ରାମ ବମ୍ଫୁରିରେ ଥିବା ଖମାର ଘରେ ଦିନାକେତେ ରହଣି କଲେ । ସେହି ଗ୍ରାମରେ ଈଶ୍ୱର ସାମଲ ବୋଲି ଜଣେ ନିଃସନ୍ତାନ ପାଣ ଅଛି । ତାର ସ୍ତ୍ରୀ ବହୁଦିନରୁ ଖତମ, ସେ ବହୁକାଳ ହେଲା ନାଉଆରସୀ ମାଇପିଲାଟିଏ ବାଟରୁ ପାଇ ତାକୁ ପାଳି ବଡ଼ କରିଅଛି । ସେ ପିଲାଟି ବହୁତ ଗୁଣର ଓ ପାଣଘରର ବାହାର କାମରେ (କତା ବାଡ଼ିଆ, ପେଟରା ସିଆଁ, ପେଡ଼ି ବୁଣା, ଢୋଲ ଭିଡ଼ା) ଭାରି ମଜବୁତ । ଈଶ୍ୱର କହେ ଯେ, ସେହି ପିଲାଟିକୁ ଚାହିଁ ତା ଦିନ ଯିବ । ଈଶ୍ୱର ଗେଲବସରରେ ସେ ପିଲାଟାର ନାମ 'ପାର' ଦେଇଅଛି । ପାରଟି 'ଦେଖିବାକୁ ଟିକିଏ ଫରଚା ରଙ୍ଗର । ଅର୍ଥାତ୍ ଯେଉଁ ରଙ୍ଗଟା ସବୁଦିନେ ପାଣସାହିରେ ମିଳେ ନାହିଁ । କିନ୍ତୁ ଗେଲବସରରେ ବଢ଼ିଥିବାରୁ ଓ ପୋଷିଆ ବାପର ଆଦରର ଧନ ଥିବାରୁ ସେ ଟିକିଏ ଉପରମୁହାଁ । ପିଲାଟିକୁ ଈଶ୍ୱର ସାମଲ କେବେ ଆଣିଲେ, କେଉଁଠାରୁ ଆଣିଲେ, କି ଭାବରେ ଆଣିଲେ, ତାହା କେହି ଦେଖି ନାହାନ୍ତି । କିନ୍ତୁ ଗତ ୧୫ ବର୍ଷ ମଧ୍ୟରେ ଯେ ସେ ପିଲାଟିକୁ ଦେଖିଛି, ସେ ଦେଖୁଛି, ତାହାର ବଳବୟସ କିଛି ବଦଳି ନାହିଁ । ଈଶ୍ୱର ଅତି ସ୍ନେହରେ ସେ ପିଲାଟିକୁ ବିଭା ଦେଇ ନାହିଁ- କେହି ପଚାରିଲେ ଈଶ୍ୱର କହେ, ହାଡ଼ ମାଉଁସର ନିତାନ୍ତ ପିଲାଟାଏ, ଇଲାଗେ କଅଣ ବିଭା ହେବ ? ଯାଉ ଆଉ ଦିନାକେତେ । ଏହିପରି କରି ଈଶ୍ୱର ତାକୁ ୧୫ ବରଷ ହେଲା କୁମାରୀ କରି ଘରେ ରଖିଅଛନ୍ତି ଏବଂ ଈଶ୍ୱରଙ୍କ ଘର କାମଠାରୁ ବାହାର କାମ ପର୍ଯ୍ୟନ୍ତ ସବୁ ପାର୍ବତୀ ଚଳାଉ ଅଛନ୍ତି । ଆହୁରି ମଧ୍ୟ ଈଶ୍ୱର ସ୍ତ୍ରୀ ହୀନ ଥିବାରୁ ପାର୍ବତୀ ତାଙ୍କ ପେଟ (ରୁଷେଇବାସ) ଓ ପିଠି (ଆଉଁଶାଘଷା) ଖବର ବୁଝନ୍ତି । ଏଥିପାଇଁ ଈଶ୍ୱର ପାର୍ବତୀକୁ ଛାଡ଼ିଦେବାକୁ ନିତାନ୍ତ ନାରାଜ ଓ ଆନ୍ତରିକ ଇଚ୍ଛା ଯେ, ସୁବିଧା ହେଲେ ଗୋଟିଏ ଘରଜ୍ୱାଇଁ କରିବେ ।

ଇତ୍ୟବସରରେ ମାଗୁଣିଙ୍କର ଦାମ୍ପତ୍ୟ କଳହଜନିତ ଗ୍ରାମତ୍ୟାଗ ସମୟରେ ମାଗୁଣି ବମ୍ଫୁରିଠାରେ ଥିବା ସମୟରେ ପାର୍ବତୀଙ୍କର ଦିଗନ୍ତ ବିସ୍ତାରିତ ଯଶୋରାଶି ମାଗୁଣିଙ୍କ କର୍ଣ୍ଣ କୁହରକୁ ଡୁମ୍ବିଥିଲା । ଦିନେ ମାଗୁଣି କୁଶକଣ୍ଟା ହାଟଠାକୁ ଯାଇଥିଲେ । ସେହିଠାକୁ ପାର୍ବତୀ ବେତ ଟୋକେଇ ବିକ୍ରି କରିବାକୁ ଯାଇଥିଲେ । ମାହେନ୍ଦ୍ର ଯୋଗରେ ମାଗୁଣି

ପାର୍ବତୀଙ୍କର ଚାରି ଚକ୍ଷୁ ହୋଇଗଲା ଓ ସେହିଦିନଠାରୁ ହାଟପାଳିକୁ ହାଟପାଳି ଉଭୟେ ହାଟଠାକୁ ଯିବାକୁ ଲାଗିଲେ । ସମୟ ସମୟରେ ପାର୍ବତୀଙ୍କ ସଙ୍ଗେ ଈଶ୍ୱର ମଧ୍ୟ ହାଟକୁ ଯାଇଥାନ୍ତି ଓ ଈଶ୍ୱରଙ୍କର ମନକୁ ଆଖି ବୁଜି ହୋଇଯାଏ କି ଈଶ୍ୱର ଚେଇଁ ଶୋଇ ପଡ଼ନ୍ତି । ଇତ୍ୟବସରରେ ମାଗୁଣି ଆସି ପହଞ୍ଚିଯାନ୍ତି ଓ ଦୁହେଁ ବିଶ୍ରମ୍ଭାଳାପ କରି ହାଟରେ କନ୍ୟା ଦେଖା ବାଇଗଣ ବିକା ଉଭୟ କାର୍ଯ୍ୟ ହୋଇଯାଏ । ଦିନାକେତେ ପରେ ପାର ଓ ମାଗୁଣି ଉଭୟେ ଅଦୃଶ୍ୟ ହେଲେ, କେହି କେହି କହିଲେ ଯେ କୁଲି ଡିପୋବାଲାଙ୍କ କୁହୁକରେ ପଡ଼ି ପାର ମାଗୁଣି ଦୁହେଁ କଳାପାଣି ପାର ହୋଇ ଚାଲି ଯାଇଅଛନ୍ତି । କେହି କହିଲେ ଯେ ସେ ଦୁହେଁ ଦେଶାନ୍ତରରେ ବିବାହ ହୋଇ ଦ୍ୱିତୀୟ ସଂସାର ଆରମ୍ଭ କରିଅଛନ୍ତି । ଏହିପରି ୫/୭ ମାସ ପରେ ଫେର ପାର ଓ ମାଗୁଣି ସ୍ୱଦେଶରେ ଉପସ୍ଥିତ । ପାରଙ୍କୁ ଈଶ୍ୱର ଛାଡ଼ି ଦେବାକୁ ନାରାଜ; ଏଣେ ମାଗୁଣି ଆସି ଆମ ନନାଙ୍କ ନିକଟରେ ଫେରାଦ ହେଲେ । ମାଗୁଣିଙ୍କର ଇଜାହାର ଏହି କି, ତାଙ୍କର ଓ ପାର୍ବତୀଙ୍କର ଦେଶାନ୍ତରରେ ପ୍ରାଜାପତ୍ୟ କାମ ସମାପନ ହୋଇଅଛି । ପାର ପିତାଙ୍କ ମାୟା ଛାଡ଼ି ପାରୁ ନାହାନ୍ତି, ଏଣେ ମାଗୁଣିଙ୍କ ସମ୍ପତ୍ତି କୁହୁକଲଡୁ ପ୍ରତି ଲାଳସା ଅଛି । ତା ଉପରେ ମାଗୁଣିଙ୍କ ପ୍ରଥମ ସଂସାର ସବସ୍ଥା ଧେନୁ ପାର୍ବତୀଙ୍କ ପ୍ରତିଦ୍ୱନ୍ଦ୍ୱୀରୂପେ ନନାଙ୍କ ଆଗରେ ଫେରାଦ । ମାଗୁଣି ଆମର ଜମିଦାରିର ଥାନି ପ୍ରଜା- ଈଶ୍ୱର ଅବଶ୍ୟ ବାହାର ଗାଁର, କେବଳ ସମୟ ସମୟରେ ଆମ ଗ୍ରାମକୁ ଚମଡ଼ା ବେପାର ଉପଲକ୍ଷେ ଆସନ୍ତି । ମାଗୁଣି କହନ୍ତି ଯେ ତାଙ୍କର ସଂସାର ଉଚ୍ଛନ୍ନ ହେଉ ପଛେ, ସେ ପାରଙ୍କର ସ୍ନେହ ଓ ପ୍ରେମର ମାୟା ଏଡ଼ାଇପାରିବେ ନାହିଁ । ନନା କହିଲେ ଯେ ପାଣ ସଂସାରରେ ଡବଲ ପ୍ରାଜାପତ୍ୟ ଚଳେ । ଏପରି ସ୍ଥଳରେ କଥାଟା ତୁଟିଯାଉ । କିନ୍ତୁ ମାଗୁଣିଙ୍କ ମା ଏଥିରେ ନାରାଜ; ପାର ଘରେ ଗୋଡ଼ ପକାଇଲେ ବୁଢ଼ୀ ଘରଦ୍ୱାର ଛାଡ଼ି ଅନ୍ୟ ସ୍ଥାନକୁ ଚାଲିଯିବ ବୋଲି ଡରାଉଅଛି । ଏ ସବୁ ଘର କଥା, ଭଲା କୌଣସି ପ୍ରକାରେ ସମ୍ଭଳାସମ୍ଭଳି ହୋଇପାରନ୍ତା; କିନ୍ତୁ ଈଶ୍ୱର ପାରକୁ ଆପଣା ପାଖରୁ ଛାଡ଼ି ଦେବାକୁ ନିତାନ୍ତ ନାରାଜ- ଏପରିକି ମାଗୁଣିକୁ ଖଞ୍ଜାଖାଞ୍ଜରେ ଭେଟିଲେ ଈଶ୍ୱର ଆପଣା ଆର୍ଥିକ ଅବସ୍ଥା ଭଲ କରିନେବେ ବୋଲି ଆଶା ବାନ୍ଧି ଠେଙ୍ଗାଟିଏ ପକାଇ ଜଗିଅଛନ୍ତି । ଈଶ୍ୱରଙ୍କ ଜାତିଭାଇମାନେ ସମସ୍ତେ ଈଶ୍ୱରଙ୍କ ପକ୍ଷରେ ଅଛନ୍ତି । ଏଣେ ଜମିଦାରଙ୍କ ବେଠି କାମରେ ଈଶ୍ୱର ଘରୁ ବାହାରି ଗଲେ, ମାଗୁଣି ଆସି ଟିକିଏ ମୁହଁମାରି ଦେଇ ଯାନ୍ତି ଏବଂ ପାର୍ବତୀ ହାଟକୁ ଟୋକେଇ ବିକି ଯିବାକୁ ଗଲାବେଳେ ବାଟରେ ମାଗୁଣିଙ୍କ ଖମାର ଘରର ଛାୟାତଳେ ଦଣ୍ଡେ ଘଡ଼ିଏ ବିଶ୍ରାମି ଯାନ୍ତି । ଏ ସବୁ କଥା ଦେଖି ପାର୍ବତୀ ପ୍ରାପ୍ତି ସକାଶେ ନନା ମାଗୁଣିଙ୍କୁ ସ୍ୱ ସ୍ୱ ମକଦ୍ଦମା ଦାଏର କରିବା ନିମନ୍ତେ ଉପଦେଶ ଦେଇଥିଲେ ଓ ସେହି ଉପଦେଶର ଫଳ ନନାଙ୍କ ବସ୍ତାନିରେ ବାହାରିବା ଚିଠା । ଏତେଗୁଡ଼ିଏ ପ୍ରଶ୍ନ, ପାଶ୍ଚାତ୍ୟ, ସାମାଜିକ ଓ ପ୍ରାଜାପତ୍ୟ ତଥ୍ୟ ନିର୍ଣ୍ଣୟ କଲେ

ନନାଙ୍କ ବସ୍ତାନିରୁ ପୁଡ଼ାଏ ଲେଖାଏଁ ଅର୍ଥ ବିଶଦ ଭାବରେ ଜଣାପଡ଼ିବ । ଏଥିପାଇଁ ସମୟ ଓ ସୁବିଧା ଦରକାର । ସମ୍ପାଦକ ମହାଶୟ ଏ କଥା ନ ବୁଝି ଯେବେ ନନାଙ୍କ ବସ୍ତାନିକୁ ଆଣି ଦାଣ୍ଡରେ ଥୋଇଦେବା ନିମନ୍ତେ କହିବେ, ତେବେ ଲେଖକ ନାଚାର ।

ପାଠକ ଅବଧାନ, ଆପଣମାନେ କହିପାରନ୍ତି ଯେ ଗୋଟାଏ ସାମାନ୍ୟ ପାଣଘରର କଥା ନେଇ ଲେଖକ ପାଠକମାନଙ୍କର କେତେ ବହୁମୂଲ୍ୟ ସମୟ ଓ ସାହିତ୍ୟ ପତ୍ରିକାର ବହୁମୂଲ୍ୟ ସ୍ଥାନ ନଷ୍ଟ କଲା । ମୋର ନିବେଦନ ଏତିକି ଯେ ନନାଙ୍କ ବସ୍ତାନିରୁ କଥାଟିଏ କାଢ଼ି ପଦାରେ ପକାଇବା ନିମନ୍ତେ ଲେଖକଙ୍କୁ କେତେ ପରିଶ୍ରମ ସ୍ୱୀକାର କରିବାକୁ ହଏ, ଏହି କଥା ଦେଖାଇବା ନିମନ୍ତେ ଗୋଟିଏ ଉଦାହରଣ ଆପଣମାନଙ୍କୁ ଦେବା ଛଡ଼ା ଲେଖକର ଅନ୍ୟ କୌଣସି ଉଦ୍ଦେଶ୍ୟ ନାହିଁ । ତେବେ ପାର ଭଳି ହାଟକୁ ଯାଇ ବାଇଗଣ ବିକା ଓ କନ୍ୟା ଦେଖା ଉଭୟ କାମ ନିଷତ୍ତି ହେଲେ ଲେଖକର ନାନା ପ୍ରକାରେ ଲାଭ । ପାଣଙ୍କ କଥା ବୋଲି ଆପଣମାନେ କଥାଟାକୁ ଉପେକ୍ଷା କରିବେ ନାହିଁ । ଆଦିମ ନିବାସୀ ଓ ଅସଭ୍ୟମାନଙ୍କ ସମାଜରୁ ପ୍ରତ୍ନତତ୍ତ୍ୱବିତ୍ ଓ ପଣ୍ଡିତମାନେ ଅନେକ ସାମାଜିକ ତତ୍ତ୍ୱ ବାହାର କରନ୍ତି । ଏପରି ସ୍ଥଳରେ ପାଣସାହି ଓ ପାଣସମାଜର ଦୁଇଟା ଗୋଟାଏ ଦୃଷ୍ଟାନ୍ତ ନନାଙ୍କ ବସ୍ତାନିରେ ଲିପିବଦ୍ଧ ହୋଇ ରହିଲେ ଉତ୍କଳର ସାମାଜିକ ଇତିହାସ ଲେଖକମାନେ ଭବିଷ୍ୟତରେ ଅନେକ ସାହାଯ୍ୟ ପାଇବେ, ଏହି ଆଶାରେ ଏ ପୁଡ଼ାଟି ଆପଣମାନଙ୍କୁ ଓ ଉତ୍କଳକୁ ଲେଖକ ଉପହାର ଦେଲା । ଆଜି ବସ୍ତାନିରୁ ନମୁନାସ୍ୱରୂପ ଏହି ପୁଡ଼ାକ । ଇତି ।

ଉତ୍କଳ ସାହିତ୍ୟ/୧୯ଶ ଭାଗ/୧ମ ସଂଖ୍ୟା/୧୩୨୨ ସାଲ ।

## ।। ପାଞ୍ଚ ।।

### ପାଳି

ଆମେ ମରହଟିଆଯାକ କହୁଁ ଯେ ଆଜିକାଲି ଅଂରେଜୀ ପଢୁଆଳୁଟାକ ଓ ସଭ୍ୟ ଜାତିମାନେ ଆପଣା ଶିକ୍ଷା ଓ ସଭ୍ୟତା ନିମନ୍ତେ ଭାରି ଅଭିମାନ କରନ୍ତି ଓ ବିଚାରନ୍ତି ଯେ ତାଙ୍କଠାରୁ ସଭ୍ୟ, ଶିକ୍ଷିତ, ଆଚାରୀ କେହି ଦୁନିଆରେ ନାହିଁ । ଏ ଢୁଆଟା ଆମ ମରହଟିଆଙ୍କର ଗୋଟାଏ ବୋଲି ହୋଇ ଯାଇଅଛି । ସେଥିପାଇଁ ଆମେ ମଧ ସେହି ଢୁଆଟା ଧରିଥାଉଁ ଓ ବୁଢ଼ାପଞ୍ଚାଏ ଏକ ମେଳ ହେଲେ ସର୍ବପ୍ରଥମେ ଏହି କଳିକାଳ କଥାଗୁଡ଼ାକ ନେଇ ଆମର ଆକ୍ଷେପ ହୁଏ । ସେଦିନ ମିଶ୍ରେ ଆପଣେ ଏହି କଥା କହୁଥିଲେ । କିଛିକ୍ଷଣ ପରେ ସଦାଚାର ପ୍ରସଙ୍ଗ ପଡ଼ିବାରୁ ଆମ ଗ୍ରାମର ପଣ୍ଡିତ ରାମ ନନ୍ଦେ ମନରୁ ଗୋଟାଏ ପଦ ଆବୃତ୍ତି କଲେ-

''ଆସମୁଦ୍ରାତ୍ତୁ ବୈପୂର୍ବାଦାସମୁଦ୍ରାତ୍ତୁ ପଶ୍ଚିମାତ୍ ।
ତୟୋରେବାନ୍ତରିଂଗିର୍ଯ୍ୟୋ
ରାର୍ଯ୍ୟାବର୍ତ୍ତଂ ବିଦୁର୍ବୁଧାଃ ।
ତସ୍ମିନ୍ ଦେଶେ ଯ ଆଚାରଃ
ପାରମ୍ପର୍ଯ୍ୟକ୍ରମାଗତଃ ।
ବର୍ଣ୍ଣାନାଂ ସାନ୍ତରଳନାଂ ସ ସଦାଚାର ଉଚ୍ୟତେ ।
ଏତଦ୍ଦେଶପ୍ରସୂତସ୍ୟ ସକାଶାଦଗ୍ରଜନ୍ମନଃ ।
ସ୍ୱଂ ସ୍ୱଂ ଚରିତଂ ଶିକ୍ଷେରନ୍
ପୃଥିବ୍ୟାଂ ସର୍ବମାନବାଃ ।''

ଅର୍ଥାତ୍ ଆର୍ଯ୍ୟାବର୍ତ୍ତନିବାସୀ ହିନ୍ଦୁମାନଙ୍କର ପରମ୍ପରାଗତ ଆଚାର, ସଦାଚାର ଅଟେ । ପୃଥିବୀର ସର୍ବଲୋକ ଏହି ଦେଶର ବ୍ରାହ୍ମଣମାନଙ୍କଠାରୁ ଆଚାର ଶିକ୍ଷା କରନ୍ତୁ ।

ଏହି ହାମ୍‌ବଡ଼ା ରୀତି, ଏହି ଅହମିକା ମନୁଷ୍ୟସ୍ୱଭାବ ସଙ୍ଗେ ଦୃଢ଼ରୂପେ ବନ୍ଧା । ମନୁଷ୍ୟ ଥିବାଯାକେ, ମନୁଷ୍ୟ ଦେହରେ ରକ୍ତମାଂସ ଥିବାଯାକେ ଏ ପ୍ରକୃତି ଛାଡ଼ି ହେବ ନାହିଁ । ଯେଉଁ ଜାତି ଯେତେବେଳେ ସଭ୍ୟ ଓ କ୍ଷମତାଶାଳୀ ହୁଏ, ସେତେବେଳେ ସେ ସମସ୍ତଙ୍କର ନିୟାମକ ଓ ନେତା ହୁଏ ଓ ତା ଆଖିରେ ଅନ୍ୟ କେହି ଦିଶନ୍ତି ନାହିଁ । ଏଥିପାଇଁ ଭଗବାନ୍ ଗୀତାରେ ଶିଷ୍ୟକୁ ଉପଦେଶ ଦେଇଅଛନ୍ତି - ''ଯଦ୍ ଯାଦାଚରତେ ଶ୍ରେଷ୍ଠସ୍ତତ୍ତଦେବେତରେ ଜନାଃ ।'' ସେହି କଥା 'ଧୋବଧାଉଳିଆ' କଲେ ପାର ପାଇଯାନ୍ତି, କିନ୍ତୁ 'ରଙ୍କୁଣୀ' କଲେ ମାଡ଼ ଖାଏ । ରଙ୍କୁଣୀର ସ୍ୱାମୀ ସମସ୍ତଙ୍କ 'ଘରଆଡ଼' ଲେଖା ଭାଇ* ।

ମନୁଙ୍କଠାରୁ ଯେ ପାହାଚେ ତଳେ ଥିଲେ, ସେ ଏଡ଼େବଡ଼ ଆସ୍ଫାଳନଟାଏ ନ କରି କହିଲେ- ''ଯସ୍ମିନ୍ ଦେଶେ ଯ ଆଚାରଃ ପାରମ୍ପର୍ଯ୍ୟକ୍ରମାଗତଃ । ସ୍ମୃତିଶୃତ୍ୟବିରୋଧେନ ସ ସଦାଚାର ଉଚ୍ୟତେ ।''

''ଯସ୍ମିନ୍ ଦେଶେ ଯ ଆଚାରୋ
ନ୍ୟାୟଦୃଷ୍ଟଃ ସକଳ୍ପିତଃ ।
ସ ତସ୍ମିନ୍ନେବ କର୍ତ୍ତବ୍ୟୋ
ଦେଶାଚାରୋ ଭୃଗୋର୍ମତଃ ।''

କଥା କଥାକେ ଆମେ ମରହଛିଆଯାକ କହୁଁ - ''ଆରେ ବର୍ତ୍ତମାନ ଘୋର କଳି କାଳ ।'' ମନ ଥୟ ହୋଇଥିବାବେଳେ ମୁଁ ମୋ ମନକୁ ପଚାରେ, ''ଆମେ ବି ତ ସେହି

* କାକ

କଳିକାଳର ମନୁଷ୍ୟ !'' ଏପରି ସ୍ଥଳରେ ନବ୍ୟଶିକ୍ଷିତ ସଭ୍ୟଯାକ କିପରି କଳି ଯୁଗର ହେଲେ, ଆମ୍ଭେମାନେ କିପରି ସତ୍ୟ ଯୁଗର ହେଲୁଁ ? ତା ପରେ ଦେଖ ଯେ ଶାସ୍ତ୍ରକାରମାନେ କଳିକାଳପାଇଁ ଦେଶ କାଳ ପାତ୍ର ବିବେଚନାରେ ଭିନ୍ନ ଭିନ୍ନ ବ୍ୟବସ୍ଥା କରି ଯାଇଅଛନ୍ତି । ସେମାନେ ଦେଖିପାରିଥିଲେ ଯେ ସମୟକ୍ରମେ ଆଚାର ପରିବର୍ତ୍ତନ ଅନିବାର୍ଯ୍ୟ ହୋଇ ଉଠିବ । ସେଥିପାଇଁ ସବୁ ଲେଖିଗଲେ, ଶେଷରେ ଲେଖିଦେଲେ, ''ଇମାନ୍ ଧର୍ମାନ୍ କଳିଯୁଗେ ବର୍ଜ୍ୟାନାହୁର୍ମନୀଷିଣଃ ।'' ''କଳୌ ବର୍ଜ୍ୟଂ ଦ୍ୱିଜାତିଭିଃ ।'' ''କଳୌ ପଞ୍ଚ ବିବର୍ଜ୍ଜୟେତ୍ ।'' ଅର୍ଥାତ୍ କାଳର ଗତି ଅନୁସାରେ ଆଚାର ବଦଳିବ । ଆଧୁନିକ ହିନ୍ଦୁ ସମାଜରେ ଏତିକି ବୁଝି ନ ପାରିବାରୁ ସମାଜରେ ନାନା ପ୍ରକାର ବିପ୍ଲବ ଘଟିଅଛି । ଫେର ପଞ୍ଚାଏ ଦେଖିଲେ ଯେ, କଥା ସମ୍ଭାଳି ନ ନେଲେ ଭାରି ବ୍ୟସ୍ତ ପଡ଼ିବ । ସେଥିପାଇଁ ''ନ ମାଂସଭକ୍ଷଣେ ଦୋଷୋ ନ ମଦ୍ୟେ ନ ଚ ମୈଥୁନେ । ପ୍ରବୃତ୍ତିରେଷା ଭୂତାନାଂ ନିବୃତ୍ତିସ୍ତୁ ମହାଫଳା ।'' ଲେଖି ସବୁ ସାଫ୍‌ସୁତୁରା କରି ଦେଲେ । ତା ପରେ ଗୋଟିଏ ପୁରୁଣାକାଳିଆ କଥାକୁ ଆମେ ମରହଟ୍ଟିଆଯାକ ଖଞ୍ଜାଖାଞ୍ଜ ଦେଖି ଉଲ୍ଲାଖ ଦେଇଥାଉଁ । ''ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାତ୍ ନ ବ୍ରୂୟାତ୍ ସତ୍ୟମ ପ୍ରିୟଂ'' ସତ କଥା କହିବ, ପ୍ରିୟ କଥା କହିବ- ଅର୍ଥାତ୍ ସାପ ମରିବ ନାହିଁ କି ବାଡ଼ି ଭାଙ୍ଗିବ ନାହିଁ- ଅର୍ଥାତ୍ ଘଡ଼ିରୁ ତେଲ ନ ସରୁ, ଏଣେ ପୁଅ ମୁଣ୍ଡ ନୁଖୁରା ନ ହେଉ । ଏହି ଦୋନାବଡ଼ିଆ ରୀତିକୁ ଧରି ଆମେ ଅନେକ ବେଳେ ପାରଉତାର ହୋଇଯାଉଁ । ଏଣେ ଫେର ସେହି ପାଠ ଡାକିଲା- ସତ କଥା ଓ ହିତ କଥା ସବୁବେଳେ ସୁଆଦିଆ ଲାଗେ ନାହିଁ । ଯାହାହେଉ, ଆମର ଆଉ ଏ ଜଗତରେ ଅଢ଼େଇ ଦିନ- ବର୍ତ୍ତମାନ ଦେଖାଯାଉ, ଆମ ଶିକ୍ଷିତ ବାବୁଜୀମାନେ କେଉଁ କଡ଼ପଟ ମାଡ଼ି ହପାଳୁଛନ୍ତି । ନୈତିକ ଶିକ୍ଷା, ନୈତିକ ସାହସ, ଆତ୍ମସମ୍ମାନ, ନୈତିକ ବଳ, ସ୍ୱାର୍ଥତ୍ୟାଗ, ଜାତୀୟ ଉନ୍ନତି, ସ୍ୱଦେଶପ୍ରେମ, ଲବଜଗୁଡ଼ାକ ଆମ କାଶୀ ଅବଧାନ ଆମକୁ ଶିଖାଇ ନ ଥିଲା । ବର୍ତ୍ତମାନ ପିଲାଏ ଏ ଶବ୍ଦଗୁଡ଼ାକ ଘୋଷି ଘୋଷି ବଜାରରେ ଗାଇ ବଜାଇ ଛେଚଡ଼ା କରି ସାରିଲେଣି । ଏଣେ ପିଲାଙ୍କ କଚେରି ଘରର ପରଦାଖଣ୍ଡମାନ ଅଡ଼େଇ ଦେଲେ କିମ୍ବା ଅନ୍ଧାରୁଆ ଦରଣ୍ଡାଦରଣ୍ଡି କଲେ ଦେଖାଯାଏ ଯେ, ଅଧିକାଂଶସ୍ଥଳରେ ପିଲାଙ୍କ ବୋଲିଗୁଡ଼ାକ କଚେରି ପୋଷାକ । ପରଦା ଟେକି ଅନ୍ଦର ମହଲକୁ ଗଲାବେଳେ ସେମାନେ ସେହି ଦସ୍ତବୁଙ୍ଗୁଳାଟିମାନ କଚେରିଘର କଣପଟରେ ମାଡ଼ି ଗୁଞ୍ଜି ଦେଇ ଘର ଭିତରକୁ ଆଖିବୁଜିଆ କରି ପଶିଯାନ୍ତି । ଆମ ମରହଟ୍ଟିଆଙ୍କ ଦିହରେ ହାତରେ ଗୋଡ଼ରେ ଛାପା, ନାମାବଳୀ, ଝୁଲି, ରାମାନନ୍ଦୀ ଥାଏ ଭିତରେ ଅଇନରକ ଘଣ୍ଟାଘଣ୍ଟି । ଆମେ ବିଚାରିଥିଲୁଁ, ଏଗୁଡ଼ାକ କେବଳ ମରହଟ୍ଟିଆଙ୍କର କଳଙ୍କ ଏବଂ ପିଲାଙ୍କର ଏ ସବୁ ଭେକ ନାହିଁ । ଅଛି ସାର୍ଟିଫିକେଟ, ସମ୍ବାଦପତ୍ର, ବିଜ୍ଞାପନ, ଅବତରଣିକା, ବକ୍ତୃତା, ସମ୍ମିଳନୀ, ନୈତିକ ଶିକ୍ଷା କିନ୍ତୁ ଦଣ୍ଡେ ଘଡ଼ିଏ ପିଲାଙ୍କ ପାଖରେ ବସିଗଲେ ବେଳେ ବେଳେ ନାକରେ ହାତ ନ ଦେଲେ ଅଇ ଉଠେ । ସେଦିନ ଜଣେ

ପାଠୁଆ ଛାପାମରା ଯୁବକ ବକ୍ତୃତା କଲେ ଯେ 'ସତ୍ୟବାଦିତା' ତାଙ୍କ ଜୀବନର ପରମ ବ୍ରତ ଓ ପରାପର ବ୍ରତ; କିନ୍ତୁ ବାଡ଼ିଦୁଆର ବାଟେ ପଶିଗଲା ବେଳକୁ ଦେଖିଲୁଁ ଯେ, ସବୁ-ଗୁଣ ତାଙ୍କରି ରପ୍ତାନୀ- ଓହୋ ! ଭୁଲ ହେଲା ! ଆମ ସମ୍ପତ୍ତି - ବସ୍ତାନି ଓ ସିନ୍ଦୂକ । ପିଲାଙ୍କ ସମ୍ପତ୍ତି କାଚ ଆଲମାରି, ଫ୍ଲାଟଫାଇଲ, ସାପ୍ତାହିକ ଓ ମାସିକ ସମ୍ବାଦପତ୍ର ଓ ସମାଲୋଚନ । ପରୋପଦେଶ ପାଣ୍ଡିତ୍ୟ ଆମର ଯାହା, ତାଙ୍କର ତହୁଁ ବେଶି- ତେବେ ଆମେ କଥା ପଡ଼ିଲେ ମାନିଯାଉଁ, ପିଲାଏ ଆମର ଶିକ୍ଷାର ଦାଉରୁ ଭୁରଡ଼ ଓ କାଠମୁହଁ ଘେନି ତ୍ରିଲୋକ ବିଜୟ କରନ୍ତି ! ଏଥିପାଇଁ ଆମେ ଥରେ ଦି ଥର ବାବୁ ଗୋପାଳଚନ୍ଦ୍ରଙ୍କୁ ଚେତାଇ ଦେଇ କହିଅଛୁଁ ଯେ, ନବ୍ୟ ଶିକ୍ଷିତଯାକ ଆମକୁ ଯେତେ ବେଶି ଘୃଣା କରି ଅପଦାର୍ଥ ବୋଲି ମନେକରନ୍ତି, ଆମ୍ଭେମାନେ ସେମାନଙ୍କଠାରୁ କୌଣସି ଗୁଣରେ ନିକୃଷ୍ଟ ଓ ଅପଦାର୍ଥ ନୋହୁଁ । ଆରେ ବାପା, ମୁହଁରେ ବକ୍ତୃତା କରୁଛ, ଜାତି, ପଇତା, ପର୍ବ, ପୂନିଅ, ଶିଖା, ଜଟା ଏ ସବୁ କିଛି ନୁହେଁ, କିନ୍ତୁ ସେ ସବୁ ତୁମରି ଜୀବନର ପ୍ରତିଦିନ ପ୍ରତି ମୁହୂର୍ତ୍ତରେ ଅଭିନୟ କରୁଛ । ତୁମ୍ଭେମାନେ ଆପଣା କାମ ହାସଲ କରିବାକୁ ନ କରୁଛ କଣ ? ଖୋସାମତ, ମିଥ୍ୟା, ପଞ୍ଚମକାର ଉପାସନା, ଶ୍ରୀ ସୁନ୍ଦରୀ ପୂଜା, ପରଶ୍ରୀକାତରତା, ଅହଙ୍କାର, ଆସ୍ଫାଳନ, ପରଛିଦ୍ରାନ୍ବେଷଣ, କପଟାଚାର ଏ ସବୁ ତୁମ୍ଭମାନଙ୍କଠାରେ ଯାହା ଅଛି, ଆମ ବୁଢ଼ାଙ୍କଠେଇଁ ସେଥିରେ କାଣିଚାଏ ନାହିଁ । ଆମ ସାଙ୍ଗରେ ବସିଲା ବେଳକୁ ପଇତାଟି ସଫା କରି ନ ଦଉଡ଼ିଆ କରି ପକାଇ, ଉର୍ଦ୍ଧ୍ୱ ପୁଣ୍ଡ୍ର କାଟି, ଚୁରୁକିରେ କୁଶଗଣ୍ଠିଟିମାନ ପକାଇ ବାହାରୁଛ । ଏଣେ ସାହେବସୁବାଙ୍କ ପାଖକୁ ଗଲା ବେଳକୁ ପଇତାଟିକୁ ଘଣ୍ଟା, ଚେନ୍ ଓ ଚାବି ଝୁଲାଇବା ସୂତା କରୁଛ, ଉର୍ଦ୍ଧ୍ୱ ପୁଣ୍ଡ୍ରଟିକୁ ରୁମାଲ ପ୍ରସାଦରୁ ଅନ୍ତର୍ହିତ କରୁଛ, କୁଶଗଣ୍ଠିଟିମାନ ପିଟାଇ ପଛଆଡ଼କୁ କୁତୀ ଲାଙ୍ଗୁଡ଼ ଭଳିଆ ପଗଡ଼ି ତଳେ ଗୁଞ୍ଜୁଛ- ଆପଣାର ଢଙ୍ଗଢାଙ୍ଗ, ଫେସନ ସବୁ ହାଲ ଆଦି ବିଲାତୀ ଓ ଫରାସୀ ଫଇସନ ମୁତାବକ କରି ଦାଣ୍ଡକୁ ଦେଖାଉଛ ଯେ, କୁସଂସ୍କାରଯାକ ତୁମ ପାଖ ଛୁଇଁ ନାହିଁ । ଏଣେ ଦିହ ଦେଖିଲା ବେଳକୁ ଦିହଯାକ ଘିମିରି, କାଛୁ, କୁଣ୍ଡିଆ ଓ ହରଦମ ରମ୍ଭା* ଲାଗିଛି । ଏହାକୁ ସଭ୍ୟତା ଓ ଉଦାରତା ବୋଲାଯାଏ ନାହିଁ । ଏହାକୁ ବୋଲାଯାଏ ଘୋର କପଟତା, ନୀଚ ସ୍ୱାର୍ଥପରତା, ପଶୁ ପ୍ରକୃତିର ଲୀଳା । ମୋ ବାବା ! ଦି'ମୁଣ୍ଡ ଏକା ସମାନ । ତୁମେ ଯାହା, ଆମେ ସେହିତା । ମନୁଷ୍ୟ ପ୍ରକୃତି ରାମଚନ୍ଦ୍ରଙ୍କ ଅମଳରେ ଯାହା ଥିଲା, ରମା ବାଉରୀଠାରେ ତାହା ଅଛି- ପ୍ରଭେଦ କେବଳ ଉଣେଇଶ ବିଶ । ତେବେ ବେଳେବେଳେ ତୁମ୍ଭେମାନେ ଆମ୍ଭମାନଙ୍କୁ ଦେଖି ନାଲି ଆଖି କରି ସଫେଇ ଦେଖାଇ ତାରିଫ କଲା ବେଳକୁ ଆମ ଶିରଟାମାନ ଟାଙ୍କି ହୋଇଯାଏ- ତୁମ୍ଭମାନଙ୍କ ମୁହଁ ଭୁରୁଡ଼ ଓ ବିରାଡ଼ି ବୈରାଗ୍ୟ ଦେଖି ଋଷି ବାଳ ଛିଣ୍ଡାଇ ମରନ୍ତି ! ପଢ଼ିଲ, ଶୁଣିଲ, ଆମେ ଭିକ ଦୁଃଖ କରି

* ଯାଦୁ

ତୁମକୁ ପାଠ ପଢ଼ାଇଲୁଁ, ମା' ଧାନ କୁଟି ଇସ୍କୁଲ ଦରମା ଦେଲେ, ଯେତେବେଳେ ବାର ଛେଉଣ୍ଡ ହୋଇ ବୁଲୁଥିଲ, ସେ କାଳ ପଖାଳ ଗଲାଣି; ବର୍ତ୍ତମାନ ତୁମେମାନେ ହେଲ ସଭ୍ୟ, ସଂସ୍କାରକ ଆଉ ନୈତିକ ସାହସ ଓ ନୈତିକ ଉଦାରତାର ଅବତାର, ଆମେ ହେଲୁଁ କୁସଂସ୍କାରାଚ୍ଛନ୍ନ, ମରହଚିଆ ଓଲୁ ! ନାମ ମାତ୍ର ଏମ୍.ଏ.,ବି.ଏ. ଉପାଧି ଧରିଛ- ଫଳତଃ ଏମ୍.ଏ.ମେ ବି.ଏ.ବେ କରୁଛ । ପରୋକ୍ଷରେ ପରକୁ ବୃଥାରେ ଅପବାଦ ଦେବାକୁ ତୁମେ ଟିକିଏ କୁଣ୍ଠିତ ହେଉ ନାହଁ ! ପଦସ୍ଥ ବ୍ୟକ୍ତିମାନଙ୍କ ସଙ୍ଗେ ଯେଉଁ ପରିଚୟ ଲାଭ କରିଛ, ତହିଁର ଅସଦ୍‌ବ୍ୟବହାର କରି ତୁମେ କଣ ନ କରୁଛ ? କୌଣସି ବ୍ୟକ୍ତିଗତ କାରଣରୁ ଯେ ତୁମର 'ଅନୁରାଗ' ଭାଜନ ହେଲା, ତାର ସଭ୍ୟ ସମାଜରେ ତିଷ୍ଠିବାର ଜୁ ନାହିଁ । ମୁହଁରେ ଯା ଇଚ୍ଛା ତା ଆସ୍ଫାଳନ କର ପଛକେ, ସବୁ ପଶୁପ୍ରବୃତ୍ତି, ସବୁ ହିଂସା, ସବୁ ପରଶ୍ରୀକାତରତା ତୁମରିଠାରେ ଠୁଳ । ମୁହଁରେ କହୁଛ ଯେ ତୁମେ 'ହକ୍ କଥା'ର ପକ୍ଷପାତୀ- କିନ୍ତୁ ଯେ ହକ୍ କଥା କହି ତୁମର ଦୋଷ ଦେଖାଇଲା, ତା ପାଇଁ ବୃଥା ଅପବାଦ, ପଛଆଡୁଆ କେଞ୍ଚା, ଗାତଖୋଳା, ପଦସ୍ଥ ବ୍ୟକ୍ତିମାନଙ୍କ ଆଗରେ ତା ନାମରେ ଚୁଗୁଲି, ଖବରକାଗଜରେ ବେନାମୀ ଓ ସମ୍ପାଦକୀୟ ଆକ୍ରମଣ, ଶେଷକୁ ବଢ଼ାରିଗିରି ଦ୍ୱାରା ଢେଲାମରା-ଓ ଧାକମ୍ଧକା ଏବଂ ସେଥିରେ ଜବତ ନ ହେଲେ ମକଦ୍ଦମା ମାମଲା ଦ୍ୱାରା ତାର ସର୍ବନାଶ- ଏଗୁଡ଼ିକ ଧରାବନ୍ଧା ! ତୁମକୁ ଯେ ସ୍ତୁତି ନ କଲା, ତା ମୁଣ୍ଡରେ ଶାଗୁଣା ଉଡ଼ିଲେ । ଆଗେ ମିଶ୍ରେ ଆପଣେ, ଦାସେ ଆପଣେ, ପ୍ରହରାଜେ ଆପଣେ ହୋଇ ତୁମ ବାପଅଜା ଯାହା କରୁଥିଲେ, ବର୍ତ୍ତମାନକୁ ତୁମେ ଶ୍ରୀଯୁକ୍ତ ମିଶ୍ର ମହାଶୟ ବି.ଏ., ମାନ୍ୟବର ଦାସ ସ୍କୋୟାର୍ ଏମ୍.ଏ.,ମାନନୀୟ ପ୍ରହରାଜ ସାହେବ ବି.ଏଲ୍. ହୋଇ ତଦପେକ୍ଷା ବେଶି ନୀଚ, ସ୍ୱାର୍ଥପର ଓ ଅନିଷ୍ଟକାରୀ ହୋଇଅଛ । ପ୍ରଭେଦ ଏତିକି ଯେ, ଆମର ବିଦ୍ୟା ଅଳ୍ପ ଥିବାରୁ ପରର ଅନିଷ୍ଟ କରିବା ପାଇଁ ନାନାଦି ଚକ୍ର କରିବା ନିମନ୍ତେ ଉପଯୁକ୍ତ ଯୋଗାଡ଼ ଓ ତଦବିର ଆମ ଦେହି ହୋଇ ପାରୁ ନ ଥିଲା, କିନ୍ତୁ ତୁମେ ଶିକ୍ଷାରେ ଓ କୌଶଳରେ ପାରଙ୍ଗମ ହୋଇଥିବାରୁ ଯାହାକୁ ଯେତେବେଳେ କଚାଟାଏ ଦେବାକୁ ବିଚାରୁଛ, ସେ ଯେଉଁ ବାଟେ ପଟକଣଟାଏ ପାଇବ, ତାହା କଲେ, ଖଲେ, ଗଲେ, ଚଲେ, ଛଲେ, ଜଲେ, ତଲେ, ଥଲେ, ଦଲେ, ନଲେ, ଫଲେ, ବଲେ, ସବୁ ପ୍ରକାର କରୁଛ । ଏଣେ ମୁହଁରେ ନୈତିକ ଉନ୍ନତି, ନୈତିକ ସାହସ, ନୈତିକ ଉଦାରତା, ନୈତିକ ବଳ ଓ ଜୁଆ ଓ ବକ୍ତିମାର ବିରାମ ନାହିଁ । କହୁଛ କ'ଣ ? ନା ତୁମେ ଈଶ୍ୱରଙ୍କର ପକେଟ ଏଡ଼ିସନ ବା ଚଳନ୍ତି ପ୍ରତିମା ଓ 'ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ' । ତୁମର ନରଲୋକରେ ଦେବାବତରଣ ହୋଇଅଛି ! ଶେଷ ବେଳକୁ ସଭ୍ୟ ଜଗତକୁ ତୁମ ଦାଉରୁ, ଚୋଟରୁ ରକ୍ଷା କରିବାକୁ ଭଗବାନ୍‌ଙ୍କୁ ଯେପରି ଅନ୍ୟ ଅବତାର ଗ୍ରହଣ କରିବାକୁ ନ ପଡ଼େ । ଈଶ୍ୱର ତୁମ୍ଭମାନଙ୍କୁ ସୁବୁଦ୍ଧି ଦିଅନ୍ତୁ ଓ ଚିରାୟୁଃ କରନ୍ତୁ ।

(ନୋଟ୍- ପାଠକ ମହୋଦୟ, ରକ୍ଷା ଯେ ନନା ଏ ମନ୍ତବ୍ୟଗୁଡ଼ିକ ଦ୍ୱିତୀୟ ପୁରୁଷ ଏକବଚନ 'ତୁମେ' ଶବ୍ଦ ପ୍ରୟୋଗ କରି ମତେ ସମ୍ବୋଧନ କରି ଟିପିଅଛନ୍ତି । ନନାଙ୍କ ବଳ୍ଲେଇ ବଳିଆର ! ସେ ସଂସାରକୁ ବିଦାୟ ହୋଇ ଖସିଗଲେ ବୋଲି ଏ ଯାତ୍ରା ରକ୍ଷା ପାଇଗଲେ- ନଚେତ୍ ପିଙ୍ଗଳକୋର୍ଡ଼ ୫୦୦ ଦଫାରେ ଥରେ ତାଙ୍କୁ କଚେରି ବରଗଛ ତଳକୁ ଟାଣିଥିଲେ ଆମ ମନ ଓରମାନ ମେଣ୍ଟିଥାନ୍ତା !)

ଆଜି ବସ୍ତାନିରୁ ଏହି ଅଧାକ ।

ଉତ୍କଳ ସାହିତ୍ୟ/୧୯ଶ ଭାଗ/୨ୟ ସଂଖ୍ୟା/୧୩୨୨ ସାଲ ।

## ॥ ଛଅ ॥

ଆଚ୍ଛା ! ଏ ପିଲାଗୁଡ଼ାକ ଆମକୁ ଓ ଆମର ମରହଟ୍ଟିଆ ପାଠଗୁଡ଼ାକୁ ବାଏଁ ବାଏଁ ଭୁରୁଡ଼ରେ ଉଡ଼ାଇ ଦେଇ କହୁଅଛନ୍ତି, ଏଗୁଡ଼ାକ ନିପଟ ମିଛ, ଏଥିରେ କରାଯାଏ କଣ ? ଆମ ପାଠ ଡାକୁଛି, ଭାରତବର୍ଷଟା ଗୋଟିଏ ଦ୍ୱୀପ- ଆଜିପର୍ଯ୍ୟନ୍ତ ଆମ ବିବାହ, ବ୍ରତ, କର୍ମକର୍ମାଣି ସଙ୍କଳ୍ପରେ ବାକ୍ୟ କରା ଯାଉଅଛି- 'ଜମ୍ବୁ ଦ୍ୱୀପେ ।' ଆମ ପିଲାଏ ବର୍ତ୍ତମାନ ଭୂଗୋଳ, ବିଜ୍ଞାନ, ଇତିହାସ ପଢ଼ି କହୁଛନ୍ତି, ଏହା ଭୁଲ, ପ୍ରକୃତରେ ଭାରତଟା ଦ୍ୱୀପ ନୁହେଁ- ଉପଦ୍ୱୀପ । (ଟୀକା- ଆଜିକାଲିକାର ସଭ୍ୟତାଯୁଗରେ ପିଲାଏ ସବୁ ପୁରୁଣାକାଳିଆ କଥା, ରୀତି, ବସ୍ତୁ ଓ ଶବ୍ଦରେ ଗୋଟିଏ ଲେଖାଏଁ ଉପସର୍ଗ ଓ ବିଶେଷତଃ 'ଉପ' ଉପସର୍ଗ ଲଗାଇବାରେ ମାତିଅଛନ୍ତି ।) କିନ୍ତୁ ତାଙ୍କରି ପାଠରୁ ପ୍ରମାଣ ମିଳୁଛି ଓ ତାଙ୍କର ବୈଜ୍ଞାନିକ ପଣ୍ଡିତମାନେ ସ୍ଥିର କଲେଣି ଯେ, ଆଗେ ଭାରତ ଗୋଟିଏ ଦ୍ୱୀପ ଥିଲା । ବାବୁ ଗୋପାଳଚନ୍ଦ୍ର ଦିନେ ଗୋଟିଏ ବଡ଼ ଅଙ୍ଗରେଜୀ ବହିରୁ ଏ କଥା ଆମ୍ଭଙ୍କୁ ସମଝାଇ ଦେଇଥିଲେ ଓ ଭବିଷ୍ୟତ୍‌ରେ ଶିକ୍ଷିତ ବାବୁଙ୍କ ସଙ୍ଗେ କଥା-ପ୍ରସଙ୍ଗ ପଡ଼ିଲା ବେଳେ ଆମେ ନଜର ଦେଖାଇବୁଁ ବୋଲି ତାଙ୍କୁ କହିବାରୁ ସେ ଖଣ୍ଡେ ଅଙ୍ଗରେଜୀ ଟିପା ଆମକୁ ଦେଇଥିଲେ । ସେ ଟିପାଖଣ୍ଡ ଏ ବସ୍ତାନିରେ ସାମିଲ କରାଗଲା କି ଦରକାରବେଳେ କର୍ମରେ ଆସିବ । ଧନୁ ୨୨ ଦିନ, ସନ ୧୫୭୨ ସାଲ ।

"The great Peninsula of India was not always connected with the mainland of continental Asia. In that period of Earth's History which is known as the Secondary Epoch and even during a good deal of the later Tertiary times, perhaps after Man had come into existance, all Central and Southern. India was separated from the great wall and foot-hills of the Himalayas by a shallow sea represented at the present day by the basins of the Indus and the

Ganges, the plains of India and the Sunderbuns. xxx The narrow sea dried up, its place being taken up by the courses of two great rivers, the Indus in the west and the Ganges in the East."

SIR HARRY JOHNSTON'S

PIONEERS IN INDIA

ଅସ୍ୱାର୍ଥଃ (ଆମ ଗୁଣମଣିଙ୍କ ତର୍ଜମା)

ପୂର୍ବେ ଭାରତ ଉପଦ୍ୱୀପ ଏସିଆ ମହାଦେଶ ସାଙ୍ଗେ ଲାଗି ନ ଥିଲା । ପୃଥିବୀର ଇତିହାସର ଗୋଟିଏ ପୁରାତନ ଯୁଗରେ ମନୁଷ୍ୟ ଜାତି ସୃଷ୍ଟ ହେବା ପରେ ମଧ୍ୟ-ଭାରତ ଓ ଦାକ୍ଷିଣାତ୍ୟ ଏବଂ ହିମାଳୟ ଅଞ୍ଚଳ ଏଥି ମଧ୍ୟରେ ଗୋଟିଏ ସାଗର ବ୍ୟବଧାନ ଥିଲା । ସିନ୍ଧୁନଦୀ ଓ ଗଙ୍ଗାନଦୀ, ଭାରତର ସମତଳ ପ୍ରଦେଶ ଓ ସୁନ୍ଦରବନ ବର୍ତ୍ତମାନ ସେହି ସମୁଦ୍ରର ସ୍ଥାନ ଅଧିକାର କରିଅଛି । କାଳକ୍ରମେ ଏ ସମୁଦ୍ର ଶୁଖିଯିବାରୁ ସେହି ସ୍ଥାନରେ ପୂର୍ବରେ ଗଙ୍ଗା ଓ ପଶ୍ଚିମରେ ସିନ୍ଧୁନଦୀ ପ୍ରବାହିତ ହେଉଅଛନ୍ତି ।

କି ରେ ବାପା ! ଉଆ ଉଷୁନା ସବୁ ତ ତୁମରି ତୁଣ୍ଡରୁ ବାହାରୁଛି । ତୁମର ବୈଜ୍ଞାନିକ ଗବେଷଣା, ଐତିହାସିକ ଖୋଳ- ପର୍ବତ- ମାର- ମୂଷା । ତୁମରି ଭୌଗୋଳିକ ବିବରଣ ଶେଷରେ ଆସି ଯେଉଁ ସିଦ୍ଧାନ୍ତରେ ପହଞ୍ଚୁଅଛନ୍ତି, ସେଥିରୁ ଏତିକି ଦେଖାଯାଉଅଛି ଯେ, ଆମ ହିନ୍ଦୁଙ୍କ ପୂର୍ବପୁରୁଷଗୁଡ଼ାକ ନିପଟ ମିଛୁଆ ନ ଥିଲେ ।

ବିଜ୍ଞାନ ବୋଲ, ଗଣିତ ଜ୍ୟୋତିଷ ବୋଲ, ଭୂଗୋଳ, ଇତିହାସ, ଚିକିତ୍ସା ଶାସ୍ତ୍ର, ନ୍ୟାୟ ଦର୍ଶନ, ବେଦ, ବେଦାନ୍ତ, ସବୁଥିରୁ ଦେଖାଯାଏ ଯେ, ପୁରାକାଳରେ ଭାରତବାସୀମାନେ ସଭ୍ୟତାର ଉଚ୍ଚତମ ସ୍ଥାନ ଅଧିକାର କରିଥିଲେ । କାଳକ୍ରମେ ପ୍ରଳୟ ଉପସ୍ଥିତ ହୋଇ ସେ ବିଦ୍ୟାମାନଙ୍କର ସତ୍ତା ବୁଡ଼ିଯିବାରୁ, ଅନ୍ୟ ଜାତିମାନେ ଏହି ଭାରତରୁ ଯେଉଁ ବିଦ୍ୟାମାନ ନେଇ ତହିଁର ଉନ୍ନତି କରିଥିଲେ, ତାକୁ ପୁନର୍ବାର ସୁଧ ମୂଳ ସହିତ ଆମକୁ ଫେରାଇ ଦେଉଅଛନ୍ତି ଓ କହୁଅଛନ୍ତି ଯେ, ଆମର ସତାନବେ ପୁରୁଷ ଓଲ୍ଲୁ ଓ ଓଲ୍ଲୁଙ୍କ ବୋକଚାବୁହା ଥିଲେ । ଆଉ ଆମର ଯେଉଁସବୁ ପାଠ ଅଛି, ସେଗୁଡ଼ାକ ନିପଟ ମିଛ ଓ ଗାଲୁଗପ !

ଉଦାହରଣ ଦେଖ ଯେ, ରାମାୟଣ ମହାଭାରତର ଉପାଖ୍ୟାନଗୁଡ଼ାକୁ ଆମ ବାବୁମାନେ କହୁଅଛନ୍ତି, ଗାଲୁଗଳ୍ପ । କିନ୍ତୁ ସେମାନେ ଭାବୁ ନାହାନ୍ତି ଯେ, ପାଶ୍ଚାତ୍ୟ ସଭ୍ୟତା ଓ ପାଶ୍ଚାତ୍ୟ ବିଜ୍ଞାନ ପୂର୍ବେ ହିନ୍ଦୁ ସଭ୍ୟତା ଅଗ୍ରସର ହୋଇଥିବା ସୀମା ପର୍ଯ୍ୟନ୍ତ ଅବଧି ଅଗ୍ରସର ହୋଇ ନାହିଁ । ମନୋବିଜ୍ଞାନ, ପଦାର୍ଥ ବିଜ୍ଞାନ, ଜ୍ୟୋତିର୍ବିଜ୍ଞାନ, ରସାୟନ ବିଜ୍ଞାନ, ବର୍ତ୍ତମାନ ଯୁଗରେ ଯେପରି ଅଗ୍ରସର ହେଉଅଛି, ସେଥିରୁ ଅନୁମାନ ହେଉଅଛି, ରାମାୟଣ ମହାଭାରତ ଆଦି ବାସ୍ତବ ଓ ଅନୁଭବଲବ୍ଧ ଥିଲା; ଯେଉଁ କଥା ଓ

ଉପାଖ୍ୟାନଗୁଡ଼ିକ ଆଜି କଳ୍ପନା-ପ୍ରସୂତ ବୋଲି ଉପହାସ୍ୟାସ୍ପଦ ହେଉଅଛି, କାଲି ସେଗୁଡ଼ିକ ଅକ୍ଷରେ ଅକ୍ଷରେ ସତ୍ୟ ବୋଲି ପ୍ରମାଣିତ ହେବ । ଆମର ମୋଟା ବୁଦ୍ଧିରେ ଆମେ ଏହି ସବୁକଥା ଠଉରାଉଅଛୁଁ ଯେ, ସବୁ ସଭ୍ୟତାରେ ଗୋଟିଏ ସୀମା ଅଛି । ସେ ସୀମା ନିରୂପଣ କରିବାର ମାଲିକ ଖୋଦ ଭଗବାନ୍ । ସଭ୍ୟତା ସେହି ସୀମାରେ ପହଞ୍ଚିଲା ବେଳକୁ ଭଗବାନ୍ ଗୋଟିଏ ଖଣ୍ଡ ପ୍ରଳୟ ଉପସ୍ଥିତ କରନ୍ତି । ସେହି ଖଣ୍ଡ ପ୍ରଳୟରେ ସବୁ ଉନ୍ନତିର ସତ୍ତା ଲୁପ୍ତ ହୋଇଯାଏ ଓ ପୃଥିବୀପୃଷ୍ଠରେ ଉକ୍ତ ସଭ୍ୟତା ପ୍ରଳୟର ପୂର୍ବବର୍ତ୍ତୀ କାଳ ପର୍ଯ୍ୟନ୍ତ ଯାହା ଯାହା ଲେଖି ପକାଇଥାଏ, ତାହା ପୋଛି ହୋଇଯାଏ । ପୁନର୍ବାର ମନୁଷ୍ୟମାନେ ନୂଆ ପାଞ୍ଜି ଓ ନୂତନ ସଂସାର ଆରମ୍ଭ କରନ୍ତି । ପାଠ ଡାକୁଛି, ଘୋର କଳିକାଳ ଉପସ୍ଥିତ ହେଲେ ପ୍ରଳୟ ଉପସ୍ଥିତ ହେବ । ସମସ୍ତେ ସେହି ଧୋଇରେ ଭାସି ଯିବେ । ପ୍ରଳୟର ବଢ଼ିରୁ ନିବର୍ତ୍ତିଗଲେ ଫେର ଲୋକେ ନୂଆ କରି ସଭ୍ୟତା ଆରମ୍ଭ କରିବେ । ଫେର ସିଧିରସ୍ତୁ ମଡ଼ାଇବାକୁ ବସିବେ ।

''ଯୁଗକୁ ଯୁଗ ଏହିମତେ,
ପରମାନନ୍ଦ ଏ ଜଗତେ ।''

ସଂସାରରେ ଅଧର୍ମର ଭାର ବେଶି ହେଲେ ସଂସାର ବୁଡ଼ିଯାନ୍ତା । ସଂସାର ସେହି ସୀମାରେ ପହଞ୍ଚିବା ପୂର୍ବରୁ ''ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ''- ଭଗବାନ୍ ପୃଥିବୀରେ ଅବତାର ଗ୍ରହଣ କରି ବାର ହାତ ଖୋଳକୁ ତେର ହାତ ଖଣ୍ଡାଧରି (ଅର୍ଥାତ୍ ଅଭାବନୀୟ, ଅବିଚିନ୍ତନୀୟ, ଅଘଟନୀୟ ଘଟନାମାନ ଘଟାଇ) ପୃଥିବୀକୁ ପ୍ରଳୟ-ପ୍ରୟୋଧି-ଜଳରାଶିରୁ ଉତ୍ତୋଳନ କରନ୍ତି ଓ ପୂର୍ବବର୍ତ୍ତୀ କାଳର ବୀଜ-ପୋଥିଖଣ୍ଡ ଉଦ୍ଧାର କରି ଭକ୍ତ ହାତରେ ଥୋଇ ଦିଅନ୍ତି । ଏଥିପାଇଁ ପାଠରେ ମୀନ, କଚ୍ଛପ, ବରାହ, ନୃସିଂହ, ବାମନ, ରାମ ବର୍ଣ୍ଣିତ ହୋଇଅଛି । ସେ ଅବତାରର ଅବସର ଓ ସମୟ ନିରୂପଣ କରିବାର ତାକତ୍ ଏ ଛାର ମନୁଷ୍ୟର ନାହିଁ । ସେ ସବୁ ଘଟନା ଅଘଟନଘଟନ ପଟୀୟସୀ ପ୍ରକୃତି ଦେବୀଙ୍କୁ ଜଣା । ଛାର ମନୁଷ୍ୟ 'ଯଥା ନିଯୁକ୍ତୋଽସ୍ମି ତଥା କରୋମି' କରୁଥାଏ ।

(ନୋଟ୍- ପାଠକ ଅବଧାନ । ଏହିଠାରେ ନନାଙ୍କ ବସ୍ତାନିରେ କେତେଗୁଡ଼ିଏ ଶାସ୍ତ୍ରବଚନ, ଅଚ୍ୟୁତାନନ୍ଦ ମାଳିକାରୁ ପୁଡ଼ା କେତେ, ଜମାଳି ଗୋଟି କେତେ ଟିପା ଅଛି- ସେଗୁଡ଼ିକ ଉପରୋକ୍ତ କଥାଗୁଡ଼ାକ ସାଫ କରି ବୁଝାଇବା ନିମନ୍ତେ ପିତୃଦେବ ଲେଖି ରଖିଥିଲେ । ସେଗୁଡ଼ିକ ଏଠାରେ ଲେଖିବାର ଆବଶ୍ୟକ ବୋଧ ନ ହେବାରୁ ଲେଖକ ସେଗୁଡ଼ିକ ଏଠାରେ ଉଦ୍ଧାର କରିବାକୁ କ୍ଷାନ୍ତ ହେଲା ।)

ଉତ୍କଳ ସାହିତ୍ୟ/୧୯ଶ ଭାଗ/୪ର୍ଥ ସଂଖ୍ୟା/୧୩୨୨ ସାଲ ।

## ।। ସାତ ।।

ସନ ୧୫୬୮ ସାଲ କୁମ୍ଭ ୨୨ ଦିନ ।

ଆମ୍ଭେମାନେ ଯେତେବେଳେ ପିଲା ଥିଲୁଁ, ସେତେବେଳେ ଆମ ନନା ଓ ବାପା ଆମକୁ ଇସ୍କୁଲରେ ଅଂରେଜୀ ପାଠ ପଢ଼ାଇବାକୁ ଭାରି ନାରାଜ ହୋଇଥିଲେ । କହୁଥିଲେ, ''ଇସିକୁଲ ନୁହେଁ- ଏ ସେ କୁଳ ।'' ଅର୍ଥାତ୍ ଇସିକୁଲରେ ପଢ଼ିଲେ ଏ କୁଳ ସେ କୁଳ- ଅର୍ଥାତ୍ ଏ କୁଳରୁ ଯାଇଁ ସେ କୁଳରେ ପଶିବାକୁ ହେବ- ଅର୍ଥାତ୍ ପିଲାଗୁଡ଼ାକ ଜାତି ପତି ହରାଇବେ । ଏହି ବିଶ୍ୱାସରେ ଆମେଗୁଡ଼ାକ ଅଂରେଜୀ ପାଠ ନ ପଢ଼ି ମୂର୍ଖ ହୋଇ ରହିଲୁଁ । ତେବେ ନିତାନ୍ତ ମନ ନ ମାନିଲା ବୋଲି ବୁଢ଼ା ଦିନେ ଆମେ ଫାଷ୍ଟବୁକ୍ ଠାରୁ ଆରମ୍ଭ କରି ଥାର୍ଡ୍‌ବୁକ୍ ଅଫ୍ ରିଡ଼ିଙ୍ଗ୍ ପର୍ଯ୍ୟନ୍ତ ବୁଢ଼ାକୁଆ ଭାବେ କଟର କଟର କଲୁଁ । ଅଂରେଜୀ ହରପରେ ଆପଣା ନାମଟା ସନ୍ତକ କରିବାର କ୍ଷମତା ହେଲା ଓ ଏହିଠାରେ ଆମର ପାଶ୍ଚାତ୍ୟ ଜ୍ଞାନ ଓ ସଭ୍ୟତାର ଆକାଂକ୍ଷା ପୂର୍ଣ୍ଣ ହେଲା । ପାଠ ଡାକୁଛି- ''ଚଷା ହୁଡ଼ିଲେ ଯାଏ ବରଷେ, ମଣିଷ ହୁଡ଼ିଲେ ପୁରୁଷେ ।'' ଆମ ପୁରୁଷଟା ବିତିଗଲା, ଆମ ପିଲାଙ୍କୁ ଅଂରେଜୀ ପଢ଼ାଇ ମନର ଓର୍‌ମାନ ମେଣ୍ଟାଇବାର ବାସନା ବଳବତୀ ହେଲା । ଈଶ୍ୱର ବେଳ କାଳ ଉଣ୍ଡିବାବୁ ଗୋପାଳ ଚନ୍ଦ୍ରଙ୍କୁ ଆଣି ପହଞ୍ଚାଇ ଦେଲେ । ତାଙ୍କ ପାଇଁ ଗ୍ରାମରେ ଗୋଟିଏ ମାଇନର ଇସ୍କୁଲ ବସାଇଲୁଁ । ଆମର ଉଦ୍ଦେଶ୍ୟ ଯେ, ବେରିଙ୍ଗ ପୋଷ୍ଟରେ ବେଖରଚାରେ ଆମ ଗୁଣମଣି ଅଂରେଜୀ ଇଲମ ହାସଲ କରିବେ । ଏଣେ ଲୋକେ ଜାଣିଲେ ଓ ଘୋଷିଲେ ଯେ ଆମେ ସ୍ୱାର୍ଥ ତ୍ୟାଗ କରି, ସ୍ୱାର୍ଥ ବ୍ୟୟ କରି ଦେଶର ମଙ୍ଗଳ ପାଇଁ ଆମ ଚଞ୍ଚଳବାସୀ ବାଳକମାନଙ୍କର ଆଧୁନିକ ଶିକ୍ଷାଲାଭ ପାଇଁ ଇସ୍କୁଲଟିଏ ବସାଇଲୁଁ । ଫଳ ହେଲା ଏତକ ଯେ, ଆମେ ସେ ଇସ୍କୁଲର ସମ୍ପାଦକ ହେଲୁଁ ଓ ଇସ୍କୁଲର ମାଷ୍ଟର ସାଧାରଣ ଚାନ୍ଦାରୁ ଦରମା ପାଇଲେ, କିନ୍ତୁ ଆମ ପିଲାଙ୍କୁ ବିନା ଖରଚାରେ ଘରେ ପଢ଼ାଇବା ପାଇଁ ଅଷ୍ଟପ୍ରହରୀ ନମୁଦ ହେଲେ । ଆମ ବାପା ମା ଅବଧାନଙ୍କୁ କୁଣ୍ଢା ଦେଇ ଆମକୁ ପାଠ ପଢ଼ାଇଥିଲେ, ଆମେ ସେତକ ଖରଚାରୁ ମଧ ରକ୍ଷା ପାଇଲୁଁ । ଚାହୁଁ ଚାହୁଁ ଆମ ପିଲାଏ କିଲାସକୁ କିଲାସ ଗିଲାସକୁ ଗିଲାସ ଭଳି ଘର ଛୁଆଣିକୁ ଘର ଛୁଆଣି ମାଡ଼ିଗଲେ । ପଛକୁ ଦେଖାଗଲା ଯେ, ପିଲାଙ୍କ ବିଦ୍ୟା ଆଉ ଗ୍ରାମ ବିଦ୍ୟାଳୟର ବାଉଣ୍ଡରି ଭିତରେ ସମ୍ଭଳା ପଡ଼ିବ ନାହିଁ- ସେଠାରୁ ତାଙ୍କୁ ଉଚ୍ଚଶିକ୍ଷାପାଇଁ କଟକର ବଡ଼ ଇସ୍କୁଲକୁ ପଠାଇବାକୁ ହେଲା । ସେଠାରେ ଅନେକ ବଡ଼ିଆ ବଡ଼ିଆ ଲୋକଙ୍କ ପିଲାଏ ପଢୁଅଛନ୍ତି । ଅତଏବ ଆମ ପିଲାଙ୍କ ଆକାର, ଇଙ୍ଗିତ, ଗତି, ଚେଷ୍ଟା, ଭାଷିତ, ନେତ୍ରବକ୍ରବିକାର ଓ ଚିକ୍କଣ କୁଞ୍ଚିତ ବାସ ଓ ବେଶ ବଡ଼ଲୋକଙ୍କ ପିଲାଙ୍କର ସେ ସେ ବସ୍ତୁମାନଙ୍କ ସହିତ ସମକକ୍ଷ ହେବା ଉଦ୍ଦେଶ୍ୟରେ ଆମ ପିଲାଙ୍କୁ କଟକ ପଠାଇବା ସଙ୍ଗେ ସଙ୍ଗେ ସେମାନଙ୍କ ପାଇଁ ଅନେକ ସାଜସଜ୍ଜାର ଆୟୋଜନ କରିବାକୁ ହେଲା ।

ସେଇଥିରୁ ପିଲାଏ ଆମର ଲାଗିଲେ ଉଚ୍ଚ ଶିକ୍ଷାରେ । ଚାହୁଁ ଚାହୁଁ ପିଲାଙ୍କ ମୁଣ୍ଡରେ ଥିବା କେଶଗୁଚ୍ଛର ଘନଫଳ ଓ ବର୍ଗଫଳ ଗାଣିତିକ ବର୍ଗମୂଳକୁ ଅନୁଧାବନ କରିବାକୁ ଲାଗିଲା, ଚାହୁଁ ଚାହୁଁ ସଭାବାଳ ବଢ଼ିଲା, ବରଷ କେତେ ବାଦ ଚୁରୁକି, ତତ୍‌ପରେ ନିର୍ମୂଳ । ସେଥିରୁ ଆରମ୍ଭ ହେଲା କେଶମାନଙ୍କ ଆୟତନ ଅନୁସାରେ କିସମତ୍‌ଉଆରି ବଣ୍ଟରା । କେଶର ଅବସ୍ଥିତି ଓ ଅଧିକାର ଅନୁସାରେ କେଉଁ କେଶଟି ଦଶ ଅଣା ଦି ପାହି, କେଉଁ କେଶ ଅଣା ତିନି ପାହି, କେଉଁ କେଶ ଆଠଅଣା, କେହି ବାରଅଣା, କେହି ତିନି ଅଣା ଏହି ଆକାର ଧାରଣ କରି ଟେରିକଟା ହେବା ଉଦ୍ଦେଶ୍ୟରେ କଙ୍କତିକା ଉପଯୋଗୀ ହେଲେ । ପିଲାଙ୍କର କାହାର ଆଲବଟ ଟେରି, କାହାର ମେଣ୍ଢାମୁଣ୍ଡିଆ, କାହାର ଭାଲୁପିଠିଆ, କାହାର ବାଘପେଟିଆ, କାହାର ଘୁଷୁରିଲାଙ୍ଗୁଡ଼ିଆ, କାହାର ଗଧପଛୁଆ, ଏହିପରି ଟେରିମାନ ଶୋଭା ପାଇଲେ । ଆମ ବାପଅଜାଙ୍କ ଅମଳରୁ ଲଗାଏତ ଆମ ଅମଳ ପର୍ଯ୍ୟନ୍ତ ଆମର ଯେଉଁ ଯେଉଁ କଥା, ବସ୍ତୁ, ଢଙ୍ଗ, ଢପ, ନୟନ-କର୍ଣ୍ଣ-କଳ୍ପନା ସ୍ୱପ୍ନଗୋଚର ହୋଇ ନ ଥିଲା, ଆମ ପିଲାଙ୍କ ଉଚ୍ଚଶିକ୍ଷା ପ୍ରସାଦରୁ ସେଗୁଡ଼ିକ ଆମ ଘରେ ଦେଖାହେଲା । ''ଆପେ ଅର୍ଜିଲା କର୍ମମାନ- ଆଗେ ହୁଅନ୍ତି ସାବଧାନ ।'' ''ଆପ୍ କିଆକୁ ଇଲାଜ୍ କିଆ ?'' ପିଲାଙ୍କୁ ଦେଖି ମନଟା ବେଳେ ବେଳେ ରବେଇ ଖବେଇ ହୁଏ, କିନ୍ତୁ ପିଲାଏ ପଢ଼ି ଯୋଗ୍ୟ ହେଲେ ଆମର ବୁଢ଼ାଦିନେ ଯେଉଁ ସୁଖ ହେବ, ସେହି ସୁଖର କୁହୁକ ଆମ ମନର କ୍ଷଣିକ ଅଶାନ୍ତି ଓ ଉଦ୍‌ବେଗକୁ ବୁଡ଼ାଇ ଦେଲା । ସେଥିରୁ ପିଲାଏ ଆମର ପାସକୁ ପାସ ଫାଶକୁ ଫାଶ ଭଳି ଆରମ୍ଭ କଲେ । ପିଲାଙ୍କ ନାମ ପଛରେ ଇଣ୍ଟୋନେସ୍, ଏଲେ, ବିଏ, ଏମେ ଏହିପରି ସବୁ ଲାଗିଗଲା । ପାସ୍‌କଲା ପିଲାଙ୍କୁ ଏଣିକି ଆମେ ପତ୍ର ଲେଖିଲା ବେଳକୁ ଉପାଧି ସବୁ ଲେଖିବାରେ ଭୁଲ କରିବାରୁ ପିଲାଏ ଆମ ଉପରେ ବିରକ୍ତ ହେଲେ ଓ ଅଗତ୍ୟା ଚିଠି ଉପରର ଠିକଣାମାନ ଆମ ଗାଁ ଇସ୍କୁଲର ମାଷ୍ଟରଙ୍କଠାରୁ ଲେଖାଇ ଆଣିବାକୁ ହେଲା । ଥରେ ଆମେ ଉପାଧିଟା ଛାଡ଼ିଯାଇ ପତ୍ର ଦେଇଥିଲୁଁ ବୋଲି ଆମ ଗୋପାଳଚନ୍ଦ୍ର ଚିଠିଖଣ୍ଡ ନ ଖୋଲି ଫେରାଇ ଦେଲେ । ଏଣେ ମାତାଙ୍କ ଦେହ ଶକ୍ତ ବେମାର- ମାତାଙ୍କ ଅନ୍ତେ ବାବୁ ଗ୍ରାମକୁ ଆସି ଚିଠି ଫେରାଇ ଦେବାର କାରଣ ବିଶଦଭାବରେ ଆମକୁ ବୁଝାଇ ଦେଲେ । କହିଲେ ଯେ, ଭଦ୍ରତା (ଆଦବ୍‌କାଏଦା) ଅର୍ଥାତ୍ ଏଟିକେଟ୍ ସଭ୍ୟତାର ପ୍ରଥମ ଲହଡ଼ି । ଯେ ଏଟିକେଟ୍ ନ ଜାଣେ, ସେ ''ସାକ୍ଷାତ୍ ପଶୁଃ ପୁଚ୍ଛ ବିଷାଣହୀନଃ'' । ଆମେ ଏହା ଶୁଣି ତାଙ୍କ ସଙ୍ଗେ ଜବାବ ସୁଆଲ କରିବାକୁ ଲାଗିଲୁଁ । ଶେଷରେ ତାଙ୍କ ଯୁକ୍ତି ଅନୁସାରେ ଏହି ସିଦ୍ଧାନ୍ତ ହେଲା ଯେ ନୂଆ ପାଠୁଆଯାକ 'ପିନିସିପଲ'ର (Principles) ମର୍ଯ୍ୟାଦା ବା ଟେକ ରଖିବା ନିମନ୍ତେ ସବୁ ତ୍ୟାଗ କରିପାରନ୍ତି । ଅର୍ଥାତ୍ ସଂସାରରେ ନୂଆ ପାଠୁଆମାନେ ଘର, ଦୁଆର, ବାପ, ମା, ପିତୃ ମାତୃ ଶ୍ରାଦ୍ଧ, ଜାତି, କୁଳ ସବୁ ତ୍ୟାଗ କରିବାକୁ ପ୍ରସ୍ତୁତ, କିନ୍ତୁ 'ପିନିସିପଲ' ତ୍ୟାଗ କରିବେ ନାହିଁ । କଥାଟା କିନ୍ତୁ ଆମେ ପ୍ରଥମେ ସମଝି ନ ପାରି ବଡ଼ ହଇରାଣରେ

ପଡ଼ିଲୁଁ । 'ପିନସିପଲ'ଟା କଣ ? ମନ କଥା ମନରେ ରହିଲା, ପିଲାଙ୍କ କାର୍ଯ୍ୟକଳାପ ଦେଖିଲେ ପିଲାଙ୍କ 'ପିନିସିପଲ' କଥାଟା ଭବିଷ୍ୟଦ୍‌ରେ ପକଡ଼ି ନେଇପାରିବୁଁ ବୋଲି ପିଲାଙ୍କ ସଙ୍ଗେ ଯୁକ୍ତି ତର୍କ ନ କରି କର୍ମକୁ ଆଦରି ରହିଲୁଁ ।

ଆମ ଘର ପିଲାଏ ଦିନକୁ ଦିନ ଶଶିକଳା ଭଳିଆ ବଢ଼ିଲେ । ଆଜି ଦେଶର କାର୍ଯ୍ୟ, କାଲି ବକ୍ତୃତା, ପରଦିନ ଖବରକାଗଜରେ ପ୍ରବନ୍ଧ ଓ ପ୍ରେରିତ ପତ୍ର ଲେଖା, କେଉଁ ଦିନ ଜ୍ଞାନଲାଭ ଓ ପରୋପକାର ନିମନ୍ତେ ଦେଶ ପର୍ଯ୍ୟଟନ, ଆମ ଗାଁରେ ବାଳିକା ବିଦ୍ୟାଳୟ, ବାଉରି ସାହିରେ ନୈଶ ବିଦ୍ୟାଳୟ, ତନ୍ତୀ ସାହିରେ ବୟନ ବିଦ୍ୟାଳୟ, ଦେଶର ହାକିମହୁକୁମାମାନଙ୍କ ସଙ୍ଗେ ସାଧାରଣ କାର୍ଯ୍ୟରେ ଯୋଗଦାନ, ଏହିପରି କ୍ରିୟାକଳାପ ପ୍ରଥମେ ଶ୍ରୁତିଗୋଚର, ତପ୍ରେ ନୟନଗୋଚର ଓ ଶେଷକୁ ସ୍ପର୍ଶଗୋଚର ହେଲା । ଦେଖିଲୁଁ ଯେ ପିଲାମାନଙ୍କ ନାମ ଦେଶର ଖବରକାଗଜମାନଙ୍କରେ ରଟିଲା ଓ ସମସ୍ତେ ଆମ ପିଲାଙ୍କୁ ଧନ୍ୟ ଧନ୍ୟ କଲେ । ଆମେ ମଧ ଏହା ଦେଖି ଆମ ପିଲାଙ୍କ ଜନ୍ମଦାତ୍ରୀଙ୍କ ସ୍ୱାମୀ ବୋଲି ଆମ ମନକୁ ମଧ ଲଗାମ ଦଉଡ଼ି ପାଇଲା ନାହିଁ ।

କି ରେ ପିଲାଏ ଏତେ ପରିଶ୍ରମ, ଏତେ ଖରଚ, ଏତେ ଦୌଡ଼ାଧାପଡ଼ା, ଏତେ ସ୍ୱାର୍ଥ (ଅର୍ଥାତ୍ ବାପାଙ୍କ ଅର୍ଥ) ତ୍ୟାଗ କାହିଁକି ରେ ? ଉତ୍ତର - 'ପିନିସିପଲ'ର ଟେକ ରଖିବା ନିମନ୍ତେ, ଦେଶସେବା ନିମନ୍ତେ । ତେବେ ବି ସୁଦ୍ଧା 'ପିନିସିପଲ'ର ଅର୍ଥ ଆମକୁ ଧରା ପଡ଼ିପାରିଲା ନାହିଁ । ଦିନେ ବକ୍ତୃତାଟିଏ ଶୁଣିବାକୁ ଗଲୁଁ । ସେଠାରେ ମଧ ଦେଖିଲୁଁ ଯେ ଏହି 'ପିନିସିପଲ'ର ପୂଜା - ବଡ଼ ଠାରୁ ସାନ ପର୍ଯ୍ୟନ୍ତ ସମସ୍ତଙ୍କ ମୁହଁରେ 'ପିନିସିପଲ' - ସମସ୍ତେ ବକ୍ତୃତା ମଞ୍ଚରେ ଠିଆ ହୋଇ ରାବିଲେ - ''ସବୁ ଯାଉ, 'ପିନିସିପଲ' ଥାଉ ।'' ଆଗେ ଆମ ବାପଅଜାଙ୍କ ଅମଳରେ ଶୁଣିଥିଲୁଁ, ''ସବୁ ଯାଉ, ମହତ ଥାଉ'', ବର୍ତ୍ତମାନ ପିଲାଙ୍କ ମୁହଁରେ ଦେଖିଲୁଁ ଏ କଥା । ଏଥିକି କରାଯାଏ କ'ଣ ? ଏହିପରି ଦିନାକେତେ ବିତିଗଲା - ପିଲାଙ୍କ ପାଇଁ ପିଲି ମଧ ଯୋଗାଡ଼ କରି ଅଣାଗଲା ଓ ପିଲାମାନେ ସଂସାରରେ ପଶିଲେ । ସଂସାରରେ ପଶି ମଧ ପ୍ରଥମେ ପ୍ରଥମେ ସେହି କଥା । ଆଜିପର୍ଯ୍ୟନ୍ତ ସିନା ଦାଣ୍ଡରେ, ହାଟରେ, ଖବରକାଗଜରେ, ବକ୍ତୃତା ମଞ୍ଚରେ ପରୋପଦେଶେ ପାଣ୍ଡିତ୍ୟ ଚାଲୁଥିଲା, ଏବେ ପିଲାଙ୍କ ବେକରେ ପଡ଼ିବାରୁ ବଜାଇବାକୁ ହେଲା । ଦେଖାଯାଉ, ପିଲାଏ ଏ ଯାତ୍ରା କଣ କରୁଅଛନ୍ତି ? ଆମେ ଏହି ଅପେକ୍ଷାରେ ରହିଲୁଁ ।

ଦେଖ, ଦେଖ, ଏ 'ପିନିସିପଲ' କଥାଟା ପିଲାଙ୍କର 'ପୋଥିବାଇଗଣ' ହେଲା । ପରୋପଦେଶ ବେଳକୁ ସେହିଟା ପାଟିରୁ ବାହାରେ । ପରୋପଦେଶ ବେଳକୁ ସେହିଟା ଦାଣ୍ଡ ଘର ଠଣା ଉପରେ ରଖିଦେଇ ପିଲାଏ ଆମର ଘର ଭିତରକୁ ପଶନ୍ତି । ଏହା ଦେଖି ଆମ ପିଲାଙ୍କ ଉପରେ ଓ ଆମ ପିଲାଙ୍କ ଓସ୍ତାଦ୍‌ମାନଙ୍କ ଉପରେ ଆମର ଗୋଟାଏ 'ଭୟାନକ ଭକ୍ତି'ର ଉଦ୍ରେକ ହେଲା । ଦେଖିଲୁଁ ଯେ ପିଲାଏ ଆମର 'ଦେଶ ସେବା',

'ଜାତୀୟ ଉନ୍ନତି,' 'ସ୍ୱାର୍ଥ ତ୍ୟାଗ', 'ପିନିସିପଲର ମର୍ଯ୍ୟାଦା ରକ୍ଷା', 'ବ୍ରହ୍ମଚର୍ଯ୍ୟ', 'ବୈରାଗ୍ୟ' ଆଦି ନିମନ୍ତେ ଦାଣ୍ଡରେ ହାଟରେ ଯେଉଁ କିଳିକିଳା କୁହାଟ ମାରନ୍ତି, ଘର ଭିତର ଅନ୍ଦର ମହଲରେ ଓ 'ଘରଆଡ଼େ' ପହଞ୍ଚିଲା ବେଳକୁ ସେଥିରୁ ପନ୍ଦର ପଣ ଉଣେଇଶ ଗଣ୍ଡା ତିନି କଡ଼ାର ଅସ୍ତିତ୍ୱ ଲୁପ୍ତ ହୋଇ ଯାଇଥାଏ । ସେ କୁହାଟକୁ କାଣିଚାଏ ପିଲାଙ୍କ ଘରଆଡ଼ ପର୍ଯ୍ୟନ୍ତ ଆସୁଥିଲେ ଆମ କଥା ଦୂରେ ଥାଉ, ଆମ ବାପାଅଜା ସାତପୁରୁଷ ଘର ବାସ୍ତୁର ଚତୁଃସୀମା ଛାଡ଼ି ପଳାନ୍ତେ । ପିଲାଙ୍କୁ ଥରେ ବିଶ୍ୱାସରେ ପଚାରିଲୁଁ ଯେ, ଏ ଧଳା ବଳଦ, କଳା ବଳଦର ଅର୍ଥ କଣ ? ପିଲାଏ ଏ ବି ଦେଖିଲେ ଯେ ବୁଢ଼ାଟା ଖୋଇପେଇ ଆମକୁ ମଣିଷ କଲା, ବୁଢ଼ାକୁ ବେକୁବ୍ ବନାଇ ବୁଢ଼ାକୁ ମୋଟା ପିନ୍ଧାଇ ରୋଟା ଖୁଆଇ ଆମେ ବୁଢ଼ାର ପଇସାରେ, ବୁଢ଼ାର ଝାଳବୁହା କଉଡ଼ିରେ ବାବୁଗିରି କଲୁଁ ଓ ଦେଶ ଜୟ କଲୁଁ । ବର୍ତ୍ତମାନ ବୁଢ଼ାକୁ ଅକ୍ତିଆର ନ କଲେ ବୁଢ଼ା ଆମ ଗୁମରତକ ଦାଣ୍ଡରେ ଫିଟାଇ ଦେବ ଓ ଆମକୁ ଲୋକେ ଖଟୁଲିରେ ବସାଇ ଯେଉଁ ପୂଜା କରୁଅଛନ୍ତି, ଆମର ସେତକ ଯିବ । ବିଶେଷତଃ ବୁଢ଼ାର ଆମର ଅପଡ଼ ହେଲେ ଲୋକେ ନିନ୍ଦା କରିବେ ଓ 'ଆପଣା ସୁନା ତ ଭେଣ୍ଡି, ପର ସାଙ୍ଗେ କିଆଁ ଚୁଟି ଧରାଧରି' ଢଗର ଉଲ୍ଲେଖ ଦେବେ ।

ଆମେ ମଧ୍ୟ ଦେଖିଲୁଁ ଯେ କଳିକାଳିଆ ଟୋକାଏ ଅତି ଉତ୍ତୁରିଲେଣି, ସେମାନଙ୍କ ଜାତି ପତି, ପଇତା ମାଳି, ସବୁ ଗଲାଣି । ଆମେ ଆଗେ ଯେଉଁ ଯେଉଁ କଥା ଓ ଦୁର୍ନୀତିମାନଙ୍କ ପାଇଁ ପର ପୁଅଙ୍କୁ ଖୁଣ୍ଟା ଦେଉଥିଲୁଁ, ସେହିସବୁ କଥା ଆମରି ଘରେ ଓ ଆମରି ପିଲାଙ୍କଠେଇଁ ଶତ ଗୁଣରେ ଫଳିଲା । ଏପରି ସ୍ଥଳରେ ପିଲାଏ ଯେପରି 'ଲଜ୍ଜାମେକାଂ ପରିତ୍ୟଜ୍ୟ ତ୍ରିଲୋକ-ବିଜୟୀ' ହୋଇଅଛନ୍ତି, ଆମେ ମଧ୍ୟ ସେହିପରି କାଠମୁହଁ ବାନ୍ଧି ଦାଣ୍ଡକୁ ବାହାରିବା ଓ ପିଲାଏ ଆମର ସ୍ୱର୍ଗର ଦେବତା ବୋଲି ଦାଣ୍ଡରେ ହାଟରେ ଗାଇବା, ବଜାଇବା । ତାହାହେଲେ ଆପେ ଶାନ୍ତିଃ, ପିଲାଏ ଶାନ୍ତିଃ, ପିଲାଙ୍କ ଘରଆଡ଼େ ଶାନ୍ତିଃ, ପିଲାଙ୍କ ଓସ୍ତାଦେ ଶାନ୍ତିଃ, ପିଲାଙ୍କ ମାତା ଶାନ୍ତିଃ, ପିଲାଙ୍କ ମନଃ ଶାନ୍ତିଃ, ପିଲାଙ୍କ 'ପିନିସିପଲ' ଶାନ୍ତିଃ, ପିଲାଙ୍କ ହାକିମହୁକୁମା ଶାନ୍ତିଃ, ପିଲାଙ୍କ ଅନୁଚର, ବିଚର, ଖଚର, ଇତରଚର, ବର୍ଗଚର, ସ୍ୱର୍ଗଚର, ଧର୍ମଚର, ଅଧର୍ମଚର, ସବୁ ଶାନ୍ତିଃ, ସଂସାର ଶାନ୍ତିଃ, ସଭ୍ୟତା ଶାନ୍ତିଃ- ଶାନ୍ତିଃ ଶାନ୍ତିଃ ଶାନ୍ତିଃ ହୋଇଯିବ- ଜଗତରେ, ସଭ୍ୟ ସମାଜରେ, ପିଲାଙ୍କ ସମ୍ମିଳନୀରେ ସବୁଠାରେ ଅବିଚ୍ଛିନ୍ନ ଶାନ୍ତିସୁଧା ବର୍ଷଣ ହେବ । ଅତଏବ ହେ ମରହଟ୍ଟୀ ଓଲ୍ଲୁ ଭାଇ ଆପଣେ ! ଆମ ସଭ୍ୟ ପିଲାଙ୍କ 'ପିନିସିପଲ' ମାହାତ୍ମ୍ୟ ଶୁଣିବାକୁ ସାବଧାନ ହେଉ ।

ଆମ ପାଠୁଆ ପିଲାଙ୍କ 'ପିନିସିପଲ'ର ମାହାତ୍ମ୍ୟ ଯାହା କି ସେମାନଙ୍କ ମୁହଁରୁ ଓ କାର୍ଯ୍ୟକଳାପରୁ ଶୁଣିଲୁଁ, ଦେଖିଲୁଁ, ଚାଖିଲୁଁ, ଶିଖିଲୁଁ, ଭକ୍ଷିଲୁଁ, ତାହା ନିମ୍ନରେ ବର୍ଣ୍ଣନ କଲୁଁ :

**ପ୍ରଥମ ଅଧ୍ୟାୟ** - ଦଳ ମଧ୍ୟରୁ ଜଣଙ୍କୁ ଦେବତା ବନାଇ ଦଳପତି କରିବାକୁ ହେବ ଓ ତାଙ୍କୁ ଖଟୁଲିରେ ପୂରାଇ ବାରମ୍ବାର ଶୁଣ୍ଢିପିଣ୍ଡା କରିବାକୁ ହେବ । କେଳା ଯେଉଁ ଗୋପଲୀଳା କରନ୍ତି, ସେଥିରେ କଣ୍ଢେଇଙ୍କ ନାନା ଅଙ୍ଗପ୍ରତ୍ୟଙ୍ଗରେ ଅଦୃଶ୍ୟ ସୁତୁଲି ବାନ୍ଧି ପରଦା ଭିତରେ ଥାଇ ଯେପରି ଖେଞ୍ଚନ୍ତି ଓ ଏଣେ ଦାଣ୍ଡକୁ ପିତୁଳାଟିମାନ ନାଚୁଥାନ୍ତି, ସେହିପରି ଏ ଦଳପତି ଠାକୁରଙ୍କୁ ଖେଞ୍ଚିବାକୁ ହେବ । ଯେତେବେଳେ ଯାହା ଚାହିଁବ ସେ ସେତେବେଳେ ତାହା କରିବେ । ହସିବେ, କାନ୍ଦିବେ, ବୋବାଇବେ, ଚୋବାଇବେ, ମୂର୍ଚ୍ଛା ଯିବେ, ଉଠିବେ, ପଟିବେ, ଖଟିବେ ଇତ୍ୟାଦି । ଯେବେ ଠିକଣା ମୁତାବକ ଦଳପତିଟିଏ ମିଳିଯାନ୍ତି, ତାହାହେଲେ ଯାତ୍ରାଟି ଦସ୍ତୁରମତେ ଜମିବ ଓ ଦେଖଣାହାରୀ ବହୁତ ରୁଣ୍ଡ ହେବେ । ଦଳପତିଙ୍କ କାର୍ଯ୍ୟକଳାପର ଦୁଇଟା ଗୋଟାଏ ଉଦାହରଣ ଏଠାରେ ଦେଲେ ସାଫ ବୁଝାଯାଇପାରିବ । ଦଳପତି ସବୁବେଳେ ସଂସାରର ଦୁଃଖ ସହି ନ ପାରି ପାଣିକୁ ଡେଇଁ ପଡ଼ିବାକୁ ଦଉଡୁଥିବେ- ଏଣେ ତାଙ୍କ ପଛେ ବିମାନବତ୍ତୁଯାକ ଗୋଡ଼ାଇ ଥିବେ ଓ ଡାକ ପକାଇଥିବେ, ''ହେ ଦେବତା ! ହେ ପରିତ୍ରାତା ! ପାଣିକୁ ନ ଡିଅଁ ! ଆମକୁ ଅନାଥ ନ କର ! ଧାରାକୁ ନିରାଧାରା ନ କର, ସରସ୍ୱତୀଙ୍କୁ ନିରାଲମ୍ବା ନ କର, ପଣ୍ଡିତମାନଙ୍କୁ ଖଣ୍ଡିତ ନ କର, ଆପଣେ ଆମ୍ଭମାନଙ୍କ ମାୟା ଛାଡ଼ି ସ୍ୱର୍ଗକୁ ଚାଲି ନ ଯାଅ ।'' ଦେବତା ଯାହା ଦିପାହୁଣ୍ଡିଆ ଦଉଡୁଥିବେ, ଶିଷ୍ୟମାନଙ୍କ ଏ ଆର୍ତ୍ତନାଦ ଶୁଣି ଚାରିପାହୁଣ୍ଡିଆ ଛାଡ଼ତକ୍‌ ବେଦମ୍ ଦଉଡ଼ା ଦଉଡ଼ିବେ । ଦଉଡୁ ଦଉଡୁ ଅଧବାଟରେ ଝୁଣ୍ଟିପଡ଼ି ଝାମ ଖାଇଯିବେ । ଶିଷ୍ୟଯାକ ନାକ କାନ ଫୁଙ୍କି ପକାଇ ତାଙ୍କୁ ସାଷ୍ଟମ କରି ଆଶ୍ରମକୁ ଘେନିଆସିବେ । ଏହି ହସ୍ତା ଦେଖି ଦେଖଣାହାରି ଜମା ହୋଇଯିବେ ଓ ଦୁନିଆରେ ଦେବତାଙ୍କର କୀର୍ତ୍ତି ବିଘୋଷିତ ହୋଇ ଅମରତ୍ୱ ଲାଭ ହେବ ।

ପ୍ରତିମା ବିକା ଯାଉଥିବ । ଦୋକାନକୁ ଯାଇ ଗହକିମାନେ ଯେପରି ପ୍ରତିମାର ନାକ, କାନ, ଆଖି, ପାଟି, ପେଟ, ଗୋଡ଼ ଆଦି ପରଖ କରି ପ୍ରତିମାଟିଏ ବାଛି ଆଣି ପ୍ରତିଷ୍ଠା କରନ୍ତି, ସେହିପରି ବାଛିବୁଛି ଗୋଟିଏ ଦଳପତି ଠିକ୍ କରିବାକୁ ହେବ । ସେ ନିଜେ କହିବେ ଯେ ସଂସାରର ସୁଖ, ଐଶ୍ୱର୍ଯ୍ୟ ଆଦି ତାଙ୍କୁ ପିତା ଲାଗେ । କିନ୍ତୁ ସେହିତା ଦିନ ରାତି ଚମଚଟା ଭଳି ଚାଟୁଥିବେ, କହୁଥିବେ- ଛି ! ଛି ! ଛି ! ଏଗୁଡ଼ାକରେ ଘାଣ୍ଟି ହେବି ଆଉ କେତେ ? ଶିଷ୍ୟଯାକ କହିବେ- ''ଅବଧାନ ! ଏ ସବୁ କଷ୍ଟ ଆମରିପାଇଁ ଆପଣ ସହୁଛନ୍ତି ସିନା ? ଯେତେବେଳେ ସାର୍ବଜନୀନ ସେବାବ୍ରତ ଧାରଣ କରି ''ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ'' ଏ ମରଦେହରେ ଅବତାର ଗ୍ରହଣ କରିଅଛନ୍ତି, ସେତେବେଳେ ଏ ମର କଳେବର ଧାରଣ ନିମନ୍ତେ ଯାହା ଯାହା ଅବଶ୍ୟ କର୍ତ୍ତବ୍ୟ, ତାହା ଆପଣଙ୍କୁ କରିବାକୁ ହେବ । ଆପଣ ନ ଖାଇଲେ ଆମେ ନଳୀରେ ଆପଣଙ୍କୁ ଖୁଆଇବୁ, ଆପଣଙ୍କୁ ସବୁ ପଦାର୍ଥ ସମର୍ପଣ ନ ହେଲେ ଏ ସଂସାର ତାହା ଭୋଗ କରିପାରିବ ନାହିଁ । ଦଳପତି ଦେଖାଇବେ ଯେ ତାଙ୍କର ଅର୍ଥ ପ୍ରତି ଗୋଟାଏ ବିତୃଷ୍ଣା ଅଛି, ତାଙ୍କ

ହାତକୁ ହଜାରେ ଟଙ୍କା ଆସିଲେ ସେ ଘୃଣାରେ ଜନ ସମକ୍ଷରେ ତାହା ଦାଣ୍ଡକୁ ବା ପୋଖରୀକୁ ବା ନଈକୁ ଫିଙ୍ଗିଦେବେ, ଏଣେ ଶିଷ୍ୟଯାକ କଳକଦରରେ ତାକୁ ଛାଙ୍କିଛୁଙ୍କି ଆଣି ସେହି ଦେବତାଙ୍କ ଶରୀର-ସେବାରେ ଲଗାଇବେ ଓ ଗ୍ରାମ ଗ୍ରାମ ବୁଲି ପ୍ରଚାର କରିବେ ଯେ ''ନିନ୍ଦସି ଯଜ୍ଞ ବିଧେରହ ଶ୍ରୁତିଜାତଂ । ସଦୟ ହୃଦୟ ଦର୍ଶିତ ପଶୁଘାତଂ-କେଶବ ଧୃତ ବୁଦ୍ଧ ଶରୀର ଜୟ ଜଗଦୀଶ ହରେ ।'' 'ନାରାୟଣ ଗୋକୁଳପତି ଆଧୁନିକ ଯୁଗରେ ଏ ଅବତାର ଗ୍ରହଣ କରି ନର ସମାଜକୁ ସ୍ୱଦେହରେ ସ୍ୱର୍ଗକୁ ଉତ୍ତୋଳନ କରିବାକୁ ମୁସ୍ତେଜ ହୋଇ ବସିଅଛନ୍ତି ।'' ଦଳପତି ଦଳର ଲୋକମାନଙ୍କୁ ମତାଇ ସବୁ ଉଚ୍ଛୃଙ୍ଖଳ କାର୍ଯ୍ୟ କରାଇବେ, ସବୁ ସମାଜବିରୁଦ୍ଧ, ନୀତିବିରୁଦ୍ଧ କାର୍ଯ୍ୟ କରିବେ, ଲୋକଙ୍କୁ ଧମକାଇବେ, ଚୁଗୁଲି କହିବେ, ମିଥ୍ୟା ମକଦ୍ଦମା କରିବେ, ଲୋକଙ୍କର ଦୁର୍ନାମ ଦେବେ, ନାନା ପ୍ରକାରେ ଲୋକଙ୍କର ଅନିଷ୍ଟ କରିବେ । ଏ ସବୁ ଦଳପତିଙ୍କ ପରାମର୍ଶରେ ବା ଜ୍ଞାତସାରରେ ହେଉଥିବ । ଏଣେ ଏ ସବୁ କିଛି ନ ଜାଣିଲା ପରି ଦଳପତି ବାହାରି ପଡ଼ିବେ, କହିବେ- ପିଲାଗୁଡ଼ାକ ପାପୀ, ଅପରାଧୀ, ଅଜ୍ଞାନ, ଦୁଧଚୁଚୁମା କଅଁଳା ଛୁଆ । ସେମାନଙ୍କର ଅପରାଧ ପାଇଁ ଦଳପତି ଅତ୍ୟାଚାରିତ ବ୍ୟକ୍ତି ଆଗରେ ଓ ସମାଜ ଆଗରେ ପ୍ରକାଶ୍ୟ ଭାବରେ ଲଥକିନି ଗୋଡ଼ତଳେ ପଡ଼ି କ୍ଷମା ପ୍ରାର୍ଥନା କରିବେ ଓ ଭକ୍ତମାନଙ୍କ ପାପମାନ କ୍ଷାଳନା କରିବା ପାଇଁ ନିଜେ ରକ୍ତ ଦାନ କରିବେ ! ଏହା ଦେଖି ସଂସାର ନାଚିଉଠିବ, କହିବ, ''ଅହୋ ! କି ଅମାନୁଷିକତା ! କି କଠୋର ଦେହ ତ୍ୟାଗ ! କି ମର୍ତ୍ତ୍ୟରେ ଦେବାବତରଣ !'' ଏହି ବାହାବା ପାଇ ଦଳପତି ଶାନ୍ତିଃ, ଦଳ ଶାନ୍ତିଃ, ଅତ୍ୟାଚାରିତ ବ୍ୟକ୍ତି ଶାନ୍ତିଃ, ସମସ୍ତେ ଶାନ୍ତିଃ, ଦଳପତିଙ୍କର ପୂଜା ପାଇବା ଆକାଙ୍କ୍ଷା ଶାନ୍ତିଃ ହୋଇଯିବ ।

**ଦ୍ୱିତୀୟ ଅଧ୍ୟାୟ** - ଦଳପତିଙ୍କର ଆଉ ଗୋଟିଏ ବିଶେଷତ୍ୱ ରହିବା ଆବଶ୍ୟକ । ଯେଉଁ ଉପାୟରେ ଜୀବିକା ନିର୍ବାହ କରୁଥିବେ ଓ ଯହିଁ ପ୍ରତି ତାଙ୍କର ଦିବାନିଶି ଧ୍ୟାନ ଥିବ, ସେହି ଉପାୟ ଓ ଜୀବିକାକୁ ସେ ଭୟାନକ ରୂପେ ଘୃଣା କରନ୍ତି ବୋଲି ସର୍ବଜନ ସମକ୍ଷରେ ଘୋଷଣା କରିବେ । ଆମ ଗୋପାଳ ଚନ୍ଦ୍ର ଗତ ୮/୯ ବର୍ଷ ହେବ ଓକିଲାତି କରି କଳା ବଳଦକୁ ଧଳା କରିବାର ଚେଷ୍ଟାରେ ଅଛନ୍ତି- କିନ୍ତୁ କେହି ଖ୍ୟାତନାମା ବ୍ୟକ୍ତି ଆସିଲେ ଆଗେ ପ୍ରଥମେ ଓକିଲାତି ପେସାର ନିନ୍ଦା କୁଳଚନ୍ଦ୍ରମାନଙ୍କ ମୁହଁରୁ ବାହାରେ । କିନ୍ତୁ କାର୍ଯ୍ୟତଃ ପେସା ପ୍ରତି କୈନ୍ଦ୍ରିକାକର୍ଷଣଟା କମିଯିବାର ଦିନେ ସୁଦ୍ଧା କୌଣସି ଉଦାହରଣ ଆମ୍ଭେ ଦେଖି ନାହୁଁ । ଦଳପତି ହେବାର ଏ ଗୋଟିଏ ପ୍ରଧାନ ଉପାଦେୟ ଲକ୍ଷଣ- ଏ ଗୁଣଟି ଥିଲେ ଦିନେ ନିଶ୍ଚେ ଏ ଲକ୍ଷଣବାନ୍ ବ୍ୟକ୍ତି ଦଳପତି ହେବେ ଓ ଖଟୁଲିରେ ପୂଜା ପାଇବେ । ସଂସାରରେ କୌଣସି ପଦାର୍ଥ ପାଇଁ ଦଳପତିଙ୍କର ଆକାଙ୍କ୍ଷା ହେଲେ ସେ ଆକାଙ୍କ୍ଷା ପୂର୍ଣ୍ଣ ହେବାର ପ୍ରଥମ ସୋପାନ- ଉକ୍ତ ବସ୍ତୁର ନିନ୍ଦା ରଟନା । ଦଳପତିଙ୍କ ମୁଖରୁ ଯେଉଁ ପଦାର୍ଥର ନିନ୍ଦା ରଟନା ହେବ, ଶିଷ୍ୟମାନେ ସେହି ପଦାର୍ଥ

ପାଇଁ ସଂସାରଯାକ ଭିକ୍ଷା କରି ଦଳପତିଙ୍କ ପଦତଳେ କୁଢ଼ାଇ ଦେବେ ଓ ସଂସାରରେ ବକ୍ତୃତା ଦେବେ ଯେ ଆମ ଠାକୁରେ ଏ ପଦାର୍ଥକୁ ଘୃଣା କରୁଅଛନ୍ତି; କେବଳ ଆମେ ବଳାଇ ବଳାଇ ତାଙ୍କୁ ଏ ପଦାର୍ଥ ଗିଳାଇ ତାଙ୍କରି ଉଦିଷ୍ଟ ପ୍ରସାଦ ସେବା କରି ଆପଣାକୁ, ସଂସାରକୁ ଓ ସମାଜକୁ କୃତାର୍ଥ କରିବା ଲାଗି ଭିକ୍ଷାପାତ୍ର ହସ୍ତରେ ଦାଣ୍ଡକୁ ବାହାରିଅଛୁଁ । ଏପରି ଉପାୟରେ ଦଳପତିଙ୍କର ଖଣ୍ଡେ ଲୁଗା ଦରକାର ହେଲେ ଭିକ୍ଷାଲବ୍ଧ ଲୁଗା ଦ୍ୱାରା ଦଳପତି, ଦଳ ଓ ଦଳପତିଙ୍କ ଘରଆଡ଼ ପର୍ଯ୍ୟନ୍ତ ସମସ୍ତଙ୍କର ଐହିକ ବସ୍ତ୍ରାଭାବ ଦୂର ହୋଇଯିବ । ଈପ୍ସିତ ପଦାର୍ଥ ପାଇବା ଲାଗି ଏପରି ପ୍ରକୃଷ୍ଟ ଉପାୟ ଆଉ ନାହିଁ ବୋଇଲେ ଚଳେ । ଦଳପତିଙ୍କ ବକ୍ତୃତା ଓ ଶିଷ୍ୟମାନଙ୍କ କାର୍ଯ୍ୟକଳାପ ଯେତିକି ପରସ୍ପର ବିରୋଧୀ ହେବ, ଦଳପତିଙ୍କର ଦେବତ୍ୱ ସେତିକି ବଢ଼ିବ ।

ଆମ ଗୁଣମଣି କଟକ ଠାରେ ମିଉନିସିପାଲିଟି କମିସନର ହେବାର ଆକାଙ୍କ୍ଷା କରି ସହର ତମାମ ବକ୍ତୃତା ଦେଇ ବୁଲିଲେ ଯେ, ଏ କାର୍ଯ୍ୟ କରିବା ମୋର ଆଦୌ ଇଚ୍ଛା ନୁହେଁ, କିନ୍ତୁ ବନ୍ଧୁଯାକ ମତେ ଭାରି ବଳାଉଛନ୍ତି । ଏହା କହି ଶିଷ୍ୟଙ୍କ ଦ୍ୱାରା ଲାଗି ପଡ଼ି କରଦାତାଙ୍କ ବାଡ଼ି ଦୁଆର, ପାଇଖାନା ବାଟ, ଖିଡ଼ିକି ମୁହଁରେ ଜଗି ଖଞ୍ଜ ଓ ଯୋଗାଡ଼ ଲଗାଇ ଦେଲେ । ଏଣେ ଏଥିରେ ଆନୁଷଙ୍ଗିକ ଗସ୍ତ ଓ ଖୋରାକି ଖଇଚାଟା ଗୁଣମଣିଙ୍କ ବାକ୍ସରୁ ରାତି ଅଧରେ ମଖମଲ ମୁଣିରୁ ଦିଆଯାଉଥାଏ । ଏ କଥା ଆମ ଗୁଣମଣି ଓ ଶିଷ୍ୟ ସଂଘଙ୍କ ଛଡ଼ା ଅନ୍ୟ କାହାରିକୁ ଅଗୋଚର । ଏହାକୁ ହିଁ କହନ୍ତି ଦଳପତି ହେବାର ପୂର୍ବ ଲକ୍ଷଣ । ଫଳତଃ ଗୁଣମଣିଙ୍କ ଟିପା ଖରଚ ଖାତା ଦେଖିଲା ବେଳକୁ ଅନାହାରୀ ପଦ ନିମନ୍ତେ ତଦବିର ଖରଚ ତେର କାହାଣ ପାଞ୍ଚ ପଣ ତିନି ଗଣ୍ଡା ଦୁଇ କଡ଼ା ଦୁଇ କ୍ରାନ୍ତ ଆଠ ବିଶ୍ୱା ଏକ କାଣି ! ସ୍ୱାର୍ଥପର ହେବାକୁ ହେଲେ ମୁହଁରେ ଅପରିମିତ ସ୍ୱାର୍ଥତ୍ୟାଗ ଦେଖାଇବାକୁ ହେବ ଓ ବାଛିବୁଛି ଭକ୍ତ ସଂଗ୍ରହ କରିବାକୁ ହେବ । ଘରେ ଭକ୍ତମାନେ ଶଳା ପରିହାସ କରନ୍ତୁ, ମନା ନାହିଁ । କିନ୍ତୁ ଦାଣ୍ଡକୁ ବାହାରି ପଡ଼ିଲେ ଏ ହେବେ ଖଟୁଲିରେ ଦେବତା । ସେମାନେ ହେବେ ବିମାନକାନ୍ଧିଆ ଆପଟ ! ମନେକର, ଦଳପତି ଆଶା କଲେ ଯେ ସହର ମଧ୍ୟରେ ଗୋଟିଏ ରମ୍ୟ ଦ୍ୱିତଳ ହର୍ମ୍ୟରେ ଦୁଗ୍ଧଫେନନିଭ କୋମଳ ଶଯ୍ୟାରେ ଦାସଦାସୀବେଷ୍ଟିତ ହୋଇ ଲୌହଶଳାକାଖଞ୍ଜିତ ବାତାୟନ ମଧ୍ୟ ଦେଇ ସୁଲୁସୁଲିଆ ବାଆ ସମ୍ଭୋଗ କରିବେ । ଏହି ସଂକଳ୍ପ ଦଳପତିଙ୍କ ମନରେ ଜାଗରୂକ ହେଲାକ୍ଷଣି ତହିଁ ଆର ଦିନଠାରୁ ଦଳପତିଙ୍କ ମୁହଁରୁ, ପେଟରୁ, କଲମରୁ, ବହିରୁ ବାହାରିବ ସହରର ନିନ୍ଦା, ରମ୍ୟ ହର୍ମ୍ୟର ଅପକାରିତା, ଲୌହଶଳାକାନ୍ୱିତ ବାତାୟନର ସ୍ୱାସ୍ଥ୍ୟହାନିକର ଦୁର୍ଗୁଣ, ଦାସଦାସୀ ପରିବେଷ୍ଟନର ଅନୈତିକତା । ଏତକ ବାହାରି ପଡ଼ିଲାକ୍ଷଣି ଶିଷ୍ୟଯାକ ଲାଗିଯିବେ ଏ ସବୁ ଉପାଦାନ ସଂଗ୍ରହର ଯୋଗାଡ଼ରେ । ଚାହୁଁ ଚାହୁଁ ଦଳପତିଙ୍କ ପର୍ଣ୍ଣ କୁଟୀର ରମ୍ୟ ତ୍ରିତଳରେ ପରିଣତ ହୋଇଯିବ ଓ ଦଳପତି ଭକ୍ତବର୍ଗବେଷ୍ଟିତ ହୋଇ ଆଧ୍ୟାତ୍ମିକ, ଆଧିଭୌତିକ, ଆଧିଦୈବିକ ଶାନ୍ତି ଓ ଉପଭୋଗରେ ଲାଗିଯିବେ ।

**ତୃତୀୟ ଅଧ୍ୟାୟ** - ଦଳପୁଷ୍ଟି ଓ ଭକ୍ତସଂଖ୍ୟା ବୃଦ୍ଧି ଓ ପୂଜୋପକରଣର ଆୟୋଜନ ନିମନ୍ତେ କେତେଗୁଡ଼ିଏ ଅନୁଷ୍ଠାନ ଆବଶ୍ୟକ ।

(କ) ସ୍ଥାନେ ସ୍ଥାନେ ସଭାସମିତି ସ୍ଥାପନ କରି ସେଥିରେ ଦଳପତିଙ୍କ ସ୍ତୁତିଗାନ, ତୈଳଚିତ୍ର ସ୍ଥାପନ, ଦଳପତିଙ୍କର ଜୀବନୀ ଆଲୋଡ଼ନ, ବକ୍ତୃତା ଦାନ ଇତ୍ୟାଦି ।

(ଖ) ନୈଶ ବିଦ୍ୟାଳୟାଦି ସ୍ଥାପନ କରି ଶିକ୍ଷା ଦ୍ୱାରା ଦଳପତିଙ୍କର ଦେବତ୍ୱ ପ୍ରତିଷ୍ଠା କରିବାକୁ ହେବ ଓ ଜନସାଧାରଣଙ୍କର ଐହିକ ଦୃଷ୍ଟିକୁ ଦଳପତିଙ୍କ ଦେବତ୍ୱ ପ୍ରତି ଆକର୍ଷଣ କରିବାକୁ ହେବ ।

(ଗ) ଏଜେଣ୍ଟ ନିଯୋଗ କରି ତାଙ୍କ ଦ୍ୱାରା କନ୍ୟାଦେଖା ଓ ବାଇଗଣବିକା ଉଭୟ କାର୍ଯ୍ୟର ବନ୍ଦୋବସ୍ତ ଓ ସୁବିଧା କରିବାକୁ ହେବ । ଦଳପତିଙ୍କ ମାହାତ୍ମ୍ୟ ଓ ଐଶ୍ୱରିକ ଶକ୍ତି, ଦାନଶୀଳତା, ପରୋପକାର, ବିଶ୍ୱଜନୀନତା, ତ୍ୟାଗଶୀଳତା, ଅର୍ଥ ପ୍ରତି ଓ ସାଂସାରିକ ପଦ ପ୍ରତି ଘୃଣା ଆଦି ଘୋଷଣା କରିବାକୁ ହେବ । ଆଉ ଦଳପତିଙ୍କ ରଚିତ ବହି ଖଣ୍ଡ ଯେବେ ଏହି ଅବସରରେ ବିକ୍ରି ହୋଇପାରିଲା, ତେବେ ତ ଅତି ଉତ୍ତମ । ହାତୀଦାନ୍ତରେ ସୁନାଛାଆଣି ହେଲା ।

(ଘ) ଦଳପତିଙ୍କର ସ୍ୱାର୍ଥତ୍ୟାଗର ଉଦାହରଣ, ସାଂସାରିକ ପଦ ପ୍ରତି ବିରାଗ, ଦଳପତିଙ୍କ ବ୍ୟକ୍ତିଗତ ଜୀବନର ଅଲୌକିକ ଘଟନାବଳୀ, ଦଳପତିଙ୍କ ବକ୍ତୃତାର ସାର ମର୍ମଗୁଡ଼ିକ ସଂଗ୍ରହ କରି ତାଙ୍କର ସାର୍ବଜନିକ ଓ ସାର୍ବଭୌମିକ ମନ୍ତ୍ରଗୁଡ଼ିକ ଲିପିବଦ୍ଧ କରି ଗୁଡ଼ିଏ ପୁସ୍ତକ-ପୁସ୍ତିକା ରଚିତ ହେବ ଓ ଦେଶରେ ଯେଉଁ କେତେଗୁଡ଼ିଏ ଧନ କୁବେର ଆପଣା ନାମରେ ପୁସ୍ତକ ଉତ୍ସୃଷ୍ଟ ହେଲେ ପୁସ୍ତକର ଛପା ଖରଚ ଦେବାକୁ ପ୍ରସ୍ତୁତ ଅଛନ୍ତି, ସେମାନଙ୍କୁ ଧରି ବିନା ଖରଚାରେ ସେ ବହିଗୁଡ଼ିକ ମୁଦ୍ରିତ କରି ଦେଶତମାମ ବିନା ମୂଲ୍ୟରେ, ଅର୍ଦ୍ଧମୂଲ୍ୟରେ, ତ୍ରିଚତୁର୍ଥାଂଶ ମୂଲ୍ୟରେ ବିତରଣ କରାଯିବ ।

(ଙ) ଦଳର ମତପୋଷଣ, ଦଳବିରୋଧୀଙ୍କର ମତଖଣ୍ଡନ, ଅଭକ୍ତମାନଙ୍କର ଅପବାଦ, ଦଳରେ ଯୋଗ ନ ଦେବା ବ୍ୟକ୍ତିମାନଙ୍କ ନିର୍ଯାତନ, ଦଳପତିଙ୍କର ଐହିକ ଦେହର ପୂଜୋପକରଣ ସଂଗ୍ରହ, ଦଳପତିଙ୍କର ଅପୂଜକମାନଙ୍କୁ ଶୋଧନ, ଦଳପତିଙ୍କର ପୂଜାବ୍ୟତିକ୍ରମରୂପ ପାପର ପ୍ରାୟଶ୍ଚିତ୍ତର ବ୍ୟବସ୍ଥା କରିବା ଉଦ୍ଦେଶ୍ୟରେ କୌଣସି ସମ୍ବାଦପତ୍ର, ଦଳପତିଙ୍କ ଅର୍ଥରେ ଓ ନେତୃତ୍ୱରେ ପ୍ରକାଶିତ ହେବ । କିନ୍ତୁ ତହିଁ ସଙ୍ଗେ ଦଳପତିଙ୍କର କୌଣସି ସଂସ୍ରବ ନାହିଁ ବୋଲି ସାଧାରଣରେ ପ୍ରକାଶ ଓ ଘୋଷଣା କରିବାକୁ ହେବ ।

(ଚ) ବାହାରେ 'ସାଧାରଣ କାର୍ଯ୍ୟ'ର ଭେକ, ମାଳ, ଝୁଲା, ଚିତା, ପଇତା ସବୁର ଦୁହାଇ ଦେଇ ବଡ଼ ବଡ଼ ମଠ ଓ ଆଖଡ଼ାରେ ପ୍ରବେଶାଧିକାର ଲାଭ କରିବାକୁ ହେବ ଓ ପଦସ୍ଥ ଅପଦାର୍ଥମାନଙ୍କୁ ବସ୍ତୁତଃ ଚାଟୁପ୍ରୟୋଗ ଦ୍ୱାରା ମଣ କରିବାକୁ ହେବ ଓ ତଦ୍ଦ୍ୱାରା ସେମାନଙ୍କୁ ତହବିଲରେ ଗୋଟାଏ କିସମତ୍ ଦାବି ପ୍ରତିଷ୍ଠିତ କରିବାକୁ ହେବ ।

ଏ ତୃତୀୟ ଅଧ୍ୟାୟରେ ବର୍ଣ୍ଣିତ ଉପାୟମାନ ଅବଲମ୍ବନ କଲେ ଦଳର ଓ ଦଳପତିଙ୍କର ଆର୍ଥିକ, ସାଂସାରିକ, ଦୈହିକ, ଔଦାରିକ ସବୁ ପ୍ରକାରର ଉନ୍ନତି ଓ ଯଶୋଲାଭ ହେବାର ସମ୍ଭାବନା ।

**ଚତୁର୍ଥ ଅଧ୍ୟାୟ** - ଯେବେ ଦେଖାଯିବ ଯେ ଦେଶରେ ବା ସମାଜରେ କୌଣସି ହତଭାଗ୍ୟ ବ୍ୟକ୍ତି ଆପଣାର ଯୋଗ୍ୟତା, ବିଦ୍ୟା, ସୌଜନ୍ୟ, ସରଳତା ଆଦି ଦ୍ୱାରା ଲୋକପ୍ରିୟ ହେବାର ସମ୍ଭାବନା ଅଛି, ତଦ୍ୱାରା ଦଳପତିଙ୍କର ଦେବତ୍ୱ ପ୍ରତିପାଦନ ବିଷୟରେ ବାଧା ପଡ଼ିପାରେ, ସେ ବ୍ୟକ୍ତିକୁ ସମୂଳେ ନାଶ କରିବାକୁ ହେବ- ତା ନାମରେ, ତା ପରିବାର ନାମରେ, ତା ସନ୍ତାନସନ୍ତତିଙ୍କ ନାମରେ, ତାହାର ଆଶ୍ରୟଦାତାଙ୍କ ନାମରେ ଯଦୃଚ୍ଛା ମିଥ୍ୟା ଓ ଜଘନ୍ୟ ଅପବାଦ ଦେବାକୁ ହେବ ଓ ସେ ଅପବାଦଗୁଡ଼ିକର ପ୍ରମାଣ ଓ ପୋଷକତାରେ ଦଳପତିଙ୍କର ସୁଶିକ୍ଷିତ ଶିଷ୍ୟମାନେ ସାକ୍ଷ ଦେବେ । ଯେପରି ଦଳପତିଙ୍କର ଭାବୀ ପ୍ରତିଦ୍ୱନ୍ଦ୍ୱୀ ଆଉ ସଂସାରରେ ଓ ସମାଜରେ ମୁହଁ ଟେକି ନ ପାରିବ, କଳେ ବଳେ କୌଶଳେ ତହିଁର ବିଧାନ କରିବାକୁ ହେବ । ତା ନାମରେ, ସମ୍ବାଦପତ୍ରରେ ବେନାମି ଚିଠି ଲେଖିବାକୁ ହେବ, ତା ବିରୋଧରେ ସଭାସମିତିର ନିର୍ଦ୍ଧାରଣର ପ୍ରତିଲିପି ହାକିମହୁକୁମାମାନଙ୍କ ନିକଟକୁ ପଠାଇବାକୁ ହେବ । ତାକୁ ଜଘନ୍ୟ ଗାଳିମନ୍ଦ କରି ଡାକରେ ତାହା ନିକଟକୁ ଓ ତାହା ସମ୍ପର୍କୀୟ ବ୍ୟକ୍ତିମାନଙ୍କ ନିକଟକୁ ବେନାମି ଚିଠି ଭିନ୍ନ ଭିନ୍ନ ଅଞ୍ଚଳ ପୋଷ୍ଟଅଫିସ ଜରିଆରେ ପଠାଇବାକୁ ହେବ । ତା ଘରେ ଭ୍ରାତୃ ବିବାଦ ଓ ପାରିବାରିକ ଅଶାନ୍ତିର ବୀଜ ରୋପଣ କରିବାକୁ ହେବ । ଏଣେ କଥା ପଡ଼ିଲେ ବା ଅତ୍ୟାଚାରିତ ବ୍ୟକ୍ତି ଏ କଥାର ସୁରାକ ପାଇଲେ ଦଳପତି ନିଜେ ତା ଦ୍ୱାରସ୍ଥ ହୋଇ ଏସବୁ ଅଜ୍ଞାତ-କାରଣ, ଅତ୍ୟାଚାର ନିମନ୍ତେ ତାହା ନିକଟରେ ଦୁଃଖ ଓ ବେଦନା-ଅନୁଭୂତି ପ୍ରକାଶ କରିବେ ଓ ଭକ୍ତବୃନ୍ଦଙ୍କ କୃତ ଦୋଷକୁ ଆପଣା ଶିରଃରେ ନେଇ ଭକ୍ତମାନଙ୍କ ଦୋଷ, ପାପ, ଅପରାଧ ସବୁ କ୍ଷାଳନ କରିଦେବେ । ଏ ଗଲା ଦଳପତିଙ୍କର ଭାବୀ ପ୍ରତିଦ୍ୱନ୍ଦ୍ୱୀଙ୍କ ପ୍ରତି କର୍ତ୍ତବ୍ୟ ।

**ପଞ୍ଚମ ଅଧ୍ୟାୟ** - ଦଳପତିଙ୍କ ଦେଶରେ ବା ଅଞ୍ଚଳରେ ଯେବେ କେହି ବ୍ୟକ୍ତି ପୂର୍ବରୁ ଦଳପତିଙ୍କ ଆସନ ମାଡ଼ି ବସିଥାନ୍ତି ବା ସମାଜରେ ବକଧାର୍ମିକ ନେତା ବୋଲି ପୂଜା ପାଉଥାନ୍ତି, ତେବେ ତାକୁ ଆସନଚ୍ୟୁତ କରିବା ସହଜ ନୁହେଁ । ତାଙ୍କ ତିରୋଧାନ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ହେବ ଓ ତାଙ୍କୁ ହାତ କରିବାକୁ ହେବ । ଗୋପନରେ ନବୀନ ଦଳପତି ପ୍ରାଚୀନ ଦଳପତିଙ୍କ ସାଙ୍ଗେ ଶିଷ୍ୟତ୍ୱ, ପୁତ୍ରତ୍ୱ, ତାଙ୍କର ବା ତାଙ୍କ ଘରଆଡ଼ଙ୍କର ଭ୍ରାତୃତ୍ୱ ସମ୍ବନ୍ଧ ସ୍ଥାପନ କରିବେ ଓ ତାଙ୍କ ସଙ୍ଗେ ଏହିପରି ଚୁକ୍ତି କରିବେ ଯେ ତାଙ୍କ ଜୀବିତାବସ୍ଥାରେ ସେ ଯେଉଁ ଅସାଧ ସାଧନରେ, ଅକଥ୍ୟ କଥନରେ, ଅରଟ୍ୟ ରଟନରେ, ଅଚାଟ୍ୟ ଚାଟନରେ ନିଯୁକ୍ତ କରିବେ, ତାହା ଭାବୀ ଦଳପତି ନିର୍ଭୀକ ଭାବରେ ନିର୍ବିକାର ଚିତ୍ତରେ କରିବେ ଓ ଏ ଉପକାରର ବିନିୟମରେ ବୃଦ୍ଧ ଆଚାର୍ଯ୍ୟ ଭାବୀ ଆଚାର୍ଯ୍ୟଙ୍କର

ଦଳପତି ହେବାର ରାସ୍ତାରୁ କୁଟା କାଠି ଓ କଣ୍ଟା ସଫା କରିଦେଇ ତାଙ୍କ ଯଜମାନମାନଙ୍କ ଦ୍ୱାରରେ ଭାବୀ ଦଳପତିଙ୍କି ଉଜଘସ (introduce) କରାଇ ଦେଇଯିବେ । ଏତକ ଚୁକ୍ତି ସାରାସାରି ହୋଇଗଲେ ବୃଦ୍ଧାଚାର୍ଯ୍ୟଙ୍କ ଲାଗି ନବ୍ୟ ଦଳପତି ଓ ଦଳପୃଷ୍ଠାମାନେ ଦିନରାତି ଲାଗିପଡ଼ି କମର ବାନ୍ଧ ଅସାଧ ସାଧନ କରିବେ । ଏହା ଦେଖି ବୃଦ୍ଧ ଆପାଦମସ୍ତକ କୃତଜ୍ଞତାକ୍ତ ହୋଇଯିବେ ଓ ଐହିକ ଶରୀର ତ୍ୟାଗ କଲାବେଳେ ତାଙ୍କ ପୋଷାକଟିକୁ ଭାବୀ ଦଳପତିଙ୍କ ବେକରେ ଗଳାଇ ଦେଇଯିବେ । ତାହା ହେଲେ ଦେଶଃ ଶାନ୍ତିଃ, ପରିବାରଃ ଶାନ୍ତିଃ, ଦଳଃ ଶାନ୍ତିଃ, କଳଃ ଶାନ୍ତିଃ, ବଳଃ ଶାନ୍ତିଃ, କୌଶଳଃ ଶାନ୍ତିଃ, ବୃଦ୍ଧଃ ଶାନ୍ତିଃ, ଯୁବକଃ ଶାନ୍ତିଃ, ସମସ୍ତେ ଶାନ୍ତି ହୋଇଯିବେ । ଏହା ହେଲେ ସୁଦ୍ଧା ବୃଦ୍ଧ ଦଳପତିଙ୍କ ନିକଟରେ ଉମେଦବାରି କରି ତାଙ୍କଠାରୁ, ତାଙ୍କ ଚାକରଙ୍କଠାରୁ, ତାଙ୍କ ପରିବାରଙ୍କଠାରୁ ତାଙ୍କର ଗୁପ୍ତ ମନ୍ତ୍ର, ତାଙ୍କ ବ୍ୟାବସାୟିକ ଉନ୍ନତିର ବୀଜ, ତାଙ୍କ ଆୟପ୍ରଣାଳୀର ରହସ୍ୟ, ତାଙ୍କର ବ୍ୟକ୍ତିଗତ ଜୀବନର ଗୂଢ଼ ରହସ୍ୟ, ତାଙ୍କ ପାରିବାରିକ ଜୀବନର ରହସ୍ୟମୟ ଅପ୍ରକାଶ୍ୟ ଘଟନାବଳୀ, ତାଙ୍କର ବାଲ୍ୟଜୀବନର ଅଲରା ଘଟନାଚୟ ସଂଗ୍ରହ କରିବାକୁ ହେବ । ବେଳ ପଡ଼ିଲେ ବୃଦ୍ଧ ଟିକିଏ ବାଗରୁ ଖସିଲେ ବା କ୍ରୋଧ ଦେଖାଇଲେ ବା କରଛଡ଼ା ଦେଲେ ଏହି ବୀଜଗୁଡ଼ିକର ଦ୍ୱାହି ଦେଇ ତାଙ୍କୁ ପ୍ରକୃତିସ୍ଥ ଓ କରାୟତ୍ତ ରଖିବାକୁ ହେବ । ତା ନ ହେଲେ ଓସ୍ତାଦ୍ ବୃଦ୍ଧାଚାର୍ଯ୍ୟ ନବ୍ୟ ଦଳପତିଙ୍କ ଜରିଆରେ ଆସନଟିଆ ଓ ଅଲରା କାମଯାକ ହାସଲ କରାଇ ନେଇ 'ଚିତ୍ରଂଦେବାନାଂ' ଦେବେ । ଏଥିପାଇଁ ତାଙ୍କ ବାଡ଼ିଦୁଆରର ଚାବିଟିର ଡବଲ ଚାବିଟିଏ ଭାବୀ ଦଳପତିଙ୍କ ହାତରେ ମହଜୁଦ୍ ରହିବାର ଦରକାର । ଏହା ଆତ୍ମରକ୍ଷାର୍ଥେ ପ୍ରୟୋଜନ । ପାଠ ଡାକିଛି, ''ଆତ୍ମାନାଂ ସତତଂ ରକ୍ଷେଦ୍ ଦାରୈରପି ଧନୈରପି ।'' ଧନ ତ ଧନ ଦାରୁବ୍ରହ୍ମ ପର୍ଯ୍ୟନ୍ତ ଖଲାସ୍ !

**ଷଷ୍ଠ ଅଧ୍ୟାୟ** - ବୃଦ୍ଧ ଚାଣକ୍ୟ କହିଅଛନ୍ତି- ''ମୌକ୍ତିକଂ ନ ଗଜେ ଗଜେ ।'' ସବୁ ମନୁଷ୍ୟ ଯେବେ ଦଳପତି ହେବେ, ତେବେ ଭିକ ଦେବ କିଏ ? ହଜାରକେ ଜଣେ ଈଶ୍ୱରାନୁଗ୍ରହୀ ବ୍ୟକ୍ତି ଥା'ନ୍ତି । ଈଶ୍ୱରଙ୍କର ଅନୁଗ୍ରହ ନ ଥିଲେ ଯେ ଇଚ୍ଛା ସେ ଦଳପତି ହୋଇପାରିବେ ନାହିଁ । ସଂସାରରେ ଦେଖ, ଚାରିଦଉଡ଼ିକଟାଯାକ ଏକା ପୃଥିବୀରେ ନାମ ରଖିଯାନ୍ତି । ଯାହାର ସଂସାର ବନ୍ଧନ ଯେତିକି ଟାଣ ସେ ସେତିକି ନିକମା । ଯାହାର ସଂସାର ବନ୍ଧନ ନାହିଁ, ସେ ମୁକ୍ତ, ସେ ସ୍ୱର୍ଗର ଦେବତା । ମୁଁ ପରକୁ କହିବି, ମୋରି ଘରେ ବୋଝେ ଅଳିଆ- ସେଥିପାଇଁ ଲୋକେ କହନ୍ତି, ''ଏ କଳା କୁଡ଼ିଆ ନୁହେଁ ଯେ, ଏ କଳଙ୍କ କୁଡ଼ିଆ ।'' ସଂସାରରେ ଘର କଲେ ଆପଣା ପୁଅ ଅଛି, ସ୍ତ୍ରୀ ଅଛି, ପରିବାର ଅଛି । ତୁମେ ହଜାରେ ସ୍ୱର୍ଗକୁ ଉଠିଲେ ଏମାନେ ତୁମ୍ଭଙ୍କୁ ଏ କଳଙ୍କ କୁଡ଼ିଆ ଆଡ଼କୁ- ନରକ ଆଡ଼କୁ ନିଶ୍ଚେ ଟାଣିବେ । ପର ପୁଅକୁ ମୁଁ ଉଲୁଗୁଣା ଦେବି, ଘରେ ଦେଖିଲା ବେଳକୁ ମୋରି ପୁଅ ପର ପୁଅକୁ ଟପି ସାରିଲାଣି । ଯାହାର ଗୃହବନ୍ଧନ ନାହିଁ, ସେ ଜୀବନ୍ମୁକ୍ତ, ସେ ଦେବତା- ତାର 'ବସୁଧୈବ କୁଟୁମ୍ବକଂ ।' ଏଥିପାଇଁ ଈଶ୍ୱରଙ୍କର ଅନୁଗ୍ରହ

ଦରକାର । ମୁଁ ପର ପାଇଁ ବକ୍ତୃତା ଦଉଛି, ଏଣେ ମୋରି ଘରେ 'ମିରିଗର ନାଟ' ଲାଗିଛି । ଈଶ୍ୱର ବୁଝିଲେ, ମୁଁ ସେ ଡୋରି କାଟିପାରିଲେ ନିଶ୍ଚିନ୍ତ । ଅତଏବ ଯାହାଙ୍କୁ ଦଳପତି ହେବାର ଈଶ୍ୱରଙ୍କର ଅଭିପ୍ରାୟ ଥାଏ, ଈଶ୍ୱର ଆଗେ ତାଙ୍କୁ ସଂସାରର ମାୟା ବନ୍ଧନ- ପୁତ୍ର କଳତ୍ରରୁ ଖଲାସ କରନ୍ତି- ସେ ଠିକ୍ ଯେପରି ଡୋରିକଟା 'ଜେପେଲିନ ।' ସଂସାର ତାକୁ ଆପଣା ଆଡ଼କୁ ଟାଣିପାରିବ ନାହିଁ- କିନ୍ତୁ ସେ ସଂସାରରେ ଯେଉଁଠାରେ ବିଚାରିବ, ସେଠାରେ ଦୁମ୍‌ଦାମ୍ ଭୁସ୍‌ଭାସ୍ ବୋମା ପକାଇବ- ଫେର ଇଚ୍ଛା ହେଲା ତ ଯେଉଁଠାରେ ଇଚ୍ଛା ହେଉଛି, ସେଠାରେ ଭୂପୃଷ୍ଠରେ ଓହ୍ଲାଇ କଳକୁ ସାଫ କରି ନେଇ ଫେର ଶୂନ୍ୟକୁ ଉଠୁଛି । ଡୋରିଟି ଲାଗିଥିଲେ ଜେପେଲିନଙ୍କ ବାପା ମଧ୍ୟ ଶୂନ୍ୟରେ ବିହାର କରିପାରନ୍ତେ ନାହିଁ । ଏଥିପାଇଁ ଈଶ୍ୱର ଯାହାକୁ ସେ ଦୁଇ ଡୋରିରୁ ଖଲାସ କରିଅଛନ୍ତି, ସେ ଦଳପତି ହେବାର ଈଶ୍ୱରାଭିପ୍ରେତ । କଥା କଥାକେ ସେ କହିପାରିବ, ''ମୁଁ କ'ଣ ମୋ ସ୍ତ୍ରୀ ପାଇଁ ସୁନା ଚୁଡ଼ି ଗଢ଼ାଇବାକୁ ଏ କାର୍ଯ୍ୟ କରୁଛି ? ମୁଁ କଣ ମୋ ପୁଅର ଚାକିରି ପାଇଁ ଏ କାମ କରୁଛି ?'' ଯାହାର ପିଲାକବିଲା ଥିବେ, ସେ କେବେହେଁ ଏ ଆସ୍ପର୍ଦ୍ଧା ତକ କରିପାରିବ ନାହିଁ କି ବୋମା ଫୋପାଡ଼ି ସହସ୍ର ଘର ଓ ସହସ୍ର ନିରୀହ ପ୍ରାଣୀଙ୍କୁ ଭସ୍ମ କରିପାରିବ ନାହିଁ । ଅତଏବ ମହାପୁରୁଷ ଓ ଦଳପତିଙ୍କର ଗୋଟିଏ ପ୍ରଧାନ ଲକ୍ଷଣ ଏଠାରେ ଦିଆଗଲା । ଏ ଲକ୍ଷଣଟି ଦେଖା ପଡ଼ିଲେ ତା ପରେ ଅନ୍ୟାନ୍ୟ ଅଧ୍ୟାୟ ବର୍ଣ୍ଣିତ ଲକ୍ଷଣଗୁଡ଼ିକ ଦେଖି ବୃଦ୍ଧାଚାର୍ଯ୍ୟ, ଯୁବାଚାର୍ଯ୍ୟ, ବାଲାଚାର୍ଯ୍ୟ ଏ ସବୁ ମହାପୁରୁଷଙ୍କୁ ବାଛିବାକୁ ହେବ । ଯାହାଙ୍କର ଏ ଲକ୍ଷଣ ନାହିଁ, ତାଙ୍କୁ ଆଦୌ 'ଦଳପତି'ଙ୍କ ସୀମାରେ ଧରିବାର ନୁହେଁ । ତା ପରେ ଲୌକିକ ମତରେ ତର୍କ କରାଯାଇପାରେ ଯେ ଯାହାଙ୍କର ପୁତ୍ର ନାହିଁ, ତାଙ୍କର କୁଳ ଲୋପ ହେଲା । ଏ କଥାଟା ଭୁଲ । ଭୀଷ୍ମଙ୍କର କେତେ ପୁଅ, କେତେ କଳତ୍ର ଥିଲେ ? କିନ୍ତୁ ତାଙ୍କ ପାଇଁ ଆଜି ଘରେ ଘରେ ଭୀଷ୍ମଶ୍ରାଦ୍ଧ । ସଂସାରରେ ତ ଅନେକ ମହାପୁରୁଷଙ୍କର ପୁଅ ନ ଥିଲେ, ତଥାପି ସେମାନେ ଆଜି ଜଗତରେ ସାଧାରଣ ସମ୍ପତ୍ତି । ଜଗଦ୍‌ବାସୀ ସେମାନଙ୍କର ପୁଅ ।

**ସପ୍ତମ ଅଧ୍ୟାୟ** - ଅନ୍ୟାନ୍ୟ ଦେଶରେ ଓ ଅନ୍ୟାନ୍ୟ ଅଞ୍ଚଳରେ ଓ ଅନ୍ୟାନ୍ୟ ଜାତିରେ ଯେଉଁମାନେ ସମ୍ମାନିତ ଓ ଜାତୀୟ ନେତା ବୋଲି ପରିଚିତ ଓ ଆଦୃତ, ସେମାନଙ୍କ ସଙ୍ଗେ ସମ୍ପର୍କ ରଖିବାକୁ ହେବ ଓ ସେମାନଙ୍କ କାନରେ ଆମ ଦଳପତିଙ୍କର କାର୍ଯ୍ୟକଳାପ ଯେପରି ଭଲ ହୋଇ ପଡ଼େ, ତହିଁର ଉପାୟ କରିବାକୁ ହେବ । ହଜାରେ ହେଲେ 'ଗାଁ କନ୍ୟା ସିଂଘାଣିନାକୀ ।' ଦଳପତି ହଜାରେ ଦେବତା ହେଲେ ମଧ୍ୟ ତାଙ୍କ ଭକ୍ତମାନଙ୍କ ଛଡ଼ା ଆପଣା ଗ୍ରାମରେ ଆପଣା ଅଞ୍ଚଳରେ ଲୋକେ ତାଙ୍କୁ ଖାତର କରନ୍ତି ନାହିଁ । କାରଣ ମହାପୁରୁଷଙ୍କର ପେଟ ଅଛି, ପିଠି ଅଛି, ଆଖି କାନ ଅଛି, ହାତଗୋଡ଼ ଅଛି, ଦେହ ଅଛି, କ୍ଷୁଧା ପିପାସାଦି ବୃତ୍ତି ଅଛି, କାମ କ୍ରୋଧାଦି ରିପୁବର୍ଗ ଅଛନ୍ତି, ଘରବାଡ଼ି ଆଦି ବିଷୟ ଅଛି, ଜୀବିକାନିର୍ବାହ ନିମନ୍ତେ ପେସା ଅଛି- ଏ ପାର୍ଥିବ ବସ୍ତୁ ଓ ଗୁଣ ଆଦି

ମେଣ୍ଟାଇବା ନିମନ୍ତେ ଦଳପତିଙ୍କୁ ମଧ୍ୟ ଅନେକ ଲୁଙ୍ଗୁରା କାମ କରିବାକୁ ପଡ଼େ ଓ ସେ ଲୁଙ୍ଗୁରା କଥାଗୁଡ଼ାକ ସାଇପଡ଼ିଶା, ଭାଇଭଗାରିଙ୍କ ଆଖିରେ ଝଟ ପଡ଼ିଯାଏ । ସେଥିପାଇଁ ଭକ୍ତମାନଙ୍କ ଛଡ଼ା ଆଉ ସମସ୍ତ ପାଖ ପଡ଼ିଶାଙ୍କ ଚକ୍ଷୁରେ ମହାପୁରୁଷମାନେ ତୁମ ଆମ ଭଳିଆ ମଣିଷ ବୋଲି ଦେଖାଯାନ୍ତି । କିନ୍ତୁ ''ଦୂର ପର୍ବତ ସୁନ୍ଦର, ଦୂର ବନ୍ଧୁ ସୁନ୍ଦର ।'' ଆଧୁନିକ ମହାପୁରୁଷମାନେ ଦୂରରୁ ଭାରି ଛାପଚିକିଣିଆଟାକୁ ଇତିହାସ ଛାଙ୍କି ନେଇ ମହାପୁରୁଷ ତାଲିକା କରି ପକାଏ । ସେହି ଦୂର-ସୌନ୍ଦର୍ଯ୍ୟଟା ବଜାୟ ରଖିବା ଓ ବଢ଼ାଇବା ନିମନ୍ତେ ଅନ୍ୟ ଦେଶୀୟ ନେତାମାନଙ୍କ ଦୃଷ୍ଟି ଦଳପତିଙ୍କ ଦିଗକୁ ଆକର୍ଷଣ କରାଯିବା ଉଚିତ । ତାହାହେଲେ ଦେଶବିଦେଶର ଖବରକାଗଜରେ ଦଳପତିଙ୍କର ନାମ ଉଦ୍ଘୋଷିତ ହେବ ଓ ସେହି ନାମ ଜୋରରେ ବିମାନବତ୍ତୁମାନେ ଦଳପତିଙ୍କର ସ୍ୱଦେଶରେ ପଞ୍ଚୋପଚାର ଓ ଷୋଡ଼ଶୋପଚାର ପୂଜାର ଉପକରଣ ସଂଗ୍ରହ କରିବାକୁ ସମର୍ଥ ହେବେ ।

ଆମ କୁଳଚନ୍ଦ୍ରଙ୍କ ପ୍ରସାଦରୁ ଆଧୁନିକ ଯୁଗରେ ଦଳପତି ଓରଫ ମହାପୁରୁଷ ହେବାର ଲକ୍ଷଣଗୁଡ଼ିକ ଯାହା ଶୁଣିଅଛୁଁ ଓ ଦେଖିଅଛୁଁ, ସେଗୁଡ଼ିକ ଏ ବସ୍ତାନିରେ ଟିପିଟାପି ରଖିଲୁଁ କି ଦରକାରବେଳେ କର୍ମରେ ଆସିବ । ଇତି ।

**ଲେଖନକାରଙ୍କ ବକ୍ତବ୍ୟ**

ପାଠକ ଅବଧାନଗଣ ବା ଭାଇମାନେ । ଦେଖୁଛନ୍ତି ତ ଆମ ବାପାଙ୍କର କୃତଘ୍ନତା । ଆମେ ଏ ଗୁମରଗୁଡ଼ିକ ତାଙ୍କ କୌତୂହଳ ଚରିତାର୍ଥ କରିବା ସକାଶେ ତାଙ୍କ ଆଗରେ ପ୍ରକାଶ କରିଥିଲୁଁ ଓ ଘର ଲୋକ ବୋଲି ତାଙ୍କୁ ନ ଲୁଚାଇ ଅନେକ ଅନେକ କାମ କରି ଯାଉଥିଲୁଁ, କିନ୍ତୁ ସେଗୁଡ଼ିକ ସେ ବସ୍ତାନିରେ ଟିପି ରଖି ଆମର ଦଳପତି ହେବାର ଭବିଷ୍ୟତ୍ ଆଶାକୁ ଚୂରମାର କରି ଦେଇଗଲେ । ଉପରିଲିଖିତ ସପ୍ତାଧ୍ୟାୟ ମଧ୍ୟରୁ କେତୋଟି ଅଧ୍ୟାୟ ନନାଙ୍କର ସମ୍ଭବତଃ ଅନୁଭବସିଦ୍ଧ । କାରଣ ସେଗୁଡ଼ିକ ମିଳାଇ ଦେଖିଲାବେଳକୁ ଆମର ଦଳପତି ହେବାର ଆଶାକୁ ତିଳତର୍ପଣ କରିବାକୁ ହେବ । କେଜାଣି ଅବା ଈଶ୍ୱର ସବୁ ଅନୁକୂଳ ଘଟଣା ଆମରି ଭାଗ୍ୟକୁ ଠୁଳ କରି ଦେଲେ ଆମେ ଦିନେ ଦଳପତି ହୋଇପାରିଥାନ୍ତୁ । କିନ୍ତୁ ପିତୃଦେବ ସେଗୁଡ଼ିକ ସାଧାରଣରେ ପ୍ରକାଶିତ ହେବା ଉଦ୍ଦେଶ୍ୟରେ ବସ୍ତାନିରେ ରଖିଯାଇଥିବା ଦୃଷ୍ଟିରେ ସେ ଆଶାକୁ ଆପାତତଃ ବିଦାୟ ଦେବାକୁ ହେଲା । ନନାଙ୍କ ସୁଯୋଗକୁ ସେ ଆମର ଗୁମରତକ ଫିଟାଇ ଦେଇ ସଂସାରରୁ ଛୁ । ନଚେତ୍ ଆମର ଦଳପତି ହେବାର ଆଶାରେ ସେ ଯେଉଁ କୁଠାରାଘାତ କଲେ, ସେହି କୁଠାରର ଦାଢ଼ ପରୀକ୍ଷା କରିବା ନିମନ୍ତେ ଉପଯୁକ୍ତ ପଦାର୍ଥର ଅଭାବ ପଡ଼ି ନ ଥାନ୍ତା ଓ ପିତୃଦେବଙ୍କୁ ପଚାରିଥାନ୍ତେ ଯେ, ଏ ମଧ୍ୟ ଆମ ଦେଶରେ ଦଳପତି ଓ ସମାଜ ନେତା ହେବାର ଗୋଟିଏ ଲକ୍ଷଣ କି ନା ?

ଉତ୍କଳ ସାହିତ୍ୟ/୧୯ଶ ଭାଗ/୬ଷ୍ଠ ସଂଖ୍ୟା/୧୩୨୩ ସାଲ ।

## ।। ଆଠ ।।

୧୫୫୮ ସାଲ ଅଶିଣ ପର୍ବ ।

(ନୋଟ୍- ପାଠକ ଅବଧାନ ! ଆମ ଅଞ୍ଚଳର ବ୍ରାହ୍ମଣେ ଦୁର୍ଗାପୂଜାକୁ ଦଶହରା ବା ଅଶିଣପର୍ବ ବୋଲିଥାନ୍ତି ।)

ଆଶ୍ୱିନ ଶୁକ୍ଳପକ୍ଷ ସପ୍ତମୀଠାରୁ ଦଶମୀ ପର୍ଯ୍ୟନ୍ତ ଦୁର୍ଗାପୂଜା ହୁଏ । ବଙ୍ଗଦେଶୀୟମାନେ ଦୁର୍ଗା ପ୍ରତିମା ପ୍ରସ୍ତୁତ କରି ତାଙ୍କୁ ଜୀବନ୍ୟାସ କରି, ଚକ୍ଷୁଦାନ କରି, ଆବାହନ କରି ତିନି ଦିନ ପୂଜା କରନ୍ତି ଓ ଦଶହରା ବାସି ଦିନ ତାଙ୍କୁ ମର୍ତ୍ତ୍ୟରୁ ବିଦାୟ ଦିଅନ୍ତି । କାଳେ ଗତ ୩/୪ ଦିନର ଉପଚାର ପାଇ ଠାକୁରାଣୀଙ୍କର ଆମ ଘରେ ମାୟା ମମତା ଲାଗିଯିବ ଓ ମନକୁ ନ ଯିବେ, ଏଥିପାଇଁ ତାଙ୍କୁ ନଦୀ ବା ତଡ଼ାଗ କୂଳକୁ ନେଇ ତାଙ୍କଠାରୁ ବସନ ଭୂଷଣ ଆଦି କାଢ଼ିନେଇ ତାଙ୍କୁ ମୁହଁମଡ଼େଇ ପଛମୁହାଁ କରି ପାଣିକୁ ପେଲି ଦେବାକୁ ହୁଏ । ଓଡ଼ିଶାର ବ୍ରାହ୍ମଣେ ଶାକ୍ତ ଅର୍ଥାତ୍ ଦୁର୍ଗା ଆମ ଇଷ୍ଟଦେବତା । ଅଙ୍କ ବହୁତ ପ୍ରତି ସ୍ୱଛଳ ଗୃହସ୍ଥ ଘରେ ଧାତୁବିଗ୍ରହ ଦୁର୍ଗା ମୂର୍ତ୍ତିଏ ଥାନ୍ତି ଓ ଆଠକାଳି ବାରମାସୀ ବ୍ରାହ୍ମଣ ଗୃହସ୍ଥ ତାଙ୍କୁ ଯଥାଶକ୍ତି ପୂଜା କରୁଥାଏ । ଦେବୀପର୍ବ ନବପତ୍ରିକା ଦିନଠାରୁ ଗୃହାଧିଷ୍ଠାତ୍ରୀ ଦେବୀଙ୍କୁ ଗୋଟିଏ ସ୍ୱତନ୍ତ୍ର ସ୍ଥାନରେ ବସାଇ ତାଙ୍କ ନିକଟରେ ଚଣ୍ଡୀ ପାଠ ହୁଏ, ସପ୍ତମୀ, ଅଷ୍ଟମୀ, ନବମୀ ଷୋଡ଼ଶୋପଚାରରେ ନିସଙ୍ଖୁଡ଼ି ସଙ୍ଖୁଡ଼ି ସବୁ ଭୋଗ ଲାଗେ, ଦଶହରା ବାସି ଉକ୍ତ ଦେବୀଙ୍କ ନିକଟରେ ସ୍ଥାପିତ ଘଟର ବିସର୍ଜନ୍ନ ହୁଏ ଓ ଦେବୀ ଫେର ତାଙ୍କର ଦୈନନ୍ଦିନ ବୈଠକ ଖଟୁଲିକୁ ଫେରିଆସନ୍ତି । ଏ ବାଦ ଯେଉଁ ଗ୍ରାମଦେବତା ଓ ରାଜପୂଜ୍ୟ ଦେବତାମାନେ ଅଛନ୍ତି, ସେମାନଙ୍କଠାରେ ଛାଗ, ମେଷ ବଳି ଦିଆଯାନ୍ତି ଓ ପ୍ରସିଦ୍ଧ ସ୍ଥାନମାନଙ୍କରେ ମହିଷ ବଳି ମଧ ପଡ଼େ । ମହିଷ ମାଂସ ହିନ୍ଦୁ ଉଚ୍ଚବର୍ଣ୍ଣମାନଙ୍କର ଅଖାଦ୍ୟ, ଅତଏବ ଠାକୁରାଣୀଙ୍କ ନିକଟରେ ବଳି ହୋଇଥିବା ମହିଷ ମାଂସ-ପ୍ରସାଦକୁ ଉଚ୍ଚ ଜାତିମାନେ ଗ୍ରହଣ କରନ୍ତି ନାହିଁ । ଏହିଠାରେ ଆମ ହିନ୍ଦୁପାଠର "ଯଥା ଦେବେ ତଥା ଦେହେ" ଢୁଆଟି ଆଉ କାଟୁ କରେ ନାହିଁ । ଅର୍ଥାତ୍ ଆମ ଇଷ୍ଟଦେବତା ମହିଷ ମାଂସ ନ ହେଲେ ସନ୍ତୁଷ୍ଟ ହୁଅନ୍ତି ନାହିଁ, କିନ୍ତୁ ତାହା ଆମ୍ଭମାନଙ୍କର ଅସ୍ପୃଶ୍ୟ । ଏଠିକି ଆମ ଦେଶର ବ୍ରାହ୍ମଣ ସଂସାରରେ ଅହିଅ ମାଇପେ ପିଆଜ, ରସୁଣ, ଶୁଖୁଆ, ମଦରଙ୍ଗା ଶାଗ ଖାଇବା ନ୍ୟାୟ । ପିଆଜ, ଶୁଖୁଆ, ମଦରଙ୍ଗା, ଶାଳମାଛ, ପୋଇ, କଳମ ଓଗେର ଶାଗ ପୁଂ-ବ୍ରାହ୍ମଣମାନଙ୍କର ଅଖାଦ୍ୟ । କିନ୍ତୁ ଆମ ଘର ମାଇପେ ତାହା ଭୋଜନ କରିବେ ଓ ଆମର ଯେଉଁ ପାଗରେ ଦେବତା ଓ ପିତୃଙ୍କ ପାଇଁ ପାକ ହୁଏ, ଆମ ମାଇପଙ୍କ ଶୁଖୁଆହାଣ୍ଡିଟି ସେ ପାଗରୁ ପୃଥକ୍ ଗୋଟିଏ ଅଲଗା ଶିକାରେ ରହେ । ଆମେ ଯାହା ଖାଇବା ନାହିଁ, ଆମ ଅଙ୍କଲକ୍ଷ୍ମୀ ତାହା ପାଇବେ । ଏ ବିଧି କେଉଁ ନିୟମର ଫଳ, ତାହା ଠଉର ପଡୁ ନାହିଁ । ଆମେ ଏ ବିଷୟ ପାତୁଷି, ବାହାନପତି

ସାଆନ୍ତ, ବ୍ରହ୍ମା ଓ ମିଶ୍ରେ ଆପଣେ ଏମାନଙ୍କୁ ପଚାରିଥିଲୁଁ, କିନ୍ତୁ ସେମାନେ ବାରଚାଉଳିଆ କଥା କହିଲେ ! କେହି କହିଲେ ଯେ, ସ୍ତ୍ରୀ ଜାତିଟା ହେଲେ ଖାଇବା ରକ୍କୁଣୀ ଆମେ ପୁରୁଷଯାକ ଜିଭ ଲାଳସା ଛାଡ଼ି ସମ୍ଭାଳି ହୋଇ ରହିପାରୁ, କିନ୍ତୁ ସ୍ତ୍ରୀମାନେ ଶୁଖୁଆ ଓଗେରର ମାୟା ଛାଡ଼ିପାରିବେ ନାହିଁ, ସେଥିପାଇଁ ତାଙ୍କୁ ଏତକ ଛାଡ଼ । ମିଶ୍ରେ ଆପଣେ କହିଲେ, ସ୍ତ୍ରୀ-ଜଠରାଗ୍ନି ଯେତେ ତେଜୀୟାନ୍, ଆମ ପୁରୁଷଙ୍କର ତାହା ନୁହେଁ, ଏପରି ସ୍ଥଳରେ ଗୁରୁପାକ ଦ୍ରବ୍ୟମାନ ଜୀର୍ଣ୍ଣ କରିବାର ତାଙ୍କର ଶକ୍ତି ଅଛି । ଯେ ଯେଉଁ କଥା ଖାଇ ପାର କରିପାରିଲା, ସେ ତାହା ଖାଉ । ସାଆନ୍ତ କହିଲେ, ସ୍ତ୍ରୀଗୁଡ଼ାକ ଶୂଦ୍ର ଅର୍ଥାତ୍ ତମୋଗୁଣସମ୍ପନ୍ନା, ଏପରି ସ୍ଥଳରେ ତମୋଗୁଣାନୁକୂଳ ଖାଦ୍ୟ ''ଯାତଯାମଂ ଗତରସଂ ପୂତିପର୍ଯ୍ୟୁସିତଂ ଚ ଯତ୍ । ଉଚ୍ଛିଷ୍ଟମପିଚାମେଧ୍ୟଂ ଭୋଜନଂ ତାମସପ୍ରିୟଂ ।'' ସେମାନଙ୍କର ଆଦରର ବସ୍ତୁ । ଆମେ ଅଣ୍ଡିରିପୁଅଯାକ ସତ୍ତ୍ୱଗୁଣବିଶିଷ୍ଟ । ଅତଏବ ''ଆୟୁଃସତ୍ୱବଳାରୋଗ୍ୟସୁଖପ୍ରୀତି- ବିବର୍ଦ୍ଧନାଃ । ରସ୍ୟାଃ ସ୍ନିଗ୍ଧାଃ ସ୍ଥିରା ହୃଦ୍ୟା ଆହାରାଃ ସାତ୍ତ୍ୱିକପ୍ରିୟାଃ ।'' ପାଠ ଅନୁସାରେ ଭଲମାଲଯାକ ଆମ କିସମତରେ ଓ ବାସି ପଖାଳ, ଶୁଖୁଆ, ମଦରଙ୍ଗା, ପୋଇ ଓ ଆମ ଭୋଜନାବଶେଷ ପ୍ରସାଦ ମାଇପଙ୍କର ।

ବ୍ରହ୍ମା ଆପଣେ କହିଲେ, ନା, ତା ନୁହେଁ, ମାଇପେ ସେବାଦାସୀ ଅର୍ଥାତ୍ ଇସ୍ତମରାରି ହରମହଶୁଲ ମୂଲିଆଣୀ । ସେମାନେ ଆମର ପାଟି, ଜିଭ, ପେଟ, ହାତ ଆଦିର ସୁଖ ପାଇଁ ସବୁ କାମ କରିବେ, ଚୁଲି ଫୁଙ୍କିବେ, ଛୁଅଁପତର କରିବେ, ଆମ ପାଇଁ ଠା କରିବେ, ଘର ପାଇଟିଯାକ କରିବେ, ହାଣ୍ଡି ଧୋଇବେ, ଘରଦ୍ୱାର ଲିପିବେ, ଓଳେଇବେ, ଭାତ ରାନ୍ଧିବେ, ପିଲାଙ୍କ ଗୁହ ମୂତ ପୋଛିବେ, ଘର ଛୁଆଣିକୁ ଘର ଛୁଆଣି ଆମ ବଂଶବୃଦ୍ଧି କରିବେ, ଆମ ପାଦ ଘଷିବେ, ସମସ୍ତଙ୍କ ପଛରେ ସମସ୍ତଙ୍କ ଉଚ୍ଛିଷ୍ଟ ପ୍ରସାଦ ପାଇବେ । ଏପରି ସ୍ଥଳରେ ତାଙ୍କ ଠାରୁ ଯେତିକି ବେଶି କାମ ନିଆଯାଇପାରେ ଓ ଯେତେ କମ୍ ଖରଚାରେ ସେମାନଙ୍କର ଜିହ୍ୱାଦି ଇନ୍ଦ୍ରିୟ ତୃପ୍ତି ହୁଏ, ଗାର୍ହସ୍ଥ୍ୟ ଅର୍ଥନୀତି ଅନୁସାରେ ଆମର ସେତିକି ଲାଭ । ଅତଏବ ଏଥିପାଇଁ ସେମାନଙ୍କ ନିମନ୍ତେ ସବୁ ଗୁରୁପାକ ଓ ବେଖରଚା ଜିନିଷଯାକ ଛାଡ଼ ।

ନନ୍ଦ ପଣ୍ଡିତେ କହିଲେ, ତା ନୁହେଁ, ଆମ ଶାସ୍ତ୍ରକାରମାନେ 'ଅଲାବୁଃ ଶ୍ୱେତବାର୍ତ୍ତାକୀ ଚକ୍ର ଚିହ୍ନଂ କଳମ୍ବକଂ' 'ପୂତିକା ବ୍ରହ୍ମଘାତିକା' ଆଦି ଗୁଡ଼ିଏ ପାଠ ଲେଖି ସାଇତି ଯାଇଅଛନ୍ତି । ଏ ସବୁ 'ପୋଥି ବାଇଗଣ' କୁ 'ବାଡ଼ି ବାଇଗଣ' କହିବା ଉଦ୍ଦେଶ୍ୟରେ ଶାସ୍ତ୍ରରେ ନିଷେଧ ଥିବା ପଦାର୍ଥମାନ ଆମେ ଖାଉ ନାହୁଁ, କିନ୍ତୁ ମାଇପିଙ୍କ ବେଳକୁ ତ ସେ ନିୟମ ନୁହେଁ, ସେଥିପାଇଁ ମାଇପଙ୍କ ଖାଇବା ନିମନ୍ତେ ସେସବୁ ଜିନିଷମାନ ଆମ ଘରେ ପଶେ । ଏ ରୀତିକୁ ''ଚଟୁ ଆଇଁଷ, ବେଣ୍ଟ ନିରାଇଁଷ'' ରୀତି ବୋଲାଯାଏ । ଯେଉଁ ପଦାର୍ଥଗୁଡ଼ାକ ଆମ ଦେହରେ, ଆମ ପାଠରେ, ଆମ ପେଟରେ ଚଳିଲା ନାହିଁ, ସେ ପଦାର୍ଥଗୁଡ଼ିକୁ ଭସ୍ମ କରିବା ନିମନ୍ତେ ଶାସ୍ତ୍ରାନୁମୋଦିତ ନର୍ଦ୍ଦମାର ସୃଷ୍ଟି ।

ଆମ୍ଭେ ମଧ୍ୟ ଏ ସବୁ ମୀମାଂସା ଶୁଣି ଏ ସମ୍ବନ୍ଧରେ ଅନେକ ଭାବିଲୁଁ ଓ ଶେଷରେ ସ୍ଥିର କଲୁଁ ଯେ "ସ୍ୱଭାବେ ନାରୀଜନ୍ମ ହୋଇ । କ୍ରିୟା ଅକ୍ରିୟା ନ ଜାଣଇ ।" ଏପରି ସ୍ଥଳରେ ଆମ ଘରେ, ଆମ ସମାଜରେ ଏପରି ଗୋଟାଏ ଅଙ୍ଗ (ସ୍ତ୍ରୀ ଜାତି) ନ ଥିଲେ ଅନେକ ଅସନଟିଆ କାମରେ ଆମକୁ ହାତ ବୋଳି ହେବାକୁ ପଡୁଥାନ୍ତା ଓ ଦୋଷଯାକ ଷୋଳପଣ ଆମରି ମୁଣ୍ଡରେ ପଡୁଥାନ୍ତା ।

ଆମ ଗୁଣମଣିଙ୍କୁ ଦିନେ କଥା ପ୍ରସଙ୍ଗରେ ଏ ସମସ୍ୟାଟା ପଚାରିଥିଲୁଁ । ସେ ବିଜ୍ଞାନ ଅନୁସାରେ ଆମ୍ଭଙ୍କୁ ବୁଝାଇଦେଲେ ଯେ, ସଂସାରଟା ସ୍ତ୍ରୀ ପ୍ରକୃତି ଓ ପୁରୁଷ ପ୍ରକୃତିର ସମୀକରଣ ଯୋଗୁଁ ଚଳୁଛି । ପରସ୍ପର-ବିରୁଦ୍ଧ ପ୍ରକୃତି ବିଶିଷ୍ଟ ପଦାର୍ଥମାନଙ୍କ ସମବାୟରେ ସଂସାରର ଗତି ଓ ସ୍ଥିତି । ଜଣେ ମାଡ଼ ମାରିବାକୁ ଇଚ୍ଛା କଲେ ଆଉ ଜଣେ ତ ମାଡୁଆ ଦରକାର । ଦାନ କରିବା ନିମନ୍ତେ ଗ୍ରହୀତା ଦରକାର । ଏ ପାଠକୁ ଅଂରେଜୀ ବିଜ୍ଞାନରେ ଯୌଗିକ (Positive) ଓ ବିଯୋଗିକ (Negative) ଉପାଦାନ (element) ବୋଲାଯାଏ । ଏହି ଅନୁସାରେ ସତ୍ତ୍ୱଗୁଣବିଶିଷ୍ଟ ପୁରୁଷ ସଙ୍ଗେ ତମୋଗୁଣବିଶିଷ୍ଟା ସ୍ତ୍ରୀ ମିଳିତ ନ ହେଲେ ଗାର୍ହସ୍ଥ୍ୟ ଓ ସାମାଜିକ ପ୍ରକ୍ରିୟାମାନ ସୁଚାଳିତ ଓ ସୁଫଳିତ ହେବ ନାହିଁ । ଏହିପରି ବାବୁ ଗୋପାଳ ଚନ୍ଦ୍ର ଆମ୍ଭଙ୍କୁ ଘଡ଼ିଏ ଖଣ୍ଡେ ବୈଜ୍ଞାନିକ ସତ୍ୟ ବୁଝାଇବାକୁ ଚେଷ୍ଟା କରିଥିଲେ । କିନ୍ତୁ ଆମ୍ଭର ମରହଟିଆ ବୁଦ୍ଧିରେ ଏ ପାଠ ପ୍ରବେଶ କରିପାରିଲା ନାହିଁ । ଶେଷରେ ବୁଝିଲୁଁ ଏତିକି ଯେ, ଆମ ସମାଜରେ ସ୍ତ୍ରୀ ଜାତିର କେତେଗୁଡ଼ିଏ ବିଶେଷତ୍ୱ ଅଛି, ତାହା ମଧ୍ୟରୁ ଖାଦ୍ୟ ସମ୍ବନ୍ଧୀୟ ବିଶେଷତ୍ୱ ଗୋଟିଏ । ଏହି ହିସାବ ଅନୁସାରେ ଆମ ଶାସ୍ତ୍ରକାରମାନେ ପୁରୁଷ ଦେବତା ଓ ସ୍ତ୍ରୀ ଦେବତାମାନଙ୍କର ପାର୍ଥକ୍ୟ ବରାବର ରଖି ଆସିଅଛନ୍ତି । ମହାଦେବ ଚଢ଼ିବେ ବୁଢ଼ା ଷଣ୍ଢ ଉପରେ, ପାର୍ବତୀ ଚଢ଼ିବେ ସିଂହୀ ପିଠିରେ । ମହାଦେବ ମଶାଣିରେ ବୁଲି ଅଦ୍ୟଭେକ ହେବେ, ପାର୍ବତୀ ଐଶ୍ୱର୍ଯ୍ୟଶାଳିନୀ ଅନ୍ନପୂର୍ଣ୍ଣା ହେବେ । ମହାଦେବଙ୍କର ହେବ ପ୍ରତିଦିନ ହବିଷ୍ୟ, କିନ୍ତୁ ମହାମାୟାଙ୍କର ମାଛ, ମାଂସ, ମଦ୍ୟ ଆଦି ନ ହେଲେ ନୀତି ନ ଚଳେ । ଯେଉଁଠାରେ ବୁଢ଼ା ମହାଦେବଙ୍କର ବଳ ପରାସ୍ତ, ସେଠାରେ ଡାକ ଚଣ୍ଡୀଙ୍କୁ । ସେ ଶକ୍ତି ଦ୍ୱାରା ସଂସାରରେ ମହିଷାସୁର, ଶୁମ୍ଭ ନିଶୁମ୍ଭ, ରକ୍ତବୀଜ ଆଦି ଅସୁରଙ୍କୁ ନିର୍ମୂଳ କରିବେ । ହିନ୍ଦୁଙ୍କ ପାଠରେ ଆଦ୍ୟାଶକ୍ତି, ରଣଚଣ୍ଡୀ, ଅନ୍ନପୂର୍ଣ୍ଣା, ଧନର ମାଲିକ, ବିଦ୍ୟାର ମାଲିକ, ସବୁ ଶକ୍ତିଯାକ ସ୍ତ୍ରୀ ଶକ୍ତି । ସମୟ ସମୟରେ ମନେହୁଏ, ଯେଉଁ ଧର୍ମରେ ସ୍ତ୍ରୀଶକ୍ତିର ସର୍ବୋଚ୍ଚ ପ୍ରଥମ ସ୍ଥାନ, ଯେଉଁ ଦେଶର ପୁରାଣମାନଙ୍କରେ ସ୍ତ୍ରୀମାନଙ୍କର ପ୍ରଭା ପୂର୍ଣ୍ଣ ବିକଶିତ, ଯେଉଁ ଦେଶରେ ଆଦର୍ଶ ଚରିତ୍ରଯାକ ସ୍ତ୍ରୀ ଚରିତ୍ରରେ ବର୍ଣ୍ଣିତ ହୋଇଅଛି, ଯେଉଁ ଦେଶର ଇତିହାସ ଯୁଗରେ ମଧ୍ୟ ସ୍ତ୍ରୀ ଶକ୍ତି ଦେଶରେ ଓ ସମାଜରେ ସ୍ୱୀୟ ପ୍ରଭାବ ବିସ୍ତାର କରି ଜାଜ୍ୱଲ୍ୟମାନ ହେଉଅଛି, ସେହି ଦେଶରେ ବର୍ତ୍ତମାନ ଯୁଗରେ ସ୍ତ୍ରୀଜାତିର ଆସନ ଏତେ ତଳେ କାହିଁକି ? ସେହି ଦେଶରେ ସ୍ତ୍ରୀ ଜାତିକୁ ଉନ୍ନତି ଆଡ଼କୁ ଅଗ୍ରସର କରାଇବା ନିମନ୍ତେ ଆମ୍ଭେମାନେ ଏତେ

କୁଣ୍ଠିତ କାହିଁକି ? ସେହି ସମାଜରେ ସ୍ତ୍ରୀ ଜାତିର ଏତେ ନିର୍ଯାତନା, ଏତେ ଅଧିକାରହୀନତା, ଏତେ ପରାପେକ୍ଷିତା କାହିଁକି ? ସ୍ତ୍ରୀ ଶକ୍ତିର ମହତ୍ତ୍ୱ ଓ ଉଚ୍ଚତା ଉପଲବ୍ଧି କରି ଠାକୁରାଣୀ ପୂଜାରେ ଆମ ଦେଶ ଦିନରାତି ବ୍ୟସ୍ତ, କିନ୍ତୁ ସରଜମିନରେ ପହଞ୍ଚିଲା ବେଳକୁ ପୋଥି ବାଇଗଣ ପୋଥିରେ, ବାଡ଼ି ବାଇଗଣ ବାଡ଼ିରେ ! ସେମାନଙ୍କୁ ଶିକ୍ଷାରୁ, ସଭ୍ୟତାରୁ, ଉନ୍ନତିରୁ ବଞ୍ଚିତ କରି ପରଦା ଭିତରେ ପୂରାଇ କବାଟ କଣରେ ରଖିଲୁଁ ଓ ଦୁନିଆରେ ପ୍ରଚାର କଲୁଁ ଯେ, ସେଗୁଡ଼ାଙ୍କ ଦେହି ଶାଗ ଶିଝିବ ନାହିଁ ଓ ସେଗୁଡ଼ାକ ଗୁହାଳରୁ ଫିଟିଗଲେ ଅଳିଆ ଗଦାରେ ମୁହଁ ଝଟକିନି ମାରିଦେବେ ! କିନ୍ତୁ ଏ ପୋଥିପାଠକୁ କାର୍ଯ୍ୟରେ ପରିଣତ କରିବା ଲାଗି ଆମ୍ଭ ମନରେ ଖଟକା ଲାଗୁଛି । ସ୍ତ୍ରୀ ଜାତିକୁ ନାବାଳକ ଅବସ୍ଥାରେ ରଖି ସେମାନଙ୍କର ମହାଫିସ ହୋଇ ଆମେ ଆମର କଳିଷଠା ମାରି ନେଲୁଁ । ବର୍ତ୍ତମାନ ବାଳିକା ବିଦ୍ୟାଳୟ ଆଦି ବସାଇ ସେମାନଙ୍କୁ ସାବାଳକ କଲେ ଆମ ସଙ୍ଗେ ସେମାନେ ସବୁ କଥାରେ ପଟ ପକାଇବେ ଓ ସମାନସ୍କନ୍ଧ ହେବେ; ଏ କଥାଟା ଆମ ମରହଟିଆଙ୍କ ଦେହରେ ଗଲାପରି ଲାଗୁ ନାହିଁ । ଆମ ପୁରୁଷଟା ଏହିପରି ଗୁଡୁରାଣ ମେଣ୍ଟି ପାର ହୋଇଯାଉ । ଆମ ଗୁଣମଣି କୁଳଚନ୍ଦ୍ରମାନେ ଏ ସବୁ ସଂସ୍କାରରେ ପ୍ରବେଶ କରି ଉନ୍ନତି କରନ୍ତୁ । ବର୍ତ୍ତମାନ ଆମ ବଂଶଧରମାନେ ଆମ ଆଖିରେ ଧୂଳି ପକାଇ ଆମ ବୋହୂ ଝୁଆସୁଣୀଙ୍କୁ ହାଉଲେ ହାଉଲେ ଦାଣ୍ଡକୁ ଓ ଆଲୁଅକୁ ଆଣିବାକୁ ଯେଉଁ ଚେଷ୍ଟା କରୁଅଛନ୍ତି, ଆମ ଅନ୍ତେ ସେଗୁଡ଼ିକ ଫଳବତୀ ହେଉ । ନିଜ ଅନୁଭବରୁ ଆମେ ଦେଖିପାରୁଅଛୁଁ ଯେ, ଆମରି ସମାଜ ଏ କ୍ଷେତ୍ରରେ ଧୀର ଭାବରେ ଆଖି ବୁଜିବୁଜିକା ସଂସ୍କାର ଆଡ଼କୁ ଅଗ୍ରସର ହେଉଅଛି । ଆମ ବୁଢ଼ୀମାଙ୍କ (ପିତାମହୀ) ଉପରେ ଆମ ପରିବାରର ଆଭ୍ୟନ୍ତରୀଣ କାର୍ଯ୍ୟଯାକ ନ୍ୟସ୍ତ ଥିଲା, ସେ ପ୍ରସଙ୍ଗରେ କୌଣସି ଗଣନା କଲାବେଳେ ବୁଢ଼ୀମା ଆଙ୍ଗୁଠି ସାହାଯ୍ୟରେ ଗଣନା କରୁଥିଲେ ସେଥିରୁ ବଳିଲେ ତାଙ୍କୁ ବଳାଇ ପଡୁଥିଲା ଓ ପୁରୁଷଙ୍କର ସାହାଯ୍ୟ ଲୋଡ଼ା ହେଉଥିଲା । ତାଙ୍କ ଅନ୍ତେ ଆମ ମାତା କୋଡ଼ି କୋଡ଼ି କରି ଗଣିବା ପର୍ଯ୍ୟନ୍ତ (କୋଡ଼ିଏ, ଦି'କୋଡ଼ି, ତିନି କୋଡ଼ି) ଅଗ୍ରସର ହେଲେ । ତାଙ୍କ ଅନ୍ତେ ଆମର ସ୍ତ୍ରୀ ଶହ ଶହ ପର୍ଯ୍ୟନ୍ତ ଗଣିବାକୁ ଶିଖି ଗୃହସ୍ଥଳିର କାର୍ଯ୍ୟ ଚଳାଇବାକୁ ସମର୍ଥ ହେଲେ । ଏଣିକି ଆମର ଝିଅମାନେ କାଗଜ କଲମରେ ଲେଖି ଜାଣିଲେଣି, କୁଟା, କ୍ରୟବିକ୍ରୟ, ହରଗୁଣ, ଫେଡ଼ାମିଶା ଶିଖି ଟଙ୍କା, ଅଣା, ପାହି, ଭରଣ, ଗଉଣି, ମାଣ, ମହଣ, ସେର, ଛଟାଙ୍କି, କଷୋଟ କରିବାକୁ ଶିଖିଲେଣି । ଏ ଉଦାହରଣଟା ଦେଶଯାକ ହୋଇଅଛି, ତାହା ନୁହେଁ । କିନ୍ତୁ ଦେଖାଯାଏ ଯେ, ସ୍ତ୍ରୀ ଜାତିର ଉନ୍ନତି କରିବା, ସ୍ତ୍ରୀମାନଙ୍କର ଶକ୍ତିର ପରିଚାଳନା ନିମନ୍ତେ ସୁବିଧା ଦେବା, ସ୍ତ୍ରୀମାନଙ୍କୁ ଶିକ୍ଷା ଦେବା ନିମନ୍ତେ ପ୍ରତ୍ୟେକ ସମାଜରେ ଚେଷ୍ଟା ଲାଗିଅଛି । କୌଣସି କଥା ନୂତନ ପ୍ରଚଳିତ ହେଲେ ଅନେକ ସ୍ଥଳରେ ଉଚ୍ଛୃଙ୍ଖଳତା ଘଟିଥାଏ, ଏ କ୍ଷେତ୍ରରେ ମଧ୍ୟ ତାହା ଘଟିବ, କିନ୍ତୁ ସ୍ତ୍ରୀମାନଙ୍କର ବୃତ୍ତିଗୁଡ଼ିକର ବିକାଶ ହେବା ନିମନ୍ତେ ସୁବିଧା ଦିଆଗଲେ ସେମାନେ ଯେ କେବଳ ପୁରୁଷର ସାଂସାରିକ

ଦୈହିକ ଭାର ଲାଘବ କରିବେ, ତାହା ନୁହେଁ, ସେମାନେ ସବୁ କ୍ଷେତ୍ରରେ ପୁରୁଷର ସହାୟକ, ପରାମର୍ଶଦାତା ଓ ବନ୍ଧୁ ରୂପେ ଦେଶକୁ, ସମାଜକୁ ଓ ଭାବୀ ବଂଶଧରମାନଙ୍କୁ ଶାନ୍ତି ଓ ଉନ୍ନତି ଆଡ଼କୁ ଟାଣି ଆଣିପାରିବେ ।

(ନୋଟ୍- ପାଠକ ଅବଧାନ ! ନନାଙ୍କର ଏ ଟିପା ୧୫ ବର୍ଷ ତଳର । ଆମ ଗ୍ରାମରେ ପ୍ରଥମେ ଗୋଟିଏ ବାଳିକା ବିଦ୍ୟାଳୟ ସ୍ଥାପନ କରିବା ଉଦ୍ଦେଶ୍ୟରେ ଅର୍ଥ ସାହାଯ୍ୟ ନିମନ୍ତେ ଆମ ଗ୍ରାମର କେତେଗୋଟି ଯୁବକ ପିତୃଦେବଙ୍କ ନିକଟରେ ଉପସ୍ଥିତ ହୋଇଥିଲୁଁ ଓ ପିତାଙ୍କର ପ୍ରାଥମିକ ଆନୁକୂଲ୍ୟ ଓ ଅର୍ଥ ସାହାଯ୍ୟ ଦ୍ୱାରା ଗ୍ରାମରେ ବାଳିକା ବିଦ୍ୟାଳୟଟି ସ୍ଥାପିତ ହେଲା । ବର୍ତ୍ତମାନ ଉକ୍ତ ବିଦ୍ୟାଳୟର ଭାର ସରକାର ନେଇଅଛନ୍ତି ଓ ବିଦ୍ୟାଳୟଟି ଅନେକ ଛାତ୍ରୀଙ୍କୁ ନିମ୍ନ-ପ୍ରାଥମିକ ବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ କରାଇଅଛି । ବୋଧହୁଏ, ନନାଙ୍କର ବସ୍ତାନିର ଉପରିଲିଖିତ ଲେଖା ସେହି ସମୟର ଅଟେ । ମରହଟ୍ଟିଆଗୁଡ଼ାଙ୍କୁ ଯେ ଆମ୍ଭେମାନେ ସବୁବେଳେ ମାଟିମେଞ୍ଚା ଓ ଘୋର ରକ୍ଷଣଶୀଳ ଓ ଉନ୍ନତି-ବିରୋଧୀ ବୋଲି ଭାବିଥାଉଁ, ପ୍ରକୃତରେ ତାହା ନୁହେଁ । ସେମାନେ ହଠାତ୍ କୌଣସି ଘୋର ପରିବର୍ତ୍ତନ ଦେଖିଲେ ଚମକି ପଡ଼ନ୍ତି । କିନ୍ତୁ ସେମାନଙ୍କୁ କଳକଦର ଉଣ୍ଡି ଟାଣିପାରିଲେ ସମୟେ ସମୟେ ମରହଟ୍ଟିଆ ରକ୍ଷଣଶୀଳମାନଙ୍କଠାରୁ ଯେଉଁ ଅକୃତ୍ରିମ ସାହାଯ୍ୟ ମିଳେ, ତାହା ଆଧୁନିକ ଶିକ୍ଷିତମାନଙ୍କର ବକଧାର୍ମିକତା ଓ ବକ୍ତୃତାରେ ପର୍ଯ୍ୟବସିତ ଆସ୍ଫାଳନ ଅପେକ୍ଷା ବେଶି ମୂଲ୍ୟବାନ୍ ଅଟେ । ଆଜି ନନାଙ୍କ ବସ୍ତାନିରୁ ଏହି ଖେଦାକ ।)

ଉତ୍କଳ ସାହିତ୍ୟ/୧୯ଶ ଭାଗ/କାର୍ତ୍ତିକ/୧୩୨୩ ସାଲ ।

## ।। ନଅ ।।

ସବୁଠାରେ ଧାରଣା ଯେ, ସହରତଳିଆ ଲୋକମାନେ ଭାରି ହୁସିଆର, କଥାଭାଷାରେ ଭାରି ମୁହଁଖୋର ଏବଂ ଭାରି ସାହସୀ । ସେଥିପାଇଁ ଦାମ୍ଭିକତାରେ ସହରିଆଙ୍କର ପ୍ରଥମ ଆସନ ଓ ତାଙ୍କ ତଳେ ଆସନ ସହରତଳିଆଙ୍କର । ଏ ହିସାବରେ ସହରିଆମାନେ ମଧ୍ୟ କଥା ପଡ଼ିଲେ ସହର ତଳିଆଙ୍କ ମୁହଁ ଭୁରୁଡ଼କୁ କଥା କଥାକେ ଉଲ୍ଲେଖ ଦେଇଥାନ୍ତି । ଉଦାହରଣସ୍ୱରୂପ ପୁରୀ ସହର ତଳେ ଗୋପାଳପୁର ନାମରେ ଖଣ୍ଡେ ବସତି ଅଛି । ସେଠା ମନୁଷ୍ୟମାନଙ୍କର ମୁହଁଭୁରୁଡ଼ ପୁରୀ ପ୍ରସିଦ୍ଧ । କୌଣସି ଲୋକଠାରେ ମୁହଁଭୁରୁଡ଼ର ମାତ୍ରା ଟିକିଏ ବେଶି ଦେଖାଗଲେ ଲୋକେ କଥା କହନ୍ତି- ''ଏ ଲୋକଟା ଗୋପାଳପୁରିଆଙ୍କ ଭଳି ମୁହଁଭୁରୁଡ଼ କାଢୁଛି ।'' ଲୋକେ କହନ୍ତି, ଗୋପାଳପୁରିଆଙ୍କର ଦାମ୍ଭିକତା ଓ ନିଅାଁଗିଳା ସ୍ୱଭାବ ଏତେ ଉଗ୍ର ଯେ, ସେମାନେ ଏଣେ ମାଡ଼ ଖାଉଥିବେ, ତେଣେ ମାଡ଼ ମାଇଲା ଲୋକକୁ କହୁଥିବେ - ''ମାରିବୁ ନା ? ତୋ ବୋପା ମାରିଥିଲା କି ? ଦେଖି ଭଲା, ତୁ ମୋ ଦିହରେ ଟିପ ଛୁଇଁବୁ ନା ?''

ଇତ୍ୟାଦି । ମାଡ଼ର ସଂଖ୍ୟା ଓ ପରିମାଣ ଯେତିକି ବଢୁଥିବ, ଗୋପାଳପୁରିଆଙ୍କ ଭୁରୁଡ଼ର ସ୍ୱର ମଧ ତେତିକି ଚଢୁଥିବ ।

ସହର ତଳେ ଗୋପାଳପୁର ଅବସ୍ଥିତି କେବଳ ପୁରୀ ସହରର ଏକଚେଟିଆ ନୁହେଁ । କଟକ ସହର ତଳେ ମଧ ଗୋପାଳପୁର ବୋଲି ଖଣ୍ଡେ ଗ୍ରାମ ଅଛି । ସେ ମୌଜାଟି କିସମତ୍ ତାଲୁକେ ବିସନାବର ପ୍ରଗନ୍ନେ ବାଖରାବାଦର ଅନ୍ତର୍ଗତ ଓ ଦୈବଯୋଗକୁ ସେ ଖଣ୍ଡକ ଆମର ଜମିଦାରୀ । ଏପରି ସ୍ଥଳରେ ଉକ୍ତ ମଉଜାର ପ୍ରଜାମାନଙ୍କ ଖଜଣା ଅସୁଲ ସମୟରେ ଓ ମାଲିମକଦ୍ଦମା ବେଳେ ଦେଖିବାର ଜମିଦାରଙ୍କୁ ସୁବିଧା ମିଳେ । ସହରତଳିଆଙ୍କର ପ୍ରବଚନସିଦ୍ଧ ଗାଲୁଭୁରୁଡ଼ ଗୋପାଳପୁରିଆଙ୍କଠାରେ ସୁଲଭ ବୋଲି ଜମିଦାରଙ୍କର ଅନୁଭୂତି ।

ବର୍ତ୍ତମାନ ଯୁଗରେ ଯେତିକି ସଭ୍ୟତାର ଢେଉ ବେଶି ଉଠୁଛି, ସେତିକି ଗୋପାଳପୁରିଆଙ୍କ ସଂଖ୍ୟା (ଅର୍ଥାତ୍ ଗାଲୁଭୁରୁଡ଼ର ମାତ୍ରା) ବେଶି ହେଉଛି । ଗୋପାଳପୁରିଆଯାକ ମାଡ଼ ଖାଉଥିବେ, କହୁଥିବେ- କାହାର ବାପର ତାକତ୍ ଅଛି ଯେ, ଆମ ଦିହରେ ଟିପ ଲଗାଇବ ? ମକଦ୍ଦମା ମାମଲାରେ ହାରୁଥିବେ, ଏଣେ ମୁହଁରେ ବାଲିଙ୍ଗି କରୁଥିବେ- ଆମ ସଙ୍ଗେ ମାମଲା କରି ଫେର ଜିତିଯିବ କିଏ ? କୌଣସିଠାରେ ଫଉଜଦାରୀ ହେଲେ ମାଡ଼ ଖାଇବା ଭାଗଟା ପନ୍ଦରପଣିଆ ଗୋପାଳପୁରିଆଙ୍କ ଖାସ ଦଖଲରେ ପଡ଼େ ଓ ମୁହଁଭୁରୁଡୁ ଭାଗଟା ଷୋଳପଣିଆ ଏହିମାନଙ୍କ କିସ୍‌ମତରେ ପଡ଼େ । ଆମ ପିତୃଦେବ ପିଲାଦିନେ ଆମକୁ ନ୍ୟାୟ ଶାସ୍ତ୍ର ପୋଥିରୁ କାଣ୍ଡେ କାଣ୍ଡେ ଘୋଷାଉଥିଲେ । ସେକାଳର ପୁରୁଣା ପଢ଼ା ପାସୋରିଗଲୁଣି । ତଥାପି ମନେଅଛି, 'ପର୍ବତୋ ବହ୍ନିମାନ୍ ।' ସେହିପରି ନ୍ୟାୟଶାସ୍ତ୍ର ଅନୁସାରେ ଧରିବାକୁ ଗଲେ ସ୍ଥିର କରିନେବାକୁ ହେବ ଯେ, ଯେତେ ଲୋକଙ୍କଠାରେ ମୁହଁଭୁରୁଡ଼ର ମାତ୍ରା ଅତ୍ୟଧିକ, ସେମାନେ 'ଗୋପାଳପୁରିଆ' ନାମରେ ଅଭିହିତ ହୋଇପାରନ୍ତି ।

ପାଠକ ଅବଧାନ, ନନାଙ୍କ ବସ୍ତାନିର ପାଞ୍ଜି ବିଡ଼ାରୁ ଆମ୍ଭେମାନେ ଅନେକ ସ୍ଥଳରେ 'ଗୋପାଳପୁରିଆ' ଶବ୍ଦର ପ୍ରୟୋଗ ଦେଖି ଧନ୍ଦି ହୋଇଥିଲୁ; କିନ୍ତୁ ଖଣ୍ଡିଏ ପୁରୁଣା ତାଳପତ୍ରରେ ଗୋପାଳପୁରିଆର ବ୍ୟାଖ୍ୟାର ଟିପଣୀ ମିଳିଯିବାରୁ 'ଗୋପାଳପୁରିଆ' ଶବ୍ଦର ତାତ୍ପର୍ଯ୍ୟ ହୃଦୟଙ୍ଗମ କରିବାକୁ ସମର୍ଥ ହେଲୁଁ । ନଚେତ୍ ଆମ୍ଭେମାନେ ନନାଙ୍କ ପାଞ୍ଜି ଦେଖି ପ୍ରଥମେ ଭାରି ଗୋଟାଏ ଗୋଲକଧନ୍ଦାରେ ପଡ଼ିଥିଲୁଁ । କାରଣ ନନାଙ୍କ ପାଞ୍ଜିରେ ଦେଖିଲୁଁ ଲେଖା ଅଛି- 'ଶ୍ରୀଯୁକ୍ତ ମାନ୍ୟବର ଅମୁକ'- ଡାହାଣ ପାଖରେ ଲେଖା ଅଛି, 'ଗୋପାଳପୁରିଆ' । ଶ୍ରୀବାବୁ ଅମୁକ ଏମ୍.ଏ.ବି.ଏଲ୍.- 'ଗୋପାଳପୁରିଆ' । ଅମୁକ ମକଦ୍ଦମାରେ ଅମୁକ ପକ୍ଷ- 'ଗୋପାଳପୁରିଆ' । ଅମୁକ ସ୍କୁଲର ଅମୁକ ଶିକ୍ଷକ- ଏଜନ ଅମୁକ ଟୋଲର ଅମୁକ ପଣ୍ଡିତ- ଏଜନ ଅମୁକ ସମ୍ବାଦପତ୍ରର ଅମୁକ ସମ୍ପାଦକ- ଏଜନ ଅମୁକ ମଠର ଅମୁକ ମହନ୍ତ - ଏଜନ ଅମୁକ ରାଜ୍ୟର ଅମୁକ ରାଜା - ଏଜନ

ଏହିପରି ଅନେକ ଶିକ୍ଷିତ, ଅଶିକ୍ଷିତ, ସଭ୍ୟ, ଅସଭ୍ୟ, ମାନନୀୟ, ଅମାନନୀୟ, ପଣ୍ଡିତ, ଅପଣ୍ଡିତ, ବାଦୀ, ପ୍ରତିବାଦୀ, ବକ୍ତା, ଲେଖକ, ଗୃହୀ, ବୈରାଗୀଙ୍କୁ ନନା ଆମର 'ଗୋପାଳପୁରିଆ' ଶ୍ରେଣୀରେ ଭର୍ତ୍ତି କରିଅଛନ୍ତି । ସେ ଲୋକମାନଙ୍କୁ ମଉଜାଉଆରି ଚିହ୍ନଟ କରିବାକୁ ଯାଇ ଆମ୍ଭେମାନେ ଧନ୍ଦି ହୋଇ ଯାଇଥିଲୁଁ; କିନ୍ତୁ ନନାଙ୍କ ଟିପା ଖଣ୍ଡକ ହାବୁଡ଼ରେ ପଡ଼ିବାରୁ ଓ ନନାଙ୍କ ନ୍ୟାୟ ଶାସ୍ତ୍ରାନୁମୋଦିତ ଯୁକ୍ତିକୁ ହୃଦୟଙ୍ଗମ କଲାରୁ ବୁଝିପାରିଲୁଁ ଯେ, ଏ ସଂଜ୍ଞାଟି ମଉଜାଉଆରି ପରିଚାୟକ ନ ଥାଇ ବ୍ୟକ୍ତିଗତ ସ୍ୱଭାବ ଓ ବ୍ୟବହାରର ପରିଚାୟକ ରୂପେ ବ୍ୟବହୃତ ହୋଇଅଛି । ଶେଷରେ ନନାଙ୍କ ବସ୍ତାନିରେ ଲେଖା ଅଛି- ''ଆମେ ଓ ଆମର କୁଳଚନ୍ଦ୍ର ମଧ ଗୋପାଳପୁରିଆ ।'' ଏସବୁ ଦେଖି ବର୍ତ୍ତମାନ ମୁଁ ବିଶ୍ୱାସ କରୁଅଛି ଯେ, ନନାଙ୍କର ଏ ସଂଜ୍ଞା ପ୍ରକରଣର ତାତ୍ପର୍ଯ୍ୟ ଉପଲବ୍ଧି ମୋର ଭୂମିଷ୍ଠ ହେବା ପୂର୍ବରୁ ଘଟିଥିଲା ଓ ସେହି ତାତ୍ପର୍ଯ୍ୟର ମାଧୁର୍ଯ୍ୟକୁ ଉପଲବ୍ଧି କରିବା ଲାଗି ପିତୃଦେବ ମୋର ନାମକରଣ କରିଥିଲେ । ଫଳତଃ ପିତୃଦେବ ଉକ୍ତିର ସଂଜ୍ଞାର ସାର୍ଥକତା ମୋ କାର୍ଯ୍ୟକଳାପକୁ ପରବର୍ତ୍ତୀ କାଳରେ କେତେଦୂର ଉପଲବ୍ଧି କରିଥିଲେ, ତାହା ଜାଣିବାର ସୁବିଧା ଲେଖକଙ୍କୁ ମିଳିବା ପୂର୍ବରୁ ପିତୃଦେବ ପରଲୋକ ଗମନ କଲେ । ଛାଡ଼ନ୍ତୁ ସେ କଥା । ପିତୃଦେବଙ୍କ ପାଞ୍ଜିରୁ ଏତିକି ଦେଖିପାରିଅଛୁଁ ଯେ, ଆଧୁନିକ ସଭ୍ୟତା ଓ ଶିକ୍ଷାରେ ଦୀକ୍ଷିତ, ଉଚ୍ଚପଦାସୀନ ବ୍ୟକ୍ତିମାନଙ୍କ ମଧରେ ଅନେକ ଗୋପାଳପୁରିଆ ଅଛନ୍ତି । ସଂସାର ମତେ ପରାସ୍ତ ହେବାର ଦେଖୁ, ମୋର ଶକ୍ତି ସମ୍ପୂର୍ଣ୍ଣ ରୂପେ ଲୁପ୍ତ ହେଉ । ମୁଁ ନିଜେ ପଛେ ହୃଦୟରେ ଉପଲବ୍ଧି କରିପାରେଁ ଯେ, ମୁଁ ଜୀବନ ସଂଗ୍ରାମରେ ପରାସ୍ତ ହେଲି, ତଥାପି ମୁହଁରେ ଏ କଥା ସ୍ୱୀକାର କରିବି ନାହିଁ ଓ ଡଙ୍ଗା ବୁଡ଼ିବାର ଅନତିପୂର୍ବମୁହୂର୍ତ୍ତ ପର୍ଯ୍ୟନ୍ତ ମୁଁ ନିରାପଦରେ ଅଛି ବୋଲି ଚିତ୍କାର କରୁଥିବି । ଫଳତଃ ଦେଖାଯାଏ ଯେ, ଆଧୁନିକ ଶିକ୍ଷା ଓ ସଭ୍ୟତାରେ ଦୀକ୍ଷିତ ମାଦୃଶ ବ୍ୟକ୍ତିମାନେ ଅନେକ ସମୟରେ ଯେଉଁ ମତ ପୋଷଣ ଓ ଘୋଷଣ କରିଥାଉଁ, ତାହା ଭ୍ରାନ୍ତ ବୋଲି ପରେ ଜାଣିପାରିଲେ ସୁଦ୍ଧା ଅନେକ ସମୟରେ ତାହା ପରିତ୍ୟାଗ କରିବାକୁ ସାହସୀ ହେଉ ନାହିଁ । କାରଣ ତାହାହେଲେ ସାଧାରଣ ଲୋକଙ୍କ ଚକ୍ଷୁରେ ଆମେ ଅପଦାର୍ଥ ବୋଲି ବିବେଚିତ ହେବୁଁ । ଅତଏବ ଆମ୍ଭମାନଙ୍କ ପୂର୍ବପୋଷିତ ମତ ଭ୍ରାନ୍ତ ବୋଲି ଜାଣିପାରି ସୁଦ୍ଧା ସେହି ମତର ପୋଷକ ଯୁକ୍ତି ଓ ବିତଣ୍ଡାରେ ସମୟ ବ୍ୟୟ କରୁଁ । ଦୁନିଆଯାକ ପଛକେ ଆମ ମତ ଭୁଲ ବୋଲି କହନ୍ତୁ, ଦୁନିଆଯାକ ପଛକେ ଆମକୁ କାଇଲ କରନ୍ତୁ, କିନ୍ତୁ ଆମେ କାଇଲ ନ ମାନିଲେ ଗଲା ! ଏହାକୁ କୁହନ୍ତି ଗୋପାଳପୁରିଆ ରୀତି । ଆଧୁନିକ ସଭ୍ୟ ଜଗତରେ, ସଭ୍ୟ ଯୁଗରେ, ସଭ୍ୟ ଦେଶରେ 'ଗୋପାଳପୁରିଆ' ରୀତିରେ ଯେ ଉଦାହରଣ ମିଳିଅଛି, ତାହା ଅପେକ୍ଷା ଆଉ ଉଜ୍ଜ୍ୱଳତର ଉଦାହରଣ ମିଳିବା ଦୁରୂହ । ବର୍ତ୍ତମାନ ଯେ ଅଚିନ୍ତନୀୟ ଯୁଦ୍ଧତାଣ୍ଡବରେ ସଭ୍ୟଜଗତ ଦୋଳାୟମାନ ହେଉଛନ୍ତି, ତହିଁରେ ଜର୍ମାନ୍ ଜାତିଙ୍କୁ 'ଗୋପାଳପୁରିଆ' ବୋଲି ଡାକିବାକୁ ମନଟା ଭାରି ଉଚ୍ଛନ୍ନ

ହୁଏ । କାରଣ ଫଳରେ ଦେଖାଯାଉଅଛି କି, ଦୁନିଆର ନିଷାପ ଏକ, ତାଙ୍କ ନିଷାପ ଏକ । ଦୁନିଆ ଯାହାକୁ କହୁଅଛି ଅନ୍ୟାୟ, ଗୋପାଳପୁରିଆ କହୁଅଛନ୍ତି ସେ ନ୍ୟାୟ, ସଭ୍ୟ ଜଗଦ୍ ଯାହାକୁ ଅକାର୍ଯ୍ୟ ଓ ଅକରଣୀୟ ବୋଲି କହୁଅଛନ୍ତି, ଗୋପାଳପୁରିଆ ତାକୁ ସୁକାର୍ଯ୍ୟ ବୋଲି ଘୋଷଣା କରୁଅଛନ୍ତି । ବର୍ତ୍ତମାନ ସଭ୍ୟତା ଓ ଶାନ୍ତିମୟ ଜଗତରେ ବର୍ବରତା, ନିଷ୍ଠୁରତା, ଅଶାନ୍ତି ଏବଂ ନିରୀହ ପ୍ରାଣୀହତ୍ୟା ବରଂ ଜଗତକୁ ଛାରଖାର କରୁଅଛନ୍ତି, ତଥାପି ତାଙ୍କର ମୁହଁରେ ଧର୍ମର ଦୋହି, ଈଶ୍ୱରାନୁଗ୍ରହର ଦୋହି ରଟନା ହେଉଅଛି ! ଏହି ଗୋପାଳପୁରିଆଙ୍କୁ ସମଗ୍ର ସଭ୍ୟଜଗଦ୍ କାଇଲ କରିବାକୁ ବସିଅଛି, କିନ୍ତୁ ସେମାନେ କାଇଲ ହେବା ଜନ୍ତୁ ନୁହନ୍ତି ।

ପାଠକ ଅବଧାନ ! କ୍ଷମା କରିବେ, ନନାଙ୍କ ବସ୍ତାନିରୁ ଗୋଟିଏ ଶବ୍ଦ ଅର୍ଥ କରିବାକୁ ଯାଇ ଲେଖକ ଆପଣମାନଙ୍କ ଆଗରେ ଗୋଛାଏ ଟୀକା ଟିପ୍ପଣୀ ଆଣି ସ୍ତୂପାକାରରେ ରଖିଲା । ଏଥିରେ ଗୋଟିଏ ଗୂଢ଼ କାରଣ ଅଛି । ଲେଖକ ନିଜେ ଗୋପାଳପୁରିଆ ପାଠକମାନଙ୍କ ମଧ୍ୟରୁ ବାରଅଣିଆ ମଧ୍ୟ ତାହା । କିନ୍ତୁ ନିଜର ଗୁଣଗୁଡ଼ାକ ନିଜ ହାବୁଡ଼ରେ ଚଢ଼େ ନାହିଁ ବୋଲି ଲେଖକ ବାଧ୍ୟ ହୋଇ ଏଣୁତେଣୁ ଗୁଡ଼ିଏ ଉଦାହରଣ ଦେଲା । ଭଲା ଦେଖିଲ, ଆମରି ଭିତରେ ଯେତକ ଗୋପାଳପୁରିଆ ଥାଇଁ, ସେମାନେ କଣ କରୁ ନ ଥାନ୍ତି ? ଆମରି ବାଟ ବାଟ, ଆମରି କାଟ କାଟ, ଆଉଗୁଡ଼ାକ ସବୁ ଅବାଟ । କାଲି ଯାହାକୁ ବଙ୍କା ବୋଲି କହୁଥିଲେ, ଆଜି ସେହି ତାକୁ ଆମ କାର୍ଯ୍ୟରେ ସିଧା ବୋଲି ଦେଖାଉଥାଇଁ; କିନ୍ତୁ ମୁହଁରେ ସେ କଥାଟା ସ୍ୱୀକାର କରିବା ନାହିଁ । କାରଣ ଆମେ ଯେଉଁମାନେ ଖାଉଚୁଁ ତାକୁ ସ୍ୱଚକ୍ଷୁରେ ଦେଖିବା ଲୋକଙ୍କ ସଂଖ୍ୟା ଅତି ଅଳ୍ପ । ସେହି ଅଳ୍ପସଂଖ୍ୟକ ଲୋକ ଜାଣିଲେ ଯେ, ଆମେଲୁଚାକ ମାଡୁଆ ଓ ଗାଲୁଆ; କିନ୍ତୁ ଯେଉଁମାନେ ଆମ ସରଜମିନ ଠାରୁ ଦୂରରେ ଅବସ୍ଥିତ, ଅର୍ଥାତ୍ ଯେଉଁମାନେ ସ୍ୱଚକ୍ଷୁରେ ଆମ ମାଡ଼ଖିଆ ଦେଖୁ ନାହାନ୍ତି, ସେମାନଙ୍କ କାନରେ ଆମର ମୁହଁ ଭୁରୁଡ଼ା କୁହାଟ (ତୋ ବୋପା ମାରିଥିଲା କି ? ଆମ ଦିହରେ ହାତ ଦେବୁ ନା ? ଇତ୍ୟାଦି ଆସ୍ଫାଳନ) ବାଜୁଛି । ଆଉ ସେମାନେ ଆମ୍ଭମାନଙ୍କର ଏ ଆସ୍ଫାଳନ ଶୁଣି ଆମର ବୀରତ୍ୱକୁ ନିଶ୍ଚୟ ବାହାଦୁରି ଦେଉଅଛନ୍ତି, କହୁଅଛନ୍ତି- ଧନ୍ୟ ଏମାନଙ୍କର ସାହସ, ଧନ୍ୟ ଏମାନଙ୍କର ବୀରତ୍ୱ । କାରଣ ଯେ ଆମର ଆସ୍ଫାଳନ ବାହାରେ ଶୁଣୁଛି, ସେ ନିଶ୍ଚେ ବିଚାରୁଛି, ଏମାନଙ୍କ କଥା ଦୂରେ ଥାଉ, ଏମାନଙ୍କ ସାତପୁରୁଷରେ ସୁଦ୍ଧା କେହି ମାଡ଼ ଖାଇ ନାହିଁ ଓ ଏମାନଙ୍କୁ ମାରିବାକୁ ତାକଦ୍ କାହାର ? ଏହି କୁହାଟ ଓ ଭୁରୁଡ଼ ଦ୍ୱାରା ଆମେ ଗୋପାଳପୁରିଆ ଶିକ୍ଷିତ ସଭ୍ୟ ପଞ୍ଚାକ ଜଗଜୟ କରିବାକୁ ବସିଥାଉଁ । ସଂସାରରେ ଶ୍ରୋତୃମଣ୍ଡଳୀ ଆମରି କୁହାଟରେ ମୁଗ୍ଧ ହୋଇ ଆମରି ବୀରତ୍ୱକୁ ଭୂୟୋଭୂୟ ପ୍ରଶଂସା କରୁଅଛନ୍ତି ଓ ଆମେ ଗୋପାଳପୁରିଆଯାକ ମାଧୁକରୀ ପଙ୍ଗତ କଲାବେଳେ ମୁରକିହସା ହସି ଜଗଦ୍ ଆଖିରେ ଧୂଳି ପକାଇବାରେ ଆମର ଯେଉଁ ଚାତୁରୀ ଓ ବାହାଦୁରି ଉପଲବ୍ଧି କରୁଅଛୁଁ, ତଦ୍‌ଯୋଗୁଁ

ଆମେ ନିଜେ ନିଜକୁ ପ୍ରଶଂସା କରୁ କରୁ ଆମକୁ ଦିନରାତି ଅଣ୍ଟୁ ନାହିଁ । କିନ୍ତୁ ଆମ୍ଭେମାନେ ବୁଝିପାରୁ ନାହୁଁ ଯେ, ଭୁରୁଡ଼ର ଭୁଆର ପରେ ଦିନେ ସତ୍ୟର ଭଟ୍ଟା ଆସି ପହଞ୍ଚିବ । ଆଜି ଆମ ଭୁରୁଡ଼ା ଓ ଦାମ୍ଭିକତାର ଭୁଆର ଯେଉଁ ରାମାଡିମାଗୁଡ଼ିକୁ ବୁଡ଼ାଇ ଦେଇ ଜଗତ୍ ଆଗରେ ଏକ ସମତ୍ଳର ଚିତ୍ର ରଖି ଦେଇଅଛି, କାଲି ସତ୍ୟର ଭଟ୍ଟା ସଙ୍ଗେ ସଙ୍ଗେ ସାଧାରଣ ଦୃଷ୍ଟିରେ ପଡ଼ିବ ଓ ଇତର ସାଧାରଣ ଆଜି ଯେଉଁ ସମତଳ ଦେଖି ବାହାବା କରୁଅଛନ୍ତି, କାଲି ସେହି ସ୍ତାବକମାନେ ଅସଲ ପଦାର୍ଥ ଦେଖି ଆପଣାର ଭୁଲ ବୁଝିପାରିବେ ଓ ଗୋପାଳପୁରିଆଙ୍କୁ ନାସ୍ତାନାବୁଦ୍ କରିପକାଇବେ । ସେଥିପାଇଁ ପାଠ ଡାକୁଛି- ''ଯା ଲୋକଦ୍ୱୟ- ସାଧନୀ ତନୁଭୃତାଂ ସା ଚାତୁରୀ ଚାତୁରୀ ।'' ଅଢ଼େଇଦିନିଆ ବଡ଼ାଇ ଚିରକାଳ ରହେ ନାହିଁ । ଯାହା ସତ୍ୟ, ଯାହା ଧର୍ମ, ଯାହା ନ୍ୟାୟ, ତାହା ଚିରନ୍ତନ । ତାହା ଅଧର୍ମ, ଅସତ୍ୟ, ଅନ୍ୟାୟର ଢେଉରେ କ୍ଷଣିକ ବୁଡ଼ିଗଲେ ମଧ କାଳବଳରେ ତାହା ଦିନେ ନିଜର ମାହାତ୍ମ୍ୟ ପ୍ରକାଶ କରିବ, ଏଥିରେ ସନ୍ଦେହ ନାହିଁ । ରାମାୟଣ ଦେଖ, ମହାଭାରତ ଦେଖ, ଉଆଟର୍‌ଲୁ ଦେଖ, ସବୁଠାରେ ଧର୍ମର, ସତ୍ୟର ଜୟ ହୋଇଅଛି- ଆଜି ବିଂଶ ଶତାବ୍ଦୀର ସମର ପ୍ରାଙ୍ଗଣରେ ମଧ ସେହି ସତ୍ୟର, ସେହି ଧର୍ମର ଜୟ ହେବା ସୁନିଶ୍ଚିତ । ପ୍ରଥମ ହସ୍ତାର ଚାକଚକ୍ୟର ମୁହୂର୍ତ୍ତଟାର ଅବସାନ ହୋଇଗଲେ ସତ୍ୟ ନିଜର ଅଧିକାର ଓ ଜୟଶ୍ରୀ ବିସ୍ତାର କରି ସବୁ ଭେକ, ସବୁ ପୋଷାକ, ସବୁ ଝୁଲିମୁଣିକୁ କୁଟ୍ କୁଟ୍ କରିପକାଇ ଅସଲ ପଦାର୍ଥକୁ ପଦାକୁ ଟାଣିଆଣିବ । ଯେବେ ଭିତର ମାଲ ଭଲ ଥିବ, ତେବେ ଲୋକେ ଆଗ୍ରହ ସହକାରେ ଆମକୁ ଓ ଆମର ପଦାର୍ଥକୁ ଗଣ୍ଠିଧନ କରି ରଖିବେ, ନଚେତ୍ ଅସଲି ମାଲ ନକଲି ଥିଲେ ତାହା କାଳ ପ୍ରଭାବରେ ମୁରୁଚା ମାରି କଳଙ୍କି ଖାଇ ଝୁର୍ ଝୁର୍ ହୋଇ ଝଡ଼ିପଡ଼ିବ । ଲୋକେ ଗୋପାଳପୁରିଆଙ୍କ ଅଢ଼େଇଦିନିଆ ବଡ଼ତି ଦେଖି ବିସ୍ମିତ ଓ ବିଷାଦଗ୍ରସ୍ତ ହୋଇ ତାକୁ ଧିକ୍କାର କରିବେ ଓ ଆଜି ହାଟପାଳିରେ ଯେଉଁମାନେ ଘର ଢିଙ୍କି ହୋଇ ଆମରି ପାଇଁ ନରସିଂହଭୋଗ ଓ ରାସବତୀ ଓରିଆର ଉପାଦାନ ପ୍ରସ୍ତୁତ କରୁଅଛନ୍ତି, କାଲି ସେହିମାନେ କୁମ୍ଭୀର ପାଲଟି ଆମରି ଅଂଶ ବଂଶକୁ ଲଣ୍ଡା କରିବେ ।

ପାଠକ ଅବଧାନ ଓ ବିଶେଷତଃ ଉପପାଠକମାନେ ! ଆଜି ନନାଙ୍କ ବସ୍ତାନିର ଗୋଟିଏ ଶବ୍ଦ ଉପରେ ଟୀକା ଟିପ୍ପଣୀ କରିବାଦ୍ୱାରା ମୁଁ ପତ୍ରିକାର ଯେତେଗୁଡ଼ିଏ ବହୁମୂଲ୍ୟ ସ୍ଥାନ ଓ ଆପଣମାନଙ୍କର ବହୁମୂଲ୍ୟ ସମୟ ନଷ୍ଟ କଲିଣି, ସେଥିରୁ ଆପଣମାନେ ମୋ ବିକୃତ ମସ୍ତିଷ୍କର ନିଦର୍ଶନ ଅବଶ୍ୟ ପାଉଥିବେ । ମୁଁ ମଧ ନିଜେ ବୁଝିପାରିଛି ଯେ, ଗୁଡ଼ିଏ ବାଜେ ଗପ ଦ୍ୱାରା ଆପଣମାନଙ୍କ ମୂଲ୍ୟବାନ୍ ସମୟ ନଷ୍ଟ କରିବା ମହାପାପ । କିନ୍ତୁ ମୁଁ ଆପଣମାନଙ୍କୁ ଆଗରୁ କହିରଖିଛି ଯେ, ମୁଁ ଗୋପାଳପୁରିଆ ଶ୍ରେଣୀର । ଅର୍ଥାତ୍ ଜାଣୁଛି ଯେ, ମୋ ଲେଖାରେ କଉଡ଼ିଟାକର ମୂଲ୍ୟ ନାହିଁ, ତଥାପି ସେହି ଗୋପାଳପୁରିଆ ନିର୍ଲଜ୍ଜତା ମୋର ପ୍ରସ୍ରବଣୀ ଲେଖନୀକୁ ମୁଖରିତ କରୁଅଛି । ସମ୍ପାଦକ ମହାଶୟ ମଧ ସେହି

ଗୋପାଳପୁରିଆ କୁହୁକରେ ଭୁଲି ଏ ଲୁଚାକପାଇଁ ସ୍ଥାନ ଯୋଗାଉଅଛନ୍ତି । ଯେତେବେଳେ ତାଙ୍କୁ କେହି କେହି ହିତାକାଙ୍କ୍ଷୀ ବନ୍ଧୁ କହୁଅଛନ୍ତି- ‘‘ଅସମ୍ୟକ୍ ବ୍ୟୟଶୀଳସ୍ୟ ଗତିରେତାଦୃଶୀ ଭବେତ୍ ।’’ ସମ୍ପାଦକ ମହାଶୟ ଗୋପାଳପୁରିଆଙ୍କ ଭଳି ଜବାବ ଦେଉଅଛନ୍ତି- ‘‘ତଥାପି ପ୍ରାତଃରୁଥାୟନାମୈବ ତସ୍ୟ ଗୀୟତେ !’’ ଏହାକୁହିଁ କହନ୍ତି ଗୋପାଳପୁରିଆ ବା ଗୋପାଳସୁଲଭ ଦାମ୍ଭିକତା । ଆଜି ଥାଉ ।

ଉତ୍କଳ ସାହିତ୍ୟ/୧୯ଶ ଭାଗ/୮ମ ସଂଖ୍ୟା/୧୩୨୩ ସାଲ ।

## ।। ଦଶ ।।

ସନ ୧୫୫୮ ସାଲ- ମନୁଷ୍ୟର ମନ ପର ଉପରେ ହାକିମ ହୋଇ ପର ଉପରେ ଅଧିକାର ଚଳାଇବା ପାଇଁ ସବୁବେଳେ ନଡ଼ବଡ଼ ହେଉଥାଏ । ପରକୁ ଦଣ୍ଡ ଦେବା, ପରକୁ ‘ଜିହଲ’ ଦେବା, ପର ଉପରେ ହୁକୁମ ଜାରି କରିବା, ପରକୁ ଅଲଗଡ଼ାରେ ଠିଆ କରାଇ ଆପେ ତାହାର କାର୍ଯ୍ୟକୁ ବିଚାର କରି ରାୟ ଦେବା ଓ ତାକୁ ମୁଣ୍ଡକାଟ ଶାସ୍ତି ଦେବା ନିମନ୍ତେ ମନୁଷ୍ୟର ମନ ସବୁବେଳେ ରବେଇ ଖବେଇ ହେଉଥାଏ । ଏଥିପାଇଁ ଆମର ଯୋଗ୍ୟ କୁଳଚନ୍ଦ୍ର ଓକିଲାତି କିମ୍ବା ମୁକ୍ତିଆର ଇଲମ ହାସଲ କରି ମୁଣ୍ଡରେ ପାଗ ବାନ୍ଧିବାକୁ ମୁସ୍ତେଜ । କିନ୍ତୁ ଆମର ଇଚ୍ଛା ଓ ହୁକୁମ ଯେ, ବାବୁ ଗୋପାଳ ଚନ୍ଦ୍ର ଗୋଟିଏ ‘ହାକିମ’ ହୁଅନ୍ତୁ । ଆମେ ପଇସା ଖରଚ କରି ବାବୁଜୀଙ୍କର ଫେର ଫରମାସ, ପାଗପଟୁକା, ବହିପତ୍ର, ଚହଟଚିକଣିଆ ବାବୁଗିରିର ସାଜସରଞ୍ଜାମ ସବୁ ମାସକୁ ମାସ ବିନା ଓଜର ଓ ବିନା କିସ୍ତି ଖିଲାପରେ ଯୋଗାଇବୁଁ, କିନ୍ତୁ ଆମ ବାବୁଜୀ ତାଙ୍କ ଇଚ୍ଛା ଅନୁସାରେ କାର୍ଯ୍ୟ କରିବେ- ଅର୍ଥାତ୍ ଘୋଡ଼ାର ଦାନା, ବିଛାଲି, ସହିସ, ସାଜ, ନାଲବନ୍ଦି ଏ ସବୁ ଖରଚା ଆମ ଉପରେ, ଏମନ୍ତ କି ଘୋଡ଼ାନେଣ୍ଡି ପୋଛା ଠାରୁ ନାତ ସମ୍ଭାଳିବା ପର୍ଯ୍ୟନ୍ତ ଚୋଟ ଚପାଟିଗୁଡ଼ାକ ଆମରି ଉପରେ, କିନ୍ତୁ ଘୋଡ଼ାଚଢ଼ାଟା ଗୁଣମଣିଙ୍କ ଭାଗରେ ! ଏହାକୁହିଁ କହନ୍ତି, ‘‘ଯୁଗର ଗତି ଏ !’’ ଏହାହିଁ କଳିକାଳର ବିଶେଷତ୍ୱ ! ସେ ଯାହାହେଉ, ଏ କାଳରେ ପିଲାଟିମାନଙ୍କୁ ଦୁନିଆକୁ ସରବରାହ କରି ତାଙ୍କ ମୁଣ୍ଡକୁ ହାତ ପାଇବା ପର୍ଯ୍ୟନ୍ତ ଦାୟିତ୍ୱ ଆମ ଉପରେ । ଗର୍ଭ-ତ୍ରୟୋଦଶ ବର୍ଷ ମଧ୍ୟରେ ଯେବେ ପିଲାଙ୍କ ଖବର ନ ବୁଝିଲୁଁ ତେବେ ଆମପାଇଁ ପିଙ୍ଗଲକୋଡ଼ ଆଇନର ୫୬୭ ଦଫା ଧରାବନ୍ଧା । ଏଣେ ଦଶ ବର୍ଷ ଟପିଲେ ଶୁକ୍ରାଚାର୍ଯ୍ୟ ହୁଲର ପକାଇବେ, ‘‘ଲାଳୟେତ୍ ପଞ୍ଚବର୍ଷାଣି ଦଶବର୍ଷାଣି ତାଡ଼ୟେତ୍ ।’’ ତେଣିକି ପୁତ୍ର ଓ ବନ୍ଧୁମିତ୍ରଙ୍କୁ ଏକା ମଣିବ । ଦଶକ ଟପିବା ପର୍ଯ୍ୟନ୍ତ ପୁଅ ଆମ ବାଗ ଭିତରେ । ତେଣିକି ପିଲାମାନେ ହେଲେ ଡୋରିକଟା ଘୁଡ଼ି । ତାପରେ ଏମାନେ ହେଲେ ସ୍ୱାଧୀନ ଜୀବ ଓ ଏମାନଙ୍କ କାର୍ଯ୍ୟକଳାପ, ରୁଚି ଓ ପ୍ରସ୍ତାବ ଉପରେ ଆମର ଏ ସଭ୍ୟଯୁଗରେ ପାଟି ଫିଟାଇବାର ଜୁ ନାହିଁ । ତାହାହେଲେ ସଭ୍ୟ ସମାଜ ଆମକୁ କୁତାର ହାଲ କରିବେ !

ଏ ପ୍ରସଙ୍ଗଟା ଆମ ବସ୍ତାନିରେ ଟିପି ରଖିବାର ଉଦ୍ଦେଶ୍ୟ ଏହି କି, ଆମେ ଯେଉଁ ଘଡ଼ିକ ହାକିମି ଚଳାଇବାର କ୍ଷମତା ପାଇଥାଉଁ ଓ ସେ ଘଡ଼ିକ ଯେଉଁ ସ୍ୱର୍ଗସୁଖ ଅନୁଭବ କରିଥାଉଁ, ତାହା ଟିପିକରି ରଖିଥିଲେ ଏ ଟିପାତକ ଆମ ଅନ୍ତେ ଆମର ପୁତ୍ର ପୌତ୍ରାଦି ଉଆଲି ଉଆରସ ଉତ୍ତରାଧିକାରୀ କାହା ଦୃଷ୍ଟିରେ ପଡ଼ିଲେ ଆମର କେହି ଭବିଷ୍ୟତ୍ କୁଳଚନ୍ଦ୍ରମା 'ହାକିମପାହିଆ' ପାଇବା ସକାଶେ ଚେଷ୍ଟା କରିବେ । ଆମର ଆହୁରି ଏକ ଉଦ୍ଦେଶ୍ୟ ଯେ, ନିଜେ ହାକିମ ହେବା କଥା ଦୂରେ ଥାଉ, ଆମେ ବର୍ଷକେ ଦୁଇ ତିନି ଥର 'ହାକିମଙ୍କ ପାଖରେ ଥାଇ ହାକିମ' ହେବା ସକାଶେ ସଦର କଚେରିକୁ ଯେଉଁ ପହଣ୍ଡି ବିଜେ କରୁଁ ଓ ସେହି 'ଥାଇ ହାକିମି'ର କରାମତି ଜାହିର କଲା ବେଳେ ଆମର ଯେଉଁ ପାଟିସୁଖ (ହାକିମଙ୍କ ପ୍ରଶ୍ନର ଜବାବ ଦେଲା ବେଳକୁ ଆମ ପାଟି ଖନି ମାରିଯାଏ, ତଦୁତ୍ପନ୍ନ ସୁଖ ଓ ବାଲ୍ୟରୁ ପାଟିରେ ପାନଖିଲ ଜାକିବା ସୁଖରୁ ମିସଲରେ ବସିବା ପର୍ଯ୍ୟନ୍ତ ବିରତ ରହିବା ଯୋଗୁଁ ଯେଉଁ ସୁଖ), ଅସନ ସୁଖ (ମିସଲଚଉକିରେ ଓଡ଼ିଶାର ମାହାତ୍ମ୍ୟରୁ ଚଉକିସଂଲଗ୍ନ ଅଙ୍ଗମାନଙ୍କର ଓଡ଼ଶୋପଚାର କ୍ରିୟାଜନିତ ଦୈହିକ ସୁଖ), ପିଠି ସୁଖ (ଏକ ଭାବରେ ବିନା ହଲଚଲରେ ଜଜ ସାହେବଙ୍କ ମୁହଁକୁ ଚାହିଁ ରହିବା ରୂପ ଅବଶ୍ୟ-କର୍ତ୍ତବ୍ୟକାର୍ଯ୍ୟ ଯୋଗୁଁ ଏକାସନରେ ୫/୬ ଘଣ୍ଟା ଚଉକିରେ ବସିବାଦ୍ୱାରା ପିଠି ଲାଠି ହୋଇଯିବାରୁ ଯେଉଁ ଧନୁଷ୍ଟଙ୍କାର ସୁଖ), ପଦ ସୁଖ (ଅର୍ଥାତ୍ ଆମେ ମରହଟ୍ଟିଆଙ୍କର ଚଉକିରେ ଗୋଡ଼ ଲମ୍ୱାଇ ବସିବାର ଅଭ୍ୟାସ ନ ଥିବାରୁ ମିସଲରେ ଏକାଦିକ୍ରମେ ୫/୭ ଘଣ୍ଟା ଲେଖାଏଁ ଗୋଡ଼ ଲମ୍ୱାଇ ବସିବାରୁ ଗୋଡ଼ର ପରିସର ବୃଦ୍ଧିରୁ ଉତ୍ପନ୍ନ ହେବା ସୁଖ) ଓ ସମସ୍ତଙ୍କ ଠାରୁ ବଳି ମନ ସୁଖ (ହାକିମଙ୍କ ପାଖରେ 'ଥାଇ ହାକିମ' ହୋଇ ଅଲଗଡ଼ାରେ ଉପସ୍ଥିତ ଆସାମୀମାନେ 'ଦୋଷୀ' କି 'ନିର୍ଦ୍ଦୋଷ' ଏ କଥା ଜଜ ସାହେବଙ୍କୁ କହିଲା ବେଳେ ଏହି ଅଧିକାର ପରିଚାଳନା ଦ୍ୱାରା ମନରେ ଯେଉଁ ଆନନ୍ଦ ଉପଭୋଗ ହୁଏ ସେ ସୁଖ), ଇତ୍ୟାଦି ଯେଉଁ ଯେଉଁ ସୁଖ ଆମେ ଆମର ପ୍ରହର ବ୍ୟାପୀ ରାଜତ୍ୱ ସମୟରେ ଅନୁଭବ କରୁଁ, ସେ ସୁଖ ସଙ୍ଗେ ଆମର ହାକିମ ଉତ୍ତରାଧିକାରୀ ଚିରସ୍ଥାୟୀ ଅସଲ ହାକିମିର ସୁଖକୁ ମିଳାଇ ପାରିବେ ।

(ନୋଟ୍ - ପାଠକ ଅବଧାନ । ଏଠାରେ କହିରଖିବା ଉଚିତ ଯେ, ଲେଖକର କୌଳିକ ଉପାଧି 'ଆଚାର୍ଯ୍ୟ' ଓ ମରହଟ୍ଟା ଅମଳରେ ଲେଖକର ବୃଦ୍ଧ ପିତାମହ ଏକ ପ୍ରହର ନିମନ୍ତେ 'ତିନି ଖୁଣ ମାଫ୍' ହୁକୁମ ପାଇ ତଦାନୀନ୍ତନ ପୁରୀ ମହାରାଜାଙ୍କ ଠାରୁ ନୈପାତନିକ ବ୍ୟଞ୍ଜନସନ୍ଧି (ପ୍ରହରାଜ) ପ୍ରସାଦରୁ 'ପ୍ରହରାଜତ୍ୱ' ପ୍ରାପ୍ତ ହୋଇଥିଲେ ଓ ତଦବଧି ତାଙ୍କର ବଂଶଧରମାନେ 'ପ୍ରହରାଜ' ଉପାଧି ଦ୍ୱାରା ଆପଣାର ନିରୀହ ଆଚାର୍ଯ୍ୟତ୍ୱକୁ ବୁଡ଼ାଇ ପକାଇବାକୁ ସମର୍ଥ ହୋଇଅଛନ୍ତି । କେହି କେହି ନିନ୍ଦୁକ କହନ୍ତି ଯେ, ମୋ ପୂର୍ବପୁରୁଷର କେହି ମହାତ୍ମା ରାଜଦ୍ୱାରରେ କୌଣସି ଅପରାଧର ପୁରସ୍କାରସ୍ୱରୂପ ଏକ ପ୍ରହର କାଳ 'ରାଜ' କାମ କରିଥିଲେ ଓ କେହି କେହି କହନ୍ତି ଯେ,

ରାଜାଙ୍କ ନହର ପହରା କରିବାକୁ ଯେଉଁ ପ୍ରହରୀମାନେ ଥାନ୍ତି, ସେମାନଙ୍କ ଉପରେ ଆମର ପୂର୍ବପୁରୁଷଙ୍କ କ୍ଷମତା ଦିଆ ଯାଇଥିଲା । କିନ୍ତୁ ଏଗୁଡ଼ାକ ବ୍ୟାକରଣ ଦୋଷଦୁଷ୍ଟ ଥିବା ଯୋଗୁଁ ଉପେକ୍ଷଣୀୟ । ନନାଙ୍କ ବସ୍ତାନିରେ ଉପରୋକ୍ତ 'ପ୍ରହର ବ୍ୟାପୀ ରାଜତ୍ୱ' ଶବ୍ଦ ପ୍ରୟୋଗ ନିମନ୍ତେ ଲେଖକର ବଂଶାନୁଚରିତ ଅନୁସନ୍ଧେୟ ଓ ଅନୁମେୟ । ଇତି ।)

ଏଥିପାଇଁ ଏହି ଅଢ଼େଇଘଣ୍ଟିଆ ହାକିମି ଦ୍ୱାରା ଆମେ ଯାହା ନିଜେ ନିଜେ ଅଙ୍ଗରେ ନିଭେଇଅଛୁଁ, ତାହା ଏଠାରେ ଦରଜ କଲୁଁ କି ଦରକାର ବେଳେ କର୍ମରେ ଆସିବ ।

ମଫସଲରେ ଆମେ ଜମିଦାର ଥିବା ଯୋଗୁଁ 'ସ୍ୱଦେଶେ ପୂଜ୍ୟତେ ରାଜା' ପ୍ରବଚନ ଅନୁସାରେ ଆମ ଜମିଦାରିର ରଇତମାନେ ଆମକୁ ଭାରି ସମ୍ମାନ ଚକ୍ଷୁରେ (ଭକ୍ତିମିଶ୍ରିତ ସମ୍ମାନ ନୁହେଁ, ଭୟମିଶ୍ରିତ ସମ୍ମାନ) ଦେଖନ୍ତି । କିନ୍ତୁ ଆମେ 'ଯୋଡ଼ି'ରେ ବସୁଥିବାରୁ ଆମ ଜମିଦାରିର ବାହାରଆଡ଼େ ଦୀର୍ଘ ଚାରି କୋଶରେ ଆମର ଭାରି ନାମ ଡାକ ।

(ନୋଟ୍ - ପାଠକ ମହୋଦୟ, ଆପଣ ଇଂରାଜୀ ଜାଣିଥିଲେ ଉତ୍ତମ, ନ ଜାଣିଥିଲେ ଉତ୍ତମ, ଏ 'ଯୋଡ଼ି' ଶବ୍ଦକୁ ଆପଣମାନଙ୍କ ବୋଧଗମ୍ୟ କରିବା ସକାଶେ ମଲ୍ଲୀନାଥ ବ୍ୟାଖ୍ୟା ଆବଶ୍ୟକ । ଦୁଇଟି ସଜୀବ ବା ନିର୍ଜୀବ ପଦାର୍ଥ ହେଲେ ଉକ୍ତ ସମାହାରକୁ 'ଯୋଡ଼ି' ବୋଲାଯାଏ । ସାଧାରଣତଃ 'ଯୋଡ଼ି' କହିଲେ ଘୋଡ଼ାଗାଡ଼ିରେ ଲାଗିବା ଘୋଟକଦ୍ୱୟଙ୍କୁ ବୁଝାଏ । କିନ୍ତୁ ଏ ସ୍ଥଳରେ 'ଯୋଡ଼ି' ଶବ୍ଦ ଇଂରାଜୀ ଜୁରୀ (Jury) ଶବ୍ଦର ଓଡ଼ିଶୀ ଅପଭ୍ରଂଶ । ଜଜ ସାହେବ ଗୁରୁତର ମକଦ୍ଦମାମାନ (ସେସନ) ବିଚାର କରିବା ସମୟରେ ଦୁଇ ଜଣ ଭଲଲୋକଙ୍କୁ ବସାଇ ବିଚାର କରିବା ଆଇନରେ ବିଧି ଅଛି । କାରଣ ଗୁରୁତର ଅପରାଧରେ (ଜନାକାରୀ, ମଣିଷମାରୁ, ତହବିଲ ତୋଷରଫ୍, ଡକାଏତ, ଜାଲ୍, ଘରପୋଡ଼ି, ବିଷଦିଆ ଇତ୍ୟାଦିରେ) ଆସାମୀ ଅପରାଧୀ ବୋଲି ସାବ୍ୟସ୍ତ ହେଲେ ଫାଶୀ କିମ୍ବା କଳାପାଣି ବା ଦୀର୍ଘ କାରାବାସ ଅବା ଯାନାସନ ବାଜେୟାପ୍ତ ଦଣ୍ଡ ପାଏ । ଏପରି ସ୍ଥଳରେ ଯେଉଁ ମକଦ୍ଦମାର ବିଚାର ଉପରେ ମନୁଷ୍ୟର ଜୀବନ ମରଣର ଓ ଧନଜନର ସମ୍ପର୍କ ଅଛି, ସେପରି ଗୁରୁତର ମକଦ୍ଦମାରେ ଭଲଲୋକ ଦୁଇ ଜଣ ବସାଇ ସେମାନଙ୍କ ମତ ନେବାପାଇଁ ଦୟାପର ସରକାର ବାହାଦୁର ଆଇନରେ ବ୍ୟବସ୍ଥା କରିଅଛନ୍ତି । ଏଥିପାଇଁ ଦଉରା ମିସଲରେ ଜଜସାହେବ ବିଚାର କଲାବେଳେ ଭଲଲୋକ ଦୁଇ ଜଣ ବସାଇ ମକଦ୍ଦମା ବିଚାର କରନ୍ତି । ଭଲଲୋକମାନେ ମକଦ୍ଦମାର ପ୍ରମାଣ ଶୁଣି ତାଙ୍କର ରାୟ ଦିଅନ୍ତି । ଜଜ ସାହେବ ଭଲଲୋକଙ୍କ ରାୟ ଶୁଣିବା ପରେ ନିଜର ରାୟ ଦିଅନ୍ତି । ଏ ଭଲଲୋକ ଦୁଇ ପ୍ରକାର - ଏକ ଶ୍ରେଣୀର ଭଲଲୋକଙ୍କୁ ବୋଲାଯାଏ 'ଜୁରୀ' (Jury), ଦ୍ୱିତୀୟ ଶ୍ରେଣୀର ଭଲଲୋକଙ୍କୁ ବୋଲାଯାଏ 'ଅସେସର' (assessor) । ଘଟନାଗତ ବିଷୟର ମୀମାଂସା ଜୁରୀଙ୍କ ଉପରେ । ଆଇନଗତ ବିଷୟର ମୀମାଂସା ଜଜଙ୍କ ଉପରେ । ଜୁରୀ ଓ ଅସେସରଙ୍କ ମଧ୍ୟରେ ମଧ୍ୟ ପ୍ରଭେଦ ଅଛି । 'ଜୁରୀ'ଙ୍କ ରାୟ ଆଇନ ଅନୁସାରେ ଜଜସାହେବଙ୍କ ଚକ୍ଷୁରେ ମୂଲ୍ୟବାନ୍ । ଅସେସରଙ୍କ ରାୟ

ତେତେ ବଳବତ୍ତର ନୁହେଁ । ଘଟନା ସମ୍ବନ୍ଧରେ ଜୁରୀ ଯାହା ମତ ଦେବେ, ଜଜସାହେବ ସେ ମତକୁ ସହଜରେ ଅନାସ୍ଥା କରିପାରିବେ ନାହିଁ । କିନ୍ତୁ ଅସେସରମାନଙ୍କ ମତକୁ ଯେବେ ଜଜସାହେବ ଭ୍ରାନ୍ତ ବୋଲି ମନେ କରିବେ, ତେବେ ଅସେସରମାନେ ଆସାମୀକୁ ଅଶେଷ ପ୍ରକାରେ ଦୋଷୀ ବୋଲି କହିଥିଲେ ମଧ୍ୟ ସାହେବ ତାଙ୍କୁ ଖଲାସ ଦେଇପାରିବେ କିମ୍ବା ନିର୍ଦ୍ଦୋଷ ବୋଲି କହିଥିଲେ ସୁଦ୍ଧା ସାହେବ ମଉସୁଫ ଆସାମୀକୁ ଦସ୍ତୁରମତେ ଠୁଙ୍କାଟିଏ ଠୁକି ଦେବେ । ଏପରି ସ୍ଥଳରେ 'ଯୋଡ଼ି'କୁ ଦୁଇ ଶ୍ରେଣୀରେ ନାମକରଣ କରାଯାଇପାରେ । ୧- ଅସଲ ଯୋଡ଼ି (ଜୁରୀ) ୨- କମସଲ ଯୋଡ଼ି (ଅସେସର) । ଓଡ଼ିଶାରେ ଅସଲ ଯୋଡ଼ିଙ୍କ ନାମରେ ଖଡ଼ି ପଡ଼େ ନାହିଁ, କେବଳ କମସଲ ଯୋଡ଼ିମାନେ ଦଉରା (ସେସନ) ବିଚାରବେଳେ ଜଜସାହେବଙ୍କ କଡ଼ପଟରେ ଖଣ୍ଡିଏ ଲେଖାଏଁ ଚଉକି ପାଇ କୃତାର୍ଥ ହୁଅନ୍ତି ଓ ଅଶେଷ ପ୍ରକାରେ ହାଇ ମାରୁ ମାରୁ, ପିଠି ସଳଖୁ ସଳଖୁ ଓଡ଼ଶଙ୍କ ମନବୋଧ ଓ ମକଦମା ଶୁଣାଣି ହୋଇଯାଏ । ମକଦମା ବିଚାର ପରେ ଆସାମୀ 'ଦୋଷୀ' କି 'ନିର୍ଦ୍ଦୋଷ' ଏ କଥା କହି ଦେଇ ଯୋଡ଼ିକଯାକ ମିସଲକୁ ଖସି ପଡ଼ି ବିଯୋଡ଼ ହୋଇଯାନ୍ତି । ଯୋଡ଼ିରେ କିଏ କିଏ ବସିବ, ଏ କଥା ଜଜସାହେବ ଓ ମେଜେଷ୍ଟର ସାହେବ ବସି ପରାମର୍ଶ କରି ତାଲିକା କରନ୍ତି ଓ ଫି ଥର ଦଉରା ମକଦମା ପାଳିରେ ମକଦମାର ସଂଖ୍ୟା ଅନୁସାରେ ମେଜେଷ୍ଟର ଏ ତାଲିକାର ପଞ୍ଚାଏଙ୍କ ପାଖକୁ ଆବାହନ ପତ୍ର (ପ୍ରିସେପ୍ଟ) ପଠାନ୍ତି । ଏ ପତ୍ରପ୍ରାପ୍ତ ଯୋଡ଼ିମାନେ ଦଉରା ବିଚାରବେଳେ ଜଜସାହେବଙ୍କ ମିସଲରେ ହାଜର ହେଲେ ଦିନେ ଓଳିଏ ଅଣ୍ଟା ପିଠି ଘୋଳିମିଳି ହେବାରେ ଓ ହାଇମରା କିମ୍ବା କାହାର କିମିତି ଗୋଡ଼କୁ ରକ୍ତ ଗଡ଼ିବାରେ ଖଲାସ ପାଇଯାନ୍ତି ଓ କିଛି ବାଟଖରଚ ମଧ୍ୟ ପାନ୍ତି । ନ ଆସିପାରିଲେ ଓ ଅନୁପସ୍ଥିତିର ସନ୍ତୋଷଜନକ କାରଣ ଜଜକୁ ଦର୍ଶାଇ ନ ପାରିଲେ ଯୋଡ଼ିଙ୍କ ଖୋଷଣିଫିଟା ପର୍ଯ୍ୟନ୍ତ ତୋଡ଼ମାଡ଼ ହୋଇଯାଏ ଓ କିଛି ଅକଲସଲାମିରେ ସେ ଯାତ୍ରା ରକ୍ଷା ପାନ୍ତି । ଆମ ଅଞ୍ଚଳର 'ଯୋଡ଼ି'ର ଆଭ୍ୟନ୍ତରୀଣ ମର୍ଯ୍ୟାଦା ଏହି- କିନ୍ତୁ ମଫସଲର ଯେଉଁ ବ୍ୟକ୍ତି 'ଯୋଡ଼ି'ରେ ବସନ୍ତି, ଆଡ଼େ ଦୀର୍ଘେ ଚାରି କୋଶରେ ତାଙ୍କ ନାଁଟା ପଡୁଥାଏ । ଅନ୍ୟାନ୍ୟ ଅନେକ ଅନାହାରୀ ପଦ ଭଳି ଯୋଡ଼ିରେ ବସିବା ମଧ୍ୟ ଅନାହାରୀ ପଦଟିଏ । ଯେ ଅଣ୍ଟା ପିଠିଘୋଳା ଓ ହାଇମରା କିମ୍ବା ବାତଜ୍ୱରକୁ ଡରନ୍ତି, ସେମାନେ ମହାଦେବଙ୍କଠାରେ ଗୟସ ଚଢ଼ାଇ ଓ ଠାକୁରାଣୀଙ୍କୁ ବୋଦା ଯାଚି ସେ ତାଲିକାରୁ ନାଁ କଟାନ୍ତି; ଆଉ ଯେ ପରର ପ୍ରାଣ ଉପରେ ଅଧିକାର ଚଳାଇ ଲାଫାଙ୍କିଆ ଡିଗ୍ରୀ ଡିସମିସ୍ କରିବା ପାଇଁ ମୋ ଭଳି ହାଇଁପାଇଁ ହେଉଥାନ୍ତି, ସେ କିଛି ଗୟସ ଚଢ଼ାଇ ସେ ତାଲିକାରେ ଆପଣାର ନାମ ଲେଖା ହେବାକୁ ଯୋଗାଡ଼ କରନ୍ତି । ନନାଙ୍କର ଆମର କେଉଁ ବ୍ରାହ୍ମଣ ବରଣ ହୋଇଥିଲା ଓ ଗୟସ କେତେକର ଚଢ଼ିଥିଲା, ତାହା ବସ୍ତାନିରେ ଟିପା ନାହିଁ । କିନ୍ତୁ ନନା କେତେଥର କଟକ ସେସନ ଜଜଙ୍କ ମିସଲରେ ଲେଖକର ପାଠଦଶା ବେଳେ ଯୋଡ଼ିରେ ବସିବାର ଲେଖକର

ସ୍ମରଣ ଅଛି ଓ ନନା ସମ୍ଭବତଃ ସେହି 'ଯୋଡ଼ିସୁଖ'ର ଅନୁଭବ ବସ୍ତାନିରେ ଲିପିବଦ୍ଧ କରିଅଛନ୍ତି । କିନ୍ତୁ ଆସାମୀ, ମୁଦେଇ ଓ ସାକ୍ଷୀଙ୍କ ନାମ, ମକଦମା ନମ୍ବର, ଫଏସଲା ତାରିଖ ଓ ହାକିମଙ୍କ ନାମ ଆଦି ଅନୁସନ୍ଧେୟ ବିଷୟମାନ ବସ୍ତାନିରେ ଦରଜ ନ ଥିବାରୁ ନନାଙ୍କ ବସ୍ତାନିରେ ସମ୍ପାଦିତ ବିଷୟର ସତ୍ୟତା ପନ୍ଦର ବର୍ଷ ପରେ ନିରୂପଣ କରିବା ଦୁଷ୍କର । କିନ୍ତୁ- 'ନନା ଲେଖିଅଛନ୍ତି, ଅତଏବ ବେଦ,' ଏହି ହିସାବରେ ନିମ୍ନଲିଖିତ ବିଷୟ ପ୍ରକାଶ କରିବାକୁ ଲେଖକ ସାହସୀ ହେଲା । ଇତି ଲେଖନକାରସ୍ୟ ମଲ୍ଲିନାଥୀ ।

ଗତ ଦଉରା ବିଚାର ହେଲାବେଳେ 'ଯୋଡ଼ି'ରେ ଆମକୁ ତଲବ ହୋଇଥିଲା ଓ ଆମେ ତଦନୁସାରେ ଜଜସାହେବଙ୍କ ଇଜଲାସରେ ହାଜର ହୋଇଥିଲୁଁ । ସେଥର ଜଳକର ଇଲାକାର ଜଣେ ବୁଢ଼ା ପିଆଦା (ଯାହାର ଚାକିରି ସେ ଇଲାକାରେ ୧୯ ବର୍ଷ ହୋଇଥିଲା) ୨/୭ ଦୁଇ ଟଙ୍କା ଚାରିଅଣା ସାତ ପାହୁଲା ସରକାରୀ ତହବିଲ ତୋଷରଫ କରିଥିବା ଦୋଷରେ ଦଉରା ସୁପର୍ଦ୍ଦ ହୋଇଥିଲା ଓ ସେହି ମକଦମାରେ ଆମକୁ ଯୋଡ଼ିରେ ବସିବାକୁ ହୋଇଥିଲା । ଆମ ସଙ୍ଗେ କଟକର ବାବୁ ବଳଦେବ ପ୍ରସାଦ ଭଗତ ମଧ ଯୋଡ଼ିରେ ବସିଥିଲେ । ପ୍ରଥମେ ଯେତେବେଳେ ଆସାମୀ ପିଆଦା ତହବିଲ ତୋଷରଫ କରିବାର ଜଣା ପଡ଼ିଲା, ସେତେବେଳେ ପ୍ରଥମେ ଜଳକର ତହସିଲଦାର ବିଭାଗୀୟ ତଦନ୍ତ କରି ଜଳକର ଦିପୋଟୀଙ୍କଠାକୁ ପିଆଦା ବିରୋଧରେ ରିପୋର୍ଟ କରିଥିଲେ ଓ ଦିପୋଟୀ ସଦରକୁ ରିପୋର୍ଟ କରି ସେ ପିଆଦାଟିକୁ ମେଜେଷ୍ଟରଙ୍କ ନିକଟକୁ ହୁବେହୁବ୍‌ରମାନା କରି ଦେଇଥିଲେ ଓ ସେହି ରମାନା ବଳରେ ପିଆଦାଟି ଆଜି ସେସନ ଇଜଲାସରେ ଆମ ଆଗରେ ଆସାମୀ ରୂପରେ ଦଣ୍ଡାୟମାନ ହୋଇଥିଲା । ସୁଯୋଗକୁ ଏହି ମକଦମାରେ ଆମକୁ ଆଉ ଗୋଟିଏ ଖଞ୍ଜାଖଞ୍ଜିଆ କରବାଗିଆ ସୁବିଧା ମିଳିଗଲା । ଜଳକର ତହସିଲଦାରବାବୁଙ୍କର ଆମ ଉପରେ ପୂର୍ବରୁ ଭାରି 'ଅନୁରାଗ' । ଆମକୁ ସେ ଅଞ୍ଚଳରେ ଗର୍ଭିଣୀ ଘୁଷୁରି ମଧ ବାଟ ଛାଡ଼ିଦିଏ ଓ ଆମ ଗର୍ଜନରେ କେତେ ସ୍ତ୍ରୀ ବେମିଆଦିରେ ଲୋକସଂଖ୍ୟା ବଢ଼ାଇବାକୁ ବାଧ ହୋଇ ଅଛନ୍ତି । କିନ୍ତୁ ଜଳକର ତହସିଲଦାର ଏଡ଼େ ନିର୍ଭୟା ଯେ, ଥରେ ବରଷ ଦୁଇ ତଳେ ଜଳକର ଦାଖଲ କରିବାକୁ ଆମର ମାସ ତିନିଚାରିଟା ଡେରି ହୋଇ ଯାଇଥିଲା ବୋଲି ତହସିଲଦାର ଆମ ନାମରେ ସଦରକୁ ରିପୋର୍ଟ ଗୁଞ୍ଜି ଦେଇ ଆମକୁ ଆଗକୁ ଖବର ନ ଦେଇ ଦିନେ ବଡ଼ିଭୋର ସଦଳବଳରେ ଯାଇ ଆମ ଦିହୁଡ଼ି ଦୁଆରରେ ଚଳନ୍ତି ମାଳ କୋରଖ କରିବାକୁ ମୁସ୍ତେଜ ହୋଇଥିଲେ । କୋରଖ ପରୁଆନା ଦେଖି ସେତେବେଳେ ଅଗତ୍ୟା କିଛି ନ କହି ଆମେ ଜଳକର ଓ ତହିଁର ସୁଧ ଓ କୋରଖି ଖରଚା ପାହି କ୍ରାନ୍ତି ହିସାବ କରି ବୁଝାଇଦେଲୁଁ । ବିଚାରିଥିଲୁଁ ଯେ, ତହସିଲଦାରଙ୍କୁ ଏ ଅପମାନ ନିମନ୍ତେ ସାଥେ ସାଥେ ପଟାଏ ସରଜମିନରେ ଦେଇଥାନ୍ତୁ; କିନ୍ତୁ ଆଗାମୀ ଚପଟ ଭୟରେ ସେତେବେଳେ ତୁନି ହୋଇ ରହିଗଲୁଁ ଓ ଜଗନ୍ନାଥଙ୍କୁ ଡାକଟାଏ ମାଇଲୁଁ ଯେ, ମହାପ୍ରଭୁ କଲେ, ତହସିଲଦାରଙ୍କୁ

ମହାପ୍ରଭୁ ଆମ ଆଗରେ କେଉଁ ଦିନ ଠିଆ କରାଇଲେ ତାଙ୍କୁ ଆମ କରାମତର ଆଣ୍ଠୁପଛୁଆ ପ୍ରମାଣ ଦେଖାଇ ଦେଇପାରିବୁଁ । ଏହା ଭାବି ଏହି ଆଶାରେ ସେ ଯାତ୍ରା ତହସିଲଦାରଙ୍କୁ ରକ୍ଷା କଲୁଁ । ଆମ ବେଳ ପଡ଼ିଲେ ତହସିଲଦାରଙ୍କ ସଙ୍ଗେ କଥାଭାଷାଟାଏ ହେବା ଯେ ! ଦୈବଯୋଗକୁ ଆଜି ସେହି ତହସିଲଦାର ଏ ଦଉରା ମକଦମାରେ ସରକାରଙ୍କ ତରଫରୁ ସାକ୍ଷୀସ୍ୱରୂପ ଆମ ସାମନାରେ ମିସଲରେ ଉପସ୍ଥିତ । ସେ ଏ ପିଆଦାର ତହବିଲ ତୋଷରଫ ମକଦମାକୁ ପ୍ରଥମେ ତଦନ୍ତ କରିଥିଲେ ଓ ସେଥିଯୋଗୁଁ ଦଉରାରେ ଏ ମକଦମା ସମ୍ବନ୍ଧେ ସେ ସାକ୍ଷ ଦେବାକୁ ଆସିଥିଲେ । ଆଗକରି ସରକାରୀ ଓକିଲ ଆମକୁ ଓଡ଼ିଆରେ ମକଦମାର ଦଫା ଓ ସଂକ୍ଷିପ୍ତ ହାଲ କହିଦେଇ ଗଲେ । ଅର୍ଥାତ୍ ମକଦମାର ଚାବି ଖୋଲିଦେଇ ଘରଟା ଝଡ଼ାଝଡ଼ି କରି କଲି ଫେରାଇ ଦେଇଗଲେ । ଆସାମୀକୁ ଚାର୍ଜ (ଅଭିଯୋଗ) ପଢ଼ି ଶୁଣାଇ ଦିଆଗଲା । ଆସାମୀ ଜବାବ ଦେଲା, 'ମୁଁ ନିର୍ଦ୍ଦୋଷ' । ସରକାରୀ ଓକିଲଙ୍କ ଅବଲୟ ବା ସ୍ୱୋକ୍ତିବାଚନ ପରେ ମକମାରେଦ ସରକାର ତରଫରୁ ଗଭେଇ ନିଆଗଲା । ପ୍ରଥମ ସାକ୍ଷୀ-ତହସିଲଦାର ସାହେବ । ତହସିଲଦାର ସାହେବ ଅଲଗଡ଼ାରେ ଆସି ଠିଆ ହୋଇ ମିସଲକୁ ଧନୁଷ୍ଟଙ୍କାରିଆ ସଲାମଟିଏ ବଢ଼େଇଲେ ଓ ଚାହିଁଦେଲେ ଯେ, ଆମେ ଏ ମକଦମାରେ 'ଯୋଡ଼ି' ରୂପେ ଆସୀନ । ଆମକୁ ଦେଖି ତହସିଲଦାରଙ୍କ ମୁହଁଟା ଟିକିଏ ବେରଙ୍ଗ ହୋଇଗଲା ଓ ଆମେ ମୁରକି ହସାଟାଏ ମାଇଲୁଁ । ପାଠ ଡାକୁଛି, "ଆକାରୈରିଙ୍ଗିତୈର୍ଗତ୍ୟା ଚେଷ୍ଟୟା ଭାଷିତେ ନ ଚ । ନେତ୍ରବକ୍ର ବିକାରୈଶ୍ଚ ଗୃହ୍ୟତେଽନ୍ତର୍ଗତଂ ମନଃ ।" ଅର୍ଥାତ୍ ଆକାର, ଇଙ୍ଗିତ, ଗତି, ଚେଷ୍ଟା, କଥାଭାଷା, ଚକ୍ଷୁ ଓ ମୁଖର ଭଙ୍ଗୀରୁ ମନୁଷ୍ୟ ମନ ଠଉରାଇନିଏ । ଆମ ମୁରକିହସା ଦେଖି ତହସିଲଦାରେ ଆମ ମନ ସମଝି ଗଲେ, ଆମେ ମଧ ତାଙ୍କ ଚେହେରା ଦେଖି ତାଙ୍କ ମନ ଠଉରାଇ ନେଲୁଁ । ସେ ବିଚାରିଲେ- "ଆଚ୍ଛା କଥା ହେଲା ! ଗତ ବର୍ଷ ଏହାଙ୍କ ଘରେ ପାଣ କଣ୍ଡରା ପୂରାଉଥିଲି, ଆଜି ଏହାଙ୍କରି ହାବୁଡ଼ରେ ପଡ଼ିଗଲା ! ହାୟ ବିଧି ବିଡ଼ମ୍ବନା !" ଆମେ ବିଚାରିଲୁଁ, "କିହୋ ତହସିଲଦାର ଆପଣେ ! ଆଜି ଆମର ମିସଲ ଉପରେ ଚଉକିରେ ବଇଠକି, ତୁମେ ମିସଲ ତଳେ ଅଲଗଡ଼ାରେ ହାତ ଯୋଡ଼ି ଠିଆ ! କୋରଖି ଦିନ ତୁମେ ଆମ ଉପରେ ସବାର ହୋଇଥିଲ, ଆଜି ଆମ୍ଭେ ତୁମ ଉପରେ ହାକିମ ହୋଇ ତୁମ କାମ ଉପରେ କଲମ ଚଳାଇ ରାୟ ଦେବାକୁ ବସିଛୁଁ ! ତୁମେ ଆମ ଘର କୋରଖ କରିବା ଦିନ ଯେଉଁ ମାଣକ ଉଧାର ଦେଇଥିଲ, ଆଜି ଆମେ ତାକୁ ପାଞ୍ଚପା' କରି ଶୁଝିବୁଁ ! ତୁମ ଘଡ଼ିକ ତୁମେ ରଖିଗଲ; ଦେଖ, ଆମ ଘଡ଼ିକ ଆମେ ବି କଣ କରିପାରୁଁ !" ତହସିଲଦାରଙ୍କୁ ହଲପ ଦିଆଗଲା ଓ ତାଙ୍କ ଜବାନବନ୍ଦି ଶେଷ ହେଲାରୁ ଅନ୍ୟ ସାକ୍ଷୀଙ୍କ ଜବାନବନ୍ଦି ହେଲା ଓ ଆସାମୀ ପକ୍ଷର ଓକିଲ ସାକ୍ଷୀମାନଙ୍କୁ ଜେରା କଲେ । ସାକ୍ଷୀ ଜବାନବନ୍ଦି ପରେ ହାକିମ ଆସାମୀଠାରୁ ଜବାବ ଦେଲେ । ଆସାମୀ କହିଲା, 'ଏ ମକଦମା ବିବାକ ମନଗଢ଼ା; ତହସିଲଦାର ସାହେବ ମତେ ତାଙ୍କ ଘରର

କାମ କରିବାକୁ କହିଥିଲେ ଓ ନାଳ ବନ୍ଧ ଉପରେ ଥିବା ନାଲି ନଡ଼ିଆ ପୁଞ୍ଜାଏ ପୋଢୁଆଁ ଅଷ୍ଟମୀକୁ ପଠାଇବାକୁ କହିଥିଲେ, ମୁଁ ସେ କଥା ନ କରିବାରୁ ମୋ ନାମରେ ମିଛ ମକଦମା କରିଛନ୍ତି ।' ତା ପରେ ଆସାମୀ ପକ୍ଷରୁ ସଫେଇ ସାକ୍ଷୀମାନଙ୍କ ଗଭେଇ ନିଆଗଲା । ତହସିଲଦାରଙ୍କ ଅଦାଉତି ସମ୍ବନ୍ଧରେ ଆସାମୀ କିଛି ପ୍ରମାଣ ଦେଲା ନାହିଁ । ଆସାମୀ ପକ୍ଷର ଓକିଲ ଆସାମୀକୁ ନିର୍ଦ୍ଦୋଷ ବୋଲି ଦର୍ଶାଇ ବହେ ଖୁବ ରଗଡ଼ା ରଗଡ଼ି କରି ବହୁତ ଆଇନ ବହି ଓ ନଜିର ଆଉଡ଼ାଇ ଜବାବ ସବାଲ କଲେ ଓ ଶେଷକୁ ଓକିଲ ସରକାର ଆସାମୀକୁ ଦୋଷୀ ବୋଲି ସାବ୍ୟସ୍ତ କରି ଖୁବ ଫଡ଼ଙ୍ଗି କଲେ । ସରକାର ଓକିଲଙ୍କ ଜବାବ ସବାଲରୁ ବୋଧ ହେଲା ଯେ, ସେ ଯେପରି ନିଜ ଆଖିରେ ସବୁ ଦେଖି ଆସିଛନ୍ତି ଓ ଆସାମୀଟା ଗୋଟାଏ ବାଇତଙ୍କ ! ସାକ୍ଷୀମାନେ ଗଭେଇ ଦେଇ ଥଣ୍ଡା, ଆସାମୀ ଜବାବ ଦେଇ ବୋଧ, ସରକାର ଓକିଲ ଓ ଆସାମୀ ଓକିଲମାନେ ବହେ ଲେଖାଏଁ ଧକଡ଼ ଚକଡ଼ ହୋଇ ବସିପଡ଼ିଲେ । ବାକି ରହିଲୁଁ ଆମେ ଯୋଡ଼ିକ 'ଯୋଡ଼ି' ଓ ଖୋଦ ହାକିମ । ଆମେ ଯୋଡ଼ି ଦୁହେଁ ଯୋଡ଼ି ହୋଇ କଥାଭାଷା ଓ ପରାମର୍ଶ କଲୁଁ । ସେଥିରୁ ହାକିମ ପଚାରିଲେ, ''ବାବୁ (ଅମୁକ) ! ଆପ୍‌କା ରାୟ୍ କ୍ୟା ?'' ଆମେ ଉତ୍ତର କଲୁଁ ଓ ହଜୁର ଆମ ବିଳବିଳାଗୁଡ଼ାକ ଲେଖିନେଲେ-

''ଆସାମୀ ଜଣେ ପୁରୁଣା ନିମକସଚା ସରକାରୀ ନୌକର ଥିବା ସ୍ଥଳେ ସେ ଟ ୨/୭ ତହବିଲ ତୋଷରଫ କରିଥିବାର ଆଦୌ ବିଶ୍ୱାସ ହେଉ ନାହିଁ । ଦେଖାଯାଏ ଯେ, ଆସାମୀ ସଙ୍ଗେ ତହସିଲଦାରଙ୍କର ଅଦୌତି ଥିବାରୁ ତହସିଲଦାର ଆସାମୀକୁ ହଏରାଣ ଓ ଜବତ କରିବା ମାନସରେ ଅଦୌତି ସାଧି ବୁଢ଼ାର ଚାକିରିଖଣ୍ଡକ ଛଡ଼ାଇ ବୁଢ଼ାଦିନେ ତାକୁ ବଦନାମ ଓ ନିରନ୍ନ କରିବା ଉଦ୍ଦେଶ୍ୟରେ ଏପରି କରିଅଛନ୍ତି । ଆଉ ଜଳକର ତହସିଲଦାରଙ୍କର ଏ ମକଦମା ତଦନ୍ତ ସମୟରେ ବ୍ୟବହାର ଅତ୍ୟନ୍ତ ଅସନ୍ତୋଷଜନକ ଓ ସନ୍ଦେହଜନକ । ସେ ସିଧା ବାଟରେ ନ ଯାଇ ବଙ୍କା ବାଟରେ ସାପ ଭଳି ଘୁଷୁରି ଘୁଷୁରି ଏ ମକଦମା ତଦନ୍ତ କରିଅଛନ୍ତି''- ଆମେ ଏତିକି କହିଛୁଁ ଓ ଆମ ମନର ଓରମାନ ଚାରିପଣିଆ ସୁଦ୍ଧା ମେଣ୍ଟି ନାହିଁ, ଜଜସାହେବ ଅଙ୍ଗରେଜୀରେ ତାଙ୍କ ପେସ୍କାରକୁ କଣ ଟାଉଁ ଟାଉଁ କରି ଗୁଡ଼ାଏ କହିଦେଲେ ଓ ତାହା ଶୁଣି ପେସ୍କାର ଓଡ଼ିଆ ଲବଜରେ ଆମକୁ ସମଝାଇ ଦେଲେ, ''ହଜୁର ହୁକୁମ କରୁଛନ୍ତି ଯେ, ଆସାମୀ ଦୋଷୀ କି ନିର୍ଦ୍ଦୋଷ, ଏ କଥା ରାୟ ଦେବାକୁ ଆପଣ ଆସିଛ, ଜଳକର ତହସିଲଦାରଙ୍କୁ ଜେଲଖାନା ଦେବାକୁ ଆପଣ ଏଠାକୁ ଆସି ନାହଁ ! ତହସିଲଦାର ନାମରେ ଦଉରା ମକଦମା ହେଲାବେଳେ ଯେବେ ଆପଣଙ୍କୁ ଯୋଡ଼ିରେ ତଲବ ହେବ, ଆପଣ ସେତେବେଳେ ତହସିଲଦାର ସମ୍ବନ୍ଧରେ ଯାହା ଇଚ୍ଛା ତାହା ମତ ଦେବେ । ବର୍ତ୍ତମାନ ଏ ମକଦମାରେ ଆସାମୀ ପିଆଦା ତହବିଲ ତୋଷରଫ କରିଥିବାର ପ୍ରମାଣ ଯଦି ଆପଣମାନେ ପାଇଥାନ୍ତି, ତେବେ ତାକୁ 'ଦୋଷୀ' ବୋଲି ରାୟ ଦିଅନ୍ତୁ, ପ୍ରମାଣ ନ

ପାଇଥିଲେ କିମ୍ବା ଆସାମୀ ଅପରାଧ କରିଥିବା ବିଷୟରେ ଆପଣଙ୍କର ସନ୍ଦେହ ହେଲେ ଆପଣମାନେ ଆସାମୀ 'ନିର୍ଦ୍ଦୋଷ' ବୋଲି ରାୟ ଦିଅନ୍ତୁ ।''

ଆହା ! କେଡ଼େ ବଡ଼ ସୁଖ ସପନଟା ଆମର ପେସ୍କାର ଚୂରମାର କରିଦେଲେ ! ମନ ଓରମାନଟା ନ ମେଣ୍ଟୁଣୁ ଆମ ଉପରେ ପେସ୍କାରେ ରାଧାଚଡ଼କଟାଏ ଛାଡ଼ିଦେଲେ ! ହେଉ, 'ହଜୁରକା ଯୋ ରାୟ' ବୋଲି ଆମେ ତୁଷ୍ଣୀଭୂତ ହେଲୁଁ । ତା ପରେ ମନ ସରସାଟା ଏକଦମ ସେମିତିଗଲା ଯେ, ଆଉ ପେସ୍କାରେ ଯେତେ ପଚାରିଲେ- ''ଆସାମୀ ଦୋଷୀ କି ନିର୍ଦ୍ଦୋଷ ?'' ଆମ ମୁହଁରୁ ଆଉ ବଚନ ବାହାରିଲା ନାହିଁ । ପଛକୁ ନିତାନ୍ତ କହିଲୁଁ, ''ଆମର ସଂ-'' ଏତିକି କହିଛୁଁ, ପେସ୍କାର ଅଙ୍ଗରେଜୀରେ ସାହେବଙ୍କୁ କଣ ସମଝାଇ ଦେଲେ । (ମିସଲ ଭାଙ୍ଗିବା ପରେ ବିଦାକି ଆଣିଲା ବେଳକୁ ପେସ୍କାର ଆମକୁ କହିଦେଲେ ଯେ, ସେ ଆମର ଲୁଗାରେ ପୋଖରିପାଣିଆ ଅବସ୍ଥା ଦେଖି ହାକିମଙ୍କ ଧୈର୍ଯ୍ୟ ଉପରେ ବନ୍ଧଟାଏ ବନ୍ଧାଇବା ପାଇଁ ହାକିମଙ୍କୁ ବୁଝାଇଦେଲେ ଯେ, ଅସେସର କହୁଛନ୍ତି, ଆସାମୀ ସନ୍ଦେହ ଯୋଗୁଁ ନିର୍ଦ୍ଦୋଷ ।)

ହାକିମ କଣ ଗୁଡ଼ିଏ ଲେଖିନେଲେ, ତା'ପରେ ଦ୍ୱିତୀୟ ଅସେସରଙ୍କୁ ପଚାରିଲେ, ''ବାବୁ (ଅମୁକ- ) । ଆପକା ରାୟ୍ କ୍ୟା ?''

ଦୁର୍ଯୋଗ ତ, ଆମକୁ ଜଣା ନାହିଁ ଯେ, ଆମର ସହଯୋଗୀ ଅସେସର ବାବୁ ଏଥି ପୂର୍ବେ ଫଉଜଦାରି ଅଦାଲତର ଡାହାଣପାଖ ଅଲଗଡ଼ାରେ କେତେଥର ଠିଆ ହୋଇଛନ୍ତି । ଆମ ଉପରେ ଜଜସାହେବଙ୍କର ତୋଡ଼ ଦେଖି ଆମର ସହଯୋଗୀ କିଂକର୍ତ୍ତବ୍ୟବିମୂଢ଼ ହୋଇ ଥରଥର ହୋଇ ଖନେଇ ଖନେଇ କହିଲେ, ''ହଜୁର ! ମୁଁ ଲିଖିତ ଜବାବ ଦାଖଲ କରିବି ।'' ପେସ୍କାର ଜଜସାହେବଙ୍କୁ କଣ ଅଙ୍ଗରେଜୀରେ ସମଝାଇ ଦେବାରୁ ସାହେବ ତାଙ୍କୁ ଅଙ୍ଗରେଜୀରେ କଣ କହିବା ପରେ ପେସ୍କାର ଆମର ସହଚାରୀଙ୍କୁ କହିଲେ, ''ହଜୁର ହୁକୁମ କରୁଛନ୍ତି କି, ଆପଣ ଆସାମୀ ହୋଇଥିଲେ ଲିଖିତ ଜବାବ ଦାଖଲ କରିବାର ଆବଶ୍ୟକ ହୋଇଥାନ୍ତା । ଆସାମୀ ଦୋଷୀ କି ନିର୍ଦ୍ଦୋଷ, ଏହି କଥା ଆପଣଙ୍କୁ ସାହେବ ପଚାରି ଆଜ୍ଞା ହେଉଛନ୍ତି, ବିଳମ୍ବ ହେଉଛି, ଶୀଘ୍ର ଆପଣଙ୍କ ମତ ଆପଣ ଦିଅନ୍ତୁ ।'' ଏହା ଶୁଣି ସଙ୍ଗୀ ଅସେସର କହିଲେ, ''ହଜୁର, ଖୋଦାବନ୍ଦ, ଖାମିନ୍ଦ ! ବାବୁଙ୍କୁ (ଲେଖକଙ୍କ ନନା) ହାମେ ମୁରବି ସରିକି ଖିଆଲ୍ ରଖୁଁ । ତାଙ୍କ ସଙ୍ଗେ ବି ହାମର ବହୁତ ଦିନ ହେଲା କାରବାର ଅଛି । ହାମର ଅକଲ କଣ ଜିଆଦା ? ସେ ଯେବେ ଗୋଟାଏ ବାତ୍ ଗାଇଦେଇ ସାରିଲେଣି, ସେ କଥାରୁ ବହିରିଭୂତ କଥା ହାମେ ତ କହିପାରିବା ନାହିଁ ? ଆସାମୀକୁ ହାମର ବାବୁ ଯାହା କହିଲେ, ହାମର ବି ସେହି ରାୟ ।''

ଏହା ଶୁଣି ପେସ୍କାର ମହୋଦୟଙ୍କ ମୁଖର ଯେଉଁ ପଟଟା ହାକିମଙ୍କ ଆଡ଼କୁ ଥିଲା, ସେହି ପଟଟାକୁ ପେସ୍କାର ପୂର୍ବବତ୍ ଗମ୍ଭୀର କରି ରଖି ଆମ ପାଖକୁ ଥିବା ପଟାଟିକୁ

ଟିକିଏ କଣବାଗିଆ କରି ଲେଫଡ଼ି ହେଲେ ଓ ଜଜସାହେବଙ୍କୁ ଅଙ୍ଗରେଜୀରେ କଣ ପଦକେତେ କହିଦେଲେ ଓ ଜଜସାହେବ ଚରଚର କରି କଣ ୫/୬ ଧାଡ଼ି ଲେଖି ପକାଇଲେ ।

(ପରେ ପେସ୍କାରଙ୍କ ଠାରୁ ବୁଝିଲୁଁ ଯେ, ପେସ୍କାରବାବୁ ଜଜସାହେବଙ୍କୁ ଆମ ବନ୍ଧୁଙ୍କର କଥିତ ତର୍ଜମା କରି ନ କହି ମୋଟାମୋଟି କହିଦେଲେ ଯେ, ଦ୍ୱିତୀୟ ଅସେସର କହିଲେ, ଆସାମୀ ନିର୍ଦ୍ଦୋଷ ।)

ଆମେ ରାୟ ଦେବାପରେ ଜଜସାହେବ ଆମ ଦୁଇଜଣ ଯୋଡ଼ିଙ୍କୁ ଖୋଲଟିରେ କହିଲେ, ଆପ୍‌ଲୋଗୋଁକା ମେହେରବାନି ଓ ତକଲିଫ୍‌କେ ବାସ୍ତେ ଆପ୍‌ଲୋଗୋଁକୋ ସରକାର ତରଫ୍‌ସେ ଅଦାଲଦ୍ ଧନ୍ୟବାଦ୍ ଦେତେହେଁ ।'' ଏହା ଶୁଣି ଆମେ ଦୁହେଁ କୃତକୃତ୍ୟ ହୋଇ ଆସନ ତ୍ୟାଗ କରି ସାହେବଙ୍କୁ ସଲାମ କରିକରିକା ପଛଘୁଞ୍ଚା ଦେଇଦେଇକା ପଛ ପହଣ୍ଡି ବିଜେ କରି ମିସଲରୁ ଖସି ସେ ଯାତ୍ରାରୁ ରକ୍ଷା ପାଇଲୁଁ । ଏ ସିନା ଗଲା ମିସଲର ତୋଡ଼ । ଆମେ ଆମନ୍ତ୍ରଣରେ ଆସିଥିଲେଇଁ, ବିଦାକି ଓ ବାଟଖରଚ ନ ପାଇଲେ ବା ଯାଉଛୁଁ କିମିତି ? ଏଥିପାଇଁ 'ଯୋଡ଼ି'ଙ୍କ ପାଇଁ ଯେଉଁ 'ଖାସ କାମ୍ରୁଡ଼ା' ଅଛି, ସେଥିରେ ଯେଉଁ ଦଛରା ଚଉକିଖଣ୍ଡମାନ ପଡ଼ିଛି, ସେଥିରେ ମିସଲ ଭାଙ୍ଗିବା ପର୍ଯ୍ୟନ୍ତ ଅର୍ଥାତ୍ ସାହେବ କଚେରି ଛାଡ଼ି ଯିବା ପର୍ଯ୍ୟନ୍ତ ଅପେକ୍ଷା କରି ବସିଲୁଁ ସାହେବ କଚେରି ଭାଙ୍ଗିଲେ ଆମେ ପେସ୍କାରଙ୍କୁ ଦେଖା କରି ତାଙ୍କ ସଙ୍ଗେ ଦୁଃଖସୁଖ ହୋଇ ଆମ ବିଦାକି ବାଟ ଖରଚ ନେଣ ଦେଣ କରିଯିବୁଁ । ମନେ ମନେ ମିଠେଇ ଖାଇ ବସିଲୁଁ ଯେ, ଆସାମୀକୁ ସାଙ୍ଗେ ସାଙ୍ଗେ ମୁକୁଳେଇ କରି ନେଇ ଆମେ ଘରକୁ ଫେରିବୁଁ ଓ ଆସାମୀର ବନ୍ଧୁବାନ୍ଧବଙ୍କଠାରୁ କେତେ ମୁଣ୍ଡିଆ ପାଇବୁଁ । କିନ୍ତୁ ହାଇରେ ବିଧାତା । ଘଡ଼ିକ ବାଦ ଫୁଲର ପଡ଼ିଗଲା ଯେ, ଜଜସାହେବ ଆସାମୀକୁ ସଜା ଦେଲେ ଓ ତାହାର ଦଣ୍ଡକ ବାଦ ଦେଖିଲୁଁ ଯେ, ଆସାମୀକୁ କୃଷ୍ଣବେଶୀ ଓ ରକ୍ତମସ୍ତକୀ ଦୂତମାନେ ପହଣ୍ଡି କରେଇ କରେଇ ଗାରଦ ଆଡ଼କୁ ନେଇଗଲେ । ଆସାମୀ ଆମର କଡ଼ପଟ ଦେଇ ଗଲାବେଳେ ତାର କାହା ସଙ୍ଗେ ଆମର କାହାର ଗୋଟାଏ କଣ ରିସ୍ତା କି ଆଇନ-ବହିର୍ଭୂତ ସମ୍ପର୍କ ଲଗାଇ ପାଟିକରି କହି ଯାଉଥାଏ, ଆମେ ଠିକ୍ ତାହା କାନରେ ପକଡ଼ି ପାରିଲୁଁ ନାହିଁ । ବିଚାରିଲୁଁ ଯେ, ଆସାମୀ ତାହା ଘରଆଡ଼ଙ୍କ ସଙ୍ଗେ ଆମର ଧର୍ମଶଶୁରତ୍ୱ ଘୋଷଣା କରି ଯାଉଛି । କିନ୍ତୁ ଗାରଦ ଭାରପ୍ରାପ୍ତ ଦୂତମାନେ କହିଲେ ଯେ, ସମ୍ପର୍କ ଲାଗିବା କଥାଟା ସତ, କିନ୍ତୁ ସେଇଟା ଆସାମୀଙ୍କ ଘରଆଡ଼ର ଆଉ ଗୋଟାଏ କଣ ପୁରୁଷାନ୍ତର ନିକଟ ସମ୍ପର୍କ । ମନେ ମନେ ବିଚାରିଲୁଁ, ପିଆଦାଙ୍କର ଶ୍ରବଣ ଶକ୍ତିରେ କିଛି ଦୋଷ ଅଛି ।

ଆସାମୀକୁ ଆମେ ଯୋଡ଼ିକ 'ଯୋଡ଼ି' ନିର୍ଦ୍ଦୋଷ କରି ଦେଇ ଆସିଲୁଁ । ଏପରିସ୍ଥଳରେ ସାହେବ ଖଡ଼େଦମ୍ ତାକୁ ଦୁଇ ବରଷ ବେଖରଚା ସରକାରୀ ହୋଟେଲକୁ ପଠାଇ ଦେଲେ ! ଏଇଟା ଆମ ମର୍ଯ୍ୟାଦାର ବାଧା ହେଲା, ଆମ ମନଟା ଟିକିଏ ମରିଗଲା ।

ଯାହା ହେଉ, ଜଜସାହେବ ମିସଲ ଭାଙ୍ଗି କୋଠିକୁ ଗଲା ପରେ ଆମେ ବିଦାକି ଲାଳସାରେ ପେସ୍କାରଙ୍କ ନିକଟକୁ ଗଲୁଁ । ତାଙ୍କଠାରୁ ଯାହା ଶୁଣିଲୁଁ, ସେଥିରେ ବିଦାକି ନେବୁ କଣ ? ଆମର ପିଳେହି ପାଣି ହୋଇଗଲା ! ପେସ୍କାର କହିଲେ ଯେ, ଆସାମୀ ପ୍ରକୃତରେ ଦୋଷୀ ଥିବାର ଯଥେଷ୍ଟ ପ୍ରମାଣ ଥିବାରୁ ସେ ଦୁଇ ବର୍ଷ ସରକାରଙ୍କର ଖୋରାକ-ପୋଷାକ ନିଆ କୋଠିଆ କାମ କରୁ ବୋଲି ସାହେବ ରାୟ ଦେଲେ ଓ ଅସେସରବାବୁ ବୁଢ଼ା ତହସିଲଦାର ବିରୋଧରେ ଯେଉଁ କଥାମାନ କହିଲେ, ତାହା କେଉଁ ପ୍ରମାଣରୁ ଓ କେଉଁ ନଥିରୁ ଅସେସର ମଉସୁଫ ପାଇଲେ, ସାହେବ ନିଜେ ବହୁତ ଦରଣ୍ଡା ଦରଣ୍ଡି କରି ତହିଁର କିଛି ସୁରାକ୍ ପାଇଲେ ନାହିଁ । ନଥିରୁ ଦେଖାଯାଏ ଯେ, ତହସିଲଦାର ଉଚିତରୂପେ ତଦନ୍ତ କରି ଯାହା ଏ କ୍ଷେତ୍ରରେ କର୍ତ୍ତବ୍ୟ, ତାହା କରିଅଛନ୍ତି ଓ ତାଙ୍କର ତଦନ୍ତ ସନ୍ତୋଷଜନକ ଅଟେ । ବୁଢ଼ା ତହସିଲଦାର ବିଚାରର ଆଦୌ ଦୋଷ ନାହିଁ ।

ଏତକ ପେସ୍କାରଙ୍କଠାରୁ ଶୁଣି ଯେଉଁ ଜାଗାରେ ଦସ୍ତଖତ୍ କରିବାକୁ ପେସ୍କାର ବତାଇ ଦେଲେ, ସେଠାରେ ଗାରେ ସନ୍ତକ ମାରିଦେଇ, ପେସ୍କାର ଆମକୁ ଯାହା ଦେଲେ, ସେତକ ଅଗଣତିଆ ଅଣ୍ଟାରେ ଖୋଷି ଦେଇ ଆମେ ଯୋଡ଼ିକ 'ଯୋଡ଼ି' ନିଜ ନିଜ କାନମୁଣ୍ଡ ଆଉଁଶି ଆଉଁଶିକା ଘରକୁ ଫେରିଲୁଁ ! ଆମର ସହପଟ ଜଣକ ଟିକିଏ ଓଲମା ଆସିଆ । ମକଦମା ବିଚାରବେଳେ ତାଙ୍କର ଟିକିଏ ବେଶି ଢୁଳାଇବା ପ୍ରକୃତି ଚେଇଁ ଉଠିଥିଲା ଓ ସେ ଆମ ପାଖରେ ଯୋଡ଼ିରେ ବସିଥିବାରୁ ବିଶେଷ ଚେଷ୍ଟା କରି ହାକିମଙ୍କ ଦୃଷ୍ଟି ଆକର୍ଷଣ ନ କରି ଆମେ ତାଙ୍କୁ ଚେତା କରାଇବାରେ ନିଯୁକ୍ତ ଥିଲୁଁ । ଘରକୁ ଫେରିଲା ବେଳେ ସେ ଆମକୁ ପଚାରିଲେ, ''ସାହେବ ଆମକୁ କଣ କହିଲେ ?'' ଆମେ ସେଥିର ଉତ୍ତରରେ ତାଙ୍କୁ ବୁଝାଇ ଦେଲୁଁ ଯେ, ଆମେ ଦୁହେଁ ଆମର ପେଟଚିନ୍ତା ଛାଡ଼ି ସରକାରଙ୍କ ଖରଚାରେ ଓ ସରକାରଙ୍କର ଖୋରାକ ପୋଷାକରେ ସହରକୁ ଆସି ଏଠାରେ ସାହେବଙ୍କ ଆଗରେ ଏ ଯେଉଁ ଦୁଇ ଦିନ ଅଣ୍ଟା ପିଠି ଲାଠି କଲୁଁ, ଏଥିପାଇଁ ସାହେବ ଆମ ଦୁହିଁଙ୍କୁ ସାବାସୀ ଦେଉଥିଲେ ।

ବନ୍ଧୁଙ୍କର ଏହି ପ୍ରଥମ 'ଯୋଡ଼ି-ବୈଠକ' ବନ୍ଧୁ ଏ କଥା ଶୁଣି କହିଲେ, ''ନଇଲେ କି ଲୋକେ କହନ୍ତେ- 'ଅମୁକ ଲୋକ ଯୋଡ଼ିରେ ବସୁଛନ୍ତି, ସେ ଜଣେ ମୁଖିଆ ଭିତରେ ସୁମାରି ?' ଏହି ସୁଖ ପାଇବାପାଇଁ ହାମେ କେତେ ଦେବତା ବୈଷ୍ଣବଙ୍କଠାରେ ଗୟସ ଚଢ଼ାଇ 'ଯୋଡ଼ି'ରେ ପଶିଛୁଁ ଓ ଆଜି ହାମର ନସିବ ଏତେ ତେଜ ଯେ, ଆପଣଙ୍କ ସରିକି ଖାନ୍‌ଦାନ୍ ଆଦମିଙ୍କ ସାଥିରେ ଏକା ଇଜଲାସରେ ହାକିମଙ୍କ ମିସଲରେ ଆସିଲୁଁ !''

ବନ୍ଧୁ ଆମର ଭୋଜପୁରିଆ ମହାଜନ, ବୟସ କଳିର ଧାର୍ଯ୍ୟ ତାରିଖକୁ ବର୍ଷକେତେ ହେବ ଟପି ସାରିଲାଣି । ବେଳେ ବେଳେ ଆମ ଘରକୁ ଗଲାବେଳେ ତାଙ୍କପାଇଁ ଆମ ଘରେ ଖରଡ଼ ମିଳେ ନାହିଁ । ବୋଧହୁଏ ଆଜି ଆମ ସଙ୍ଗେ ଏକ ଖୁରୁସିରେ ବସିବାରୁ

ମହାଜନେ ଭଗତି-ଗଦ୍‌ଗଦ ହୋଇ ଯାଇଅଛନ୍ତି । ନଇଲେ କଣ ପାଠ ବୃଥାରେ ଡାକୁଥାନ୍ତା- ''ସର୍ବେ ହୋଇବେ ଏକାକାର- ନ ଥିବ ବେଦର ବିଚାର ।''

(ନୋଟ୍- ପାଠକ ଭାଇମାନେ ଓ ପାଠିକା ନାନୀମାନେ ! ନନା ଆମର ପ୍ରହରେ ରାଜତ୍ୱମୟ ହାକିମି କରି ଯେଉଁ ସୁଖ ଚାଖିଅଛନ୍ତି, ତାଙ୍କର କୁଳଚନ୍ଦ୍ର ଅଷ୍ଟପ୍ରହରୀ ହାକିମ ହୋଇ ଦିନରାତି ସେ ସୁଖ ଭୋଗ କରିବେ ବୋଲି ମୁଁ ହାକିମ ହେବା ନିମନ୍ତେ ତାଙ୍କର ବିଶେଷ ଜିଗର ଥିଲା, କିନ୍ତୁ ପଢ଼ା ଶେଷ ହେଲାବେଳକୁ ଆମର ଗୋଟିଏ ଖଣ୍ଡେ ସଂସାର ଗଢ଼ା କାମ ସୁରୁ ହୋଇସାରିଥିଲା । ଅଗତ୍ୟା ବାପା ଥାଉଁ ଥାଉଁ ଆମ ପୁରୁଷରେ ସେ ନିଜେ ତାଙ୍କ ବଂଶରେ ହାକିମ ସୁଖ ଦେଖିବାର ଆଶା ତ୍ୟାଗ କରିଥିଲେ ଓ ଆମ ଉଆରସ-ଚନ୍ଦ୍ରଙ୍କର ପ୍ରାଥମିକ ଶିକ୍ଷା ଶେଷ ନ ହେଉଣୁ ନନା ଚମ୍ପଟ୍ । ଅଗତ୍ୟା ଆମ ବଂଶର ଏ ଆଶାଟା ଆପାତତଃ ଦିନାକେତେ ପାଇଁ ଫଳବତୀ ନ ହୋଇ ବନ୍ଧ୍ୟା ଭାବରେ ରହିଲା । କାକ-ବନ୍ଧ୍ୟା ନ ହେଲେ ରକ୍ଷା । ଆଜି ଥାଉ ।)

ଉତ୍କଳ ସାହିତ୍ୟ/୧୯ଶ ଭାଗ/୯ମ ସଂଖ୍ୟା/୧୩୨୩ ସାଲ ।

## ।। ଏଗାର ।।

ଆମ ଅନ୍ତେ ବସ୍ତାନିଟା କୋରଖ ହେଲା ବେଳକୁ ଆମ ପିଲାଏ ଦେଖିବେ ଯେ ''ଠିକ୍ ଠିକ୍ କଥା ନନା ଯାଇଛନ୍ତି ଗାଇ, ତାହା ମଧ ଆପଣାକୁ ବଞ୍ଚାଇ ବଞ୍ଚାଇ ।'' କଥାଟି ନିହାତି ମିଛ ନୁହେଁ । ମନୁଷ୍ୟର ପ୍ରକୃତି ଏହିତା ।''ରାଜନ୍ ସର୍ଷପମାତ୍ରାଣି ପରିଚ୍ଛିଦ୍ରାଣି ପଶ୍ୟସି- ଆତ୍ମନୋ ବିଲ୍ୱରୂପାଣି ପଶ୍ୟନ୍ନପି ନ ପଶ୍ୟସି ।'' ଏହା ଆଜିର ପାଠ ନୁହେଁ, ଏ ଯୁଗର ପାଠ ନୁହେଁ, ଏ ଶତାବ୍ଦୀର ପାଠ ନୁହେଁ, ଆମରି ଏହି ପୁରୁଷର ପାଠ ନୁହେଁ । ଏହା ମନୁଷ୍ୟର ରକ୍ତମାଂସ ଶରୀରର ପ୍ରକୃତିଗତ- ମନୁଷ୍ୟର ଅସ୍ଥିମଜ୍ଜାଗତ । ଈଶ୍ୱର ମନୁଷ୍ୟକୁ ସେହିପରି କରି ଗଢ଼ିଅଛନ୍ତି । ମନୁଷ୍ୟ ଆଖିଟା ସବୁବେଳେ ବାହାର ଆଡ଼ର ଚିଜଯାକ ଦେଖେ । ଆଖିରେ ଆଗର ଓ ଦୁଇ କଡ଼ପଟର ବସ୍ତୁ ଦେଖାଯାଏ । ପଛଆଡ଼ର ତଦାରଖ ନଦାରଦ । ସଂସାରରେ ଦେଖୁଥାଇଁ ଯେ ସେହି କଥା ଅନ୍ୟ ଜଣେ କଲାବେଳକୁ ଧରପଗଡ଼ ହୁଏ, କିନ୍ତୁ ସେହି କଥା ନିଜେ କଲାବେଳକୁ ତାହା ଦୃଷ୍ଟିରେ ପଡ଼େ ନାହିଁ । ମନେ କରି ଦେଖନ୍ତୁ ଭଲା, ମନୁଷ୍ୟର ଅନ୍ତଃଶରୀରର କେତୋଟି ନର୍ଦ୍ଦମାର ମାଲମସଲା ମୁଖ୍ୟ ଓ ଗୌଣ ଭାବରେ ମହଜୁଦ । ଦେଖୁଥାଇଁ ଯେ, ରାଜଭୋଗ୍ୟ ଉପାଦେୟ ଦୁର୍ମୂଲ୍ୟ ଓରିଆର ପରିଣାମ ଯେଉଁ ଗହୀର ବିଲର ସାରରେ ଲାଗେ, ରାମା କଣ୍ଡରା ମଧ ସେହି ଉପାଦାନ ତିଆରି କରିବାର ଅନ୍ୟ ଗୋଟିଏ କଳ । ପ୍ରଭେଦଟା ଏତିକି ଯେ, କାହାରି କାହାରି ଆଖିଟା ମାନ ହିଂସାଉଡ଼ା, କାହାରି କାହାରି ଆଖି କବାଟ କିଳା । ମନୁଷ୍ୟର ପ୍ରକୃତିଗତ କେତେଗୁଡ଼ାଏ କାର୍ଯ୍ୟ ଅଛି, ତାହା ସମସ୍ତେ ଜାଣୁଛନ୍ତି,

ବୁଝୁଛନ୍ତି, ଦେଖୁଛନ୍ତି, ଅଙ୍ଗେ ନିଭାଉଛନ୍ତି, ତଥାପି ଆପଣା ବେଳକୁ ମନୁଷ୍ୟ ପ୍ରକୃତିର ସେ ଦୁର୍ବଳତାତକ ପାସୋରି ପକାନ୍ତି ଓ ପରବେଳକୁ 'କାଣୀ ବିରାଡ଼ି କୁଢ଼ୀ ଅସରପା' ଅଭିନୟ କରନ୍ତି ! ଦେଖନ୍ତୁ, ଆମ୍ଭେମାନେ ପରକୁ ଉଲୁଗୁଣା ଦେଲାବେଳେ ଯେଉଁ ବିଚାରପତିଙ୍କ ପାଗପଟୁକା ବାନ୍ଧିଥାଉଁ, ଆପଣା କାମବେଳକୁ ଯେବେ ଅନ୍ୟକୁ ତିଆରିଲା ବେଳକୁ ବା ଉଲୁଗୁଣା ଦେଲାବେଳକୁ ସେହି ପାଗରୁ ଖଣ୍ଡେ ଚିରା ଧଡ଼ି ମୁଣ୍ଡରେ ବାନ୍ଧୁଥାନ୍ତୁ, ତାହାହେଲେ ସଂସାରରୁ ପନ୍ଦର 'ପଣ ଉଣେଇଶି ଗଣ୍ଡା ଅସନ୍ତୋଷ, ମନୋମାଳିନ୍ୟ, ବକବଜାରି, ଆବରାପଣିଆ, ମିଞ୍ଜାସବିଗଡ଼ା, ଅଶାନ୍ତି, ଧକଚକି, ଆମ୍ବୁଲ ଚୁଚୁମା, ତେଲଚିକିଟା, ଢାଙ୍ଗୁରମ୍ପା, ମୁହଁନିସୁଡ଼ା, ଘିମିରିମରା, ଟେକାଫୋପଡ଼ା, ଅଭିଶାପ, ସାତପୁରୁଷ ଉଝୁଳା, କଳାକନା ପୋଛା, ନ୍ୟାୟନିଶାପ, ଏକତରଫା ତଣ୍ଟିକଟା, ପଛବୁହା ପେଞ୍ଚ, ହଂସାବୁଡ଼ା ଓ ହେମତଉଡ଼ା ମାକଡ଼ଚିତ କମ୍‌ତି ହୋଇଯାନ୍ତା । ଆମେ ବେଳେବେଳେ ମନେ ମନେ ଉପେନ୍ଦ୍ର ଭଞ୍ଜଙ୍କର ''ଯଥା ଦୁଷ୍ଟ ଲୋକ ବୃଦ୍ଧ ହେଲେ କହେ ବାଳକେ ତିଆରି ବାଣୀ'' ପଦକ ଆଉଡ଼ାଉଁ । ଆମର ନିଜେ 'ବୃଦ୍ଧତ୍ୱଂ ଜରସା ବିନା' ହୋଇଥିଲା । ସେକାଳ ପଖାଳ ଗଲାଣି । ଆମେ ଷୋଳପଣରେ ଯେଉଁ କଥା ବଳବୟସ ଖସିଲା ପରେ କରିଛୁଁ, ଆମ ପିଲାଏ ଯେବେ ଯୁଆନ ଅବସ୍ଥାରେ ତହିଁରୁ କାଣିଚାଏ କରିବାର ଆମ ହାବୁଡ଼ରେ ପଡ଼ିଯାଏ, ତେବେ ଆମ ପିଲାଏ ଏକବାରିକ ନରକ ଆଡ଼କୁ ଆମରି ହାତରେ ଘୋଷରାଟାମାନ ପାଆନ୍ତି । ଆମର ଯେଉଁ କଥା, ଆମ ପିଲାଙ୍କର ମଧ ସେହି କଥା- ଏଗୁଡ଼ାକ ପ୍ରାଚ୍ୟ, ପାଶ୍ଚାତ୍ୟ, ଉଦୀଚ୍ୟ ବା ଦାକ୍ଷିଣାତ୍ୟ କୌଣସି ଶିକ୍ଷା-ସଭ୍ୟତା ଦ୍ୱାରା କମି ନାହିଁ ବା କମିବ ନାହିଁ, ଅଥବା କୌଣସି ଅଶିକ୍ଷା ବର୍ବରତା ଦ୍ୱାରା ବଢ଼ିବ ନାହିଁ । କେବଳ ଶିକ୍ଷାଦ୍ୱାରା କାଇଦା କଟକଣା (ଯାହାକୁ ସାହେବମାନେ କହନ୍ତି ଏଟିକଟ) ବଢ଼େ । ମନ ଭିତରେ ସବୁ ବିଚାର, ପେଟ ଭିତରେ ମଇଳା ଗୋଟଳା ଜମା ରଖ, ଦିହର କନ୍ଦିବିକନ୍ଦି କନ୍ଦା, କୁଣ୍ଡିଆଣ, ପୂଯ ରକ୍ତ ଲେସି ହୋଇଥାଉ, ପଛଆଡୁଆ ଓ କରପଟିଆ ଟୋପ ଖୋଳି ମହାଜୀବଙ୍କୁ ସେଥିରେ ପକାଅ- କିନ୍ତୁ ବାହାରେ 'ଏଟିକଟ' ଦ୍ୱାରା, ସୌଜନ୍ୟ ମାର୍କା ଦ୍ୱାରା ସବୁ ଘୋଡ଼ାଇ ରଖ । ଏହି କଥାଟା ଆଜିକାଲିର ଶିକ୍ଷାରେ ବଢ଼ିଲା ପରି ଜଣା ପଡୁଅଛି । ତେବେ ଆମ ମରହଟିଆଙ୍କର ଯେ ଏହା ନ ଥିଲା ଓ ଆମରି କୁଳକ୍ଷୟ ବେଳକୁ ଆମରି ଘରେ ଘୋଡ଼ାମୁହାଁ ପୁଅଯାକ ଜନମ ହୋଇଅଛନ୍ତି, ଏହା ନୁହେଁ । ଆମର ପଣକେ ଥିଲା, ଆମ କୁଳଚନ୍ଦ୍ରମାନେ ତାହା କିଛି ଚକ୍ରବୃଦ୍ଧିରେ କାରସାଦି କରି ଅଛନ୍ତି । ଆମ ଅମଳରେ 'ଭଲଲୋକ' 'ମନ୍ଦଲୋକ' ଯେଡ଼େ ଜଲ୍‌ଦି ଚିହ୍ନା ପଡ଼ି ଯାଉଥିଲେ, ଆଜିକାଲି ଅମଳରେ ଏହା ତେଡ଼େ ସହଜ ନୁହେଁ- କାରଣ ସଭ୍ୟ ସମାଜରେ ଛାପ ଚିକଣ 'ହରିମନ୍ଦିରା'ର କରାମତି ବେଶି ଓ ପୋଷାକର ପରାକ୍ରମ ବେଶି । ଯାହାର ବେଶି ବିଜ୍ଞାପନ ପ୍ରଚାର, ତାହାର ମହାପୁରୁଷତ୍ୱ ତେତିକି ବେଶି ଜାହିର ହୁଏ । ସେଥିପାଇଁ ପୁରୁଖାମାନେ କହି ଯାଇଅଛନ୍ତି, 'ତିନି ତୁଣ୍ଡରେ ଢେଳି କୁକୁର' ।

ଜଗନ୍ନାଥଙ୍କର ଯେଉଁ ପଣ୍ଡାର ଯେତିକି ବେଶି ଗୁମାସ୍ତା, ଯାତ୍ରୀ ମହଲରେ ସେ ପଣ୍ଡାର ସେତିକି ବେଶି ନାମ ଜାରି । କଚେରିରେ ଯେଉଁ ଓକିଲର ଯେତିକି ବେଶି 'ମୋହରିର', ମକ୍କେଲ ମହଲରେ ସେହି ଓକିଲଙ୍କର କରଣି ସେତିକି ବେଶି କାଟ୍ଟୁ । ଆମ କୁଳଚନ୍ଦ୍ର କରଜଦାମ କରି ସହରରେ କୋଠାବାଡ଼ି, ଘୋଡ଼ାଗାଡ଼ି, ନିଶଦାଢ଼ି, ଠେଙ୍ଗାବାଡ଼ି, ଖାନସମା-ହାଡ଼ି କଲେ ଓ ରଖିଲେ, ଆମେ ପଚାରିଲୁଁ, ''କି ରେ ବାପା ! ଏ କଣ ରେ ? 'ଋଣଂ କୃତ୍ୱା ଘୃତଂ ପିବେତ୍' କିଆଁ ରେ ?'' ଉତ୍ତର କଲେ, ''ଏଗୁଡ଼ାକ ବ୍ୟବସାୟର କରାମତି ଜାହେରି ବିଜ୍ଞାପନ ମାତ୍ର ।'' ଆମେ ମଧ ମାଳିକାରେ ଦେଖିଲୁଁ ଯେ, ମହାପୁରୁଷଙ୍କ କରାମତି ଜାହିର ନିମନ୍ତେ ଶିଷ୍ୟ, ବାନା, ମଉଛବ, ଗଉରୀ ବେତ, ଜଟାଜୁଟ, ସନ୍ଧ୍ୟାବେଳିଆ ଖଞ୍ଜଣିମାଡ଼, ଦିପହରିଆ ଗଞ୍ଜେଇଦମ ଏସବୁ ଅତ୍ୟାବଶ୍ୟକ । ଫଳରେ ମଧ ଦେଖିଲୁ ଯେ, ବର୍ଷ କେତେଟାରେ କୁଳଚନ୍ଦ୍ର 'ମାଛ ତେଲରେ ମାଛ ଭଜା' ସମାଧାନ କରି ଅନ୍ଧାରୁଆ ବେଳେ ସଳିତା ତେଜିବାକୁ କିଛି ତୈଳ ସଞ୍ଚୟ କରିବାକୁ ମୁସ୍ତେଜ ହେଲେଣି । ଏଥିରୁ ଆମେ ମଧ ଦେଖିଲୁଁ ଯେ ''ବାସଃ ପ୍ରଧାନଂ ଖଳୁ ଯୋଗ୍ୟତାୟାଂ ।'' ଏଥିର ସାକ୍ଷାତ୍ ଫଳ ''ଧୋବଧାଉଳିଆ ଚୋରି କରନ୍ତି, ରଙ୍କୁଣୀ ଦେଖିଲେ ମାରିଗୋଡ଼ାନ୍ତି ।'' ଏ କଥାଟା ସମସ୍ତେ ଜାଣନ୍ତି ଓ ସେଥିପାଇଁ ଅଳ୍ପ ବହୁତ ସମସ୍ତେ ବାସ୍ନି ଧୋବ ପିନ୍ଧାପାଛୋଡ଼ା ସାହାଯ୍ୟରେ 'ଧୋବାବର' ହେବାକୁ ଉଦ୍ୟମ ଓ ଆକାଂକ୍ଷା କରନ୍ତି । କିନ୍ତୁ ଯେବେ ଅନ୍ୟ ଲୋକ ସେହି ଚେଷ୍ଟା କରେ, ତାହାହେଲେ ତାକୁ ସମସ୍ତେ କିଲିବିଲି କରିପକାନ୍ତି । ଏହିପରି କେତେଗୁଡ଼ିଏ ଗୁଣ ବୋଲ, ଦୁର୍ଗୁଣ ବୋଲ, ମନୁଷ୍ୟ-ପ୍ରକୃତିର ରହସ୍ୟ ଓ ସମସ୍ୟା ଅଟେ । ସେଗୁଡ଼ିକ ସମସ୍ତେ ଅଳ୍ପ ବହୁତ ଅଙ୍ଗେ ନିଭାନ୍ତି । କିନ୍ତୁ ଅନ୍ୟ ଲୋକ ସେ କଥା କଲାବେଳକୁ ତାକୁ ରାମ୍ପୁଡ଼ି କାମ୍ପୁଡ଼ି ରକ୍ତବୁହା କରନ୍ତି । କହନ୍ତୁ ଏଗୁଡ଼ାକ ଅମନୁଷ୍ୟତା । କିରେ ! ଏଗୁଡ଼ାକ ଅମନୁଷ୍ୟତା ନୁହେଁ, ମନୁଷ୍ୟପଣିଆ !

ଏ 'ମଣିଷପଣିଆ' ଆମ ମରହଟିଆଙ୍କର ବେଶି କି ଆଧୁନିକ ଆଦବକାଏଦାଗ୍ରସ୍ତ ଯୁବକ ଚନ୍ଦ୍ରମାଙ୍କର ବେଶି, ପୁଂଲିଙ୍ଗରେ ବେଶି କି ସ୍ତ୍ରୀ ଲିଙ୍ଗରେ ବେଶି, ଧୋବଧାଉଳିଆଙ୍କର ବେଶି କି ରଙ୍କର ବେଶି, ଝିଅଙ୍କର ବେଶି କି ପୁଅଙ୍କର ବେଶି, ଇସକୁଲିଆଙ୍କର ବେଶି କି ଚାଟଶାଳିଆଙ୍କର ବେଶି, ଅଂରେଜୀ ପଢ଼ାବାଲାଙ୍କର ବେଶି କି ଓଡ଼ିଶୀ ନବଜବାଲାଙ୍କର ବେଶି, ହାଟୁଆଙ୍କର ବେଶି କି କବାଟ କଣିଆଙ୍କର ବେଶି, ଚଇତନବୁ ବୁକିଆଙ୍କର କି ସଭାବାଳୁଆଙ୍କର, ସତିଆଙ୍କର କି ମିଛୁଆଙ୍କର, ଉପାଧିଧାରୀଙ୍କର କି ଅନାମଙ୍କର, ଅଦିଆଙ୍କର କି ବିନ୍ଧଣୀଙ୍କର ବେଶି, ଏସବୁ କିସମତ ଚିହ୍ନଟ ସିଭିଲିକୋର୍ଟ ବଣ୍ଟରା କରି ଖାତା ପୃଥକ୍ କରି ଏ ବସ୍ତାନିରେ ଟିପି ରଖିବା ନିମନ୍ତେ ଆମ ମନରେ ସଂକଳ୍ପ ରହିଲା ।

ଉତ୍କଳ ସାହିତ୍ୟ/ ୧୯ଶ ଭାଗ/୧୦ମ ସଂଖ୍ୟା/୧୩୨୩ ସାଲ ।

## ।। ବାର ।।

ଭଗବାନ୍‌ଙ୍କର ଗୋଟିଏ ନାମ 'ଅଘଟନଘଟନାବିଧାୟକ' । ଫଳତଃ ସଂସାରରେ ଦେଖାଯାଏ ଯେ, ଯେଉଁ କଥା ଅସାମ୍ଭାବ୍ୟ, ଯେଉଁ କଥା ଘଟିବ ବୋଲି କେହି କଳ୍ପନାର ତ୍ରିସୀମାକୁ ଆଣି ନ ଥାଏ, ପୃଥିବୀରେ ସେହିସବୁ ଘଟନା ଘଟିଥାଏ । ପିଲାମାନେ ନୂଆ ନୂଆ ଶୋଧ୍, ପଣିକିଆ, କଡ଼ାଗଣ୍ଡା, ହରଗୁଣ, ଫେଡ଼ାମିଶା ଶିଖିଲା ବେଳେ ଭୁଲ ସଂଶୋଧନ କରିବା ପାଇଁ କେତେ ଖଡ଼ି ଘଷି ହୋଇଯାଏ, କେତେ ଥର ଓଡ଼ାଙ୍କ ମେଲାଙ୍କ ଭୁଲ ହୋଇଯାଏ । ପିଲାମାନେ ସେଥିଲାଗି ଅବଧାନଙ୍କଠାରୁ କେତେ ମଡୁଆ-ଶାଙ୍କୋଳି ପାଆନ୍ତି । ସେହି ପିଲାମାନେ ସଂସାରରେ ପଶି ଘର ଦୁଆର କଲାବେଳକୁ ଦେଖନ୍ତି ଯେ, ଅନେକ ଜାଗାରେ ତାଙ୍କର ପୋଥିପାଠ ସବୁ କାଟୁ କରେ ନାହିଁ । ପିଲାଦିନେ ଯାହାକୁ ଭୁଲ ବୋଲି ଅବଧାନେ ପଢ଼ାଇଥିଲେ ଓ ଆମେ ଭୁଲ କଲାରୁ ଆମ ଆଣ୍ଠୁ ଗଣ୍ଠି ଛେଚିଥିଲେ, ଏବେ ଏ ସଂସାରରେ ପଶି ଉଣ୍ଡିଲାବେଳକୁ ଏ ସଂସାରଯାକ ଭୁଲ, ସଂସାରଯାକ ଅଧିକାଂଶ 'ନିପାତନ' । ଏଥିରୁ ବେଳେ ବେଳେ ମନେହୁଏ ଯେ, ଏ ସଂସାରକୁ ଯେ ସୃଷ୍ଟି କଲେ, ବୋଧହୁଏ ମାଟିବଂଶ ଅବଧାନଙ୍କ ଯାଉଁଳି ବେତ ତାଙ୍କ ପିଠି ଚମଡ଼ାକୁ ଛୁଇଁ ନାହିଁ । ଖାଲି ହିସାବ କିତାବ ନୁହେଁ ବ୍ୟାକରଣଗତ ଭୁଲ, ଦୃଷ୍ଟିଗତ ଭୁଲ, ବର୍ଣ୍ଣଗତ, ଆକାରଗତ ଏହିପରି ନାନା ପ୍ରକାର ଭୁଲ ଦେଖି ବେଳେ ବେଳେ ମନୁଷ୍ୟର ମନେହୁଏ ଯେ ଏ ସଂସାରର ସୃଷ୍ଟିକର୍ତ୍ତା ବାୟା । ଏହି ସବୁ ଭୁଲ ସଂଶୋଧନ କରିବାର ତାକତ ଛାର ମନୁଷ୍ୟର ନାହିଁ । ତେବେ ମନବୋଧ କରିବା ନିମନ୍ତେ, ପରକୁ ବୁଝାଇବା ନିମନ୍ତେ ନାନା ମୁନି ନାନା ପ୍ରକାର ସ୍ମୃତି କରି ଯାଇଅଛନ୍ତି । ଶେଷରେ ସମସ୍ତେ ଉଣ୍ଡାଳି ଉଣ୍ଡାଳି କିଏ କୋଶେ, କିଏ ଦି'କୋଶ, କିଏ ମାଇଲେ, କିଏ ଅଧମାଇଲେ ଯାଇ ଥକି ପଡ଼ିଅଛନ୍ତି, ଆଉ ତେଣିକି ବାଟ ଜାଲୁଜାଲୁଆ ଦେଖାଯିବାରୁ ଏବଂ ଆହୁରି ଆଗକୁ କୁହୁଡ଼ି ଓ ଅନ୍ଧାର ଘୋଟିଥିବାରୁ ଲେଖିଦେଲେ, ତେଣିକି 'ଅଦୃଷ୍ଟ'- ଅର୍ଥାତ୍ ଦୃଷ୍ଟିର ଅଗୋଚର, ହିସାବ କିତାବର ଅଗୋଚର, ମାଟିବଂଶ ଅବଧାନଙ୍କ ମଡୁଆ ଶାଙ୍କୁଳିର କରାମତିର ବାହାରେ, ଅଙ୍କଶାସ୍ତ୍ର, ବ୍ୟାକରଣ ଓ ବିଜ୍ଞାନର ଇଲାକାର ବାହାରେ । ମଣିଷ ଯେତିକି ବେଶି ଦେଖେ, ସେତିକି ବେଶି ଅନ୍ଧୋଟିଆ ହୋଇଯାଏ, ସେଥିପାଇଁ ମନୁଷ୍ୟର ବୟସ ବୃଦ୍ଧି ସଙ୍ଗେ ଦୈହିକ ଦୃଷ୍ଟି-ଶକ୍ତି କମିଯାଏ । ଚାଳିଶ ଟପିଲେ ଚାଳିଶା ଝାଙ୍କେ ।

ଆଧିଭୌତିକ ଘଟନାମାନ ଆଧ୍ୟାତ୍ମିକ ଘଟନାମାନଙ୍କର ପ୍ରତିବିମ୍ବ ମାତ୍ର । ମନୁଷ୍ୟ ଯେତେବେଳେ ଶୈଶବ ବାଲ୍ୟକାଳ ଅତିକ୍ରମ କରି ଯୌବନରେ ପଦାର୍ପଣ କରେ, ଅର୍ଥାତ୍ ଯେତେବେଳେ ମନୁଷ୍ୟ ଇସ୍କୁଲ ଛାଡ଼ି କଲେଜରେ ନାମ ଲେଖାଏ, ସେତେବେଳେ ଇସ୍କୁଲିଆ ପାଠଯାକ ମଜା ହୋଇଯାଏ, ପିଲାଦିନର ଶୋଧ୍, ଓଡ଼ାଙ୍କ, ମେଲାଙ୍କ, ହିସାବକିତାବ ଇତ୍ୟାଦି ବେଶ୍ ଘଷାମଜା ହୋଇ ମନୁଷ୍ୟ ସଂସାରରେ ପ୍ରବେଶ କରିବା

ଲାଗି ପ୍ରବେଶିକା ପରୀକ୍ଷାରେ ପରୀକ୍ଷାର୍ଥୀ ହୁଏ ଏବଂ ସେ ସାର୍ଟିଫିକେଟ ଖଣ୍ଡ ହାସଲ କରିବା ପରେ ଅର୍ଥାତ୍ ଆଖଡ଼ା ଘରର ତାଲିମ ଅବସ୍ଥା ଟପିବା ପରେ ଦାଣ୍ଡକୁ ବାହାରି ପଡ଼େ, ଅର୍ଥାତ୍ ପିଲାଦିନେ ଖେଦା ଧରି ଯେଉଁ 'କର୍ମକାଣ୍ଡ'କୁ ମୁଖସ୍ଥ କରିଥିଲା, ତାକୁ କାର୍ଯ୍ୟକ୍ଷେତ୍ରରେ ଲଗାଇ ଦି'ପଇସା ରୋଜଗାର କରି ପୁଅ ମାଇପଙ୍କୁ ପୋଷିବା ଲାଗି ବାହାରେ । ଲୋକେ କହନ୍ତି ଯେ 'ବିଭାଯାକେ ପାଠ', କିନ୍ତୁ ଆମ ନନା କହନ୍ତି ଯେ, ବିବାହଠାରୁ ମନୁଷ୍ୟର ପ୍ରକୃତ 'ସିଧିରସ୍ତୁ' ଆରମ୍ଭ ହୁଏ । ଆଗର ଶିକ୍ଷାଗୁଡ଼ାକ କେବଳ ପୋଥିପାଠ । ବର୍ତ୍ତମାନ ସରଜମିନ ତଦନ୍ତରେ ଓ ଅନୁଭବ ଦ୍ୱାରା ସଂସାରର ଘଟନାମାନ, ସଂସାରର ରୀତି ନୀତି, ସଂସାରର ସତ୍ୟମାନ ଶିକ୍ଷା କରିବାକୁ ପଡ଼େ । ଏହି ଶିକ୍ଷା ହେଲା ପ୍ରକୃତ ଶିକ୍ଷା । ଏ ଖଡ଼ି ଛୁଇଁଲା ବେଳକୁ କେତେ ଲୋକ ଛାନିଆ ହୋଇ ଛାଡ଼ି ପଳାନ୍ତି । ସେଥିରୁ ଯେ ବର୍ତ୍ତନ୍ତି, ସେ ଥୋଡ଼ା ବାଟ ଯାଇ ଗୋଡ଼ ହାତ ପ୍ରାସ ହେବା ଯାକେ, ଅଣ୍ଟା ପିଠି ଅବଶ ହେବା ଯାକେ କସରତ କରନ୍ତି, ଥୋକେ ଝୁଣ୍ଟିପଡ଼ି ଖଣ୍ଡିଆ ଓ ରକତବୁହା ହୁଅନ୍ତି, ଥୋକେ ଚିତ୍‌ପଟାଙ୍ଗ ହୋଇ ପଡ଼ି ବାଇଶ ପାହାଚରେ ଗଡ଼ଗଡ଼ାଇ ଫେର 'ପୁନର୍ମୂଷିକୋ ଭବ' ହୋଇଯାନ୍ତି । ମଞ୍ଜିଲମୁଣ୍ଡ ପହଞ୍ଚିଲା ବେଳକୁ ଦିଓଟି ଗୋଟିଙ୍କ ଚେହେରା, ବେଶ, ମନ ଓ ଶ୍ରୀ ଠିକଥାଏ । ଏହି ଜଣକେତେ ପ୍ରକୃତ ମନୁଷ୍ୟ ପଦବାଚ୍ୟ । ସେଦିନ କଥା ପଦୁ ପଦୁ ଜଣେ କହିଥିଲେ ଯେ ଏ ସଂସାରଟା ସାବକ ଚାଉଳିଆଗଞ୍ଜ ପଡ଼ିଆ । (କଟକ ପ୍ରବାସୀ ପାଠକମାନଙ୍କ ଉପକାର ନିମନ୍ତେ ଏଠାରେ ଚାଉଳିଆଗଞ୍ଜ ପଡ଼ିଆ କଥାଟା ବୁଝାଇଦେବା ଦରକାର । କଟକ ଷ୍ଟେସନର ଠିକ ପଶ୍ଚିମକୁ ଲାଗି ଚାଉଳିଆଗଞ୍ଜ ବିସ୍ତୃତ ପଡ଼ିଆ । ସେହିଠାରେ ଆଗେ କଟକର ଘୋଡ଼ାଦଉଡ଼ ବାଜି ହେଉଥିଲା ଓ କଟକର ଘୋଡାଯାକ ସେଠାରେ ପୂର୍ବେ 'ମଣ' କରାଯାଉଥିଲେ । ପଡ଼ିଆଟିର ପରିସର ବଡ଼ ଥିଲା, ଏବେ ତାହାର ଏକାଂଶରେ ରେଳ ଲାଇନ ଯିବାରୁ ପଡ଼ିଆର ପରିସର କମି ଯାଇଅଛି ଓ ବର୍ତ୍ତମାନ ଉକ୍ତ ଘୋଡ଼ାଦଉଡ଼ ପଡ଼ିଆରେ ଗଭର୍ଣ୍ଣମେଣ୍ଟ କଟକ କଲେଜ କୋଠା ଆଦି ତିଆରି କରିବାର ସଂକଳ୍ପ କରିଅଛନ୍ତି । ଦିନାକେତେ ବାଦ ଚତୁଷ୍ପଦ ଜୀବଙ୍କ କ୍ରୀଡ଼ା ଭୂମି ଓ ପରୀକ୍ଷା କ୍ଷେତ୍ର ଦ୍ୱିପଦଙ୍କ କ୍ରୀଡ଼ା ଭୂମି ଓ ପରୀକ୍ଷା କ୍ଷେତ୍ରରେ ପରିଣତ ହେବ ।) ଏହିଠାରେ ମନୁଷ୍ୟର ତାକତ ପରୀକ୍ଷା ହୁଏ ଓ ବାଜି ରଖାଯାଇ ସେହି ବାଜିକୁ କିଣିବା ସକାଶେ ଅନେକ ଘୋଡ଼ା ଓ ଘୋଡ଼ସବାର ତିଆରି ହୋଇ ଆସି ପହଞ୍ଚନ୍ତି । କିନ୍ତୁ ଶେଷ ମଞ୍ଜିଲ ମୁଣ୍ଡରେ ପହଞ୍ଚିଲା ବେଳକୁ ଗୋଟା ଦୁଇ ତିନି ତାଜା ଥାଆନ୍ତି । ତେବେ ସୁଦ୍ଧା ଯେ ବାଜି ଜିତନ୍ତି, ସେ ମଧ୍ୟ ଏ ଦଉଡ଼ା ଧାପଡ଼ାରେ ହାଲିଆ ହୋଇ ଯାଇଥାନ୍ତି । ଦିନେ ଆମ ବଡ଼ଦିନ ଛୁଟିରେ ଚାଉଳିଆଗଞ୍ଜ ପଡ଼ିଆରେ ଘୋଡ଼ାଦଉଡ଼ ଦେଖିବାକୁ ଯାଇଥିଲୁଁ । ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କରେ ବାଡ଼ ପୋତା, ପହଣି ଖୋଳା ହୋଇଅଛି । ଯେଉଁ ସ୍ଥାନରୁ ଘୋଡ଼ାମାନେ ଦଉଡ଼ ସୁରୁ କରିବେ, ସେଠାରେ ଘୋଡ଼ା ଓ ଘୋଡ଼ସବାରମାନେ ଛାପଚିକଣ ହୋଇ ଧାଡ଼ି ବାନ୍ଧି ଠିଆ ହୋଇଗଲେ ।

ଘୋଡ଼ାଙ୍କ ଭିତରେ ବିଲାତୀ, ଚୀନା, ବ୍ରହ୍ମା, କାଠିବାଡ଼, ତୁରକୀ ଏହିପରି ନାନା ଜାତିର, ନାନା ବର୍ଣ୍ଣର, ନାନା ଅବୟବର, ନାନା ପ୍ରକୃତିର, ନାନା ଦେଶର ଘୋଡ଼ା ଓ ନାନା ଅବୟବବିଶିଷ୍ଟ ଓ ପୋଷାକ ପିନ୍ଧା ଘୋଡ଼ସବାର ଘୋଡ଼ାଦଉଡ଼ ସୁରୁ ହେବାର ଇସାରାକୁ ଅପେକ୍ଷା କରି ଠିଆ ହୋଇଗଲେ । ଆମେ ସୁମାରି କରି ଦେଖିଲୁଁ ଯେ ସର୍ବସୁଦ୍ଧା ଘୋଡ଼ାଙ୍କ ସଂଖ୍ୟା ୨୩ ଟି । ଏହି ସମୟରେ ଦୌଡ଼ ସୁରୁ ହେବାର ଇସାରା ସ୍ୱରୂପ ୧ - ୨ - ୩ ସଙ୍ଗେ ସଙ୍ଗେ ବନ୍ଧୁକ ଫାଏର ଓ ଆଓଆଜ । ସେଥିରୁ ଦୌଡ଼ ସୁରୁ ହେଲା । ବିସ୍ତୃତ ପଡ଼ିଆରେ ଘୋଡ଼ାଦଉଡ଼ ହେବାର ସ୍ଥାନ ବାଡ଼ାବନ୍ଦି ହୋଇଅଛି ଓ ବାଡ଼ ବାହାରେ ଦେଖଣାହାରି ଠୁଳ ହୋଇ ସମସ୍ତେ ଏକ ଦୃଷ୍ଟିରେ ଘୋଡାଦଉଡ଼ ଆଡ଼କୁ ଅନାଇଅଛନ୍ତି ଓ ନିଜ ନିଜର ମତ ପ୍ରକାଶ କରୁଅଛନ୍ତି । କିଏ କହୁଛି, ଏ ପଞ୍ଚ କଲ୍ୟାଣଟି ବାଜି ଜିତିବ, କିଏ କହୁଛି, ଏ କସରା ଘୋଡ଼ାଟି ଜୟଲାଭ କରିବ, କିଏ କହୁଛି, ଏ ପୟଗୁଟି ବାଜି ମାରିନେବ । କିଏ କହୁଛି, ସବାର ଗୁଣରେ ଘୋଡ଼ା, କିଏ କହୁଛି - କ୍ଷେତ ଗୁଣରେ ଘୋଡ଼ା, କିଏ କହୁଛି - ମଣ ହେବା ଗୁଣରେ ଘୋଡ଼ା । ଏହିପରି ଆଲୋଚନା, ପ୍ରତିବାଦ ଅବିଶ୍ରାନ୍ତ ଚାଲିଅଛି । ଏଣେ ଘୋଡ଼ସବାରମାନେ ଘୋଡ଼ା ଛାଡ଼ିଅଛନ୍ତି । ପ୍ରଥମ ମାଇଲ ବାଟରେ ଗୋଟାକେତେ ଘୋଡ଼ା ପଛକୁ ପଡ଼ିଗଲେ, ଶାମବାବୁଙ୍କର ଗୋଟିଏ ପଞ୍ଚକଲ୍ୟାଣୀ ଘୋଡ଼ା ସମସ୍ତଙ୍କ ଆଗଭର ହୋଇ ପ୍ରଥମ ବାଡ଼ାଟାକୁ ପହିଲେ ଟପିଲା । ପ୍ରଥମ ବାଡ଼ ପର୍ଯ୍ୟନ୍ତ ନ ଯାଉଣୁ ୨ ଟି ଘୋଡ଼ା ଓ ଘୋଡ଼ସବାର ଚିତ୍‌ପଟାଙ୍ଗ ହୋଇ ଭୂଇଁରେ ପଡ଼ିଗଲେ । ଗୋଟିଏ ଘୋଡ଼ା ଅଧମାଇଲେ ବାଟ ଯାଇ ଅଡ଼ିଲା, ସବାର ଯେତେ କସରତ କଲେ, ଚାବୁକ ମାଇଲେ, ସେ ଆଉ ଆଗକୁ ପାହୁଣ୍ଡେ ଆଗେଇଲା ନାହିଁ । ଗୋଟିଏ ଘୋଡ଼ା ଚମକିପଡ଼ି ସବାରକୁ ଫୋପାଡ଼ି ଦେଇ ଘୋଡ଼ାଦଉଡ଼ର ସୀମାରେ ଥିବା ବାଡ଼ାକୁ ଟପି ଜନତା ମଧ୍ୟରେ ପଶିଗଲା ଏବଂ ଏହି ଗୋଳମାଳରେ କେତେ ଦେଖଣାହାରି ଦଳି ମକଚି ହୋଇ ପଡ଼ି ଉଠି ଆପଣା ଜୀବନକୁ ସମ୍ଭାଳିବାରେ ବ୍ୟସ୍ତ ହେଲେ । ଗୋଟିଏ ଘୋଡ଼ା ଥୋଡ଼ା ଦୂର ବାଟ ଆଗକୁ ଯାଇ ଫେର ପଛଘୁଞ୍ଚା ଦେଲା । ଦେଖିଲୁଁ ଯେ କସରା ଘୋଡ଼ାଟିଏ ପ୍ରଥମେ ଆସ୍ତେ ଆସ୍ତେ ଦୁଲୁକିରେ ଗଲା, ତା ପରେ ଦୁଲୁକିରେ ତେଜ କ୍ରମେ କ୍ରମେ ବଢୁଥାଏ । ପ୍ରଥମ ମାଇଲର ବାଡ଼ାକୁ ଶାମବାବୁଙ୍କ ଘୋଡ଼ା ଟପିଲା ବେଳକୁ ଏ କସରା ଘୋଡ଼ାଟି ଅଧପାଏ ବାଟ ପଛରେ ପଡ଼ିଛି । ବର୍ତ୍ତମାନ ସମସ୍ତଙ୍କ ନଜର ଶାମବାବୁଙ୍କ ଘୋଡ଼ା ଉପରେ । ଯେଉଁମାନେ ଶାମବାବୁଙ୍କ ଘୋଡ଼ା ଉପରେ ବାଜି ରଖିଥିଲେ, ସେମାନେ ଆନନ୍ଦରେ ମାତି ଗଲେଣି; କସରା ଘୋଡ଼ା ଉପରେ କାହାର ନଜର ନାହିଁ । ୮/୧୦ ଘୋଡ଼ା ପ୍ରଥମ ମାଇଲ ବାଡ଼ ଡେଇଁ ଚାଲିଗଲା ପରେ କସରା ଘୋଡ଼ାଟି ସେ ବାଡ଼ ଡେଇଁଲା । ଦ୍ୱିତୀୟ ମାଇଲରେ ମଧ୍ୟ ଦେଖାଗଲା ଯେ, ଶାମବାବୁଙ୍କ ପଞ୍ଚକଲ୍ୟାଣୀର ସମସ୍ତଙ୍କ ଆଗରେ ବେଦମ୍ ଦଉଡ଼ । ଦ୍ୱିତୀୟ ମାଇଲରେ

କସରା ଘୋଡ଼ାର ଦୁଲୁକି ଟିକିଏ ତୀବ୍ର ହେବାକୁ ଲାଗିଲା । ପ୍ରଥମ ମାଇଲରେ ସେ ଏକାଦଶ ସ୍ଥାନରେ ଥିଲା, ଦ୍ୱିତୀୟ ମାଇଲ ବେଳକୁ ସେ ପଞ୍ଚମରେ ହାଜର । ଏ ଦ୍ୱିତୀୟ ମାଇଲରେ ମଧ ୨ଟି ଘୋଡ଼ା ଥକିଗଲେ, ଗୋଟିଏ ଘୋଡ଼ାର ପାଦାନ-ରଜ୍ଜୁ ଛିଣ୍ଡିଯିବାରୁ ଘୋଡ଼ସବାର କଚଡ଼ାଟିଏ ପାଇଲେ । ଘୋଡ଼ାଟି ଠିଆ ହୋଇଗଲା । ଆଉ ଗୋଟିଏ ଘୋଡ଼ାର ଲଗାମପଟି ଛିଡ଼ିଯିବାରୁ ଘୋଡ଼ାଟି ସବାରଙ୍କୁ ଘେନି ସିଧାଏ ସିଧାଏ ପୂର୍ବାଭିମୁଖ ହେଲା । କିନ୍ତୁ କସରା ଘୋଡ଼ା ପ୍ରତି କାହାର ନଜର ପଡ଼ି ନ ଥାଏ । ତୃତୀୟ ମାଇଲ ବେଳକୁ ଦେଖାଗଲା ଯେ ଶାମବାବୁଙ୍କ ଘୋଡ଼ାର ପ୍ରଥମ ତେଜ, ପ୍ରଥମ ଛାଡ଼ତକ ଟିକିଏ କମିଲାଣି ଓ କସରା ଘୋଡ଼ାଟି ତାଙ୍କ ଘୋଡ଼ାର ଠିକ ପଛରେ । ସେତେବେଳେ କସରା ଘୋଡ଼ା ମଧ ଦୁଲିକି ଛାଡ଼ି ଛାଡ଼ତକରେ ଚାଲୁଛି । ଦେଖଣାହାରିଙ୍କ ନଜର କସରା ଉପରେ ପଡ଼ିଲାଣି । ତୃତୀୟ ମାଇଲରେ ଗୋଟିଏ ଖମା ଥିଲା, ସେ ଖମା ଡେଇଁଲା ବେଳକୁ ଦେଖାଗଲା ଯେ ବର୍ତ୍ତମାନ ଶାମବାବୁଙ୍କ ଘୋଡ଼ା ଓ କସରା ଘୋଡ଼ାର ତୀବ୍ର ପ୍ରତିଯୋଗିତା ଲାଗିଗଲା । ଏ ଦୁହେଁ ୧୦ ହାତ ଛଡ଼ାଛଡ଼ି । ଆଉ ଯେତେ ଘୋଡ଼ା ଥିଲେ, ତହିଁ ମଧରୁ କେବଳ ତିନିଗୋଟି ଘୋଡ଼ା ଏମାନଙ୍କ ପିଛା ଧରି ଚତୁର୍ଥ ମାଇଲରେ ଦଉଡୁଛନ୍ତି । ଦେଖାଗଲା ଯେ ପ୍ରଥମ ଆରମ୍ଭ ୨୩ ଘୋଡ଼ାରୁ ଶେଷ ମାଇଲରେ ୫ ଘୋଡ଼ା । ଦର୍ଶକମାନଙ୍କର ବାଜି ଏହି ୫ ଜଣଙ୍କ ଠାରେ କେନ୍ଦ୍ରୀଭୂତ ହେଲା । ଦେଖ ଦେଖ, କସରାଟି ଶାମବାବୁଙ୍କ ଘୋଡ଼ାକୁ ଟପିଗଲା । ଶାମବାବୁଙ୍କ ଘୋଡ଼ସବାର ଟିକିଏ ଲଇଁପଡ଼ି ଘୋଡ଼ା ବେକରେ ଫୁଟୁକିଟିଏ ମାରିଦେଲାରୁ ପଞ୍ଚୁକଲ୍ୟାଣୀ ଫେର ପଚାଶ କଦମରେ କସରାକୁ ଟପିଗଲା ଓ କସରା ଏବଂ ପଞ୍ଚୁକଲ୍ୟାଣୀ ଦୁହେଁ ପରିସମାନ ଚାଲିଲେ ପ୍ରାୟ ଶହେ କଦମ । ଏହି ସମୟରେ ବାଟରେ ଗୋଟାଏ ଖମା ପଡ଼ିଲା । ସେ ଖମା ଶେଷ ଖମା । ସେହି ଖମାର ଚଉଡ଼ା ବେଶି । ସେହି ଖମାକୁ ଏହି ଦୁଇ ଘୋଡ଼ା ଡେଇଁଲା ବେଳକୁ ଶାମବାବୁଙ୍କ ପଞ୍ଚୁକଲ୍ୟାଣୀ ସେହି ଖମା ମଝିରେ ସବାର ସହିତ ଧୂଳିସାତ୍ ହେଲେ । କସରା ସବାର ସହିତ ସେ ଖମାକୁ ଏକା କୁଦାକେ ପାର ହୋଇ ଆର ପାଖ ବାଡ଼ ଡେଇଁଲା ବେଳକୁ ଘୋଡ଼ାଦଉଡ଼ ପଡ଼ିଆରେ କସରା ଏକମାତ୍ର ଅଧିକାରୀ । ଶେଷ ବାଡ଼ଟି ଡେଇଁ ପଡ଼ି କସରାଟି ଲଥିକିନି ଠିଆ ହୋଇଗଲା ଓ ଘୋଡ଼ସବାର ତା କାନମୁଣ୍ଡା ଆଉଁଶି ଦେଇ ବେକରେ ଫୁଟୁକିଟିଏ ମାରି କାନରେ କଣ ପଦେ ଫୁଙ୍କି ଦେଇ ଓହ୍ଲାଇ ପଡ଼ିଲେ ଓ ବାଜି ମାରି ଜୟ ଲାଭ କଲେ । ଶାମବାବୁଙ୍କ ଘୋଡ଼ା ଏଥି ପୂର୍ବେ ସବୁ ଘୋଡ଼ାଦଉଡ଼ ଜିତିଥିଲା, ଏହି ହେଲା ତାହାର ଜୀବନରେ ପ୍ରଥମ ହାରପଟ- ଲୋକେ ଖମା ପାଖକୁ ଦଉଡ଼ିଗଲେ, ଦେଖିଲା ବେଳକୁ ପଞ୍ଚୁକଲ୍ୟାଣୀ ବେହୋସ । ଡାକ୍ତର ଆସିଲେ, ସାଷ୍ଟମ କଲେ, ତାକୁ ଠିଆ କରାଇବାକୁ ଚେଷ୍ଟା କଲେ, ସବୁ ଚେଷ୍ଟା ବିଫଳ ହେଲା- ଦେଖାଗଲା ଯେ ତାହାର କମର ହାଡ଼ର ତଳ ଚକତିଟି ଭାଙ୍ଗିଯାଇ ବାଁ ଫଡ଼ିଆଟା ଖସିଯାଇଛି ।

ଡାକ୍ତରମାନେ କହିଲେ, ଏ ଘୋଡ଼ାର ଜୀବନରେ ଘୋଡ଼ାଦଉଡ଼ ଖେଳ ଏହି ଶେଷ । ଶାମବାବୁ ଜନତା ମଧ୍ୟରୁ ବାହାରି ଆସି ତାଙ୍କ ଘୋଡ଼ା ଉପରେ ଟିକିଏ ଦୃଷ୍ଟି ପକାଇ ଦେଲେ, ରୁମାଲରେ ଆଖିରୁ ଟୋପାକ ଲୁହ ପୋଛି ଦେଲେ, ଡାକ୍ତରଙ୍କୁ କଣ କହିଲେ, ତା ପରେ ଘୋଡ଼ାର ଯାତନାମୟ ଜୀବନ ଗୋଟିଏ ବନ୍ଧୁକ ଗୁଳିରେ ଶେଷ କରାଯାଇ ତାହାର ଅଶ୍ୱଲୀଳା ସାଙ୍ଗ କରାଗଲା । ସମସ୍ତଙ୍କ ନଜର ବର୍ତ୍ତମାନ ପଡ଼ିଲା ସେହି କସରା ଘୋଡ଼ା ଉପରେ । ଧନ୍ୟ ଘୋଡ଼ା, ଧନ୍ୟ ସବାର, ଧନ୍ୟ ଘୋଡ଼ାର ମାଲିକ ବୋଲି ଦେଖଣାହାରିଙ୍କ ମୁହଁରୁ ଶତ ଶତ ପ୍ରଶଂସାବାଦ ବାହାରିଲା । ସମସ୍ତେ ଘୋଡ଼ାକୁ ଦେଖିଲେ, ଘୋଡ଼ସବାରକୁ ଦେଖିଲେ, କିନ୍ତୁ ଘୋଡ଼ାର ମାଲିକ କାହାନ୍ତି ? ତହିଁର କିଛି ପତ୍ତା ମିଳିଲା ନାହିଁ । ସେ ଘୋଡ଼ା ଦଉଡ଼ ଦେଖିବା ଦିନରୁ ମୁଁ ମନେ ମନେ ବିଚାରେଁ ଯେ, ଏହି ସଂସାରରେ ନିତି ପ୍ରତି ମୁହୂର୍ତ୍ତରେ ଏହିପରି ଘୋଡ଼ାଦଉଡ଼ ଲାଗିଛି । ଯାହାକୁ ଦେଖଣାହାରିମାନେ ମନେ କରନ୍ତି ଜିତିବ ବୋଲି, ଅନେକ ସମୟରେ ସେ ଚିତ୍‌ପଟାଙ୍ଗ ହୋଇ ପଡ଼ିଯାଇ ତା ଫଡ଼ିଆ ଖସିଯାଏ ଓ ଅବ୍ୟବହିତ ପୂର୍ବେ ଯେଉଁ ଲୋକ ସଂସାରରେ ଜିତିବ ବୋଲି ଆଶା ବାନ୍ଧିଥାଏ, ପର ମୁହୂର୍ତ୍ତରେ ସେ ଆଶା କେଉଁଆଡ଼େ ଗାଧୋଇ ଯାଏ । କାଲି ସକାଳେ ରାମଚନ୍ଦ୍ରଙ୍କର ରାଜ୍ୟାଭିଷେକ ହେବ ବୋଲି ଆଜି ସନ୍ଧ୍ୟାରେ ଧୂମଧାମ ଲାଗିଛି, ସକାଳୁ ଦେଖିଲାବେଳକୁ ରାମଚନ୍ଦ୍ର କତରା ବାନ୍ଧି ବନସ୍ତ ଆଡ଼କୁ ମୁହିଁଲେଣି ! ଯାହାଙ୍କର ଜିତିବାର ନାମଗନ୍ଧ ନ ଥାଏ, ଏପରି ଅନେକ ନାଉଆ୍ରେ ମାଲ ସମସ୍ତଙ୍କୁ ଚିତାଟାଏ କାଟି ବାଜି ମାରି ଚାଲିଯାନ୍ତି । ଏସବୁ ଦେଖି ମନ ବୋଧ କରିବା ନିମନ୍ତେ ଜ୍ଞାନୀମାନେ 'ଅଦୃଷ୍ଟ' ବୋଲି ଗୋଟିଏ ଚିଜ ସରବରାହ କରିଅଛନ୍ତି । କେତେ ଲୋକ କହନ୍ତି, ମନୁଷ୍ୟଠାରୁ ବଡ଼ ଜିନିଷ ଦୁନିଆରେ ନାହିଁ । ମନୁଷ୍ୟ ହାତରେ ସବୁ କଥା- ଏ ସଂସାରରେ ପୁରୁଷକାର ହେଲା ଅସଲ ଚିଜ । ଯେଉଁମାନେ ପୁରୁଷକାର ମାନନ୍ତି, ସେମାନେ ଦୈବ ମାନନ୍ତି ନାହିଁ । ସେମାନେ କହନ୍ତି, ଦୁଇ ସାଙ୍ଗରେ ଦୁଇ ମିଶାଇବା ଚାରି ପାଇବା, ଦେ କୁଉଡ଼ି ଖା ପିଠା । ଏଥିପାଇଁ ଯେ କଉଡ଼ି ଦିଆଯାଏ, କିନ୍ତୁ ପିଠା ଖାଇବା ପାଇଁ ଦାନ୍ତ ନିକୁଟି ନିକୁଟି ଦିନ ସରେ ନାହିଁ । କେହି କେହି ଏଥିପାଇଁ କହନ୍ତି ଯେ, ହଜାରେ କର, ହଜାରେ ଧର, ଶେଷଫଳ ଦୈବ ହାତରେ । ଦଇବ ଦଉଡ଼ି ମନୁଷ୍ୟ ଗାଈ, ଯେଣିକି ଓଟାରେ ତେଣିକି ଯାଇ । ଯେତିକି ଦେଖା ପଡ଼ିଲା ସେତକ ଦୃଷ୍ଟ, ଆଉ ଯେତକ କୁହୁଡ଼ି ଭିତରେ, ପରଦା ଆଢୁଆଳରେ, ବାଡ଼ି କବାଟର ପଛପଟରେ, ସେ ହେଲା ଅଦୃଷ୍ଟ । କେଳାମାନେ ଯେଉଁ 'ଗୋପଲୀଳା' ପିତୁଳା ନଚାନ୍ତି, ଦେଖଣାହାରି ଦେଖନ୍ତି ଯେ ପିତୁଳାମାନ ନାଚୁଛନ୍ତି, କିନ୍ତୁ ଭିତରେ ପରଦା ତଳେ କେଳା ବସି ପିତୁଳାଙ୍କ ପଛଆଡ଼େ ବନ୍ଧା ଯାଇଥିବା ଘୋଡ଼ାବାଳ ଦ୍ୱାରା ସେ ପିତୁଳାଙ୍କୁ ନଚାଉଛି । ସେ କେଳାଟି ହେଲା 'ଗୋପଲୀଳା'ର ଅଦୃଷ୍ଟ । ଏଥିପାଇଁ ଭଗବାନ୍ ଗୀତାରେ କହିଅଛନ୍ତି, ''ଈଶ୍ୱରଃ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା ।''

ଫେର ପଞ୍ଚାଏ ଅଛନ୍ତି, ସେ କହନ୍ତି, ପୁରୁଷକାର ଓ ଦୈବ ଦୁହିଁଙ୍କ ଯୋଗାଡ଼ରେ ଦଦରା ଡଙ୍ଗା ଶୁଖିଲାରେ ଚାଲୁଛି- ତୁମ ଯୋଗାଡ଼ରେ ତ୍ରୁଟି କରି ନାହିଁ, ଈଶ୍ୱର ତାଙ୍କ କାର୍ଯ୍ୟ ଅବଶ୍ୟ କରିବେ, ଯେ ଆପଣାକୁ ସାହାଯ୍ୟ କରେ, ଈଶ୍ୱର ତାହାର ସହାୟ । ପରିଶ୍ରମ ନ କରି, ଉଦ୍ୟମ ନ କରି, ସବୁ ଭାରଯାକ ଈଶ୍ୱରଙ୍କ ବେକମୁଣ୍ଡାରେ ଲଦି ଦେବା ଅମଣିଷପଣିଆ । ଏ ଜଟିଳ ସମସ୍ୟା ସଂସାରର ଆଦ୍ୟରୁ ଆଜିପର୍ଯ୍ୟନ୍ତ ଆଲୋଚିତ, ଖଣ୍ଡିତ ହେଉଅଛି, ତଥାପି ସଂସାରୀ ଜୀବମାନେ ଯେଉଁ କୁହୁଡ଼ିରେ ପହଁରୁଥିଲେ, ସେହି କୁହୁଡ଼ି ପହଁରା ବନ୍ଦ ହେବ ନାହିଁ ।

ଉତ୍କଳ ସାହିତ୍ୟ/ ୧୯ଶ ଭାଗ/୧୧ଶ ସଂଖ୍ୟା/୧୩୨୩ ସାଲ ।

## ।। ତେର ।।

(ନୋଟ୍- ପାଠକ ଅବଧାନ ! ଆପଣଙ୍କୁ ପୂର୍ବେ ଏତଲା କରିଅଛି ଯେ, ନନାଙ୍କ ବସ୍ତାନିରେ ହରେକ ପ୍ରକାର ସଂଗୃହୀତ ବସ୍ତୁ ଅଛି । ଅନେକ ସମୟରେ ମୁଁ ଦେଖିଅଛି, ନନା ଭଜନ ବୋଲୁଥାନ୍ତି । ମୁଁ ଆଗେ ମନେ ମନେ ବିଚାରୁଥିଲି, ଏ ଭଜନବୋଲା, ପୂଜାପୂଜି, ମାଳାଜପା, ଏ ସବୁ ଠାକୁରଙ୍କୁ ଧପାଧପି କରି ଠାକୁରଙ୍କ ଆଖିରେ ଧୂଳି ପକାଇବା କାମ । ଆପଣମାନେ ଅବଶ୍ୟ ଜାଣନ୍ତି, ଆମେ ପାଶ୍ଚାତ୍ୟ ଶିକ୍ଷିତମାନଙ୍କର ମାଳା, କୌପୁନି, କଣ ପଇତାରେ ବେଶି ଭକ୍ତି ନ ଥାଏ ଓ ଯେଉଁ ମରହଟିଆ ବୁଢ଼ାଯାକ ରେଳର ମାଲଗାଡ଼ି ଡବାଭଳିଆ ସ୍ଥାନ ଅସ୍ଥାନଯାକ ନାଲି, ହଳଦିଆ, କଳା ଇତ୍ୟାଦି ପଞ୍ଚବର୍ଣ୍ଣୀ ମାର୍କା ସବୁ ମାରିଥାନ୍ତି, ତାଙ୍କୁ ଦେଖି ମନେ ହେଉଥିଲା ଯେ, ରେଳଡବାରେ ମରାଯାଇଥିବା ମାର୍କାଗୁଡ଼ାକ ପଢ଼ି ଯେପରି ଆମ୍ଭେମାନେ ଭକ ଭକ ହୋଇ ଚାହୁଁ ଓ ତହିଁର ଅର୍ଥ ସାଫ ବୁଝି ନ ପାରୁଁ, କିନ୍ତୁ ଯେଉଁ ଷ୍ଟେସନର ରେଳ କର୍ମଚାରୀମାନଙ୍କ ବୁଝିବା ନିମନ୍ତେ ଏ ମାର୍କାମାନ ସମଝିନେଇ ଯେଉଁ ଡବା ଯେଉଁ ଆଡ଼କୁ ଯିବ, ତାହାର ଗତି, ସ୍ଥିତି, ଲୟ, ବିଲୟ, ସବୁ ଠିକଣା କରି ରେଳଡବାମାନଙ୍କୁ ଯଥାଯୋଗ୍ୟ ଗନ୍ତବ୍ୟ ସ୍ଥାନମାନଙ୍କୁ ଠେଲି ଦିଅନ୍ତି, ସେହିପରି ଏ ମରହଟିଆମାନଙ୍କର ଅର୍ଦ୍ଧପୁଣ୍ଡ୍ର, ଉର୍ଦ୍ଧ୍ୱପୁଣ୍ଡ୍ର, ବୃନ୍ଦାବନୀ, ନାମ-ମୋହର, ଚିତାକଟା ଏ ସବୁ ଯମଦୂତମାନଙ୍କ ନିକଟରେ ଚିହ୍ନଟ ହେବା ଓ ଠେଲାଠେଲି ହେବା ଉଦ୍ଦେଶ୍ୟରେ ମାର୍କା । କେଉଁ ମହାତ୍ମା ଧ୍ରୁବଲୋକ, କିଏ ଚନ୍ଦ୍ରଲୋକ, କିଏ ଶିବଲୋକ, କିଏ ବିଷ୍ଣୁଲୋକ, କିଏ ସୂର୍ଯ୍ୟଲୋକ, କିଏ ଗୋଲୋକ ଯିବେ, ତାହା ସବୁ ଯମଦୂତମାନେ ଏ ମାର୍କାମାନଙ୍କରୁ ସମୁଝି ନେଇ ଏମାନଙ୍କୁ ଏମାନଙ୍କ ଗନ୍ତବ୍ୟ ସ୍ଥାନକୁ ରିସାଲି କରି ଦେବେ; କିନ୍ତୁ ସାଧାରଣଙ୍କ ଚକ୍ଷୁରେ ଏଥିର ଅର୍ଥ ନାହିଁ । ଫେର ମନେ ମନେ ବିଚାରୁଥିଲି ଯେ, ସମୟ ସମୟରେ ଦେଖାଯାଏ ଯେ , ମାଲ ରିସାଲି କରିବାବାଲା ମହାଜନମାନେ ଯେପରି କୌଣସି

ମାଲକୁ ଲୁଚାଚୋରା ରମାନା କରିବା ଉଦ୍ଦେଶ୍ୟରେ ଓ କମ୍ ମାସୁଲ ଦେଇ ଖସିଯିବା ଉଦ୍ଦେଶ୍ୟରେ ପ୍ରକୃତ ମାଲର ନାମ ଓ ଓଜନ ରେଳ କମ୍ପାନୀଙ୍କଠାରୁ ଗୋପନ କରି ଓ ସମୟ ସମୟରେ ରେଳ କର୍ମଚାରୀମାନଙ୍କୁ କିଛି ଅଣ୍ଟାଗୁଞ୍ଜା ଦେଇ କମ୍ପାନିକୁ ଠକାନ୍ତି, ଏ ମରହଟ୍ଟିଆଯାକ ମଧ୍ୟ ସେହିପରି ଏ ହରିମନ୍ଦିରା ଚିତାଦ୍ୱାରା ଖୋଦ ଜଗନ୍ନାଥଙ୍କୁ ଚିତା କାଟନ୍ତି । ଏଇଥିପାଇଁ ଆମ୍ଭେ ନବ୍ୟଶିକ୍ଷିତ ଯୁବକଯାକ ମାର୍କାମରା ଭେକଧାରୀମାନଙ୍କୁ ଦେଖିଲେ ସେମାନଙ୍କୁ ଚୋରା ସରବରାହ (Contraband) ବୋଲି ମନେ କରୁଥିଲୁଁ । ପାଠକ ଅବଧାନ ! ଏହା ଲେଖକର ଯୌବନ ସମୟର କଥା । ସେତେବେଳେ ବିଚାରିଥିଲି ଯେ, ସିଧା ବାଟରେ ଯାଇ ରେଳବାଇ ନିଷ୍ପି (Railway Tariff) ଅନୁସାରେ ମାସୁଲ ଦେଇ, ରେଳର ମାଲବାବୁମାନଙ୍କୁ (Goods clerk) ଅଣ୍ଟାଗୁଞ୍ଜା ନ ଦେଇ ଓ ଖୋସାମତ ନ କରି ଆମେ ସିଧାଏ ସିଧାଏ ଜଗନ୍ନାଥଙ୍କର ନିକଟତମ ଷ୍ଟେସନରେ ପହଞ୍ଚିଯିବୁଁ । କ୍ରମଶଃ ବୟସ ବୃଦ୍ଧି ଓ କେଶର ହରଗଉରା ବର୍ଣ୍ଣାରମ୍ଭ ସଙ୍ଗେ ସଙ୍ଗେ ସେ ସବୁ ପାଠ ଓ ଧାରଣା ଅନେକ ପ୍ରକାର ସଂଶୋଧନ କରିବାକୁ ପଡୁଅଛି । ଦିନେ ମୋର ଜଣେ ଯୁବକ ଗ୍ରାଜୁଏଟ ନାତି ମୋର ବୃଦ୍ଧାବସ୍ଥା ସୁଲଭ ହରିମନ୍ଦିରା ଦେଖି ପଚାରିଲେ, ''ଅଜା ହୋ ! ଭଗବାନ୍‌ଙ୍କୁ ଚିତା କାଟିବାକୁ ବସିଛ ପରା ?'' ମୁଁ ଉତ୍ତର କଲି, ''ବା ରେ ! ଭଗବାନ୍ ଓ ଭଗବାନ୍‌ଙ୍କ ଅର୍ଦ୍ଦଳୀ ଏବଂ କର୍ମଚାରୀମାନଙ୍କୁ ଆଇନ କାନୁନ ଓ ନଜିର ଦେଖାଇ ତାଙ୍କଠାରୁ ଜବରଦସ୍ତି ମୁକ୍ତି ଆଦାୟ କରିବାର ଯେ ଆଶା ଥିଲା, ତାହା ଗଲାଣି । ସେ ବାଟେ ଯେ ଆମର ରାସ୍ତା ବନ୍ଦ, ଏ କଥା ଆମେ ଅନେକ ଦିନ ହେଲା ପକଡ଼ି ସାରିଲୁଣି । ବର୍ତ୍ତମାନ ଭଗବାନ୍‌ଙ୍କ ଦରୁଆନମାନଙ୍କୁ ଅଣ୍ଟାଗୁଞ୍ଜା ବା ସ୍ତୁତିଦ୍ୱାରା ବଶୀଭୂତ କରି କିମ୍ବା ଧୂପ ଦୀପ ନୈବେଦ୍ୟ ଦେଇ, ମାନସିକ ଯାଚି, ଲାଞ୍ଚ ଦେଇ ଅଥବା ସେମାନଙ୍କ ଆଖିରେ କର୍ପୂରଗୁଣ୍ଡା ପକାଇ କୌଣସି ବାଟେ ଅର୍ଥାତ୍ ଭଗବାନ୍‌ଙ୍କ ବାଡ଼ିପଟ ଦେଇ ସୁଦ୍ଧା ପ୍ରବେଶାଧିକାର ଲାଭ କରି ପାରିଲେ ଯଥେଷ୍ଟ ।'' ନାତି ଆମର ଏ କଥା ଶୁଣି ଗୋଟାଏ ଅଣବିଶ୍ୱାସିଆ ହିଂସାଉଡ଼ା ହସଟାଏ ହସି ଆମକୁ ବାଏଁ ବାଏଁ ନାପସନ୍ଦରେ ଉଡ଼ାଇ ଦେଲେ ଏବଂ ଏ ଜୀବନର ମୁକ୍ତି, ଐହିକ ମଙ୍ଗଳ ଓ କାର୍ଯ୍ୟସିଦ୍ଧି ନିମନ୍ତେ ଆମେ ପ୍ରତିଦିନ ସନ୍ଧ୍ୟାବେଳେ ଆସି ଏକାଗ୍ର ଚିତ୍ତ-ଚକ୍ଷୁରେ ଯେଉଁ ଅଧ୍ୟାତ୍ମ ରାମାୟଣ ପାରାୟଣ କରିଛୁଁ, ତାହା ଦେଖି ଆମକୁ ଥଟ୍ଟା କଲେ । ଛାଡ଼ ସେ କଥା ।)

ନନା ଭଜନ ବୋଲିବାର ମୁଁ ପିଲାଦିନେ ଅନେକଥର ଦେଖିଛି । ସେତେବେଳେ ସେ ଭଜନରେ କଣ ଅଛି, ତହିଁଆଡ଼କୁ ଆମର ନଜର ନଦାରଦ । ବର୍ତ୍ତମାନ ନନାଙ୍କ ଅନ୍ତେ ତାଙ୍କ ବସ୍ତାନିରେ ଅନେକ ଭଜନ, ଶରୀରଭେଦ, ଚଉତିଶା ଆଦି ଦେଖୁଅଛୁଁ । ସେଗୁଡ଼ିକରୁ କେତେଗୁଡ଼ିକରେ ଭଣିତା ଅଛି, କେତେଗୁଡ଼ିଏ ଅଭଣିତା । ଅଭଣିତା ଭଜନ

ଗୁଡ଼ିକ ଖୋଦ ବାପାଙ୍କର କିବା ଗୋଟିଆ ଗୋଟେଇ, ତାହା ଜାଣିବାର ବର୍ତ୍ତମାନ ସୁବିଧା ନାହିଁ । ତେବେ ସେସବୁର କୌଣସି ଆଧ୍ୟାତ୍ମିକ ମୂଲ୍ୟ ଅଛି କି ନାହିଁ, ତାହାର ମୀମାଂସା ମୋ ଦ୍ୱାରା ହେବ ନାହିଁ ବୋଲି ତାହା ପାଠକମାନଙ୍କୁ ଉପହାର ଦେଲି । ଆହୁରି ମଧ୍ୟ ଭକ୍ତ କେଉଁ ସମୟରେ, କି ଉଦ୍ଦେଶ୍ୟରେ, କେଉଁ ବିଷୟକୁ ଲକ୍ଷ୍ୟ କରି କେଉଁ ସାଂସାରିକ ଘଟନାଚକ୍ରରେ ପଡ଼ି ଜଡ଼ି, ସଢ଼ି, ମଢ଼ି ତାହା ମନର ଭାବ ଭଗବାନ୍‌ଙ୍କ ପାଖରେ ଖୋଲିକରି ଉଗାଳି ପକାଇଥାଏ, ତାହା ସେହି ରଚୟିତାଙ୍କୁ ଜଣା । ଯାହାହେଉ ନନାଙ୍କର ବସ୍ତାନିରେ ଥିବା ଗୋଟିଏ ଭଜନ ଏଠାରେ ଉଦ୍ଧୃତ କଲି । ଏଇଟା ଅବଶ୍ୟ ମରହଟିଆ ଛାନ୍ଦରେ ରଚିତ । ତାହା ଏହି :

### ନନାଙ୍କ ଭଜନ

ଏକଇ କରମହୀନ ସଂସାରତାପିତ ଜନ
ପ୍ରଭୁ ପାଦତଳେ ପଡ଼ି କରେ ବିନତି ।
ଶୁଣ ପ୍ରଭୁ ନିବେଦନ ଦୁଃଖ କର ହେ ମୋଚନ
ଯାଉ ପଳାଇ ଦୁର୍ଗତି ଦିଅ ସୁଗତି ।
ପ୍ରଭୁ ତବ ରଙ୍ଗ ଚରଣେ
ସତତ ରହୁ ଏ ମତି ସନ୍ତତଧ୍ୟାନେ ।
ଏ ସଂସାରେ କେତେ ସୁଖ ଭୋଗ ବାସନା ବିମୁଖ
ହୋଇ ଭାସୁଥିଲି ମୁହିଁ ଅଗାଧ ଜଳେ ।
ଶୁଣି ପ୍ରଭୁ ଦୁଃଖୀ ଦୁଃଖ ଫେରାଇଲ ପଦ୍ମମୁଖ
ଦୁସ୍ତର ଶୋକସାଗରୁ ତାରିଲ ହେଳେ ।
ରଖିଲଟି ଯେଉଁ କୀରତି ।
ତୁମ୍ଭ ପ୍ରେମରେ ପବିତ୍ର ହେଲା ଧରତୀ ।
ଗୃହସ୍ଥ ସଂସାର ଧର୍ମ ପାଳି କଲିଟି ଅଧର୍ମ
ଜାଣି ନ ଥିଲି ମୁଁ ମାୟା ଦାଉ ଜଗତେ ।
କାମ କ୍ରୋଧ ମଦ ମୋହ ଲୋଭ ଆଦି ରିପୁଚୟ
ଦଣ୍ଡିଲେ ଆଶ୍ରାବିହୀନ ଦେଖିଣ ମତେ ।
ଦେଲ ଯେଉଁ ଦିବ୍ୟଦର୍ଶନ,
ତବ ଆଶ୍ରା ପାଇ ମୁକ୍ତ ହେଲା ଜୀବନ ।

ଦିନେ ତ ହୃଦୟ ଭରି ସିଞ୍ଚି ନାହିଁ ଭକ୍ତି-ବାରି
ଦିନେ ତ ମନ ଲଗାଇ ନ ଥିଲି ଡାକି ।
ଦିନେ ହେଲେ ସପନରେ ପୂଜି ନ ଥିଲି ମନରେ
ସେହି ରଙ୍ଗଚରଣକୁ ହୃଦୟେ ରଖି ।
ପ୍ରଭୁ ତବ ଦୟାସାଗର
କାହୁଁ ଉଛୁଳି ପଡ଼ିଲା କ୍ଷଣମାତର ।
ଭାଇ ବନ୍ଧୁ ଗୃହଜନ ପରିବାର ପରିଜନ
ପୁତ୍ର କଳତ୍ର ସ୍ୱଜନ ଥିଲେ ତ ମେଳ ।
କାହାରି ହୃଦେ କରୁଣା ନ ହେଲା, ହେଲିଟି ବଣା
ସଂସାର ସାଗରେ ବୁଡୁଥିଲାଟି ଭେଳା ।
କାହୁଁ ଦୁଃଖୀ ହୃଦୟ ଲୟ ।
ବାଜିଲା ତବ ଶ୍ରବଣେ ହେଲ ଅଭୟ ।
ଶୁଣିଥିଲି ପ୍ରଭୁ ଶାସ୍ତ୍ରେ ଦୁଃଖ ଶୁଣିଲାର ମାତ୍ରେ
ଟଳଇ ଆସନ ପ୍ରଭୁ ହୁଅ କାତର ।
ଭକତର ଦୁଃଖ ଦେଖି ଥୟ ନୁହଁ ପଦ୍ମଆଖି
ଧାଇଁଆସ ଭକ୍ତେ କରିବାକୁ ଉଦ୍ଧାର ।
ଆଜି ଅନୁଭବିଲି ନିଜେ,
ଭକତ ପାଇଁ ସଂସାରେ ଶ୍ରୀହରି ବିଜେ ।

ପାଠକ ଅବଧାନ । ଏ ଭଜନରୁ କିଛି ଆଦିଅନ୍ତ, ମୁଣ୍ଡଗଣ୍ଡି ପାଇଲି ନାହିଁ- କି ଦର୍ଶନ ମିଳିଲା, ଏ କେଉଁଆଡ଼େ ଭାସି ଯାଉଥିଲେ, ଯାଙ୍କୁ ସଂସାର ଲୋକେ କେବେ ଫଉଜଦାରି ମାଡ଼ପିଟ କରୁଥିଲେ, ପ୍ରଭୁଙ୍କ ରଙ୍ଗଚରଣ ଯାଙ୍କ ହାବୁଡ଼ରେ କିପରି ପଡ଼ିଲା, ଭକ୍ତ ଉଦ୍ଧାର ପାଇଁ ଶ୍ରୀହରି ସରଜମିନ ତଦନ୍ତ କରିବାର ଏକ ନିଦର୍ଶନ ପାଇଲେ, ତାହା ଏ ଭଜନରୁ କିଛି ଧରା ପଡୁ ନାହିଁ ।

ଏକାଗ୍ର ଚିତ୍ତରେ ଭଗବାନ୍‌ଙ୍କଠାରେ ଶରଣ ପଶି ଭଗବାନ୍‌ଙ୍କଠାରେ ଆତ୍ମସମର୍ପଣ କରିବା ଭକତର ଉଦ୍ଦେଶ୍ୟ- କବି କହିଅଛନ୍ତି, "In Prayer, When man in good is one with God-in-man" ଅର୍ଥାତ୍ ନରଠାରେ ଦେବାବତରଣ । ଅନନ୍ୟଚେତା ସାଧକ ଭଗବାନ୍‌ଙ୍କୁ ପ୍ରାର୍ଥନା କଲାବେଳେ ଈଶ୍ୱରତ୍ୱ ଓ ମନୁଷ୍ୟତ୍ୱ ସମ୍ମିଳିତ ହୋଇଯାଏ, ଅର୍ଥାତ୍ ଭକ୍ତ 'ସୋଽହଂ' 'ସୋଽହଂ' ଭାବି ସେହି ଅଗାଧ ପ୍ରେମ ସାଗରରେ ଅହଂଭାବକୁ ବୁଡ଼ାଇଦିଏ ଏବଂ ଆପଣାକୁ ଈଶ୍ୱରଙ୍କର ଅଂଶ ସେହି ପରମାତ୍ମାଙ୍କର କଣା ବୋଲି ଜ୍ଞାନ

କରି ବ୍ରହ୍ମପଦରେ ଲୀନ ହୋଇଯାଏ । ଏହାହିଁ ପ୍ରକୃତ ଭକ୍ତର ଲକ୍ଷଣ, ଏହାହିଁ ପ୍ରକୃତ ଭକ୍ତିର ଉପାଦାନ । ସେଭଳି ପ୍ରେମ, ସେଭଳି ଭକ୍ତି, ସେଭଳି ପ୍ରାର୍ଥନା ସାମ୍ପ୍ରଦାୟିକ ନୁହେଁ, ମାର୍କାମରା ନୁହେଁ । କି ଖ୍ରୀଷ୍ଟିୟାନ, କି ହିନ୍ଦୁ, କି ମୁସଲମାନ, କି ବୌଦ୍ଧ, ସମସ୍ତେ ସେଠାରେ ଏକ । ଏଥିପାଇଁ କହିଅଛନ୍ତି ।

"ଯଂ ଶୈବାଃ ସମୁପାସତେ ଶିବ ଇତି
ବ୍ରହ୍ମେତି ବେଦାନ୍ତିନୋ
ବୌଦ୍ଧା ବୁଦ୍ଧ ଇତି ପ୍ରମାଣପଟବୋ
କର୍ତ୍ତେତି ନୈୟାୟିକାଃ ।
ଅର୍ହନ୍ ନିତ୍ୟଥ ଜୈନଶାସନରତାଃ
କର୍ମେତି ମୀମାଂସକାଃ
ସୋଽୟଂ ବୋ ବିଦଧାତୁ ବାଞ୍ଛିତ ଫଳଂ
ତ୍ରୈଲୋକ୍ୟନାଥୋ ହରିଃ ।"

ସାଂସାରିକ ମତ ନ ଟପିବା ପର୍ଯ୍ୟନ୍ତ ଏ ମୋର, ଏ ତୋର, ଏ ପାଣ, ଏ ବ୍ରାହ୍ମଣ, ଏ ହିନ୍ଦୁ, ଏ ମୁସଲମାନ ସବୁ ଚାଲିଥାଏ । ଏ ସତ୍ତ୍ୱ, ଏ ରଜଃ, ଏ ତମଃ ବିଭାଗ କରାଯାଉଥାଏ । ଆହୁରି ଟିକିଏ ଉପରକୁ ଉଠିଲେ ତେଣିକି ସମସ୍ତେ ସମାନ, ତେଣିକି ଆଉ ପରଦା ନ ଥାଏ । ତେଣିକି ଛପା, ମାର୍କା, ବିଡ଼ାବନ୍ଧା, ଟିପଚିହ୍ନ ଏ ସବୁ ବେଦରକାରୀ ହୋଇଉଠେ । ନନାଙ୍କୁ ମୁଁ ଦେଖିଅଛି, ପୂଜାରେ ବସିଥାନ୍ତି, ହୋମରେ ବସିଥାନ୍ତି, ମାଳାତୁଳସୀ ଶାଳଗ୍ରାମରେ ମାତିଥାନ୍ତି, କିନ୍ତୁ ଯେଉଁ ସମୟରେ ସଂସାରରେ ଘୋର ପରୀକ୍ଷା, ବିଷମ ସଙ୍କଟ, ଅନ୍ଧକାରମୟ ଦୁର୍ଦ୍ଦିନ ଉପସ୍ଥିତ ହୋଇଅଛି, ସେତେବେଳେ ମୁଁ ନନାଙ୍କୁ ଦେଖିଅଛି, ସେତେବେଳେ ସେ "ନିର୍ବାତ ନିଷମ୍ପ ଇବ ପ୍ରଦୀପଃ ।" ସେତେବେଳେ ସେ ଭଗବାନ୍‌ଙ୍କର ଜଗନ୍ନିୟାମକର୍ତ୍ତା ଉପରେ ଯେଉଁ ଅଟଳ ବିଶ୍ୱାସ ଦେଖାଇଥାନ୍ତି, ତାହା ମୁଁ ଅପରତ୍ର କୌଣସିଠାରେ ଦେଖି ନାହିଁ ।

ସବୁ ଧର୍ମରେ ଦେଖନ୍ତୁ, ଉଚ୍ଚତମ ଧର୍ମଭାବ ଭଗବଦ୍ ପ୍ରେରଣାର ଫଳ ଅଟେ । ତାହା ଶିକ୍ଷାଦୀକ୍ଷାର ବିଷୟ ନୁହେଁ । ଶିକ୍ଷାଦୀକ୍ଷା ପ୍ରଚ୍ଛନ୍ନ ଭାବକୁ ବିକଶିତ କରାଏ ମାତ୍ର - କିନ୍ତୁ ଉପାଦାନ ସୃଷ୍ଟି କରିପାରେ ନାହିଁ । ଯିଶୁ, ମହମ୍ମଦ, ବୁଦ୍ଧଦେବ, ଶଙ୍କର, କବୀର, ଚୈତନ୍ୟ, ରାମକୃଷ୍ଣ ଏମାନେ ପ୍ରଥମେ ହେଲେ ଭକ୍ତ, ପରେ ହେଲେ ବିଦ୍ୱାନ୍ । ଭକ୍ତି ବିଦ୍ୟା ଉପରେ, ପ୍ରାଚ୍ୟ ପାଶ୍ଚାତ୍ୟ ସଭ୍ୟତା ଉପରେ ନିର୍ଭର କରେ ନାହିଁ । ଏହା ଭକ୍ତ ହୃଦୟର ପ୍ରଚ୍ଛନ୍ନ ବୀଜ, ଯାହା ସୁବିଧା ସୁଯୋଗ ପାଇଲେ ବିକଶିତ ହୋଇ ଜଗତକୁ ଦୀପ୍ତିମୟ କରେ, ନୀରସ ପ୍ରାଣକୁ ସରସ କରେ ।

ଉତ୍କଳ ସାହିତ୍ୟ/୨୦ଶ ଭାଗ/୧ମ ସଂଖ୍ୟା/୧୩୨୩ ସାଲ ।

## ।। ଚଉଦ ।।

ଜି-କଟକ । ପ୍ର-କୋଦଣ୍ଡା । ସା - ରଘୁନାଥପୁର । ମୌ - ସିଦ୍ଧେଶ୍ୱରପୁର । ତଉଜି ନମ୍ବର ୩୮୬୦୩୬ ଇଟେଇଯୋଡ଼ି ନାମଧେୟ ମାଛଖଣିରେ ଉପସ୍ଥିତ ସରିକଦାରଙ୍କ ସଂଖ୍ୟା ୫୦ କି ୬୦ ହେବ । ମାଛଙ୍କ ଦିହରେ ବୁମ ଉଠିଗଲାଣି ; ନନାଙ୍କଠାରୁ ଶୁଣିଛୁଁ ଯେ ସେ ପୋଖରୀଟା 'ଦେବାଳୟ' । ଅର୍ଥାତ୍ ସେଥିରେ କୌଣସି ଦେବତାଙ୍କର ଆଶ୍ରୟ-ଏପରିକି ଖୋଦ ଠାକୁରାଣୀଙ୍କ ବାହନ ଆଠହାତିଆ ଗୋମୁହାଁ କୁମ୍ଭୀର ମୁଣ୍ଡରେ ଥୋପାଏ ରଙ୍ଗ ଟହଟହ ସିନ୍ଦୂର ଥିବାର ଆମର ବଡ଼ବଡ଼କେ ଦେଖିଥିବାର କେତେଥର ପ୍ରମାଣିତ ହୋଇଅଛି । ଆହୁରି ମଧ୍ୟ ଆଗେ (ଅର୍ଥାତ୍ ଯେତେବେଳେ ଆମ ଅଞ୍ଚଳରେ ଘୋର କଳିକାଳ ପୂରାପୂରି ଅଧିକାର କରି ନ ଥିଲା) ଗରିବଗୁରୁବାଙ୍କର ଝିଅ ପୁଅ ବିଭା ହେଲେ ସେ ପୋଖରୀ କୂଳକୁ ଯାଇ ଗଙ୍ଗାମାତାଙ୍କୁ ମାଜଣା କଲେ । ପୋଖରୀ ମଝିରୁ ଗୋଟିଏ ଡାଲାରେ ଆବଶ୍ୟକ ଆୟ ଅଳଙ୍କାରତକ ଭାସି ଉଠି କୂଳ ଆଡ଼କୁ ଚାଲି ଆସୁଥିଲା ଓ ଗୃହସ୍ଥ ସେତକ ଆଣି ଆପଣା ନିମିତ୍ତ ଚଳାଇ ସାରି ଫେର ଡାଲାରେ ସେହି ଅଳଙ୍କାରଯାକ ପୂରାଇ ଗଙ୍ଗାମାତାଙ୍କୁ ମାଜଣା କରି ସେ ପୋଖରୀ କୂଳରେ ଭସାଇ ଦେଉଥିଲା ଯେ ସେ ଡାଲାଟି ଭାସି ଭାସି ଯାଇ ପୋଖରୀ ମଝିରେ ଟୁବକିନି ବୁଡ଼ି ଯାଉଥିଲା । ଏହିପରି ବଡ଼ ସୁବିଧାରେ କାମ ଚଳି ଯାଉଥିଲା । ଆମ ଗ୍ରାମର ବିକେଇ ଆଚାର୍ଯ୍ୟଙ୍କ ଗୋସେଇଁମାନଙ୍କର ଟିକିଏ ଚୋରଣୀ ପ୍ରକୃତି ଥିଲା । ଥରେ ତାଙ୍କ ଘରର ଗୋଟିଏ ନିମିତ୍ତକୁ ଗଙ୍ଗାମାତା ଡାଲାରେ ଏହିପରି ଗୁଡ଼ିଏ ଅଳଙ୍କାର ଦେଇଥିଲେ । ବୁଢ଼ୀ ଲୋଭ ସମ୍ଭାଳି ନ ପାରି ସେ ଅଳଙ୍କାର ମଧ୍ୟରୁ ରଙ୍ଗ ପଥରବସା ଯାଉଁଳି ଗୁଣାଟିଏ କାଢ଼ି ରଖିଲେ । ଏ କଥା କାହାକୁ ମାଲୁମ ନାହିଁ । ନିମିତ୍ତ ସରିଲା ପରେ ଗୃହସ୍ୱାମୀ ଅଳଙ୍କାର ଡାଲାଟି ନେଇ ପୋଖରୀ କୂଳରେ ଭସାଇ ଦେଇ ଆସିଲେ । ତାର କେତେଦିନ ବାଦ ଗ୍ରାମବାସୀ ଆଉ ଜଣକର ନିମିତ୍ତ ପଡ଼ିଲା ବେଳକୁ ଠାକୁରାଣୀ ମାଜଣା କରି ଯେତେ ଚେଷ୍ଟା କରାଗଲା, ପୋଖରୀରୁ ଆଉ ପୂର୍ବବତ୍ ଅଳଙ୍କାର ଡାଲା ଉଠିଲା ନାହିଁ । ଠାକୁରାଣୀଙ୍କ ମାଳୀକୁ କାଳିଶି ଲାଗେ । କାଳିଶି ଲଗାଇବାରୁ ମଦେଇ ନାହାକ ମାଳୀ ମୁହଁରେ ମା ଆଜ୍ଞା ହେଲେ ଯେ, ବିକେଇଙ୍କ ଗୋସେଇଁ ମା ଯାଉଁଳି ଗୁଣାଟି ଚୋରି କରିଥିବାରୁ ଗଙ୍ଗାମାତା ଅଳଙ୍କାର ଗଣି ନେଲାବେଳେ ଗୁଣାଟି ନ ଥିବାର ଦେଖିଲେ । ଅତଏବ ବିକେଇଙ୍କ ଡିହରେ ବିଲୁଆ ଡେଇଁବେ ଏବଂ ଆଉ ଭବିଷ୍ୟତ୍‌କୁ ଅଳଙ୍କାର ଡାଲା ଉଠିବ ନାହିଁ । ସେହିଦିନଠାରୁ ଅଳଙ୍କାର ଡାଲା ପ୍ରଥା ବନ୍ଦ ହୋଇଅଛି । ଏ ପୋଖରୀ ବା ଯୋଡ଼ିଟା କେବେ ଖରାଦିନେ ଶୁଖିବା କଥା ଦୂରେ ଥାଉ, ଥଳ ହୋଇଥିବାର ଦେଖା ନାହିଁ । ଥରେ ସାହିବ ଆସିଥିଲା ଏ ପୋଖରୀଟା ଶୁଖାଇବା ଉଦ୍ଦେଶ୍ୟରେ । କିନ୍ତୁ ଯୋଡ଼ି ମଝିରୁ ଯୋଡ଼ାଏ ମାଠିଆ ଭାସି ଉଠିବାରୁ ସାହିବ ଡରି ହରି ପଳାଇଗଲା । ଏହିପରି ଏ

ଯୋଡ଼ିଟା ଦେବତା ଆଶ୍ରିତ ବୋଲି ଅନେକ କଥା ଶୁଣା ଅଛି । ଅଚ୍ୟୁତାନନ୍ଦ ଦାସଙ୍କ ମାଳିକାରେ ମଧ୍ୟ ଏ ଯୋଡ଼ିର ନାମ 'ରତ୍ନଯୋଡ଼ି' ବୋଲି ଦରଜ ଅଛି ଓ ତେର ଟୋପି ଲଢ଼େଇ ବେଳେ ଏହି ରତ୍ନଯୋଡ଼ି କୂଳ ବଟ ମୂଳେ ଭକ୍ତମାନେ ଠୁଳ ହେବେ ବୋଲି ମଧ୍ୟ ମାଳିକା ଡାକୁଛି । ବର୍ତ୍ତମାନ ମଧ୍ୟ ପଥିକ ସେ ଯୋଡ଼ି ନିକଟକୁ ଗଲେ ଯୋଡ଼ି ନିକଟରେ ଥିବା ସୁବିସ୍ତୃତ ବଟବୃକ୍ଷ ଦେଖିପାରିବେ । ସେ ବଟମୂଳେ ଜଣେ ସାଧୁ ଅଛନ୍ତି ଓ ଅନେକ ସମୟରେ ଆଖ ପାଖ ମୌଜାମାନଙ୍କରୁ ଶତ ଶତ ଲୋକ ଆସି ଏଠାରେ ମେଳା ମଉଛବ କରି ହରିବୋଲ ଦେଇଯାନ୍ତି । ଯାହାହେଉ ଲେଖକର ଉପସ୍ଥିତ ବିଷୟ ସଙ୍ଗେ ଏ ପ୍ରବାଦଗୁଡ଼ିକର କିଛି ଘନିଷ୍ଠ ସମ୍ବନ୍ଧ ନାହିଁ । ସେ ଯୋଡ଼ିଟି ମାଛର ଖଣି । କୁମ୍ଭୀର ସେଠାରେ ମାଳ ମାଳ । ଆପଣ ଯାଇଁ ଦଣ୍ଡେ ସେ ଯୋଡ଼ି କୂଳେ ଠିଆ ହୁଅନ୍ତୁ, ଦେଖିବେ ଯେ, ବଡ଼ ବଡ଼ ଚିତଳ ରୋହି ଭାକୁଡ଼ମାନ ମଝି ନଈରେ ଓଲଟୁଛନ୍ତି । ଏ ଯୋଡ଼ିରେ ମାଛ ଅପର୍ଯ୍ୟାପ୍ତ ଅଛନ୍ତି ବୋଲି ଆପଣ ଯେତେବେଳେ ଚାହିଁବେ, ସେତେବେଳେ ଯେ ଏ ଯୋଡ଼ିରୁ ମାଛ ପାଇପାରିବେ, ଏହା ନୁହେଁ । ବର୍ଷକେ ଥରେ ସବୁ ସରିକଦାରମାନେ ଏକ ମେଳ ହୋଇ ଠାକୁରାଣୀ ଗାଧୁଆ କରି ଏ ଯୋଡ଼ିରେ ବଡ଼ ଜାଲ ପକାନ୍ତି । କିନ୍ତୁ ଯେବେ 'ଠାକୁରାଣୀ ଗାଧୁଆ'ରେ କିଛି ଖଇଚା ହୋଇଥାଏ, ତେବେ ବଡ଼ ମାଛ କଥା ଦୂରେ ଥାଉ, ଜାଲରେ ଗୋଟାଏ କେରାଣ୍ଡି ସୁଦ୍ଧା ପଡ଼ିବେ ନାହିଁ । କିନ୍ତୁ ଠାକୁରାଣୀ ପ୍ରସନ୍ନ ହେଲେ ବଡ଼ ବଡ଼ ରୋହି ଭାକୁଡ଼ ଚିତଳରେ ଜାଲପୂର୍ଣ୍ଣ ହୋଇଯାଏ ଓ ୫/୭ ଦିନ ପର୍ଯ୍ୟନ୍ତ ମାଛ ଗନ୍ଧରେ ଆମ ଗାଁ ଗନ୍ଧେଇ ଯାଏ । ପାଠକ ଅବଧାନ ! ଲେଖକର ଏ କଥାଗୁଡ଼ିକ ଅବିଶ୍ୱାସ କରିବେ ନାହିଁ । ବର୍ତ୍ତମାନ ସରଜମିନ ତଦନ୍ତ କଲେ ଏ କଥାଗୁଡ଼ିକ ଅକ୍ଷରେ ଅକ୍ଷରେ, ଶବ୍ଦେ ଶବ୍ଦେ, ପଦେ ପଦେ ଅକାଟ୍ୟ ସତ୍ୟ ଥିବାର ପ୍ରମାଣ ପାଇବେ । ଏ ଗଲା ଅବତାରଣା । ସାହିତ୍ୟର ସମ୍ପାଦକ ମହାଶୟ ସଂକ୍ରାନ୍ତିକୁ ସଂକ୍ରାନ୍ତି ପତ୍ରିକା ବାହାର କରି ବାହାଦୁରି ନେବେ । ସମ୍ପାଦକଙ୍କର ପ୍ରସାର ଓ ପ୍ରତିପତ୍ତି ବଢ଼ିବ ବୋଲି ଲେଖକର କୌଣସି କୈଫିୟତ୍ ଶୁଣାଯିବ ନାହିଁ- ସମ୍ପାଦକଙ୍କର ହୁକୁମ ଯେ ''ନନାଙ୍କ ବସ୍ତାନିରେ ଅପର୍ଯ୍ୟାପ୍ତ ମାଲମସଲା ମହଜୁଦ ଅଛି । ଏପରି ସ୍ଥଳରେ ଲେଖକ ନନାଙ୍କ ବସ୍ତାନି ଫିଟାଇ ସେଥିରୁ କିଛି ପଦାର୍ଥ କାଢ଼ି ଥୋଇ ଦେବେ । ଏଇଥିପାଇଁ ଏତେ ଖୋସାମତ ପଡ଼ିଛି !'' କିନ୍ତୁ ସମ୍ପାଦକ ବୁଝୁ ନାହାନ୍ତି ଯେ, ନନାଙ୍କ ବସ୍ତାନିରେ ଅପର୍ଯ୍ୟାପ୍ତ ମାଲମସଲା ଥିଲେ ମଧ୍ୟ ବିନା ମା ସାରଳାଙ୍କ ଦୟା ନ ହେଲେ ଲେଖକ ସେଥିରୁ କୌଣସି ପାଠକୋପଯୋଗୀ ବିଷୟ ନିର୍ବାଚନ କରିବାକୁ ଅକ୍ଷମ ଅଟନ୍ତି । ଏତିକି କଥା ସମ୍ପାଦକଙ୍କୁ ବୁଝାଇବା ପାଇଁ ଲେଖକ ତାହା ଗ୍ରାମର 'ରତ୍ନଯୋଡ଼ି'ର ଉଦାହରଣ ଏଠାରେ ଦେବାକୁ ବାଧ୍ୟ ହେଲା ।

ତା ପରେ ମଧ୍ୟ ପାଠକମାନେ ବିଚାର କରନ୍ତୁ ଯେ, ନନା ଆମର ମରହଟ୍ଟିଆ ଧରଣର ଓ ମରହଟ୍ଟିଆ ଯୁଗର ଲୋକ ଥିଲେ । ସେ କେତେଗୁଡ଼ିଏ କଥା ଅନ୍ଦାଜରେ,

କେତେକ ଅନୁମାନରେ, କେତେକ ଭବିଷ୍ୟତ୍ ଆଶାରେ, କେତେକ କଳ୍ପନାରେ ନିର୍ଭର କରି ବସ୍ତାନିରେ ଟିପି ଯାଇଅଛନ୍ତି । ସେଗୁଡ଼ିକ ବେଳ କାଳ ଉଣ୍ଡି ବାହାର କରି ପାଠକମାନଙ୍କୁ ଦେଲେ ସିନା ହେବ । ନଚେତ୍ ଲେଖକର ଲେଖାକୁ ପଚାରିବ କିଏ ? ନନା ଆମର କଟକ ଲୋକେଲ ବୋର୍ଡ଼ର ମେମ୍ବର ଥିଲେ । ଲୋକେଲ ବୋର୍ଡ଼ ସଙ୍ଗେ ଡିଷ୍ଟ୍ରିକ୍ଟ ବୋର୍ଡ଼ର ସରଦାର ବିରାଦର ସମ୍ବନ୍ଧ । ଡିଷ୍ଟ୍ରିକ୍ଟ ବୋର୍ଡ଼ରେ ତୋଫାନଟାଏ ବୋହିଲେ ତହିଁର ଟିକିଏ ଝାପ୍‌ସା ଆସି ଲୋକେଲ ବୋର୍ଡ଼ରେ ବାଜୁଥିଲା । ଲାଟସାହେବଙ୍କ ବ୍ୟବସ୍ଥାପକ ସଭାକୁ ସଭ୍ୟ ନିର୍ବାଚନ କରିବା ନିମନ୍ତେ ଓଡ଼ିଶା ଡିଷ୍ଟ୍ରିକ୍ଟ ବୋର୍ଡ଼ମାନଙ୍କର ପୂର୍ବେ ଯେବେ ପାଳି ପଡ଼ିଥିଲା, ସେ ସମୟରେ ନନା କଟକ ସଦର ଲୋକେଲ୍ ବୋର୍ଡ଼ର ମେମ୍ବର ଥିଲେ ଓ ଲେଖକ ଖୋଦ କଟକ ଡିଷ୍ଟ୍ରିକ୍ଟ ବୋର୍ଡ଼ର ମେମ୍ବର ଥିଲା । ଏପରି ସ୍ଥଳରେ ଲାଟସଭାରେ ସଭ୍ୟାସୀନ ପ୍ରାର୍ଥୀମାନେ ବେଳେ ବେଳେ ଆସି ଆମ ବସାରେ ମୁଖ୍ୟ ଭାବରେ (ଲେଖକଙ୍କ ନିକଟ) ଓ ଗୌଣ ଭାବରେ (ନନାଙ୍କ ନିକଟ) ଜୁଟୁଥିଲେ । ସେ ସମୟରେ ନନା ଏ ସଭ୍ୟପଣିଆର ଯୋଗ୍ୟତା, କରାମତ, କର୍ତ୍ତବ୍ୟ, ପରିଶ୍ରମ, ଲାଭ, କ୍ଷତି, ଯୋଗାଡ଼ ଆଦିର ଗୋଟଏ ଉଆରିଜା କରି ବସ୍ତାନିରେ ରଖିଥିଲେ । ଦୁଃଖର କଥା ଯେ, ଏ ବିଷୟ ଆମକୁ ଆଦୌ ଜଣା ନ ଥିଲା । କାରଣ ନନା ଏପରି ଗୁଡ଼ିଏ ମାଲ ସଂଗ୍ରହ କରି ରଖି ଯାଇଅଛନ୍ତି, ଏହା ଜାଣିଥିଲେ ଖୋଦ ଆମେ ଏଥରକ ଲାଟ ସଭା ନିମନ୍ତେ ରଗଡ଼ଟାଏ ପକାଇଥାନ୍ତୁ କିମ୍ବା ନିତାନ୍ତପକ୍ଷେ ଉପସ୍ଥିତ କାଳରେ ପ୍ରାର୍ଥୀମାନଙ୍କ ମଧରେ ଯେଉଁମାନେ ଆମର ବନ୍ଧୁ ଅଟନ୍ତି, ତାଙ୍କୁ ଏ କଳକଦର ବତାଇ ଦେଇ ତାଙ୍କର ସେ ଉଦ୍ୟମରେ କୃତକାର୍ଯ୍ୟ ହେବାର ରାସ୍ତା ପରିଷ୍କାର କରି ଦେଇଥାନ୍ତୁ ।

ପାଠ ଡାକୁଛି, ''Better late than never'', ଅର୍ଥାତ୍ 'ନାହିଁ ମାମୁଠାରୁ କଣାମାମୁ ଭଲ' । ଏଥରକ ତ ଗୋଟାଏ ସୁବିଧା ଚାଲିଗଲା । ନନାଙ୍କ ବିଦ୍ୟା ବୁଦ୍ଧିତକ ବସ୍ତାନିରୁ ବାହାରି ଦାଣ୍ଡରେ ପଡ଼ିଥିବା ସମୟରେ କେହି ପ୍ରାର୍ଥୀ ଏ ଉପାୟଗୁଡ଼ିକ ଅବଲମ୍ବନ କରି ସଫଳ ମନୋରଥ ହୋଇ ଲାଟସଭାରେ ବସି ଆପଣା ଜୀବନକୁ, ଆପଣା ଦେଶକୁ, ଆପଣା ଭାଇ ବିରାଦରଙ୍କୁ, ଆପଣା ପିତୃମାତୃଭୂମିକୁ, ଆପଣା ମୁରବିଙ୍କୁ, ଆପଣା ପୁତ୍ରକନ୍ୟାଙ୍କୁ, ଆପଣା ଅଧୀନସ୍ଥ ଅନୁସରଣିଆମାନଙ୍କୁ କୃତାର୍ଥ କରିପାରନ୍ତି, ଏଥିଲାଗି ଲେଖକ ଶ୍ରମ ସ୍ୱୀକାର କରି ଏଗୁଡ଼ିକ ଉଦ୍ଧାର କଲା ଓ ଆଶା କରାଯାଏ ଯେ ଏଥିଲାଗି ସମ୍ପାଦକ ଓ ପାଠକମାନଙ୍କଠାରୁ ଧନ୍ୟବାଦ ପାଇବାରେ ତ୍ରୁଟି ହେବ ନାହିଁ । ନନାଙ୍କ ଟିପା ଉଆରିଜାର ଭାଷା ଓ ଢଙ୍ଗରେ ଲେଖିଲେ ଆଧୁନିକ ପାଠକ ଓ ପ୍ରାର୍ଥୀମାନେ କାଳେ ସବୁ କଥା ସାଫକରି ସମଝି ନ ପାରିବେ, ଏଥିପାଇଁ ମରହଟୀ ଓଡ଼ିଶୀ ଭାଷାରେ ନ ଲେଖି ଆଧୁନିକ ସାହିତ୍ୟିକ ଭାଷାରେ ସେଗୁଡ଼ିକ ଲିପିବଦ୍ଧ କରାଗଲା । ଅବଶ୍ୟ ନନାଙ୍କ ଉଆରିଜାର ଭିନ୍ନ ଭିନ୍ନ ହେଡ଼ିଙ୍ଗର ସୂଚନା ଏଠାରେ ଦିଆଯିବ - ପ୍ରାର୍ଥୀ ହେବା

ପୂର୍ବରୁ କର୍ତ୍ତବ୍ୟ, ପ୍ରାର୍ଥୀ ହେବା ସମୟରେ କର୍ତ୍ତବ୍ୟ, ପ୍ରାର୍ଥୀ ହେବା ପରେ କର୍ତ୍ତବ୍ୟ, କାହା କାହା ଦ୍ୱାରା କାର୍ଯ୍ୟ ହାସଲ କରିବାକୁ ହେବ, କାହା କାହା ନିକଟକୁ ଯିବାକୁ ହେବ, କି କି ପଦାର୍ଥ ଭୋଜନ କରିବାକୁ ହେବ, କିପରି ଶଯ୍ୟାରେ ଶୟନ, କି କି ଆଭରଣ ପରିଧାନ କରିବାକୁ ହେବ, କି କି କାର୍ଯ୍ୟ ଅବଶ୍ୟ କର୍ତ୍ତବ୍ୟ, କଣ ଅବଶ୍ୟ ଅକର୍ତ୍ତବ୍ୟ, କଣ କର୍ତ୍ତବ୍ୟାକର୍ତ୍ତବ୍ୟ, କି କି ଆଶ୍ରୟ ଅବଶ୍ୟ ଧର୍ତ୍ତବ୍ୟ, ଅବଶ୍ୟ ଅଧର୍ତ୍ତବ୍ୟ, ଧର୍ତ୍ତବ୍ୟାଧର୍ତ୍ତବ୍ୟ, କେଉଁ କେଉଁ ସ୍ଥାନ ଅବଶ୍ୟ ଗନ୍ତବ୍ୟ, ଅବଶ୍ୟ ଅଗନ୍ତବ୍ୟ, ଗନ୍ତବ୍ୟାଗନ୍ତବ୍ୟ, ଏହିପରି ନାନାପ୍ରକାର ହେଡ଼ିଙ୍ଗ, ସବ୍‌ହେଡ଼ିଙ୍ଗ ନନାଙ୍କ ବସ୍ତାନିରେ ଅଛି । ସେଗୁଡ଼ିକ ଅବିକଳ ଉଲ୍ଲେଖ କରି ପାଠକମାନଙ୍କ ସମୟ ନଷ୍ଟ କରିବା ଉଚିତ ନୁହେଁ । ମୋଟାମୋଟି କେତେଟା କଥା ଏଠାରେ ଦେଲୁଁ । କିନ୍ତୁ ସମସ୍ତ ଗୁମର ଏଠାରେ ଖୋଲିଦେଲେ ଖୋଦ ଆମର ଭବିଷ୍ୟତ୍ ଆଶା ବୁଡ଼ିବ ଓ ସମ୍ମାନ କମିଯିବ । ଏଥିପାଇଁ ଏତଦ୍ଦ୍ୱାରା ପ୍ରାର୍ଥୀମାନଙ୍କୁ ଓ ଆପାମର ସାଧାରଣଙ୍କୁ ଜଣାଉଅଛୁଁ ଯେ, ଆବଶ୍ୟକ ହେଲେ ଓ ଉପଯୁକ୍ତ ବନ୍ଦୋବସ୍ତ ହେଲେ ନନାଙ୍କ ବସ୍ତାନିରେ ଥିବା ଉପକରଣଗୁଡ଼ିକ ଠିକ୍ ଠିକ୍ ଆମ୍ଭେ ପ୍ରାର୍ଥୀମାନଙ୍କୁ ଯୋଗାଇ ପାରିବୁଁ ।

ଅବଶ୍ୟ କର୍ତ୍ତବ୍ୟ- ୧ । ଯେ ପ୍ରାର୍ଥୀ ହେବେ, ସେ ତାଙ୍କ ପାକେଟରେ (ଓ ଯେବେ ସେ ନିଜର ନିରାଡ଼ମ୍ବରତ୍ୱ ଘୋଷଣା କରିବା ନିମନ୍ତେ ସରକାରୀ କାର୍ଯ୍ୟ ଛଡ଼ା ଅନ୍ୟତ୍ର କୁର୍ତ୍ତା ବ୍ୟବହାର ନ କରନ୍ତି, ତେବେ ଲୁଗା ଫେର ତଳେ) ଖଣ୍ଡେ ଟିକି ଦର୍ପଣ (ଓରଫ ଆଇନା, ଆରଶି) ସର୍ବଦା ରଖିଥିବେ ଓ ଯେତେବେଳେ ତାଙ୍କ ପାଖରେ କେହି ନ ଥିବେ, ସେତେବେଳେ ଆପଣା ମୁହଁଟା ସେ ଦର୍ପଣରେ ଥରେ ଲେଖାଏଁ ଦେଖି ନେଉଥିବେ । ଆଉ ସର୍ବଦା ମୁହଁଟାକୁ ଏପରି ରଖିବାକୁ ଚେଷ୍ଟା କରିବେ, ଯେପରିକି ଗତ ୨୪ ଘଣ୍ଟା ମଧ୍ୟରେ ପୂର୍ଣ୍ଣାହାର ହୋଇଅଛି ବୋଲି ମୁଖଭଙ୍ଗୀରୁ କେହି ସୁରାକ ପାଇବେ ନାହିଁ । (ନନାଙ୍କ ବସ୍ତାନିରେ ମୁଖଭଙ୍ଗୀର ପରିମାଣ, ଅଧରୋଷ୍ଠର ଗତି, ସ୍ଥିତି ଓ ବିକୃତି, ଚକ୍ଷୁର ଆକୁଞ୍ଚନ ପ୍ରସାରଣ, ନାସାପୁଟର ସ୍ଫୁରଣ ଓ ସଙ୍କୋଚନ ଆଦି ଯବ ଓ ଆଙ୍ଗୁଳିରେ ଦିଆ ଯାଇଅଛି । ସେଗୁଡ଼ିକ ବିନା ସରଜମିନ ମୁଖଭଙ୍ଗୀରେ ଅବୋଧଗମ୍ୟ ବୋଲି ବିବେଚିତ ହେବାରୁ ତାହା ଏଠାରେ ଦିଆଗଲା ନାହିଁ । ଆବଶ୍ୟକ ହେଲେ ଲେଖକ ବ୍ୟକ୍ତିଗତ ଭାବରେ ଦୈହିକ କ୍ରିୟା-ଚିତ୍ରଦ୍ୱାରା ବୁଝାଇ ଦେଇପାରିବେ ।)

୨ - ଯଥାଶକ୍ତି ଓ ଯଥାସମ୍ଭବ ଗୁଡ଼ିଏ ସମ୍ବାଦପତ୍ରର ସମ୍ପାଦକ ଓ ଲେଖକଙ୍କ ସଙ୍ଗେ ସମ୍ବନ୍ଧ ସ୍ଥାପନ କରିବାକୁ ହେବ । ସମ୍ପର୍କଟା ଯେତିକି ଅବୈବାହିକ ଓ ବୈଦିକ ଓ ପୌରାଣିକ ହୁଏ, ସେତିକି ଭଲ । ଏ ସମ୍ବନ୍ଧରେ ପ୍ରଧାନ ସର୍ତ୍ତ ଯେ, ପ୍ରାର୍ଥୀଙ୍କ ବିରୋଧରେ କୌଣସି କଥା ପ୍ରକାଶ କରିବେ ନାହିଁ ଓ ତାଙ୍କ ଉଦ୍ଦେଶ୍ୟ ସାଧନ ନିମନ୍ତେ ଅନୁକୂଳ

ପ୍ରେରିତ, ପ୍ରାପ୍ତ, ଗୁପ୍ତ, ଅପହୃତ, ସ୍ୱନାମୀ, ବେନାମୀ, ବହୁନାମୀ, ସ୍ୱକୀୟ, ପରକୀୟ, ରାଜକୀୟ ପ୍ରବନ୍ଧ ଆଦି ଆପାତତଃ ପ୍ରତି ସପ୍ତାହରେ କିଛି କିଛି ପ୍ରକାଶିତ ହେଉଥିବ ଏବଂ ପ୍ରତିଦ୍ୱନ୍ଦ୍ୱୀମାନଙ୍କୁ ମଝିରେ ମଝିରେ ରଗଡ଼େ ରଗଡ଼େ ଦିଆ ଯାଉଥିବ ।

୩ । ଦେଶର କାର୍ଯ୍ୟାନ୍ତର, ସ୍ଥାନାନ୍ତର, ବିଷୟାନ୍ତର, ଅଞ୍ଚଳାନ୍ତର, ଅର୍ଥାନ୍ତର, ବ୍ୟବସାୟାନ୍ତରମାନଙ୍କରେ ଯେ କୌଣସି ପ୍ରକାରେ ପ୍ରାର୍ଥୀଙ୍କ ନାମ ସାଧାରଣରେ ଯେପରି ବିଞ୍ଛି ହୋଇଯାଏ, ତହିଁର ଯୋଗାଡ଼ କରିବାକୁ ହେବ । ପ୍ରାର୍ଥୀ ଓକିଲ ଥିଲେ ତାଙ୍କର ମକଦମାମାନ ଡିଗ୍ରୀ ହେଉଥିବାର ଉଦ୍ଘୋଷିତ ହେଉଥିବ । ପ୍ରାର୍ଥୀ ଜମିଦାର ଥିଲେ ତାଙ୍କର ପ୍ରଜାପାଳନ ଗୁଣ ଦୃଷ୍ଟାନ୍ତ ଦ୍ୱାରା ପ୍ରକଟିତ ହେବ । ପ୍ରାର୍ଥୀ ମହାଜନ ଥିଲେ ଅନେକ ଖାତକଙ୍କୁ ସୁଧ ଛାଡ଼ି ଦେଉଥିବା, ଚକ୍ରବୃଦ୍ଧି ସୁଧ ଦେଉ ନ ଥିବା ବିଷୟ ପ୍ରକାଶ କରାଯିବ । ପ୍ରାର୍ଥୀ ଦୋକାନଦାର ଥିଲେ ବଜାର ଭାଉ ଅପେକ୍ଷା ଢେର କାମରେ ଗରିବମାନଙ୍କୁ ଜିନିଷ ବିକ୍ରି କରୁଥିବାର ପ୍ରାର୍ଥୀ ଡାକ୍ତର ବା ବୈଦ୍ୟ ଥିଲେ ବିନା ଖରଚାରେ ଦୀନ ଦୁଃଖୀମାନଙ୍କୁ ଚିକିତ୍ସା କରୁଥିବାର, ଜାହିର କରିବାକୁ ହେବ ।

୪ । ଗୁଡ଼ିଏ ପାର୍ଶ୍ୱଚର, ପାର୍ଶ୍ୱକର, ପାର୍ଶ୍ୱଘର ଲୋକ ଠିକଣା କରି ସେମାନଙ୍କ ନାମରେ ପ୍ରାର୍ଥୀଙ୍କ ଗୁଣଗ୍ରାମ ବର୍ଣ୍ଣନା ଓ ବକ୍ତୃତା କରାଯାଉଥିବ । ସାଂସାରିକ କ୍ଷେତ୍ରରେ ପ୍ରାର୍ଥୀଙ୍କ ଅଧୀନରେ ଯେତେ ଲୋକ ଥିବେ, ତାଙ୍କ ଦ୍ୱାରା (ଅର୍ଥାତ୍ କଣ୍ଟ୍ରାକ୍ଟର ହୋଇଥିଲେ ଅଧୀନସ୍ଥ କୁଲିମାନଙ୍କ ଦ୍ୱାରା, ସ୍କୁଲ ମାଷ୍ଟର ହୋଇଥିଲେ ସ୍କୁଲର ପିଲାପିଲିମାନଙ୍କ ଦ୍ୱାରା, ଜମିଦାର ହୋଇଥିଲେ ପ୍ରଜାମାନଙ୍କ ଦ୍ୱାରା, ଓକିଲ ହୋଇଥିଲେ ମୋହରିରମାନଙ୍କଦ୍ୱାରା) ପ୍ରାର୍ଥୀଙ୍କର ଯଶୋଗାନ କରାଇବାକୁ ହେବ ।

୫ । ନିଜେ ପ୍ରାର୍ଥିତ ପଦ ପାଇଁ ଅଭିଳାଷୀ ଥିବାର ଆପାମର ସାଧାରଣଙ୍କ ନିକଟରେ ଆଦୌ ପ୍ରକାଶ କରାଯିବ ନାହିଁ । ''ମୋର ଏ କାର୍ଯ୍ୟରେ ପଶିବାର ଆଦୌ ଇଚ୍ଛା ନୁହେଁ, କେବଳ ବନ୍ଧୁମାନଙ୍କର ସନିର୍ବନ୍ଧ ଅନୁରୋଧ ଏଡ଼ି ନ ପାରି ପ୍ରାର୍ଥୀଙ୍କ ରଙ୍ଗ କ୍ଷେତ୍ରରେ ଛିଡ଼ା ହେବା ନିମନ୍ତେ ମୁଁ ସ୍ୱୀକୃତ ହୋଇଅଛି ।'' ଏଇଟା ହେଲା ପ୍ରାର୍ଥୀଙ୍କର ସର୍ବପ୍ରଧାନ ବୋଲି ଓ ଝୁଲି । ଅନିଚ୍ଛାସତ୍ତ୍ୱେ, ଅସୁବିଧାସତ୍ତ୍ୱେ ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ, ମୁଁ ସ୍ୱାର୍ଥ ତ୍ୟାଗ କରି, ନିଜର ବ୍ୟବସାୟରେ କ୍ଷତି କରି ମେମ୍ବର ହେବାକୁ ସ୍ୱୀକୃତ ହୋଇଅଛି । ଏ କଥାଟା ପ୍ରାର୍ଥୀଙ୍କ ମୁହଁରୁ ଯେପରି ଦିନରାତି ଅନର୍ଗଳ ବାହାରିବ, ପ୍ରାର୍ଥୀ ଏଥି ନିମନ୍ତେ ସର୍ବଦା ଚେଷ୍ଟା କରିବେ । ଏଇଟି ନ ହେଲେ ସବୁ ବିଗିଡ଼ିବ ।

୬ । ଦେଶର ମୁଖିଆ ମୁଖିଆ କେତୋଟି ଲୋକ ବାଛି ତାଙ୍କ ସଙ୍ଗେ କାମ ହାସଲ ଆଦାନ ପ୍ରଦାନର ଘରୋଇ ଚୁକ୍ତି କରି ତାଙ୍କରି ନାମଟା ଦାଣ୍ଡରେ ବିକି ଆପଣା କାମ ହାସଲ କରିବାକୁ ଯତ୍ନ କରିବ । ଏଇଟା ହେଲା 'ଦେ କଉଡ଼ି ଖା ପିଠା' ନୀତି । ''ତୁମେ

ମୋ ଲାଗି ଏତକ କରି ତୁମ ନାମଟା ମତେ ଉଧାର ଦିଅ, ମୁଁ ତୁମପାଇଁ ଅମୁକ କାମ କରିଦେବି ଓ ଉଧାର ମାଣକ ପାଞ୍ଚପା'ରେ ଶୁଝିଦେବି ।'' ଏ ସବୁ ପର ଅନୁସରଣିଆ କାମରେ ଜଣକୁ 'କପା କିଆରିରେ ଗୋରୁମୁଣ୍ଡ ନ୍ୟାୟ' ଥାପିବା ଏକାନ୍ତ ଦରକାର । ଆମ ଦେଶରେ ମଧ ଲୋକେ କଥା କଥାକେ ''ଦ୍ୱାହି ଶ୍ରୀମତୀ ମହାରାଣୀ, ଦ୍ୱାହି ଜଗନ୍ନାଥ ମହାପ୍ରଭୁ, ଦ୍ୱାହି ଭାଗବତ ଗୋସାଇଁ, ଦ୍ୱାହି ଲୋକନାଥ, ଦ୍ୱାହି କାଳୀ ଠାକୁରାଣୀ, ଦ୍ୱାହି ବନମାଳିଆ ଭାଇର ନିଶ'' କରନ୍ତି । ଏ ଦ୍ୱାହି ପ୍ରଥା ଦ୍ୱାରା ଉଦ୍ଦେଶ୍ୟଗୁଡ଼ାକ ଝଟପଟ ହାସଲ ହୋଇଯାଏ । ସମସ୍ତଙ୍କ କପାଳକୁ ଏପରି 'ଗୋରୁମୁଣ୍ଡ' ମିଳନ୍ତି ନାହିଁ । ଯାହାଙ୍କୁ ମିଳିଲେ ସେ ଫଳ ସମ୍ବନ୍ଧରେ ନିଶ୍ଚିନ୍ତ ହୋଇ ବସିବେ ।

୭ । ପୁରୁଣା ଅରୁଆଅନ୍ନ, ସୁନାମୁଗ ଡାଲି, ହୈୟଙ୍ଗବୀନ, ଦିଶୁ, ସରୁ ଚୁଡ଼ା, ପୋଟଳ, ବନ୍ତଳ କଦଳୀ, ଅମୃତପାଣି ପାଚଲା କଦଳୀ, ପସାରୁଣୀ ପତ୍ର, ଏଗୁଡ଼ିକ ପ୍ରାର୍ଥୀଙ୍କ ପକ୍ଷରେ ସୁପଥ୍ୟ । ବିରିଡାଲି, ଆଳୁଦମ, ଛୋଟ ବଡ଼ ମାଛ, ଲଙ୍କାମରିଚ, ଗରମମସଲା, ମାଂସର କୌଣସି ଅବତାର, ଏଗୁଡ଼ିକ ପ୍ରକାଶିତ ଅପଥ୍ୟ । (ନୋଟ୍ - ପାଠକ ଅବଧାନ ! ଏ ହେଡ଼ିଙ୍ଗଟି ମୁଁ ସମଝିପାରି ନାହିଁ । ଏପରି ହୋଇପାରେ ଯେ, ପ୍ରାର୍ଥୀ ନିଜ କାର୍ଯ୍ୟ ହାସଲ ନିମନ୍ତେ ବାର ଦ୍ୱାର ହୋଇ ଓ ଚିନ୍ତା କରି ରାତି ଅନିଦ୍ରା ହେଲେ ଗୁରୁପାକ ଜିନିଷ ଓ ବିରିଡାଲି ଖାଇଲେ ଆମାବାଇ ଧରିବାର ଆଶଙ୍କା ହେବ ଏଥିପାଇଁ, ଅଥବା ନନା ନିଜ ବ୍ୟକ୍ତିଗତ ଅନୁଭବରୁ ଏଗୁଡ଼ିକ ଭୁଲକ୍ରମେ ଟିପି ଦେଇ ଅଛନ୍ତି । ଏ ବିଷୟ ପାଠକମାନଙ୍କ ବିଚାର୍ଯ୍ୟ ।)

୮ । ଏ ଉଦ୍ଦେଶ୍ୟରେ ଗସ୍ତ କରିବାକୁ ହେଲେ ନିଷ୍ପାଦୁକା, ନିଶ୍ଛତ୍ର, ନିଷ୍ପୁର୍ତ୍ତା, ନିଷ୍ପିଅର ହୋଇ ଗସ୍ତ କରିବା ରେଳରେ ଯିବାକୁ ହେଲେ ଚାକର ପାଇଁ ସେକେଣ୍ଡ କ୍ଲାସ ଓ ଆପଣା ପାଇଁ ଥାର୍ଡ଼ କ୍ଲାସ ଟିକଟ୍ କରିବାକୁ ହେବ ।

୯ । ପ୍ରତିଦ୍ୱନ୍ଦ୍ୱୀମାନଙ୍କର ଯଥାସମ୍ଭବ ନିନ୍ଦା ରଟନା କରାଇବ । ସେ ସମ୍ବନ୍ଧରେ ପାର୍ଶ୍ୱଚରମାନଙ୍କ ଦ୍ୱାରା ପ୍ରମାଣ ସଂଗ୍ରହ କରିବ । ସାଧାରଣରେ, ସଲାମତିରେ, ସମ୍ବାଦପତ୍ରରେ ଘୋଷଣା କରାଇବ । କିନ୍ତୁ ପ୍ରକାଶ୍ୟରେ କଥା ପଡ଼ିଲେ ପ୍ରତିଦ୍ୱନ୍ଦ୍ୱୀଙ୍କ ପ୍ରତି ତୁମ୍ଭର ଅଚଳା ଭକ୍ତି, ଅଚଳା ପ୍ରୀତି, ଅତଳା ସ୍ନେହ, ଅତଳା ପ୍ରେମ ଥିବାର ଘୋଷଣା କରିବ । ସେ ସମୟରେ ଯେବେ କେହି ପାର୍ଶ୍ୱଚର ତୁମ୍ଭ ପ୍ରତିଦ୍ୱନ୍ଦ୍ୱୀଙ୍କ ନାମରେ କିଛି ଅକ୍ରିୟାର କଥା କହନ୍ତି, ତୁମେ ସେତେବେଳେ କହିବ, ''ଛି ! ଜଣେ ଭଦ୍ରଲୋକ ନାମରେ ନିନ୍ଦା ରଟନା କରିବା ଉଚିତ ନୁହେଁ । ପରକୁ ନିନ୍ଦା କରି ମୁଁ କାର୍ଯ୍ୟ ଲାଭ କରିବାକୁ ପ୍ରୟାସୀ ନୁହେଁ ।''

୧୦ । ଯେଉଁ ଯେଉଁମାନେ ଭୋଟ ଦେବାର ଅଧିକାରୀ, ସେମାନଙ୍କ ଘରେ ଯେବେ ତୁମ ତରଫରୁ କେହି ଲୋକ ଚାକର ହୋଇ ରହିପାରିବେ, ତେବେ ତ ଅତି ଉତ୍ତମ,

ତାହାହେଲେ ତୁମର ପ୍ରତିଦ୍ୱନ୍ଦ୍ୱୀମାନେ କି କେତେବେଳେ ଭୋଟଦାତାଙ୍କ ନିକଟକୁ ଆସି ତାଙ୍କୁ କିପରି କରାୟତ୍ତ କରିବାକୁ ବସିଅଛନ୍ତି, ତାହାର ସମ୍ବାଦ ତୁମ୍ଭଙ୍କୁ ମିଳୁଥିବ । ଯେଉଁ ସ୍ଥାନରେ ଏପରି ସୁଯୋଗ ମିଳିବା ଅସମ୍ଭବ, ସେଠାରେ ଭୋଟରଙ୍କ ପାଖ ଲୋକ ଓ ସାଙ୍ଗସୁଖମାନଙ୍କ କମରକୁ ଟାଣୁଆ କରି ସମସ୍ତ ସମ୍ବାଦ ସଂଗ୍ରହ କରିବାକୁ ହେବ ।

୧୧ । ଗୁଡ଼ିଏ ଲୋକନାଥ ଧଣ୍ଡା, ଶୁଖୁଲି ମହାପ୍ରସାଦ, ନିର୍ମାଲ୍ୟ କୋଥଳି, ବେକୁଲି ସାହୁ ଦଣ୍ଡା ମାଟି ଆପଣା ଗଣ୍ଡିରିରେ ରଖି ଗସ୍ତ କରିବାକୁ ହେବ ।

୧୨ । ପିଲାଦିନଠାରୁ ଆଜିପର୍ଯ୍ୟନ୍ତ ନିଜେ ଯେତେଗୁଡ଼ିଏ ଅମାନୁଷିକ, ଅତିମାନୁଷିକ, ଅଭୌତିକ ଓ ଅସାଧାରଣ କାର୍ଯ୍ୟ କରିଥିବାର ମନେ ପଡ଼ିବ ବା କଳ୍ପିତ ହେବ, ସେଗୁଡ଼ିକ ଲିପିବଦ୍ଧ କରି ଗୁଡ଼ିଏ କାଗଜ ଛାପି ତାହା ଦେଶତମାମ ବିକିରଣ କରିବାର ବନ୍ଦୋବସ୍ତ କରିବେ ।

୧୩ । ନିର୍ବାଚନ ତାରିଖକୁ ଖଣ୍ଡକେତେ ଭଡ଼ାଗାଡ଼ି ଓ ଖାଦ୍ୟାଖାଦ୍ୟ, ପେୟାମୟ, ଲେହ୍ୟାଲେହ୍ୟ ବନ୍ଦୋବସ୍ତ କରି ରଖିବାକୁ ହେବ ।

(ପାଠକ ଅବଧାନ ଓ ପ୍ରାର୍ଥୀମାନେ ! ଏତିକିରେ ନନାଙ୍କ ତାଲିକା ଶେଷ ହେଲା ବୋଲି ଆପଣମାନେ ମନେ କଲେ ଜାଣିବେ ଯେ, ଆପଣମାନେ ମୋଠାରୁ ମଧ ବେକୁବ୍ ।)

ଉତ୍କଳ ସାହିତ୍ୟ/୨୦ଶ ଭାଗ/୨ୟ ସଂଖ୍ୟା/୧୩୨୩ ସାଲ ।

## ।। ପନ୍ଦର ।।

### ଇତିଶ୍ରୀ ଅଧ୍ୟାୟ ।

ନନାଙ୍କ ବସ୍ତାନିଟା ଘଣ୍ଟାଘଣ୍ଟି କରି ଯେତେବେଳେ ବେଳକାଳ ଚାହିଁ କିଛି ମାଲମସଲା ହାବୁଡ଼ରେ ପଡ଼େ, ତାହା ଛଙ୍କାଛଙ୍କି କରି ଆପଣମାନଙ୍କ ହଜୁରରେ ଥୋଇଦିଏଁ ଓ ସେଥିରୁ କେତେବେଳେ ଅର୍ଥ, ଅନର୍ଥ, ସ୍ୱାର୍ଥ, ପରାର୍ଥ କେତେ ପ୍ରକାର କାମ ହାସଲ ହୋଇଯାଏ । ଏ ଥରକ ଦେଖିପାରୁଛି ଯେ, ନନାଙ୍କ ବସ୍ତାନିର ଅପ୍ରକାଶିତ ଅଂଶଗୁଡ଼ିକ ବେଳେ ବେଳେ ବଡ଼ କଷ୍ଟ ହୋଇ ପଡ଼ୁଅଛି । ମୋ କଥା ଦୂରେ ଥାଉ, ଆମ ଦେଶର କେତେ ବଡ଼ମୁଣ୍ଡିଆଗୁଡ଼ାକ ମଧ ଘଡ଼ିଏ ଖଣ୍ଡେ ଘାଉଁରି ଖାଇ ଯାଉଅଛନ୍ତି । ପାଠକମାନଙ୍କୁ ଉତ୍ତମରୂପେ ଜଣା ଯେ, ଲେଖକ ମଉସୁଫ ଦିନାକେତେ ସ୍ୱାଧୀନ ଓକିଲାତି ପେସା ଛାଡ଼ି ସରକାର ବାହାଦୁରଙ୍କର ଭତାଖିଆ ଓକିଲାତି କାର୍ଯ୍ୟ କରି ବାହାଦୁରି ହାସଲ କରିବା ଲାଗି ଲେଖକର କଟକଠାରେ ହୋଇଥିବା ବ୍ୟାବସାୟିକ ପ୍ରତିପତ୍ତିର (ପ୍ରତିପତ୍ତି କହ, ପ୍ରତିଷ୍ଠା କହ, ସଂସାର କହ, ଗୃହ କହ, ପସାର କହ

କିମ୍ବା ରୋଜଗାରିଆ ଅବସ୍ଥା କହ- ଗୋଟାଏ କିଛି ଶବ୍ଦ ବ୍ୟବହାର କଲେ ହେଲା) ମାୟା ତ୍ୟାଗ କରି ପୁରୀଠାରେ ଆସନ ଜମାଇବାକୁ ଯାଇଥିଲା । ପୁରୀ କଥା ଶାସ୍ତ୍ରରେ ଶୁଣାଅଛି, ''ଗଙ୍ଗାୟାଂ ଚ ଜଳେ ମୁକ୍ତିର୍ବାରଣାସ୍ୟାଂ ଜଳେ ସ୍ଥଳେ । ଜଳେ ସ୍ଥଳେ ଚାନ୍ତରୀକ୍ଷେ ମୁକ୍ତିଃ ଶ୍ରୀପୁରୁଷୋତ୍ତମେ ।'' ଏହି ହିସାବରେ ଲେଖକ ମନେ ମନେ ଗୋଟାଏ ଭାରି ଗେଣ୍ଠ ବାନ୍ଧି ଯାଇଥିଲା ଯେ, ପୁରୀଠାରେ ଯାଇ ଲେଖକର ଐହିକ ଓ ପାରତ୍ରିକ ଉଭୟ ପ୍ରକାର ଉନ୍ନତି ହେବ । ଘଟନାଚକ୍ରରେ ପୁରୀ ମଧ୍ୟ ଲେଖକର ବଂଶର ଆଦିମ ବସତି ଏବଂ ପୁରୀ ଜିଲ୍ଲାର ବୀରଗୋବିନ୍ଦପୁର ଶାସନରେ ଥିବା ଲେଖକର ପ୍ରପିତାମହ କିଣାଇ ଆଚାର୍ଯ୍ୟଙ୍କ ଅମଳର ସାବକ ଘରଡିହକୁ (ଯାହାକି ଲେଖକର ପୂର୍ବପୁରୁଷମାନେ ପୁରୀଜିଲ୍ଲା ଛାଡ଼ି କଟକରେ ବସତି କରିବା ପରେ ବହୁ କାଳରୁ ଅନ୍ୟ ବ୍ୟକ୍ତିମାନଙ୍କର ହସ୍ତଗତ ହୋଇଥିଲା) ଅନୁସନ୍ଧାନ କରି ତହିଁର ଠିକଣା ଲଗାଇ ସେ ଖଣ୍ଡକ ଲେଖକ ପୁରୀ ଅବସ୍ଥାନ ସମୟରେ ଖରିଦ କରି ପାରିଅଛି । ତଦ୍‌ପରେ ଲେଖକର କନ୍ୟାର ଶ୍ୱଶୁରାଳୟ ମଧ୍ୟ ଶ୍ରୀକ୍ଷେତ୍ରରେ । ଅତଏବ ଲେଖକ ପୁରୀଠାରେ ସରକାରଙ୍କର ଓକିଲ ହେବା ଦ୍ୱାରା ପୂର୍ବପୁରୁଷ, ପରପୁରୁଷ ଓ ନିଜ ପୁରୁଷ ଏ ସମସ୍ତଙ୍କୁ ଉଦ୍ଧାର କରିପାରିବ, ଏହି ହେମତରେ କଟକ ଛାଡ଼ି ପୁରୀ ଯିବାକୁ ପ୍ରସ୍ତୁତ ହୋଇଥିଲା ଓ ପୁରୀ ଯାଇ ଆସ୍ଥାନ ଜମାଇବା ପୂର୍ବରୁ 'ରାୟ ସାହେବ' 'ରାୟ ବାହାଦୁର' 'ନୀତି ରତ୍ନ' 'ବିଦ୍ୟାପ୍ରଦୀପ' 'ଗୁଣରତ୍ନ' ଏହିପରି କେତେଗୁଡ଼ିଏ ସରକାରୀ ଓ ବେସରକାରୀ ଖେତାବର ଚିତ୍ର ଲେଖକର ମନୋନୟନକୁ ଝଲସାଇ ପକାଇଥିଲା । କିନ୍ତୁ ସେ ସମୟରେ ଏହି ସବୁ ଐହିକ ଓ ପାରତ୍ରିକ ଚିତ୍ରମାନଙ୍କ ଦାଉରୁ 'କାଳୁଦାସଙ୍କ ଅନୁଭବ' କଥା ଲେଖକ ଏକଦମ ପାସୋରି ପକାଇଥିଲା । କାଳୁଦାସେ ସଂସାରଟାକୁ ଜିଣିଥିଲେ ସତ୍ୟ, କିନ୍ତୁ ବିଦ୍ୟାନଗରୀର କେଉଟୁଣୀର (ଓରଫ ନୋଳିଆଣୀ) ଖଡ୍ଗ ଆଗରେ ତାଙ୍କ ବିଦ୍ୟାର ପ୍ରତାପ କେଉଁଆଡ଼େ ଉଭେଇ ଯାଇଥିଲା । ଏ କଥା ସେତେବେଳେ ପାସୋରି ପକାଇ ଲେଖକ ଭୁସ୍‌କିନି ସରକାରୀ ପାହିଆଟିକୁ ହାତ ବଢ଼ାଇ ଦେଲା । ପ୍ରଥମେ ପ୍ରଥମେ ଖୋଦ ଜଗନ୍ନାଥେ ଲେଖକର ଦେହର ବେଣେର ଜିଲ୍ଲାର ଆଇଁଷିଣିଆଁ ଗନ୍ଧ ବାରିଲେ । ତଦ୍‌ପରେ ଲେଖକ ଦିନାକେତେ ପୁରୀକ୍ଷେତ୍ରର କଟୁଆଳ, ଖୋଦ ଲୋକନାଥ ଶଙ୍କରଙ୍କର ଫଣାଧାରୀ ଭୂଷଣମାନଙ୍କ ଦାଉରୁ ଆପଣାକୁ ରକ୍ଷା କରିବା ନିମନ୍ତେ ନାନା ଉପାୟ ଅବଲମ୍ବନ କରିଥିଲା ଓ ଶ୍ରୀ ଜଗବନ୍ଧୁଙ୍କ ଦୟାରୁ ଲେଖକ ପୁରୀଠାରେ ଦୁଃଖେ ସୁଖେ ତିନୋଟି ସଂବତ୍ସର କଟାଇ 'ପୁନର୍ମୂଷିକୋଭବ' ହୋଇ କଟକ ଫେରିଆସିବାକୁ ସମର୍ଥ ହୋଇଅଛି । ଲେଖକର ପୁରୀ-ଅନୁଭୂତିଗୁଡ଼ିକ ଦୁନିଆର ହାଲଚାଲର ପାଠକମାନଙ୍କୁ ଅଳ୍ପ ବହୁତ ମାଲୁମ । ଲେଖକର ପୁରୀ ଅବସ୍ଥିତି ସମୟରେ ପିତୃଦେବଙ୍କର ସ୍ୱର୍ଗପ୍ରାପ୍ତି ହେଲା ଓ 'ନନାଙ୍କ ବସ୍ତାନି' ଖଣ୍ଡ ଲେଖକର ହାବୁଡ଼ରେ ପଡ଼ିବାରୁ ଲେଖକ ସେଥିରୁ

ମାଲମସଲା ସାଉଣ୍ଟି ବେଳ କାଳ ଉଣ୍ଡି ସେଗୁଡ଼ିକ ପାଠକମାନଙ୍କୁ ଉପହାର ଦେବାରେ ତ୍ରୁଟି କରି ନାହିଁ । ଅନେକ ହିତାକାଙ୍‌କ୍ଷୀ ବନ୍ଧୁ ଲେଖକର ଭବିଷ୍ୟଦ୍ ସମ୍ବନ୍ଧରେ ସନ୍ଦିହାନ ହୋଇ ଲେଖକକୁ ପ୍ରଶ୍ନ କରିଅଛନ୍ତି,- "କଟକରେ ଉଦୀୟମାନ ବ୍ୟାବସାୟିକ ପ୍ରତିପତ୍ତି ଓ ବିସ୍ତୃତତର କର୍ମକ୍ଷେତ୍ର ଛାଡ଼ି ତିନୋଟି ବର୍ଷ ପୁରୀରେ କଟାଇବା ସୁବିବେଚନାର କାର୍ଯ୍ୟ ହୋଇଅଛି କି ?" ଲେଖକର ଭବିଷ୍ୟଦ୍ ଜୀବନର ଘଟନାବଳୀ ଏ ପ୍ରଶ୍ନରୁ ଅବଶ୍ୟ ମୀମାଂସା କରିବ । ତେବେ ଲେଖକର ଏତିକି ମାତ୍ର ଆଶ୍ୱାସନା ଅଛି ଯେ, ପୁରୀର ଅନୁଭୂତିଗୁଡ଼ିକ ଲେଖକର ଅବଶ୍ୟ ଦରକାରବେଳେ କର୍ମରେ ଆସିବ । ଯାହା ହେଉ ସେ ବ୍ୟକ୍ତିଗତ ଅନୁଭୂତିଗୁଡ଼ିକ ପ୍ରକାଶ କରି ନିଜକୁ ତୁଳା ପକାଇ ମୋଟ କରି ପାଠକମାନଙ୍କ ସମୟ ନଷ୍ଟ କରିବା ଲେଖକର ଅଭିପ୍ରାୟ ନୁହେଁ । ସେଗୁଡ଼ିକ ସମୟରେ "ଶ୍ରୀକ୍ଷେତ୍ରର ହାଲଚାଲ ଅର୍ଥାତ୍ ମାଦଳା ପାଞ୍ଜିରୁ ବିଡ଼ାଏ" ନାମରେ ପ୍ରକଟିତ ହେବ ବୋଲି ଲେଖକର ବାସନା । ସେହି ହାଲଚାଲରେ ପୁରୀର ବଡ଼ଦେଉଳ, ବଡ଼ଠାକୁର, ବଡ଼ମଠ, ବଡ଼ମହନ୍ତ, ବଡ଼ଦାଣ୍ଡ, ବଡ଼କଇଞ୍ଚ, ବଡ଼ସ୍କୁଲ, ବଡ଼ଲୋକ, ବଡ଼ରଜା, ବଡ଼ଦରିଆ, ବଡ଼ନାଟୁଆ, ବଡ଼ନେତା, ବଡ଼ପଣ୍ଡିତ, ପୁରୀର ସବୁ ବଡ଼ବଡୁଆଙ୍କ ରୀତି ଅରୀତି ନୀତି, ଅନୀତି, ଭୀତି, କୀର୍ତ୍ତି, ସ୍ଥିତି, ଗତି, ସମସ୍ତ କଲମବନ୍ଦ କରିବାର ବାସନା ଅଛି । ଯେ ହେଉ ସେ କଥା ପଛ କଥା । ଆଗତ କଥା ଉପରେ ନିର୍ଭର କରି ଆପଣମାନଙ୍କ ନିକଟରେ ଗୋଟାଏ ଚୁକ୍ତିରେ ବନ୍ଧାବନ୍ଧି ହେବା ଆଇନମତେ ବିଜ୍ଞତାର କାର୍ଯ୍ୟ ହେବ ନାହିଁ ବୋଲି ଲେଖକ ଏଠାରେ କୌଣସି ଏଗ୍ରିମେଣ୍ଟ ଦେବାକୁ ଅକ୍ଷମ ଓ ଅନିଚ୍ଛୁକ । ବର୍ତ୍ତମାନ ଆପଣମାନଙ୍କ ମୂଲ୍ୟବାନ୍ ସମୟ ନଷ୍ଟ କରିବାର ଅଭିପ୍ରାୟ ଏହିକି ଯେ, ନନାଙ୍କ ବସ୍ତାନିରେ ବାକି ଥିବା ମାଲମସଲାମାନ ଉଦ୍ଧାର କରି ସେ ସବୁ ଆଣି ହଜୁରରେ ମାସକୁ ମାସ ଲାଗୁଆ କରି ପହଞ୍ଚାଇବା କାର୍ଯ୍ୟ ଲେଖକ ପକ୍ଷରେ ବର୍ତ୍ତମାନ କଷ୍ଟସାଧ ହୋଇ ପଡ଼ିଅଛି । ବିଶେଷତଃ ପିତୃଦେବ ଯେଉଁ ଯେଉଁ ମହାତ୍ମାମାନଙ୍କ ସମ୍ବନ୍ଧରେ ତାଙ୍କ ବସ୍ତାନିରେ ଟୀକା ଟିପ୍ପଣୀ ସାଇତି ରଖି ଯାଇଅଛନ୍ତି, ସେ ମହାତ୍ମାମାନେ ନିଜ ନିଜର ଚିତ୍ର ଦେଖି ବେଳେବେଳେ ଚିହିଁକି ଉଠିବାର ଲେଖକର ଅନୁଭବକୁ ଆସିଅଛି । ସେ ଚିହିଁକାର ଦାଉର କରାମତି ନନାଙ୍କଠାରେ ବାଜିବା କାଠିକର ପାଠ । ଏଥିପାଇଁ ସେ ଦାଉଗୁଡ଼ାକର ମୁନ ଲେଖକ ପେଟରେ ବାଜିବା ସ୍ୱାଭାବିକ । ଏଥିପାଇଁ ଲେଖକର ଆଧୁନିକ ଅବସ୍ଥିତି ଓ ବର୍ତ୍ତମାନ କଳିଷଠାରେ ଦଶପଣିଆ ଦଖଲ ଅବସ୍ଥାକୁ ବିଚାର କରି ଲେଖକ ବର୍ତ୍ତମାନ ହାତେ ମାପି ଚାଖଣ୍ଡେ ଚାଲିବାପାଇଁ ବାଧ ହୋଇଅଛି । ଅତଏବ ନନାଙ୍କ ବସ୍ତାନିକୁ ବସ୍ତାନି କନାରେ ବାନ୍ଧି ଫେର ନନାଙ୍କ ଟ୍ୟଙ୍କ ପେଟରାରେ ପୁନର୍ମୂଷିକୋଭବ କରି ରଖିବାକୁ ଲେଖକ ସଂକଳ୍ପ କରିଅଛି । ଏ ସଙ୍କଳ୍ପଟା କାର୍ଯ୍ୟରେ

ପରିଣତ କରିବା ସମ୍ବନ୍ଧରେ ସାହିତ୍ୟର ସମ୍ପାଦକ, ପାଠକ, ଉପପାଠକ, ପ୍ରପାଠକ, ଅଭିପାଠକ, ପରିପାଠକ ଓ ସେମାନଙ୍କ ଉଆଲି ଉଆରସ ଉତ୍ତରାଧିକାରୀ ଓ ସ୍ଥଳାଭିଷିକ୍ତମାନଙ୍କର କି କି ଆଇନସଙ୍ଗତ ଓ ବେଆଇନ ଆପତ୍ତିମାନ ଅଛି, ତାହା ଉଆଁକବ ହୋଇ ଫଏସଲା ନ ହେବା ପର୍ଯ୍ୟନ୍ତ ଏ ମକଦ୍ଦମା ମୁଲତବି ରଖାଯାଇ ନନାଙ୍କ ବସ୍ତାନିଟି ଦରମୁକୁଳା ଅବସ୍ଥାରେ ରହିଲା ।

ଉତ୍କଳ ସାହିତ୍ୟ/୨୦ଶ ଭାଗ/୪ର୍ଥ ସଂଖ୍ୟା/୧୩୨୩ ସାଲ ।

## ।। ଷୋହଳ ।।

ପାଠକ ଅବଧାନମାନେ ଓ ସମ୍ପାଦକ ମଣିମା, ନନାଙ୍କ ବସ୍ତାନିଟି 'ଇତିଶ୍ରୀ' ଅଧ୍ୟାୟ ଗତ ସଂଖ୍ୟା ଉତ୍କଳ ସାହିତ୍ୟରେ ବାହାର କରି ଲେଖକ ଏକପ୍ରକାର ନିଶ୍ଚିନ୍ତ ହୋଇଥିଲେ । ଏଥି ମଧ୍ୟରେ ଘଟନାଚକ୍ରରେ ଲେଖକ ବାଙ୍କିପୁର, କଲିକତା, ବାଲେଶ୍ୱର ଓ ଗଞ୍ଜାମ ଅଞ୍ଚଳକୁ ଗସ୍ତ କରିଥିଲେ । ନନାଙ୍କ ବସ୍ତାନିଟା ଆହୁରି ଥରେ ଝଡ଼ାଝଡ଼ି କରିବା ଦରକାର ବୋଲି ଓଡ଼ିଶୀ ବନ୍ଧୁମାନଙ୍କର ମତ ଅଟେ । ଏଥିପାଇଁ ନନାଙ୍କ ବସ୍ତାନିର ଆଳୁକୁଚି ମାଳୁକୁଚି ଗୁଡ଼ିକ, ସିହା, ଉଆରିଜା, ଢବର ଅଠା କରି ଲେଖକଙ୍କର କାଗଜାଗାର ବା ଅଳିଆ-ଆଗାରସ୍ଥ ଆଲମାରିରେ ଦ୍ୱାରିକା ଛାପା ମାରି ରଖିବାର ଭାର ଲେଖକଙ୍କ କୁଳଚନ୍ଦ୍ର ସାର୍ଥକନାମା ଶ୍ରୀମାନ୍ ବାବାଜି ଚନ୍ଦ୍ରଶେଖରଙ୍କ (ଯାହାଙ୍କର ପଢ଼ାର କରାମତି ବର୍ତ୍ତମାନ ରେଭେନ୍ସା କଲିଜିଏଟ୍ ସ୍କୁଲର ଥାର୍ଡ଼ କ୍ଲାସକୁ ଗ୍ରାସ କଲାଣି ଓ ଆଗାମୀ ବର୍ଷ ଫେର ସେହି କ୍ଲାସକୁ ଗ୍ରାସ କରିବ କି ନାହିଁ, ଏ ପ୍ରଶ୍ନ ଲେଖକଙ୍କ ମନକୁ ଆଜହୁଁ ଆଲୋଡ଼ନ କଲାଣି) ଉପରେ ନ୍ୟସ୍ତ କରାଯାଇଅଛି । ଏଥି ମଧ୍ୟରେ ବାବାଜି ଆମ୍ଭଙ୍କୁ ନୋଟିସ ଦେଇ ଅଛନ୍ତି ଯେ, ନନାଙ୍କ ବସ୍ତାନିର ପୀଠିକା ପତ୍ରଗୁଡ଼ିକ ଆମେ ତଦାରଖ ନ କରି ପାଠକମାନଙ୍କୁ ଧପା ମାରିବାକୁ ବସିଥିଲୁଁ କିନ୍ତୁ ସେ ପୀଠିକାତକ (ଓଡ଼ିଶାର ପୁରୁଣା ତାଳପତ୍ର ପାଞ୍ଜି ଘଣ୍ଟାଘଣ୍ଟି କରିବା ଯେଉଁମାନଙ୍କର ଅଭ୍ୟାସ, ସେମାନେ ଏ 'ପୀଠିକା' ଶବ୍ଦଟା ବୁଝିପାରିବେ । ପୀଠିକାଟାର ଆଧୁନିକ ଅର୍ଥ Title page, ଫେରସ୍ତ ହେଲା Index । ନନା ଆମର ବସ୍ତାନି ବିଡ଼ାଟି ଗୋଟିଏ ପାଞ୍ଚ ପରସ୍ତି ହରିତାଳି କାଗଜରେ ଗୁଡ଼ାଇ ତାହା ବସ୍ତାନି କନାରେ ବାନ୍ଧି ରଖିଥିଲେ । ବାବା ଚନ୍ଦ୍ର ସେହି ପୀଠିକାଖଣ୍ଡକୁ ଉଦ୍ଦେଶ୍ୟ କରି ଆମ ପ୍ରତି ଏ ହପ୍ତା ଉଠାଇ ଅଛନ୍ତି !) ମାଇନା ନ କରି ଆମ୍ଭେ ଅନ୍ୟାୟ କରିଅଛୁଁ । ପାଠ ଡାକୁଛି, ''ସର୍ବତୋ ଜୟମିଚ୍ଛନ୍ତି ପୁତ୍ରାନ୍‌ମିତ୍ରାଦ୍ ପରାଜୟଂ ।'' ହଉରେ ବାବା ! କିଛି ବ୍ୟସ୍ତ ନାହିଁ । ପଢ଼ିଶୁଣି ମଣିଷ ହେଲ ଓ ହେବ । ଏପରି ସ୍ଥଳରେ ଯେବେ ପୀଠିକାତକ ମାଇନା କରି କିଛି ପ୍ରାଚ୍ୟ, ପ୍ରତୀଚ୍ୟ, ଉଦ୍ୟଚ୍ୟ, ଅବାଚ୍ୟ ତତ୍ତ୍ୱ ବାହାର

କରିପାରିବ, ତେବେ ଅତି ଆନନ୍ଦ କଥା ଓ ସେଗୁଡ଼ିକ ନନାଙ୍କ ବସ୍ତାନିର ଅଂଶ ରୂପେ ଗ୍ରହଣ କରିବାକୁ ଲେଖକ ଓ ଲେଖକଙ୍କର ପାଠିକା ମଧ୍ୟ ପ୍ରସ୍ତୁତ ରହିବ । ନୋଟିସର ମିଆଦି ୧୫ ଦିନ ଥିଲା- ମିଆଦି ମଧ୍ୟରେ ଉପରୋକ୍ତ ଭାବରେ ବାବାଜିଙ୍କୁ ରେଜିଷ୍ଟରି ଡାକରେ ଓକିଲଙ୍କ ଜରିଆରେ ରଦ୍ଦ ଜବାବ ଦେଇଅଛୁଁ । ବାବାଜି ମଧ୍ୟ ଏଥିର କଦ ଜବାବ ଦେବେ ବୋଲି ଆଶା କରାଯାଏ । ରଦ୍ଦକଦ ହୋଇ କଥାଟା ହଦ୍ଦ ଜବାବ ପର୍ଯ୍ୟନ୍ତ ଗଲେ ସାହିତ୍ୟର ପାଠକ ପ୍ରପାଠକମାନେ ଅବଶ୍ୟ ସେଥିରେ ଗନ୍ଧ ପାଇବେ । ଅତଏବ ଏତଦ୍ୱାରା ସାହିତ୍ୟ-ଇଲାକା-ବାସୀ ପକ୍ଷମାନଙ୍କୁ ନୋଟିସ ଦିଆଗଲା କି, ଦରକାର ବେଳେ କର୍ମରେ ଆସିବ ।

ଉତ୍କଳ ସାହିତ୍ୟ/୨୦ଶ ଭାଗ/୫ମ ସଂଖ୍ୟା/୧୩୨୩ ସାଲ ।

## ।। ସତର ।।

ପାଠିକା ମଏ ଫିରସ୍ତ । (ପ୍ରଥମ ଉଦ୍‌ଗୀରଣ)

ପାଠକମାନଙ୍କ ହଜୁର । ଗତ ପୂର୍ବଥର ଆପଣମାନଙ୍କଠାରୁ ତିନ୍ତୁଳିଚକଟା ବିଦାବିଦିଟାଏ ହୋଇ ଫେର ଗତ ଥର ଲେଖକଙ୍କର କୁଳଚନ୍ଦ୍ରଙ୍କ ଯୋଗୁଁ ନନାଙ୍କ ବସ୍ତାନିର ପାଠିକାରେ ଟିପାଟିପି ହୋଇଥିବା ବିଷୟଗୁଡ଼ିକ ସର୍ବସାଧାରଣଙ୍କ ଆଗରେ ଉପସ୍ଥାପିତ କରାଇବାର ଆଶା ଲେଖକ ଆପଣମାନଙ୍କୁ ଦେଇଥିଲା ।

କଳିଷଠାରୁ ଏଗାର ଅଣା ଦୁଇ ପାହି ଛ' ବିଶ୍ୱା ଖରଚ କରିସାରିବା ପରେ ମନୁଷ୍ୟର ବାକି ତହବିଲକୁ ହାତ ବଢ଼ାଇବା ଅବସ୍ଥାରେ ମନୁଷ୍ୟ ପର ଧନରେ ଓ ବନମାଳିଆ ଭାଇଙ୍କ ନିଶ ଉପରେ ଆପଣାର ବାହାଦୁରି ଦେଖାଇବାକୁ ମୁସ୍ତେଇ ହୋଇଥାଏ । କାରଣ ନିଜ ତହବିଲ କମ୍‌ତି ହେବା ସଙ୍ଗେ ସଙ୍ଗେ ନିଜ ତହବିଲରେ ବାକି ଥିବା ଚାରିଅଣା ନଅ ପାହି ପ୍ରତି ତାହାର ଗୋଟାଏ ବିଶେଷ ମାୟା ହୋଇଯାଏ । ଏଥିପାଇଁ ତହବିଲରେ ହାତ ମାରିବା ଅବଶ୍ୟମ୍ଭାବୀ ହୋଇଉଠେ । ଏ ହିସାବରେ ଦେଖିବାକୁ ଗଲେ ଲେଖକଙ୍କ ତହବିଲର ଜମା ଖରଚ ଓ ବର୍ତ୍ତମାନ ଚେଷ୍ଟାର ମୂଳ ସହଜରେ ଧରାପଡ଼ିବ । ଲେଖକ ଆପଣା ତହବିଲ ଖରଚ କରିସାରି ନନାଙ୍କ ବସ୍ତାନି ଅଣ୍ଟାଳି ସେତକ ରୁଣ୍ଡି ରାଣ୍ଡି ସାରିବା ପର ଉଆଲି ଉଆସର ଉତ୍ତରାଧିକାରୀଙ୍କ ଧନ ଉପରେ ବନ୍ଧୁ ଅର୍ଜିବାକୁ ତିଆରି ।

ଯାହାହେଉ ଶ୍ରୀମାନ୍ ବାବାଜି ଚନ୍ଦ୍ରଶେଖର (ଲେଖକଙ୍କର ଏକମାତ୍ର ନିର୍ବିବାଦ ବିରୋଧ ଉଆଲି ଉଆରସ ଉତ୍ତରାଧିକାରୀ ସ୍ଥଳାଭିଷିକ୍ତ, କାମ ମୋକାଏମ) ନନାଙ୍କ ବସ୍ତାନିର ପାଠିକାରୁ ଯେଉଁ ମସଲାମାନ ସଂଗ୍ରହ କରିଅଛନ୍ତି, ସେଗୁଡ଼ିକ ଅବିକଳ ସାଧାରଣରେ ପ୍ରକାଶ କରିବା ଠିକ୍ ଉଚିତ ବୋଧ ନ ହେବାରୁ ସେଥିରେ ଲେଖକ

''ଟୀକା ଉପରେ ଟିପ୍ପଣୀ'' କରି ଆବଶ୍ୟକସ୍ଥଳରେ ସଂଶୋଧନ କରି ଆପଣମାନଙ୍କ ସମ୍ମୁଖରେ ଭେଟିବାକୁ ସାହସୀ ହୋଇଅଛି । ତାହା ହେଲେ ହଠାତ୍ କିଛି ଗୋଟାଏ ଅଖାଙ୍କିଆ କଥା ବାହାରି ପଡ଼ିଲେ ରୋଗଟା ତିନିଭାଗିଆ ହୋଇ ବିଛଉଣି ହୋଇଯିବ ଓ ଲେଖକ ଉପରେ ବେଶିଗୁଡ଼ାଏ ଅଭିମାନର ବୋଝ ପଡ଼ିବ ନାହିଁ । ତଥାପି ''ତିନି ସେଣାରେ ପାଣି ଉଠିବା''ବେଳେ ବେଶି ପାଣିର ଭାଗ ତେଣ୍ଡା ଗାତରେ ପଡ଼େ । ଏଥୁଁ ବୁଝିବେ । ଅତଏବ, ପୀଠିକାର ଉପକରଣର ନମୁନା ଦେଖିବା ହେଉନ୍ତୁ, ଅବଧାନ !

ନନାଙ୍କ ବସ୍ତାନିର ପୀଠିକାରେ ଅନେକ ଶ୍ଳୋକ (କେଉଁଟା ପୂରା, କେଉଁଟା ଦରଖଣ୍ଡିଆ, କେଉଁଟା ମଝି ଗଡ଼ିଆ, କେଉଁଟା ନେଉଳ ଖଣ୍ଡିଆ, କେଉଁଟା ଗ୍ରହଣ ଖଣ୍ଡିଆ ଏହିପରି) ଟିପା ହୋଇଅଛି । ସେ ଶ୍ଳୋକରୁ ଅଧିକାଂଶ ଉଦ୍ଭଟ ଶ୍ଳୋକ ଅର୍ଥାତ୍ ବିଶେଷ ବିଶେଷ ଘଟନା, ସମୟ, ସ୍ଥାନ, ଅବସ୍ଥାକୁ ଲକ୍ଷ୍ୟ କରି ପୁରୁଣା କବିମାନେ ଯେଉଁ ଯେଉଁ ଶ୍ଳୋକ ରଚନା କରିଯାଇଅଛନ୍ତି, ସେହି ଶ୍ରେଣୀର ।

ମନୁଷ୍ୟ ପ୍ରକୃତିକୁ ଆପଣମାନେ ଉତ୍ତମରୂପେ ପର୍ଯ୍ୟାଲୋଚନା କଲେ ଦେଖିପାରିବେ ଯେ, ମନୁଷ୍ୟ ସବୁବେଳେ ଗୋଟାଏ ଆଶ୍ରା ପକଡ଼ିବାକୁ ଭଲ ପାଏ । କୌଣସି କାର୍ଯ୍ୟ କରିବାକୁ ଯିବା ପୂର୍ବରୁ ମନୁଷ୍ୟ ପଦ ପଦକେ ଶାସ୍ତ୍ରର ଦୁହାଇ, ଠାକୁରଙ୍କ ଦୁହାଇ, ବନମାଳିଆ ଭାଇର ଦୁହାଇ, ହାଇକୋର୍ଟ, ଅଷ୍ଟକଶଲ (High Court and Privy Council Rulings) ନଜିରର ଦୁହାଇ, ବଡ଼ବଡୁଆଙ୍କ ଦୁହାଇ, ପୂର୍ବେ ଘଟିଥିବା ସମଶ୍ରେଣୀୟ କାର୍ଯ୍ୟର (Precedent) ଦୁହାଇ ଦେଇ ଆପଣାର କାର୍ଯ୍ୟକୁ Justify ଅର୍ଥାତ୍ ସ୍ପଷ୍ଟୀଭୂତ କରେ । ଏତଦ୍ଦ୍ୱାରା ନିଜର ଅଯୋଗ୍ୟତା, ଅକ୍ଷମତା, ବିବେକ ମସୃଣ ହୋଇଯାଏ । ଯଥା- କୌଣସି ସଭାସମିତିରେ ମୋର ପାଟି ଫିଟିଲା ନାହିଁ । ବନ୍ଧୁମାନେ ପଚାରିଲେ, ହଇହେ ଆପଣେ ! ତୁନିଟି ହୋଇ ବସିରହିଲ କାହିଁକି ? ଏଥିର ଉତ୍ତରରେ ନିଜର ଫମ୍ପସା ପେଟଟା ପ୍ରଶ୍ନକର୍ତ୍ତାଙ୍କୁ ନ ଦେଖାଇ ''ଦର୍ଦ୍ଦୁରା ଯତ୍ର ବକ୍ତାରସ୍ତତ୍ର ମୌନଂ ହି ଶୋଭନଂ'' କହିଦେଲେ ପାଠଟା ବଡ଼ ସରଳିଆ ହୋଇଯାଏ ।

ପ୍ରଶ୍ନ - କିହୋ ହାକିମଙ୍କ ହଜୁର । ନିର୍ଦ୍ଦୋଷଟାକୁ ମାମୁ ଘରକୁ ଠେଲିଦେଲ କାହିଁକି ?

ଉତ୍ତର- କଲିକତା ଲରିପୋଟ ୫୨ ଭଲୁମ ୬୦୫ ପୃଷ୍ଠା । (ନୋଟ୍- ଏହା ବୋଲି ପାଠକ ଅବଧାନ ଏ ନଜିରଟା ଖୋଜି ପକାଇବେ ନାହିଁ । କାରଣ ଏଇଟା ଗୋଟାଏ ଉଦାହରଣ ଛଳ ମାତ୍ର ।)

ପ୍ରଶ୍ନ - କିହୋ ପଥିକ ! ଏ ଦେଶ ଛାଡ଼ି ପଳାଉଛ କିଆଁ ହୋ ?

ଉତ୍ତର- ''ଏଷା ଯତ୍ର ବିଚାରଣା ଗୁଣିଗଣେ ଦେଶାୟ ତସ୍ମୈ ନମଃ ।'' ''ଭୃଙ୍ଗା ପୁନର୍ବିକଚ ପଦ୍ମବନେ ଚରନ୍ତି ।''

ପ୍ରଶ୍ନ - କିହୋ ! ବ୍ୟବସାୟ-ଗ୍ରସ୍ତ ମହାପୁରୁଷ । ତୁମର ଏତେ ଲୋଭ କାହିଁକି ?

ଉତ୍ତର- ''ତ୍ୱାଶାବଧ୍ୱଂ କୋ ଗତଃ ।''

ପ୍ରଶ୍ନ - କିହୋ । ଅର୍ଥ ସଞ୍ଚୟ କରୁ ନାହଁ କାହିଁକି ?

ଉତ୍ତର- 'ସଞ୍ଚିତାର୍ଥଂ ବିନଶ୍ୟତି ।'

ପ୍ରଶ୍ନ - ଏତେ ଅର୍ଥ ସଞ୍ଚୟ କରୁଛ କିଆଁ ?

ଉତ୍ତର- ''ଧନିନର୍ଜୟଧ୍ୱଂ ଧନିନର୍ଜୟଧ୍ୱଂ ।''

ଏହିପରି ସବୁ କଥାରେ ପକ୍ଷ ବିପକ୍ଷ ନଜିର ରହିଅଛି । ବେଳକାଳ ଉଣ୍ଡି ସେହି ନଜିରଗୁଡ଼ିକ ବିଚାରକଙ୍କୁ ଯେ ବେଶି ଗିଳାଇପାରେ କିମ୍ବା ଚଟାଇପାରେ, ସେ ଧଳା ବଳଦକୁ କଳା, କଳା ବଳଦକୁ ଧଳା କରି ଛିତାପଟ ମାରିନିଏ ।

ଶାସ୍ତ୍ର ଦେଖ, ଆଇନ ଦେଖ, ରାଜନୀତି ଦେଖ, ବ୍ୟବସାୟ ଦେଖ, ସବୁଥିର ପକ୍ଷ ବିପକ୍ଷ ଉଭୟ ଆଡ଼େ ନଜିର ଅଛି । ଆମ ପାଠରେ ପଞ୍ଚ ମକାର ପାଇଁ ଶାସ୍ତ୍ର ଅଛି, ନିର୍ଜଳା ଉପବାସ ପାଇଁ ମଧ ଶାସ୍ତ୍ର ଅଛି, ଦୋଷୀ ପାଇଁ ନଜର ଅଛି, ନିର୍‌ପରାଧ ପାଇଁ ନଜିର ଅଛି । ଏହିସବୁ ଉତ୍ତର ଦେଖାଇ ଯେତେବେଳେ ଯାହା ଦରକାର ହୁଏ. ଯେଉଁ ବେମାରିକୁ ଯେଉଁ ଔଷଧ ଲୋଡ଼ା ହୁଏ, ଯେଉଁ ମକଦମାରେ ଯେଉଁ ନଜିର କାମକୁ ଆସେ, ତାହା କାଢ଼ି କାମରେ ଲଗାଇବା ପାଇଁ ବୁଦ୍ଧିମାନ୍ ଲୋକ ଆପଣା ବୋକଚାରେ ବଟୁଆଟିଏ, ମହାପ୍ରସାଦ କୋଥଳିଟିଏ, ନଜିର 'ଟିପା ଖଣ୍ଡିଏ, ଶ୍ଳୋକରତ୍ନମାଳା ଖଣ୍ଡିଏ ପକାଇ ରଖିଥାଏ କି ଦରକାର ବେଳେ କର୍ମରେ ଆସିବ । ସତକୁ ସତ ଦରକାର ବେଳେ କର୍ମରେ ଆସେ ।

ନନାଙ୍କ ବସ୍ତାନିର ପୀଠିକାରେ ଯେଉଁସବୁ ଶ୍ଳୋକ ଅଛି, ତହିଁର ନମୁନା ନିମ୍ନରେ ଦିଆଗଲା । ଯେଉଁ ଯେଉଁ ଅଂଶରେ ସେଗୁଡ଼ିକ ଅସମ୍ପୂର୍ଣ୍ଣ ଥିଲା, ତାହା ଆମ ବାବାଜି ଅନୁବାଦଦ୍ୱାରା ପୂରଣ କରିଅଛନ୍ତି । ସେଗୁଡ଼ିକ ସମସ୍ତ ଏଠାରେ ଉଲ୍ଲେଖ କଲେ ପ୍ରବନ୍ଧର କଳେବର ବଢ଼ିବ ଓ ପାଠକମାନେ ବିରକ୍ତ ହେବେ । ବାବାଜି ଉକ୍ତ ଶ୍ଳୋକଗୁଡ଼ିକର ତଳେ ଭାଷାରେ ପଦ୍ୟ ରଚନା କରି ଶ୍ଳୋକାର୍ଥ କରି ରଖିଅଛନ୍ତି । ସମୟରେ ସେଗୁଡ଼ିକ ମୁଦ୍ରାଯନ୍ତ୍ର ସାହାଯ୍ୟରେ ପ୍ରକାଶ କରି 'ସର୍ବସ୍ୱତ୍ୱ ସଂରକ୍ଷଣ' (all right reserved) କରିପାରିଲେ ପାରିବାରିକ ଆୟ ବୃଦ୍ଧି ହୋଇପାରେ । ଏଥିପାଇଁ ତାହା ସମସ୍ତ ଖରଚ ନ କରି ଆଗରୁ ବିଜ୍ଞାପନ ଦେବା ଉଦ୍ଦେଶ୍ୟରେ ଏଠାରେ କେତେଗୋଟି ନମୁନା ଦିଆଗଲା-

୧- ଏତେ ସତ୍ପୁରୁଷାଃ ପରାର୍ଥଘଟକାଃ
ସ୍ୱାର୍ଥଂ ପରିତ୍ୟଜ୍ୟ ଯେ ।
ସାମାନ୍ୟାସ୍ତୁ ପାର୍ଥ ମଦ୍ୟମଭୃତଃ
ସ୍ୱାର୍ଥାବିରୋଧେନ ଯେ ।
ତୋଽସୀ ମାନୁଷରାକ୍ଷସାଃ ପରହିତଂ
ସ୍ୱାର୍ଥାୟ ନିଘ୍ନନ୍ତି ଯେ
ଯେ ତୁ ଘ୍ନନ୍ତି ନିରର୍ଥକଂ ପରହିତଂ
ତେ କେନ ଜାମାମହେ ।

''ବାବାଜିଙ୍କ ତର୍ଜମା -
ନିଜ ସ୍ୱାର୍ଥ ତ୍ୟାଗ କରି ପର ଅର୍ଥ ପାଇଁ
ସୁପୁରୁଷ ଦିବାନିଶି ଚେଷ୍ଟିତ ହୁଅଇ ।
ସାଧାରଣ ଲୋକ ନିଜ ସ୍ୱାର୍ଥହାନି ବିନା
ପର ଉପକାର ପାଇଁ ହୁଏ ଦତ୍ତମନା ।
ନିଜ ସ୍ୱାର୍ଥଲାଭ ପାଇଁ ପରର ବିନାଶ
କରିବାରେ ଲାଗିଥାନ୍ତି ମନୁଷ୍ୟ-ରାକ୍ଷସ ।
(କିନ୍ତୁ) ଥାଉ ପଛକେ କିଛି ନିଜ ସ୍ୱାର୍ଥ ଅଂଶ,
ପର ଅମଙ୍ଗଳେ, ଯେତୁ ଲାଗେ ଅହର୍ନିଶ,
ଏହିପରି କାପୁରୁଷ ସେ କେଉଁ ଶ୍ରେଣୀର,
ନ ଜାଣେ ମୁଁ ଏ ଲୋକକୁ ଦୂରୁଁ ମୋ ଜୁହାର !''

୨- ଭକ୍ତାନାମଭୟପ୍ରଦୋ ଯଦି ଭବେ
ନୈତଦ୍ ବିଚିତ୍ରଂ ପ୍ରଭୋ ।
କାଟୋଽପି ସ୍ୱଜନସ୍ୟ ରକ୍ଷଣାବିଧା-
ବେକାନ୍ତମୁଦେଜିତଃ ।
ଯେ ଯୁଷ୍ମାବରଣାରବିନ୍ଦବିମୁଖାଃ
ସ୍ୱପ୍ନେଽପିବାମାଦୃଶାଃ
ତେଷାମୁଦ୍ଧରଣକ୍ଷମୋ ଯଦି ଭବେ
କାରୁଣ୍ୟସିନ୍ଧୁ ସ୍ତଦା ।

ବାବାଜିଙ୍କ ତର୍ଜମା -

''ଭକ୍ତକୁ ଅଭୟ ବର ଦିଅ ଆହେ ଚକ୍ରଧର
ଏଥିରେ ବିଚିତ୍ର ଅଛି କିସ,
କୀଟ ଆଦି ନୀଚ ଜୀବେ ସ୍ୱଜନ ପୋଷଣ ଭାବେ
ହୁଅନ୍ତି ଚାଳିତ ଅହର୍ନିଶ ।
ମୋ ପରି ଯେଉଁ ଅଧମେ ଜାଗ୍ରତେ ଅବା ସ୍ୱପନେ
ଧରନ୍ତି ନାହିଁଟି ନାମ ତବ,
ଯେବେ ତାହାଙ୍କୁ ନିସ୍ତାର କରିବ ହେ ବିଶ୍ୱମ୍ଭର,
(ତେବେ) କରୁଣା ସାଗର ବୋଲାଇବ ।''

୩- **କିଂ ତେନ ହେମଗିରିଣା ରଜତାଦ୍ରିଣାବା
ଯତ୍ର ସ୍ଥିତା ହି ତରବ ସ୍ତରବିସ୍ତଏବ ।
ବନ୍ଦାମହେ ମଳୟମେବ ଯଦାଶ୍ରୟେଣ
ଶାକୋଟନିମ୍ବକୁଟଜାନ୍ୟପି ଚନ୍ଦନାନି ।**

ବାବାଜିଙ୍କ ତର୍ଜମା -

''ହେମଗିରି ରୌପ୍ୟଗିରି ନିଜର ବିଭବେ
ବୋଲନ୍ତି ବିଭବଶାଳୀ ଏହି ମହାଭବେ ।
ତହିଁରେ ଥିବା ବିଟପେ ବିଟପ ମାତର,
ଏ ବିଭବେ ଅନ୍ୟ କାର ନୁହେଁ ଉପକାର ।
(କିନ୍ତୁ) ମଳୟ ଗିରିକୁ ଲୋକେ କରନ୍ତି ବନ୍ଦନ,
ଯା ପରଶେ ନିମ୍ବ ଆଦି ହୁଅନ୍ତି ଚନ୍ଦନ ।''

୪- **ହଂସାଃ ପଦ୍ମବନାଶ୍ରୟା ମଧୁଲିହଃ
ସୌରଭ୍ୟଲାଭାଶୟାଃ
ପାନ୍ଥାଃ ସ୍ୱାଦୁଫଳାଶୟା ବଳିଭୁଜଃ
ଗୃଧ୍ରାଶ୍ଚ ମାଂସାଶୟାଃ ।
ଦୂରା ଦୁନ୍ନତ ପୁଷ୍ପରାଗନିକରୈ-
ର୍ନିଃସାରମିଥ୍ୟୋନ୍ନତୈଃ
ରେ ରେ ଶାଳ୍ମଳି ପାଦପ !
ପ୍ରତିଦିନଂକେ ନ ତ୍ୱୟା ବଞ୍ଚିତାଃ ?**

ବାବାଜିଙ୍କ ତର୍ଜମା -

ଧିକରେ ଶିମିଳି ଗଛ ! ତୋ ଫୁଲ ଦେଖାଇ
କେତେ କେତେ ପ୍ରାଣକୁ ତୁ କରୁଅଛୁ ବାଇ ।
ଚହଟ ଚିକଣ ଫୁଲ ସାର ବିରହତ,
ଦୂରୁଁ ଦେଖି କେତେ ଜୀବ ହୁଅନ୍ତି ଉସତ ।
ହଂସ ଭାବେ ପଦ୍ମବନ, ମଧୁପ ବିଚାରେ
ପିଇବ ସୁରତି ମଧୁ ଏ ପୁଷ୍ପ ମଧୁରେ ।
କ୍ଷୁଧାର୍ତ୍ତ ପଥିକ ଧାଏଁ ସ୍ୱାଦୁ ଫଳ ଆଶେ
ଧାଆଁନ୍ତି ମାଂସ ଲୋଭରେ ଶକୁନି ବାୟସେ ।
ପାଶେ ଯାଇ ଜୀବଗଣେ ଦେଖନ୍ତି ତୋଠାରେ
ଅସାର ନିର୍ଗନ୍ଧ ଫୁଲ ଝୁଲୁଛି ଉଚ୍ଚରେ ।

ଲେଖକର ବିଚାର ଥିଲା, ଏ ଶ୍ଳୋକ ଓ ଅନୁବାଦ ତଳେ ତଳେ ଗୋଟିଏ ଗୋଟିଏ ଦେଶ ପ୍ରଚଳିତ ଢଗ ବାଛି ବାଛି କରି ଦିଆଯାଇଥାନ୍ତା । କିନ୍ତୁ ସମ୍ପାଦକ ମହାଶୟଙ୍କ ତୁମ୍ବି ଯୋଗୁଁ ସେତକ ହୋଇପାରିଲା ନାହିଁ । ଆଜି ଏତିକିରେ କର୍ତ୍ତବ୍ୟ ସାଙ୍ଗ ।

ଉତ୍କଳ ସାହିତ୍ୟ/୨୦ଶ ଭାଗ/୬ଷ୍ଠ ସଂଖ୍ୟା/୧୩୨୪ ସାଲ ।

# ଆମ ଘରର ହାଲଚାଲ

## ୧୯୧୭-୧୯୨୦

ଆମ ଘରର ହାଲଚାଲ ଶ୍ରୀଯୁକ୍ତ ପ୍ରହରାଜଙ୍କ ଅନ୍ୟତମ ବହୁଚର୍ଚ୍ଚିତ ଆଲୋଚନା । ଏହା ଉତ୍କଳ ସାହିତ୍ୟ ପତ୍ରିକାର ୨୦ଶ ଭାଗ/ ୧୧ଶ ସଂଖ୍ୟା/ ୧୩୨୪ ସାଲରୁ ଆରମ୍ଭ ହୋଇ ୨୪ଶ ଭାଗ/୬ଷ୍ଠ ସଂଖ୍ୟା/ ୧୩୨୭ ସାଲ ମଧ୍ୟରେ, ଏକତ୍ରିଂଶ ଅଧ୍ୟାୟରେ ପ୍ରକାଶିତ । ଉତ୍କଳ ସାହିତ୍ୟ ପ୍ରକାଶନୀ କର୍ତ୍ତୃକ ଏହା ପୁସ୍ତକାକାରରେ ୧୯୭୧ ମସିହାରେ ପ୍ରକାଶ ପାଇଛି । ପୁସ୍ତକରେ ଅଧ୍ୟାୟ ସଂଖ୍ୟା ତେଇଶ । ମାତ୍ର ସାହିତ୍ୟ ପତ୍ରିକାରେ ଆମ ଘରର ହାଲଚାଲର ଅଧ୍ୟାୟ ସଂଖ୍ୟା ଏକତିରିଶ ।

ଆମ ଘରର ହାଲଚାଲ, ଦୁନିଆର ହାଲଚାଲର ଅନୁରୂପ । ଅବଶ୍ୟ ଲେଖକ ଏହାର ପରିକଳ୍ପନାର କାରଣ ଭାବରେ, ଆପଣା ଘର କଥା ଲେଖିବା ଉପରେ ଗୁରୁତ୍ୱ ଦେଇଥିବା ପ୍ରସଙ୍ଗ ଉଲ୍ଲେଖ କରିଛନ୍ତି । ମାତ୍ର ଦୁନିଆ ସହିତ ନିଜକୁ ଓ ନିଜ ବିଚରଣ ଭୂଇଁକୁ ପାଠକମାନଙ୍କ ପାଖରେ ଚିହ୍ନାଇ ଦେବାରେ ସେ ଆଦୌ ହେଳା କରି ନାହାନ୍ତି । ଏଥିରେ ଓଡ଼ିଶାର ରାଜନୀତିକ, ସାମାଜିକ ଓ ସାଂସ୍କୃତିକ ସମସ୍ୟା ସହିତ ଭାରତ ଓ ବିଶ୍ୱକୁ ଗଁଠେଇବାକୁ ଚେଷ୍ଟା କରିଛନ୍ତି । ତେବେ 'ଆମ ଘରର ହାଲଚାଲ'ରେ ଆମେ ଲେଖକଙ୍କ ନିଜ ଜୀବନ ଘରର ଗୁମର କଥା ସଂପର୍କରେ ଅଧିକ ସୂଚନା ପାଇଥାଉ ।

ସମ୍ପାଦକ

### ।। ଏକ ।।

ପାଠକ ମହାଶୟମାନେ ଓ ଭକ୍ତିଭାଜନ ସମ୍ପାଦକ ଅବଧାନ, ନମସ୍କାର ! (ଏଥିର ଉହ୍ୟ ଉତ୍ତର - ଆୟୁଷ୍ମନ୍ତେ ଭବନ୍ତେ । ଅର୍ଥାତ୍ ବୁଢ଼ାଟିଏ ହୋଇ ଘରଦ୍ୱାର କର ରେ ବାପା !) ବହୁ ଦିନ ପରେ ପୁନର୍ବାର ଆପଣମାନଙ୍କ ସଙ୍ଗେ ମୁଲାକାତ୍, ଅର୍ଥାତ୍ ସାହିତ୍ୟ ପତ୍ରିକା ପ୍ରସଙ୍ଗାତ୍ । କଥା ଅଛି, ''ବତେଇ ଦିଏ ପରକୁ, ବୁଦ୍ଧି ନ ଆସେ ଘରକୁ ।'' ଦାଣ୍ଡପିଣ୍ଡାରେ ବସି ସଦର ଦରୋଜା ଜଗୁ ଜଗୁ ବାଡ଼ିଆଡ଼େ ଗୋରୁଗାଈ ପଶି କୋଶିଳା

ଜିଆରି ଖଣ୍ଡିକ ସତ୍ୟାନାଶ କରିସାରିଲେଣି - ଅର୍ଥାତ୍ ଦୁନିଆର ହାଲଚାଲ ଦେଖି ଗୋପିଆଭାଇ, ମଧୁଆଦାଦି, କଣ୍ଟିଆନନା, ଜଗାଭାଇନା, ବିଶିଆକକେଇଙ୍କୁ ତିଆରୁ ତିଆରୁ ଓ ନନାଙ୍କ ବସ୍ତାନି ଫିଟାଇ ପରର ମାଛିଆ ପାତକପାଇଁ ବ୍ୟବସ୍ଥା କାଢୁ କାଢୁ ଆପଣା କାମ ଓ ମଣିଷପଣିଆ ଶେଷ । ପୂର୍ବର ବଡ଼ବଡୁଆମାନେ ମଧ୍ୟ କହି ଯାଇଅଛନ୍ତି, "ରାଜନ୍ ! ସର୍ଷପମାତ୍ରାଣି ପରଛିଦ୍ରାଣି ପଶ୍ୟସି, ଆତ୍ମନୋ ବିଲ୍ୱରୂପାଣି ପଶ୍ୟନ୍ନପି ପଶ୍ୟସି ।" ସାଧାରଣତଃ ଦେଖାଯାଏ ଯେ, ମନୁଷ୍ୟ ପରର ଦୋଷକୁ ଦେଖିବାକୁ ଯେଉଁ ଦର୍ଶନବଡ଼ା (Magnifying) ଚଷମା ବ୍ୟବହାର କରେ ଓ ଯେତେ କସରତ କରେ, ନିଜର ଦୋଷ ଦେଖି ତାହା ସଂଶୋଧନ କରିବାକୁ ଯେବେ ତହିଁରୁ କଳାଏ ମାତ୍ର ଆୟାସ ସ୍ୱୀକାର କରୁଥାନ୍ତା, ତାହାହେଲେ ମନୁଷ୍ୟର କେତେ ଉନ୍ନତି ହେଉ ନ ଥାନ୍ତା ! ଆପେ ଅସମ୍ପୂର୍ଣ୍ଣ, କିନ୍ତୁ ପରର ଅସମ୍ପୂର୍ଣ୍ଣତା ଦେଖି ପର ପୁଅର ଠେଙ୍ଗୁରେ ଚୋଟେ ହାଣି ଦେବାକୁ ମନୁଷ୍ୟ ଟିକିଏ ସୁଦ୍ଧା କୁଣ୍ଠିତ ହୁଏ ନାହିଁ । ଆପେ ପରଶ୍ରୀକାତର, ଆପେ ପରଧନଲୋଲୁପ, ଆପେ ସ୍ୱାର୍ଥପର, ଆପେ ଧମଧ୍ୱଜୀ, ଆପେ ପାପୀ । ଆପଣାର ଏ ବିକୃତିଗୁଡ଼ିକ ନିଜ ଆଖିରେ ପଡ଼େ ନାହିଁ; କିନ୍ତୁ ପର ପୁଅର ଟିକିଏ ହଲଚଲିଆ ଖୋଇ ଦେଖାପଡ଼ିଲାକ୍ଷଣି ମନୁଷ୍ୟ 'ପରୋପଦେଶେ ପାଣ୍ଡିତ୍ୟଂ' ଜାହେର କରେ । ଏହା ମନୁଷ୍ୟ ପ୍ରକୃତିର ଗୋଟିଏ କାର୍ଯ୍ୟ । ଲେଖକ ଖୋଦ ଏ ପ୍ରକୃତିସୁଲଭ ସ୍ୱୀକାର୍ଯ୍ୟରୁ ବହିର୍ଭୂତ ନୁହେଁ । ମୁଁ ନିଜେ ମଧ୍ୟ ଅନୁଭବ କଲିଣି ଯେ, ଯେଉଁ ଦୁର୍ଗୁଣଗୁଡ଼ାକ ପର ପୁଅଙ୍କଠାରେ ଦେଖିଲାମାତ୍ରକେ ମୋ ମୁହଁ ଲେଫଡ଼ି ହୋଇଯାଏ, ମୋଠାରେ ସେହିଗୁଡ଼ିକ ପୂର୍ଣ୍ଣମାତ୍ରାରେ ବିରାଜିତ । ତେବେ ପ୍ରଭେଦ ଏତିକି ଯେ, ସେମାନଙ୍କର ସ୍ୱରୂପ ଦାଣ୍ଡ ଲୋକେ ମତ୍ପ୍ରସାଦାତ୍ ଦେଖନ୍ତି, ମୋର ସ୍ୱରୂପକୁ ମୁଁ ଚୋଗା ଚପକନ୍ ତଳେ ଘୋଡ଼ାଇ ରଖି ସମାଜର ଉପଦେଶକ ଓ ଉପକାରକର ଆସନ ଓ ମର୍ଯ୍ୟାଦା ଲାଭ କରିବାକୁ ଉଚ୍ଛନ୍ନ ହେଉଥାଏଁ । ମନୁଷ୍ୟ ଯେତିକି ଏ ବିଷୟ ଦୃଢ଼ ଭାବରେ ଚିନ୍ତା କରିବ, ସେତିକି କମ୍ ପରଛିଦ୍ରାନ୍ୱେଷୀ ପରଦୋଷବିଜ୍ଞାପକ ହେବ । ଆଉ ମଧ୍ୟ ମନୁଷ୍ୟପ୍ରକୃତିର ଆଉ ଗୋଟିଏ ଲକ୍ଷଣ ମୁଁ ନିଜ ଅନୁଭବରୁ ଠଉରାଇ ପାରିଅଛି । ବିଲାତର ଜଣେ ଖ୍ୟାତନାମା ଲେଖକ କହୁଥିଲେ, "Critics are cut down poets" ଅର୍ଥାତ୍ ମୁଁ ନିଜେ ଯେଉଁ କାର୍ଯ୍ୟ ଲାଗି ଚେଷ୍ଟା କରି ସେଥିରେ ଅକୃତକାର୍ଯ୍ୟ ହୋଇ କଚଡ଼ା ଖାଇଅଛି, ଯେବେ ଅନ୍ୟ କେହି ସେହି କାର୍ଯ୍ୟରେ କୃତକାର୍ଯ୍ୟ ହେଲା କିମ୍ବା ସେ କାର୍ଯ୍ୟରେ ହାତ ଦେଲା, ତେବେ ତାହା ଦେଖି ମୋ ଦିହ ସହେ ନାହିଁ । ଏହାକୁ କହନ୍ତି 'ପରଶ୍ରୀକାତରତା' । ଏଥର ଉପଯୁକ୍ତ ଉତ୍ତର - "କି ରେ ! ମୁଁ ଖାଉଥାଏଁ ମୋହର ପିଠା, ତୋର କିଆଁ ଦାନ୍ତ ନିକୁଟା ?" ଅର୍ଥାତ୍ ମୋର ବାଡ଼ି ଖଣ୍ଡ ବୁଜିଦେବାକୁ ତୁ ରାତିଦିନ ଅନିଦ୍ରା ହେଉଛୁ କାହିଁକି ରେ ? ମନୁଷ୍ୟ ଯେତିକି ଦୃଢ଼ଭାବରେ ଚିନ୍ତା କରିବ, ସେତିକି କମ ପରଶ୍ରୀକାତର ହେବ ।

ପାଠକମାନେ ଏ କୈଫିୟତ୍ ଦେଖି ମନେ ମନେ ବିଚାରୁଥିବେ, ''ଲୋକଟାର ଆଜି ଏତେ ସାଫିଆନା କାହିଁକି ? ଆଜି ଏ ପୋଖତୀ ବୈରାଗ୍ୟ କିଆଁ ?'' ଅତଏବ ଏଥି ଲାଗି ଖଣ୍ଡେ ବୃଝଟ ପରଦ ଆପଣମାନଙ୍କ ନିକଟରେ ଉପସ୍ଥାପିତ କରିବା କର୍ତ୍ତବ୍ୟ । 'ନନାଙ୍କ ବସ୍ତାନି'ରୁ ଶେଷ ବିଡ଼ାଟା ବାହାର କରି ତହିଁରେ ଟୀକା ଟିପ୍‌ପଣୀ ଲେଖି ସମ୍ପାଦକଙ୍କ ନିକଟରେ ଦାଖଲ କରିବାରୁ ସମ୍ପାଦକ ମହାଶୟ ସେ ବିଡ଼ାଟି ଉଖାରିଧ ଘେନି ମୋ ନିକଟରେ ପହଞ୍ଚିଲେ । ସ୍ପଷ୍ଟ କଥା କହିଲେ ଜଣେ ଲାଗୁଆ ଲେଖକ ଖସିଲେ, ଏଣେ ସେ ବିଡ଼ାଟି ପତ୍ରିକାରେ ପ୍ରକାଶ କଲେ ପଞ୍ଚାଏ ଗ୍ରାହକ ଚଲ ! ଅତଏବ ପ୍ରବୀଣ ସମ୍ପାଦକ ମହାଶୟ ଲହଲହକା ଭାବଭଙ୍ଗୀରେ କଥାଟାକୁ ମୋଡ଼ିମାଡ଼ି ଲେଖକ ହାତରେ ସେ ବିଡ଼ାଟି ଗୁଞ୍ଜି ଦେଇ ଚାଲିଗଲେ, କହିଗଲେ, ''ଲେଖାଟି ଅତି ଉତ୍ତମ ଓ ଉପାଦେୟ ହୋଇଥିଲା, ପରନ୍ତୁ ଏଁ ଏଁ -'' ଅର୍ଥାତ୍ ଦରଖାସ୍ତ ନାମଞ୍ଜୁର ! ଆମେ ମଧ୍ୟ ନିତାନ୍ତ ଆଠମାସିଆ ନୋହୁଁ, ଆମେ ବୁଝିନେଲୁଁ ଯେ, ଆମର 'ଅତି ଲେମ୍ବୁ-ଚିପୁଡ଼ା' ରସରେ ଖୋଦ ସମ୍ପାଦକଙ୍କ ପାଟି ମଧ୍ୟ ପିତୁଳିଆ ହେଲାଣି । ଅନୁଭବରେ ଦେଖାଯାଏ ଯେ, ଅବାରିତ ଗତିରେ ଗୋଟିଏ ସୁଅ ବହୁଅଛି, ସେ ସୁଅରେ ମହାଦ୍ରୁମ ପର୍ଯ୍ୟନ୍ତ ବହି ଯାଉଅଛନ୍ତି, କିନ୍ତୁ ସୁଅ ମୁହଁରେ ଓ ପୁଅର ଯିବା ବାଟରେ ଖଣ୍ଡେ ବଡ଼ ବାଲିଗରଡ଼ା ହାବୁଡ଼ି ଗଲାରୁ ତର୍ଜନ, ଗର୍ଜନ, ଗତି ପରିବର୍ତ୍ତନ ଆଦି ହରେକ କିସମର ପ୍ରତିଘାତର କୀର୍ତ୍ତନ ଲାଗେ । ସମ୍ପାଦକଙ୍କଠାରୁ ଏପରି ସୁଲୁସୁଲିଆ କଡ଼ବାଟିଆ ଡିହ ପାଇବା ଲେଖକର ଏହା ସର୍ବପ୍ରଥମ ଅନୁଭବ । ଏହି ଅନୁଭବରେ ସର୍ବପ୍ରଥମେ କିଛି ପ୍ରତିଘାତ - ତର୍ଜନ ଗର୍ଜନ ହୋଇଗଲା, ତା ପରେ ମାନ ଅଭିମାନ, ତତ୍‌ପରେ ଗୁମ୍‌ସୁମ୍, ପରିଶେଷରେ ଚକ୍ଷୁରୁନ୍ମୀଳନ ଓ ଫଳତଃ ଗତି ପରିବର୍ତ୍ତନ ହେଲା । ବିଚାରିଲି, ସମ୍ପାଦକଙ୍କୁ ଅଭିମାନ କରି ପେସା ଓ ପସରା ବୁଡ଼ାଇବାଟା 'ଖପରାରେ ଖାଇବା' ନ୍ୟାୟ ହେବ । ଲେଖକର ଧାରଣା ଥିଲା ଯେ, ତାକୁ ଅନୁସରଣ ନ କଲେ ଓ ତାକୁ ପ୍ରସନ୍ନ ନ କରାଇଲେ ପତ୍ରିକାର ଦିନ ସରିବ ନାହିଁ ଓ ତା ଫାଉଣ୍ଟେନ୍ ପେନ୍ (ଧାରା ଶ୍ରାବଣୀ ଲେଖନୀ) ପ୍ରବନ୍ଧ ପ୍ରସ୍ରବ ନ କଲେ ଉତ୍କଳ ଧାରା ନିରାଧାରା ହେବ, ଉତ୍କ-ସରସ୍ୱତୀ ନିରାଲମ୍ବା ହୋଇଯିବେ, ଉତ୍କଳର ସାହିତ୍ୟ ସଂସାର ଉଚ୍ଛନ୍ନ ହୋଇଯିବ; କିନ୍ତୁ ଗତ ଦୁଇ ତିନି ସଂଖ୍ୟା 'ସାହିତ୍ୟ'ରେ ଲେଖକଙ୍କ ନାମ 'ପାଞ୍ଜିପୋଛ' ହୋଇଯିବା ଅନୁଭବରୁ ଲେଖକ ବୁଝିପାରିଲା ଯେ ତାହା ଯୋଗୁଁ କି ସାହିତ୍ୟର, କି ସମାଜର, କି ଦେଶର, କି ଗ୍ରାମର, କି ଜାତିର, କି ମାଧିଆଭାଇର କୌଣସି ଘରକାମ କିମ୍ବା ଦାଣ୍ଡମାମଲତ ଅଚଳ ହୋଇ ରହିବ ନାହିଁ । ଲାଭ ହେବ କେବଳ 'ତସ୍ୟୈବ ଗଣ୍ଡଯୁଗମଣ୍ଡନହାନିରେଷା' । ଯାହାହେଉ, ଏହା ହେବା ଦ୍ୱାରା ସମ୍ପାଦକ ବେକସୁର ଖଳାସ, ଲେଖକର ମଧ୍ୟ ଆଖିରେ ଗତ ୧୦।୧୨ ବର୍ଷ ମଧ୍ୟରେ ମାଡ଼ି ଯାଇଥିବା ଗୋଟାଏ ବହଳିଆ ମୋତିଆବିନ୍ଦୁ ଖସି ପଡ଼ିଗଲା । ମୁଁ

ଦେଖିପାରିଲି ଯେ, ଦୁନିଆର ହାଲଚାଲ ଦେଖିବା ମନୁଷ୍ୟତା ନୁହେଁ । ନିଜ ଘର ହାଲଚାଲ ଦେଖି ନିଜ ବାଡ଼ି ବୁଜିବା ମନୁଷ୍ୟତା ।

ଆଜି ଏ ଲେଖାର ଶିରୋନାମରେ ଲେଖା ଥିବା ଦୁଇପଦ କଥା ନିମନ୍ତେ ପାଠକମାନଙ୍କ ହଜୁରାରେ ଏତକ ଅବତରଣିକା ଅର୍ଥାତ୍ ବୁଝଟ ଫରଦ ।

ଅତଏବ ଏ ପ୍ରସଙ୍ଗରେ ଲେଖକର ପାଠକମାନଙ୍କ ନିକଟରେ ଏତିକି ବକ୍ତବ୍ୟ ଯେ, ଯେଉଁ ଦୁର୍ଗୁଣ ଓ ମାନସିକ ବୃତ୍ତିଗୁଡ଼ାକ ମନୁଷ୍ୟ ପ୍ରକୃତିସୁଲଭ, ସେଗୁଡ଼ିକ ମୋ ଠାରେ ଅଛି, ଅନ୍ୟମାନଙ୍କଠାରେ ମଧ୍ୟ ଥିବା ସ୍ୱାଭାବିକ । ଏପରି ସ୍ଥଳରେ ସେଗୁଡ଼ିକ ସମାର୍ଜ୍ଜନା କରିବା ନିମନ୍ତେ ସେଥିରେ ଆଲୋଚନା, କାରଣ ନିର୍ଦ୍ଦେଶ ଓ ପ୍ରତୀକାରାନ୍ୱେଷଣଗୁଡ଼ିକ ସଂଶୋଧନ କରିବାକୁ ଚେଷ୍ଟା କଲେ ତଦ୍ୱାରା ଯେବେ ମୋ ଚକ୍ଷୁ ଫିଟିବା ସଙ୍ଗେ ସଙ୍ଗେ ମୋ ଶ୍ରେଣୀର ସମଦଶାପନ୍ନ ଅନ୍ୟ ବ୍ୟକ୍ତିମାନଙ୍କର ନିଜ ନିଜର ଦୁର୍ଗୁଣ ପ୍ରତି ଦୃଷ୍ଟି ପଡ଼େ ଓ ଫଳତଃ ସେମାନଙ୍କର ଚରିତ୍ର ଓ ପ୍ରକୃତି ସଂଶୋଧିତ ହୁଏ, ତାହାହେଲେ ଏ କାର୍ଯ୍ୟଦ୍ୱାରା ଉଭୟତ୍ର ଲାଭ ଓ ସମାଜର ମଙ୍ଗଳ । ''ମୋର ଏ ଦୋଷ ଅଛି'' ମନୁଷ୍ୟ ମନରେ ଏବଂଭୂତ ଉପଲବ୍ଧି ଆରମ୍ଭ ହେଲେ ''ଏ ଦୋଷଗୁଡ଼ିକ ସଂଶୋଧନ କରିବା ଆବଶ୍ୟକ'' । ଏପରି କର୍ତ୍ତବ୍ୟପରାୟଣତା ସ୍ୱତଃ ମନରେ ଜାଗରୂକ ହୁଏ ଓ ଏହି ଜାଗରଣ ସଙ୍ଗେ ସଙ୍ଗେ ଚରିତ୍ର-ସଂଶୋଧନ-କ୍ରିୟା ମଧ୍ୟ ଶନୈଃ ଶନୈଃ ସମ୍ପାଦିତ ହୋଇଯାଏ । ଅତଏବ ଏ ପ୍ରସଙ୍ଗରେ ଯେଉଁ ଦୋଷ ଓ ଗୁଣମାନ ଆଲୋଚିତ ହେବ, ତାହା ସବୁ ମୋର ନିଜ ଅନୁଭବସିଦ୍ଧ ଏବଂ ସେଗୁଡ଼ିକ ସାଧାରଣରେ ପ୍ରକାଶ କରିବା ଦ୍ୱାରା ମୁଁ 'ଶିକ୍ଷକ' ର ଉଚ୍ଚ ସ୍ଥାନ ଅଧିକାର କରିବାକୁ ପ୍ରୟାସୀ ନ ହୋଇ 'ଅନୁତପ୍ତ ଅପରାଧୀ'ର ସ୍ଥାନ ନତମସ୍ତକରେ ଗ୍ରହଣ କରୁଅଛି ।

ମନୁଷ୍ୟର କେତେଗୁଡ଼ିଏ ପଶୁ ପ୍ରକୃତି ଅଛି । ଅର୍ଥାତ୍ ସେସବୁ ପ୍ରକୃତି ସମ୍ବନ୍ଧରେ ମନୁଷ୍ୟ ପଶୁ ସଙ୍ଗେ ସମାନ । କିନ୍ତୁ ଈଶ୍ୱର ମନୁଷ୍ୟକୁ ଯେଉଁ ବିବେକ, ଜ୍ଞାନ, ସତ୍ ସାହସ, ସତ୍ ପ୍ରତିଜ୍ଞା ଆଦି ଦେଇଅଛନ୍ତି, ତଦ୍ୱାରା ମନୁଷ୍ୟ ସେହି ପାଶବିକ ପ୍ରକୃତି ଓ ରିପୁମାନଙ୍କୁ ଦମନ କରି ନୈତିକ ଯୁଦ୍ଧରେ ଜୟୀ ହୋଇ ନିଜର ମନୁଷ୍ୟତାକୁ ବଜାୟ ରଖିପାରେ । ଏହି କ୍ଷମତା ଯୋଗୁଁ ମନୁଷ୍ୟ ପଶୁଠାରୁ ଉନ୍ନତ ।

ନିଜର, ନିଜ ଘରର, ନିଜ ସମାଜର, ନିଜ ଜାତିର ଦୋଷଗୁଡ଼ିକ ସରଳ ଭାବରେ ଆଲୋଚନା ନିମନ୍ତେ 'ଆମ ଘରର ହାଲଚାଲ'ର ପ୍ରସ୍ତାବନା ।

୧. ଦେଖାଯାଏ ଯେ ମନୁଷ୍ୟ ଅଧିକାଂଶ ସ୍ଥଳରେ କର୍ତ୍ତବ୍ୟ କାର୍ଯ୍ୟ କରିବାରେ ତ୍ରୁଟି କରିଥିବାର ଦେଖାଗଲେ ଓ ତହିଁ ନିମନ୍ତେ ତାକୁ କୈଫିୟତ୍ ପଚରାଗଲେ ସେ କହେ, ଅମୁକ କାର୍ଯ୍ୟରେ ମୋର ଚାରା ନ ଥିଲା, ଅମୁକ କାର୍ଯ୍ୟ ମୁଁ ନାଚାର ହୋଇ କଲି । କିନ୍ତୁ ଯେବେ ମନୁଷ୍ୟ ଏପରି ସ୍ଥଳରେ ବିବେକ ଓ ଭଗବାନ୍‌ଙ୍କୁ ସାକ୍ଷୀ ରଖି ସେ କାର୍ଯ୍ୟର

କାରଣ ଅନୁସନ୍ଧାନରେ ପ୍ରବୃତ୍ତ ହୁଏ, ତେବେ ଦେଖିପାରିବ ଯେ, ଯାହା ସେ ନାଚାର ହୋଇ, ବାଧ୍ୟ ହୋଇ, ଅନନ୍ୟୋପାୟ ହୋଇ କଲା ବୋଲି ବିଚାରେ କିମ୍ବା ପ୍ରକାଶ କରେ, ସେ କାର୍ଯ୍ୟ ନିମନ୍ତେ ସେ ନିଜେ ଦାୟୀ । ''ମୋ ନାଚାରିରେ ଅମୁକ କାର୍ଯ୍ୟ ହୋଇଗଲା, ମୁଁ ଅକଳରେ ପଡ଼ି ଏ କାର୍ଯ୍ୟଟା କରି ପକାଇଲି'' ଏ ସବୁ କେବଳ ମନଭୁଲା ଓ ଲୋକଫୁସୁଲା କଥା । ଅଧିକାଂଶ ସ୍ଥଳରେ ଦେଖାଯାଏ ଯେ, ନିଜର କର୍ତ୍ତବ୍ୟ କାର୍ଯ୍ୟର ତ୍ରୁଟି ନିମନ୍ତେ ମନୁଷ୍ୟ ନିଜେ ଦାୟୀ । ମନୁଷ୍ୟର ଦୃଢ଼ କର୍ତ୍ତବ୍ୟଜ୍ଞାନ ଥିଲେ ଦୃଢ଼ସଂକଳ୍ପ ଥିଲେ, ସେ କଦାପି କର୍ତ୍ତବ୍ୟ କାର୍ଯ୍ୟରେ ତ୍ରୁଟି କରିବ ନାହିଁ କିମ୍ବା ସାପ ମାରି ପରଗଳାରେ ପକାଇବ ନାହିଁ । ଏହିପରି ମଧ୍ୟ ଦେଖାଯାଏ ଯେ, ଅଧିକାଂଶ ସ୍ଥଳରେ 'ସମୟର ଅଭାବ' ଯୋଗୁଁ ଅମୁକ କାର୍ଯ୍ୟ ହୋଇ ପାରିଲା ନାହିଁ ବୋଲି ଆମ୍ଭେମାନେ ଯେଉଁ କୈଫିୟତ୍ ଦେଇଥାଉଁ, ତାହା ଅମୂଳକ ଅଟେ । ମନୁଷ୍ୟର ଦୃଢ଼ତା ଓ ନିଷ୍ଠା ଥିଲେ କାର୍ଯ୍ୟ କରିବା ନିମନ୍ତେ ତାକୁ ସମୟର ଅଭାବ ପଡ଼ିବ ନାହିଁ । ବ୍ୟବସାୟ ବୋଲ, ସରକାରୀ କାର୍ଯ୍ୟ ବୋଲ, ଚାକିରି ବୋଲ, ଏ ସବୁ କ୍ଷେତ୍ରରେ ଆମ୍ଭେମାନେ ଦେଖୁଥାଉଁ ଯେ, ପରିଶ୍ରମୀ ଓ ନିଷ୍ଠାପର ଲୋକ ନିଜର ବ୍ୟବସାୟ ସମ୍ପର୍କୀୟ କାର୍ଯ୍ୟ ଅଥବା ଜୀବିକା ନିର୍ବାହ କରିସାରି ଅନ୍ୟାନ୍ୟ ଅନେକ କାର୍ଯ୍ୟ କରିବାକୁ ଅନେକ ସମୟ ପାଏ ।

ସ୍ୱର୍ଗୀୟ ଶ୍ରୀଯୁକ୍ତ ରମେଶଚନ୍ଦ୍ର ଦତ୍ତ ସି. ଆଇ. ଇ.ଙ୍କ ଜୀବନଚରିତ ପାଠ କରୁଥିଲି । ସେଥିରେ ଦେଖିଲି, ସେ ଉଚ୍ଚ ସରକାରୀ କାର୍ଯ୍ୟ ଓ କଠୋର ଶାସନ କାର୍ଯ୍ୟରେ ଅହର୍ନିଶ ବ୍ୟାପୃତ ଥାଇ ସୁଦ୍ଧା ବହୁ ଗବେଷଣାପୂର୍ଣ୍ଣ ବୃହତ୍ ବୃହତ୍ ସାହିତ୍ୟିକ ବ୍ୟାପାର ସମାଧାନ କରିବାକୁ ସମୟ ପାଇଥିଲେ । ତାଙ୍କ କୃତ ଋଗ୍‌ବେଦର ଅନୁବାଦ, ରାମାୟଣ ଓ ମହାଭାରତର ଅନୁବାଦ, ଭାରତବର୍ଷର ଇତିହାସ ଏଥିର ଜ୍ୱଳନ୍ତ ଉଦାହରଣ ଅଟେ । କେବଳ ରମେଶଚନ୍ଦ୍ର କାହିଁକି ? ପୃଥିବୀର ମହାପୁରୁଷମାନଙ୍କ ଜୀବନ ପର୍ଯ୍ୟାଲୋଚନା କଲେ ଆମ୍ଭେମାନେ ଦେଖିପାରିବା ଯେ, ସମୟର ଓ ଶକ୍ତିର ସଦ୍‌ବ୍ୟବହାର କରିବାଦ୍ୱାରା ସେମାନେ ଦେଶର, ସମାଜର ଓ ଜାତିର ମହୋପକାର ସାଧନ କରି ଯାଇଅଛନ୍ତି ଓ ପ୍ରକାଣ୍ଡ ସଦନୁଷ୍ଠାନମାନ ସମାଧାନ କରିପାରିଅଛନ୍ତି । ମୁଁ ମଧ୍ୟ ନିଜର କ୍ଷୁଦ୍ର ଅନୁଭବରେ ଦେଖିପାରିଅଛି ଯେ, ଯେତେବେଳେ ମୁଁ ମୋର ବ୍ୟାବହାରିକ ବ୍ୟବସାୟରେ (Profession) ବିଶେଷ ଭାବରେ ବ୍ୟସ୍ତ ଥାଏଁ, ଅର୍ଥାତ୍ ଚଳନ୍ତି କଥାରେ ଯାହାକୁ କହନ୍ତି ମରିବାକୁ ତର ନ ଥାଏ, ସେହି ସମୟରେ ଅନ୍ୟାନ୍ୟ କାର୍ଯ୍ୟ (ସାହିତ୍ୟ ଚର୍ଚ୍ଚା, ପଠନ, ଲିଖନ ଆଦି) ସମାଧାନ କରିବାକୁ ମୁଁ ଅବସର ପାଇଥାଏଁ, ଅଥଚ ଯେତେବେଳେ ନିଷ୍କର୍ମା ହୋଇ ବସିଥାଏ, ସେତେବେଳେ ମଧ୍ୟ ଅନ୍ୟାନ୍ୟ କାର୍ଯ୍ୟ ନ କରି ଆଳସ୍ୟରେ ସମୟ ନଷ୍ଟ କରିଥାଏ । ଆମ୍ଭମାନଙ୍କର ଧାରଣା ଅଛି ଯେ, କୌଣସି କାର୍ଯ୍ୟରେ ବିଶେଷ ବ୍ୟସ୍ତ (busy) ହୋଇ ମନ ଖରାପ ହୋଇଗଲେ କାର୍ଯ୍ୟରେ ମନ ଲାଗେ ନାହିଁ ଓ ତତ୍‌ପରେ କେତେ ସମୟ ଆଳସ୍ୟରେ (ବିଶ୍ରାମ) ନ କଟାଇଲେ ପୁନର୍ବାର ମନ କାର୍ଯ୍ୟ

କରିବାକୁ ଅଗ୍ରସର ହୁଏ ନାହିଁ । କିନ୍ତୁ ଫଳତଃ ଦେଖାଯାଏ ଯେ ଏକ କାର୍ଯ୍ୟରୁ ବିଶ୍ରାମ ନେବାକୁ ହେଲେ ଏକଦମ୍ ଆଳସ୍ୟରେ ଗୁମ୍‌ସୁମ୍ ନ ରହି କାର୍ଯ୍ୟାନ୍ତରରେ ଲାଗିଗଲେ ତାହା ମଧ ବିଶ୍ରାମ ତୁଲ୍ୟ ଫଳଦାୟକ ହୁଏ ଓ ଏହି ପରିବର୍ତ୍ତନ କିମ୍ବା କାର୍ଯ୍ୟାନ୍ତର ପରେ ପୂର୍ବବର୍ତ୍ତୀ କାର୍ଯ୍ୟ କରିବାକୁ ମନ ଲାଗେ । ଆମ୍ଭେମାନେ ଯେତେ ସମୟ ଆଳସ୍ୟ କିମ୍ବା ଜଡ଼ତାରେ ଅପବ୍ୟୟ କରୁ, ସେହି ସମୟତକ ଯେବେ ନିଜ ନିଜର ପ୍ରକୃତି ଅନୁକୂଳ ଅଥଚ ମଙ୍ଗଳକର କାର୍ଯ୍ୟରେ ନିୟୋଗ କରୁଥାନ୍ତେ, ତାହାହେଲେ ଅଭାବନୀୟ କାର୍ଯ୍ୟମାନ ସମାଧାନ କରିବାକୁ ସମର୍ଥ ହେଉଥାନ୍ତୁ । ଏହା ବୋଲି ଯେ ପ୍ରକୃତରେ କେତେକ ସ୍ଥଳରେ କୌଣସି କାର୍ଯ୍ୟ କରିବାକୁ ସମୟର ଅଭାବ ନ ଘଟେ, ମୁଁ ତାହା କହୁ ନାହିଁ । କିନ୍ତୁ ଆମ୍ଭେମାନେ 'ସମୟାଭାବ'ର ଦୋହି ଦେଇ ଯେତେ କାର୍ଯ୍ୟ ନ କରୁଁ, ପ୍ରକୃତରେ ନିଜ ନିଜର ଜୀବିକା ନିର୍ବାହ କରିସାରି ଆମ୍ଭେମାନେ ଯେଉଁ ଅବସର ପାଉଁ, ସେହି ଅବସରର ସଦ୍‌ବ୍ୟବହାର କରୁଥିଲେ ଆମ୍ଭେମାନେ ଅନେକ କାର୍ଯ୍ୟ କରିପାରୁଥାନ୍ତୁ ଓ ନାନା ଉପାୟରେ ଦେଶର ଓ ସମାଜର ଓ ନିଜର ମଙ୍ଗଳଜନକ କାର୍ଯ୍ୟ କରିବାକୁ ସମର୍ଥ ହେଉଥାନ୍ତୁ । ଇଂରେଜ ଜାତି, ଜାପାନୀ ଜାତି, ଆମେରିକା ଓ ଅନ୍ୟାନ୍ୟ ଉନ୍ନତ ଜାତିମାନେ ଏତେ ଉନ୍ନତ କାହିଁକି ? ଏଥିର ଏକମାତ୍ର ଉତ୍ତର ଏହି କି, ସେମାନେ ସମୟର ଓ ଅବସରର ସଦ୍‌ବ୍ୟବହାର କରିବାକୁ ଶିଖିଅଛନ୍ତି । ଯେଉଁ ସମୟ ମୁଁ ନିଷ୍କର୍ମା ହୋଇ ବୃଥା ଗଳ୍ପ, ପଶା ତାସ୍ ଖେଳ, ଆହାରାନ୍ତ ଚିଆଁ-ପହଡ଼ରେ କଟାଇଅଛି, ସେହି ସମୟରେ ଯେବେ ମୁଁ କୌଣସି ଲୋକହିତକର (useful) କାର୍ଯ୍ୟ କରିଥାନ୍ତି, ତାହାହେଲେ ଆଜି ମୁଁ କେତେ ବାଟରେ ସମାଜର ଉପକାର ଓ ନିଜର ମାନସିକ ଉନ୍ନତି କରିପାରି ନ ଥାନ୍ତି ? ମନୁଷ୍ୟ ଓ ପଶୁ ମଧରେ ପ୍ରଭେଦ ଚିନ୍ତାଶୀଳତା ଓ ବିବେକାନୁଧାବନ କରିବାର ଶକ୍ତି ! ପଶୁର ଜୀବନ, କାର୍ଯ୍ୟର ଜୀବନ; ମନୁଷ୍ୟର ଜୀବନ ମଧ ତାହା; କିନ୍ତୁ ପଶୁ ପଛକୁ ଦୃଷ୍ଟି କରିପାରେ ନାହିଁ, ମନୁଷ୍ୟ ତାହା କରିପାରେ; ନିଜ ଜୀବନର ପୂର୍ବବର୍ତ୍ତୀ ଘଟନାମାନଙ୍କ ପ୍ରତି ଦୃଷ୍ଟି ପକାଇ ଗତ ଅନୁଭବରୁ ବିଗତ ତ୍ରୁଟିମାନ ଉପଲବ୍ଧି କରି ସେହି ଶିକ୍ଷା ଦ୍ୱାରା ନିଜର ଭବିଷ୍ୟଦ୍ ଜୀବନ ଓ କାର୍ଯ୍ୟପ୍ରଣାଳୀ ଗଠନ କରିବା ହିଁ ମନୁଷ୍ୟତା । 'ଠିକ୍ ଶିଖିବାକୁ' ଭାବିପାରିବା ହିଁ ମନୁଷ୍ୟତା । ମୋ ପକ୍ଷରେ ଯାହା ସତ୍ୟ, ଯାହା କରଣୀୟ, ତୁମ ପକ୍ଷରେ ମଧ ତାହା, ସମାଜ ପକ୍ଷରେ, ଜାତି ପକ୍ଷରେ ମଧ ସେହିତା । ଯେଉଁ ଜାତିର ଲୋକେ ସମୟର ଓ ଅବସରର ଯେତିକି ସଦ୍‌ବ୍ୟବହାର କରିବାକୁ ଶିଖିଅଛନ୍ତି, ସେହି ଜାତି ସେତିକି ପରିମାଣରେ ସଭ୍ୟ ଓ ଉନ୍ନତ । ଯେଉଁ ଜାତିର ଲୋକେ ଉଦରାନ୍ନ ସଂସ୍ଥାନ ନିମନ୍ତେ ଯେତିକି ଆୟୋଜନ, ଶକ୍ତି ଓ ଆୟାସ ଅତ୍ୟାବଶ୍ୟକ, ସେତିକି ସାଙ୍ଗ କରି ଅବଶିଷ୍ଟ ସମୟ ଓ ଶକ୍ତିକୁ ବୃଥାରେ ନଷ୍ଟ କରନ୍ତି, ସେହି ଜାତି ସେତିକି ଅବନତ ଓ ଅସଭ୍ୟ । ଆମ ଘରର ହାଲଚାଲରୁ ଏହି ପଦକ ।

ଉ.ସା./୨୦ଶ ଭାଗ/୧୧ଶ ସଂଖ୍ୟା/ଫାଲ୍‌ଗୁନ/୧୩୨୪ ସାଲ ।

## ।। ଦୁଇ ।।

ମନୁଷ୍ୟ ପ୍ରକୃତି ଅନେକ ସମୟରେ ଅବୋଧ, ଅଭେଦ୍ୟ ଓ ଅଦମ୍ୟ ହୁଏ । ଅନେକ ସମୟରେ ନିଜର କାର୍ଯ୍ୟକଳାପ ଓ ଗତିବିଧିକୁ ଧୀର ସ୍ଥିର ଭାବରେ ଆଲୋଚନା କଲେ, ମୁଁ ନିଜେ ମୋର ତତ୍ତଦ୍ କାର୍ଯ୍ୟର କଥା ଭାବି ବିସ୍ମିତ ହୁଏ । ମନେ ମନେ ପ୍ରଶ୍ନ କରେଁ, ''ଅମୁକ କାମ ମୁଁ କରିଥିଲିଟି ?'' ମୁଁ ନିଜେ ଅନେକ ସମୟରେ ମୋର କାର୍ଯ୍ୟକଳାପ ଉପରେ ଅଧିକାର ରଖିପାରେ ନାହିଁ; ଲୋଭ, ରାଗ, ଈର୍ଷା, ସ୍ୱାର୍ଥଭାର ଆଦିର ବଶବର୍ତ୍ତୀ ହୋଇ ମୁଁ ହିତାହିତ, କର୍ତ୍ତବ୍ୟାକର୍ତ୍ତବ୍ୟ, ବକ୍ତବ୍ୟାବକ୍ତବ୍ୟ ଇୟତ୍ତା କରିପାରେ ନାହିଁ, ମୁହୂର୍ତ୍ତକ ମଧ୍ୟରେ ବିବେକକୁ ପଦଦଳିତ କରେଁ । କିନ୍ତୁ ସେ ମୁହୂର୍ତ୍ତକ ଚାଲିଗଲେ - ଶିବାଗୌରୀମତ ଲିଖିତ ବକ୍ରଯୋଗ ଓ ଶୂନ୍ୟଯୋଗ ଦଣ୍ଡକ ବିତିଗଲେ ମନରେ ଚେତନା ପଶେ - ସୁକୃତ କର୍ମ ସକାଶେ ମନରେ ଅନୁତାପ ଉପସ୍ଥିତ ହୁଏ । କଥାରେ ଅଛି, ''ହାତରୁ ଛୁଟିଲେ ଅଣବାହୁଡ଼ା ।'' ଅର୍ଥାତ୍ ଟେକାଟି ହାତରୁ ଛାଡ଼ିଗଲାରୁ ଆଉ ସେ ଟେକାଟିକୁ ବାହୁଡ଼ାଇ ଆଣି ହୁଏ ନାହିଁ । ସେହିପରି କଥାଟା ମୁହଁରୁ ଛୁଟିଲେ ମଧ 'ଅଣବାହୁଡ଼' ହୁଏ । ପର ମୁହୂର୍ତ୍ତରେ ଅନୁତାପ ମାତ୍ର ସାର ହୁଏ । ଟେକାଟି ବାଜିବା ଜାଗାରେ ବାକି କାହାକୁ ଖଣ୍ଡିଆ, କାହାକୁ ରକତ ବୁହା କରି ସାରିଲାଣି, କେଉଁ ପ୍ରାଣୀର ହଂସା ଉଡ଼େଇଦେଇ ସାରିଲାଣି । ତେଣିକି ମୁଁ ସେ ଖଣ୍ଡିଆ ଜାଗାରେ ମଲମ ପଟି ଦେଇ ସେ ଘା ଶୁଖାଇବାକୁ ଚେଷ୍ଟା କରେଁ, ଓଦା କନା ମାଡ଼ି ସେ ରକ୍ତସ୍ରାବ ବନ୍ଦ କରିବାକୁ ପ୍ରୟାସୀ ହୁଏଁ, ଢାଳେ ପାଣି ଆଣି ସେ ହିଆଉଡ଼ା ଶୋଷକୁ ନିବାରଣ କରିବାକୁ ଚେଷ୍ଟା କରେଁ । ଅର୍ଥାତ୍ ପ୍ରାୟଶ୍ଚିତ, ପଞ୍ଚଗବ୍ୟ, କ୍ଷମାପ୍ରାର୍ଥନା, ଗୋଇଠା ମାରିସାରି 'ବିଷ୍ଣୁ' କରେଁ ସତ; କିନ୍ତୁ ମନୁଷ୍ୟ ପ୍ରକୃତିର ସ୍ମରଣ ଶକ୍ତି ଏତେ ପ୍ରଖର ଯେ, ସେ ଦାଗଟି ଆଉ ଲିଭେ ନାହିଁ । ଯେ ମୋଠାରୁ ଚଟକଣିଟିଏ ଖାଇଛି, ସେ ମତେ ମୁଖିଟିଏ ନ ମାରିବା ପର୍ଯ୍ୟନ୍ତ ତା ମନ ଓ ତା ପ୍ରତିହିଂସା ପ୍ରବୃତ୍ତି ପ୍ରଶମିତ ହୁଏ ନାହିଁ, ତା ଜଳାପୋଡ଼ା କମେ ନାହିଁ । ଏଥିପାଇଁ ପୁରୁଖା ପୁରୁଖାମାନେ ଏ ସଂସାରରେ ବହୁତ ଠେଇଁ କହି ଯାଇଅଛନ୍ତି, ''ବୁଝି ବିଚାରି କାର୍ଯ୍ୟ କଲେ, ପ୍ରମାଦ ନ ପଡ଼ଇ ଭଲେ ।'' ଯେଉଁ ଲୋକ ଯେତିକି ପ୍ରବୀଣ, ଯେତିକି ଅନୁଭବୀ, ସେ ସେତିକି ବେଶି ଦୁନିଆର କହୁଣିଆ ଡିହମାନ ହସମୁହଁରେ ସମ୍ଭାଳିପାରେ । ମୁଁ ନିଜେ ଭାରି ସ୍ଥିତିସ୍ଥାପକ ଅର୍ଥାତ୍ ଆଘାତଟିଏ ମୋ ଦିହରେ ବାଜିଲେ ମୁଁ ନିଶ୍ଚେ ପ୍ରତିଘାତଟିଏ ଦେବାକୁ କୁଣ୍ଠିତ ହୁଏ ନାହିଁ । ସେତେବେଳେ ମୋର ଚେତନା ନ ଥାଏ । ଅର୍ଥାତ୍ ଆଘାତଟିଏ ମୋ ଦେହରେ ବାଜିଲା ବେଳେ ମୋ ରକ୍ତ ଗରମ ହୋଇଯାଏ । ପୂର୍ବପର ବିଚାରିବାର ଶକ୍ତି ସେତେବେଳେ ମୋର ଲୋପ ହୋଇଯାଏ ଓ ମୁଁ ବଦଳି ଧକାଟିଏ ବଜାଇ ଦିଏଁ - ସେହି ଦଣ୍ଡକ ଟପିଗଲାରୁ ମୋ ମନରେ ଚେତା ପଶିଯାଏ । ''ଆହା ! କଣ କରି ପକାଇଲିଟି । ଏ ଧକ୍କାଟି ନ ମାରିଥିଲେ କେଡ଼େ ସୁନ୍ଦର ହୋଇଥାନ୍ତାଟି ! ଟିକିଏ ଆଗପଛ ଭାବି ଚେତିପାରିଲି ନାହିଁ !'' ଏହି କଥା ଭାବୁ ଭାବୁ ମନରେ ଛନକା ପଶିଯାଏ । ଫଳତଃ

'ହାତରୁ ଛୁଟିଲେ ଅଣବାହୁଡ଼' ହୋଇଯାଏ । ମୁଁ ନିଜେ ଯେତିକି ଥୟ ହୋଇ ଭାବେଁ, ସେତିକି ଦେଖେଁ ଯେ, ମୋ ଜୀବନର ଅଧିକାଂଶ ସମୟ ପଛ-ବିଚାର ପଶ୍ଚାତ୍ତାପରେ କଟେ । କୌଣସି ଗୋଟିଏ କଥା ଭାବିଲା ବେଳେ ମୁଁ ବିଚାରେ, "ଆହା ମୋ ଜୀବନର ଅମୁକ ସମୟଟା ଫେରିଆସନ୍ତା କି, ମୁଁ ଫେର ସୁବିଧା ପାଇଲେ ଅମୁକ କଥାଟା ଏପରି କଦାପି କରନ୍ତି ନାହିଁ ।" କିନ୍ତୁ ଏ ସୁଯୋଗ ଜୀବନରେ କ୍ୱଚିତ୍ ଘଟେ । ଏ ସୁଯୋଗ ନ ଘଟିବାରୁ, ମନ ଗୋଟାଏ ମନବୁଝା ତୁଆ କାଢ଼େ - "ଗତସ୍ୟ ଶୋଚନା ନାସ୍ତି ।" "Let by gones be by gones." "Let the dead past bury it dead" ଏ ତୁଆମାନ ବୋଲି ଦେବା ସହଜ କଥା । କିନ୍ତୁ ଫଳତଃ ପୂର୍ବର କଥାଗୁଡ଼ାକ, ପୂର୍ବର ମାଡ଼ଗୁଡ଼ାକ ମାତୁଆର ମନ ଓ ଦେହରେ ଦାଗ ହୋଇ ରହିଥାଏ । ମାଡ଼ ମାରିଥିବା ଲୋକ ସେ ଦାଗଗୁଡ଼ାକ ଲିଭାଇବା ପାଇଁ ବହୁ ଚେଷ୍ଟା କରି ବିଫଳ ହୁଏ, ମାଡ଼ ଖାଇଥିବା ଲୋକ ସେ ଦାଗ ଜାଗାମାନ ଆଉଁଶି ଆଉଁଶି, ସେ ଦାଗର ଇତିହାସ ସୁମରୁ ସୁମରୁ ତା ଜୀବନଟା ବିତାଇଦିଏ । ଏଥିପାଇଁ ନୀତିକାର କହିଅଛନ୍ତି, "ସୁଚିନ୍ତ୍ୟ ଚୋକ୍ତଂ ସୁବିଚାର୍ଯ୍ୟ ଯଦ୍‌କୃତଂ - ସୁଦୀର୍ଘ କାଳେପି ନ ଯାତି ବିକ୍ରିୟାଂ ।" ଏହି 'ଚିନ୍ତା' ଓ ଏହି 'ବିଚାର'କୁ ବୋଲାଯାଏ ମନୁଷ୍ୟତା ଏବଂ ଅଭିଜ୍ଞତା । ଏହି ଶକ୍ତିମାନଙ୍କ ଯୋଗୁଁ ମନୁଷ୍ୟ ପଶୁଠାରୁ ପୃଥକ୍ । କିନ୍ତୁ ସେହି ଈଶ୍ୱରଦତ୍ତ ବୃତ୍ତିମାନ କାର୍ଯ୍ୟରେ ନ ଖଟାଇପାରିଲେ ମୋର ପଶୁଠାରୁ ପାର୍ଥକ୍ୟ ଅଳ୍ପ ରହେ ।

ମୋର ଆଉ ଗୋଟିଏ ଅନୁଭବ 'ଆତ୍ମଶ୍ଲାଘା' । ସବୁବେଳେ ମତେ ସଂସାର ପ୍ରଶଂସା କରୁଥାନ୍ତା, ମତେ ସମାଜ ମାଲ୍ୟ ଚନ୍ଦନ ଦେଇ ପଞ୍ଚୋପଚାର ପୂଜା କରୁଥାନ୍ତା, ଆମ ଗାଁବାଲା ମତେ ବିମାନରେ ବସାଇ ପହଣ୍ଡି କରାଇ ସାଇ ସାଇ ବୁଲାଇ ପନ୍ତିଭୋଗ ଖୁଆଉଥାନ୍ତେ । ଅଧିକାଂଶ କାର୍ଯ୍ୟ କଲାବେଳେ ସେ କାର୍ଯ୍ୟ ଦ୍ୱାରା ବସ୍ତୁତଃ ମୁଁ ମୋ ନିଜର କି ଉନ୍ନତି କରିପାରିବି, ଦେଶର, ସମାଜର, ସଂସାରର କି ପରିମାଣରେ ଉପକାର କରିପାରିବି, ଏହା ଅଧିକାଂଶ ସମୟରେ ନ ଭାବି, ଏ କାର୍ଯ୍ୟ ଦେଖି ଲୋକେ ମତେ କି ପରିମାଣରେ ବାହାଦୁରି ହେବେ, ସଂସାରରେ ମତେ କେତେ 'ବାହାବା' ମିଳିବ, ମୁଁ ଏହି କଥା ହିଁ ଧ୍ୟାନ କରୁଥାଏଁ । ମୁଁ ସବୁବେଳେ ଆତ୍ମପ୍ରଶଂସା ଶୁଣିବାକୁ କାନ ଡେରି ରହିଥାଏଁ ଓ ଏହି ପଦକ ଶୁଣିବା ଲାଗି କେତେ ଜାଗାରେ ଲୋକଚକ୍ଷୁ ଅଗୋଚରରେ ହାମୁଡ଼େଇ ପଡ଼ିଯାଏଁ । 'ମୁଁ ପ୍ରକୃତରେ ପ୍ରଶଂସା ପାଇବାର ଯୋଗ୍ୟ କି ନାହିଁ ?' ଏ ପ୍ରଶ୍ନର ମୀମାଂସା ନ ହେଉଣୁ 'ମତେ ଲୋକେ ପ୍ରଶଂସା କରିବେ କି ନାହିଁ ?' ଏ ପ୍ରଶ୍ନଟା ମନକୁ ତେଜିଦିଏ । ଫଳତଃ ଏହିତା ହୁଏ ଯେ, ମୋର ଅଧିକାଂଶ କାର୍ଯ୍ୟକଳାପରେ ବାହାରର ରଙ୍ଗଢଙ୍ଗ ଆଡ଼ମ୍ବରର ମାତ୍ରା ଅତ୍ୟଧିକ ହୁଏ । ସଂସାରରେ ମଧ୍ୟ ଦେଖିପାରେଁ ଯେ, ଅଧିକାଂଶ ଲୋକେ ମୋର ଛାପଚିକଣିଆ କଥା ଓ କାର୍ଯ୍ୟରେ ଭୁଲିଯାଇ ମତେ ବାହାଦୁର ଦେଇ ହରିବୋଲ ହୁଳହୁଳି ପକାନ୍ତି । ଏହି ବାହାଦୁରିର ଢେଉରେ ଭଲ ଭଲ

ଲୋକେ ମଧ ଉବେଇ ଟୁବେଇ ହୋଇଯାନ୍ତି । ମୁଁ ଯେତେବେଳେ ଅନୁଭବରେ ଦେଖିପାରେଁ ଯେ, ସଂସାରଟା ମୋର ଛାପଚିକଣିଆ କଥାରେ ଭୁଲିଯିବ, ମୁଁ ମଧ ସେହିଆଡ଼େ ମନ ଦିଏଁ । ଭିତରର ମାଲ ପ୍ରତି ମୁଁ ନିଜେ ମଧ ଦୃଷ୍ଟି ପକାଏ ନାହିଁ । ଶେଷରେ ମୋର ସମସ୍ତ କାର୍ଯ୍ୟକଳାପ ଅନ୍ତଃସାରଶୂନ୍ୟ ହୋଇଉଠେ ।

ଏହି ପ୍ରସଙ୍ଗରେ ମୋର ଆଉ ଗୋଟିଏ ଅନୁଭବ ଏହି ଯେ, ସଂସାରରେ ସ୍ୱାଧୀନ ଚିନ୍ତା କରିବା ବ୍ୟକ୍ତିଙ୍କ ସଂଖ୍ୟା ଅତି ଅଳ୍ପ - ଅଧିକାଂଶ ଲୋକେ ଗୋଟାଏ ଗୋଟାଏ 'ହୋ'ରେ ମାତି କରତାଳ ଦିଅନ୍ତି । ଜଣକ ନାମରେ ଯେନତେନ ପ୍ରକାରେଣ ଭଲ ହେଉ ମନ୍ଦ ହେଉ ଗୋଟାଏ 'ହୋ' ଉଠିଗଲେ ସଂସାରର ଲୋକେ ସେହି ହସ୍ତାରେ ମାତିଯାନ୍ତି । କିନ୍ତୁ ସେ ହସ୍ତାର ମୂଳରେ ଅସଲି କି ନକଲି ମାଲ ଅଛି, ତାହା କମ୍ ଲୋକ ଦେଖନ୍ତି । ଫଳତଃ ଦେଖିପାରୁଥାଇଁ ଯେ, ଅଧିକାଂଶ 'ନାମ-ବଡ଼ା' ବସ୍ତୁ ଓ ମନୁଷ୍ୟ କେବଳ 'ଦର୍ଶନ-ଥୋଡ଼ା' ମାତ୍ର । ଏହି 'ନାମ' ଜୋର୍‌ରେ ମନୁଷ୍ୟ ଥରେ ଉଚ୍ଚ ଆସନକୁ ଉଠିଗଲେ ତେଣିକି ପାହାଚ ପାହାଚ ଉଠିବା ତା ପକ୍ଷରେ ସହଜ । କିନ୍ତୁ ଏପରି ମଧ ମୁଁ ଦେଖିପାରିଅଛି ଯେ, ଜଣେ କେହି 'ଓସ୍ତାଦ୍' ସେହି ବାହାରର ଚହଟ ଚିକଣିଆ ପରଦାଟି ଟିକିଏ କଣା କରି ଦେଲାରୁ ମୋ ଭିତରର ଅରୁଚିକର, କଦର୍ଯ୍ୟ ଗୋବର, ଚିରାକନା, କୁଟା, ଅଳିଆ ସବୁ ପୁଳା ପୁଳା ହୋଇ ବାହାରକୁ ବାହାରି ପଡ଼ିଅଛି ଓ ମୋର 'ମନୁଷ୍ୟତା'ର ସାର୍ଟିଫିକଟ ଦେଖି ସମାଜ ମତେ ଯେତେ ବେଶି ପରିମାଣରେ ବାହାଦୁରି ଦେଇଥିଲା, ଆଜି ଫେର 'ମନୁଷ୍ୟତାର ହ୍ରେଷାରବ' ଦ୍ୱାରା ସମାଜ ସେତିକି ବେଶି ନିନାଦିତ ହୋଇଅଛି । ଏହି 'ହୋ' ପ୍ରସାଦରେ ଅନେକ 'ଅମନୁଷ୍ୟ' ମନୁଷ୍ୟ ହୋଇ 'ନାମବଡ଼ା' ଦସ୍ତାବିଜ ହାସଲ କରିଅଛନ୍ତି ଓ ପ୍ରକାରାନ୍ତରରେ ଅନେକ 'ମନୁଷ୍ୟ' ଅମନୁଷ୍ୟ ଶ୍ରେଣୀଭୁକ୍ତ ହୋଇ କାନମୁଣ୍ଡା ଆଉଁଶୁ ଅଛନ୍ତି ।

ଉ. ସା./୨୦ଶ ଭାଗ,/୧୨ଶ ସଂଖ୍ୟା,/ଚୈତ୍ର/୧୩୨୪ ସାଲ ।

## ।। ତିନି ।।

ଏ ସଂସାରଟା ଶିକ୍ଷାର ସ୍ଥଳ - ମନୁଷ୍ୟର ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ତା ଜୀବନଟା ଶିକ୍ଷାରେ ବିତିଯାଏ । ଖଡ଼ି ଧରିବାର ବହୁ ପୂର୍ବରୁ ଶିଶୁର ଶିକ୍ଷା ଆରମ୍ଭ ହୋଇଥାଏ ଓ ବିଦ୍ୟାଳୟ ଛାଡ଼ିବାର ବହୁକାଳ ପରେ ସୁଦ୍ଧା ମନୁଷ୍ୟର ଶିକ୍ଷା ଶେଷ ହୋଇ ନ ଥାଏ । ଯେବେ ମନୁଷ୍ୟ କେବଳ ବିଦ୍ୟାଳୟରେ ପାଇଥିବା ଶିକ୍ଷା ଛଡ଼ା ଅନ୍ୟ ଶିକ୍ଷା ପାଉ ନ ଥାନ୍ତା ଓ ବିଦ୍ୟାଳୟର ଶିକ୍ଷାକୁ ଏକମାତ୍ର ସମ୍ବଳ କରି ସଂସାରରେ ପଶୁଥାନ୍ତା, ତାହାହେଲେ ପଦେ ପଦେ ଠୋକ୍କର ଖାଇ ଛୋଟା ହୋଇ ଯାଉଥାନ୍ତା, ଦିନଯାକ ମାଡ଼ ଖାଇ ଖାଇ ଗୟାଁ ହେଉଥାନ୍ତା । ଏଥିପାଇଁ ଏ ସଂସାରରେ ଖାଲି ପୋଥି ପାଠୁଆଙ୍କର ଆଦର ବା

ଉନ୍ନତି ନଦାରଦ କହିଲେ ଚଳେ । ଯେଉଁ ଲୋକ 'ପାଠ' ସଙ୍ଗେ ଯେତିକି 'ଶାଠ' ମିଶାଇ ଦୁନିଆରେ ଚଳବିଚଳ ହୁଏ, ତାହାର ସେତିକି ଉନ୍ନତି ଓ ସେ ସଂସାରର ଧକ୍କା ସେତିକି ସମ୍ଭାଳିବାକୁ ସମର୍ଥ ହୁଏ । ଏ 'ଶାଠ'ଟା ସଂସାରର ନିଜସ୍ୱ - ଇସ୍କୁଲ ପାଠ୍ୟ ପୁସ୍ତକରେ ଏ 'ଶାଠ' ଟା ବେଶି ନ ଥାଏ । ପୋଥି ପାଠ ପଢ଼ି ଯେ ବିଦ୍ୱାନ୍ ହୁଏ, ସେ 'ପାଠୁଆ' (Theoretical) ନାମଧାରୀ ହୁଏ । ତାକୁ ଇଂରାଜୀରେ "Book worm' (ବହିର ପୋକ) ବୋଲାଯାଏ । କିନ୍ତୁ ସେ 'ପାଠ' ସଙ୍ଗେ ଯେ 'ଶାଠ' ମିଶାଇ କାମରେ ପାଠ ଶାଠ ଉଭୟଙ୍କୁ ଲଗାଏ, ସେ ହୁଏ 'ସଂସାରୀ' (Practical) । ତାକୁ ଇଂରାଜୀରେ କହନ୍ତି, Worldlywise ବା ବିଷୟୀ । ପ୍ରଥମରେ ଯେତେବେଳେ ମୁଁ ପାଠ୍ୟାବସ୍ଥା ଛାଡ଼ି ସଂସାରରେ ପଶିଲି, ସେତେବେଳେ ମନରେ ବିଚାରିଥିଲି ଯେ, ଆଲମାରିକୁ ଆଲମାରି ବହି ପଢ଼ି ମୁଁ ଯେଉଁ ଇଲମ ହାସଲ କରିଅଛି, ସେହି ଇଲମ ବଳରେ ଏ ଦୁନିଆଟା ଟପିଯିବି । କିନ୍ତୁ ସଂସାରରେ ପଶି ଦେଖିଲି ଯେ, ପୋଥିପାଠଗୁଡ଼ାକ କିମିତି କିମିତି ଅତୁଆ ଅତୁଆ ହେଲା ଭଳି ଜଣା ପଡ଼ିଲା । ପାଠ ଡାକିଲା, 'ସତ୍ୟଂ ବ୍ରୂୟାତ୍' - ସଂସାରର ଶାଠ ଡାକିଲା, ''ପ୍ରିୟଂ ବ୍ରୂୟାତ୍ । ନ ବ୍ରୂୟାତ୍ ସତ୍ୟମ ପ୍ରିୟଂ ।'' ଯେବେ ସତ୍ୟମ ପ୍ରିୟଂ ବ୍ରୂୟାତ୍ ତେବେ ତୁମ କପାଳରେ ଧକ୍କାଟିଏ, ବିଧାଟିଏ, ଚାପୁଡ଼ାଟାଏ ଥୁଆ, ଏଥିକି କିଏ କଣ କରିବ ରେ ବାପା ! ତୁମେ ପ୍ରିୟଂ ବ୍ରୂୟାତ୍ ନ କରିବ, ଏଣେ ଧକ୍କାକୁ ଡରିବ, ଏପରି ହେଲେ ଚଳିବ କିଆଁ ? ଗୋଟିଏ ଶାଠର ଉଦାହରଣ ଦେଲି । ସଂସାରରେ ପଶିଲେ ଦୁନିଆରେ ଘର କଲେ ଏହିପରି ଅନେକ 'ଶାଠ' ହାବୁଡ଼ରେ ପଡ଼ିଯାଏ । ସେହି ଶାଠଗୁଡ଼ିକ ଆୟତ୍ତ କରିପାରିଲେ ଓ ପାଠ ସଙ୍ଗେ ଶାଠକୁ ଲଗାଇ ପାରିଲେ ମନୁଷ୍ୟ ଏ ସଂସାରର ହଂସାଉଡ଼ା ଦାଉକୁ ସମ୍ଭାଳିବାକୁ ସମର୍ଥ ହୁଏ । ଏହି ଶାଠ ଶିଖୁ ଶିଖୁ ଆସି 'କଳିଷଠା' ତହବିଲରୁ ମୋର ବାରଅଣା ବଏ ସରିଲାଣି । ରେଶମ ବେପାରରୁ ଆସି ଝୋଟ ବେପାରରେ ରହିଲିଣି, ତଥାପି ଏ 'ଶାଠ' ଶିକ୍ଷା ସାଙ୍ଗ ହେଲା ନାହିଁ । ମନେ ମନେ ବିଚାରୁଛି ଯେ, ଏ ଶିକ୍ଷା ବାଲିଶଯ୍ୟା ପର୍ଯ୍ୟନ୍ତ ଲାଗିଥିବା ସଂସାରରେ ଯେଉଁ ଇଲାକାକୁ ନିରେଖି କରି ଦେଖ, ଦେଖିବ ଯେ, ସବୁ ଇଲାକାରେ ଏ 'ଶାଠ'ର କରାମତ ଜାହେର । ସରକାରୀ ଆଇନବହିର 'ପାଠ' ଡାକିଲା, ଅମୁକ ଦରଖାସ୍ତ ଖଣ୍ଡ ଦେବାକୁ ହେଲେ କିମ୍ବା ଅମୁକ ମକଦ୍ଦମା ଦାଏର କଲେ ଏତେକର କୋର୍ଟ୍‌ଫିସ୍ ଦେବାକୁ ହେବ କିନ୍ତୁ ସରଜମିନରେ କଚେରି ପିଣ୍ଡାରେ ପହଞ୍ଚି ଦେଖିଲା ବେଳକୁ ଏ 'ପାଠ' ଲିଖିତ କଉଡ଼ି ଉପରେ କଚିରିଆ ଶାଠ ଲିଖିତ ଅଣ୍ଟାଗୁଞ୍ଜା, ବାଜେ ଖରଚ, ଓକିଲ ମୁକ୍ତାରଙ୍କ ପୁରସ୍କାର, ବକ୍‌ସିସ୍, ଲେଖାଇ, ମେହନ୍ତନା, ରୋଜିନା, ମାପୁଆରି, ସାଲିଆନା ତଦବିର ଖରଚା, ରୋସମ ଇତ୍ୟାଦି ଖରଚ କରି ନ ପାରିଲେ ତୁମ ମାମଲା ବାଏଁ ବାଏଁ ଖଲାସ । ସଂସାରରେ ପଶିଲେ ସଂସାରିଆ ପାଠ ଶିଖ, କଚେରିକୁ ଆସିଲେ କଚେରିଆ ଶାଠ ଅଭ୍ୟାସ କର, ଏହିପରି ଯେଉଁ ଦେଶକୁ ଯିବ, ସେହି ଦେଶର ଶାଠ ଶିଖି ସେହି

ଶାଠକୁ ପାଠ ସଙ୍ଗେ ଢାରଣ ମାରଣ କରିପାରିଲେ ତୁମର ମନ୍ତ୍ର ସିଦ୍ଧ ହେବ । ନଇଲେ ତୁମ 'ପୋଥି ପାଠ' ପୋଥିରେ, ମୋ 'ବାଡ଼ି ବାଇଗଣ' ମୋ ବାଡ଼ିରେ । ମୋର ଆଉ ଗୋଟିଏ ଅନୁଭବ କଥା ଏଠାରେ ଲେଖୁଅଛି ।

ଅନେକ ସମୟରେ ଯେବେ କେହି ବନ୍ଧୁ ମତେ ପଚାରନ୍ତି, ''ହଇକି ହେ ଆପଣେ ! ଅମୁକ କାର୍ଯ୍ୟ କଲ ନାହିଁ କିଆଁ ? ଅମୁକ ସ୍ଥାନକୁ ଗଲ ନାହିଁ କିଆଁ ? ଅମୁକ ଚିଠିଖଣ୍ଡିକ ଲେଖିଲ ନାହିଁ କିଆଁ ?'' ଏଥିର ଉତ୍ତରରେ ମୁଁ କହେଁ, ''ଆରେ ଭାଇସାହେବ ! ମତେ ମରିବାକୁ ସୁଦ୍ଧା ଦଣ୍ଡେ ତର ନାହିଁ । ମୋର ଅନୁପସ୍ଥିତିରେ ମୋ ସଂସାରଟି ଦଣ୍ଡେ ଚଳିବ ନାହିଁ । ମୋ ଧନ୍ଦାରେ ମୋ ଫନ୍ଦାରେ, ମୋ ଖନ୍ଦାରେ, ମୋ ରନ୍ଧାରେ ମୁଁ ଦିନରାତି ଲାଗିଛି । ମୁଁ କୌଣସି କଥାକୁ ଦଣ୍ଡେ ନ ଚାହିଁଲେ ମୋ ଫନ୍ଦାଟି ଖିନିଖରାପ ହୋଇଯିବ । ଏଥିପାଇଁ ମୁଁ ଅମୁକ କାର୍ଯ୍ୟରେ ଯୋଗଦେଇପାରିଲି ନାହିଁ ।'' ଏ ଉତ୍ତରଟା ଅନେକ ସମୟରେ ଲୋକଭୁଲା, ଉତ୍ତର ନାହିଁ । ପ୍ରକୃତରେ ଅନେକ ସମୟରେ ଏହା ମୋର ହୃଦୟର ବିଶ୍ୱାସ ହୋଇଥାଏ ଓ ସେହି ହୃଦୟର ବିଶ୍ୱାସକୁ ବନ୍ଧୁମାନଙ୍କ ଆଗରେ ମୁଁ ପ୍ରକାଶ କରି କୈଫିୟତ୍ ଦେଇ ନିଷ୍କୃତି ଲଭିଥାଏଁ ମାତ୍ର । କିନ୍ତୁ ଯେବେ ମୋର ଆଖି ଥାନ୍ତା, ଯେବେ ମୋର ଦୃଷ୍ଟିଶକ୍ତି ଥାନ୍ତା, ତେବେ ମୁଁ ସଂସାରରେ ଶତ ଶତ ଉଦାହରଣ ଦେଖି ଚେତି ପାରୁଥାନ୍ତି । କାହାର ଅନୁପସ୍ଥିତିରେ ଭଲା ସଂସାରରେ କେଉଁ କାର୍ଯ୍ୟଟା ଅଚଳ ରହିଲାଣି ? ମନୁଷ୍ୟ ସଂସାରକୁ ଯେତେ ଜାବୁଡ଼ି ଧରିବ, ସଂସାର ତାକୁ ସେତିକି ଭିଡ଼ି ଧରିବ । ମନୁଷ୍ୟ ବିଚାରୁଛି ଯେ, ମୋ ବିହୁନେ ଏ ସଂସାର ଅଚଳ ହୋଇଯିବ । କିନ୍ତୁ ଫଳତଃ ତାହା ନୁହେଁ । ଫଳରେ ଦେଖାଯାଉଅଛି ଯେ, ଘୋର ବିଷୟୀ ଲୋକର (ଯେ ମନେ ମନେ ଗେଣ୍ଟ କରିଥାଏ ଯେ ସେ ଆଖି ବୁଜିଲା ବାସି ଦିନ ତା ସଂସାର ଓ ତହିଁ ସଙ୍ଗେ ସଙ୍ଗେ ବହିର୍ଜଗତଟା ତା ବିହୁନେ ଚୂରମାର ହୋଇଯିବ) ମୃତ୍ୟୁପରେ ତା ଘର ଓ ବାହାରର ସଂସାରକୁ ଈଶ୍ୱର ଏକପ୍ରକାର ଚଳାଇ ନିଅନ୍ତି ଓ ତା ମରିବା ପରେ, ବଡ଼ ଜୋର୍ ଦଶ ଖପରା ପଡ଼ିବା ଯାଏ ତା ପାଇଁ ଯେଉଁ କାନ୍ଦ ବୋବାଳି ଓ ବାହୁନାବାହୁନିର ରୋଳ ଲାଗିଥାଏ ତାହା ହାଉଲେ ହାଉଲେ କମିଯାଏ ଏବଂ ତେଣିକି ସଂସାରଟି ପୂର୍ବବତ୍ ଚଳେ । ଈଶ୍ୱର ତାର ନିରାଶ୍ରୟ ଅନାଥ ବାଲବଚାଙ୍କ ପାଇଁ ପରିଚାଳକ ଓ ଅଭିଭାବକ ଆଣି ଜୁଟାଇ ଦେଇ ମିଞ୍ଜା ମାରି ଦିଅନ୍ତି । ମୁଁ ନିଜେ ଅନୁଭବରୁ ବୁଝିଛି ଯେ ମୁଁ ମୋର ଘରେ 'ଧନ ଜନ ଗୋପଲକ୍ଷ୍ମୀ ପରିବେଷ୍ଟିତ ହୋଇଥିଲା ବେଳେ ମନେ ମନେ ବିଚାରେଁ ଯେ ଏଡ଼େ ବଡ଼ କାରଖାନାର ଏକମାତ୍ର କେନ୍ଦ୍ର ଓ ଚରଖି ଏବଂ ପରିଚାଳକ ମୁଁ । ମୁଁ ଦଣ୍ଡେ କେଉଁଆଡ଼େ ଚାଲିଗଲେ ଏ ଝଟଝଟିଆ କାରଖାନାଟି କେଉଁଆଡ଼େ ଭସ୍ମ ହୋଇଯିବ ପରା । କିନ୍ତୁ କାର୍ଯ୍ୟାନ୍ତରରେ ସ୍ଥାନାନ୍ତରକୁ ମୁଁ ଚାଲିଗଲେ ସ୍ଥାନାନ୍ତରରେ ଥାଇ ଅନେକ ସମୟରେ ଉପଲବ୍ଧି କରେଁ ଯେ, ମୋ ଅନୁପସ୍ଥିତି ଯୋଗୁଁ ମୋ ଘରେ କୌଣସି ଧନ୍ଦା ବାକି ରହେ ନାହିଁ । କୌଣସି ଲୋକ ଅଖିଆ ରହେ ନାହିଁ କି କୌଣସି ଫନ୍ଦା ପଡ଼ିଆ

ରହେ ନାହିଁ । ଯେବେ ଏହି କଥା ମୁଁ ହୃଦୟଙ୍ଗମ କରିପାରୁଥାନ୍ତି, ତାହାହେଲେ ସଂସାରକୁ ଏତେ କାମୁଡ଼ି ଜାବୁଡ଼ି ଧରନ୍ତି ନାହିଁ; କିନ୍ତୁ ଈଶ୍ୱର ସେ ବୁଦ୍ଧି ତ ଦେଉ ନାହାନ୍ତି । ଏଥିପାଇଁ ବାଇଦା ସେ ଖଞ୍ଜଣି ମାଡୁଆ ଶରୀରଭେଦ ଚଉତିଶା ରଚନା କରି 'ହୁଙ୍କା ଗୋସେଇଁଙ୍କ ଗାଦି ପାଖରେ, 'ରତ୍ନବଟ'ର ଚଉତରା ମୂଳରେ 'ଭାଗବତ ଟୁଙ୍ଗି'ର ପିଣ୍ଡାତଳେ ''ଶୁଖା ଖଡ଼ ଖଡ଼ ଖଡ଼ ଖଡ଼ ମିଛ ମାୟାରେ ପଡ଼ି ତୁ ଲଡ଼ବଡ଼ ଲଡ଼ବଡ଼'' ଭଜନ ଗାଇ ଦୁନିଆକୁ ଚେତାଇବାରେ ଲାଗିଅଛନ୍ତି । ଲୋକ ଏହା ଜାଣୁଛି, ଏହା ବୁଝୁଛି, ତଥାପି ଏ ମାୟାକୁ ଜାବୁଡ଼ି ଧରିଛି । ପା ୨ କହିଛି - ''ଅହନ୍ୟହନି ଭୂତାନି ଗଛନ୍ତି ଯମ ମନ୍ଦିରଂ । ଶୋଷାଶ୍ଚିରତ୍ଵ ମିଛନ୍ତି କିମାଶ୍ଚର୍ଯ୍ୟମତଃପରଂ ।'' ଏ ପୋଥିପାଠ ସମସ୍ତେ ଜାଣନ୍ତି, କିନ୍ତୁ ଦୁନିଆରେ ପନ୍ଦର ପଣ ଊଣେଇଶ ଗଣ୍ଡା ତିନିକଡ଼ା ଦୁଇକାନ୍ତ ପନ୍ଦର ବିଶ୍ୱା ଲୋକେ ସଂସାରରେ ପଶି ଏ ପାଠତକ ପାସୋରି ପକାନ୍ତି କିମ୍ୱା ଏ ପାଠ କେଉଁ ଖେଦାରେ ଥାଏ, ସେ ଖେଦାଖଣ୍ଡକ ଖତଗଦାରେ ମାଡ଼ିଦିଅନ୍ତି । ଭଡ଼ାଗାଡ଼ିର ଗୋଟାଏ ଘୋଡ଼ା ମରିଗଲେ କିମ୍ୱା ଖଚିରା ହୋଇଗଲେ ଗାଡ଼ିର ମାଲିକ ଘୋଡ଼ା ଛ' ଟଙ୍କା ଦାନା ନ' ଟଙ୍କାରୁ ରକ୍ଷା ପାଇବା ଲାଗି ସେ ଅକାମିକା ଘୋଡ଼ାଟିକୁ ଗୁଳି ଟିପିଦିଏ କିମ୍ୱା ସନ୍ତରା ବଣକୁ ଆଡ଼େଇ ଦିଏ ଓ ତହିଁ ଆରଦିନ ବଜାରରୁ ଆଉ ଗୋଟିଏ ଘୋଡ଼ା ମୂଲେଇ ଆଣି ତା ଗାଡ଼ିରେ ଲଗାଇ ପୂର୍ବପରି ତା ଭଡ଼ାଗାଡ଼ିକୁ ଚଳାଏ । ବେଳେ ବେଳେ ମୋ ମନରେ ହୁଏ ଯେ, ଏ ଦୁନିଆଟା ଏହିପରି ଭଡ଼ା-ଗାଡ଼ି-ଖାନା ଏବଂ ଖୋଦ 'ଖୋଦା' ଏଥିରେ ନିୟାମକ, ଚାଳକ ଓ ମାଲିକ । କାହାପାଇଁ ଏ ସଂସାରରେ କେଉଁ କାମ ବାକି ରହେ ନାହିଁ । ଦେଖ ଯେ, ଆସମୁଦ୍ରକ୍ଷୀତିଶ ରୁଷିଆ ସାମ୍ରାଜ୍ୟର 'ଯୁଗ ରାଇଜ'କାରୀ ଯଥେଚ୍ଛାଚାରୀ ସମ୍ରାଟ୍ 'ଜାର' (Tzar) ଙ୍କ ବିନା ରୁଷିଆ ସାମ୍ରାଜ୍ୟ ଦଣ୍ଡେ ଚଳିବ ନାହିଁ ବୋଲି ଜଗତର ଧାରଣା ଥିଲା । କିନ୍ତୁ ସେହି ସାମ୍ରାଜ୍ୟ ନିୟନ୍ତା 'ଜାର' ସମ୍ରାଟ୍ ଆଜି ରାଜେନ୍ଦ୍ରାସନର ପାଗପଟୁକା ଲଠି ଶୋଠା ମୁକୁଟ ସାତଦୀପ ସବୁ ଛାଡ଼ି ଫକୀରର ଝୁଲି ଧଇଲେଣି । ଅଥଚ ରୁଷିଆର କି ଅନ୍ତର୍ଦେଶିକ କି ବହିର୍ଦେଶିକ ସମସ୍ତ ସମସ୍ୟାମାନ ପୂର୍ବବତ୍ ଚାଲିବ । ରୁଷିଆ ସମ୍ଭନ୍ଧରେ ଯାହା, 'ଆମ ଘର' ସମ୍ଭନ୍ଧରେ ମଧ୍ୟ ସେହିତା । ଆରେ ଅବୁଝା ମନ ! ଆରେ ବାଇମନ ! ଏ କଥା ବୁଝ, ଏ କଥା ସମୁଝ ଓ ଏହି କଥାଟି ପାସୋରି ନ ପକାଇ କିମ୍ୱା ଆଳକୁଟି ମାଳକୁଟିରେ ଏ ଟିପାଖଣ୍ଡିକ ନ ପକାଇ ସଂସାରରେ ନିର୍ଲିପ୍ତ ଭାବରେ କାମ କର । ତୁ ଆସିଛୁ ମୂଲ ଲାଗିବାକୁ, ବୋଝ ବୋହିବାକୁ, ଗୋଡ଼ ଧୋଇବାକୁ । ତୋ କାମରେ ତୁ ଲାଗ । ତାହାହେଲେ ଦେଖିପାରିବୁ ଯେ, ତୋ ସଂସାରରୁ, ତୋ ଘରୁ ଅନେକ ଅଶାନ୍ତି, ଅନେକ କନ୍ଦଳ କମିଯିବ ଓ ତୁ ବଞ୍ଚି ଥାଉଁ ଥାଉଁ ଦେଖିଯିବୁ ଯେ, ଏ ସଂସାରଟା ଦୁଃଖର ସଂସାର, ଅଶାନ୍ତିର ସଂସାର, ସନ୍ଦେହର ସଂସାର ନୁହେଁ, ଏହା ଗୋଟିଏ ଅପରୂପ ଅଭାବନୀୟ ଶାନ୍ତିମୟ ଲୀଳାକ୍ଷେତ୍ର ଅଟେ । ତୋ ଘଡ଼ିକ ତୁ

କସରତ୍ କରିବାକୁ ଆସିଛୁ, ତୋ ଘଡ଼ିକ ବିତିଗଲେ ସେହି ସ୍ଥାନ ପୂରଣ କରିବା ପାଇଁ ତୋର ଅସଲ ମାଲିକ ବ୍ୟବସ୍ଥା ଅବଶ୍ୟ କରିବେ । ତୋର ଏଥିପାଇଁ ଏତେ ପରିସ୍ତ୍ରାପୋଡ଼ା କାହିଁକି ରେ ? ମୁଁ ଅହର୍ନିଶ ସଂସାରର ରୀତିନୀତି ଦେଖୁଛି; ଏ ଦୁନିଆରେ ମୋ ଆଖି ଆଗରେ ଶତ ଶତ ଶିକ୍ଷଣୀୟ ଘଟଣା ଦେଖୁଛି  ନୀତି-ଉପଦେଶପୂର୍ଣ୍ଣ ଶତ ଶତ ପୁସ୍ତକ ପାଠ କରୁଛି  ସଂସାରରୁ ଟିକେ ତଫାତ୍ ହୋଇ ରହି କର୍ତ୍ତବ୍ୟକାର୍ଯ୍ୟ ସମ୍ପାଦନ କରିବାପାଇଁ ପୁଞ୍ଜା ପୁଞ୍ଜା ଶ୍ଳୋକ କଣ୍ଠସ୍ଥ କରିଛି ଓ ଶହ ଶହ ଲୋକଙ୍କୁ ପୋଥିପାଠରୁ ସଦୁପଦେଶ ଦେଇ ମୋର ପାଣ୍ଡିତ୍ୟ ଦେଖାଉଛି । ତଥାପି ମୋ ନିଜର କାର୍ଯ୍ୟ କରିବା ବେଳ ଉପସ୍ଥିତ ହେଲାକ୍ଷଣି ଏ ସବୁ କେଉଁଆଡ଼େ ପାସୋରି ପକାଉଛି ! କିମାଶ୍ଚର୍ଯ୍ୟମତଃପରଂ ? ଏହିଗୁଡ଼ିକ ମନକୁ ବୁଝାଇବା ପାଇଁ ମୋ ଅବୁଝା ମନକୁ ଅବାଟରୁ ବାଟକୁ ଆଣିବା ପାଇଁ 'ଆମ ଘରର ହାଲଚାଲ'ର କଳ୍ପନା ।

ଉ.ସା - ୨୧ଶ ଭାଗ/୧ମ ସଂଖ୍ୟା/ବୈଶାଖ/୧୩୨୪ ସାଲ ।

## ।। ଚାରି ।।

ଖୋସାମତ, ଖୁସାମତ, ତୋଷାମତ, ତୁଷାମୋଦ, ଖୋସାମଦ, ଖୁସାମଦ, ତୋଷାମଦ, ତୋଷାମୋଦ ଏ ଶବ୍ଦଗୁଡ଼ାକ ଗୋଟାଏ କଥା ଅର୍ଥାତ୍ ମାନସିକ ପିଠି ଆଉଁଶା କିମ୍ବା ତୈଳମର୍ଦ୍ଦନ । ଏହାର ବ୍ୟୁତ୍ପତ୍ତି ନିମନ୍ତେ ବହୁତ ବେଗ, ବହୁତ ମାନସିକ, ପ୍ରସ୍ତାବପୋଡ଼ା ପାଇଲି - ତଥାପି ଗୋଟିଏ ମନବୋଧିଆ ମୂଳତତ୍ତ୍ୱରେ ପହଞ୍ଚି ପାରିଲି ନାହିଁ । ତେଣୁ ତାହା ଭାଷାତତ୍ତ୍ୱବେତ୍ତାମାନଙ୍କ କସରତ୍ ଉପରେ ଛାଡ଼ିଦେବାକୁ ଅଗତ୍ୟା ବାଧ ହେବାକୁ ପଡ଼ିଲା । ହାଇ ରେ କପାଳ !

ଯେ ହେଉ ଏ ଶବ୍ଦଟିର ସଂସାରରେ ଭାରି କରାମତ ଓ ଖେଳ । ଏ ଖୋସାମଦ ବଡ଼ଲୋକର ପୂଜାର ସର୍ବପ୍ରଧାନ ଉପକରଣ, ଗରିବ ଲୋକର ପ୍ରାଣଧାରଣର ପ୍ରଧାନ ଉପକରଣ, ମଧ୍ୟବିତ୍ତଙ୍କର ସମାଜରେ ଚଳପ୍ରଚଳ ହେବାର ଗୋଟିଏ ପ୍ରଧାନ ଛାଡ଼ ଚିଠି । ସଂସାରର ଭଲ ଲୋକ, ମନ୍ଦ ଲୋକ, ଦୁଷ୍ଟ ସନ୍ଥ, ବାଳକ ବୃଦ୍ଧ, ପୁରୁଷ ସ୍ତ୍ରୀ, ରାଜା ପ୍ରଜା, ଭକ୍ତ ପାପୀ, ରୋଗୀ ନିରୋଗ, ବିଷୟାସକ୍ତ ଓ ବିଷୟବିରାଗୀ ସମସ୍ତଙ୍କର ଏହା ଗୋଟିଏ ଆଦରଣୀୟ ଧନ । ଏହି ପଦାର୍ଥଟି ସଂସାରରୁ ବାଦ ଦେଲେ ବାକି ଯାହା ରହିବ, ତାହା କେବଳ ଖଦଖଦଡ଼ିଆ, ରାଜରାଜୁଆ, ବାଲିଆ, ଆବଡ଼ାଖାବଡ଼ା ମାତ୍ର । ଖୋସାମତ ବିନା ସଂସାରଟା ନୀରସ, ନିର୍ଜ୍ଜୀବ, ନିରାନନ୍ଦ, ନିର୍ମମ, ନିରଳଙ୍କାର ହୋଇଉଠନ୍ତା । ତେବେ ସେ ପଦାର୍ଥଟି କାହାର କେତେ ଦରକାର, ତାହା ଠିକ୍ କରି ସେହି ମାତ୍ରା ଅନୁସାରେ ପ୍ରୟୋଗ କରିପାରିଲେ ପ୍ରାୟୋଜକ ମନୁଷ୍ୟ ଇହଲୋକରେ ସୁଖୀ ହୋଇ ଦିନ ଯାପନ କରିପାରେ ।

ଖୋସାମତଟା ହେଲା ସମାଜରେ ମନୁଷ୍ୟର ଗୋଟାଏ ବାର୍ଣ୍ଣିସ । ଯେଡ଼େ ଇଚ୍ଛା ତେଡ଼େ ଅସୁନ୍ଦର ଜିନିଷ ହୋଇଥାଉ, କାରିଗର ତା ଉପରେ ପୋଛେ ବାର୍ଣ୍ଣିସ ଦେଇ ତାକୁ ଚକ୍ ଚକ୍ କରିଦେଲେ ଉକ୍ତ ଜିନିଷ ଯେପରି ଆଖି ରୁଚିକର ହୋଇ ପାଲିସ ଦିଶେ ଓ ଦାଣ୍ଡରେ ପସନ୍ଦ ଓ ବିକ୍ରିଯୋଗ୍ୟ ହୁଏ, ମନୁଷ୍ୟ ଯେଡ଼େ ଅମନୁଷ୍ୟ ହେଉ ପଛକେ, ତାଠାରେ ପୋଛେ ଏହି ଖୋସାମଦରୁ ଲଗାଇ ଦେଲେ ସେ ଆପଣା ଆଖିରେ ଓ ସଂସାର ଆଖିରେ ଭାରି କୌତୁକିଆ, ଛାପଚିକଣିଆ ଓ ଭଲଲୋକ ବୋଲି ଦେଖାଯିବ । ମୋର ମୂଲ୍ୟ ମୁଁ ଯାହା ଜାଣେ, ତାହା ବୋଧହୁଏ ସଂସାରରେ କମ ଲୋକ ଜାଣନ୍ତି, ମୋର ହୃଦୟ ରାଜ୍ୟରେ କେଉଁ କେଉଁ ପ୍ରାଣମରା ରାକ୍ଷସ ଜୀବମାନେ ରାଜତ୍ୱ କରୁଅଛନ୍ତି, କେଉଁ କେଉଁ ପାପ-ପୁରୁଷମାନେ ବିଚରଣ କରୁଅଛନ୍ତି; କେଉଁ କେଉଁ ରିପୁଚୟ ମୁଖ ବ୍ୟାଦାନ କରି ଅହରହ ବୁଢ଼ିଆଣୀ ଜାଲ ମେଲିଅଛନ୍ତି, ମୋର ଶରୀର ରାଜ୍ୟରେ କେଉଁ କେଉଁ ଉତ୍କଟ ବ୍ୟାଧି ସ୍ୱୀୟ ଆଧିପତ୍ୟ ବିସ୍ତାର କରିଅଛନ୍ତି, ତାହା ସବୁ ମତେ ଜଣା - ସେଗୁଡ଼ିକ ଯେ କେବଳ ମୋର ନିଜସ୍ୱ ତାହା ନୁହେଁ, ସଂସାରରେ ନିପାତନ ନୁହେଁ । ଅନେକ ଲୋକଙ୍କଠାରେ ଯାହା ଅଛି, ମୋଠାରେ ମଧ ତାହା ଅଛି । କିନ୍ତୁ ସେଗୁଡ଼ାକ ପଦାରେ ପ୍ରଘଟ ହେଲେ ସାଧାରଣ ମନୁଷ୍ୟଠାରୁ ମୋର ପ୍ରଭେଦ ରହିଲା କାହିଁ ? ସେସବୁ ଘୋଡ଼ାଇବାପାଇଁ ଓ ମତେ ସଭ୍ୟସମାଜରେ କାଟ୍‌ତି-ଯୋଗ୍ୟ ଜିନିଷ ଏବଂ ଗଣ୍ଡିଧନ କରିବାପାଇଁ, ମତେ ସଭ୍ୟଜଗତରେ ଆଦରଣୀୟ ପଦାର୍ଥ କରିବାପାଇଁ ପୋଛେ ଦିପୋଛ ବାର୍ଣ୍ଣିସ ଦରକାର । ସେହି ବାର୍ଣ୍ଣିସ ହେଲା ସଭ୍ୟଜଗତର 'ତୋଷାମୋଦ' । ସେତକ ଲାଗିଗଲା ଓ ମୁଁ ଦାଣ୍ଡରେ ଠିଆ ହୋଇଗଲି । ନିଶ୍ଚେ ଯେ ମୋର ଦର ବଢ଼ିଲା ଓ ମୋ ନିକଟରେ ଅନେକ ଗରାଖ ଯେ ରୁଣ୍ଡ ହେବେ, ଏଥିରେ ସନ୍ଦେହ ନାହିଁ । ତାହା ବୋଲି ସବୁବେଳେ ମୋ! ଦେହରେ ଗୁଡ଼ାଏ ସେ ରକମ ବୋଳିଲେ ଯେ ମତେ ଭଲ ଲାଗିବ, ଏହା କିଏ କହିଲା ? ବେଳ କାଳ ନ ଦେଖି, ମୋ ଦିହରେ ଥାନ ଅଥାନ ନ ଦେଖି ସେଗୁଡ଼ାକ ମୋଠାରେ ବୋଳିଲେ ଦିହଯାକ ଚଟ୍ ଚଟ୍ ଲାଗି ମୋ ଲୁଗାପଟା, ବସିବା ସ୍ଥାନ, ସବୁ ଘଟା ଓ ଖରାପ ହେବ । ଅତଏବ ବାର୍ଣ୍ଣିସରେ ଆସବାବପତ୍ର ଛାପଚିକ୍କଣ ଦେଖାଯାଏ ବୋଲି ଯେ, ଯେ ଇଚ୍ଛା ସେ ଉକ୍ତ ଦ୍ରବ୍ୟ ବୋଳି ଦେଇପାରିବ, ତାହା ନୁହେଁ ।

ବାର୍ଣ୍ଣିସ ଲଗାଇବାରେ ଯେପରି କାରିଗରି ଓ ହାତସାଫିଆନା ଅଛି, ସେହିପରି ଖୋସାମତ କରିବାରେ ମଧ କୃତିତ୍ୱ ଦରକାର । ସେଥିପାଇଁ expert ଅର୍ଥାତ୍ ଓସ୍ତାତି କାରିଗର ଦରକାର । ଓସ୍ତାତି କାରିଗରକୁ ଲଗାଇବାକୁ ହେଲେ ସେଥିପାଇଁ ଅଧିକା ମୂଲ ମଜୁରି ଦରକାର । ଅଧିକା ମୂଲ ଦେଇ ସୁଦ୍ଧା ସବୁବେଳେ ଅଉଲ ନମ୍ବର କାରିଗର ମିଳନ୍ତି ନାହିଁ - ସେପରି ଗୋଟିଏ ମିଳିଯିବା ତୁମର ବହୁ ଭାଗ୍ୟର କଥା । ତୁମେ ଦୁଇ ଜଣ କାରିଗରଙ୍କୁ ସମାନ ମୂଲ ଦେଇ ତାଙ୍କୁ ସମାନ ସମାନ କାଠ ଦିଅ, ପେଞ୍ଚ ଦିଅ,

ଉପକରଣ ଦିଅ, ରଙ୍ଗ ଦିଅ, ବାର୍ଣ୍ଣିସ ଦିଅ ଓ ଦୁହିଁଙ୍କୁ ଏକରକମର ଚିଜ ଫରମାସ ଦିଅ; ଦୁହିଁଙ୍କୁ ଏକା କାମରେ ଲଗାଅ, ଦୁହେଁ ଏକା ସମୟ କାମ କରନ୍ତୁ, କିନ୍ତୁ ଫଳତଃ ଦେଖିବ ଯେ ଜଣକ ଚିଜ ସରସ, ଜଣକ ଚିଜ ନୀରସ ହେବ । ଏଥିର ମୂଳତତ୍ତ୍ୱ କଣ ? ଏଥିର କାରଣ ଦୁହିଁଙ୍କ କାରିଗରିର ପ୍ରଭେଦ । ଦୁହେଁ ଏକା ମୂଲ ପାଆନ୍ତି, କିନ୍ତୁ ଜଣକୁ ବଜାରରେ ବେଶି ଆଦର, ବେଶି ଖୋଜା ପଡ଼େ । ସେହିପରି 'ବାର ହାତ କାକୁଡ଼ିରେ ୧୩ ହାତ ମଞ୍ଜି' ସମସ୍ତଙ୍କ ହାତରେ ଫଳେ ନାହିଁ । ମତେ ଯେବେ କେହି ଖୋସାମଦ କରେ, ତେବେ ମତେ ଖୁବ୍ ଭଲ ଲାଗେ, ମୁଁ ଜାଣିପାରୁଛି ଯେ, ଖୋସାମଦିଆ ମୋ ସମ୍ବନ୍ଧରେ ଯେଉଁ ପ୍ରିୟ-ମିଥ୍ୟାଗୁଡ଼ିକ କହୁଛି, ସେଗୁଡ଼ିକ ଅନେକାଂଶରେ ଅତିରଞ୍ଜିତ ଓ କାଳ୍ପନିକ । ତଥାପି ତାକୁ ବାଧା ଦେବାକୁ ମୋ ଆତ୍ମା ଡାକେ ନାହିଁ । କିନ୍ତୁ ମୁଁ ଯେଉଁ ଜଳବାୟୁରେ ବଢ଼ିଛି, ସେଥିର କରାମତିରୁ ହେଉ କିମ୍ବା ମୋ ଶିକ୍ଷା ସୋହବତିର ମହିମାରୁ ହେଉ, ମୁଁ ସାଧାରଣଙ୍କଠାରେ ପ୍ରକାଶ କରିଥାଏଁ ଯେ, ମତେ ଖୋସାମଦ ଭଲ ଲାଗେ ନାହିଁ ଓ ଯେ ମତେ ଖୋସାମଦ କରେ, ତା ପ୍ରତି ମୋ ଆତ୍ମା ଚିଡ଼େ । ଏ ଅବଶ୍ୟ ଗୋଟାଏ ଦୁର୍ଗୁଣ ଅର୍ଥାତ୍ ଦୋଷ । ଏହା କପଟାଚାର  କିନ୍ତୁ ଏ କପଟାଚାର ଛାଡ଼ି ହେଉ ନାହିଁ କାହିଁକି ? ମୁଁ ହୃଦୟଙ୍ଗମ କରୁଛି ଯେ, ଏ କପଟାଚାର ନ ଛାଡ଼ିବା ପର୍ଯ୍ୟନ୍ତ ମୁଁ ଅମନୁଷ୍ୟ, ଅପଦାର୍ଥ; କିନ୍ତୁ ତଥାପି ଏ କପଟାଚାର ଛାଡ଼ି ହେଉ ନାହିଁ କାହିଁକି ? କେହି କେହି ପଣ୍ଡିତ କହିଅଛନ୍ତି ଯେ, ମନୁଷ୍ୟ ଆପଣାର ଦୁର୍ଗୁଣ, ଦୁର୍ବଳତା ବୁଝିପାରିଲେ ସେଗୁଡ଼ିକ ସଂଶୋଧନ କରିବାକୁ ଚେଷ୍ଟିତ ହୁଏ । କିନ୍ତୁ ମୋ ନିଜର ଅନୁଭବରେ ତାହା ଘଟୁ ନାହିଁ କାହିଁକି ? ମୋ ନିଜର ଦୁର୍ବଳତା ମୁଁ ଉପଲବ୍ଧି କରି ସୁଦ୍ଧା ସବଳ ହେବାକୁ ଚେଷ୍ଟା କରୁ ନାହିଁ କାହିଁକି ?

ଉ.ସା. - ୨୧ଶ ଭାଗ/୨ୟ ସଂଖ୍ୟା/ଜ୍ୟେଷ୍ଠ/୧୩୨୫ ସାଲ ।

## ।। ପାଞ୍ଚ ।।

ମୋର ନିଜର 'ସ୍ୱରୂପ' ମତେ ଯାହା ଜଣା, ସଂସାରରେ ଅତି ଅଳ୍ପ ଲୋକ ତାହାର ସାକ୍ଷାତ୍କାର ଲାଭ କରିଅଛନ୍ତି । ସେ ସ୍ୱରୂପଟା କାଚ ଘଟାଟୋପ ଭିତରେ ପୂରାଇ କଳା ପରଦା ଦେଇ ପଦା ହାଓଆ ତହିଁରେ ଯେପରି ନ ଲାଗେ, ସେତ୍ପରି ଅତି ଯତ୍ନରେ ତାକୁ ମୁଁ ଦିନରାତି ଘୋଡ଼ାଇ ରଖିଥାଏଁ । ବେଳେବେଳେ ସେ ଆଲମାରିର ଚାବିଟା ମୋ ଗରହୁସିଆରି ବଖତରେ ଯା ତା ହାବୁଡ଼ରେ ପଡ଼ିଗଲେ ତାକୁ କେହି କ୍ୱଚିତ୍ ଦେଖନ୍ତି, କିନ୍ତୁ ସେ ପିତୁଳାଟିକୁ ଓଲଟପାଲଟ କରି ସମସ୍ତେ ଦେଖିବାକୁ ତର ପାଆନ୍ତି ନାହିଁ । କେହି ଯେବେ ଲୁଚାଚୋରା କରି ଗୁମର ଦେଖନ୍ତି, ତାହା ପଦାରେ ପ୍ରକାଶ କରିବା କାଠିକର ପାଠ । କାରଣ ତାହାହେଲେ ପ୍ରଶ୍ନ ଉଠିବ ଯେ, ''କାଚ ଆଲମାରିର ଚାବି ତ ମୋ କମରରେ, ତୁମେ ସେ ଆଇନା ବାଡ଼ର କଳା ପରଦାର ପଛ ଆଡ଼ର ପିତୁଳାଟିକୁ ଦେଖିଲ କିମିତି ?'' ଅତଏବ ତୁମେ ସେ ପିତୁଳାଟିର ବିବରଣ ଦାଣ୍ଡଚେ ବାହାର କଲା

ବେଲକୁ ତୁମ ନାମରେ ପ୍ରଥମ ଅଭିଯୋଗ - (.୧) ପିଙ୍ଗଳ କୋର୍ଡ଼ର ଅନଧିକାର ପ୍ରବେଶ ଲଗାଏତ ଚୌର୍ଯ୍ୟାପରାଧ (୨) ଅପବାଦ ଦଫା ।

ବିନା ମୋ ଘରଟି ମୁଁ ନ ଫିଟାଇଲେ ଆଇନର ବଡ଼ବାପାଙ୍କ ବାପା ମଧ ମୋ କାଚ ଆଲମାରିର କଳା ପରଦା ଟେକି ଦେଖିବାକୁ ଅସମର୍ଥ । ଯେବେ କେହି ଗିଲାଗୁଜ୍ଞାରିଆ କରି ଛପଟିଆ ମାରି ଦେଖେ ବା ଦେଖିବାକୁ ସୁବିଧା ପାଏ, ତେବେ ମଧ ମୋ ଆଲମାରିର contents ର (ମଧ୍ୟସ୍ଥଳସ୍ଥ ସରଞ୍ଜାମ) ସ୍ୱରୂପ ସମ୍ବନ୍ଧରେ ପ୍ରମାଣାଭାବ ।

ଏଥିପାଇଁ ଦେଖୁଛି ଯେ, ଅନେକ ଲୋକ ଜାଣୁଛନ୍ତି ଯେ, ମୋ କାଚ ଆଲମାରିର 'କନାଟି-ବାଡ଼' ପଛଆଡ଼େ ବିକଟାଳ ଅସ୍ଥିକଙ୍କାଳମାଳା, ତଥାପି ମୋ ସାମନାରେ ସେ କଥା କହିବାକୁ ଦୁନିଆରେ ଅତି ଅଳ୍ପସଂଖ୍ୟକ ଲୋକଙ୍କର ସାହସ ବା ପ୍ରମାଣ ଉପସ୍ଥିତ ।

ତୁମେ ଜାଣୁଛ ଯେ, ମୁଁ ପାଜି, ଜୁଆଚୋର, ପରାନିଷ୍ଟକାରୀ, ଇତ୍ୟାଦି, ଇତ୍ୟାଦି; କିନ୍ତୁ ମତେ ଭେଟିବା ମାତ୍ରକେ ନମସ୍କାର, ବଚସ୍କାର, ପୁରସ୍କାର, ପରିଷ୍କାର ଇତ୍ୟାଦି ଇତ୍ୟାଦି ସାଉଁଳିଆ ସମାଜବୋଧିଆ ସମ୍ବୋଧନରେ ସନ୍ତର୍ପିତ କରୁଅଛ । କାରଣ ଅସଲ କଥାଟା ତୁମେ ମୋ ଆଗରେ କହିଲେ ତାହା ବିଦ୍ ବଜାର ଦାଣ୍ଡ ମଝିରେ ପ୍ରମାଣ କରାଇବା ପାଇଁ ତୁମ୍ଭଙ୍କୁ ଆଚ୍ଛା ପଟାଏ ଲଣ୍ଡଭଣ୍ଡିଆରେ ପଡ଼ିବାକୁ ହେବ । ଏଥିପାଇଁ ''ମହାଶୟ, ମହାଭାଗ, ଧର୍ମାବତାର, ଖୋଦାବନ୍ଦ, ପ୍ରିୟବର'' ଇତ୍ୟାଦି ସମ୍ବୋଧନ ସୃଷ୍ଟି । ଜାଣୁଛ ଯେ, ମୁଁ ନିରାଶ୍ରୟ, କିନ୍ତୁ ମୁହଁରେ କହୁଛ, 'ମହାଶୟ' ! ଜାଣୁଛ ଯେ, ମୁଁ ଅଧର୍ମ ଦେବତାଙ୍କର ସରଦାର ଖାନସମା, ତଥାପି ମତେ ସମ୍ବୋଧନ କରୁଛ, 'ଧର୍ମାବତାର' !

ଏ କଥା ବେଶି ଧରା ପଡ଼େ ଓକାଲତି ଓ ମୁକ୍ତାରି ପେସାରେ । ଆମ୍ଭେମାନେ ପେଟ ବିକଳରେ ପର ବୁଜୁଲା ନେଇ ବାରଦୁଆର ହେଉଁ । ଏ କଥା ଅଳ୍ପବହୁତ ସମସ୍ତେ ଜାଣନ୍ତି । ପର ପୁଅକୁ ପର ପୁଅ ମାଇଲା । ଆଚ୍ଛା ଯା ଚାଲିଯା ସିଧାଏ ସିଧାଏ ଓକିଲ ମୁକ୍ତାରଙ୍କ ପାଖକୁ, ନଇଲେ ଓକିଲ ମୁକ୍ତାରଙ୍କ ପାଖକୁ ବାଟ କଢ଼ାଇବା ବାଟମାରଣାଙ୍କ ପାଖକୁ . ଯେ ବିଧାଟିଏ ଖାଇ ଆସିଥାଏ, ସେ ଫେରିଆସି ଆମ ମହକୁମାରେ ଦଣ୍ଡବତି ଟଙ୍କାଟିଏ ଥୁଏ । ସେଇକ୍ଷଣି ପର ପୁଅର ଦୁଃଖ କାହାଣୀ ଧାତୁ ଆକାରରେ ଆମ ସାମନାରେ ପହଞ୍ଚିବା ମାତ୍ରକେ ଆମ ହୃଦ ଭିତରର ଫୁଲବୁକୁ ଫଗୁଆମା ଗଉଡୁଣୀର ପସରାରେ ଥିବା ଅଉଲ ନମ୍ବରର ଗୁଆ ଲହୁଣି ଭଳିଆ କଅଁଳ ଗାଧୁଆବେଳ ହେବା ମାତ୍ରକେ ତରଳିଯାଏ ଓ ଆମ ନିଜ ପୁଅଙ୍କର ଅର୍ଶ ବେମାରି ହେଲେ ଆମ ମନଟାକୁ ଯେତେ ବାଧି ନ ଥାଏ, ପର ପୁଅର ଦୁଃଖରେ ମନଟା ତହୁଁ ଅଧିକ ଗୋଳେଇ ଘାଣ୍ଟି ହୁଏ ।

(ନୋଟ୍ - ଓଃ ! ପାଠକ ଅବଧାନ ! କଲମ ଧରି ଗରହୁସିଆରରେ କେତେବେଳେ କଣ ଖଣ୍ଡିଏ ପ୍ରସ୍ତାବକ-ଲେଖନରୁ ବାହାରି ପଡ଼ିଲେ ଲେଖକକୁ କେତେ କାଲୁବାଲୁ ହେବାକୁ ପଡ଼େ ! ଲେଖୁ ଲେଖୁ ପୁଅଙ୍କ ବେମାରି କଥା ଲେଖି ହୋଇଯିବା ମାତ୍ରେ ଆପଣମାନେ ଏଥିର ବୁଝଟଫର୍ଦ ପାଇଁ ଆଖି ତରାଟି କରି ବସିସାରିଲେଣି ! ପର ବୁଢ଼ୁଲାର ଖବର ଦସ୍ତୁର ମୁତାବକ ନେବାର ଆବଶ୍ୟକ ହୋଇପଡ଼େ । ଏଥିପାଇଁ ପର କଥା କହୁ କହୁ ଘର କଥା ବାହାରିପଡ଼େ । ଲେଖକ ନିଜ ଅନୁଭବରୁ ମଧ ଦେଖିଛି ଯେ, 'ଦୁନିଆର ହାଲଚାଲ' ଘେନି ଦାଣ୍ଡକୁ ବାହାରି ପଡ଼ିବା ପଛେ ପଛେ 'ଆମ ଘରର ହାଲଚାଲ' ଫିଟାଇବାକୁ ପଡୁଛି । ହେଉ, କଅଣ କରାଯାଏ ରେ ବାପା ! ଅନ୍ୟ ବେମାରି କଥା ନ କହି ଅର୍ଶ ବେମାରି କଥାଟା ମନେ ପଡ଼ିବାର କାରଣ ଅଛି । ଅର୍ଶ ବେମାରଟା ଗୋଟିଏ ପୈତୃକ ଓ ମିତାକ୍ଷରା ଶାସ୍ତ୍ରାଧୀନ ପରିବାରର ଇଜମାଲି ସମ୍ପତ୍ତି । ଅର୍ଥାତ୍ ପିତାଙ୍କର ବା ପିତାମହଙ୍କର ସେ ବେମାରିଟି ଥିଲେ ପରବର୍ତ୍ତୀ ପୁରୁଷଙ୍କର ଦେହରେ ତାହା ବିକାଶ ପାଇବା ସ୍ୱାଭାବିକ । ଇମିତି କେତେଗୁଡ଼ିଏ ରୋଗ ଅଛି, ଯଥା - ବାତଜ୍ୱର ଓ ତାଙ୍କର ଅର୍ଦ୍ଧଳି ନାନା ସ୍ଥାନର ଆୟତନ ଓ ଘନଫଳ ବୃଦ୍ଧି, ଅପସ୍ମାର, ଶ୍ୱାସ ଇତ୍ୟାଦି । ଯୋଗକୁ ଲେଖକଙ୍କର ଅର୍ଶଟି ବଂଶଗତ ଓ ପୈତୃକ ସମ୍ପତ୍ତି । ଦାୟଭାଗର ପୈତୃକ ସମ୍ପତ୍ତି ପିତାଙ୍କ ଅନ୍ତେ ପୁଅ ପାଏ । କିନ୍ତୁ ମିତାକ୍ଷରା ଶାସ୍ତ୍ରାଧୀନ ପରିବାରରେ ପୈତୃକ ସମ୍ପତ୍ତିରେ ଜନ୍ମକାଳରୁ ପୁତ୍ର ପିତାଙ୍କ ସଙ୍ଗେ ହିଂସାଦାର ହୁଏ ଏବଂ ପିତାଙ୍କ ମୃତ୍ୟୁ ପରେ ପିତାଙ୍କ ହିଂସାକୁ ସର୍ଭାଇଭର ଅର୍ଥାତ୍ ମୃତପିତୃକ ଉତ୍ତରାଧିକାରୀ ସୂତ୍ରେ ପାଏ । ଏପରି ବଂଶରେ ବାପେ ବଞ୍ଚି ଥାଉଁ ଥାଉଁ ଅର୍ଥାତ୍ ପୁଅର ନାବାଳକି ନ ଯାଉଣୁ ଅର୍ଶରୋଗ ପୁଅଙ୍କଠାରେ ଦେଖାଦିଏ । ଲେଖକ ନିଜେ ସେହି ରୋଗ ଭୋଗି ସେ ରୋଗର ଜ୍ୱାଳାଯନ୍ତ୍ରଣା ଉତ୍ତମରୂପେ ବୁଝିଛି । ଏପରି ସ୍ଥଳରେ ପୁଅଙ୍କୁ ସେ ରୋଗ ହେବା ମାତ୍ରକେ ପୁଅ କି କଷ୍ଟ ପାଉଛି, ତାହା ବୁଝିବାକୁ ଲେଖକକୁ ଜାଣିବାକୁ ବାକି ରହେ ନାହିଁ । ଅନ୍ୟ କୌଣସି ସ୍ୱ-ଅନୁଭବ - ବହିର୍ଭୂତ ରୋଗରେ ପୁଅ ପଡ଼ିଲେ ବାପେ କେବଳ ଅନୁମାନ ଅର୍ଥାତ୍ ଅନ୍ଦାଜ ଉପରେ ବିଶ୍ୱାସ କରି ପୁଅଙ୍କ କଷ୍ଟ ବୁଝିନିଅନ୍ତି । କିନ୍ତୁ ନିଜ ଅନୁଭବ-ସିଦ୍ଧ ଅର୍ଶ ରୋଗରେ ପୁଅ ଆକ୍ରାନ୍ତ ହେଲେ ସେ ଜ୍ୱାଳାର କରାମତି ବାପଙ୍କୁ ବୁଝାଇବା ପାଇଁ ଆଉ କେହି ଖୋଜା ପଡ଼ନ୍ତି ନାହିଁ । ଏପରି ସ୍ଥଳରେ ମୁଁ ନିଜେ ଦେଖିଅଛି ଯେ, ପୁଅକୁ ଅର୍ଶ ରୋଗ ଆକ୍ରମଣ କରିବାର ଦେଖି ମୋ ମନ ଯେତେ ବ୍ୟସ୍ତ ହୋଇ ନ ଥିଲା ବା ନ ହୁଏ, ପର ପୁଅ ମୋ ପାଖକୁ ମାଲିମକଦମା ପାଇଁ ଆସିଲେ ମୋ ମନଟା ଖଡ଼େଦମ୍ ପିତୁତାର ଭଳିଆ ପିଗିଳିଯାଏ । ପାଠକ ଅବଧାନ ! ବର୍ତ୍ତମାନ ବୁଝିବାହେଲେ ତ, କାହିଁକି ପର କଥା କହୁ କହୁ ଘର କଥା କଲମରୁ ବାହାରି ପଡ଼ିଲା ? ଇତି ।)

ମୁଁ ନିଜେ ଅନୁଭବରୁ ଦେଖିଅଛି ଯେ, କୌଣସି କୌଣସି ହାକିମ ଗଧଡ଼, ଭଙ୍ଗଡ଼, ଚଷଡ଼, ଫସଡ଼, ଅଣ୍ଡାଖୋସଡ଼ ଇତ୍ୟାଦି ଗୁଣବିଭୂଷିତ ହୋଇ ମିସଲ ଜମାଇ ବସିଥାନ୍ତି । ଆମେ ମକ୍କେଲର ଜୀବନ ନାଟିକାଟିମାନ ଧରି ତାଙ୍କ ଅଫିସରେ ହାଜର ହୋଇ ଆମର ପଦ୍ମତୋଳା 'ବୋଲି' ଆରମ୍ଭ କଲୁଁ - ଢେମଣାକୁ ଗୋଖର ମନ୍ତ୍ର କାଟିବ କାହୁଁ ?

"ସାପ, ଗିଧଡ଼, ହାକିମ, ହଡ଼ା,
ନାଚନ୍ତି ପାଇଣ ଲାଙ୍ଗୁଡ଼ ମୋଡ଼ା !"

ଇମିତି ଗୋଟାଏ ଆଧୁନିକ ଘଟନାମୂଳକ ଢଗର ଅନୁସରଣ କରି ଆମେ ତାଙ୍କ ଲାଞ୍ଜକୁ ମିସଲର କଡ଼ପଟ ବାଟେ ଦାଉ ଦେଖି ଟିକିଏ ଆଉଁଶିଦେଉଁ - "Your honour ! (ଅର୍ଥାତ୍ ହେ ହଜୁରଙ୍କ ଅନ୍ତରାତ୍ମାରେ ବିରାଜମାନ କରୁଥିବା 'ସତ୍' ପଦାର୍ଥ !) ହଜୁରଙ୍କ ଠାରୁ ବଳି ସଂସାରରେ କେହି ନାହିଁ ।"

"ଧର୍ମାବତାର ! (Your honour) ମକଦ୍ଦମାର କୁଲ୍ ହାଲଟା ଠିକେ ଠିକେ ଯାହା ବୁଝି ନେଲେଣି, ଆମେ ଗମାର ଏତେ ମେହନତ କରି ତହିଁରୁ କାଣିଚାଏ ବୁଝିପାରି ନାହୁଁ ।"

"ହଜୁରଙ୍କର ବହୁକାଳବ୍ୟାପୀ ମୂଲ୍ୟବାନ୍ ଅନୁଭବକୁ (Your Honour's extensive and valuable experience ଆମ୍ଭେ (ମକ୍କେଲ ପକ୍ଷରୁ) ସନିର୍ବନ୍ଧ ଆବାହନ (appeal) କରୁଅଛୁଁ ।"

"ଶ୍ରୀଧର୍ମାବତାର ଆଇନର ସନ୍ଧି ବିସନ୍ଧି (the hair-splitting intricacies of the law) ଓ ଆଇନକର୍ତ୍ତାଙ୍କ ଗୂଢ଼ ଉଦ୍ଦେଶ୍ୟ (the inmost intuition of the Legislature) ଯାହା ଉଆକବକାର ଅଛନ୍ତି, ଅଧୀନ ସେଥିରୁ ଶତାଂଶ ସୁଦ୍ଧା ଜାଣେ ନାହିଁ ।"

"ଶ୍ରୀହଜୁରଙ୍କ ଆଗରେ ଗୁଡ଼ାଏ ଗପ ଗପି ହଜୁରଙ୍କର ମୂଲ୍ୟବାନ୍ ସମୟ ନଷ୍ଟ କରିବାକୁ ଅଧୀନ ଚାହେ ନାହିଁ । (I do not like to waste your Honour's valuable time by irrelevant talk)"

"ଧର୍ମାବତାର ଗରିବର ମା' ବାପ, ଅଧୀନ ଦେଖିପାରୁଛି ଯେ, ମୋ ମକ୍କେଲର ସାତପୁରୁଷଙ୍କ ବହୁଭାଗ୍ୟରୁ ଆଜି ମୋ ମକ୍କେଲର ବିଚାର ହଜୁରଙ୍କ ନିରପେକ୍ଷ ଓ ଅନୁଭବୀ ଇଜ୍‌ଲାସକୁ ଆସିଅଛି । "It is the utter good fortune of my client that his case is placed before an impartial and experience Court like Your Honour."

ହଜୁର ଧର୍ମର ବିଲଫଏଲ ଅବତାର ଅର୍ଥାତ୍ "ତୁ ନାଥ ପରମ ଦୟାଳୁ - ବୁଝିପାରୁଚ ଖାଉଆଳୁ ।"

ଏହିପରି ସବୁ ବଛା ବଛା ଗାରୁଡ଼ି ମନ୍ତ୍ର ଆରମ୍ଭ କରୁ କରୁ ମକ୍କେଲର ଧର୍ମବଳ ବଳିଆର ଥିଲେ ଏଥିରୁ କାଣ୍ଡିଏ ଖଣ୍ଡେ କୌଣସି ଗୋଖର ଗଦି ଲାଗିଥିବା ହାକିମଙ୍କ ଲାଙ୍ଗୁଡ଼ରେ ଲାଗିଯାଏ । ଦେବ୍‌ତା ନିଜର ସମ୍ମାନ ସାଧାରଣଙ୍କ ଚକ୍ଷୁରେ ଏତେ ଉଚ୍ଚ ଥିବାର ଭାବି ହିଂସା-ଚିପୁଡ଼ା ମୁରୁକି ହସ ମାରି ମକ୍କେଲର ମକଦ୍ଦମାର କନ୍ଦି ବିକନ୍ଦି ପଶିବାକୁ ଝାଡ଼ିଝୁଡ଼ି ହୁଅନ୍ତି ଓ ବିରାଡ଼ି ଯେପରି ଶିକାର ଦେଖି ଫୁଲେ, ସେହିପରି ଫୁଲନ୍ତି ।

ସେଥିରୁ ମକଦ୍ଦମାର ହାଲଚାଲ, ପ୍ରମାଣର ଅବତାରଣା, ସାକ୍ଷୀ ଜବାନବନ୍ଦି, ଦଲିଲ ପ୍ରମାଣର ଜବାବ ସୁଆଲର ଢେଉ ଉଠେ । ହାକିମ କେତେବେଳେ ରାମ୍ପନ୍ତି, କେତେବେଳେ କମ୍ପନ୍ତି, କେତେବେଳେ ଶମ୍ପନ୍ତି, କେତେବେଳେ ଝାମ୍ପନ୍ତି, କେତେବେଳେ ଲମ୍ପନ୍ତି, କେତେବେଳେ ଖୁମ୍ପନ୍ତି, ଏହିପରି ନାନା ପ୍ରକାର ନିଜର ଅପରୂପ ମାଧୁରୀକୁ ଆମ ଆଗରେ ଫୁଟାନ୍ତି । ତାଙ୍କର ଆଇନଜ୍ଞାନ, ଅଭିଜ୍ଞତା, ମସ୍ତିଷ୍କରେ ଥିବା ମସଲାର କାଠିନ୍ୟ ଆଦି ସବୁ ଆମେ ଠଉରାଇନେଉଁ । ଯେନତେନପ୍ରକାରେଣ ଆମ ଫିସତକ କାନିରେ ବାନ୍ଧି (ଓଃ ! ରାମ ! ପାକିଟିରେ ପୂରାଇ) ଆମେ ଘରକୁ ଫେରୁଁ । ଆମ ମକ୍କେଲ ମହୁ ଚାଟିବା ଭଳି ମୁହଁ କରି ଘରକୁ ଫେରେ । ଆମେ କଚେରିରୁ ଫେରି ଘରେ ଆସି ପହଞ୍ଚିଲେ କିମ୍ବା ଓକିଲଖାନାରେ ଗପ ପଡ଼ିଲେ ଯେଉଁ ହାକିମ ଆଃ ସାଉଁଳିଆ ମର୍ଦନରେ ଲାଞ୍ଜ ଫୁଲାଇଥିଲେ, ତାଙ୍କର ଆମେ ଯେଉଁ ବର୍ଣ୍ଣନାଟା କରୁ, ଖୋଦ ହାକିମ ଯେବେ ସେଥିରୁ ପଣେ ଶୁଣୁଥାନ୍ତେ, ତାହାହେଲେ ତାଙ୍କର କେତେ ଚେତନା ପଶୁ ନ ଥାନ୍ତା ? କିନ୍ତୁ ତାଙ୍କୁ ସାମନାରେ କହୁଛି କିଏ ?

ହାକିମଙ୍କଠାରେ ଯେଉଁ ନିଶାପ ଖଟିଲା, ଆମଠାରେ ଯେ ତାହା ନ ଖଟିବ, ଏହା କିଏ କହିବ ? ପୁଣି ମକ୍କେଲ ଆମ ପାଖରେ କନ୍ଦାକଟା କରି, ତା ପେଟରେ ଓଦାକନା, ପିଠିରେ ଚିରାକନା ପକାଇ ଆମଠାରୁ ଚଉକଷିଆ କାମ ନେଇସାରି ଆମ ଆଖିରେ ଧୂଳି ପକାଇ ଆମକୁ ଫଳେ ପୁଷ୍ଟେ ବୋଧଶୋଧ କରିଦେଇ ଘରକୁ ଚାଲିଯାଏ । କିନ୍ତୁ ଗାଁରେ ପହଞ୍ଚି ଭାଗବତ ଘର ପିଣ୍ଡା କିମ୍ବା କୀର୍ତ୍ତନ ଆଖଡ଼ା ବୈଠକୀ ବେଳେ ସେ ଆମର ଯେଉଁ ରୂପ ଓ ଗମାରପଣିଆ ତା ଗାଁବାଲାଙ୍କ ଆଗରେ ଚିତ୍ର କରି ଠିଆ କରାଏ, ସେ ରୂପରୁ କାଣିଚାଏ ଯେବେ ଆମ ଦୃଷ୍ଟିଗୋଚର ହେଉଥାନ୍ତା, ତେବେ ଆମେ ନିଜେ କେତେ ପରିମାଣରେ ଚୈତନ୍ୟ ଲାଭ କରିଥାନ୍ତୁ ! ଆମର ମଧ୍ୟ କେତେ ପରଘରବୁଡ଼ା ପ୍ରବୃତ୍ତି ଓ ଅଭ୍ୟାସ ଅଛି, ସେ କଥା ଆମକୁ ମୁହେଁ ମୁହେଁ କହିବାକୁ ମକ୍କେଲ ବାପୁଡ଼ାର ସାହସ କାହିଁ ?

ଅତଏବ ମୁଁ ଯେତେ ଏ ସଂସାରରେ ବୁଲୁଅଛି, ସେତିକି ଦେଖୁଅଛି ଯେ, ଆମେ ସମସ୍ତେ କୁହୁକରେ ମାତିଅଛୁଁ । ଆମ ପ୍ରତି ଲୋକେ କି ମତ ପୋଷଣ କରୁଅଛନ୍ତି ତାହା ବୁଝୁ ନାହୁଁ, ବୁଝିବାକୁ ଚେଷ୍ଟା ମଧ୍ୟ କରୁ ନାହୁଁ । ଆଜି ଏତିକିରେ ଥାଉ ।

ଉ. ସା. - ୨୧ଶ ଭାଗ/୩ୟ ସଂ/ ଆଷାଢ଼/୧୩୨୫ ସାଲ ।

## ।। ଛଅ ।।

ପାଠକ ଓ ଆଇନଜ୍ଞ ବ୍ୟକ୍ତିମାନେ ଓ ନିତାନ୍ତ ନିପଟ ମଫସଲରେ ଚଉକିଦାର, ଦଫାଦାର, ପ୍ରେସିଡେଣ୍ଟ, ସାଧାରଣ ପଞ୍ଚାଏତ, ଜମିଦାରଙ୍କ ତହସିଲଦାର, ଛାମୁକରଣଠାରୁ ଆରମ୍ଭ କରି ଜମିଦାରଙ୍କ ପିଆଦା ଓ ହଳିଆ ପର୍ଯ୍ୟନ୍ତ ସମସ୍ତେ ଚୋରିର ସଂଜ୍ଞା ଉତ୍ତମ ରୂପେ ଜାଣନ୍ତି । ଏଥିର ସଂଜ୍ଞା ଜ୍ଞାନ ପାଇବା ମାତ୍ରକେ ମନୁଷ୍ୟ ଜାତି ସ୍ୱତଃ ଜାଣିଯାଏ ଓ କଥାରେ କହନ୍ତି, 'ଚୋରକୁ ମାଡ଼' ଦେବା କଥା କେହି କାହାକୁ ବତାଇ ଦିଏ ନାହିଁ । ପଧାନ ବାପୁଡ଼ାର ବାଡ଼ିରେ ରାଉତପୁଅ ପଶିଛି, ରାଉତପୁଅ ଧରା ପଡ଼ିଗଲା - ଦିଅ ତା ଉପରେ ଦୁଇପୁଞ୍ଜା ପଚିଶପଳିଆ ଥୋଇ । ରାଉତପୁଅର ହାରି ଗୁହାରି କେହି ନାହିଁ । ଆଚାର୍ଯ୍ୟଙ୍କ ବାଡ଼ିଆଡ଼ଟାକୁ ଟିହାଡ଼ୀଏ ସନ୍ଧ୍ୟାପହରେ ତାଙ୍କର ଆପଣାର ସଦର ଦରଜା ବୋଲି ସିଦ୍ଧାନ୍ତ କରି ସେହି ସିଦ୍ଧାନ୍ତକୁ କାର୍ଯ୍ୟରେ ପରିଣତ କରିଅଛନ୍ତି; ଆଚାର୍ଯ୍ୟେ ଆପଣେ ସାଆନ୍ତରାଙ୍କ ଘରକୁ ନିତି ପୁରାଣ ବୋଲିବାକୁ ଯା'ନ୍ତି - ତେଣୁ ରାତି ପହରକ ଠାରେ ଘରକୁ ଫେରିଆସି ଖଞ୍ଜାରେ ପଶି ମରଦପୁଅର ଦିହର ଗନ୍ଧ ବାରି ହଲ୍ଲା କରନ୍ତି । ହଲ୍ଲା ଶୁଣି ସାଇପଡ଼ିଶାଏ ଆଚାର୍ଯ୍ୟଙ୍କ ଖଞ୍ଜାରେ ରୁଣ୍ଡ ହୋଇ ଦରଣ୍ଡାଦରଣ୍ଡି କରି ଟିହାଡ଼ୀଙ୍କୁ ଧରପଗଡ଼ କଲା ମାତ୍ରକେ ଗାଁବାଲାଙ୍କ ବାଡ଼ି, ପାଞ୍ଚଣ, ହାତ, କହୁଣି, ଆଙ୍ଗୁଠି, ଗୋଡ଼ ସମସ୍ତେ ଟିହାଡ଼ୀଙ୍କ ଅବୟବର ଯଥୋପଯୁକ୍ତ ଅଙ୍ଗପ୍ରତ୍ୟଙ୍ଗ ଓ ତ୍ୱକ୍, ଘ୍ରାଣ, ଶ୍ରବଣାଦି ଇନ୍ଦ୍ରିୟମାନଙ୍କ ସଙ୍ଗେ ପ୍ରାଜାପତ୍ୟ ଓ ଗାନ୍ଧର୍ବାଦି ସମ୍ପର୍କ ସ୍ଥାପନ କରିଦିଅନ୍ତି । ଏ ସମ୍ବନ୍ଧ ସ୍ଥାପନପାଇଁ ଘଟକ ବା ଉପଦେଶକ ଦରକାର ହୁଏ ନାହିଁ । କେହି କାହାକୁ କହିବାକୁ ହୁଏ ନାହିଁ, ଅଥଚ ତ୍ରିପାଠୀ ମହାଶୟ ପଞ୍ଚୋପଚାର ଓ ଷୋଡ଼ଶୋପଚାର ପୂଜା ମାଧୁର୍ଯ୍ୟ ଓ ମିଷ୍ଟତା ଉପଲବ୍ଧି କରୁ କରୁ ତାର ଆଖି କାନ ନାକ ଆଦି ସବୁ ବହିରୀନ୍ଦ୍ରିୟଯାକ ବୁଜି ହୋଇଯାଏ । ଏଥିପାଇଁ କହିଲି - 'ଚୋରି' କଣ, 'ଚୋର' କିଏ ଓ 'ଚୋର ଥାଇ କଣ ପଥ୍ୟ' ଏ କଥା କେହି କାହାକୁ ବତାଇ ଦିଅନ୍ତି ନାହିଁ । ଅଥଚ ଜଣ ଜଣ କରି ପଚାର, ଚୋରିର ସଂଜ୍ଞା କହ, ପ୍ରଶ୍ନ ଶୁଣିଲା ମାତ୍ରକେ ସମସ୍ତେ ପହିଲେ ହାଉଳି ଖାଇଯିବେ । ଏ ସମସ୍ୟା ପୂରଣ କରିବା ନିମନ୍ତେ ସରକାର ଆଇନ ବାହାର କରି ସେଥିରେ ଚୋରି ଚମାରି, ଜୁଆଚୋରି, ଜବରାନି, ଜନାକାରି, ଜଳଡୁବି, ମଣିଷମାରୁ, ବାଟମାରୁ ଆଦି ନିତ୍ୟ ପ୍ରତ୍ୟକ୍ଷ ଘଟନାମାନଙ୍କ ସୀମା ବାଉଣ୍ଡରି ମାପ କଲା ଭଳି ନିରୂପଣ କରି ଦେଇଅଛନ୍ତି । ଉପସ୍ଥିତ ବିଷୟରେ ଆଲୋଚନା ଉପଲକ୍ଷରେ ଏଠାରେ 'ଚୋରି'ର ସରକାରୀ ସଂଜ୍ଞା ଦିଆଗଲା; ତାହା ଏହି -

"Whoever intending to take dishonestly any movable property out of the possession of any person without that person's consent, move that property in order to such taking is said to commit theft."

ଏଥିର ତରଜମା ଏହି -

ଯେ କେହି ଆସାମୀ କାହାର ବେଆଇନ ଲାଭ କିମ୍ବା କାହାର ବେଆଇନ କ୍ଷତି କରିବାର ଅଭିପ୍ରାୟରେ କୌଣସି ଚଳନ୍ତି ସମ୍ପତ୍ତିକୁ ଉକ୍ତ ସମ୍ପତ୍ତିର ତାତ୍‌କାଳିକ ଦଖଲକାରୀ (ବା ଜିମାଦାର)ର ବିନା ଅନୁମତିରେ ତାହାର ଦଖଲରୁ ନେଇଯିବା ଅଭିପ୍ରାୟରେ ଉକ୍ତ ପଦାର୍ଥକୁ ସ୍ଥାନାନ୍ତର କରେ, ତେବେ ଉକ୍ତ ଆସାମୀ ଚୋରି ଅପରାଧ କଲା ବୋଲି ବୋଲାଯିବ । ଗୋଟିଏ ଘଟନା ଉଦାହରଣ ଦେଲେ ଏ ସଂଜ୍ଞାଟା ଖୋଲା ହୋଇଯିବ । ତୁମେ ଅଳସୁଆ, ତୁମେ କୃପଣ, ତୁମେ ଦିହସଞ୍ଚା, ଏଥିପାଇଁ ତୁମ ବାଡ଼ିଖଣ୍ଡି ପଡ଼ିଆ ରଖିଛି । ଅଥଚ ମୁଁ ଦିହମିହନ୍ତ କରି ଓ କଉଡ଼ି ଖରଚ କରି ଓ ମୂଲ ଲଗାଇ ମୋ ବାଡ଼ିଖଣ୍ଡିକ ବୁଜି ସେଥିରେ ଡେଙ୍ଗା କୋଶଳା ପଟାଳିଟିଏ କରିଛି । ସେ କୋଶଳା କିଆରି ଦେଖି ତୁମ ପାଟି ପାଣେଇଲା । ତୁମେ ବିନା ଖରଚା ଓ ବିନା ମିହନ୍ତରେ ଆପଣା ଜିହ୍ୱାଲାଳସାକୁ ବୋଧ କରିବା ଉଦ୍ଦେଶ୍ୟରେ (ଏହାକୁ ହିଁ ଆଇନ ଭାଷାରେ କହନ୍ତି - dishonest intention ଅର୍ଥାତ୍ ତୁମର ବେଆଇନ ଲାଭ କରିବା ଓ ମୋର ବେଆଇନ କ୍ଷତି କରିବା ଉଦ୍ଦେଶ୍ୟ) ମୁଁ ଦାଣ୍ଡଆଡ଼କୁ ଯାଇଥିବାର ସୁଯୋଗ ପାଇ ମତେ କିମ୍ବା ମୋ ଅନୁପସ୍ଥିତିରେ ମୋ ଘରେ ଥିବା ପ୍ରାଣୀଙ୍କୁ ନ କହି (ଏହାକୁ ଆଇନର ଭାଷାରେ କହନ୍ତି - without the consent of the person in possession ଅର୍ଥାତ୍ ତାତ୍‌କାଳିକ ଦଖଲକାରର ବିନାନୁମତିରେ) ମୋ କୋଶଳା କିଆରିଟିକୁ ପଦା କରି ମୋ ଘରବାଡ଼ିର ସୀମାରୁ କିମ୍ବା ମୋ କୋଶଳା ପଟାଳିର ହିଡ଼ରୁ କୋଶଳା ଶାଗତକ ନେଲ କିମ୍ବା ନେବାର ସମସ୍ତ ଆନୁଷଙ୍ଗିକ ଆୟୋଜନ କଲ । ତେବେ ତୁମେ ସରକାରୀ ପିଙ୍ଗଳକୋଡ଼ର (Penal Code) ୩୭୯ ଦଫା (ଚୌର୍ଯ୍ୟାପରାଧ) ମୁତାବକ କାର୍ଯ୍ୟ କରିଅଛ ବୋଲି ବିବେଚିତ ହେବ ।

ଅଥଚ ଗାଁରେ ଆବାଳବୃଦ୍ଧବନିତାଙ୍କୁ ପଚାର, ସମସ୍ତେ ଏକମୁଖରେ କହିବେ ଯେ, ଅମୁକ ଲୋକ ମତେ ନ କହି ମୋ ବାଡ଼ିରେ ପଶି ମୋ କୋଶଳାତକ ନେଲାରୁ ସେ ଚୋରି କଲା, ଏଥିରେ ପଚାରିବାର ବୁଝିବାର କିସ ଅଛି ? ଅତଏବ ଦେଖାଗଲା ଯେ, ମୋ ଜିନିଷ ଯେବେ ପରପୁଅ ମତେ ନ କହି ନେଲା, ତାହାହେଲେ ଏ ହେଲା 'ଚୋରି' ଏବଂ ନେବା ବ୍ୟକ୍ତି ହେଲା 'ଚୋର' ଏବଂ ତାକୁ ଉପଯୁକ୍ତ ସମ୍ବର୍ଦ୍ଧନା 'ଆଗେ ମାଡ଼, ପଛେ ବିଚାର' । ସାଧାରଣରେ ଚୋରି ଅର୍ଥରେ ଏହି କଥା ବୁଝାଯାଏ । କିନ୍ତୁ ଆପଣା ଜିନିଷକୁ ଆପେ ନେଲେ 'ଚୋରି' ହେବ - ଏକଥା ଯେବେ କାହାକୁ କହିବ, ତେବେ ଏହା ଶୁଣି କେହି କେହି ପ୍ରଥମେ ହସିବେ, କହିବେ, ''ଆପଣା ଜିନିଷ ଆପେ ନେଲେ ତାହା ଚୋରି ହେବ କିପରି ?'' ଆଇନରେ ମଧ୍ୟ ଏପରି ଚୋରିର ଉଦାହରଣ ଅଛି ।

ମନେକର, ମୁଁ ମୋ କଂସାଖଣ୍ଡକ ତୁମ ପାଖରେ ବନ୍ଧା ପକାଇ ତୁମଠାରୁ କିଛି କଉଡ଼ି ବଏ କରିଛି । ତୁମର ମୋ ଉପରେ ସେହି ବାବତରେ ଯାହା ପାଉଣା ହେଲା, ତାହା ମୁଁ ପରିଶୋଧ କରି ନାହିଁ, ଅଥଚ ଦିନେ ଦେଖିଲି ଯେ, ତୁମ ଦାଣ୍ଡଦୁଆର

ଦରମେଲା ହୋଇଛି ଓ ଦାଣ୍ଡଘରେ କେହି ନାହିଁ, ସେ କଂସାଖଣ୍ଡିକ ତୁମ ଦାଣ୍ଡଘର ଘୋଡ଼ଚି ଉପରେ ଥୁଆ ହୋଇଛି, ଏ ସୁଯୋଗ ପାଇ ତୁମର ପ୍ରାପ୍ୟତକ ଫାଙ୍କି ଦେବା ମତଲବରେ ମୁଁ ତୁମ ଘରେ ପଶି ତୁମ ଅନୁପସ୍ଥିତିରେ କାହାକୁ କୁହାପୁଛା ନ କରି ମୋର ସେହି କଂସାଖଣ୍ଡିକ ଉଠାଇ ନେଇ ଚମ୍ପଟ ଦେଲି । ମୋରି କଂସା ମୁଁ ନେଲି, ଅଥଚ ଏହା 'ଚୋରି' ହେଲା । କାରଣ ମୋ ଜିନିଷକୁ ମୁଁ ନେବା ଦ୍ୱାରା ମୁଁ ତୁମର ବେଆଇନ କ୍ଷତି କରିବି । ଅର୍ଥାତ୍ ତୁମର ମୋ ଉପରେ ଥିବା ବନ୍ଧକ ବାବଦ ପାଉଣା ତୁମ୍ଭଙ୍କୁ ଫାଙ୍କି ଦେବି ବୋଲି ମୋର ଉଦ୍ଦେଶ୍ୟ ଥିବାରୁ ଏହା 'ଚୋରି' ବୋଲି ଧରାଗଲା । ଅନେକ ସମୟରେ ଦେଖାଯାଏ ଯେ, ସାଧାରଣ କଥାଭାଷାରେ ଆମେ କେତେକ ସ୍ଥଳରେ 'ଚୋରି' ଶବ୍ଦ ବ୍ୟବହାର କରୁଁ, କିନ୍ତୁ ଆଇନ ଅନୁସାରେ ତାହା 'ଚୋରି' ସଂଜ୍ଞାରେ ପଡ଼ିବ ନାହିଁ । ଗାଈଟିଏ ଏଡ଼େ ପହ୍ନା କାଢ଼ିଛି, ଅଥଚ ତାକୁ ଦୁହିଁଲା ବେଳକୁ ଏତେ ଟିକିଏ କ୍ଷୀର ଦେଲା । ତୁମେ ଗାଈର ବିନା ମଞ୍ଜୁରିରେ ଜବରଦସ୍ତି ତାର ନିଜର ବାଛୁରୀର ବେଆଇନ କ୍ଷତି କରିବା ଏବଂ ତୁମ ନିଜର ଉଦରପୂର୍ତ୍ତି ଆଦି ଲାଭ କରିବା ଉଦ୍ଦେଶ୍ୟରେ ଗାଈଠାରୁ କ୍ଷୀର ନେବାକୁ ବସିଲ, ତୁମେ ହେଲ ସାଧୁପୁରୁଷ, କିନ୍ତୁ ଗାଈ ବିଚାରୀ ଆପଣା ବାଛୁରୀ ପାଇଁ ଟିକିଏ କ୍ଷୀର ସାଇତି ରଖିଲା ବୋଲି ସେ ହେଲା 'ଚୋରଣୀ ଗାଈ' ଓ ତାକୁ ଦାଣ୍ଡରେ ସମସ୍ତେ ଅପନିନ୍ଦା (defamation) ଦେଲେ ଯେ 'ଏ ଗାଈଟା କ୍ଷୀର ଚୋରାଏ !' ଗାଈର ପାଟି ଫିଟୁଥିଲେ ଓ ଗାଈ ପାଇଁ ନିରପେକ୍ଷ ବିଚାରକର୍ତ୍ତା ଥିଲେ ଗାଈ ତୁମ ନାମରେ ୩୭୯ (ଚୋରି) ଦଫାରେ ଅଭିଯୋଗ କରିପାରନ୍ତା ଓ ତୁମ ସାଇପଡ଼ିଶାଙ୍କ ନାମରେ ୫୦୦ (ଅପବାଦ) ଦଫାରେ ନାଲିସ କରନ୍ତା । ଏହିପରି ଅନେକ ଜାଗାରେ 'ଚୋରି' ଶବ୍ଦ ବେଆଇନ ବ୍ୟବହାର ହେଉଥିବାର ଦେଖାଯାଏ । ଯଥା - ହାକିମମାନଙ୍କର 'ଚୋରାଗସ୍ତ', 'ଚୋରାବସନ୍ତ', 'ଚୋରିକବାଟ', 'ଚୋରିଲଣ୍ଠନ' ଇତ୍ୟାଦି ଇତ୍ୟାଦି - ଲେଖକ ସବୁ ଉଦାହରଣଯାକ ନିଃଶେଷ କରିଦେଲେ ପାଠକେ କଣ କରିବେ ?

ମୁଁ ନିଜେ ଦେଖିଛି ଯେ, ମନୁଷ୍ୟ ଅନେକ ସମୟରେ ଆପଣା ଘରେ, ଆପଣା ସମ୍ପତ୍ତିରେ, ଆପଣା ପାରିବାରିକ ଓ ସାଂସାରିକ ସୀମା ମଧ୍ୟରେ ଚୋରି ଆରମ୍ଭ କରିଦିଏ ଓ ସେ ଚୋରି ଧରାପଡ଼ିଲେ ଭାରି ହଲାପଟା ହୁଏ । ଦାଣ୍ଡ ଚୋର ଧରାପଡ଼ିଲେ ସେ ବିଚରା ବିଧାଟିଏ, କହୁଣିଆଟିଏ ପାଇ ତା ଦୁଷ୍କୃତିର ପ୍ରାୟଶ୍ଚିତ୍ତ କରେ । କିନ୍ତୁ ଏ ଚୋରି ଧରା ନ ପଡୁ ପଛକେ, ସନ୍ଦେହ ହେଲେ ସୁଦ୍ଧା ତୁମ କପାଳରେ ବାର ଅବସ୍ଥା ଭୋଗ ହୁଏ । ଏହି ପ୍ରସଙ୍ଗଟି କିଏ ସଫାସୁତରା କରିବାର ଜୁ ନାହିଁ । ବୃଦ୍ଧ ଚାଣକ୍ୟ ତୁଲର ପକାଇଅଛନ୍ତି - 'ଆୟୁର୍ବିତ୍ତଂ ଗୃହଛିଦ୍ରଂ ।' ଏପରି ସ୍ଥଳରେ ନିଜର ପାରିବାରିକ ବା ସାଂସାରିକ ଅନୁଭବ ପଦାରେ ପ୍ରକାଶ କରିବାକୁ ଗଲେ ଲୋକେ କହିବେ ଏ ଲୋକଟା ବାତୁଳ । ଘର ଲୋକେ କହିବେ, 'ମଲା ! ଆପଣା ମହତ ପଦାରେ ପକାଇବାକୁ ଯାଙ୍କୁ ସରମ ନାହିଁ !' ସଂସାରରେ

ଲୋକେ 'ପରୋପଦେଶେ ପାଣ୍ଡିତ୍ୟଂ' କରିବାକୁ ଭାରି ତିଆର । କଥାରେ କହନ୍ତି, ''ବୁଦ୍ଧି ନ ଆସେ ଘରକୁ, ବତେଇ ଦିଏ ପରକୁ ।'' ସେ ଘରେ ଅନେକ ଅଭିନବ କାଣ୍ଡ ଘଟୁଛି, ଅଥଚ ମୁଁ ଚାହେଁ ଯେ ସେଗୁଡ଼ାକ ମୋ ଘରବାଡ଼ିର ସୀମା ନ ଟପୁ । କିନ୍ତୁ ତୁମ ଘରେ ଜିରାଟି ଫୁଟିଲା, ସେତେବେଳକୁ ଦେଖ ମୋର 'ପରୋପଦେଶେ ପାଣ୍ଡିତ୍ୟ', ଦେଖ ମୋର ମୁରବିପଣିଆ, ଦେଖ ମୋର ଆସ୍ଫାଳନ ! ଏହି ଆସ୍ଫାଳନ ପାଇଁ ଲେଖକକୁ ମିଳିଥିଲା 'ଦୁନିଆର ହାଲଚାଲ ।' ବର୍ତ୍ତମାନ ସେ ବାଟ ବନ୍ଦ ।

''ଆପଣା ହସ୍ତେ ଜିହ୍ୱା ଛେଦି, କେ ତାର ଅଛି ପ୍ରତିବାଦୀ ।''

'ଆମ ଘରର ହାଲଚାଲ' କହିଲେ ଚାଣକ୍ୟଙ୍କ ପିଙ୍ଗଳକୋଡ଼ ଆଗରେ ଧରା । ଏଥିପାଇଁ ଲେଖକକୁ ଅନେକ ସମୟରେ ଇତସ୍ତତଃ ହେବାକୁ ପଡ଼େ । କିନ୍ତୁ ଯେତେବେଳେ 'ଘରର ହାଲଚାଲ'ର ଭେକ ନେବାକୁ ହୋଇଅଛି, ସେତେବେଳେ ଦିହରେ ଯାଉ ନ ଯାଉ, ସେ ଭେକ ଧରି ଭିକ ମାଗିବାକୁ ହେବ । ଆପଣା 'ଘର' ଏହି ଶବ୍ଦଟି କହିଲେ ସେଥିରେ ଆପଣାର ଘରବାଡ଼ି ଓ ହତା ଫାଟକର ସୀମା ମଧ୍ୟରେ ବାସ କରୁଥିବା କେତେଗୁଡ଼ିଏ ପାରିବାରିକ, ସାଂସାରିକ, ବୈଷୟିକ, ବ୍ୟାବସାୟିକ ଜୀବଙ୍କୁ ତହିଁର ଅନ୍ତର୍ଭୁକ୍ତ କରିବାକୁ ହେବ । ଫଳତଃ ଆପଣାର ଘର ସଙ୍ଗେ ସଂଶ୍ଳିଷ୍ଟ ଓ ସଂଶ୍ଳିଷ୍ଟା 'ଆରଆଡ଼', ପରିବାର, କୁଟୁମ୍ବ, ସପିଣ୍ଡ, ସମାନୋଦକ, ବନ୍ଧୁ, ସହଚର, ସମ୍ବନ୍ଧ, ସମଧର୍ମା, ପିତୃପିତାମହ ପ୍ରପିତାମହାଦି ବଡ଼ବଡୁଆଙ୍କଠାରୁ ଆରମ୍ଭ କରି ପୁତ୍ର ପୌତ୍ର ପ୍ରପୌତ୍ରାଦି ପିଲାପିଲି ପର୍ଯ୍ୟନ୍ତ ସ୍ତ୍ରୀ ପୁଂ ନପୁଂସକ ଲିଙ୍ଗବାଚକ ପ୍ରାଣୀ ଓ ଆପଣା ଘରେ କାମ ଚଳାଉଥିବା ମେନେଜର, ତହସିଲଦାର, ଜମିଦାର, ଠାରୁ ଧରି ଘରର କୋଠିଆ, ହଳିଆ, ରାଜମିସ୍ତ୍ରି, ମୂଲିଆ ପର୍ଯ୍ୟନ୍ତ ଅନେକ ଲୋକଙ୍କ ଆଚାର ବ୍ୟବହାର ଓ କାର୍ଯ୍ୟକଳାପକୁ ଆଲୋଚନା କରିବାକୁ ହେବ । ଏଥିଲାଗି କଥାଟା କିପରି କହିଲେ ଲେଖକତ୍ୱର ଗରିମା ରହିବ, ଏଣେ ଗୃହଚ୍ଛିଦ୍ର ପଦାରେ ପ୍ରକାଶ ନ ହେବ ଓ ସେଥିଲାଗି ଘରଆଡ଼େ ହଲାପଟା ପାଇବାକୁ ନ ହେବ, ଏହାହିଁ ଲେଖକ ଭାବି କଥାଟାର ସୂଚନା ମାତ୍ର ଆରମ୍ଭ କରି ଏ ସଂଖ୍ୟା 'ସାହିତ୍ୟିକ ଦାୟିତ୍ୱ'ରୁ ଖଲାସ ପାଇଲା । ଏହି 'ମୁଁ ଖାଉଥାଏଁ ମୋହର ଭାତ, ତୋର କିଆଁ ଗାଲରେ ହାତ !' ନୀତିବଚନ ବହିର୍ଭୂତ ''ଆପଣା ପଦାର୍ଥରେ ଆପେ ଚୋରି କରିବା'' ଉଦାହରଣକୁ ଖୋଲିକରି ନ ଲେଖି ଯେ ଯାହାର ଅନୁଭବରେ ଏପରି ଚୋରି କରୁଅଛନ୍ତି, ସେମାନେ ନିଜେ ନିଜେ ଚିନ୍ତା କରିବା ନିମନ୍ତେ ପାଠକ ପ୍ରପାଠକମାନଙ୍କୁ ଅବସର ମିଳିବ ଓ ଭବିଷ୍ୟତ୍‌ରେ ଏ ପ୍ରସଙ୍ଗର ବ୍ୟାଖ୍ୟା କରିବା ନିମନ୍ତେ ଲେଖକ ନିଜର ଅନୁଭବସିଦ୍ଧ ଘଟନା ପ୍ରସଙ୍ଗରେ ଅନ୍ୟମାନଙ୍କ ଅନୁଭବସିଦ୍ଧ ଘଟନାମାନ ଯୋଗ କରିବାକୁ ସୁବିଧା ଓ ମାଲମସଲା ପାଇବ ବୋଲି ଆଶା କରି ଆଜି ଏତିକିରେ ଖଲାସ ।

ଉ. ସା. - ୨୧ଶ ଭାଗ/୫ମ ସଂ/ ଭାଦ୍ର/୧୩୨୫ ସାଲ ।

## ।। ସାତ ।।

ଗତ ସଂଖ୍ୟା 'ସାହିତ୍ୟ' ରେ ଲୋକେ ସଂସାରରେ ନିଜ ଧନର ନିଜେ କିପରି ଚୋରି କରନ୍ତି, ଏହି କଥାର ଅବତାରଣା କରିଥିଲି ଓ ସେହି ପ୍ରସଙ୍ଗରେ ବୃଦ୍ଧ ଚାଣକ୍ୟଙ୍କୁ ନଜର ଦେଇ କହିଥିଲି ଯେ, 'ଆତ୍ମବିତ୍ତଂ ଗୃହଚ୍ଛିଦ୍ରଂ' ପଦାରେ ପ୍ରକାଶ କରିବା ଅନୁଚିତ । ପର କଥା କହିବାକୁ ହେଲେ ପିଙ୍ଗଳକୋଡ଼ର ଦଫା ଆଡ଼କୁ ନଜର ରଖି କାମ କରିବାକୁ ହୁଏ । କିନ୍ତୁ ଆପଣା ଘରର ହାଲଚାଲ ଦାଣ୍ଡରେ କହିବାକୁ ଗଲେ ଲୋକ ଗାଇ ବଜାଇ ଆପଣା ଘର କଥା ପଦାରେ ପକାଏ । ଲୋକେ ଢଗରେ କହନ୍ତି, ''ସଲଜ୍ଜ ଗାଏ, ନିର୍ଲଜ୍ଜ ବାଏ, ଅତି ନିର୍ଲଜ୍ଜ ନାଚି ନାଚି ଯାଏ ।'' ଯେ ଆପଣା ଘର କଥା ଦାଣ୍ଡଲୋକଙ୍କ ଆଗରେ କହେ, ତା'ଠାରେ ଏହି ମାର୍କା ମରାଯାଏ । କିନ୍ତୁ ଜଣକର ମର୍ଯ୍ୟାଦାରେ ଜଳାଞ୍ଜଳି ଦେଇ କୌଣସି ଘର କଥା ପ୍ରକାଶ କଲେ ଯେବେ ତଦ୍ଵାରା ବିନା ପିଙ୍ଗଳକୋଡ଼ର ଆଶ୍ରାରେ ଆପଣା ଶ୍ରେଣୀର ଆଉ ପାଞ୍ଚଜଣଙ୍କ ଆଖି କାନ ଫିଟେ, ତେବେ ମନୁଷ୍ୟ ନିଜ କ୍ଷୁଦ୍ର ସୀମାରେ କିଛି କାର୍ଯ୍ୟ କରିବାକୁ ସମର୍ଥ ହେଲା ବୋଲି ମନରେ ଆନନ୍ଦ ଲାଭ କରେ ।

ସାଧାରଣରେ ଦେଖାଯାଏ, ଯେଉଁ ପଦାର୍ଥ ବା ଜୀବ ଡେଙ୍ଗାରେ ଯେତିକି ବଢ଼େ, ତା ଉପରେ ସମସ୍ତଙ୍କ ନଜର ତେତିକି ଅଧିକ ପଡ଼େ । ଏ ନିୟମ ସଜୀବ ଓ ନିର୍ଜୀବ ଉଭୟତ୍ର ଏକ । ସମାଜ ଓ ବ୍ୟବସାୟ କ୍ଷେତ୍ରରେ ମଧ ଦେଖୁଥାଇଁ ଯେ, 'ଡେଙ୍ଗା ମୁଣ୍ଡରେ ଠେଙ୍ଗା' । ଅନ୍ୟ ସବୁ ରଙ୍ଗ ବିଶିଷ୍ଟ ପଦାର୍ଥ ଦେହରେ ପୁଳାଏ ମଇଳା ଲାଗୁ, ତା ପ୍ରତି କାହାରି ଆଖି ପଡ଼େ ନାହିଁ; କିନ୍ତୁ ବାସିଧୋବ ଲୁଗାରେ ସୋରିଷ ଆକାରରେ କଳା ଟୋପାଟାଏ ଲାଗିଲା ମାତ୍ରକେ ଲୋକଙ୍କ ଆଖିଟା ପହିଲେ ସେହିଠାକୁ ଟାଣି ହୋଇଯାଏ । ଡେଙ୍ଗା ଗଛରେ ଚଡ଼କ ପଡ଼େ । ଡେଙ୍ଗା ଗଛ ଉପରେ ତୋଫାନର ପହିଲି ମାଡ଼ ପହଞ୍ଚେ । ଏଥିପାଇଁ ବିଜ୍ଞାନ ବଳରେ ଡେଙ୍ଗା ଜିନିଷ ଓ ମନ୍ଦିର ଆଦିକୁ ପବନ ଓ ଚଡ଼କର ଦାଉରୁ ରକ୍ଷା କରିବା ଉଦ୍ଦେଶ୍ୟରେ ଲୋକେ ବୈଜ୍ଞାନିକ ଉପାୟ ଆବିଷ୍କାର କରିଅଛନ୍ତି । ସମାଜ ଓ ବ୍ୟବସାୟ କ୍ଷେତ୍ରରେ ମଧ ଦେଖାଯାଏ ଯେ, ଯେଉଁ ଲୋକ ଆପଣା ଦିହକୁ ନ କିଳି ଡେଙ୍ଗାରେ ବଢ଼େ, ସେ ଦିନେ ଠେଙ୍ଗାଏ ପାଏ । (ନୋଟ୍ - 'ଦିହ କିଳିବା' ଶବ୍ଦଟି ଟିକିଏ ଖୋଲାସା କରି ବୁଝାଇ ଦେବା ଉଚିତ । 'କିଳିବା' ଶବ୍ଦ କବାଟ ଆଦି ସମ୍ବନ୍ଧରେ ବ୍ୟବହାର କରାଯାଏ । କବାଟ କିଳି ଦେଲେ ସେ ଘରେ ଚୋର ପଶିପାରନ୍ତି ନାହିଁ । ସେହିପରି ମନୁଷ୍ୟକୁ ଗୁଣିଗାରିଡ଼ି ମନ୍ତ୍ରଯନ୍ତ୍ର ନ କାଟିବ ବୋଲି ଗୁଣିଆମାନେ ମନୁଷ୍ୟ ଦିହକୁ କିଳି ଦିଅନ୍ତି ଓ ଯାହାର ଦିହ କିଳା ହୋଇଥାଏ, ତା ବିରୋଧରେ ଯେତେ ଗୁଣି ଗାରିଡ଼ି-ମନ୍ତ୍ର ଯନ୍ତ୍ର ପ୍ରୟୋଗ କର, ସେସବୁ ବୃଥା ହୋଇଯାଏ । ସେହିପରି ସମାଜରେ ଓ ବ୍ୟବସାୟ କ୍ଷେତ୍ରରେ ଯେ ଡେଙ୍ଗାରେ ବଢ଼େ, ସାମାଜିକ ଓ ସାଂସାରିକ ତୋଫାନ ଦାଉରୁ ଆପଣା ମୁଣ୍ଡକୁ 'ଅକାଟ୍ଟ' କରିବା ଉଦ୍ଦେଶ୍ୟରେ ସେ ଯେବେ ଇଷ୍ଟ ଦେବତାଙ୍କୁ ପ୍ରସନ୍ନ କରାଇ

ନିଜର ଦେହ ନ କିଳେ, ତେବେ ତାହା ମୁଣ୍ଡରେ ଠେଙ୍ଗା ପ୍ରହାର ଅବଶ୍ୟମ୍ଭାବୀ । ଯାହା ଦେହ ଆଧୁନିକ ଯୁଗ ସୁଲଭ ଉପାୟରେ କିଳା ହୋଇଥାଏ, ସେ ଯେଡ଼େ ଇଚ୍ଛା ସେଡ଼େ ଡେଙ୍ଗା ହେଉ ପଛକେ, ତା ଉପରେ ସାମାଜିକ ଝଡ଼ ଓ ଚଡ଼କ ପଡ଼େ ନାହିଁ ।) ମୁଁ ନିଜେ ଅନୁଭବରେ ଦେଖିଅଛି ଯେ, ଜଣେ ଜଣେ ମୋ ଠାରୁ ଅଧିକ ଡେଙ୍ଗା ବ୍ୟକ୍ତି କେତେ କେତେ ରକମର ଅଲରା ଅଳିଆ ମୁଣ୍ଡରେ ବୋହୁଛନ୍ତି - ଅଥଚ ତାଙ୍କ ମୁଣ୍ଡରେ କାହାରି ଚୋଟ ବସୁ ନାହିଁ । କିନ୍ତୁ ମୁଁ ତହିଁର କାଣିଚିଆ କୌଣସି ଆଲୁବାଲୁ କାମ କରିବା ମାତ୍ରକେ ମୋ ମୁଣ୍ଡରେ ଶହେ ଠେଙ୍ଗା ବସିଯାଉଛି । ଏଥିର କାରଣ କଣ ? ମୋଠାରୁ ଅଧିକ ଡେଙ୍ଗା ଅଭିଜ୍ଞ ବ୍ୟକ୍ତି ସାମାଜିକ ପ୍ରକ୍ରିୟାରେ ଦେବ-ଆରାଧନା କରି ନିଜର ଦେହଟି 'କିଳି' ଆପଣା ଦିହକୁ 'ଅକାଟୁ' କରି ପାରିଅଛନ୍ତି, କିନ୍ତୁ ମୁଁ ତାହା ପାରି ନାହିଁ । ମୁଁ ମଧ ଅନୁଭବରୁ ଶିକ୍ଷା ଲାଭ କରି ଯେଉଁ କ୍ଷେତ୍ରରେ ମୁଁ ମୋ ଦିହ କିଳିବାକୁ ସମର୍ଥ ହୋଇଅଛି, ସେଠେଇଁ ଦେଖିଛି ଯେ, ମୁଁ କେତେ ପ୍ରକାର ଅସନଟିଆ କାମ କରି ସୁଦ୍ଧା ମୋ ଦିହଟି ଅକାଟୁ ହୋଇଅଛି, ଅଥଚ ମୋଠାରୁ କମ ଡେଙ୍ଗା ଲୋକେ ମୋ ପରି ସିଆଣା ନୁହନ୍ତି ବୋଲି ସମାଜର ସବୁ ଚୋଟଯାକ ତାଙ୍କରି ଉପରେ ଓ ସେମାନେ 'ନ ଖାଇ ନ ପିଇ କଇଥା ଚୋର' ହେଉଅଛନ୍ତି । ଏଥିପାଇଁ କହନ୍ତି - ''ଧୋବଧାଉଳିଆ ଚୋରି କରନ୍ତି, ରଙ୍କୁଣୀ ଦେଖିଲେ ମାରି ଗୋଡ଼ାନ୍ତି ।'' ଅର୍ଥାତ୍ ଧୋବଧାଉଳିଆଙ୍କୁ ଦିହ କିଳି ଆସେ । ରଙ୍କୁଣୀ ଚୋର ସେ କଦର ଓ ସେ ମନ୍ତ୍ର ଜାଣେ ନାହିଁ । ସମାଜରେ ଯେତେଗୁଡ଼ିଏ ଉପାୟ କରି ମୋ ଦିହ ମୁଁ କିଳି ପାରିଅଛି, ସେଗୁଡ଼ିକ ପାଠକମାନଙ୍କୁ ଉପହାର ଦେବା ପାଇଁ ମୋର ଭାରି ଇଚ୍ଛା ହୋଇଅଛି । କିନ୍ତୁ ମୁଁ ଏପର୍ଯ୍ୟନ୍ତ କୌଣସି ପ୍ରକ୍ରିୟାରେ ସିଦ୍ଧି ଲାଭ କରିପାରି ନାହିଁ ବୋଲି ମୋ ଭଳି 'ଖଣ୍ଡିଉଡ଼ା' ଦେବା ବ୍ୟକ୍ତିଙ୍କ ଉପକାରାର୍ଥେ କେତେଗୁଡ଼ିଏ ଗୁପ୍ତ ମନ୍ତ୍ର ପ୍ରକାଶ କଲି । ଯେଉଁମାନଙ୍କର ଗୁଣିଗାରିଡ଼ିରେ ଅଭିଜ୍ଞତା ଅଛି, ସେମାନେ ଅବଶ୍ୟ ଜାଣିଅଛନ୍ତି ଯେ, କୌଣସି ମନ୍ତ୍ରଯନ୍ତ୍ର ପ୍ରୟୋଗ କରିବାକୁ ଦେଲେ ସେଥିପାଇଁ କେତେଗୁଡ଼ିଏ ଉପକରଣ ଓ ଚଣ୍ଡୀଚାମୁଣ୍ଡାଙ୍କ ପୂଜା ଓ ବଳି ସାମଗ୍ରୀ ଦରକାର । ସେହିପରି ଏ ଦିହ କିଳିବା ପାଇଁ କେତେଗୁଡ଼ିଏ ସାମଗ୍ରୀ ଓ କାର୍ଯ୍ୟ ଦରକାର ।

୧ମ କାର୍ଯ୍ୟ - ଗ୍ରାମଦେବତାଙ୍କ ମାଜଣା । ଆମ ସମାଜରେ କୌଣସି ମଙ୍ଗଳ କାର୍ଯ୍ୟ କରିବା ପୂର୍ବରୁ ଗୃହସ୍ଥ ଗ୍ରାମଦେବତା ଠାକୁରାଣୀଙ୍କୁ ମାର୍ଜନା କରେ - ସେହିପରି ମଧ ଗ୍ରାମରେ ମହାମାରୀ ଭୟ, ବସନ୍ତ ଆଦି ହେଲେ ଠାକୁରାଣୀ-ମାଜଣା କରାଯାଏ । ସମାଜ ଓ ବ୍ୟବସାୟରେ ମଧ ସେହିପରି ଗୁଡ଼ିଏ ପୂଜା ଓ ଅପୂଜା ଗ୍ରାମଦେବତା ଓ ବଣଦେବତା ଅଛନ୍ତି । ସେଗୁଡ଼ିକଙ୍କୁ ଯଥୋପଚାରରେ ପୂଜା ନ କଲେ କୌଣସି ସାମାଜିକ ବା ବ୍ୟାବସାୟିକ ଗୁଣିଗାରିଡ଼ି ପ୍ରୟୋଗ କରି ହେବ ନାହିଁ । ଗ୍ରାମଦେବତାମାନଙ୍କ ବିଜେସ୍ଥଳ ବାଟ ଦେଇ ଯିବାଆସିବା କରିବା ବେଳେ ତ ତାଙ୍କୁ ମୁଣ୍ଡିଆଟାଏ ମାରିବା ଅବଶ୍ୟ କର୍ତ୍ତବ୍ୟ । ଆଉ ତୁମ ଭାଗ୍ୟକୁ ଯେବେ ଗ୍ରାମଦେବତା ତୁମ ଉପରେ ପ୍ରସନ୍ନ ହୁଅନ୍ତି,

ତେବେ ସେ ନିଶା ରାତିରେ ଜଗତ୍ ପ୍ରଦକ୍ଷିଣ କରିବାକୁ ବାହାରିଲା ବେଳେ ଯେବେ ତୁମେ ତାଙ୍କର ଦର୍ଶନ ପାଇବ, ତେବେ ତୁମ ଦେହରେ ତାଙ୍କ ଶ୍ରୀହସ୍ତର ଗଉରୀ ବେତ ଲାଗିଗଲେ ତୁମେ ଚିରକାଳ ସକାଶେ ଅକାଟ୍ଟ ହୋଇଯିବ । ଆମର ଆଧୁନିକ ସଂସାର ଦେବତାମାନେ 'ଉଦ୍ୟାନ ସମ୍ମିଳନ' (ଗାର୍ଡ଼ନପାର୍ଟି), ସାନ୍ଧ୍ୟ ମିଳନ (ଇଭନିଙ୍ଗ ପାର୍ଟି), ଚା'-ସମ୍ମିଳନ (ଟି ପାର୍ଟି), ଭୋଜନ ମିଳନକୁ (ଡିନର ପାର୍ଟି) ଭାରି ଭଲ ପା'ନ୍ତି । ପୁରୁଣାକାଳିଆ ଗ୍ରାମଦେବତାମାନଙ୍କ ଭଳିଆ ଏମାନେ ଉଦମ୍ବରୀ ଓ ଏକୁଟିଆ ବାହ୍ରା ନୁହନ୍ତି । ଏମାନେ ୫ ଜଣ ସାମାଜିକ ଜୀବଙ୍କ ସଙ୍ଗେ ଉପରୋକ୍ତ ପୂଜାମାନ ପାଇବାକୁ ଭଲ ପାଆନ୍ତି । ଏ ସବୁ ଆୟୋଜନପାଇଁ ଯେଉଁ ଯେଉଁ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ଦରକାର, ତହିଁର ତାବ ଅଛି । ସେ ତାବଗୁଡ଼ିଏ ସଂଗ୍ରହ କରିପାରିଲେ ଯେଉଁ ଅନୁଷ୍ଠାନପାଇଁ ଯେଉଁ ତାବ ଦରକାର, ତାହା ବାଛି ବାଛି 'କ୍ଷେତ୍ରେ କର୍ମ ବିଧୀୟତେ' । ଏହି ଦେବତାମାନଙ୍କୁ ଭେଟିବା ସକାଶେ ପଣେ ଦେଢ଼ପଣ ସାକ୍ଷିଗୋପାଳଙ୍କୁ ନିମନ୍ତ୍ରଣ କରିବାକୁ ହେବ । ଆମନ୍ତ୍ରିତ ବ୍ୟକ୍ତିଗଣ ଭେକ ପିନ୍ଧି ଏ ସମ୍ମିଳନରେ ଯୋଗ ଦେବେ ଓ ଦେବତା ଦେଖିପାରିବେ ଯେ, ତୁମର ଏତେଗୁଡ଼ିଏ ଲୋକଙ୍କ ଉପରେ ଆଧିପତ୍ୟ, ଅଧିକାର, ସମ୍ପର୍କ ଓ ପ୍ରଭୁତ୍ୱ ଅଛି । ଠାକୁରାଣୀ ମାଜଣା ଓ ଠାକୁରାଣୀ ପୂଜା ସରିଲେ ଏମାନେ ମଧ ଭୋଗ ପାଇବେ ଓ ହରିବୋଲ ଦେବେ । କିନ୍ତୁ ଯେଉଁ ଦେବତାଙ୍କୁ ଭେଟିବା ସକାଶେ ଏମାନଙ୍କୁ ନିମନ୍ତ୍ରଣ ହୋଇଥିବ, ତାଙ୍କ ସଙ୍ଗେ ଏମାନଙ୍କର 'ଭେଟ' ନଦାରଦ । ମୋର ବହୁ ଭାଗ୍ୟକୁ ଏହିପରି ଗୋଟିକେତେ ଠାକୁରାଣୀମାଜଣାରେ ମୋତେ ଡାକରା ହୋଇଥିଲା । ମୋ ଭଳିଆ ଆଉ ପଣେ ଖଣ୍ଡେ ପଗଡ଼ିଦିଆ ମୁଣ୍ଡ ସେଠାରେ ରୁଣ୍ଡ ହୋଇଥିଲେ । ଯେଉଁ ଗୁଣିଆ ଆମକୁ ସେ ଦେବତାମାନଙ୍କୁ ଭେଟିବାକୁ ଆମନ୍ତ୍ରଣ କରିଥିଲେ, ସେ ଦେବଦେବୀଙ୍କ ପଞ୍ଚୋପଚାରରେ ବ୍ୟସ୍ତ ରହିଲେ ଓ ଆମେ ପଙ୍କାକୁ ପଙ୍କା ଶେଉଳମାଛ ଜାଆଁଳ ଭଳି ମନ୍ଦା ଧରି ସେଠାରେ ଖେଳୁଥାଉଁ । ଦେବତାଙ୍କୁ ଭେଟିବା ଦୂରେ ଥାଉ, ଦେବତାଙ୍କ ଦେହର ଚୁଆ ହଳଦୀ ଗନ୍ଧ ସୁଦ୍ଧା ଆମେ ପାଇଲୁଁ ନାହିଁ । ଦେବତା ମାଜଣା ଓ ପୂଜା ଶେଷ ହେଲାରୁ ଆମ୍ଭେମାନେ ନୈବେଦ୍ୟ ସାମଗ୍ରୀରୁ କିଛି କିଛି ଉଦରସ୍ଥ କରି ପୂର୍ଣ୍ଣ ପେଟରେ ଘରକୁ ଫେରିଲୁଁ ଓ ଦେଖିଲୁଁ ଯେ, ଆମ ସର୍ଦାର ଗୁଣିଆ ଏହି ମାଜଣାଦ୍ୱାରା ଆପଣା ଦିହକୁ କିଳିନେଲେ ଓ ଦେବତା ତାଙ୍କ ଉପରେ ଭାରି ପ୍ରସନ୍ନ ହୋଇ ତାଙ୍କ ଦିହରେ ଗଉରୀ ବେତ ଲଗାଇ ଦେଇ ତାଙ୍କୁ ବର ଦେଇ ଚାଲିଗଲେ । ଦିହକୁ ଅକାଟ୍ଟ କରିବାକୁ ହେଲେ ଏପରି 'ଠାକୁରାଣୀ ମାଜଣା' ଠାରୁ ବଳି ପ୍ରକୃଷ୍ଟ ଉପାୟ ଆଧୁନିକ ସମାଜରେ ନାହିଁ ।

୨ୟ କାର୍ଯ୍ୟ - ଦେବତାଙ୍କ ଅଙ୍ଗ ସମସ୍ତେ ଛୁଇଁବେ ନାହିଁ । ସେଥିପାଇଁ ଦେବତାଙ୍କ ଶ୍ରୀଅଙ୍ଗ ଛୁଇଁ ତାଙ୍କୁ ମାଜଣା କରିବା ସକାଶେ ମାଳୀ ବା ମାଲୁଣୀ ଠିକଣା କରିବାକୁ ହେବ । ଯେଉଁମାନେ ଗୁଣିଗାରେଡ଼ି ଜାଣନ୍ତି, ସେମାନେ ଅବଶ୍ୟ ''ନିତୈମା ଧୋବଣୀ,

ପିତୈମା ପତର ସଉରୁଣୀ''ଙ୍କ ନାମ ଶୁଣିଥିବେ - ଗୁଣିଗାରେଡ଼ି ବଳରେ ଏହିମାନେ ଦେବତାଙ୍କୁ ଏପରି କରିଅଛନ୍ତି ଯେ, ଏମାନଙ୍କ ନାମ ଶୁଣିବାମାତ୍ରକେ ଦେବତା ପ୍ରସନ୍ନ ହୋଇଯା'ନ୍ତି । ଏହିମାନଙ୍କ ହାତ ଲାଗିବା ମାତ୍ରକେ ଦେବତାଙ୍କ ଶ୍ରୀଅଙ୍ଗରୁ ଆଳସ୍ୟ ଛାଡ଼ିଯାଏ । ତୁମେ ହଜାରେ ଆୟୋଜନ କରି ହଜାରେ ଟଙ୍କା ଖରଚ କର, କିନ୍ତୁ ଦେବତାଙ୍କର ଶ୍ରୀଅଙ୍ଗ ସଙ୍ଗେ କାରବାର କରିବା ପାଇଁ ଦି' ଓଳି ଗୋଟିଏ ନିତୈମା, ପିତୈମା ଠିକଣା କରି ନ ପାରିଲେ ତୁମର ସବୁ ପରିଶ୍ରମ ବୃଥା ହେଲା । ଏହିମାନେ ହେଲେ ଦେବତାଙ୍କର ମୁହୁଣ୍ଡା । ଦେବତା ଯାହା ଆଜ୍ଞା କରିବେ, ସେ ଆଜ୍ଞାମାନ ଏହିମାନଙ୍କ ମୁହଁ ଦେଇ ବାହାରିବ । ଏହିମାନେ ଦେବତାଙ୍କ ଆଜ୍ଞାମାଳ ଓ ଗଉରୀ ବେତ ଏ ସଂସାରରେ ବୁଲାଇବାର ଅଧିକାରିଣୀ ଅଟନ୍ତି । ଏମାନେ ହେଲେ ଦେବତାଙ୍କର 'କାଳିଶି' । ବିନା କାଳିଶିରେ ଦେବତା 'ଉଭା' ହେବେ ନାହିଁ । ଯାହାଙ୍କ ଭାଗ୍ୟକୁ ଏପରି ଗୋଟିଏ ଖଣ୍ଡେ କାଳିଶି ମିଳିଯା'ନ୍ତି, ସେ ଯେତେବେଳେ ବିଚାରିବେ, ସେତେବେଳେ ଦେବତାଙ୍କୁ ଉଭା କରାଇପାରନ୍ତି, ଦେବତାଯାକ ତାଙ୍କ ବାରି ଦୁଆର ଖରିକିବା ପର୍ଯ୍ୟନ୍ତ ଖଟିଥା'ନ୍ତି ଓ ଏପରି ଭାଗ୍ୟବାନ୍‌ମାନଙ୍କୁ କୌଣସି ପ୍ରକାର ସାମାଜିକ କିମିଆ କାଟୁ'କରେ ନାହିଁ ।

୩ୟ - ଉପକରଣ ସଂଗ୍ରହ - ସଭ୍ୟତା ବୃଦ୍ଧି ସଙ୍ଗେ ଦେବତାମାନଙ୍କର ଆଚାର ଓ ରୀତି ଗତି ଯେଉଁପରି କ୍ରମଶଃ ପରିବର୍ତ୍ତିତ ହେଉଅଛି, ଦେବତା ଯୋଗ୍ୟ ନୈବେଦ୍ୟ ସାମଗ୍ରୀ, ଧୂପ ଦୀପ, ଯାନବାହନ ଇତ୍ୟାଦି ମଧ୍ୟ ତଦନୁରୂପ ଆଧୁନିକ ରୂପ ଧାରଣ କରୁଅଛି । ରମ୍ଭା, ରସାଳ, ନାରିକେଳ ସ୍ଥଳରେ ଅଙ୍ଗୁର, କିସମିସ, ବାଦାମ, ପିସ୍ତା, ଅପେଲ, ବେରି ଇତ୍ୟାଦି - ଘିଅଦୀପ ପରିବର୍ତ୍ତରେ ନ୍ୟସବତି ବା ବିଜୁଳିବତି, ଝୁଣାଧୂପ ପରିବର୍ତ୍ତରେ ମହତାପ, ଚକ୍ରୀ, ଆସମାନଗୋଲା ଆଦି ମଧସ୍ଥ ବାରୁଦର ଧୂପ ପଇଡ଼ପାଣି ଓ ଅଧରପଣା ପରିବର୍ତ୍ତରେ ସେରି, ସାମ୍ପେନ, ପୋର୍ଟ, ମେଡ଼ିରା ଆଦି ସୁପାନକ ଗନ୍ଧ-ଚନ୍ଦନ ପରିବର୍ତ୍ତରେ ଲାଭେଣ୍ଡର, ଏସେନସ୍, ଓଡ଼ିକଲୋନ, ପମେଟମ, ଫେସ୍‌କ୍ରିମ ଇତ୍ୟାଦି ଗାମୁଛାପିନ୍ଧା ପୂଜକ ଗୋସାଇଁ ମହାପ୍ରଭୁଙ୍କ ପରିବର୍ତ୍ତରେ ପୋଷାକ-ତକମା-ପଟିଧାରୀ ଖାନସମା ବବୁରୁଚି ସ୍ତବ, ସ୍ତୋତ୍ର ପରିବର୍ତ୍ତରେ ଆଡ୍ରେସ, ଟୋଷ୍ଟ ଆଦି ଚିତ୍ତାକର୍ଷକ ବୋଲି ବୀଣା ପରିବର୍ତ୍ତରେ ପିଆନୋ, ହାରମୋନିଅମ ବିମାନ ଓ ରଥ ପରିବର୍ତ୍ତରେ ମଟର ଓ ଘୋଡ଼ାଗାଡ଼ି ଆଦି ଏହିପରି ଆଧୁନିକ ଉପକରଣ ସାଜସଜ୍ଜା ଧୂପଦୀପ, ନୈବେଦ୍ୟ, ଗନ୍ଧପୁଷ୍ପ ଯୋଗାଡ଼ କରି ଆଧୁନିକ ଦେବତାଙ୍କର ପୂଜା କରାଗଲେ ''ରାଜାନଂ ରାଜପୁତ୍ରଂ ବା ରାଜମନ୍ତ୍ରିଣମେବ ବା ରାଜ୍ୟଂ ବା ସର୍ବବିଘ୍ନେଶୋ ବଶଂ କୁର୍ଯ୍ୟାଦ୍ ସରାଷ୍ଟ୍ରକଂ ।'' ଫଳ ପ୍ରାପ୍ତିରେ ମଧ୍ୟ ବିଳମ୍ବ ଘଟେ ନାହିଁ । ପକ୍ଷ, ମାସ, ତ୍ରିମାସରେ ଫଳ ମିଳିଯାଏ । ନିତାନ୍ତ ''ଷଡ୍‌ଭିର୍ମାସୈର୍ବରଂ ଲଭେଦ୍ । ସଂବତ୍ସରେଣ ସଂସିଦ୍ଧିଂ ଲଭତେ

ନାତ୍ର ସଂଶୟଃ ।'' ଏ ସମ୍ବନ୍ଧରେ ଏଠାରେ ଏତିକି ମାତ୍ର ନିବେଦ୍ୟ ଯେ, ଗୃହ ଦେବତା, ଗ୍ରାମ ଦେବତା, ନଗର ଦେବତା, ବନ ଦେବତା, ମ୍ରଗନ୍ଲା ଦେବତା, ଥାନା ଦେବତା, ସବ୍‌ଡିଭିଜନ ଦେବତା, ବିଭାଗ ଦେବତା, ପ୍ରଦେଶ ଦେବତା, ଦେଶ ଦେବତା, ମହାଦେଶ ଦେବତା, ସାମ୍ରାଜ୍ୟ ଦେବତା, ଜଳ ଦେବତା, ସ୍ଥଳ ଦେବତା, ଇଷ୍ଟ ଦେବତା, ଅନିଷ୍ଟ ଦେବତା, ଏହିପରି ଭିନ୍ନ ଭିନ୍ନ ଇଲାକାରେ ଭିନ୍ନ ଭିନ୍ନ କରାମତ ବିଶିଷ୍ଟ ଦେବତା ଅଛନ୍ତି - ଭିନ୍ନ ଭିନ୍ନ ଦେବତାଙ୍କର ଭିନ୍ନ ଭିନ୍ନ ପୂଜାପଦ୍ଧତି, ପୂଜକ, ପୂଜୋପକରଣ ଆଦି ଅଛି । ସେଗୁଡ଼ିକ ଠିକଣା କରି ଗୋଟିଏ ପୂଜକ ଠିକଣା କରିପାରିଲେ କାରଣ, ମାରଣ, ବଶୀକରଣ, ସ୍ତମ୍ଭନ, ମୋହନ, ଉଚ୍ଚାଟନ ଆଦି ସବୁ ପ୍ରକାର ପ୍ରୟୋଗ କରାଯାଇପାରିବ । ଅଥଚ ଆପଣା ଦିହ କିଳା ହୋଇ ଅକାଟ୍ଟ ହେବ । ଦେବତାମାନେ ପ୍ରସନ୍ନ ଥିଲେ ତୁମ ଆଗଗୋଡ଼ରେ କଣ୍ଟା ବାଜିବ ନାହିଁ, ଅଥଚ ଯେତେବେଳେ ଯେଉଁ ପ୍ରାଣୀକୁ ମନେ କରିବ, ତୁମେ ବାଣ ମାରି ସ୍ତମ୍ଭନ, ମୋହନ, ବଶୀକରଣ, ଉଚ୍ଚାଟନ ସବୁ କରିପାରିବ ଓ ଦେଶରେ ସ୍ୱନାମଧନ୍ୟ ସିଦ୍ଧପୁରୁଷ ହୋଇ ଠାକୁରଙ୍କ ଆଜ୍ଞାରେ ତୁମେ ସମସ୍ତଙ୍କ ଆଖିରେ ନିଦ ଧୂଳି ପକାଇପାରିବ । କେଉଁ କାର୍ଯ୍ୟ ସାଧନ ଉଦ୍ଦେଶ୍ୟରେ କି ମନ୍ତ୍ର ଓ କବଚ ପ୍ରୟୋଗ ଦରକାର, ତାହା ଠିକଣା କରିବା ସହଜ କଥା ନୁହେଁ । ଉପରେ ଯେଉଁ ସବୁ ବାହାରର କଥା ଲେଖାଗଲା, ସେଗୁଡ଼ିକ ଦେଖା କଥା ବୋଲି ଲେଖି ହୋଇଗଲା, କିନ୍ତୁ 'ମନ୍ତ୍ର'ଟି ପାଇବା ସହଜ ନୁହେଁ । ଯେଉଁ ବ୍ୟକ୍ତି ମନ୍ତ୍ର ପ୍ରୟୋଗ କରନ୍ତି, ସେ ଏକା ସେ ମନ୍ତ୍ର ଜାଣନ୍ତି, ସେ ମଧ ଯାହାକୁ ଇଚ୍ଛା ତାକୁ ସେ ମନ୍ତ୍ର କହି ଦିଅନ୍ତି ନାହିଁ । ପାଠ ମଧ ଡାକୁଛି - ''ଗୁରୁର୍ଭକ୍ତାୟ ଦାତବ୍ୟଂ ନ ଦେୟଂ ଯସ୍ୟ କସ୍ୟଚିତ୍ ।'' ତେବେ ମୁଁ ଶୁଣିଛି ଯେ, ଯେପରି 'ଚଣ୍ଡୀ'କୁ ସଂପୁଟ କରି ଅର୍ଥାତ୍ ନିର୍ଦ୍ଦିଷ୍ଟ କୌଣସି ମନ୍ତ୍ରଦ୍ୱାରା ପ୍ରତ୍ୟେକ ଶ୍ଳୋକକୁ ସଂପୁଟିତ କରି ପ୍ରୟୋଗ କଲେ ଫଳ-ସିଦ୍ଧି ଅବଶ୍ୟ ହୁଏ, ସେହିପରି ପାର୍ଥିବ ଦେବତାମାନଙ୍କ ଆଗରେ ନିର୍ଦ୍ଦିଷ୍ଟ ମନ୍ତ୍ରଦ୍ୱାରା ସଂପୁଟ-ସ୍ତବ ପାଠ କଲେ ଈପ୍ସିତ ଫଳସିଦ୍ଧି ନିଶ୍ଚୟ ହେବ ।

'ବଶ୍ୟସ୍ତମ୍ଭନମୁଗ୍ରବିଘ୍ନଶମନଂ
ଦାରିଦ୍ର୍ୟବିଦାବଶଂ ।
ଭୁଭୃଦ୍‌ଷୀଷମନଂ ଚଳନ୍ ମୃଗଦୃଶାଂ
ଚେତଃ ସମାକର୍ଷଣଂ ।'

ଆଦି ଭିନ୍ନ ଭିନ୍ନ ଉଦ୍ଦେଶ୍ୟ ନିମନ୍ତେ ଭିନ୍ନ ଭିନ୍ନ ପ୍ରୟୋଗ ଅଛି । ଆମ ଘରେ ଥିବା ଗୋସାଇଁବାପାଙ୍କ ପୋଥି ଗାଦି ଘାଣ୍ଟି ଯେବେ କୌଣସି ସଂପୁଟ-ମନ୍ତ୍ର ମିଳିବ, ତେବେ ସମୟକ୍ରମେ 'ସାହିତ୍ୟ'ର ପାଠକମାନେ ତହିଁର ଇସାରା ଅବଶ୍ୟ ପାଇବେ । ଇତି ।

ଉ. ସା. - ୨୧ଶ ଭାଗ/୫ମ ସଂଖ୍ୟା/ଭାଦ୍ର/୧୩୨୫ ସାଲ ।

## ।। ଆଠ ।।

ଆଧୁନିକ ଯୁଗରେ ଜଣେ ଖ୍ୟାତନାମା ଲେଖକ କହିଅଛନ୍ତି ଯେ, ଗୃହ-ଶାସନ କାର୍ଯ୍ୟ ରାଜ୍ୟ ଶାସନ ଅପେକ୍ଷା ଅଧିକତର ଆୟାସସାଧ ବ୍ୟାପାର ଅଟେ । ରାଜ୍ୟ ଶାସନ କରିବା ନିମନ୍ତେ ରାଜାଙ୍କର ଯେଉଁ ଯେଉଁ ଗୁଣ ଆବଶ୍ୟକ, ଗୃହକୁ ସୁଶାସିତ କରିବାପାଇଁ ଗୃହକର୍ତ୍ତାଙ୍କର ସେହି ସେହି ଗୁଣଗୁଡ଼ିକ ଅଧିକ ପରିମାଣରେ ଆବଶ୍ୟକ । ସଂସାରରେ ଯେପରି ଅନେକ ରାଜ୍ୟ ଅଛି ଓ ଅନେକ ରାଜା ଅଛନ୍ତି, ଯେଉଁଠାରେ ରାଜ୍ୟ ଶାସନ କାର୍ଯ୍ୟ ଅତି ସନ୍ତୋଷଜନକ ରୂପେ ଚଳୁଅଛି, ସେହିପରି ମଧ ଅନେକ ଗୃହ ଅଛି, ଯହିଁରେ ଗୃହକର୍ତ୍ତା ଯେନତେନପ୍ରକାରେଣ ଘରକୁ ଟେକି ରଖିଅଛନ୍ତି । କଥାରେ କହନ୍ତି, ''ଚକ ଗଡୁଥିଲେ ଅଖ ଚାଲୁଥାଏ ଗଳି ପଡୁଥାଏ ପହି, ସଂସାର ଭିତରେ ଘର କରୁଥିଲେ ପଥର ପଡ଼ିଲେ ସହି ।'' କିନ୍ତୁ ଫଳତଃ ଦେଖାଯାଏ ଯେ, ପ୍ରକୃତ ପ୍ରସ୍ତାବରେ 'ଘରକରଣା' ନାମବାଚ୍ୟ ଘର ଏ ସଂସାରରେ ଅତି କମ । ଆହୁରି ମଧ 'ଅମୁକ ଗୃହକର୍ତ୍ତା ହେବାର ଉପଯୁକ୍ତ ବ୍ୟକ୍ତି ନୁହନ୍ତି', 'ଅମୁକଙ୍କ ଘରେ ବହୁତ ଅସନା ଅଳିଆଗଦା', 'ଅମୁକଙ୍କ ଚୁଲିରେ ବୁଢ଼ିଆଣୀ ବସା କଲେଣି', 'ଅମୁକ ଗୃହକର୍ତ୍ତା ଘରର ଲୋକଙ୍କୁ ବହୁତ ଦହଗଞ୍ଜ କଲେଣି', ଏହି ସବୁ ମନ୍ତବ୍ୟ ସାଧାରଣତଃ ଶୁଣାଯାଏ । ଏସବୁ 'ପରୋପଦେଶେ ପାଣ୍ଡିତ୍ୟ' ବଡ଼ ସହଜ କଥା - କିନ୍ତୁ ଏ ଶ୍ରେଣୀର ସମାଲୋଚକଙ୍କ ଉପରେ 'ନିଜେ ବଜାଇବାକୁ' ପଡ଼ିଲେ ସେମାନେ କାର୍ଯ୍ୟକ୍ଷେତ୍ରରେ ପରୀକ୍ଷାରେ ଅଧିକାଂଶ ସମୟରେ ଫେଲ ହେବାର ଦେଖାଯାଏ । ମୋର ପିତୃଦେବ ମୋ ପରିବାରର କର୍ତ୍ତା ଥିବା ଅବସ୍ଥାରେ ମୁଁ ତାଙ୍କ ଶାସନ ପ୍ରଣାଳୀ ପ୍ରତି ଦୋଷାରୋପ କରିବାରେ ଅଭ୍ୟସ୍ତ ଥିଲି । କିନ୍ତୁ ପିତୃଦେବଙ୍କ ଅନ୍ତେ ମୁଁ ବର୍ତ୍ତମାନ ଉପଲବ୍ଧି କରୁଅଛି ଯେ, ମୋର ତଦାନୀନ୍ତନ ମନ୍ତବ୍ୟଗୁଡ଼ିକ ଅସାରତା, ହୃଦୟହୀନତାରେ ପରିପୂର୍ଣ୍ଣ ଥିଲା - ସେତେବେଳେ ମୁଁ ଗୃହକର୍ତ୍ତାର ଦାୟିତ୍ୱ ହୃଦୟଙ୍ଗମ କରିପାରି ନ ଥିଲି । ଦୋଷ ଦେଖାଇ ବକ୍ତୃତା ଦେବା କେଡ଼େ ସହଜ, କିନ୍ତୁ ପରୀକ୍ଷାର ସମୟ ଉପସ୍ଥିତ ହେଲେ ସେ ଦୋଷମାନ ସଂଶୋଧନ କରି ଆପଣା ଉପରେ ନ୍ୟସ୍ତ 'ସଂସାର'କୁ ନିର୍ଦ୍ଦୋଷ ଭାବରେ ପରିଚାଳନା କରିବା ଅତି ଦୁରୂହ ବ୍ୟାପାର ହୋଇଉଠେ ।

ଯେଉଁପରି ଭିନ୍ନ ଭିନ୍ନ ରାଜ୍ୟରେ ଭିନ୍ନ ଭିନ୍ନ ଶାସନ ପ୍ରଣାଳୀ ପ୍ରଚଳିତ ଓ ସଫଳ ହେବାର ଦେଖାଯାଏ, ସେହିପରି ଭିନ୍ନ ଭିନ୍ନ ଗୃହରେ ଭିନ୍ନ ଭିନ୍ନ ପ୍ରକାର ଶାସନ ପ୍ରଣାଳୀ ପ୍ରଚଳିତ ହେବାର ଦେଖାଯାଏ । କେଉଁଠାରେ ଯଥେଚ୍ଛାଚାର, କେଉଁଠାରେ ପ୍ରଜାତନ୍ତ୍ର, କେଉଁଠାରେ ପ୍ରଜାପ୍ରତିନିଧି-ଶାସନ, କେଉଁଠାରେ ରାଜ-ପ୍ରତିନିଧି ଶାସନତନ୍ତ୍ର, କେଉଁଠାରେ କୁଳ-ପରମ୍ପରାଗତ ମୁଷ୍ଟିମେୟ ବ୍ୟକ୍ତିଙ୍କ ଦ୍ୱାରା ଶାସନତନ୍ତ୍ର, କେଉଁଠାରେ ପ୍ରଜା-ପ୍ରତିନିଧି-ସଭା-ନିୟନ୍ତ୍ରିତ ରାଜାଙ୍କର ଶାସନତନ୍ତ୍ର, କେଉଁଠାରେ ସ୍ୱାୟତ୍ତ ଶାସନତନ୍ତ୍ର

ପ୍ରଚଳିତ ହେବାର ଦେଖାଯାଏ । ଆଜି ଯେଉଁ ରାଜ୍ୟରେ ଯଥେଚ୍ଛାଚାରୀ ସମ୍ରାଟ୍‌ଙ୍କର ଏକାଧିପତ୍ୟ ପୂର୍ଣ୍ଣମାତ୍ରାରେ ପ୍ରତିଷ୍ଠିତ, କାଲି ସେଠାରେ ସାଧାରଣତନ୍ତ୍ର ରାଜତ୍ୱ ପ୍ରତିଷ୍ଠିତ । କାଲି ସେଠାରେ ସାଧାରଣତନ୍ତ୍ର ରାଜତ୍ୱ ପ୍ରତିଷ୍ଠିତ ହେଉଥିବାର ପୃଥିବୀର ପୁରାତନ ଇତିହାସ ଓ ଆଧୁନିକ ଯୁଗର ଘଟନାବଳୀରେ ବିରଳ ନୁହେଁ । ଦେଶ, କାଳ, ପାତ୍ର ବିବେଚନାରେ ଯୁଗର ପ୍ରବାହ ଅନୁସାରେ ଆଜି ଯେଉଁ ଶାସନ ପ୍ରଣାଳୀ ଗୋଟିଏ ରାଜ୍ୟ ପ୍ରତି ଉପଯୁକ୍ତ, କାଲି ଯୁଗର ଗତି ଅନୁସାରେ ଉକ୍ତ ରାଜ୍ୟକୁ ଶାସନ କରିବାକୁ ସେହି ପ୍ରଣାଳୀ ଖଟିବ ନାହିଁ । ଯେତେବେଳେ ଶିଶୁ ନିଜ ରକ୍ଷଣରେ ଅସମର୍ଥ ହୋଇଥାଏ, ସେତେବେଳେ ଗୃହକର୍ତ୍ତା ସର୍ବେସର୍ବା ଓ ଗୃହକର୍ତ୍ତାଙ୍କ ଉପରେ ସେ ଶିଶୁର ଲାଳନପାଳନ ଭାର ପୂର୍ଣ୍ଣଭାବରେ ନ୍ୟସ୍ତ ଥାଏ । କାଲି ଶିଶୁର 'ମୁଣ୍ଡକୁ ହାତ ପାଇଗଲେ' ଶିଶୁ କଥା କହିବାକୁ ଶିଖେ ଓ ଗୃହକର୍ତ୍ତାଙ୍କର ଶାସନ ପ୍ରଣାଳୀରେ ତାହାର ସନ୍ତୋଷ ବା ଅସନ୍ତୋଷ ପ୍ରକାଶ କରିବାକୁ ସମର୍ଥ ହୁଏ । ତଥାପି ସେତେବେଳେ ଆପଣା କଥା ସମ୍ଭାଳିବାକୁ ତାହାର ଶକ୍ତି ବା ସାମର୍ଥ୍ୟ ହୋଇ ନ ଥାଏ । ପୁଣି ଦିନାକେତେ ଗଲାରୁ ଯେତେବେଳେ ଶିଶୁ ନିଜର 'ଖବର' ନେବାକୁ ଉପଯୁକ୍ତ ବା ସମର୍ଥ ହୁଏ, ସେତେବେଳେ ସେ ଗୃହରେ ଜଣେ ଆଶ୍ରିତ, ନଗଣ୍ୟ, ନିର୍ବଳ, ନିଃସ୍ୱ, ନିର୍ଭୀକ ବସ୍ତୁ ହୋଇ ରହିପାରେ ନାହିଁ । ଗୃହକର୍ତ୍ତା ଉକ୍ତ ବାଳକର ପରାମର୍ଶ ନେବାକୁ କିମ୍ବା ତାହାର ମନ ଜଗି କାର୍ଯ୍ୟ କରିବାକୁ ଓ ସମସ୍ତ ସମୟରେ ତାହାର ପରାମର୍ଶ ଅନୁସାରେ କାର୍ଯ୍ୟ କରିବାକୁ ବାଧ ହୁଅନ୍ତି । ଅନ୍ୟଥା ଗୃହରେ ସର୍ବଦା ଅଶାନ୍ତି, କନ୍ଦଳ, ବିଦ୍ରୋହ, ଈର୍ଷା ଏସବୁ ଅବଶ୍ୟମ୍ଭାବୀ ହୋଇଉଠେ ।

ବୃଦ୍ଧ ଚାଣକ୍ୟ ଏହି ତିନିଗୋଟି ପାହାଚକୁ ଲକ୍ଷ୍ୟ କରି ଗାଇଅଛନ୍ତି - "ଲାଳୟେତ୍ ପଞ୍ଚବର୍ଷାଣି ଦଶବର୍ଷାଣି ତାଡ଼ୟେତ୍ । ପ୍ରାପ୍ତେ ତୁ ଷୋଡ଼ଶେ ବର୍ଷେ ପୁତ୍ରଂ ମିତ୍ରବଦାଚରେତ୍ ।"

ଯେଉଁପରି ଗୋଟିଏ ରାଜ୍ୟ ଶତ ଶତ ଗୃହର ସମଷ୍ଟି, ସେହିପରି ରାଜ୍ୟ ଶାସନ ଗୃହ ଶାସନର ପ୍ରଶସ୍ତୀକୃତ ରୂପାନ୍ତର ମାତ୍ର ଓ ରାଜା ଗୋଟିଏ ବଡ଼ ଗୃହକର୍ତ୍ତା ମାତ୍ର । ଗୃହକୁ ପରିଚାଳନା କରିବା, ଗୃହାନ୍ତର୍ଗତ ସଜୀବ ଓ ନିର୍ଜୀବ ପଦାର୍ଥମାନଙ୍କର ତତ୍ତ୍ୱ ନେବା, ଗୃହର ପରିବାରବର୍ଗର ଭରଣ, ପୋଷଣ, ଶିକ୍ଷା ଆଦିର ସୁବ୍ୟବସ୍ଥା କରିବା ଆଦି ଦୁରୂହ ସମସ୍ୟାମାନ ସାଧନ କରିବା ନିମନ୍ତେ ଗୃହକର୍ତ୍ତା ସର୍ବଦା ଚିନ୍ତିତ, ଶଙ୍କିତ ଓ ବ୍ୟସ୍ତ ଥା'ନ୍ତି । ସେହିପରି ରାଜ୍ୟ ପରିଚାଳନ କରିବା, ରାଜ୍ୟାନ୍ତର୍ଗତ ସମସ୍ତଙ୍କର ତତ୍ତ୍ୱ ନେବା, ପ୍ରଜାଙ୍କର ଭରଣ, ପୋଷଣ, ଶିକ୍ଷା ଆଦିର ସୁବ୍ୟବସ୍ଥା କରିବା ଆଦି ଦୁରୂହ ଓ ବୃହତ୍ତର ସମସ୍ୟାମାନ ସାଧନ କରିବା ନିମନ୍ତେ ରାଜା ସର୍ବଦା ଚିନ୍ତିତ ଓ ବ୍ୟସ୍ତ ଥା'ନ୍ତି । ସେଥିପାଇଁ ରାଜାଙ୍କର ମନ ପ୍ରଜାଙ୍କ ଚିନ୍ତାରେ ସର୍ବଦା ବ୍ୟାକୁଳ; ରାଜାଙ୍କ ଶରୀର, କାର୍ଯ୍ୟ ଓ ସମୟ ରାଜାଙ୍କର ନୁହେଁ, ତାହା ପ୍ରଜାମାନଙ୍କର ଅଟେ ଓ ତାହା ପ୍ରଜାମାନଙ୍କ ମଙ୍ଗଳ ନିମନ୍ତେ ଉତ୍ସର୍ଗୀକୃତ ହୋଇଥାଏ । ପ୍ରଜାଙ୍କର ସର୍ବପ୍ରକାର ମଙ୍ଗଳ ସାଧନର ଉପାୟ

ଉଦ୍ଭାବନ କରୁ କରୁ ରାଜା ଘଡ଼ିକପାଇଁ ନିଶ୍ଚିନ୍ତ ହୋଇ ନିଦ୍ରା ଯାଇପାରନ୍ତି ନାହିଁ । କିନ୍ତୁ ଯେଉଁମାନଙ୍କ ପାଇଁ ରାଜା ଦିବାନିଶି ଜାଗ୍ରତ ଓ ଉନିଦ୍ର, ସେହି ପ୍ରଜାମାନେ ଆପଣାର ପରିବାର ରକ୍ଷଣ ଚିନ୍ତା ରାଜାଙ୍କଠାରେ ନ୍ୟସ୍ତ କରିଦେଇ ରାଜାଙ୍କର ଦୂରଦର୍ଶିତା, ଆଶ୍ରିତବାତ୍ସଲ୍ୟ ଓ କର୍ମକୁଶଳତା ଉପରେ ନିର୍ଭର କରି ନିଶ୍ଚିନ୍ତ ହୋଇ ନିଦ୍ରା ଯାଆନ୍ତି ।

ରାଜା ପୁତ୍ରନିର୍ବିଶେଷରେ ପ୍ରଜାଙ୍କ ପ୍ରତି ଦୃଷ୍ଟି ରଖନ୍ତି । ଏହି ଭାବ ଭାରତରେ ଚିରକାଳ ପୋଷିତ ଅଟେ । ସେଥିପାଇଁ 'ପ୍ରଜା' ଶବ୍ଦର ଗୋଟିଏ ଅର୍ଥ 'ପୁତ୍ର' । ରାଜାଙ୍କର ପ୍ରଧାନ ଗୁଣ ପ୍ରଜା-ରଞ୍ଜନ । 'ରାଜା' ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ପ୍ରଜା-ରଞ୍ଜନ ।

ଏହିପରି ମଧ୍ୟ ଆପଣାର ଗୃହସ୍ଥଳୀ-ଅନ୍ତର ସମସ୍ତ ବ୍ୟକ୍ତିଙ୍କର ଓ ପ୍ରାଣୀଙ୍କର ତତ୍ତ୍ୱ ନେବା କର୍ତ୍ତାଙ୍କର ପ୍ରଥମ କର୍ତ୍ତବ୍ୟ । ସେଥିପାଇଁ କହିଅଛନ୍ତି,

''ଚିହ୍ନିବାକୁ ଶିଖି ନାହିଁ ପର ମନ,
ସେ କି କେବେ ପ୍ରଭୁପଣକୁ ଭାଜନ ?''

ଯେଉଁ ଗୃହକର୍ତ୍ତା ଗୃହ-ସୀମା ମଧ୍ୟରେ ବାସ କରିଥିବା ପ୍ରାଣୀଙ୍କ ପେଟ ଓ ମନ ନେଇପାରେ ନାହିଁ, ସେ ପ୍ରଭୁ ନାମରେ ଅଭିହିତ ହେବାର ଉପଯୁକ୍ତ ନୁହେଁ ।

ଉ.ସା. - ୨୧ଶ ଭାଗ/୮ମ ସଂଖ୍ୟା/ ମାର୍ଗଶିର/୧୩୨୫ ସାଲ ।

## ॥ ନଅ ॥

ଆଚ୍ଛା ସମ୍ପାଦକ ଅବଧାନ ! ଆପଣଙ୍କର ଆମର ଟିକିଏ 'ଦୁଃଖ-ସୁଖ' ହେବା ଦରକାର । କାରଣ ଆଗରେ ଦଶହରା-ଦୁର୍ଗାପୂଜା । ଏହି ଦଶହରା ଘଡ଼ିରେ ଯେଝା ମଉଛବ ଆୟୋଜନରେ ଯେ ବ୍ୟସ୍ତ । କଚେରି, ସ୍କୁଲ, କଲେଜ, ଅଫିସ, ଛାପାଖାନା, କାରଖାନା ସବୁ ବନ୍ଦ ହେବ । ବର୍ତ୍ତମାନ ପାଉଣାଦାରମାନେ ବର୍ଷକର ପାଉଣା ନେବେ । ଦେଣାଦାରମାନେ ବର୍ଷକର ଦେଣାର ହିସାବ କିତାବ କରି ନୂଆ ଖାତା କରିଦେବେ । ମନୁଷ୍ୟ ତ ସହଜରେ ଜନ୍ମ ପାଇଛି ରଡ଼ି କରିବାକୁ, ସେ ଏହି ଉତ୍ସବ ସମୟରେ ମନବୋଧିଆ ରଡ଼ି କରିବ । କିନ୍ତୁ ଜୀବ ସଂସାରରେ ମଧ୍ୟ ଏହି ଶାରଦୀୟ ପୂଜା ଉପଲକ୍ଷରେ ଶତ ଶତ ଛେଳି, ମେଣ୍ଢା, ମଇଁଷି ଏମାନଙ୍କର ମଧ୍ୟ ରଡ଼ି ଦେଶତମାମ ଶୁଭିବ । ମୋ ଭଳି ନିପଟ ମଫସଲିଆ କି ଯେଉଁମାନେ ସରକାରୀ ବେସରକାରୀ କାର୍ଯ୍ୟ ଉପଲକ୍ଷରେ ଆପଣା ଆପଣା 'ଝୋଁପଡ଼ା' ଖଣ୍ଡମାନ ଛାଡ଼ି ସହରରେ ଆସି ପେଟ ବିକଳରେ ପଡ଼ିଥାନ୍ତି - ସେମାନେ ମଧ୍ୟ ଚେଇଁ ଉଠିବେ । ଅର୍ଥାତ୍ ଆମେ କଟକରେ ଯେଡ଼େ ନିକୁଛିଆ ଭାବରେ ଥାଉଁ ପଛକେ, ଦଶହରା ଘଡ଼ିରେ ମଫସଲକୁ ଯିବାବେଳେ ସେଠାରେ ଆମେ ଓ ଆମର ପିଲାପିଚିକା ଧୋବଧାଉଳିଆ ଓ ଚହଟଚିକଣିଆ ହେବା ସକାଶେ ବାସିଧୋବ, ପେଡ଼ିଲୁଗା, ଜାମା, ଅଙ୍ଗରଖା ଦି ଦିଖଣ୍ଡ, ଜିରାମରିଚ, ପାନ ଓ

ଭାଙ୍ଗମସଲା ପୁଡ଼ା କେତେ, ପାନିଆ, ଫରୁଆ, ଅଳତା, ସିନ୍ଦୂର, ମହଣ, ହଳଦୀ, ସାବିନି, ମେଥି, ନଡ଼ିଆତେଲ, କୁମ୍ଭକର୍ଣ୍ଣୀ ଓ ହଳଦିବସନ୍ତିଆ ଶାଢ଼ି, ଅଲତାପ ମିଆଁଙ୍କ ଦୋକାନର ଗୁଡ଼ାଖୁ, ଡିବିରିଲଗା ଲଣ୍ଠନ, ଖଡ଼ମ, ତେଲ ପାଚିଲା ବାଡ଼ି, ଚଢ଼ଉ ଜୋତା ଓ ମହଣ ଛତି, ନଳିହୁକା, ନଇନିତାଲି ଆଳୁ, କଲରାବାଙ୍କିଆ ଗୁଆଘିଅ, ମଇଦା, ସୁଜି ଓଗେର ସମସ୍ତ ସରଞ୍ଜାମତକ ଆଗରୁ ମାସକଠଉଁ ସଜାଡ଼ି ବୋକଚା ବାନ୍ଧି ରଖିଥାଉଁ ଓ ମଫସଲରେ ଯାଇ ପହଞ୍ଚି ମାସେ ଖଣ୍ଡେ ଗାଁରେ ରହି ବର୍ଷକର ମନର ଓରମାନ ମେଣ୍ଟାଇ ନେଉଁ । ଯେ ଆମଠାରୁ ଟିକିଏ ବେଶି ତେଲିଆମୁଣ୍ଡ, ସେ ମଧ୍ୟ ଇସ୍ତ୍ରିକରା ଚୁଡ଼ିଦାର କମିଜ, ଫରାସ ଡାଙ୍ଗା ଧୋତି ଓ ପଞ୍ଜାବି ଓଗେର ପହରଣ, ଗରମମସଲା, ଜାଫ୍ରାନକେଶର, ସେନ୍‌ସେନ୍, ତାମ୍ବୁଲିନ୍ ପୁଡ଼ା କେତେ, ଏକସା ଦୁଇସା ତିନିସା ବୋତଲ ଗୋଟାକେତେ, ଚିରୁଣି, ଡିବା, ତରଲ୍ ଅଲ୍‌ତା, ପାଉଡର, ପମେଟମ୍, ସାବୁନ, ଓଡ଼ିକଲନ୍, ବାସନାତେଲ, ପିଚାପାଡ଼ି ଓ ଫୁଲବାରି ବିଦ୍ୟୁତ୍‌ପ୍ରଭା ଶାଟିକା, ଫୁଲଦାର ଜାକିଟ୍ ଓ ସେମିଜ, ଚିରୁଣି, ମୁଣ୍ଡବନ୍ଧା ଫିତା, ବିଷ୍ଣୁପୁରୀ ଗୁଡ଼ାଖୁ, ବାର୍ଣ୍ଣିସ ଜୋତା ଓ ପାମ୍-ସୁ ଜୋତା, ଚମଡ଼ାବନ୍ଧା ପୋଟମେଣ୍ଟ, ହରିକେନ୍ ଲଣ୍ଠନ, ରସରସିଆ ଲହଲହକିଆ ସଉକିନ ଛଡ଼ି, ରେଶମି ଛତା, ଝରିଗୁଡ଼ିଆ ଆଲବଲ୍ଲା ଗୁଡ଼ଗଡ଼ି, ଟିଣଭରା କେକ୍ ବିସ୍‌କୁଟ୍, ବାଲାମ୍ ଚାଉଳ, ପୋଟଳ, ରୋଳାହୀନ ଶୌୟଙ୍ଗବୀନ (ପାଠକ ମହୋଦୟଗଣ, ମାଫ କରିବେ ଶ୍ୱୋଗୋଦୋହୋଭବଂ ଘୃତଂ ଇତି ବ୍ୟୁତ୍ପତ୍ତିଃ - ଆମ ଭାଷାଟାକୁ ଟିକିଏ କସରତ୍ ନ ଶିଖାଇଲେ ଚଳିବ କିପରି ?) ଇତ୍ୟାଦି ଅଣାଇ ମଫସଲ ଗସ୍ତ ଉଦ୍ଦେଶ୍ୟରେ ସରଦାରଙ୍କ ଜିମା କରିଥାନ୍ତି । ଆଉ ତହୁଁ ପାହାଞ୍ଚେ ବଢ଼ିଆ ବଡ଼ଲୋକମାନେ ଦୁର୍ଗାପୂଜାର ଲମ୍ବା ଚଉଡ଼ା ଅବକାଶ ସମୟରେ ପଣ କେତେ ଖଇରିହାକୁଟି ମାରି ତାଙ୍କ ଧଡ଼ିଟାମାନଙ୍କୁ ପଜେଇ ନେବା ଉଦ୍ଦେଶ୍ୟରେ ଦାର୍ଜିଲିଂ, ସିମଳା, ଦେରାଦୁନ, ନଇନିତାଲ, ଉଟକାମଣ୍ଡ ଆଦି ସ୍ୱାସ୍ଥ୍ୟପ୍ରଦ ସ୍ଥାନକୁ ଯାଇ ତେଣୁ ଆଗାମୀ ବର୍ଷକ ପାଇଁ ତାଜା ହୋଇ ଫେରିବା ସକାଶେ ପ୍ରୋଗ୍ରାମ ତିଆରି କରି ରେଳଗାଡ଼ିରେ ଆସନ-ବନ୍ଧକ (Birth reserve) କରି ଦିଅନ୍ତି ଓ ଯାହାଙ୍କୁ ଲକ୍ଷ୍ମୀସାଆନ୍ତାଣୀ ଆହୁରି ପ୍ରସନ୍ନ, ଏଣେ ଭକ୍ତି ଅଂଶ ପୂର୍ଣ୍ଣ, ସେମାନେ ଚାରିଧାମ କରି ଇହକାଳର ଆଗାମୀ ବର୍ଷ କେତେ ସକାଶେ ଓ ପରକାଳର ଚିରକାଳ ସକାଶେ ପାଥେୟ ସାଉଁଟି ରଖିବା ପାଇଁ ତତ୍ତଦ୍ ଧାମର ସ୍ୱକୀୟ ପଣ୍ଡିତମାନଙ୍କଠାକୁ ଆଦେଶପତ୍ର ପଠାନ୍ତି । ଏହି ଅବସରରେ ଦେବତା ଭକ୍ତଙ୍କଠାରୁ, ଓକିଲ ମୁକ୍ତାରମାନେ ମକ୍‌କେଲଠାରୁ, ଟରଣିମାନେ ସ୍ୱକୀୟ ଓ ପରକୀୟ ଓକିଲ ମୁକ୍ତାରଙ୍କଠାରୁ, ସାହୁ ଖାତକଠାରୁ, ବେପାରୀ ମହାଜନଠାରୁ, ବୈଦ ମକ୍କୁଙ୍କଠାରୁ, ଲାଗୁଆବାଲା ଗରାଖଙ୍କଠାରୁ, କାଲି ସଉଦା ଦେବାବାଲା ମୁଦିଗହକିଙ୍କଠାରୁ, ହାକିମମାନଙ୍କ ଶ୍ରୀଅଙ୍ଗଲଗା ପିଆଦାମାନେ ବାବୁଭୟାଙ୍କଠାରୁ, କୋଠିଆ ହଳିଆ ସାଆନ୍ତଙ୍କଠାରୁ, ଅବଧାନେ ଚାଟଙ୍କଠାରୁ, ଗ୍ରନ୍ଥକର୍ତ୍ତାମାନେ ବହିଦୋକାନର

ମାଲିକଙ୍କଠାରୁ, ଯାତ୍ରୀ-ଗୁମାସ୍ତାମାନେ ପଣ୍ଡାଙ୍କଠାରୁ, ବିରାଦରମାନେ ସରଦାରଙ୍କରଠାରୁ, ଧୋବା ଭଣ୍ଡାରି ଆଦି ସେବାକାରୀମାନେ ଗାଁ ସାଆନ୍ତଙ୍କଠାରୁ ଯଥାକ୍ରମେ ବଳି, ଫିସ ବାବଦକୁ ନିକାସି, ଚଣ୍ଡ, ମିଠେଇଖିଆ, ଢଳପାନି, ଦର୍ଶନୀ, ବହିନା, ପାଉସେରି, ବକ୍‌ସିସ୍‌, ଦଶହରା ବଏ ବିଦାକି, କମିସନ୍‌, ଭାଗାରିହିଂସା, ସାଲିଆନା ଓ ଭାଟିଆ ନେଇ ବର୍ଷକ ପାଇଁ ମୁଣ୍ଡରେ ଠେକା ବାନ୍ଧି ବସନ୍ତି ।

ଆଚ୍ଛା, ଏ ତ ହେଲା ଆମ ଦୁନିଆର ଆବହମାନକାଳ ପ୍ରଚଳିତ ପ୍ରଥା । ଏତେବେଳେ ଯେ ଯାହା ପାଉଣା ଗୋଟାଇବାରେ ବ୍ୟସ୍ତ । ପରମୁଖାପେକ୍ଷୀ, ପରହସ୍ତାପେକ୍ଷୀ ପରଧନାପେକ୍ଷୀ, ପରକର୍ମାପେକ୍ଷୀ, ପରାନୁଗ୍ରହାପେକ୍ଷୀ ବ୍ୟକ୍ତିମାନେ ବର୍ଷକଯାକ ହେଣ୍ଡି ମାରି ବୁଲୁଥାନ୍ତି, ବର୍ଷକେ ଥରେ ଏହି ଦଶହରା ଶରଦ୍‌କାଳୀନ ନିଗିଡ଼ା ବେଳକୁ ତାଙ୍କ ଛଣି ମୁଣିର ମୁହଁଭିଡ଼ା ଡୋର ଫିଟା ହୁଏ ଓ ତୋଡ଼ାମାନ ହାଲୁକା ହୁଏ ।

କିନ୍ତୁ ଓଡ଼ିଶାରେ ମାସିକ ପତ୍ରମାନଙ୍କର ଉପବାସିଆ ଲେଖକ ବିଚରାର ଭଲା ଅପରାଧ କଣ ? ସମ୍ପାଦକ ତଲବ କରିବେ ପାଠକ-ମନ-ବୋଧିଆ ମାଲ । ଏଣେ ଲେଖକ ବିଚରାର ତିନିଶ ଷାଠିଏ ଦିନ ପେଟରେ ଓଦାକନା ଓ ପିଠିରେ ଚିରାକନା ଦଶହରା ଚାରିଦିନ ମଧ ସେହିତା; ଏପରି ପେଟର ଢାଳାରେ ଭଲା ପ୍ରସ୍ରବଣ-ଲେଖନରୁ (Fountain pen) ଭଲ ମାଲ ବୋହିପାରେ ଟି କି ?

ଲେଖକ ବିଚରାର ଉଆଁସ ନାହିଁ, ସଂକ୍ରାନ୍ତି ନାହିଁ, ଓପାସ ନାହିଁ, ବାଆ ନାହିଁ, ସେ ବେଉଆରସ ହୋଇ ଦିନରାତି ତା ପେଟପାଟଣାରେ ଲାଗିଥିବ, ଏଣେ ତା ପିଲାଏ ଗଡ଼ି ମରୁଥାନ୍ତୁ, କିନ୍ତୁ ଆପଣଙ୍କ ପତ୍ରିକାର ଫରମା କମ୍ପୋଜ ହେଲା ବେଳକୁ ଯେବେ ସେ ବିଚରା ଆପଣଙ୍କୁ ଆପଣଙ୍କ ଫରମାସୀ ଯୋଗାଇ ନ ପାରିଲା, ତେବେ ତା କଥା ଶେଷ ! ସେ ଘରୁ ଖାଇ ଘୋଡ଼ା ଆଗରେ ନାଚିବ ଓ ଆପଣଙ୍କ ପାଠକମାନଙ୍କର ମନସ୍ତୁଷ୍ଟି କରି ଆପଣଙ୍କ ଦଶହରୋଚିତ ପରିପାଟୀ ସାଜସଜ୍ଜାର ଢରସମନର ଆଗମନୋପାୟ କରିବ; କିନ୍ତୁ ତାହାର ଝାଳବୁହା ଲେଖାତକ ଆପଣଙ୍କ ପତ୍ରିକାରେ ବାହାରି ସାରିଲାରୁ ସେ ଲେଖାରେ ସେହି ଦିନାଦ୍ୟରୁ ଲେଖକ ଓ ତାହାର ଉଆଲି ଉଆରସ ଉତ୍ତରାଧିକାରୀ ପୁତ୍ର-ପୌତ୍ରାଦିଙ୍କର ଦାବି, ଇଲାକା, ସ୍ୱତ୍ୱ, ସମ୍ପର୍କ ନାହିଁ । ନ ରହିଲା, ନ ରହିବ ଓ ନ କରିବ, କଲେ ତାହାର ସମସ୍ତ ବିଚାର ଅଦାଲତରେ ଅଗ୍ରାହ୍ୟ ହେବ । ଲେଖକର ଉକ୍ତ ପ୍ରବନ୍ଧରେ All rights destroyed ସର୍ବସ୍ୱତ୍ୱ ବିଧ୍ୱସ୍ତ ଓ ଆପଣ ସମ୍ପାଦକଙ୍କର ସେଥିରେ ହେଲା All rights reserved ଅର୍ଥାତ୍‌ ସର୍ବସ୍ୱତ୍ୱ ସଂରକ୍ଷିତ ।

ଲେଖକର ହେଲା - All labour reserved – ସର୍ବ ପରିଶ୍ରମରେ ସ୍ୱତ୍ୱ ଆପଣଙ୍କର ହେଲା - All right reserved – ସର୍ବ ସୁଫଳରେ ସ୍ୱତ୍ୱ । ଏହାକୁ କୋଦିଣ୍ଡା ନିଶାପ ବା 'ପରମ ଦୟାଳୁ' ବୁଝାମଣା ନ କହି ଆଉ କଣ କହିବ ? ମନେକରନ୍ତୁ, ଲେଖକ ବିଚରା ଭବିଷ୍ୟତ୍‌ରେ ଉତ୍ସର୍ଗ ପତ୍ର, ସମର୍ପଣ ପତ୍ର, ସୁପାରିସ ପତ୍ର, ପ୍ରାର୍ଥନା

ପତ୍ର ମାହାତ୍ମ୍ୟରେ ତାହାର ଲେଖାଗୁଡ଼ିକ ସଂଗ୍ରହ କରି ପୁସ୍ତକାକାରରେ ଛାପିବାର ଯୋଗାଡ଼ କଲା; କିନ୍ତୁ ତାହା କରିବା ପୂର୍ବରୁ ସେ ସମ୍ପାଦକଙ୍କ ଦ୍ୱାରସ୍ଥ ହୋଇ ତାଙ୍କର ଅନୁମତି ନ ନେଲେ ସେ ତାହା ପ୍ରକାଶ କରିପାରିବ ନାହିଁ । ଏଇଥିପାଇଁ ପ୍ରବାଦ ଅଛି - ''ନ ଖାଇ ନ ପିଇ କଇଥା ଚୋର ।'' ଘରର ହାଲଚାଲ ପ୍ରସଙ୍ଗରେ ଥରେ କହିଥିଲି ଯେ, ଘଟନାଚକ୍ରରେ ଲୋକେ ଆପଣା ଜିନିଷରେ ଚୋର ବନନ୍ତି । ଫଳତଃ ପାଠକମାନେ ଏଥିର ଗୋଟିଏ ବିଶେଷକଥନ ଉପରୋକ୍ତ ଘଟନାରେ ଦେଖିବା ହେଉନ୍ତୁ ।

ଘରର ହାଲଚାଲ କହିବାକୁ ଯାଇ ଆମେ ସମ୍ପାଦକ, ଲେଖକ, ମୁଦ୍ରକ, ପ୍ରକାଶକଙ୍କ ହାଲଚାଲ ଓ ଆଇନର ଚର୍ଚ୍ଚା ଓ ଆଲୋଚନା ଅନେକ କରି ଗଲେଇଁ । ପାଠକଙ୍କର କୌତୂହଳ ହୋଇପାରେ, ଲେଖକ ନିଜେ ଆସନ୍ନ ପୂଜା ବାସରର କିପରି ସଦ୍‌ବ୍ୟବହାର କରିବାର କଳ୍ପନା କରିଅଛନ୍ତି ।

ସଂସାରରେ କେତେଗୁଡ଼ିଏ ସାଂସାରିକ ସ୍ୱୀକାର୍ଯ୍ୟ (Postulates), ସ୍ୱତଃସିଦ୍ଧ (axioms) ଅଛି । ଗୋଟିଏ ଶବ୍ଦର ଦିଓଟି ଅର୍ଥ - ଗୋଟିଏ ଆକ୍ଷରିକାର୍ଥ, ଗୋଟିଏ ଭାବାର୍ଥ, ଗୋଟିଏ ମୁଖ୍ୟାର୍ଥ, ଗୋଟିଏ ଗୌଣାର୍ଥ, ଗୋଟିଏ ଅନୁଭବାର୍ଥ, ଗୋଟିଏ ଅନୁମାନାର୍ଥ, ଗୋଟିଏ ଯୌଗିକାର୍ଥ, ଗୋଟିଏ ଯୋଗାଗୂଢ଼ାର୍ଥ, ଗୋଟିଏ ପ୍ରକାଶ୍ୟାର୍ଥ (denotation), ଗୋଟିଏ ଗୂଢ଼ାର୍ଥ । ସାହିତ୍ୟ କ୍ଷେତ୍ରରେ ଲେଖକର ଏହିପରି ଦିଓଟି ଅର୍ଥ -

ପ୍ରଥମ ଅର୍ଥ - ''ଯେଉଁ ଜୀବ ଲେଖେ ।'' (କଣ ଲେଖେ ? କେଉଁଥିରେ ଲେଖେ ? କେଉଁଠାରେ ଲେଖେ ? ଇତ୍ୟାଦି ବାକ୍ୟ ଦେଶ, କାଳ, ପାତ୍ର ବିବେଚନାରେ ହରଣ ପୂରଣ କରାଯାଏ ।

ଦ୍ୱିତୀୟ ଅର୍ଥ - ସେ ଜଣେ ବ୍ୟକ୍ତି (ବିଶେଷ୍ୟ ପଦ, ପୁଂଲିଙ୍ଗ, ଏକବଚନ, କର୍ତ୍ତାକାରକ), ଯାହାର ହସ୍ତ ଅଛି (ନିପାତନ ସ୍ଥାନରେ ସ୍ଥଳରେ ହସ୍ତ ନ ଥିଲେ ମଧ୍ୟ ଅନ୍ୟ ଦ୍ୱାରା ଲେଖାଇ ନିଆଯାଇପାରେ), ଚକ୍ଷୁ ଅଛି, କର୍ଣ୍ଣ, ନାସା, ତ୍ୱକ୍, ରସନେନ୍ଦ୍ରିୟ ଏମାନେ ମଧ୍ୟ ଥିବାର ସ୍ୱାଭାବିକ (ନିପାତନ ସ୍ଥଳ ଛଡ଼ା), ତାର ମଧ୍ୟାବୟବରେ ଚିକିତ୍ସାଶାସ୍ତ୍ର ଗୋଟିଏ ଗୋଲାକାର ଗହ୍ୱର ଓ ଅବୟବର ଅଗ୍ରଭାଗରେ ସେହି ଗହ୍ୱର ସଙ୍ଗେ ବହିର୍ଜଗତର ସଂପର୍କ ସ୍ଥାପନ କରିବା ନିମନ୍ତେ ଗୋଟାକେତେ ବିବର ଅଛି । ସେ ବିବରଗୁଡ଼ାକ ବ୍ୟବହାର ଅଭାବରୁ ଯେପରି କଳଙ୍କି ଧରି ନ ଯାଏ, ସେଥିପାଇଁ ଯୋଗାଡ଼ କରିବା ଦରକାର । ଏ ତ ଗଲା ଲେଖକର ସାଧାରଣ ଅର୍ଥ । କିନ୍ତୁ ଦେଶ, କାଳ, ପାତ୍ର ଅନୁସାରେ ବିଶେଷ ବିଶେଷ ଲେଖକର ବିଶେଷ ବିଶେଷ ଅର୍ଥ ଅଛି । 'ଘରର ହାଲଚାଲ' ଲେଖକର ଘର ଅଛି, ଅଥବା ଘର ଥିବା ଦରକାର । ଘର ନ ଥିଲେ 'ଶିରୋନାସ୍ତି ଶିରୋବ୍ୟଥା' ନ୍ୟାୟ ହେବ । 'ଘର' ଶବ୍ଦ କହିଲେ ତହିଁରୁ ଅନେକ ଅର୍ଥ ବୁଝାଯାଏ ।

ପ୍ରଥମ ଅର୍ଥ - ସ୍ୱୀୟ ବାସସ୍ଥାନ ବା ଝୋଁପଡ଼ି, ଯାହାକୁ ଇଂରାଜୀରେ 'Home' ବୋଲାଯାଏ । ଏହି ହୋମ୍ ଶବ୍ଦଟି ଇଂରେଜମାନଙ୍କର କର୍ଣ୍ଣାମୃତ ଶବ୍ଦ । ଇଂରେଜୀରେ

ଗୋଟିଏ ଢଗ ଅଛି - "Every man's home is his castle" ଅର୍ଥାତ୍ "ପ୍ରତ୍ୟେକ ବ୍ୟକ୍ତିର ଘର ତାହାର ଗଡ଼ ଅଟେ ।'' ସେଠାରେ ସେ ନିରାପଦ, ନିର୍ଦ୍ୱନ୍ଦ୍ୱ, ନିଶ୍ଚିନ୍ତ । ଇଂରେଜ ଲୋକ ଘରେ ପହଞ୍ଚିଗଲେ ସେଠାରୁ ତାକୁ କେହି ଉଖାଡ଼ି ପାରିବେ ନାହିଁ । ଘର ପ୍ରତି ଇଂରେଜଙ୍କର ଏତେ ଆକର୍ଷଣ ଯେ, ଘର ଯେଉଁ ଦେଶରେ, ସେ ଦେଶକୁ ମଧ୍ୟ ସେମାନେ Home କହନ୍ତି । ସଂସାରରେ ସ୍ନେହ, ଭକ୍ତି, ପବିତ୍ରତା, ସରଳତା, ସ୍ୱାଧୀନତା, ନିଶ୍ଚିନ୍ତତା ଇତ୍ୟାଦି ଯେତେଗୁଡ଼ିଏ ପ୍ରାର୍ଥନୀୟ ଜିନିଷ ଅଛି, ଏହି 'ହୋମ' ଶବ୍ଦଟି ଉଚ୍ଚାରଣ କରିଦେଲେ ସବୁ ବୁଝାଗଲା ।

ତୁମେ କୌଣସି ନୂତନ ସ୍ଥାନକୁ ଯାଇଅଛ - ଯେବେ ସେଠା ତୁମକୁ ଆରାମଜନକ, ଶାନ୍ତିପ୍ରଦ ଓ ଆନନ୍ଦମୟ ବୋଧ ହେଲା, ତେବେ ତୁମେ କହିବ - "I feel at home"- ମୋତେ ହୋମ୍ ଭଳି ଲାଗୁଛି । ବର୍ତ୍ତମାନ ଏହି ହୋମ୍ ଶବ୍ଦଟି 'Home-rule', ହୋମ-ରୁଲ୍ ଅର୍ଥାତ୍ 'ସ୍ୱାୟତ୍ତ-ଶାସନ' ପ୍ରସଙ୍ଗରେ ଆମ୍ଭମାନଙ୍କ ହାବୁଡ଼ରେ ପଡୁଛି । ସବୁ ଶାସନ ପ୍ରଣାଳୀ ମଧ୍ୟରେ ଯେଉଁ ଶାସନ ପ୍ରଣାଳୀକୁ ମନୁଷ୍ୟ ଆପଣା ମନରେ ସର୍ବଶ୍ରେଷ୍ଠ ବୋଲି ମନେ କରେ, ସେହି ସ୍ୱାୟତ୍ତ ଶାସନ-ପ୍ରଣାଳୀକୁ Home-rule (ହୋମ ରୁଲ) ବୋଲି ଇଂରେଜୀରେ ବୋଲାଯାଏ । ସଭ୍ୟ ଜଗତ୍ ଏହି ହୋମ-ରୁଲ୍ ଆଡ଼କୁ ଅଗ୍ରସର ହେଉଅଛି । ସଭ୍ୟ ଦେଶରେ ଏହି ହୋମ-ରୁଲ୍ ପ୍ରଚଳିତ । ଆଜି ଏହି ସଭ୍ୟତାର ସ୍ରୋତରେ ରୁଷିଆର ଯୁଗଯୁଗାନ୍ତବ୍ୟାପୀ ଯଥେଚ୍ଛାଚାର-ଶାସନ ପ୍ରଣାଳୀ ସ୍ୱାୟତ୍ତ-ଶାସନ ପ୍ରଣାଳୀରେ ପରିଣତ ହୋଇଗଲା । ଏହା ଦେଖି ସଭ୍ୟଜଗତ୍ ଆନନ୍ଦିତ । ମୋ ଘର କଥା ମୁଁ ବୁଝିବି, ମୋ ଘରକରଣାରେ ମୋର ପାଟି ଫିଟାଇବାର ଅଧିକାର ରହିବ, ମୋ ଅଣ୍ଟାରୁ କଉଡ଼ି ବାହାରିବା ପାଇଁ ମୋର 'ଭୋଟ୍' ବା ମତ ନିଆଯିବ, ମୋ ଦେଶର ଆଇନ କରିବାକୁ ମୋର ମତ ନିଆଯିବ, ମୋ ଘର ଶାସନ କରିବା ପାଇଁ ମୋ ଘରର ଲୋକଙ୍କ ଅଭିମତ ନିଆଯିବ । କିନ୍ତୁ ସବୁ ଜାତି ତ ଏକରକମ ଉନ୍ନତି ଲାଭ କରି ନାହାନ୍ତି । ଦୁଇଟା ଘୋଡ଼ାଙ୍କୁ ହୋମ-ରୁଲ୍ ଦିଅ, ସେ ଏହି ସୁବିଧା ପାଇ ନାତ ମରାମରି ହେବେ । ତିହ କୁତିଙ୍କୁ ହୋମ-ରୁଲ୍ ଦିଅ, ସେମାନେ କାମୁଡ଼ା କାମୁଡ଼ି ହେବେ । ବିରାଡ଼ିଙ୍କୁ ହୋମ-ରୁଲ ଦିଅ, ସେମାନେ ଖୁଆଖୋଇ ହେବେ । ଦୁଇଟା ଭିକମଗା ବ୍ରାହ୍ମଣଙ୍କୁ ବା ଯୋଗୀଙ୍କୁ ହୋମ-ରୁଲ୍ ଦିଅ, ସେମାନେ ବାଡ଼ିଆ ବାଡ଼େଇ ବା ଗୋହି ଖୋଳାଖୋଳି ହେବେ । ଏଥିପାଇଁ ଆମ ଓଡ଼ିଶୀ ପ୍ରବଚନ ଅଛି - "ଯୋଗୀ କୁକୁର ବ୍ରାହ୍ମଣ ଘୋଡ଼ା, ହଜାରେ କହିଲେ ନ ହେବେ ଯୋଡ଼ା ।'' ଅତଏବ କହୁଥିଲି ଯେ, ସମସ୍ତେ ଯେ, ହୋମ-ରୁଲ୍ (ସ୍ୱାୟତ୍ତ-ଶାସନ) ପାଇଁ ଉପଯୁକ୍ତ ହେବେ, ତାହା ନୁହେଁ । ତୁମ ଆମର ନାବାଳକ ପିଲା ଓ ମାଇପେ ହୋମ-ରୁଲ୍ ପାଇଁ ଚିତ୍କାର କଲେ ସୁଦ୍ଧା ତାଙ୍କୁ ତ ହୋମ-ରୁଲ୍ ଦିଆଯାଇପାରିବ ନାହିଁ । ସେଥିପାଇଁ ଆମ ବାପାଙ୍କର ନଜିର ଅଛି - "ଯତ୍ର ସ୍ତ୍ରୀ କିତବୋ ବାପି ବାଲୋ ବା ସ୍ୟାତ୍ ପ୍ରଶଂସିତା, ତଦ୍‌ଗୃହଂ ବିଲୟଂ ଯାତି ଭାର୍ଗବୋ ହୀନମବ୍ରବୀତ୍ ।'' ଏପରି ସ୍ଥଳରେ ଆମେ ହୋମ-

ରୁଲ୍ ପାଇବାକୁ ରଡ଼ି ଛାଡୁଥାଇଁ ବୋଲି ଯେ ଆମ ଘରର ନାବାଳକ ପିଲାଏ ଓ ମାଇପେ ହୋମ-ରୁଲ୍ ପାଇବେ, ଏହା ଭାବିବା ବେଆଇନ । ଆମ ଶାସ୍ତ୍ର ଅନୁସାରେ ପିଲାର ବୟସ ୧୫ ବର୍ଷ ଟପିବା ପର୍ଯ୍ୟନ୍ତ ସେ ଅଭିଭାବକଙ୍କର 'ଯଥେଚ୍ଛାଚାର ଶାସନ ପ୍ରଣାଳୀ'ର ଅଧୀନ ହୋଇ ରହିବ । 'ପ୍ରାପ୍ତେ ତୁ ଷୋଡ଼ଶ ବର୍ଷେ' ଅର୍ଥାତ୍ ପନ୍ଦର ଟପି ଷୋଳରେ ପଶିଲେ 'ହୋମ-ରୁଲ୍' ପାଇବାର ହକ୍‌ଦାର ହେବ । ପାଠକମାନେ ଜାଣନ୍ତି ଯେ, ଆମ ବାପା ନିପଟ ମରହଟିଆ ଥିଲେ । ଘରର କୌଣସି କଥାରେ ସେ ପନ୍ଦର ବର୍ଷ ଟପିବା ପୂର୍ବରୁ ମୋର ମତ ଅପେକ୍ଷା କରୁ ନ ଥିଲେ । ଯେଉଁଦିନ ମୋ ଜାତକ ଡାକିଲା ଯେ, ମୁଁ 'ଷୋଡ଼ଶ ବର୍ଷ' ପ୍ରାପ୍ତ ହେଲି; ସେହିଦିନ ଓ ସେହି ଅମୃତ ବେଳାଠାରୁ ସେ ମତେ ହୋମ୍-ରୁଲ୍ ଦେଲେ । ବନମାଳୀ ଅବଧାନ ଜାତକ ଦେଖି ମୋର ଚାଣକ୍ୟଙ୍କ ନଜିର ଲିଖିତ ଉମର ଟପିଲା ବୋଲି ନ କହିବା ପର୍ଯ୍ୟନ୍ତ ବାପା ଆମ ଘର ପିଲାକୁ (Home-rule) ଦେବାକୁ ନିତାନ୍ତ ନାରାଜ ଥିଲେ । ଯେଉଁମାନେ 'ହୋମ-ରୁଲ୍' 'ହୋମ-ରୁଲ୍' ବୋଲି ହୁଲର ପକାଉଅଛନ୍ତି ଓ ଦେଶରେ ନାନା ପ୍ରକାର ଗଣ୍ଡଗୋଳ ଘଟାଉଅଛନ୍ତି, ସେମାନେ ଥରେ ବୁଝୁ ନାହାନ୍ତି ଯେ, ଆମର ରାଜନୀତିକ ବୟସ ପନ୍ଦର ବର୍ଷ ଟପିବା ନ ପର୍ଯ୍ୟନ୍ତ ଆମ ଜାତିଟାକୁ 'ରାଜନୀତିକ-ରୁଲ୍' ଦିଆଯାଇପାରିବ ନାହିଁ । ରାଜନୀତିକ ଆଇନ ସଙ୍ଗତ ନୁହେଁ, କି ରାଜନୀତିକ ସଭ୍ୟତାନୁମୋଦିତ ନୁହେଁ । ବନମାଳିଆଭାଇ Home-rule ପାଇଲା ବୋଲି ତୁମେ Home-rule ପାଇବାପାଇଁ ଦାବି କରୁଛ । ଆଚ୍ଛା, ବନମାଳିଆଭାଇର ଦି' ପଟା ନିଶ ଅଛି, ତୁମର ତ ଦି'ପଟା ନିଶ ନାହିଁ । ତୁମେ ଆଗେ ବନମାଳିଆଭାଇ ଭଳି ଦି'ପଟା କହରା ନିଶ କାଢ଼, ତେବେ ଯାଇଁ ତୁମଙ୍କୁ ବନମାଳିଆଭାଇର ସମତୁଲ ଅଧିକାର ଦିଆଯିବ । ଏ କଥା ନ ବୁଝି ଯେବେ ଅବୁଝା ହୋଇ ଏକଜିଦିଆ ଧରିବ, ତେବେ ବେଳେ ବେଳେ ତୁମେ ତୁମର ବଜରିଏ (ଅର୍ଥାତ୍ ବଜ୍ରତୁଲ୍ୟ) ମାହାଫିସ ଓ ଆସନ୍ନ ବନ୍ଧୁଙ୍କଠାରୁ କେତେବେଳେ କାନ ରଗଡ଼ା, ନାକ ମୋଡ଼ା, କହୁଣି ଲୋଡ଼ା, ଛାଟ କୋରଡ଼ା, ଅଟଙ୍କା ତଡ଼ା, ଜାଉଁଳିଧଡ଼ା, ରସ ନିଗିଡ଼ା, ଆଣ୍ଠୁ ନେହୁଡ଼ା, ଘଣ୍ଟିକା ମୋଡ଼ା, ଅଖା କପଡ଼ା, ଦାନ୍ତ କାମୁଡ଼ା, ଓଲଟ ଗଧ) ଚଢ଼ା ଆଦି ପୁରସ୍କାରମାନ ପାଇବ, ଏହା ସ୍ୱାଭାବିକ । ଯେ ଭଲରେ ନ ବୁଝିବ, ଏପରି ଅବୁଝା ନାବାଳକ ପିଲାକୁ ଜୋର୍ କରି ବୁଝାଇ ଦେବା ଦରକାର ।

ଏଥିପାଇଁ ''ପିଲାଦିନେ କୌଣସି କଥା ପାଇଁ ଅଳି କଲେ ଆମ ବାଞ୍ଛାନିଧି ମାଷ୍ଟରେ ଆମଙ୍କୁ କହୁଥିଲେ "Deserve and then desire" ଅର୍ଥାତ୍ ପହିଲେ ଯୋଗ୍ୟ ହୁଅ, ତେବେ ଯାଇଁ ଦାବି କର । ସେହିପରି ଆମେ ଯୋଗ୍ୟ ନ ହେବା ପୂର୍ବରୁ ଆମ ହାତରେ 'Home rule' ପଡ଼ିଲେ ଆମେ 'ମାଙ୍କଡ଼ ହାତରେ ଶାଳଗ୍ରାମ' ପଡ଼ିଲା ଭଳି କରିବା, ଏଥିରେ ଭୁଲ କଅଣ ? ଆଗ ଯୋଗ୍ୟ ହୁଅ ଓ ତା'ପରେ ସୀତାଦେବୀ ରାମଚନ୍ଦ୍ରଙ୍କୁ ନିଃସନ୍ଦେହ କରିବା ଲାଗି ଅଗ୍ନିପରୀକ୍ଷା ଦେଲା ଭଳି ଆମେ ସଭ୍ୟଜଗତ୍ ଓ ଆମର

ଶାସନକର୍ତ୍ତାଙ୍କ ଆଗରେ ପରୀକ୍ଷା ଦେଇ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସାର୍ଟିଫିକେଟ ହାସଲ କରିସାରିଲେ ଆମ ନିଶାପବାଜ ସରକାର ବାହାଦୁର 'ଶନୈଃ ପନ୍ଥା ଶନୈଃ କାନ୍ଥା ଶନୈଃ ସାଗର ଲଙ୍ଘନଂ' କରିବେ । ଆମେ ଯେ ବସିଥାଇଁ ପରାୟତ୍ତ ଶାସନରୁ ଏକଦମ ଷୋଳକଳା ସ୍ୱାୟତ୍ତ ଶାସନରେ କାଲି ଭୋରରୁ ପହଞ୍ଚିବା, ଏହା ଆମର ନିର୍ବୁଦ୍ଧିପଣିଆ ଛଡ଼ା ଆଉ କଣ ହୋଇପାରେ ? ଅତଏବ ମୋର ସମସ୍ତ ଦେଶବାସୀଙ୍କୁ ଅନ୍ତିମ (ଓଃ ରାମ ! ମୁଁ ତ ବର୍ତ୍ତମାନ କଳିଷଠାରୁ ତେରଅଣା ଖତମ କରି ନାହିଁ, ଏଡ଼େ ବଦ-ମଙ୍ଗଳିଆ ବିଶେଷଣଟାଏ ଲେଖି ହୋଇଗଲା କିପରି ?) ବା ଶେଷ ଅଥବା ବିଶେଷ ଅନୁରୋଧ ଯେ, ସେମାନେ ଯେବେ Home-rule ପାଇବାକୁ ଚାହାନ୍ତି, ତେବେ ପହିଲେ ତହିଁକି 'ତଦ୍ ଯୋଗ୍ୟ' ହୁଅନ୍ତୁ, ତା'ପରେ ପରୀକ୍ଷା ଦିଅନ୍ତୁ, ତା ବାଦ୍ ପରୀକ୍ଷାରେ ପାସ୍ କରନ୍ତୁ, ତାପରେ ସାର୍ଟିଫିକେଟ ହାସଲ କରନ୍ତୁ ଓ ସେହି ସାର୍ଟିଫିକେଟ ଖଣ୍ଡମାନ ଅତି ଯତ୍ନରେ ପାଟକନାରେ ଗୁଡ଼ାଇ ନିର୍ମାଲ୍ୟ କୋଥଳିରେ ରଖନ୍ତୁ । ଏତକ ହେଲା ପରେ ସେମାନେ ଧୈର୍ଯ୍ୟ ସହକାରେ, ଭକ୍ତି ସହକାରେ ତୁନି ହୋଇ ଅପେକ୍ଷା କରନ୍ତୁ - ଯେଉଁ ସଭ୍ୟତମ ଜାତି ଶତ ଶତ ଅସଭ୍ୟ ଜାତିଙ୍କର ମାହାଫିଜ ହୋଇ ଆମେରିକାର ଯୁକ୍ତରାଜ୍ୟ, କାନେଡ଼ା, ଅଷ୍ଟ୍ରେଲିଆ, ନିଉଜିଲାଣ୍ଡ ଆଦି ଆଦିମ ଜନ୍ତୁପୂର୍ଣ୍ଣ ଦେଶରେ ସ୍ୱାଧୀନତାର ଚାରା କଲମ ଲଗାଇ ଅଛନ୍ତି ଓ ବହୁ ଭାଗ୍ୟକୁ ଭାରତ ଯେଉଁ ଜାତିର ସଂସର୍ଗରେ ଆସି ଆଜି ଭାଗ୍ୟବାନ୍ ହୋଇଅଛି, ସେହି ସଭ୍ୟତମ ସ୍ୱାଧୀନତା ପ୍ରିୟ ଜାତି ଅବଶ୍ୟ ଆପଣା ରାଜି ଓ ଖୁସି ଓ ପଞ୍ଚଭୂତ ଆତ୍ମା ହୃଦକମଳ ଦୋରସ୍ତିରେ, ବିନା କାହାରି ଜୋର୍, ଜୁଲମ, ବଳାତ୍କାରରେ ଆମକୁ ସ୍ୱାୟତ୍ତ-ଶାସନ ରୂପ ଅମୃତ ପାନ କରିବାକୁ ଦେବେ । ଏତିକି ବିଚାର ନ କରି ଯେ ବର୍ତ୍ତମାନ 'ହୋମ୍-ରୁଲ୍' 'ହୋମ ରୁଲ୍' ବୋଲି ହୁରି ଛାଡୁଅଛନ୍ତି, ତାଙ୍କର ଏହି ରାଜନୀତିକ ସନ୍ନିପାତ ପାଇଁ ରାଜନୀତିକ 'ହୋମ-ଠେଙ୍ଗା' ଦରକାର ହେବ, ସନ୍ଦେହ ନାହିଁ । ଏହାକୁ ହିଁ କହନ୍ତି ଢିଙ୍କିଶାଳରେ ଢେଙ୍କାନାଳର ଚିନ୍ତା - ମୁଁ 'ଘର' କଥା କହିବାକୁ ଯାଇ 'ହୋମ-ଠେଙ୍ଗା' ରେ ଆସି ପହଞ୍ଚିଲିଣି । ଏହି ଦୁର୍ଲଭ ଗୁଣକୁ ଆମଘର ଭାଷାରେ ଚଗଲାପଣିଆ ବୋଲାଯାଏ । ଯାହା ହେଉ ମୋ ପ୍ରସଙ୍ଗ ସୂତ୍ରର ପୁନର୍ବାର ଖିଅ ଧରିବା ପାଇଁ ପାଠକମାନଙ୍କୁ କଷ୍ଟ ସ୍ୱୀକାର କରିବାକୁ ହେବ । ମୁଁ କହୁଥିଲି ଯେ, ଘରର ହାଲଚାଲ ଲେଖକର 'ଘର' ଅଛି ବା 'ଘର' ଥିବା ଦରକାର । ଘର ଶବ୍ଦର ମଧ୍ୟ ପୂର୍ବୋକ୍ତମତେ କେତେ ପ୍ରକାର ଅର୍ଥ । ଘରର ସାଧୁ ଶବ୍ଦ ଗୃହ ଏବଂ ଏ ଶବ୍ଦର ଗୌପାଳିକ ବ୍ୟୁତ୍ପତ୍ତ୍ୟର୍ଥ :

କେତେଗୁଡ଼ିଏ ବସ୍ତୁ (କୁଟା, କାଟି, ବିଲରୁ ନଡ଼ା, ବୁଦାରୁ ବାଉଁଶ, ବଣରୁ କାଠ)ର ଏପରି ଦଶଜାଗାରୁ ଦଶ ଚିଜ ସଂଗ୍ରହ କଲେ ଯାଇ ଖଣ୍ଡେ ଘର ଠିଆ ହୁଏ ।

ତା ପରେ ଘର ଜୀବବାଚକ ଅର୍ଥରେ ପ୍ରୟୋଗ ହୁଏ । ପାଠ ଡାକୁଛି - ଗୃହିଣୀ ଗୃହଂ ମୁଚ୍ୟତେ । ସାଧାରଣ ମଧ୍ୟ ସ୍ତ୍ରୀ ବିୟୋଗ ହେଲେ ଲୋକେ 'ଗୃହଭଗ୍ନ' ହେଲା

ବୋଲି କହନ୍ତି । ଓଡ଼ିଶୀ ମତରେ ମଧ୍ୟ କେହି କେହି ଅର୍ଦ୍ଧାଙ୍ଗୀକୁ ଲକ୍ଷ୍ୟ କରି ତୃତୀୟ ପୁରୁଷ ପ୍ରୟୋଗ ସମ୍ବଳିତ ବାକ୍ୟରେ 'ଆମ ଘର ଆଡ଼େ' ଅମୁକ କଥା କହିଲେ ଏବଂଭୂତ ପ୍ରୟୋଗ କରିଥାନ୍ତି । ଏହିପରି ସ୍ଥଳବିଶେଷରେ ସଂସାରଯାତ୍ରା ନିର୍ବାହ (ଯଥା - ଘରକରଣା), ବଂଶ (ବଡ଼ଘର ପୁଅ), ଅସଲ ଜାଗା (ଯଥା - ମନ ଘର ଧରିଲାଣି), ଗୋପନୀୟ ସ୍ୱକୀୟ (ଘରୋଇ ଚିଠି - ଘରୋଇ ପରାମର୍ଶ) ଇତ୍ୟାଦି ଅର୍ଥ ମଧ୍ୟ ହୋଇଥାଏ ।

ଅତଏବ ଆଗାମୀ ଦଶହରା ନିମନ୍ତେ 'ଆମ ଘର' ସମ୍ବନ୍ଧରେ ଆମର କି କଳ୍ପନା ଲାଗିଛି, ତାହାର ହାଲଚାଲ ଦୁଇପଦ ସମ୍ପାଦକଙ୍କୁ ଶୁଣାଇଦେବା ଦରକାର । ଯାହାର ବ୍ୟବସାୟ ଏକମାତ୍ର ଅବଲମ୍ବନ, ସେ ବ୍ୟବସାୟ ଛଡ଼ା ହୋଇ ମାସେ ଦେଢ଼ମାସ ନିକମା ହେଲେ ତାହାର ଘର ଚଳିବା ସୁକଠିନ । ଏଥିପାଇଁ ଏ ଅବକାଶଟାର କିପରି ସଦ୍‌ବ୍ୟବହାର ହେବ, ଅଥଚ ଲକ୍ଷ୍ମୀସାଆନ୍ତାଣୀ ନିତାନ୍ତ କରଛଡ଼ା ହେବେ ନାହିଁ । ଏଥିର ଉପାୟ ଉଦ୍ଭାବନ କରିବା ଲାଗି ନାନାଦି କଳ୍ପନା ମନେ ମନେ ଉଦିତ ହେଉଅଛି । ତେବେ ଏତିକି ଭୟ ଯେ, ସବୁ କଥାରେ ଗୁମର ଫିଟାଇ ଦେଲେ ଓ ବ୍ୟବସାୟଲିପ୍ସୁ ଅନ୍ୟାନ୍ୟ ବ୍ୟକ୍ତିମାନେ ସେ ଓର ଜାଣିଗଲେ ଆମର କଚେରି ବନ୍ଦ ମଧ୍ୟରେ ସୁରୁଖୁରୁରେ କୃତ୍ୟ ଚଳାଇବା ଉପାୟ ଭବିଷ୍ୟତ୍‌କୁ ବନ୍ଦ ହୋଇଯିବ । ଅତଏବ ଲେଖକ ପ୍ରସ୍ତାବ କରିଅଛି ଯେ, ଗତବର୍ଷ ମଧ୍ୟରେ ବ୍ୟବସାୟ କ୍ଷେତ୍ରରେ ଆମର ଯେଉଁ ଯେଉଁ ଜ୍ଞାନ ଲାଭ ହୋଇଅଛି, ତାହା ସବୁ ସ୍ୱଦେଶ, ବିଦେଶ, ସ୍ୱଗ୍ରାମ, ପରଗ୍ରାମ, ସ୍ୱଘର ପରଘରେ ବୁଣିବା ଲାଗି ଏ ମାସେ ଖଣ୍ଡେ ପରିଶ୍ରମ କରିଦେଲେ ଆଗାମୀ ଦଶହରା ପର୍ଯ୍ୟନ୍ତ ବ୍ୟାବସାୟିକ ମାଲମସଲାର ଆୟୋଜନ ହୋଇଯାନ୍ତା । ଏପରି ଘରୁ ଖାଇ ପରକାମ କଲେ ପରିବ୍ରାଜକଙ୍କର ପରିଦର୍ଶିତ ଅଞ୍ଚଳମାନଙ୍କରୁ ପୂଜୋପକରଣ, ଭେଟି, ସଲାମୀ ଦର୍ଶନୀ, ବିଦାକି, ସଞ୍ଜା, ସିଧା, ସୂତା ଓ ପାଟଜଥା ଓ ବାଟ ଖରଚ ଆଦି କିଛି ସଂଗୃହୀତ ହୋଇପାରେ । ଆଉ ମଧ୍ୟ ଏହି ଜ୍ଞାନ ପ୍ରଚାର ସଙ୍ଗେ ଯେବେ କୌଣସି ସାଧାରଣ କାର୍ଯ୍ୟ ଅବଲମ୍ବନର ବାନା ଓ ଭେକ ଘେନି ବୁଲିବାକୁ ହୁଏ, ତାହାହେଲେ ଗଜଦନ୍ତ ଉପରେ ସୁନା ଛାଆଣି ହେଲା । ଆମ ଦେଶରେ ଶତ ଶତ ସାଧାରଣ କାର୍ଯ୍ୟ ଆମରି ଆନୁକୂଲ୍ୟ ଲାଭ ପାଇଁ ମୁଖ ଓ ଗହ୍ୱର ବ୍ୟାଦାନ କରି ବସିଅଛନ୍ତି । ଉଦାହରଣସ୍ୱରୂପ ଆମ ଦେଶରେ ପୁରୁଷ ଓ ସ୍ତ୍ରୀ ଓ ନପୁଂସକ ଶିକ୍ଷା ବିସ୍ତାର, ଶିକ୍ଷାଦାନ ନିମନ୍ତେ ପୁଞ୍ଜି ସଂଗ୍ରହ, ଜାତୀୟ ସମ୍ମିଳନ ଓ ସଂଶ୍ଳେଷଣ, ସାମ୍ପ୍ରଦାୟିକ ସଭା, ଧର୍ମ ସଭା, ସମବାୟ ସମିତି, ଜ୍ଞାନ ବିତରଣ ସଭା, ସମାଜ ସଂସ୍କାରକ ସମିତି, ଅନ୍ତ୍ୟଜ ଜାତି ମଧ୍ୟରେ ଶିକ୍ଷା ବିସ୍ତାର, ସେବକ ଓ ସେବ୍ୟ ସଂପ୍ରଦାୟ, ଭିକ୍ଷୁକ ସମାଜ, କବିରାଜି ଓ ଡାକ୍ତରୀ ଓ ମଲ୍ଲ ଶିକ୍ଷା ସମିତି, ସ୍ୱାସ୍ଥ୍ୟରକ୍ଷା ସମିତି, ପ୍ରତ୍ନତତ୍ତ୍ୱ ସମିତି, ଜୀର୍ଣ୍ଣ ସଂସ୍କାର ସମିତି, ମନ୍ଦ-ର ପରିଚାଳକ ସମିତି, ଏହିପରି ସବୁ ଅନେକ ପ୍ରକାର ହିତାହିତକର ଅନୁଷ୍ଠାନମାନ ଅଛି । ଏହାଛଡ଼ା ସରକାରଙ୍କର ଜଣାଶୁଣା ଡିଷ୍ଟ୍ରିକ୍ଟ ବୋର୍ଡ଼, ଲୋକାଲ

ବୋର୍ଡ଼, ଗ୍ରାମ ଇଉନିଅନ, କୃଷି ବିଭାଗ, ଶିକ୍ଷା ବିଭାଗ ଆଦି ଅନେକ ଇଲାକା ଅଛି - ଏଇଥିରୁ ଗୋଟିକ ସଙ୍ଗେ ମହାପ୍ରସାଦ ସମ୍ପର୍କ ବସାଇବାର ଯୋଗାଡ଼ କରିପାରିଥିଲେ ସେହି 'ଛାଡ଼ ଚିଠି' ଘେନି ଯେବେ ମଫସଲର କନ୍ଦି ବିକନ୍ଦି ଗସ୍ତ କରିପାରିବା ଓ ଆମର ବକ୍ତୃତା, ଆମ ଦ୍ୱାରା ଆହୂତ ସଭା, ଆମର ତତ୍ତ୍ୱ ବିଷୟକ ଜ୍ଞାନସମ୍ବଳିତ ପ୍ରବନ୍ଧମାନ କୌଣସି ପତ୍ରିକା ଆଦିରେ ଖଣ୍ଡଶଃ, ଅଂଶଶଃ, କ୍ରମଶଃ ଧାରାବାହିକ ରୂପେ ପ୍ରକାଶିତ ହେବାର ଗୋଟାଏ କିଛି ମନବୋଧିଆ ଘରୋଇ ବନ୍ଦୋବସ୍ତ କରାଯାଇପାରେ, ତେବେ ଏକା ଅନୁକୂଳରେ ଧର୍ମ, ଅର୍ଥ, କାମ, ମୋକ୍ଷ ଅର୍ଥାତ୍ ସଭ୍ୟ, ଅସଭ୍ୟ ଓ ପାଠକ ସମାଜରେ ଆମର ସୁନାମ ପ୍ରଚାର, ସରକାରରେ ଆମର ଉପାଧି ଇତ୍ୟାଦି ପାଇବା ଭଳି ସୁଖ୍ୟାତି, ଆମ ଘରକରଣାର ଆୟୋଜନ ଓ ହରେକ କିସମର ସୁବିଧା କରାଯାଇପାରିବ । ସଙ୍ଗେ ସଙ୍ଗେ ମଧ୍ୟ ବକ୍ତୃତା ଛଳରେ, ପ୍ରବନ୍ଧ ଛଳରେ, ଉପଦେଶ ଛଳରେ, ପ୍ରେରିତ ପତ୍ର ଛଳରେ, ସ୍ଥାନୀୟ ସଂବାଦ ଛଳରେ, ବେନାମି ଓ ସ୍ୱନାମି ନାନା ପ୍ରକାର ଛଳରେ ଆମର ଅଦଉତି ଓ ମନର ଓରମାନ ମଧ୍ୟ ମେଣ୍ଟାଯାଇପାରେ । ଏ ରକମର ନିଃସ୍ୱାର୍ଥ-କର୍ମ-ପରୀକ୍ଷା କେହି କେହି ମହାପୁରୁଷ କରି ଫଳ ପାଇଅଛନ୍ତି କି ନାହିଁ, ତାହା ମତେ ଜଣା ନାହିଁ; କିନ୍ତୁ ଏ ପୂଜାର ଦୀର୍ଘ ଅବକାଶଟାର ଏହି ସଦ୍‌ବ୍ୟବହାର କରିବାକୁ ମୋର ଭାରି ଇଚ୍ଛା ହୋଇଅଛି ଓ ବାଟରେ ଯେବେ ଏହିଭଳି ପଥିକ ଜଣେ ଖଣ୍ଡେ ହାବୁଡ଼ରେ ପଡ଼ିବେ, ତେବେ ତ ଆଉ କଥା ନାହିଁ । ଆଜି ରହିଲି ।

ଉ. ସା. - ୨୧ଶ ଭାଗ/୭ମ ସଂଖ୍ୟା/କାର୍ତ୍ତିକ/୧୩୨୫ ସାଲ ।

## ।। ଦଶ ।।

ସମଗ୍ର ପୃଥିବୀ ଯେପରି ବର୍ତ୍ତମାନ ଗୋଟିଏ ଅଭାବନୀୟ ବିପ୍ଲବ ମଧ୍ୟ ଦେଇ ଯାଉଅଛି ସେହିପରି ପ୍ରତ୍ୟେକ ଦେଶ, ପ୍ରତ୍ୟେକ ଜାତି, ପ୍ରତ୍ୟେକ ସମାଜର ଅନ୍ତଃସ୍ଥଳକୁ ନାନା ନୂତନ ଭାବ ଓ ଆକାଂକ୍ଷାମାନ ଆଲୋଡ଼ିତ କରୁଅଛି । ଦେଶ ବୋଲ, ଜାତି ବୋଲ, ସମାଜ ବୋଲ, ସମସ୍ତ ବ୍ୟକ୍ତିମାନଙ୍କର ସମଷ୍ଟି ମାତ୍ର । ଗୋଟିଏ ଦେଶରେ ଗୋଟିଏ ନୂଆ ଭାବର ଢେଉ ଖେଳୁଅଛି । ଏ କଥା କହିଲେ ବୁଝାଯାଏ ଯେ, ସେ ଦେଶ ଯେଉଁ ବ୍ୟକ୍ତିମାନଙ୍କ ଦ୍ୱାରା ଗଠିତ, ସେ ବ୍ୟକ୍ତିମାନଙ୍କ ମନରେ ନୂତନ ଭାବ ଓ ଆକାଂକ୍ଷା ଉଦିତ ହୋଇ ସେମାନଙ୍କ ମନକୁ ସରଗରମ୍ ଗୁଲଜାର କରି ଦେଉଅଛି । କିଏ ୫ ବର୍ଷ ତଳେ ଭାବିଥିଲା ଯେ, ଆଜି ସମଗ୍ର ଜଗତ୍‌ରେ ଗୋଟିଏ ବିଶ୍ୱବ୍ୟାପୀ ଆନ୍ଦୋଳନ ଉପସ୍ଥିତ ହେବ ? କୋଟି କୋଟି ପ୍ରାଣୀ କରାଳ କାଳର ମୁଖବ୍ୟାଦାନରେ ପଶିଯିବେ ? କୋଟି କୋଟି ନରନାରୀ ନିରାଶ୍ରୟ ହେବେ ? କୋଟି କୋଟି ମନୁଷ୍ୟ ମୃତ୍ୟୁମୁଖକୁ ଲମ୍ଫ ଦେବାକୁ କୁଣ୍ଠିତ ହେବେ ନାହିଁ ? ଏଥିପାଇଁ ମୁଁ ମନେ ମନେ ଭାବେଁ, ଏହି ଯୁଗରେ ଯେଉଁମାନେ ପୃଥିବୀରେ ଜନ୍ମ ଗ୍ରହଣ କରିଅଛନ୍ତି, ସେମାନେ ଧନ୍ୟ ! କାରଣ ଏକ ଦିଗରେ ବର୍ତ୍ତମାନ

ଆମ୍ଭେମାନେ ସଭ୍ୟତାର ଚରମ ସୀମା, କୋମଳତା, ପରୋପକାର, ସ୍ୱାର୍ଥତ୍ୟାଗର ପରାକାଷ୍ଠା ଦେଖିବାକୁ ପାଉଅଛୁଁ; ସେହିପରି ଅନ୍ୟ ଦିଗରେ ବର୍ବରତା, ନିଷ୍ଠୁରତା, ସ୍ୱାର୍ଥାନ୍ଧତା, ପର ଧନ, ପର ରାଜ୍ୟଲିପ୍‌ସାର ଶେଷ ଦୃଶ୍ୟର ଅଭିନୟ ମଧ୍ୟ ଦେଖିପାରୁଅଛୁଁ । ଏକ ଦିଗରେ ଗୋଟିଏ ପଶୁ ବଳରେ ବଳୀୟାନ୍ ଜାତି ଗୋଟିଏ କ୍ଷୁଦ୍ର ଜାତିକୁ ନିଷ୍ପେଷିତ କରି ତାହାର ସତ୍ତା ବୁଡ଼ାଇ ଦେବାକୁ ବସିଅଛି । ଲକ୍ଷ ଲକ୍ଷ ନିରୀହ ପ୍ରାଣୀଙ୍କୁ ସଂହାର କରୁଅଛି । ସହସ୍ର ସହସ୍ର ସ୍ତ୍ରୀ ବାଳକଙ୍କୁ ନିରାଶ୍ରୟ ଓ ବାସଶୂନ୍ୟ କରି ପକାଉଅଛି ଓ ପଶୁବଳର ପରାକାଷ୍ଠା ଦେଖାଉଅଛି । ଅପରଦିଗରେ ଦେଖୁଥାଇଁ ଯେ, ଅନ୍ୟ ଏକ ପରାକ୍ରମୀ ଜାତି ସେହି ନିଷ୍ପିଷ୍ଟ ଜାତିକୁ ରକ୍ଷା କରିବା ପାଇଁ ବଦ୍ଧପରିକର ହୋଇ ସର୍ବସ୍ୱ ତ୍ୟାଗ କରିବାକୁ ପ୍ରସ୍ତୁତ ହୋଇଅଛି । ଲକ୍ଷ ଲକ୍ଷ ନରନାରୀ ଧର୍ମର ଜୟ, ପାପର ପରାଜୟ ନିମନ୍ତେ ଦିବାନିଶି ଧନ, ମନ, ପ୍ରାଣ, ଶକ୍ତି ସବୁ ଅମ୍ଳାନ ବଦନରେ ଢାଳି ଦେଉଅଛନ୍ତି; ଲକ୍ଷ ଲକ୍ଷ ବ୍ୟକ୍ତି ସାର୍ବଜନୀନ ସେବାବ୍ରତ ଧାରଣ କରି ଆହତ ଓ ମୁମୂର୍ଷୁଙ୍କର ସେବାରେ ଜୀବନ ଉତ୍ସର୍ଗ କରୁଅଛନ୍ତି, ଏ ସଂସାରରେ ଧର୍ମର ଜୟ-ପତାକା ଉଡ଼ିବ ବୋଲି ଆପଣାର ସର୍ବସ୍ୱ ନିୟୋଜିତ କରିବାକୁ କୁଣ୍ଠିତ ହେଉ ନାହାନ୍ତି ।

ଅତଏବ ଏ ଯୁଗରେ ନାରକୀୟ ବର୍ବରତା ଓ ସ୍ୱର୍ଗୀୟ ଦେବସୁଲଭ ଉଦାରତାର ଉଦାହରଣ ଏକ ସ୍ଥାନରେ, ଏକ ଦେଶରେ, ଏକାଧାରରେ ଦେଖିବାକୁ ମିଳୁଅଛି । ଉପସ୍ଥିତ ବିଶ୍ୱବ୍ୟାପୀ କନ୍ଦଳରେ ମନୁଷ୍ୟର ଓ ଜାତିର ଉଦାରତା ଓ ବର୍ବରତା ଦେଖିବାକୁ ଆମ୍ଭମାନଙ୍କୁ ଯେଉଁ ସୁବିଧା ମିଳିଅଛି, ତାହା କେବେ ହୋଇ ନ ଥିଲା, ହୋଇ ନାହିଁ, କି ହେବ ନାହିଁ । ଏଥିପାଇଁ କହୁଥିଲି, ଏ ଯୁଗରେ ଯେଉଁମାନେ ଜନ୍ମ ହୋଇଅଛନ୍ତି, ସେମାନେ ଧନ୍ୟ । କାଲି ଜାର (Tzar) ରାଜେନ୍ଦ୍ରାସନ ଅଧିକାର କରି ଯଥେଚ୍ଛାଚାର ଶାସନ ପ୍ରଣାଳୀରେ ବିଶାଳ ରୁଷିଆ ସାମ୍ରାଜ୍ୟକୁ ନିଜର ତର୍ଜନୀର ଆୟତ୍ତରେ ରଖି କୋଟି କୋଟି ପ୍ରାଣୀଙ୍କର ଭାଗ୍ୟ ବିଧାତା ଥିବାର ମନରେ ରେଣ୍ଟ ବାନ୍ଧି ବସିଥିଲେ, ଆଜି ସେହି ପ୍ରବଳ ପ୍ରତାପ ସମ୍ରାଟ୍ ଫକୀର ଓ ବନ୍ଦୀ । କାଲି ଯେ ମହା ସମୃଦ୍ଧିଶାଳୀ ନଗର ଥିଲା, ଆଜି ତହିଁର ଭସ୍ମାବଶେଷ ମାତ୍ର ପଡ଼ିଅଛି । କାଲି ଯେଉଁ ପାଶ୍ଚାତ୍ୟ ସଭ୍ୟତା ମନେ ମନେ ଆସ୍ଫାଳନ କରୁଥିଲା ଯେ ତାହାର ମାଧୁରୀରେ ଜଗତ୍ ମୁଗ୍ଧ, ଆଜି ସେହି ସଭ୍ୟତା ବର୍ବରତାର ପୋଷାକ ପରିଧାନ କରି ନିଜର ଉଚ୍ଚ ଆସନ ହରାଇଅଛି ଓ ଆଜି ସେହି ସଭ୍ୟତାଭିମନ୍ତିତ ଜାତିମାନେ ନିଜର ହେୟତା ଓ ନିର୍ବଳତା ଉପଲବ୍ଧି କରୁଅଛନ୍ତି । କାଲି ମୁଁ ଯାହାକୁ 'ଇତର ଲୋକ' ବୋଲି ମନେକରି, 'ଅନ୍ତ୍ୟଜ ଜାତି' ବୋଲି ଜ୍ଞାନକରି ଯାହାର ଛାଇ ପଡ଼ିଲେ ଆପଣାକୁ ଅପବିତ୍ର ବୋଲି ମନେ କରୁଥିଲି, ଆଜି ସେହି ଅସ୍ପୃଶ୍ୟ ବ୍ୟକ୍ତିକୁ ମୁଁ ଭ୍ରାତୃଭାବରେ ଆଲିଙ୍ଗନ କରିବାକୁ ଦଉଡୁଅଛି । ଏହି ଜଗଦ୍‌ବ୍ୟାପୀ ଯୁଦ୍ଧ ଖର୍ବ ଖର୍ବ ପ୍ରାଣୀଙ୍କର ଗର୍ବ ଖର୍ବ କରିଅଛି, ମନର ଦିମାକକୁ ଚୂନା କରି ଦେଉଅଛି;

ଜାତ୍ୟଭିମାନର ସିଂହାସନକୁ ଧୂଳିରେ ଲୁଟାଇ ଦେଉଅଛି । ଏହି ଯୁଦ୍ଧରେ ଅନେକ ଲୋକ ଓ ଜାତିଙ୍କ ଆଖିରୁ ଅନ୍ଧପୋଟଳି ଫିଟି ଯାଇଅଛି ଓ ଅନେକ ଲୋକଙ୍କର ମୋହ ନିଦ୍ରା ଭାଙ୍ଗିଅଛି ଓ ଅନେକ କୁହୁକ ଭାଙ୍ଗି ଯାଇଅଛି ।

ଏ ମହାସଂଗ୍ରାମ ଦ୍ୱାରା ପୃଥିବୀର (ଧନ, ସମ୍ପଦ, ମନୁଷ୍ୟ ଆଦିରେ) ଯେଉଁ କ୍ଷତି ହେଲା, ସେ କ୍ଷତି ପୂରଣ ହେବାକୁ କେତେ ଯୁଗ ଲାଗିବ, ତାହାର ଇୟତ୍ତା କରାଯାଇ ପାରୁ ନାହିଁ । କିନ୍ତୁ ଅନ୍ୟ ଆଡୁ ଦେଖିବାକୁ ଗଲେ ଏହି ସର୍ବଗ୍ରାସୀ ସମର ସମଗ୍ର ଜଗତ୍‌ରେ ଭାବାନ୍ତର ଉପସ୍ଥିତ କରି ସମଗ୍ର ଜଗତ୍‌କୁ ବିଶ୍ୱନିୟନ୍ତାଙ୍କ କଳ୍ପିତ ଆଦର୍ଶ ଆଡ଼କୁ ଟାଣି ଉଠାଉଅଛି । ଏ ସର୍ବଗ୍ରାସୀ ମହାକନ୍ଦଳ ପାଶ୍ଚାତ୍ୟ ସଭ୍ୟତାରୁ ଉତ୍ପନ୍ନ ଭଲ ବସ୍ତୁଗୁଡ଼ିକୁ ଯେପରି ଗ୍ରାସ କରିଅଛି, ସେହିପରି ଅନେକ ମନ୍ଦ ବସ୍ତୁ, ମନ୍ଦ ଗୁଣକୁ ମଧ୍ୟ ଗ୍ରାସ କରି ପକାଇଅଛି । ସଭ୍ୟଜଗତ୍ ଏହି ପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇ ଯେତେବେଳେ ବାହାରିବ, ସେତେବେଳେ ଏହା ଅପେକ୍ଷାକୃତ ଶୁଦ୍ଧତର, ଉଚ୍ଚତର ଓ ଉଦାରତର ହେବ, ଏଥିରେ ସନ୍ଦେହ ନାହିଁ । ରଣଚଣ୍ଡୀଙ୍କ ସାମନାରେ କୋଟି କୋଟି ମହାଜୀବ ବଳି ପାଉଅଛନ୍ତି ସତ୍ୟ; କିନ୍ତୁ ଏହି ବଳି ପାଇ ଯେତେବେଳେ ରଣଚଣ୍ଡୀଙ୍କର ରକ୍ତପିପାସା ସୀମିତ ହେବ, ସେତେବେଳେ ସେହି ରଣଚଣ୍ଡୀ ଅନ୍ନପୂର୍ଣ୍ଣା ରୂପରେ ଏ ଜଗତ୍‌ରେ ଶାନ୍ତି ବାରି ଛିଞ୍ଚିଦେବେ । ଏ କୋଳାହଳ ପରେ ଯେଉଁ ଶାନ୍ତି ଆସିବ ଏ ବିପ୍ଳବ ପରେ ଯେଉଁ ସୁସ୍ଥତା ଆସିବ, ଏ ବିଭ୍ରାଟ ପରେ ଯେଉଁ ସଂସ୍କାର, ଏ ବର୍ବରତା ପରେ ଯେଉଁ ସଭ୍ୟତା ଆସିବ, ତାହାର ମାହାତ୍ମ୍ୟ ଉପଲବ୍ଧି କରିବାକୁ ଗଲେ ମୋ ଭଳି କ୍ଷୁଦ୍ରାଦପି କ୍ଷୁଦ୍ର ବ୍ୟକ୍ତିର ମନରେ ସୁଦ୍ଧା ଆଶା ଉଙ୍କି ଉଠୁଅଛି । ଏହି ହପ୍‌ପାରେ ସଂସାର୍‌ରୁ ଭେଦଜ୍ଞାନ, ଜାତ୍ୟଭିମାନ, ଅହଙ୍କାର ଆଦି ଅନେକ ପରିମାଣରେ ନିର୍ବାସିତ ହେବ, ଏଥିରେ ସନ୍ଦେହ ନାହିଁ । ବିଶ୍ୱବିଧାତାଙ୍କ ରାଜ୍ୟରେ କୌଣସି ଘଟନା ଉଦ୍ଦେଶ୍ୟବିହୀନ ନୁହେଁ, କୌଣସି ପରିଶ୍ରମ ନିଷ୍ଫଳ ନୁହେଁ, କୌଣସି ବୀଜ ନିରଙ୍କୁର ନୁହେଁ, କୌଣସି ପଦାର୍ଥ ନିର୍ମୂଲ୍ୟ ନୁହେଁ । ସମସ୍ତ ଘଟନାରେ ସେହି ମଙ୍ଗଳ ନିୟନ୍ତାଙ୍କ ମଙ୍ଗଳ ଉଦ୍ଦେଶ୍ୟ ନିହିତ ରହିଅଛି । ଛାର ମନୁଷ୍ୟ ତାହା ଅନେକ ସମୟରେ ବୁଝି ନ ପାରି ବିଧାତାଙ୍କୁ ଗାଳିଦିଏ ।

ଏ ଯୁଦ୍ଧ ଦ୍ୱାରା ସମଗ୍ର ସଭ୍ୟଜଗତ୍ ଯେଉଁ ମହାଶିକ୍ଷା ପାଉଅଛି, ତାହା ଶୀଘ୍ର ଭୁଲି ହେବ ନାହିଁ । ସଭ୍ୟତାଭିମାନୀ ପାଶ୍ଚାତ୍ୟ ଜାତିମାନେ ଏଥିରୁ ଶିକ୍ଷାଲାଭ କରୁଅଛନ୍ତି ଓ ଅସଭ୍ୟ ବର୍ବର ପ୍ରାଚ୍ୟ ଜାତିମାନେ ମଧ୍ୟ ଏଥିରୁ ଅନେକ ଶିକ୍ଷାଲାଭ କରୁଅଛନ୍ତି । ଗୋଟିଏ ସାମାନ୍ୟ ଉଦାହରଣରୁ ଦେଖିପାରିବା । ୧୯୧୧ ମସିହା ଡିସେମ୍ବର ୧୨ ତାରିଖ ଦିନ ପ୍ରବଳ ପ୍ରତାପ ସମ୍ରାଟ୍ ପଞ୍ଚମ ଜର୍ଜ ଏହି ଭାରତବର୍ଷର ପ୍ରାଚୀନ ନଗରୀରେ ରାଜ୍ୟାଭିଷେକ କ୍ରିୟା ସମ୍ପନ୍ନ କରିଥିଲେ ଓ ଏହି ଦିନଟି କେବଳ ଭାରତ ପକ୍ଷରେ ନୁହେଁ; କିନ୍ତୁ ସମଗ୍ର ବ୍ରିଟିଶ ସାମ୍ରାଜ୍ୟରେ ଗୋଟିଏ ଚିର ସ୍ମରଣୀୟ ଦିନ ବୋଲି ଗଣ୍ୟ ହୋଇଅଛି । ଏହି

ଦିନଟିକୁ ସାମ୍ରାଜ୍ୟବାସୀ ସମ୍ରାଟ୍ Our day ଅର୍ଥାତ୍ 'ଆମର ଦିନ' ବୋଲି କହୁଅଛନ୍ତି ଓ ସାମାନ୍ୟ ପଲ୍ଲୀବାସୀ କନ୍ଥାଧାରୀ ଭିକ୍ଷୁକ ମଧ 'ଆମର ଦିନ' ବୋଲି କହୁଅଛି - ଲାଟ କମିସନରମାନେ ଆପଣାର ଉଚ୍ଚାସନ ଭୁଲିଯାଇ ଏହି 'ଆଉଆର ଡେ' ମେଳାରେ ଯୋଗ ଦେଉଅଛନ୍ତି । ଏଣେ ଯାହାକୁ ପଇସା ଦୁଇଟା ମିଳେ, ସେ ମଧ ଖଣ୍ଡେ ଦୁଇପଇସିଆ ସାମ୍ରାଜ୍ୟ ପତାକା ଛାତିରେ ମାରି ଦେଇ ଏହି ମେଳା ମଉଛବରେ ଯୋଗ ଦେଉଅଛି । ଆଜି ଇଂରାଜ-ସାମ୍ରାଜ୍ୟବାସୀ ସମସ୍ତେ ସେହି ବିଶାଳ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ବୋଲି ଭାବି ଏକଭାବରେ ଦୀକ୍ଷିତ ହୋଇଅଛନ୍ତି । ଯୁଦ୍ଧ ପୂର୍ବରେ କେତେକଥର ଡିସେମ୍ବର ୧୨ ତାରିଖ ପଡ଼ିଥିଲା, କିନ୍ତୁ ଆଜି ସମସ୍ତଙ୍କ ମନରେ ଯେଉଁ ସାମ୍ରାଜ୍ୟଜନୀନ ପ୍ରେମ ଓ ଭ୍ରାତୃଭାବ ଖେଳା କରୁଅଛି, ତାହା ଯୁଦ୍ଧ ପୂର୍ବରେ ନ ଥିଲା । କାରଣ ଯେତେବେଳେ ଆମ ସାମ୍ରାଜ୍ୟ ଉପରେ ବିପଦ ପଡ଼ିଅଛି, ସେତେବେଳେ ଏ ବିପଦ ପ୍ରତ୍ୟେକଙ୍କର, ଏ କଥା ବର୍ତ୍ତମାନ ଆମେ ସମସ୍ତେ ନିଜ ନିଜ ହୃଦୟରେ ଉପଲବ୍ଧି କରିବାକୁ ସୁଯୋଗ ପାଇଅଛୁଁ । ଏ ଯୁଦ୍ଧ ଦ୍ୱାରା ଯେପରି ଅନେକ ପ୍ରାକୃତିକ ବନ୍ଧୁରତା ସମତଳରେ ପରିଣତ ହୋଇଅଛି, ସେହିପରି ମଧ ଅନେକ ଜାତୀୟ, ମାନସିକ ଓ ରାଜନୀତିକ ବନ୍ଧୁରତା ଏବଂ ଭେଦଜ୍ଞାନ ଦୂର ହୋଇ ସମଗ୍ର ସାମ୍ରାଜ୍ୟ ଗୋଟିଏ ସମତଳ କ୍ଷେତ୍ରରେ ପରିଣତ ହୋଇଅଛି ।

ମୁଁ ଅନୁମାନ କରୁଅଛି ଯେ, ଉପସ୍ଥିତ ମହା ବିପ୍ଳବର ଗୋଟିଏ ଶୁଭଫଳ ଏହି 'ସମୀକରଣ' । ପ୍ରାଚ୍ୟ ସଭ୍ୟତା ଯେଉଁପରି କେତେଗୁଡ଼ିଏ ସାମାଜିକ ଜାତି ସୃଷ୍ଟି କରି ଜଗତରେ ଭେଦଜ୍ଞାନର ବୀଜ ବୁଣି ଦେଇଥିଲା, ପାଶ୍ଚାତ୍ୟ ସଭ୍ୟତା ସେହିପରି କେତେଗୁଡ଼ିଏ ରାଜନୀତିକ ଜାତି ସୃଷ୍ଟି କରି ଆସୁଥିଲା । ଏକପ୍ରକାର ଜାତିଭେଦ ପରିବର୍ତ୍ତରେ ଅନ୍ୟ ପ୍ରକାର ଜାତିଭେଦର ସୂତ୍ରପାତ କରୁଥିଲା; କିନ୍ତୁ ବର୍ତ୍ତମାନ ସେହି ଜାତିଭେଦ ଲୋପ ହେବାକୁ ବସିଅଛି । ଅତଏବ କହୁଥିଲି ଯେ, ଜଗତ୍ ଯେତେବେଳେ ଏ 'ବିପଦ ଦୁର୍ଦ୍ଦିନତମ ଘୋର ଅନ୍ଧକାର' ପାର ହୋଇ ଆରପାରିରେ ପହଞ୍ଚିବ, ସେତେବେଳକୁ ଜଗତରୁ ଭେଦଜ୍ଞାନ, ଜାତ୍ୟଭିମାନ, ଦାମ୍ଭିକତା, ଅହଙ୍କାର ଆଦି ଲୁପ୍ତ ହୋଇ ଏ ଜଗତରେ ଚିର ଶାନ୍ତି, ଚିର ସୁଖ ଓ ଚିର ସ୍ୱାଧୀନତା ବିରାଜମାନ କରିବ, ଏଥିରେ ସନ୍ଦେହ ନାହିଁ । ଆମ ଜଗତର ଉନ୍ନତି ସଙ୍ଗେ ସଙ୍ଗେ ଆମ ସାମ୍ରାଜ୍ୟ, ଆମ ଦେଶ, ଆମ ଜାତି, ଆମ ପ୍ରଦେଶ, ଆମ ଜିଲ୍ଲା, ଆମ ପ୍ରଗନ୍ନା, ଆମ ମଉଜା ଓ ଅବଶେଷରେ ଆମର ଘର ଏହି ଫଳରେ ଭାଗୀ ହେବେ, ଏଥିରେ ସନ୍ଦେହ ନାହିଁ । ଏଥିଯୋଗୁଁ ଉପସ୍ଥିତ ବିପ୍ଳବ ସମୟରେ 'ଆମ ଦିନ' (Our day) ସଙ୍ଗେ 'ଆମ ଘର' ର କି ସମ୍ପର୍କ, ଏହାହିଁ ସୂଚନା କରିବା ନିମନ୍ତେ ଏତକ ଅବତାରଣା ।

ଉ. ସା. - ୨୧ଶ ଭାଗ/୯ମ ସଂଖ୍ୟା/ପୌଷ/୧୩୨୫ ସାଲ ।

## ।। ଏଗାର ।।

ଦେଶର କର୍ମବୀରମାନେ ଯେ ଯାହା ଘରେ ବଢ଼ି ମନୁଷ୍ୟ ହୋଇଥାନ୍ତି । ଘର (Home) ଥିଲା ମନୁଷ୍ୟ ଗଢ଼ିବାର କାରଖାନା (Factory) । ପ୍ରଥମେ ମା ପେଟରୁ ପଡ଼ିବା ବର୍ଷ କେତେ ଘଷା, ମଜା, ଆଉଁଶା, ବିଞ୍ଚା, ଲିପାପୋଛା, କାନ ନାକ ମୋଡ଼ା, ରଗଡ଼ା ଏହିପରି ଅନେକପ୍ରକାର ପ୍ରକ୍ରିୟା (operations) ହେବା ପରେ ଯାଇଁ ଦାଣ୍ଡକୁ ବାହାରି ଠିଆ ହେବାକୁ ସମର୍ଥ ହୁଏ । ଅତଏବ ଦେଶର କର୍ମବୀରଙ୍କ ସମ୍ବନ୍ଧରେ, ଦେଶର କର୍ମକ୍ଷେତ୍ର ପ୍ରସଙ୍ଗରେ କୌଣସି କଥା ଆଲୋଚନା ହେଲେ ଆମ ଘରର ହାଲଚାଲର କଥଞ୍ଚିତ୍ ଆଲୋଚନା ଅବଶ୍ୟମ୍ଭାବୀ ହୋଇଉଠେ । ବର୍ତ୍ତମାନ ସ୍ୱାୟତ୍ତ-ଶାସନ ନିମନ୍ତେ ସମଗ୍ର ଭାରତରେ ଯେଉଁ ଆକାଂକ୍ଷା ଜାଗରିତ ହୋଇଅଛି ଓ ଯେଉଁ କଥାପାଇଁ ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ ଆନ୍ଦୋଳନ ଲାଗିଅଛି, ସେଥିରୁ ଈଶ୍ୱରଙ୍କ ଦୟାରୁ ଓଡ଼ିଆ ରକ୍ଷା ପାଇଅଛି । ଆଜିକି ବତିଶ ବର୍ଷ ହେଲା ଯେଉଁ କଂଗ୍ରେସ ବା ଜାତୀୟ ମହାସଭା ଭାରତର ଭବିଷ୍ୟତ୍‌କୁ ଗଠନ କରିବାର ଚେଷ୍ଟା କରୁଅଛି, ଆମ ଓଡ଼ିଶା ସେଥିରୁ କଡ଼ାଏ ଧାର ଧାରି ନାହିଁ । ସେହି କଂଗ୍ରେସ ମଣ୍ଡପରେ ନାନା ପ୍ରସ୍ତାବ ପ୍ରସଙ୍ଗରେ ଆଜିଯାକେ ଯେତେ ଲୋକ ଠିଆ ହୋଇ ବକ୍ତୃତା କରିଅଛନ୍ତି, ତାଙ୍କ ମଧ୍ୟରେ ଆମ ଜାତିଭାଇଙ୍କ ନାମରେ ପ୍ରାୟ ଖଡ଼ି ପଡ଼ି ନାହିଁ କହିଲେ ଚଳେ । ବରଂଚ ଦେଖା ଯାଉଅଛି ଯେ, କଂଗ୍ରେସ ଯାହା କରୁଅଛି ବା କହୁଅଛି, ଅନେକ କଥାରେ ଓଡ଼ିଶା ତାହା ସଙ୍ଗେ ଏକମତ ନୁହେଁ । ଏହିସବୁ ଦେଖି ଅନେକ ସମୟରେ ମୋ ମନରେ ଗୋଟିଏ ନୈରାଶ୍ୟ ଆସି ପହଞ୍ଚେ । କିନ୍ତୁ ମନକୁ ଅନେକ ବୋଧଶୋଧ କରିବାକୁ ମନଟା ମୋର ଭାରି ଚଞ୍ଚଳ ବୁଝିଯାଏ ଓ ଆମ ଓଡ଼ିଶାର ଗୋଟାଏ ଖୁବ୍ ଝକମକିଆ ଚିତ୍ର ମୁଁ କଳ୍ପନାଚକ୍ଷୁରେ ଦେଖିପାରି ସମ୍ଭାଳି ହୋଇଯାଏ ।

ଆମ ଜାତିର ଇତିହାସରେ (ଓଃ ରାମ ! ମାଦଳା ପାଞ୍ଜିରେ) ଯେତେ ଯେତେ ବଢ଼ିଆ କଥା ଓ ବଢ଼ିଆ ମନୁଷ୍ୟଙ୍କ କଥାର ଉଲ୍ଲେଖ ଅଛି, ତାହା ସବୁ ଧୋଇଧାଇ ଚାଟିଚୁଟି ପିଇଲା ବେଳକୁ ତ ଆମକୁ ସମୟ ନାହିଁ, ଆମେ ଅନ୍ୟ ଜାତିର ଇତିହାସ ଖୋଜିବା କିଆଁ ? ଆପଣାର ସ୍ୱାତନ୍ତ୍ର୍ୟ ଛାଡ଼ିଦେଇ ଅନ୍ୟ ଜାତିଙ୍କ ପଛରେ ଗୋଡ଼ାଣିଆ ହୋଇ ଦଉଡ଼ିବା କିଆଁ ? କଥାରେ ଅଛି, ଆମ ବଡ଼ବଡୁଆଏ ଯେଉଁ ସମ୍ପତ୍ତି ରଖି ଯାଇଅଛନ୍ତି, ଆମେ ଯୋଗ୍ୟ ପୁଅ ହୋଇ ସେଇତା ରଖି ସାଇତି, ଧୋଇ ଶୁଖେଇ, କୁଟି ବାଟି, ରଗଡ଼ି ଫୁଙ୍କି ଖାଇବାକୁ ଆମର ଆୟୁଷ ନାହିଁ । ତାକୁ ଆଉ ବଢ଼େଇବା କଥା ପଚାରୁଛି କିଏ ? ଦେଖନ୍ତୁ ଯେ, ଆମ ପୂର୍ବପୁରୁଷେ ବଡ଼ ଦେଉଳକୁ ପଥର ବୋହି ବୋହି ତାଙ୍କ ପିଠିରେ କୁଜ ବାହାରିପଡ଼ି ତାଙ୍କ ପିଠି ଚମଡ଼ା ଏଡ଼େ ଟାଣ ହୋଇଗଲା ଯେ, ସେମାନେ କଇଁଛ (କୂର୍ମ) ହୋଇଗଲେ ଓ ସେହିମାନେ ବର୍ତ୍ତମାନ ପର୍ଯ୍ୟନ୍ତ ପୁରୀ ଇନ୍ଦ୍ରଦ୍ୟୁମ୍ନ ପୋଖରୀରେ ବାସ କରୁଅଛନ୍ତି, ଏମନ୍ତ କି, କଡ଼ାକର ମୁଆଁ କିଣି ଇନ୍ଦ୍ରଦ୍ୟୁମ୍ନ

ପୋଖରୀ ପାହାଚରେ ଠିଆ ହୋଇ 'ବଡ଼ବଡ଼ୁଆ ବୋଲି ଡାକିଲେ ସେ କୂରୁମଯାକ ଆମ ପାଖରୁ ସେ ମୁଆଁ ଖାଇବାକୁ ପାଣି ଭିତରୁ ଉଠି ଆସ୍ତେ ଆସ୍ତେ ଉଠି ଆସୁଛନ୍ତି । ଆମ ପୂର୍ବପୁରୁଷଙ୍କ ମଧ୍ୟରୁ ଯେଉଁମାନେ ବଡ଼ଦେଉଳକୁ ପଥର ବୋହୁଥିଲେ, ସେମାନଙ୍କ ମଧ୍ୟରେ ଅଣ୍ଡିରିପୁଅ ଓ ମାଇକିନିଆଝିଅ ମଧ୍ୟ ଥିଲେ, ଏଥିଯୋଗୁଁ ଇନ୍ଦ୍ରଦ୍ୟୁମ୍ନ କୂର୍ମ ବଂଶ ଆଉ ନିର୍ମୂଳ ହୋଇ ନାହାନ୍ତି । ଏ ଗୋଟାଏ ସୁନିର୍ଣ୍ଣିତ ଐତିହାସିକ ତଥ୍ୟ, ଏହାକୁ ବାଜେ କଥା ବୋଲି ଉଡ଼ାଇ ଦେବାର ଜୁ' ନାହିଁ । ଆମ ବାପାଙ୍କ ସଙ୍ଗେ ମୁଁ ପିଲାଦିନେ ଯେତେବେଳେ ଜଗନ୍ନାଥ ଦର୍ଶନକୁ ଯାଇ ଆମ ବୁଢ଼ୀମା ସଙ୍ଗେ 'ପଞ୍ଚୁତୀର୍ଥ' କରିଥିଲି, ସେତେବେଳେ ଇନ୍ଦ୍ରଦ୍ୟୁମ୍ନ ପୋଖରୀରେ ମୁଆଁ ନୈବେଦ୍ୟ ଦେଲା ବେଳେ ଆମ ବୁଢ଼ୀମା ମତେ ଏହି କୂର୍ମମାନଙ୍କୁ ଦେଖାଇ ଦେଇଥିଲେ ।

ମୁଁ ବୁଢ଼ୀମା'ଙ୍କୁ ପଚାରିଥିଲି ଯେ, ଏ ଜୀବ କଣ କେଉଁଠାରୁ ଆସିଲେ ? ବୁଢ଼ୀମା ମତେ ସେହି ସମୟରେ କହି ଦେଇଥିଲେ ଯେ, ଏମାନେ ଜଗନ୍ନାଥଙ୍କ 'ବଡ଼ ଦେଉଳ'କୁ ପିଠିରେ ପଥର ବୋହି ବୋହି ଏପରି କୁଜା ଓ ଛାଲ-ପିଠିଆ ହୋଇ ଯାଇଅଛନ୍ତି । ବୁଢ଼ୀମାଙ୍କଠାରୁ ଏ କଥା ଶୁଣିବାର ଆଜକୁ ପ୍ରାୟ ୪୦ ବର୍ଷ ହେଲା । ଏହି ଚାଳିଶ ବର୍ଷ ମଧ୍ୟରେ ମୋ ଉପର ଦେଇ, କଡ଼ ଦେଇ, ପିଠି ଦେଇ, ପେଟ ଦେଇ, କେତେ ଶିକ୍ଷାର ସ୍ରୋତ, କେତେ ସଭ୍ୟତାର ଢେଉ, କେତେ ବିଜ୍ଞାନର ଗୋଳ, କେତେ ଜ୍ଞାନର ଫୁଆରା ବୋହି ଯାଇଅଛି । କିଛି ଅବଧି ସେହି କଇଁଛମାନଙ୍କୁ ଦେଖିଲେ ସେମାନେ ଆମର ପୂର୍ବପୁରୁଷ ବୋଲି ମନରେ ବୁଢ଼ୀମାଙ୍କ ଅମଳରୁ ଯେଉଁ ଧାରଣା ଥିଲା, ତାହା ଦୂର ହୋଇ ନାହିଁ । ପାଶ୍ଚାତ୍ୟ ସଭ୍ୟଜଗତ୍‌ର ବିଜ୍ଞାନବେତ୍ତାମାନଙ୍କ ଯାହା କଥା କହିଅଛନ୍ତି, 'ଆମ୍ଭମାନଙ୍କ ବଡ଼ବଡ଼ିଆ ଖଟିବ ନାହିଁ - ଆମ ପୂର୍ବପୁରୁଷେ କୁରୁମ ଓ କଇଁଛ ଥିଲେ । ଏକଥା କହିବାର ଉଦ୍ଦେଶ୍ୟ ଏହି - କାଳୀ ଗାଈର ଭିନେ ଗୋଠ । ସଭ୍ୟଜଗତ୍‌ର ପାଠ ଏକ, ଆମ ପାଠ ଏକ । ସଭ୍ୟଜଗତ୍‌ର ବିଜ୍ଞାନ ସଙ୍ଗେ ଆମର ସହାନୁଭୂତି ନାହିଁ । ଆମ ପାଠ ଡାକୁଛି, ଆମ ପୂର୍ବପୁରୁଷ କଇଁଛ । ବଡ଼ଦେଉଳ ତିଆରି ହେବା ସମୟରୁ ଏପର୍ଯ୍ୟନ୍ତ କେତେ ଢେଉ ଆସି ଏ ସଂସାରରେ ବାଜିଲାଣି, କିନ୍ତୁ ଆମ ପୂର୍ବପୁରୁଷମାନଙ୍କ କୀର୍ତ୍ତିର ମୂକସାକ୍ଷୀରୂପେ ବିଦ୍ୟମାନ ଅଛନ୍ତି । ଏ ପ୍ରମାଣ ଥାଉଁ ଥାଉଁ କିଏ କହିବ ଯେ, 'ବଡ଼ଦେଉଳ' ଆମ ବଡ଼ବଡ଼ୁଆଙ୍କ କୀର୍ତ୍ତି ନୁହେଁ ! ଛାଡ଼ ସେ କଥା ।

ମୁଁ କହୁଥିଲି ଯେ, ଆମ ପୂର୍ବପୁରୁଷ ଆମ ପାଇଁ ଯାହା ସମ୍ପାଦି ରଖି ଯାଇଅଛନ୍ତି, ତାହା ଧୋଇ ଶୁଖେଇ ଖାଇଲେ ତ ଆମର ସରିବ ନାହିଁ, ଆମେ ବୃଥାରେ ଲଣ୍ଡଭଣ୍ଡ ହେବା କିଆଁ ? ଦେଖନ୍ତୁ ଯେ, ଆମ ପିତୃପିତାମହେ କେଉଁ ପୁରୀର 'ବଡ଼ଦେଉଳ', ଭୁବନେଶ୍ୱରରେ ମନ୍ଦିର, କୋଣାର୍କରେ ମନ୍ଦିର ଏସବୁ ଆମପାଇଁ ସାଇତି ଯାଇଅଛନ୍ତି । ସେସବୁ କେତେ ଜାଗାରେ ଭାଙ୍ଗି ତୁଟି ଗଲାଣି । ତହିଁର ଭଗ୍ନାବଶେଷରୁ ଆମ୍ଭେମାନେ କେତେ ଶହ ଯୋଡ଼ା ଚକି, କେତେ ହଜାର ଶିଳ ଶିଳପତା, କେତେ ଲକ୍ଷ କୋଠାଘର,

କେତେ କେତେ ଉଚ୍ଚ ପିଣ୍ଡା, କେତେ କେତେ ପଥର ପାହାଚ, ପଥର ଚାନ୍ଦିନୀ, ପଥର ଦୀପ, ପଥର ଚନ୍ଦନପେଡ଼ି, ପଥର କୁଣ୍ଡି କଲୁଣି, କେବେ କେବେ ତାହା କରିବାକୁ ନାହିଁ । ଏ ଭଣ୍ଡାର ଥାଉଁ ଥାଉଁ ଆମ୍ଭେମାନେ ଭାରତର ଭବିଷ୍ୟଦ୍ ଚିନ୍ତା ନେଇ ବିବ୍ରତ ହେବା ମୂର୍ଖତା ନୁହେଁ ତ ଆଉ କଣ ? ଦେଖନ୍ତୁ ଯେ, ଆମରି ଅଭିମନ୍ୟୁ, ଉପେନ୍ଦ୍ର ଭଞ୍ଜ, ବିଶି, ସାରଳା, ଦୀନକୃଷ୍ଣ, ବନମାଳୀ, କବିସୂର୍ଯ୍ୟ ସାହିତ୍ୟଭଣ୍ଡାରରେ ଆମ ଲାଗି ଯାହା ସଞ୍ଚି ଯାଇଅଛନ୍ତି, ସେହି ମାଲମସଲାରୁ ଆମେ କେତେ ଯୋଡ଼ା ଦାଇକା, କେତେ ଶହ ଚଉତିଶା, କେତେ ହଜାର ଛାନ୍ଦ, କେତେ ଲକ୍ଷ ଚଉପଦୀ, କେତେ ଚରିତ, କେତେ ହରଣ (ଯଥା - ସୁଭଦ୍ରା ହରଣ, ସୀତା ହରଣ, ଚନ୍ଦ୍ରାବତୀ ହରଣ, ବସ୍ତ୍ର ହରଣ), କେତେ ଶୋକ (ଯଥା - କୌଶଲ୍ୟା ଶୋକ, ଜାନକୀ ଶୋକ, ଆଳିରାଜା ଶୋକ), କେତେ ସୁଆଙ୍ଗ (ଯଥା - ବୋହୂ ସୁଆଙ୍ଗ), କେତେ ଚୋରି (ଯଥା - ନଟୁ ଚୋରି), କେତେ ରହସ୍ୟ (ଯଥା - ଦିଅର ଭାଉଜ ରହସ୍ୟ, ମାଇଁ ଭଣଜା ରହସ୍ୟ, ଆଈ ନାତୁଣୀ ରହସ୍ୟ), କେତେ କଳି (ଯଥା - ହନୁଅର୍ଜୁନ କଳି), କେତେ କୋଇଲି (ଯଥା - କେଶବ କୋଇଲି, କାନ୍ତ କୋଇଲି, ବାରମାସି କୋଇଲି, ଅକାଳ କୋଇଲି), କେତେ ବୋଲି (ଯଥା - ବଜାର ବୋଲି), କେତେ ଜଣାଣ (ଯଥା - ବାଲୁକେଶ୍ୱରଙ୍କ ଜଣାଣ, ଧବଳେଶ୍ୱରଙ୍କ ଜଣାଣ) କାଢ଼ି ସାରିଲୁଣି, ତେବେ ସୁଦ୍ଧା ଆମ ପୂର୍ବପୁରୁଷଙ୍କ ସଞ୍ଚିତ ପାଠ ସରୁ ନାହିଁ । ଆମେ ଅନ୍ୟ ଦେଶକୁ ଯାଇ ପରଲୁଗା ପିନ୍ଧି ଯାତକୁ ଯିବା କିଆଁ ? ଆମର ପୂର୍ବପୁରୁଷେ ଯେଉଁ ସାବକ ସବାରାଶି ଗରିବ ଭଉଁରିଆ ସାଇତି ଯାଇଅଛନ୍ତି, ସେହି ଭଉଁରିଆକୁ ଧରି ପଦିକା ମଡ଼ାଇ ମଡ଼ାଇ ନଳ ଭାଙ୍ଗି ଭାଙ୍ଗି ଆମରି ଜମିବାଡ଼ି ମାପିବାକୁ ତ ଆମକୁ ତର ନାହିଁ, ଆମକୁ ପର ଜମି ମାପିବାକୁ ବେଳ କାହିଁ ? ପଦିକା ମାପ ଛଡ଼ା ଅନ୍ୟ ମାପ ଶିଖିବାକୁ ଆମର ଫୁର୍‌ସଦ୍ କାହିଁ ? ଆମର ଓଡ଼ିଶାରେ କାହିଁ କ'ଣ ଯେ, ଆମେ ପରମୁଖାପେକ୍ଷୀ ହୋଇ ଆମର ସ୍ୱାତନ୍ତ୍ର୍ୟ ହରାଇବା ? ଆମରି ଘରେ ବଡ଼ଠାକୁର, ବଡ଼ଦେଉଳ, ମାଦଳାପାଞ୍ଜି, ମହାନଦୀ, ମହାବଳ ବାଘ, ଗଜପତି ମହାରାଜା (ଠାକୁରରାଜା) ସବୁ । ଆମେ ଦାଣ୍ଡକୁ ଯିବା କିଆଁ ?

ଏହିସବୁ କଥା ଦେଖୁ ଦେଖୁ, ଭାବୁ ଭାବୁ, ରାବୁ ରାବୁ, ସୁମରୁ ସୁମରୁ ଆମର ରାତି ଭୋର । ତା ପରେ ଦେଖନ୍ତୁ ଯେ, ଭାରତର ସବୁ ପୁରୁଣା ମରହଟ୍ଟିଆ ମହାପୁରୁଷମାନେ ଆମରି ପୂର୍ବପୁରୁଷ । କାଳିଦାସେ ଓଡ଼ିଆ, ଭବଭୂତି ଓଡ଼ିଆ, ଚୈତନ୍ୟ ଦେବ ଓଡ଼ିଆ, ଜୟଦେବ ଓଡ଼ିଆ, ସ୍ମୃତିକାରମାନେ ଓଡ଼ିଆ, ଶଙ୍କରାଚାର୍ଯ୍ୟ ଓଡ଼ିଆ, କଳାପାହାଡ଼ ଓଡ଼ିଆ, ଟୋଡ଼ରମଲ୍ଲ ଓଡ଼ିଆ, ଭାସ୍କରାଚାର୍ଯ୍ୟ ଓଡ଼ିଆ, ଲୀଳାବତୀ ଓଡ଼ିଆ, ତାହା ଛଡ଼ା ଅନେକ ଆଧୁନିକ ବଡ଼ମୁଣ୍ଡିଆଯାକ ଓଡ଼ିଆ ବା ଓଡ଼ିଆ ସମ୍ପର୍କିତ । ଯଥା - ସାର୍ ଅମିର ଅଲି, ସାର୍ ଆଶୁତୋଷ ମୁଖୋପାଧ୍ୟାୟ, ଡାକ୍ତର ଦେବପ୍ରସାଦ ସର୍ବାଧିକାରୀ । ସେଦିନ ପରା ବାଲେଶ୍ୱର ଷ୍ଟେସନଠାରେ ଆନି ବେସାଣ୍ଟ ଓଡ଼ିଆ ଭାଷାରେ କଥାଭାଷା

କରି ଆପଣାର ଓଡ଼ିଆତ୍ୱର ପରିଚୟ ଦେଇଥିଲେ । ତା ପରେ ଗାନ୍ଧି, ତିଳକ, ଜଗଦୀଶ, ସୁରେନ୍ଦ୍ର, ଗୋଖଲେ, ଦାଦାଭାଇ ଏମାନଙ୍କ ମଧ୍ୟରୁ କାହା କାହା ସଙ୍ଗେ ଓଡ଼ିଶାର ସମ୍ପର୍କ ଅଛି, ତାହା ଖୋଜି ବସିଲେ ଅନେକ ଓଡ଼ିଶୀ ତଥ୍ୟ ଉଦ୍ଘାଟିତ ହେବ । ଇତିହାସ ଧୁଣ୍ଡି ଧୁଣ୍ଡି ଆମେ ଠିକ୍ କରି ସାରିଲୁଣି ଯେ, ଗଙ୍ଗାଠାରୁ ଗୋଦାବରୀ, ସମୁଦ୍ରଠାରୁ ବିନ୍ଧ୍ୟ ପର୍ଯ୍ୟନ୍ତ ଓଡ଼ିଶାର ସୀମା ଥିଲା । ଇତିହାସର ଇଲାକା ଛାଡ଼ି ଆହୁରି ଟିକିଏ ପଛକୁ ଘୁଞ୍ଚିଲେ ଆମେ ଦେଖିପାରନ୍ତେଇ ଯେ, ଓଡ଼ିଶାର ଆଦିମ ସୀମା ଉତ୍ତରରେ କଇଳାସ କନ୍ଦର ଓ ମାନସରୋବର, ଦକ୍ଷିଣରେ ସେତୁବନ୍ଧ ରାମେଶ୍ୱର ଓ ସ୍ୱର୍ଣ୍ଣପୁରୀ ଲଙ୍କା, ପଛରେ ମହୋଦଧିସ୍ଥ ଜାଭା, ବାଲି ଦ୍ୱୀପ ଓ କାଉଁରି କାମଚଣ୍ଡୀ, ପଶ୍ଚିମରେ ମକ୍କା ମଦିନା ଥିଲା । ଏହି ବିସ୍ତୃତ ଉତ୍କଳ ଖଣ୍ଡରେ ନ ଥିଲା କଣ ? ଏହିସବୁ କଥା ଭାବିଲେ ମନେହୁଏ, ଯେବେ ଆମେ ଆମର ସାବକ କର୍ପୂରବନ୍ଧା କନାଖଣ୍ଡକ ଘେନି ଦାଣ୍ଡରେ ନାଚିବା, ତାହାହେଲେ ସଭ୍ୟଜଗତ୍‌ର ଆମକୁ ସଭ୍ୟ ଜାତିଙ୍କ ମଧ୍ୟରେ ନିଶ୍ଚେ ଗୋଟିଏ ମାର୍କାମରା ଆସନ (Reserved seat) ଦେବ । ଆଉ ମଧ୍ୟ ପୁରୁଣା କଥାରେ ଆମ ଅସରନ୍ତି ଭଣ୍ଡାର ଏପରି ପୂର୍ଣ୍ଣ ଯେ, ନୂଆ କଥା ରଖିଲେ ଆମର ଜାଗାଭାବ (ସ୍ୱରସନ୍ଧି) । ଏହିସବୁକୁ ଗାଉ ଗାଉ ଆମର ଅନ୍ଧର ରାତି ପାହିଯିବ । ସଭ୍ୟଜଗତ୍‌ର ଡାକରା ହେଲାବେଳେ ଆମେ ଲୁଥୁ କିନି ଯାଇ ଆଗରୁ ମାର୍କାମରା ଗୋଟିଏ ପକା ମାଞ୍ଚିଆରେ ଆସନ ଜମାଇ ଦେବା । ଏଥିଯୋଗୁଁ ଆମର ବର୍ତ୍ତମାନ ଯୁଗର ନେତାମାନଙ୍କୁ ବାର ଦ୍ୱାର ଶୁଣି ପିଣ୍ଡା ନ ହୋଇ, ବାର ଲୋକଙ୍କ ସଙ୍ଗେ ନ ମିଶି, ଆମ ଦେଶର ବିଶେଷତ୍ୱ ରଖିବାର ଉଦ୍ୟମରେ ଅଛନ୍ତି ।

ସମଗ୍ର ଭାରତ ଯେଉଁ ସୁର ଧରିଛି ଓ ଯେଉଁ ବାଟରେ ଯାଉଛି, ଆମେ ଯେବେ ସେ ବାଟରେ ଯିବା, ତେବେ ଆମର ବିଶେଷତ୍ୱ ରହିଲା କାହିଁ ? ଆମକୁ ଓ ଆମ ପୂର୍ବ ପୁରୁଷଙ୍କୁ ଲୋକେ ଚିହ୍ନିବେ କିପରି ? ତା ପରେ ଆମ ଜାତିର ଆଉ ଗୋଟିଏ ବୈଚିତ୍ର୍ୟ ଏହି ଯେ, 'ବାର ଜାତି ତେର ଗୋଲା, ବଇଷବ ହେଲେ ସବୁ ଗଲା ।' ମୋର ପୂର୍ବପୁରୁଷମାନଙ୍କ କାନ୍ୟକୁବ୍‌ଜରୁ ଆସି ଏଠାରେ ପୁରୁଷାନୁକ୍ରମେ ବସତି କରି ଆଜି ମୁଁ ଓଡ଼ିଆ ବୋଲି ପରିଚୟ ଦେଉଅଛି; ଯେବେ ମତେ ଓଡ଼ିଆଙ୍କ ଭିତରେ ବାଦ ଦେବ, ତେବେ ବାକି ରହିବେ ନିଟ୍ ଓଡ଼ିଆ କେବଳ 'କଙ୍କଡ଼ାଖିଆ ଓଡ଼' । ଅତଏବ ଆମ ଜାତିର 'ସୌଗନ୍ଧଂ ପୁଷ୍ଟିବର୍ଦ୍ଧନଂ' କରିବା ସକାଶେ ବାର ଜାତି ତେର ଗୋଲା ଯାକ ଯଦି ଏକାଠେଇଁ ହୋଇ ଗୋଟିଏ ଅଭିନବ 'ଉତ୍କଳ ଜାତି' ସୃଷ୍ଟି କରିଅଛୁଁ - ଆମର ଏହି ଅଭିନବ ଜାତି ମଧ୍ୟରେ ପଶ୍ଚିମା, ଖୋର୍ଟା* କାଶ୍ମୀରୀ, ମରହଟ୍ଟୀ, ତେଲଙ୍ଗା, କାନ୍ୟକୁବ୍‌ଜ, ଗୌଡ଼, ଦ୍ରାବିଡ଼, ମାରବାଡ଼ି, ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ, ଜୈନ, ବ୍ରାହ୍ମ, କୁମ୍ଭୀପଟୁଆ, ଗଉଡ଼, ସବାଖିଆ, ଅଲେଖ ସ୍ୱାମୀ ଓଗେର ସମସ୍ତେ ଅଛନ୍ତି; କେବଳ ହାଲକୁ ନାହାନ୍ତି ବଙ୍ଗାଳୀଗୁଡ଼ାକ । ସେମାନଙ୍କର କେତେଗୁଡ଼ାଏ ଦୁର୍ଗୁଣ ଅଛି, ଦୁର୍ଗୁଣଗୁଡ଼ିକ ନ

* ନିମ୍ନଜାତିର ବିହାରୀ

ଛାଡ଼ିବାଯାକେ ତାଙ୍କୁ ଆମେ ଆମ ଜାତିରେ ପଠାଇବା ନାହିଁ । ବେଳେ ବେଳେ ସେମାନେ ଦୋନାବୁଡ଼ିଆ ଖୋଇ ଧରି ଓଲିଆ ଗାଈ ଭଳିଆ ସେ ବାଡ଼ିକୁ ମୁହଁ ବଢ଼ାଉଅଛନ୍ତି । ଆମର ମାତୃଭୂମିର ନାମ ଉତ୍କଳ ମାତା (ଯାହାଙ୍କର ଉପାଦାନ ରାଜନୀତିକ ଓଡ଼ଚଷା, ଐତିହାସିକ ଓଡ଼ିଶା, ଭୌଗୋଳିକ ଓରଶ୍ଶା, ପୌରାଣିକ ଉଡ୍ରଦେଶ, ବୈଦିକ ଉଦ୍‌କଳିଙ୍ଗ ଇତ୍ୟାଦି) । ଆମ ଜାତିର ନାମ ଉତ୍କଳୀୟ ଜାତି, ଆମର ସମବାୟ ଉତ୍କଳ ସମ୍ମିଳନୀ, ଆମର ପୁରୁଣା ଖବରକାଗଜ ଉତ୍କଳ ଦୀପିକା, ଆମର ଶାସ୍ତ୍ର ଉତ୍କଳ ଖଣ୍ଡ, ଆମର ଆଧୁନିକ ମୁଖପତ୍ର The Oriya 'ଓଡ଼ିଆ' । ଅର୍ଥାତ୍ ଆମେ ନିଜେ ଉତ୍କଳୀୟ, କିନ୍ତୁ ଆମର ଖବରକାଗଜ 'ଓଡ଼ିଆ' । 'ମୁରାରେଃ ତୃତୀୟଃ ପନ୍ଥା ।' ଆମ ପନ୍ଥାଟା ସଂସାରର ପନ୍ଥାରୁ ବାହାର ହେବା ଦରକାର । ଗୋଟିଏ କିଛି ବିଶେଷତ୍ୱ ନ ରହିଲେ ଆମର ନାମ ସଭ୍ୟଜଗତ୍‌ର ବିଶିଷ୍ଟ ପଙ୍ଗତରେ ରହିବ ନାହିଁ । ଅତଏବ ସର୍ବସାଧାରଣଙ୍କ ଗୋଚରାର୍ଥେ ନିମ୍ନରେ ଆମ୍ଭମାନଙ୍କର କେତେ କିଏ ଭୂତ, ବର୍ତ୍ତମାନ ଓ ଭବିଷ୍ୟତ୍ ବିଶେଷତ୍ୱ ଏହିଠାରେ ଲିପିବଦ୍ଧ କରାଗଲା । ଆମର ନେତୃସ୍ଥାନୀୟ ବ୍ୟକ୍ତିମାନେ ଆମର ମହୌଷଧି ଖାଇ ନାହାନ୍ତି, ଏପରି ସ୍ଥଳରେ ଆମର ଜାତୀୟ ମହାମନ୍ତ୍ରତକ ଲିପିବଦ୍ଧ ହୋଇ ନ ରହିଲେ ଭବିଷ୍ୟତ୍ ଭାଷାତତ୍ତ୍ୱବିତ୍‌ମାନେ ଲଣ୍ଡଭଣ୍ଡରେ ପଡ଼ିବେ ଓ ଭବିଷ୍ୟତ୍ ବଂଶଧରମାନେ ଗନ୍ତବ୍ୟ ବାଟ ଠଉରାଇପାରିବେ ନାହିଁ ବୋଲି ଏ ଗାରିଡ଼ି ବିଦ୍ୟାଯାକ ପୋଥିପାଠ ହୋଇ ରହିବା ଏକାନ୍ତ ଆବଶ୍ୟକ । ତେଣୁ ସ୍ଥୂଳତଃ ଏହି - 'ମୁରାରେସ୍ତୁତୀୟଃ'

୧. ସମଗ୍ର ଭାରତ ଯେଉଁ ବାଟେ ଯିବ, ଆମ ଜାତିର ସେ ବାଟ ପରିତ୍ୟାଜ୍ୟ ଓ ପରିବର୍ଜ୍ଜନୀୟ ।

୨. Let not your mouth say what your right hand doth and vice versa. ଦୁନିଆ ଯାକ ଯାହା କରୁଅଛନ୍ତି ତାହା କହୁଅଛନ୍ତି, ଆମେ ଯେବେ ସେହି କଥା କରିବା, ତେବେ ଆମର ବିଶେଷତ୍ୱ ରହିଲା କାହିଁ ? ମୁହଁରେ ଲମ୍ବା ଚଉଡ଼ା କଥା କହିବା କାର୍ଯ୍ୟ କ୍ଷେତ୍ରରେ ଆପଣାର ସୁବିଧା ଦେଖି ଯାହା ଦିଶିବ, ତାହା କରିବା ହିଁ ସାଂସାରିକ ବୁଦ୍ଧିମତ୍ତାର ପରିଚୟ ।

୩. ସବୁବେଳେ ବ୍ୟବହାର ନିମନ୍ତେ ଆପାତତଃ ଦୁଇ ସାଜପୋଷାକ ରହିବା ଦରକାର । ୧ - ଘରକୁ ପଖାଳକରା, ୨ - ଦାଣ୍ଡକୁ ସଦର ପିନ୍ଧା ଯୋଡ଼ । ଏହା ଛଡ଼ା ଆମ ପୂର୍ବପୁରୁଷ ସଞ୍ଚିତ ମଥାନରେ ଟଙ୍ଗା ହୋଇଥିବା ବେତପେଡ଼ି ଆଡ଼ଖୁର ମଧରେ ଥିବା 'ପେଡ଼ିଲୁଗା' ତ ଘରେ ଘରେ ସାଇତା ହୋଇ ଅଛି । ସେ ଲୁଗା ଆଠପହର ବ୍ୟବହାର ନିମନ୍ତେ ନୁହେଁ । ତାହା କେବଳ ଦାଣ୍ଡକୁ ଥାଟ ଦେଖାଇ ହେବାର ସମ୍ପତ୍ତି । ସେ ପେଡ଼ିଲୁଗା ଫିଟାଇବାର ଦରକାର ନାହିଁ । ସେ ପେଡ଼ିଟାକୁ ଦେଖାଇ ଦେଲେ ସଭ୍ୟଜଗତ୍ ସନ୍ତୁଷ୍ଟ ହୋଇଯିବ । ତାକୁ ଫିଟାଇ ଦେଲେ ଯେ ଆମର ସବୁ ଗୁମର

ଫିଟିଯିବ । ସେଥିରେ କନ୍ଥା, ଶ୍ରୀକାପଡ଼ା, ଶାଲ, ଶାଲୁ, ପାଟ, କସ୍ତା ଦରବା, ପାଗ, ପଟୁକା ସବୁ ଅଛି ।

୪. କୌଣସି ନିୟମର ଅଧୀନ ହୋଇ ଚଳିବା କାପୁରୁଷତା ଓ ପରାଧୀନତା । ନିୟମର ଅଧୀନ ହୋଇ ଚଳିଲେ ମନୁଷ୍ୟର, ଜାତିର ଓ ଜାତୀୟ ଅନୁଷ୍ଠାନର ସ୍ୱାଧୀନତା ଆଉ କେଉଁଠାରେ ରହିଲା ? ଯେ ଓଲୁ ଓ ଅଣବାଟୁଆ ତାଙ୍କ ପାଇଁ ନିୟମ ଦରକାର । ଆମର 'ବ୍ରହ୍ମା ବିଳିବିଳେଇଲେ ବେଦ ।' ଆମେ ଯାହା କରିଯିବା, ସେହି ହେଲା ନିୟମ ।

୫. 'ବାଟ ଚାଲିବା ବେଳେ ପଛଆଡ଼କୁ ଚାହିଁନେଇଁ ।' ମୁଁ ତାଙ୍କୁ ପ୍ରଶ୍ନ କଲି, 'ଆପନି ସଂସ୍କୃତ ଜାନେନ୍ ?' ସେ ମୁଣ୍ଡ ଟୁଙ୍ଗାରି ଦେବାରୁ ମୁଁ ଏହି ଶ୍ଳୋକଟି ବୋଲି ଦେଲି ଓ କହିଲି, 'ଶେଷେ ଦେଖିବ ଆପନାରା ଆହମ୍ମକ୍ କି ଆମରା ? ଲାଠାଲାଠି କରେ ରକ୍ତାକ୍ତ ହବ, ଏ ଆହମ୍ମକୀ ଆମାଦେର ନାଇଁ । ଶେଷେ କାଯ୍ ହାସଲ ହବାର ସମୟ ଆମାଦେର ଭାଗ୍ ବସ୍‌ବେଇ ବସ୍‌ବେ । ହୋମ୍- ରୁଲେର ଜନ୍ୟେ ଆପନାରା ଲଡ଼ାଇ କରଛେନ୍ କରୁନ୍, ପାବାର ହେଲେ ଆପନାର ପାବେନ୍, ସଙ୍ଗେ ସଙ୍ଗେ ଆମରାଓ ପାବ । ନା ପେଲେ ଆପନାରାଇ ମର୍‌ବେନ୍ । ଆମରା ଏଖନ ଯେମନ୍ ଘୁମୁଛି, ତେମ୍‌ନି ଅନ୍ଦର ମହଲେ ବେଶ୍ ଶାନ୍ତିତେ ନିରାପଦେ ଘୁମିୟେ ଥାକ୍‌ବ ।' ଏହା ଶୁଣି ବଙ୍ଗୀୟ ଭ୍ରାତା ଉତ୍ତର କରେ 'ତା ବେଶ୍ କରଛେନ୍, କିନ୍ତୁ ଯଖନ ଆମାର ଦେଶେର ଚେଚାନିର କିଛୁ ଫଲ୍ ମିଲ୍‌ବେ, ତଖନ ଆପନାରା ଘୁମିୟେ ଥାକେନ୍ ନା ଯେନ । ତଖନ୍ କିନ୍ତୁ କେଉଁ ଆପନାଦେର ଘୋର ନିଦ୍ରାର ଜନ୍ୟେ ଅପେକ୍ଷା କରବେ ନା ।' ମୁଁ ବିଚାରିଲି, 'ଆଗକରି ସେପର୍ଯ୍ୟନ୍ତ ମାମଲତ ଯାଉ, ତେଣିକି ଆମେ ଉଠିବା ଯେ ।'

ଏହି ସୁଖସ୍ୱପ୍ନରେ ଗୋଦଡ଼ି ଘୋଡ଼ି ହୋଇ ତାଟି କବାଟ କିଳି ମୁଁ ଘୁଙ୍ଗୁଡ଼ି ମାରୁଛି ଓ ମୋ ଜାତି ଉନ୍ନତିର ହାଉଆ ଗାଡ଼ିରେ ଉଡୁଛି । ଇତି ।

ଉ.ସା. - ୨୧ଶ ଭାଗ/୧୦ମ ସଂଖ୍ୟା/ମାଘ/୧୩୨୫ ସାଲ ।

## ।। ବାର ।।

ଗଲା ଥରକ ଆମ ଘରର ହାଲଚାଲ ଲେଖୁ ଲେଖୁ ମୁଁ କହିଥିଲି ଯେ, ବର୍ତ୍ତମାନ ଭାରତରେ ଯେଉଁ ଆକାଂକ୍ଷା ଜାଗ୍ରତ ହୋଇଅଛି, ଯେଉଁ ଆନ୍ଦୋଳନମାନ ଲାଗିଅଛି ସେଥିରୁ ଆମେ ଉତ୍କଳୀୟମାନେ ସ୍ୱତନ୍ତ୍ର ରହି ଓଡ଼ିଆ ଜାତିର ସ୍ୱାତନ୍ତ୍ର୍ୟ ଦେଖାଉଅଛୁଁ । ସେହି ପ୍ରସଙ୍ଗରେ କହିଥିଲି ଯେ, ଆମର 'ନିଶାପ' ମଧ୍ୟ ସ୍ୱତନ୍ତ୍ର । ଏହି ଓଡ଼ିଶୀ ମତ ବା ନିଶାପକୁ ଆମ ଗ୍ରାମରେ 'କୋଦିଣ୍ଡା ନିଶାପ' ବୋଲାଯାଏ । କୌଣସି ଗୋଟିଏ ନିଶାପ ସାଧାରଣ ଦାଣ୍ଡ ନିଶାପରୁ ସ୍ୱତନ୍ତ୍ର ଥିବାର ଦେଖାଗଲେ ତାହାକୁ ଆମ ଗାଁ ଲୋକେ 'କୋଦିଣ୍ଡା-ନିଶାପ' ବୋଲିଥାନ୍ତି । ଏପରି ନାମକରଣରୁ ମୋର ଓ ମୋ ଗ୍ରାମବାସୀଙ୍କର

ସ୍ୱଦେଶ-ପ୍ରେମ ପ୍ରମାଣିତ ହେଉଅଛି । ମୋ ଘର ଗେରଦ ଓଡ଼ିଶା, ଜିଲ୍ଲେ କଟକ, ପ୍ରଗନ୍ନେ କୋଦିଣ୍ଡା ଦଣ୍ଡପାଟରେ; ସେଥିପାଇଁ କୌଣସି ବିଶେଷ ଉଲ୍ଲେଖଯୋଗ୍ୟ 'ନ୍ୟାୟ' ମୋ ହାବୁଡ଼ରେ ପଡ଼ିଲେ ମୁଁ ସ୍ୱ-ପ୍ରଗନ୍ନା-ପ୍ରେମରେ ପ୍ରେମୀ ହୋଇ ସେହି 'ନ୍ୟାୟ'କୁ ମୋ ପ୍ରଗନ୍ନାର ନିଜସ୍ୱ କରିବାକୁ ପ୍ରୟାସୀ ହୋଇ ମୋ ପ୍ରଗନ୍ନା ସଙ୍ଗେ ସେହି ନିଶାପର ମହାପ୍ରସାଦ ସମ୍ପର୍କ ବସାଇଦିଏଁ ।

ମୁଁ ମଧ୍ୟ କହିଅଛି ଯେ, ମୋହରି ଭଳି କର୍ମବୀର ଆମ ଜନ୍ମଭୂମିରେ 'ସାଲୁବାଲୁ' ହେଉଅଛନ୍ତି । ସ୍ୱ-ପ୍ରଗନ୍ନା-ପ୍ରେମ ମୋର ଏକଚେଟିଆ ନୁହେଁ । ଅତଏବ ଅନ୍ୟ ପ୍ରଗନ୍ନା-ବାସୀ ଓଡ଼ିଶୀ କର୍ମବୀରମାନେ ଓଡ଼ିଶାର ବିଶେଷ ବିଶେଷ ନାମରେ ବିଶିଷ୍ଟ ବିଶିଷ୍ଟ ବସ୍ତୁ, ଘଟଣା, ନିଶାପ, ଅନୁଷ୍ଠାନ ଓ ସମ୍ବାଦପତ୍ରମାନଙ୍କର ନାମକରଣ କରିବା ସ୍ୱାଭାବିକ । ଓଡ଼ିଶାର ଉନ୍ନତିର ଏହା ଗୋଟିଏ ପ୍ରଧାନ ନିଦର୍ଶନ ବା ମାର୍କା ହେବା ଦରକାର । ଏ କିଛି ନୂଆ କଥା ନୁହେଁ । ଏ କଥା ସବୁ ଦେଶରେ ଅଛି, ମୋ ଦେଶରେ ନ ହେବ କିଆଁ ? କୁମ୍ଭକର୍ଣ୍ଣୀ ଶାଢ଼ି, ମାଣିଆବନ୍ଧି ଜଥା, ରଣପୁରୀ ଦୋପଟା, ଚନ୍ଦ୍ରକଣା ଲୁଗା, ଫରାସିଡ଼ାଙ୍ଗା ଧୋବଲା ମାର୍କିନ୍ କପଡ଼ା, କାଶ୍ମୀରୀ ଶାଲ, ବ୍ରହ୍ମପୁର ପାଟ, କୁଆଁରପୁରିଆ ହଳଦୀ, ଗୁଣ୍ଟୁର ଘିଅ, କଣ୍ଡପୁର ଜଡ଼ା, ଶାନ୍ତିପୁରୀ ଚାଦର, ଏହିପରି ଖୋଜିନେଲେ ହଜାର ହଜାର ଅଞ୍ଚଳ-ବାଚକ ଶବ୍ଦ ହାବୁଡ଼ରେ ପଡ଼ିବ । ତେବେ ମୋର ବା ମୋ ଜାତୀୟ ବୀରଙ୍କର ଦୋଷ କଣ ହେଲା ଯେ ମୋ ଗ୍ରାମରେ ମୋ ଦେଶ ବା ମୋ ପ୍ରଗନ୍ନାର ନାମରେ କୌଣସି ଘଟଣା ବା ନିଶାପର ନାମକରଣ କଲି ବୋଲି ମୋ ଅପରାଧ ଅପରିମାର୍ଜନୀୟ ? ଅତଏବ ମୋର ପ୍ରସ୍ତାବ ଏହି କି, ଆମ ଦେଶର ଯେତେଗୁଡ଼ିଏ ବିଶେଷତ୍ୱ ଅଛି, ସେଗୁଡ଼ିକର ଗୋଟିଏ ସ୍ଥାନ ବା ଅଞ୍ଚଳ ଅନୁସାରେ ନାମକରଣ କଲେ ଭବିଷ୍ୟତ୍‌ରେ ଇତିହାସ ସଂଗ୍ରାହକମାନଙ୍କ ପକ୍ଷରେ ଉତ୍କଳର ନବ-ଇତିହାସ ସଂକଳନର ମାର୍ଗ ସୁକର ହେବ । ଏ ଗୋଟାଏ ବାଜେ ପ୍ରସ୍ତାବ ମନେ ପଡ଼ିଗଲା ବୋଲି ଏଠାରେ ଲେଖିଦେଲି । ଆପଣମାନେ ମନେ କରିବେ ନାହିଁ ଯେ, ମୁଁ ବର୍ତ୍ତମାନ ଆପଣମାନଙ୍କୁ ଯେଉଁ ହାଲଚାଲ କହିବି, ତାହା ସଙ୍ଗେ ଏ ପ୍ରସ୍ତାବର କିଛି ବିଶେଷ ସମ୍ପର୍କ ଅଛି ।

ଏ ପ୍ରବନ୍ଧର ଆରମ୍ଭରେ ମୁଁ ଭାରତରେ ବର୍ତ୍ତମାନ ଜାଗରିତ ହୋଇଥିବା ଉନ୍ନତି ଆକାଂକ୍ଷାର ପ୍ରସ୍ତାବନା କରୁଥିଲି । ସେହି ଆକାଂକ୍ଷାରେ ନିଦର୍ଶନସ୍ୱରୂପ ସମଗ୍ର ଉତ୍କଳଭାଷୀ ପ୍ରଦେଶ ଏକ ଶାସନାଧୀନ ରହିବାପାଇଁ ଆମ୍ଭେମାନେ ରାଜ୍ୟ ସରକାରଙ୍କଠାରେ ଆଜକୁ ୧୦।୧୫ ବର୍ଷ ହେବ ଅଳି କରୁଅଛୁଁ । ସମଗ୍ର ଉତ୍କଳବାସୀ ଓ ଉତ୍କଳଭାଷୀ ଏକଶାସନବର୍ତ୍ତୀ ନ ହେବା ପର୍ଯ୍ୟନ୍ତ ଆମ୍ଭମାନଙ୍କର ଜାତୀୟ ଉନ୍ନତି ଓ ରାଜନୀତିକ ଏକତା ସଂସାଧିତ ହୋଇପାରିବ ନାହିଁ; ଆମର ଜାତୀୟ ଜୀବନ (National life) ବହଳ (Solid) ହୋଇପାରିବ ନାହିଁ । ଏ ସମ୍ବନ୍ଧରେ କାହାରି ମତଦ୍ୱୈଧ ହୋଇ ନ ପାରେ । ଦେଖନ୍ତୁ ଯେ, ଆମେ ଓଡ଼ିଆପୁଏ 'ବାର ଜାତି ତେର ଗୋଳା' ହୋଇ ଆମର

ସ୍ୱାତନ୍ତ୍ର୍ୟ ହରାଇ ସାରିଥାଉଁ । ଥୋକେ ବଙ୍ଗାଳୀଙ୍କ ତଳେ, ଥୋକେ ତେଲଙ୍ଗାଙ୍କ ସଙ୍ଗେ, ଥୋକେ ମରହଟ୍ଟାଙ୍କ ସଙ୍ଗେ, ଥୋକେ ବିହାରୀଙ୍କ ସଙ୍ଗେ ମିଶିଯାଇ କ୍ରମଶଃ ଆମର ଜାତି ହୀନବଳ ହୋଇଅଛି । ସବୁଠାରେ ଆଜି ଦେଖାଯାଇଅଛି ଯେ, ଆମେ ଯେଉଁମାନଙ୍କ ସଙ୍ଗେ 'ଘର ଦୁଆର' କରୁଅଛୁଁ, ସେମାନେ ଆମ ଜାତିକୁ ସମ୍ମାନ ଚକ୍ଷୁରେ ଦେଖି ନାହାନ୍ତି । ସେହି ସେହି ଜାତିମାନେ ଆମ ଜାତିକୁ ଯେଉଁ ନାମରେ ସମ୍ବୋଧନ କରିଥାନ୍ତି, ଯଥା - ବଙ୍ଗଦେଶରେ 'ଉଡ଼େ', ଦକ୍ଷିଣରେ, ପଶ୍ଚିମରେ 'ଓଡ୍ରିଆ' ସେ ନାମରେ ସେ ଆଦର, ଭକ୍ତି, ସମ୍ମାନ ବା ସ୍ନେହର ଗନ୍ଧ କିଛି ନ ଥାଏ । ମୁଁ ବେଳେବେଳେ ବିଚାରେଁ, ସବୁ ଓଡ଼ିଆ ଏକାଠେଇଁ ହୋଇଗଲେ କଣ ଏ ଗନ୍ଧଟା ଆମ ଦିହରୁ ଛାଡ଼ିଯିବ ? ମୁଁ ବେଳେ ବେଳେ ଭାବେଁ, ଗୁଡ଼ାଏ ମଣିଷ ଏକାଠେଇଁ ହେଲେ ଏ ଗନ୍ଧଟା ବେଶି ହେବ ପରା ?

ଭାରତରେ ଆମରି ଭଳି ଆଉ ଅନେକ ଜାତି ଅଛନ୍ତି । ବଂଗାଳୀ, ତେଲଙ୍ଗା, ମରହଟ୍ଟୀ, ପାର୍ସୀ, ମାରବାଡୀ, ବିହାରୀ, ଶିଖ, ପଶ୍ଚିମା । ଆଚ୍ଛା ଯେବେ ଆମକୁ ଗୋଟିଏ ସ୍ୱତନ୍ତ୍ର ଶାସନ ଦିଆଯିବ, ତେବେ ଆମକୁ ତ ଏହିପରି ଗୋଟିଏ ଗୋଟିଏ ରାଜଗି ଦିଆଯିବା ଦରକାର । ଏଥିର ଉତ୍ତର ଏହି କି, ସମସ୍ତଙ୍କର ଯାହା ଇଚ୍ଛା ତାହା ହେଉ, ଆମର ଏକଲତ୍ରୁ' ଆମକୁ ମିଳିଲେ ହେଲା । ଆମେ ଯେପରି ଏକ ଶାସନାଧୀନ କରିବାକୁ ଅଳି କରୁଥାଇଁ, ତେଲଙ୍ଗାମାନେ ମଧ୍ୟ ଏକ ଶାସନାଧୀନ ରହିବାକୁ ଏହିପରି ଅଳି କଲେଣି । ଦକ୍ଷିଣାଞ୍ଚଳରେ ଯେପରି ତେଲଗୁମାନେ ଆମକୁ ତାଙ୍କ ଇଲାକାରୁ ଛାଡ଼ିଦେବାକୁ ନାରାଜ, ଉତ୍ତରପୂର୍ବରେ ବଙ୍ଗାଳୀମାନେ ଯେପରି ଆମକୁ ତାଙ୍କ 'ହସ୍ତମୁଠି'ରୁ ଛାଡ଼ିଦେବାକୁ ନାରାଜ, ଉତ୍ତରରେ ବିହାରୀମାନେ ଓ ପଶ୍ଚିମରେ 'ହିନ୍ଦୀ' ଓ ମରହଟ୍ଟୀମାନେ ମଧ୍ୟ ସେହିପରି ଆମକୁ ହାତଛଡ଼ା କରିବାକୁ ନାରାଜ । ଉପରୋକ୍ତ ଉନ୍ନତ ଜାତିମାନ ତତ୍ତଦ୍ ପ୍ରଦେଶାନ୍ତର୍ଗତ ଉତ୍କଳ-ଖଣ୍ଡକୁ ତାଙ୍କର 'ତେଲ ହଳଦୀ-ପାଟଣା', 'ପାନଖିଆ ଜାଗିରି' ସ୍ୱରୂପ ପୁରୁଷାନୁକ୍ରମେ ଭୋଗ ଦଖଲ କରି ଆସୁଅଛନ୍ତି । ଆମରି ସୁବିଧା ପାଇଁ ସେମାନେ ଆମଠାରୁ ଦସ୍ତବରଦାର ହେବେ କିଆଁ ? ଆମେ ମଧ୍ୟ ଦେଖିପାରିଥାଇଁ ଯେ, କେତେ ବର୍ଷ ପୂର୍ବେ India Government (ଭାରତ-ସରକାର) ସମସ୍ତ ଉତ୍କଳଭାଷୀ ପ୍ରଦେଶକୁ ସ୍ୱତନ୍ତ୍ର ଶାସନାଧୀନ ରଖିବାକୁ ସଂକଳ୍ପ କରିଥିଲେ ମଧ୍ୟ Madras Government (ମାନ୍ଦ୍ରାଜ-ସରକାର) ତାଙ୍କ ଅଧୀନସ୍ଥ ଉତ୍କଳ-ଖଣ୍ଡରୁ ଦସ୍ତବରଦାର ହେବାକୁ ଅନିଚ୍ଛା ପ୍ରକାଶ କରିବାରୁ ବିଧିବିଡ଼ମ୍ବନାରୁ ଆମ ଫଟା କପାଳ ପୂର୍ବ ପରି ଦଦରା ରହିଗଲା । ଆମେ ଓଡ଼ିଆଯାକ ଆମରି ଘରେ ମଧ୍ୟ ନିଜର ବିଶେଷତ୍ୱର ପ୍ରତିଷ୍ଠା କରିବାକୁ ସମର୍ଥ ହୋଇଥାଇଁ କି ? ଆଧୁନିକ ରାଜନୀତିକ ଓଡ଼ିଶାରେ ମଧ୍ୟ ଆମ୍ଭେମାନେ ନିଜର ସ୍ୱାତନ୍ତ୍ର୍ୟ ଓ ବିଶିଷ୍ଟତା ବଜାୟ ରଖିବାକୁ ସମର୍ଥ ହୋଇପାରିଥାଇଁ କି ?

ମୁଷ୍ଟିମେୟ ଇଂରାଜୀ ଜାତି ସାତସମୁଦ୍ର ତେର ନଦୀ ପାରି ହୋଇ ସମଗ୍ର ସଭ୍ୟ-ସାମ୍ରାଜ୍ୟରେ ଆପଣା ସ୍ୱାତନ୍ତ୍ର୍ୟ ବଜାୟ ରଖି ପାରିଅଛନ୍ତି । ମୁଷ୍ଟିମେୟ ପାରସୀ

(Parsees) ଜାତି ମଧ୍ୟ ତାଙ୍କର ଆଦିମ ନିବାସରୁ ପଳାଇ ଆସି ଭାରତରେ ଆପଣାର ବିଶେଷ ସ୍ଥାନ ଅଧିକାର କରି ପାରିଅଛନ୍ତି । ମୁଷ୍ଟିମେୟ ଭାରତୀୟମାନେ ପ୍ରଥମେ ଭୁଲ ରୂପେ ଆଫ୍ରିକାକୁ ଯାଇ ସେଠାରେ ବହୁ ଆନ୍ଦୋଳନ ପରେ ଆପଣାର ଦାବି ସୁପ୍ରତିଷ୍ଠିତ କରିବାକୁ ସମର୍ଥ ହୋଇଅଛନ୍ତି - ମୁଷ୍ଟିମେୟ ମାରବାଡ଼ୀ ଜାତି ବ୍ୟବସାୟ ଉପଲକ୍ଷରେ ଦେଶ ବିଦେଶକୁ ଯାଇ ସେଠାରେ ମଧ୍ୟ ଆପଣାର ସ୍ୱାତନ୍ତ୍ର୍ୟ ବଜାୟ ରଖି ପାରିଅଛନ୍ତି । ଏପରି ସ୍ଥଳରେ ଶହେ ମହଣ ଘିଅ ନ ହେବାରୁ ଆମର ରାଧା ନାଚୁ ନାହାନ୍ତି ବୋଲି ଆମେ ଯେଉଁ ଝୁରି ପକାଇଅଛୁଁ, ତାହା କେତେଦୂର ଅନୁଭବସୁସିଦ୍ଧ, ତାହା ମୁଁ ଠିକ୍ ରୂପେ ସମଝିପାରୁ ନାହିଁ । 'ଜାତି' 'ଜାତି' ବୋଲି ଆମେ ଦିନରାତି ରାବ କଲେ ସୁଦ୍ଧା ବ୍ୟକ୍ତିବିଶେଷର ସମଷ୍ଟିରେ ଜାତି ଗଠିତ । ବ୍ୟକ୍ତିବିଶେଷଙ୍କର କ୍ରିୟା ଓ ଉନ୍ନତି ଦ୍ୱାରା ତାହାର ଟେକ ବଜାୟ ରହିଥାଏ । ବ୍ୟକ୍ତିଗତ ଭାବରେ ଆମେ ଆମର ବିଶେଷତ୍ୱ ପ୍ରତିଷ୍ଠିତ କରିବାକୁ ଓ ବଜାୟ ରଖିବାକୁ ଅପାରଗ; ଏପରି ସ୍ଥଳରେ ହଜାରେ ବିରାଡ଼ିଙ୍କୁ ଗୋଟାଏ ଗୋଠରେ ପୂରାଇ ଦେଲେ ସେମାନେ ବାଘ ହୋଇଯିବେ କିମ୍ବା କୋଟିଏ ଓଡ଼ିଆଙ୍କୁ ଏକାଠେଇଁ କରିଦେଲେ ସେମାନେ ଗୋଟାଏ ଉନ୍ନତ ଜାତି ହୋଇଯିବେ, ଏ ଯୁକ୍ତିରେ ମୋ ମନ ମାନୁ ନାହିଁ । ବରଂଚ ମୁଁ ଅନୁଭବରେ ଦେଖିପାରିଅଛି ଯେ, ରାଜନୀତିକ ଓଡ଼ିଶାରୁ ବିଚ୍ଛିନ୍ନ ଓଡ଼ିଆମାନେ ଆପଣାର ଜାତୀୟ, ବ୍ୟାବହାରିକ, ବୈଷୟିକ, ଭାଷାଗତ. ସାମ୍ପ୍ରଦାୟିକ ବିଶେଷତ୍ୱ ଯେଉଁ ପରିମାଣରେ ବଜାୟ ରଖିବାକୁ ସମର୍ଥ ହୋଇଅଛନ୍ତି, ଆମେ ନିପଟ ଓଡ଼ିଶାରେ (Orissa Proper) ଥାଇ ସୁଦ୍ଧା ସେହି ହାରରେ ଆମର ସ୍ୱାତନ୍ତ୍ର୍ୟ ଦୃଢ଼ କରିବାକୁ ସମର୍ଥ ହୋଇ ନାହୁଁ । ଉତ୍କଳ ଭାଷୀ ଅଞ୍ଚଳର ଅଧାରୁ ବିଶେଷ ବାରପଣ Orissa Properର (ଆଧୁନିକ ରାଜନୀତିକ ଓଡ଼ିଶା) ଅନ୍ତର୍ଭୁକ୍ତ ଥାଇ ସୁଦ୍ଧା ଆମେ ଓଡ଼ିଆଯାକ କେତେକ ଶତାବ୍ଦୀ ବଙ୍ଗଦେଶ ଅଧୀନରେ ଥାଇ ବଙ୍ଗାଳୀଙ୍କ ସଙ୍ଗେ ଆପଣାର ବିଶେଷତ୍ୱକୁ ଲୀନ କରି ଦେଇଅଛୁଁ ।

ଆଚ୍ଛା, ଗତ କେତେ ବର୍ଷ ହେଲା ଆମେ ନବସୃଷ୍ଟ ବିହାରୋତ୍କଳ ପ୍ରଦେଶର (The Province of Bihar and Orissa) ଅନ୍ତର୍ଭୁକ୍ତ ହୋଇ ଏହି ନବ ପ୍ରଦେଶରେ ଆମର ସ୍ୱାତନ୍ତ୍ର୍ୟ ପ୍ରତିଷ୍ଠିତ କରିବାକୁ ସମର୍ଥ ହୋଇଥାଇଁ କି ? ପ୍ରଚଳିତ ଭାଷା ଅନୁସାରେ ରାଜନୀତିକ ବିଭାଗର ସୃଷ୍ଟି (Administrative union of Orissa on a linguistic basis) ହେଲେ ମଧ୍ୟ ସେହି ସୀମା ମଧ୍ୟରୁ କେତେକ ଓଡ଼ିଆ ବାହାରେ ରହିଯିବେ ଓ କେତେକ ଅଣ-ଓଡ଼ିଆ (Non-Oriya) ଏହି ସୀମା ଭିତରେ ପଶିଯିବେ । କାରଣ, ଆଧୁନିକ ଯୁଗରେ ଭାରତରେ ଯେଉଁ ସମ୍ମିଶ୍ରଣ ଆରମ୍ଭ ହୋଇଅଛି, ସେହି ସମ୍ମିଶ୍ରଣ ଓ ଉପନିବେଶ ପ୍ରଭାବରେ ଏକ ଅଞ୍ଚଳରେ ବିଭିନ୍ନ ଭାଷା-ଭାଷୀ ଲୋକେ ବସତି କରି ଆସିଅଛନ୍ତି । "Thus far and no farther" ଏହି ପର୍ଯ୍ୟନ୍ତ ଉତ୍କଳଭାଷୀ ଅଞ୍ଚଳର ସୀମା ବୋଲି ଗୋଟିଏ ସୀମାରେଖା (boundary-line)ସୁନିଶ୍ଚିତ ଭାବରେ

ଦିଆଯାଇପାରିବ ନାହିଁ । ଯେଡ଼େ Linguistic basis ରେ (ଭାଷାଗତ ଭିତ୍ତି) ଗାର ଟାଣିଲେ ସୁଦ୍ଧା ଥୋକେ ଓଡ଼ିଆ ପଦାରେ ରହିଯିବେ, ଥୋକେ ଅଣଓଡ଼ିଆ ଏ ସୀମା ଭିତରକୁ ଆସିଯିବେ । ଯେତକ ଓଡ଼ିଆ ପଦାରେ ରହିଯିବେ, ତାଙ୍କର ଅବସ୍ଥା କଣ ହେବ ? ତାଙ୍କ ପାଇଁ ଫେର Backward people (ଅନୁନ୍ନତ ଜାତି) Downtrodden people (ନିଷ୍ପିଷ୍ଟ ଜାତି) । Benighted people (ଅନ୍ଧାରକଣା ଜାତି) ଆଇନ ବା ବିଧି ଚଳାଇବାକୁ ହେବ । ସେମାନଙ୍କ ଆର୍ତ୍ତନାଦ ଶୁଣିବ କିଏ ? ବା ଶୁଣିବ କେତେ ଦୂର ? ନା, ସେମାନଙ୍କୁ ଏ ସୀମା ବହିର୍ଭୂତ ଅଞ୍ଚଳରୁ ଉଠାଇଆଣି ଚିଲିକାର ହ୍ରଦକୁ ପୋତି ଗୋଟିଏ ଶିକ୍ଷା-ଉପନିବେଶ (Penal Settlement) ବସାଇବାକୁ ହେବ ? ନା, ଯେତେ ଅଣ-ଓଡ଼ିଆ ଆମର ଏ Linguistic Boundary (ଭାଷାଗତ ସୀମା) ମଧ୍ୟରେ ଗଳି ପୂରି ରହିଯିବେ, ତାଙ୍କୁ ଏ ସୀମାର ବାହାରକୁ ଘଉଡ଼ିଦେବାକୁ ହେବ ? ନା, ଆଜି ଯେପରି କଟକରେ "Bengalee Settlers' Association" ହୋଇଅଛି, ଭାଷାଗତ ସୀମା ବାହାରେ ରହିଯିବା ଓଡ଼ିଆଙ୍କପାଇଁ ସେହିପରି "Oriya Settlers' Association" ପ୍ରତିଷ୍ଠା କରିବାକୁ ହେବ ? ଏତେ କରି ସୁଦ୍ଧା ଫେର ସେହି ମୁଷ୍ଟିମେୟ ଉନ୍ନତ ଜାତିଙ୍କ ରାଜତ୍ୱ ବଳବତ୍ ନ ହେବ କି ?

ଏସବୁ ମହା ଗହନ ସମସ୍ୟା । ଆମ ଭିତରୁ କେତେ ଜଣ ଏ କଥା ଦୃଢ଼ ଭାବରେ ଭାବୁଥାଇଁ ? (ଓଃ ! ରାମଚନ୍ଦ୍ରଃ ! ଦେଶର ଓ ଜାତିର କର୍ମବୀରମାନଙ୍କୁ ଏପରି ପଟାପଟ୍ ଗମାର ବୋଲି କହିଦେବାଟା ମୋ ପକ୍ଷରେ କେଡ଼େ ଗମାରପଣିଆ !) ଆପାତତଃ ଏ ସମସ୍ୟାକୁ ମୁଁ ଭାବି ନାହିଁ କିମ୍ବା ପୂରଣ କରିବାକୁ ଚେଷ୍ଟା କରି ନାହିଁ । ଫଳ କଥା ଏହି ହେବ ଯେ, ଆମେ ଆଜି ଯେଉଁଠାରେ ଥାଇଁ, The United Province of Utkal 'ସମ୍ମିଳିତ ଉତ୍କଳ ପ୍ରଦେଶ'ର ସୃଷ୍ଟି ହେଲେ ମଧ ଆମେ ସେହିଠାରେ ରହିବା । 'ଭାଇ ଭାଇ ଠାଇଁ ଠାଇଁ' ନ ହୋଇ ସବୁ ଭାଇଯାକ ଏକାଠେଇଁ । ଏକା ଘରେ ରହିବାକୁ ସୁଖ ନ ପାଏ କିଏ ? ଏ ଅବଶ୍ୟ ଗୋଟାଏ ଭାରି ସୁଖ - କିନ୍ତୁ ଏ ସୁଖ ଭୋଗ କରିବା ଲାଗି, ଏ 'ଏକାନ୍ନ-ଏକବାସରେ' ରହିବା ଲାଗି ଭାଇମାନଙ୍କର ଯେଉଁ ଉଦ୍ୟମ, ପରିଶ୍ରମ ଓ ଧନ୍ଦାରେ ଲାଗିବା ଦରକାର, ତାହା ସବୁ ଆମର ଅଛି କି ? ସବୁ ଭାଇଙ୍କର ସେତକ ତାକତ୍ ନ ହେବାଯାକେ ସମସ୍ତଙ୍କୁ ଆଣି ଏକ ଘରେ ରୁଣ୍ଡ କରିବାର ଅର୍ଥ ଏହି ଯେ, ସମସ୍ତେ ହୁଟୁପୁଟୁ ହୋଇ ଦାନା-କନା ନ ପାଇ ମରିବା । ସବୁ ଭାଇଯାକ ବୁଡ଼ି ମଲାବେଳେ କୁଣ୍ଢିଆ କୁଣ୍ଢେଇ ହୋଇ ଏକା ଜାଗାରେ ମରିବାରେ ଯେ ସୁଖ ନାହିଁ, ମୁଁ ଏ କଥା କହୁ ନାହିଁ । କିନ୍ତୁ ସଭ୍ୟଜଗତ୍‌ରେ ଏହା ଛଡ଼ା ଅନ୍ୟାନ୍ୟ ଉତ୍କୃଷ୍ଟତର ସୁଖ ଓ ଆନନ୍ଦ ଅଛି । ବ୍ୟକ୍ତିଗତ ଉଦ୍ୟମହୀନତା, ପରମୁଖାପେକ୍ଷିତା, ପରନିର୍ଭରଶୀଳତା, ଅନୁଗ୍ରହ-ଭିକ୍ଷା, ପ୍ରତିକୂଳ ଉପାଦାନ ସଙ୍ଗେ ଯୁଦ୍ଧ କରିବାକୁ ଅନିଚ୍ଛା, କୂପମଣ୍ଡୂକତା, ଅଦୂରଦର୍ଶିତା, ଆତ୍ମଂଭରିତାରେ ମୋ ଜୀବନ ପୂର୍ଣ୍ଣ - ମୋ ମୁହଁ ଆଗରେ କେହି ଦୟା କରି ଥାଳିଏ

ଭାତ ଥୋଇଦେଲେ ମୁଁ ବିନା ପରିଶ୍ରମରେ ସେତକ ଉଦରସ୍ଥ କରିବି ବୋଲି ଦିନରାତି ଈଶ୍ୱରଙ୍କୁ ଡକା ପକାଉଅଛି - ଏପରି ସ୍ଥଳରେ ମୋ ସମକର୍ମା ଓ ସମଧର୍ମାଙ୍କ ସଂଖ୍ୟା ବଢ଼ାଇବାକୁ ମୋର ଦିନରାତି ଭାବନା । ମୁଁ ଯେଉଁଠାକୁ ଯାଏଁ, ମୁଁ ଯେଉଁଠାରେ ଥାଏଁ, ଏହି କର୍ମଯୁଗରେ ମତେ ଘୋର ସଂଗ୍ରାମଦ୍ୱାରା ଜୀବିକାନିର୍ବାହ କରିବାକୁ ହେବ; ପ୍ରତିଯୋଗିତାକୁ ଡରି, ପରିଶ୍ରମକୁ ଡରି, ଦିହମିହନ୍ତ ନ କରି ବାଏଁ ବାଏଁ ବେଖରଚାରେ ଅନ୍ୟ ଜାତିଙ୍କ ସମକକ୍ଷ ହେବାକୁ ଝୁରି ପକାଇଲେ ସଭ୍ୟଜଗତ୍ ମୋ ରଡ଼ି ଶୁଣିବ କିଆଁ ? ଉପସ୍ଥିତ ଅଭାବ, ଅସୁବିଧା, ପ୍ରତିଦ୍ୱନ୍ଦ୍ୱିତା, କଟାମ ଓ ପ୍ରତିକୂଳ ଉପାଦାନ ସତ୍ତ୍ୱେ ଯେବେ ମୁଁ ମୋର ଅଧିକାର ଓ ସ୍ଥାନ ବଜାୟ ରଖିବାକୁ ଶିଖିପାରି ନାହିଁ, ତେବେ ଅନୁକୂଳ ଉପାଦାନ ପାଇଲେ ମୁଁ ଆହୁରି ସୁସ୍ଥି ଓ ପରିଶ୍ରମ-କାତର ନ ହେବି, ଏ କଥା ନାହିଁ କରିବ କିଏ ?

ଭାରତବାସୀଙ୍କୁ ସ୍ୱାୟତ୍ତ-ଶାସନ-ପ୍ରଣାଳୀ ପ୍ରଦତ୍ତ ହେଲେ ସେହି 'ଦୋହି'ରେ ଉନ୍ନତ ଜାତି ଓ ସମ୍ପ୍ରଦାୟମାନେ ଅନୁନ୍ନତ ଜାତିଙ୍କ ଉପରେ ଅଧିକାର ବିସ୍ତାର କରିବେ ବୋଲି ଯେପରି କେତେକ ଅନୁନ୍ନତ ସମ୍ପ୍ରଦାୟ ଝୁରି ଛାଡୁଅଛନ୍ତି, ଓଡ଼ିଆଙ୍କୁ 'ସମ୍ମିଳିତ-ଉତ୍କଳ' ଶାସନ-ପ୍ରଣାଳୀ ଦିଆଗଲେ ସେହି ଦୋହିରେ ଉନ୍ନତ 'କଟକୀ' ମାନେ ଅନୁନ୍ନତ ଉତ୍କଳୀୟଙ୍କ ଉପରେ ଅଧିକାର ବିସ୍ତାର କରି ତାଙ୍କ ଦାନାପାଣିରେ ଧୂଳି ଦେବେ ବୋଲି 'ମାଳୁଆ' ଓଡ଼ିଆଯାକ ଝୁରି ଛାଡ଼ିବା ସ୍ୱାଭାବିକ । କେତେକ ସମ୍ବଲପୁରିଆ ଭାଇମାନଙ୍କଠାରୁ ପ୍ରକାଶ ପାଇଅଛି ଯେ, ସମ୍ବଲପୁର ଓଡ଼ିଶାରେ ମିଶିବା ଦ୍ୱାରା ସମ୍ବଲପୁରର ଚାକିରିକ୍ଷେତ୍ରରେ 'କଟକୀ'ଙ୍କ ପ୍ରଭାବ ଓ ପ୍ରତାପ ବଢ଼ିଅଛି ମାତ୍ର । ସେମାନଙ୍କ ପକ୍ଷରେ ଫଳ କଥା 'ପୁନର୍ମୂଷିକୋ ଭବ' । ଏ କଥା କେତେଦୂର ଅନୁଭବ-ସିଦ୍ଧ ସତ୍ୟ ଉପରେ ପ୍ରତିଷ୍ଠିତ, ଏହା ଦେଶର କର୍ମବୀରମାନେ ଭାବନ୍ତୁ । କିନ୍ତୁ ମୋର ନିବେଦନ ଏହି ଯେ, ସ୍ୱାଧିକାର ପ୍ରତିଷ୍ଠା କରିବାକୁ ସମର୍ଥନ ହେବା ପର୍ଯ୍ୟନ୍ତ ଶତ 'ରାଜନୀତିକ ଏକୀକରଣ' (Administrative union) ଦ୍ୱାରା ଆମର କିଛି ହେବ ନାହିଁ । ସ୍ୱାୟତ୍ତ ଶାସନ-ନୀତିର (Home Rule) ବିରୋଧୀ ଦଳମାନେ ଏଥି ବିରୋଧରେ ଯେଉଁ ଯୁକ୍ତିମାନ ଦେଖାଉଅଛନ୍ତି, ସେ ଯୁକ୍ତିମାନ 'ଉତ୍କଳ ଭାଷୀ ପ୍ରଦେଶର ଏକୀକରଣ' ପ୍ରସ୍ତାବ ବିରୋଧରେ ଅଧିକତର ରୂପେ ପ୍ରଯୁଜ୍ୟ ହୋଇପାରେ । ଯାହାହେଉ, କୌଣସି ଅଧିକାର ଦାବି କରିବା ଓ ପାଇବା ବଡ଼ ଆନନ୍ଦର କଥା; କିନ୍ତୁ ସେ ଅଧିକାରର ସଦ୍‌ବ୍ୟବହାର କରିପାରିବା ଆହୁରି ଆନନ୍ଦର କଥା । ଫଳତଃ ମୁଁ ଅନୁଭବ କରିଅଛି ଯେ, ଯେତେବେଳେ ମୋର କୌଣସି ଜରୁରି ଦରକାର ପଡ଼େ, ସେତିକିବେଳେ ମୁଁ ଏହି 'ଓଡ଼ିଆ-ଢୁଆ' କାଢ଼େଁ ।

ଆମର ଅଧିକାଂଶ 'ଓଡ଼ିଶୀ-ଦାବି'କୁ ବିଶ୍ଳେଷଣ କଲେ ଓ ତହିଁର ପାଟକନା-ଗୁଡ଼ିଆ ଜନ୍ମପତ୍ରିକା ଉଦ୍ଘାଟନ କଲେ ତହିଁର ମୂଳରେ ଏହି ବ୍ୟକ୍ତିଗତ-ଲାଭ ଗୂଢ଼ ଭାବରେ ନିହିତ ଥିବାର ପ୍ରତୀୟମାନ ହେବ । କୌଣସି ସମ୍ବାଦପତ୍ରରେ କିମ୍ବା ସଭାସମିତିରେ

'ଓଡ଼ିଆଙ୍କର ଦାବି ଉପେକ୍ଷିତ ହେଉଅଛି Orissa for Oriyas । ଓଡ଼ିଶାଟା ଓଡ଼ିଆଙ୍କ 'ଗୋଚର' ତୁଆ ଦେଖିଲା ମାତ୍ରକେ ଯେବେ ଉଣ୍ଡି ଜାଣିବ, ତେବେ ଏ ରଡ଼ିକର୍ତ୍ତା ସମ୍ପାଦକ, ସଭାପତି, ସହକାରୀ ଖୋଦ ବା ତାଙ୍କ ସହଚର, ଭାଇ, ବନ୍ଧୁ, ଜ୍ଞାତି, କୁଟମ୍ବ, ଜ୍ଞାତି, ବିରାଦର, ଅନ୍ତର, ପ୍ରତ୍ୟାନ୍ତର, ଭ୍ରାତାନ୍ତର, ଭିତରୁ ଜଣେ କେହି ପ୍ରାର୍ଥୀ, ଅର୍ଥୀ, ପ୍ରତ୍ୟର୍ଥୀ, ବୃତ୍ତ୍ୟର୍ଥୀ, ସ୍ଥିତ୍ୟର୍ଥୀ, ପ୍ରୀତ୍ୟର୍ଥୀ, ଗତ୍ୟର୍ଥୀ ରୂପରେ ମହଜୁଦ ଥିବାର ଠିକଣା ମିଳିପାରିବ । ଏ ଜାତୀୟ ଜୀବଙ୍କ (ଖବରକାଗଜବାଲା କିମ୍ବା ସଭାବାଲା) ସଙ୍ଗେ ତୁମର ସମ୍ପର୍କ ନ ଥିଲେ, ତୁମର ସପ୍ତ ପୁରୁଷ କଞ୍ଚା କିମ୍ବା ପାଚିଲା, କିମ୍ବା ଦରପାଚିଲା, କିମ୍ବା କଞ୍ଚାସୁଆଦି ଓଡ଼ିଆ ହୋଇଥିଲେ ମଧ ତୁମ ଗନ୍ଧ ପଦାକୁ ବାହାରିବ ନାହିଁ । 'ଅମୁକ ଲୋକର ବାଡ଼ିଦୁଆରେ ବହେ ଅଳିଆ, ଅମୁକ ଲୋକ ଦେଶର ଓ ଜାତିର ଶତ୍ରୁ, ଅମୁକ ଲୋକ ଦେଶଦ୍ରୋହୀ ଓ ଜାତିଦ୍ରୋହୀ' ଇତ୍ୟାଦି ସାଧାରଣ ଢକ୍କା ବାଜିଲେ ଦେଖିପାରିବ ଯେ 'ସମ୍ପାଦକ ବିରାଦରାନ୍ତରାନ୍'ଙ୍କ ସଙ୍ଗେ ବ୍ୟକ୍ତିଗତ ଭାବରେ ଅପରାଧୀ ବିଚାରାର ଅପଡ଼ ।

ଜଣେ ହାକିମ ମୋ ମାମଲା ଡିସ୍‌ମିସ୍ କରି ଦେଇଅଛନ୍ତି, କୌଣସି ପଦସ୍ଥ ବ୍ୟକ୍ତି ମତେ ସମ୍ମାନ ଦେଖାଇ ନାହାନ୍ତି, କୌଣସି ଅଧିକାରୀ ବ୍ୟକ୍ତି ମୋର ପ୍ରାର୍ଥନା ମଞ୍ଜୁର କରି ନାହାନ୍ତି କିମ୍ବା ମତେ ଚାକିରି ଖଣ୍ଡେ ଦେଇ ନାହାନ୍ତି । ତହିଁ ଆରଦିନ ମୋର ଓ ମୋ ଘରଆଡ଼ର ବୈବାହିକ ଓ ଅବୈବାହିକ ସମ୍ପର୍କୀୟ ବ୍ୟକ୍ତିମାନଙ୍କ ଅନୁଗ୍ରହରୁ ଦେଶରେ କେତେ ସମ୍ପାଦକୀୟ ମନ୍ତବ୍ୟ, କେତେ ସଭାର ନିର୍ଦ୍ଧାରଣ ଉଦ୍‌ଘୋଷିତ ହୋଇଯିବ ଓ ତହିଁ ଆରଦିନ ବ୍ୟବସ୍ଥାପକ ସଭାର ମଞ୍ଚ ପର୍ଯ୍ୟନ୍ତ କମ୍ପିଯିବ ଓ ଜାତିଟା ଉଚ୍ଛନ୍ନ ହେଲା ବୋଲି ଆଗୋଦାବରୀ - ଆ-ସୁବର୍ଣ୍ଣରେଖା ରୋଳ ପଡ଼ିଯବ । ଅତଏବ ଯେ ପର୍ଯ୍ୟନ୍ତ ଉତ୍କଳର ଜାତୀୟ ଅଭିଧାନରୁ ଓଡ଼ିଆ ଜାତିର ଆଧୁନିକ Concentric (କୈନ୍ଦ୍ରିକ) ଅର୍ଥର (ଓଡ଼ିଆ ଜାତିର ଅନ୍ତର୍ଭୁକ୍ତ ମୋ 'ଜାତି'ର ଅନ୍ତର୍ଭୁକ୍ତ, ମୋ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ, ମୋ ବିରାଦରାନ୍ତରାନ୍ତର୍ଭୁକ୍ତ, ମୋ ଗ୍ରାମର ଅନ୍ତର୍ଭୁକ୍ତ, ମୋ ଦଳର ଅନ୍ତର୍ଭୁକ୍ତ, ମୋ ଉତ୍ତଶ୍ରେଣୀର ଅନ୍ତର୍ଭୁକ୍ତ ଓ ମୋ ଅନୁଗ୍ରହ ଦୃଷ୍ଟିର ଅନ୍ତର୍ଭୁକ୍ତ ସୌଭାଗ୍ୟବନ୍ତ ବ୍ୟକ୍ତିବିଶେଷ) ସଂସ୍କାର ପ୍ରକ୍ରିୟା ଆରମ୍ଭ ହୋଇ ନାହିଁ, ସେ ପର୍ଯ୍ୟନ୍ତ Home Rule (ସ୍ୱାୟତ୍ତ-ଶାସନ) ବୋଲ Utkal Union (ସମଗ୍ର ଉତ୍କଳ ଭାଷୀ ପ୍ରଦେଶର ଏକୀକରଣ) ବୋଲ, Orissa for Oriyas (ଓଡ଼ିଶାରେ ଓଡ଼ିଆଙ୍କର ଷୋଳପଣ କିସ୍‌ମତ୍) ବୋଲ, ଏଗୁଡ଼ିକ ଜାତୀୟ ଅବନତି ଦିଗକୁ ଅଗ୍ରସର ହେଉଥିବ । ଯେଉଁ ସାମ୍ପ୍ରଦାୟିକତା ଓ ବ୍ୟକ୍ତିଗତ ନୀଚତା ଆମକୁ Indian (ଭାରତୀୟ) ସୀମାରୁ ଆଣି ଉତ୍କଳୀୟରେ, ସେଥିରୁ ଟାଣି 'ଓଡ଼ିଆ'ରେ ପହଞ୍ଚାଇଛି, ସେହି ସଂକୀର୍ଣ୍ଣତା ଯୋଗୁଁ ଆମରି ଭିତରେ ଚାରି ଜାତି ଛତିଶ ପାଟକ, ବ୍ରାହ୍ମଣ-ଶୂଦ୍ର, କରଣ-ଖଣ୍ଡାଏତ, କ୍ଷତ୍ରିୟ-ମହାନାୟକ, ଶାସନୀ-ପଣ୍ଡା, ତନ୍ତୀ-ତାମିନ୍ଦ୍ର, ତେଲୀ-ତୁଳାଭିଣା, ଜାତିଆ-ଅନ୍ତର, କଟକୀ-ପୁରିଆ, ସମ୍ବଲପୁରିଆ-ଗଞ୍ଜାମିଆ, ସହରୀ-ମଫସଲୀ, ବଜାରୀ-ହାଟୁଆ, ଛୁଆଁ-ଅଛୁଆଁ ଆଦି ହରେକ କିସମର

ଭେଦଜ୍ଞାନରେ ପକାଇ ସ୍ୱାର୍ଥାନ୍ଧତାର ପଙ୍କରେ ଆମକୁ ଘୋଷାରୁଥିବ । ଏଥିରୁ କେତେଗୁଡ଼ିଏ ଦୁର୍ଗୁଣ ଶିକ୍ଷା ଦ୍ୱାରା ପରିହାର୍ଯ୍ୟ, କେତେଗୁଡ଼ିଏ ଦୁର୍ଗୁଣ ମାନବ-ପ୍ରକୃତିର ଅପରିହାର୍ଯ୍ୟ । ସେଗୁଡ଼ିକ ଯଥାସାଧ ଦୂର ବା କମ୍ କରିବା ହିଁ ମନୁଷ୍ୟତା । ବ୍ୟକ୍ତିଗତ ଉନ୍ନତି ଓ ଉଦାରତା ବ୍ୟତିରେକେ ଜାତୀୟ ଉନ୍ନତିର ଆଶା ସୁଦୂରପରାହତ । ଅନ୍ୟାନ୍ୟ ଉନ୍ନତ ଜାତି ମଧ୍ୟରେ ଯେଉଁ ସ୍ୱାର୍ଥତ୍ୟାଗ ଓ ନିଃସ୍ୱାର୍ଥପରତାର (Self-sacrifice and selflessness) ଉଦ୍ରେକ ହୋଇଅଛି, ଆମ ଜାତି ତହିଁରୁ କେତେ ପଛରେ !

ମୋ ହାତରେ କାଗଜ କଲମ ପଡ଼ିଲେ, ଅଧିକାର ପଡ଼ିଲେ, ସମ୍ବାଦ ଭାର ପଡ଼ିଲେ, ସଭାରେ ନିର୍ଦ୍ଧାରଣ ଓ ବକ୍ତୃତା କରିବାର କ୍ଷମତା ପଡ଼ିଲେ, ତହିଁର ମୁଁ ଯେଉଁ ପରିମାଣରେ ସଦ୍‌ବ୍ୟବହାର ବା ଅସଦ୍ ବ୍ୟବହାର କରିବାର ଦେଖାଯାଉଅଛି, ମୁଁ ତଉଦ୍ ପରିମାଣରେ ଉନ୍ନତ ବା ଅବନତ । ଏହି ବ୍ୟକ୍ତିଗତ ଉନ୍ନତି ବା ଅବନତି ଉପରେ ଜାତିର ଭବିଷ୍ୟତ୍ ନିର୍ଭର କରେ । ବ୍ୟକ୍ତିଗତ ଆଦର୍ଶ ଓ ଅନୁଭୂତି ଦ୍ୱାରା ଜାତିର ଜୀବନ ଗଠିତ ହୁଏ । ମୁଁ ମୋ ନିଜର କାର୍ଯ୍ୟକ୍ଷେତ୍ରରେ ମୋରି ବ୍ୟକ୍ତିଗତ ବିଶେଷତ୍ୱ ପ୍ରତିଷ୍ଠିତ କରିପାରିଲେ, ମୋହରି ଆଦର୍ଶର ଉଚ୍ଚତାକୁ ମୋହରି ଘରେ କାର୍ଯ୍ୟତଃ ସୁପ୍ରତିଷ୍ଠିତ କରିପାରିଲେ ମୋହରି ପରି ବ୍ୟକ୍ତିବିଶେଷର ସମଷ୍ଟି ଦ୍ୱାରା ଜାତିର ଆଦର୍ଶ ଓ ଜୀବନ ଗଠିତ ଓ ପୁଷ୍ଟ ହେବ । ଏଥିପାଇଁ ଯେଉଁ ଉପାଦାନ ଦରକାର, ତାହା ମୋର ନାହିଁ । ଅଛି କେବଳ ଜାତୀୟ କିଳିକିଳା ରାବ, ଦୋହି ଜଗନ୍ନାଥ ରଡ଼ି । କେବଳ ବୃଥା ରାବରେ ଫଳ ନାହିଁ । ଓଡ଼ିଶାରେ ଯେପରି ବଙ୍ଗାଳୀ-ଓଡ଼ିଆ କନ୍ଦଳ ଲାଗିଅଛି, ମାନ୍ଦ୍ରାଜରେ ଦେଖିଲି ଯେ ତୈଲଙ୍ଗ-ତାମିଲ କନ୍ଦଳ ମଧ ଲାଗିଅଛି, କିନ୍ତୁ ସେଠାରେ ତେଲଗୁମାନେ ଆପଣାର ଜାତୀୟ, ସାମ୍ପ୍ରଦାୟିକ, ବ୍ୟାବହାରିକ ଓ ସାହିତ୍ୟିକ ବିଶେଷତ୍ୱ ଅକ୍ଷୁଣ୍ଣ ରଖିବାକୁ ସମର୍ଥ ହୋଇଅଛନ୍ତି - ତାମିଲମାନଙ୍କ ପ୍ରାଧାନ୍ୟ ସତ୍ତ୍ୱେ ତେଲଗୁମାନେ ନିଜ ନିଜର ଅଧିକାର, ନିଜର ଭାଷା, ନିଜର ସାହିତ୍ୟ, ନିଜର ବ୍ୟବହାର ଅକ୍ଷୁଣ୍ଣ ରଖିଅଛନ୍ତି ଓ ରାଜନୀତିକ ଉଚ୍ଚ ଆସନମାନଙ୍କରେ ଆପଣାର ବିଶେଷତ୍ୱର ମାର୍କା ମାରି ପାରିଅଛନ୍ତି । ଅତଏବ ତାଙ୍କ ମୁହଁରେ "Union of Telgu-speaking tracts under a separate administration" (ତେଲଗୁଭାଷୀ ଅଞ୍ଚଳମାନଙ୍କର ରାଜନୀତିକ ଏକୀକରଣ) ତୁହା ଶୋଭା ପାଉଅଛି । ପରନ୍ତୁ ଆମରି ଦେଶରେ ଆମରି ଓଡ଼ିଆ-ପ୍ରଧାନ ଅଞ୍ଚଳରେ ଆମ୍ଭେମାନେ ଆମ୍ଭମାନଙ୍କର ବିଶେଷତ୍ୱ ବଜାୟ ରଖିପାରି ନାହୁଁ । ଓଡ଼ିଶାର ଆଧୁନିକ ରାଜନୀତିକ ସୀମାର ବାହାରେ ରହି ସୁଦ୍ଧା ଯେଉଁ ବିଶେଷତ୍ୱର ଟେକ ରଖିବାକୁ ସମର୍ଥ ହୋଇଅଛନ୍ତି, ସେମାନଙ୍କୁ ଆମ ସାଙ୍ଗକୁ ଆଣି ତାଙ୍କୁ ମଧ 'ଲାଙ୍ଗୁଡ଼ଖଣ୍ଡି' ନ କରିବାଯାକେ ଆମର ମନ ବୋଧ ନାହିଁ । ସେଥିପାଇଁ କହନ୍ତି, 'ସ୍ୱୟମସିଦ୍ଧଃ କଥଂ ପରାନ୍ ସାଧୟତି ।'

ଏ କେତେଗୁଡ଼ିଏ ଅବାନ୍ତର କଥା କହି ପକାଇଲି । ସମଗ୍ର ଉତ୍କଳଭାଷୀ ଅଞ୍ଚଳକୁ ଏକ ଶାସନାଧୀନ ରଖିବାକୁ ବେଳେ ବେଳେ ଆମର ମୁଖିଆମାନେ ଯେଉଁ ଯୁକ୍ତି

ଦେଖାଉଅଛନ୍ତି, ତାହା ଶୁଣି ମତେ ବଡ଼ ହସ ମାଡ଼େ । ସେଦିନ ବିଖାଖାପାଟଣା ଜିଲ୍ଲା ଅନ୍ତର୍ଗତ କୁରୁପମ୍ ରାଜ୍ୟର ଯୁବରାଜଙ୍କ ସଙ୍ଗେ ଆମ ତାଳଚେର ରାଜ୍ୟର ଜେମାଙ୍କ ମଙ୍ଗଳକୃତ୍ୟ ପ୍ରସଙ୍ଗରେ ଜଣେ ଯୁକ୍ତି ଦେଖାଇଲେ ଯେ, ଏହି ସମ୍ବନ୍ଧରୁ ଓଡ଼ିଶା ଗଞ୍ଜାମ ସଙ୍ଗେ ମିଳିବାର ଆକାଂକ୍ଷା ପ୍ରତିପନ୍ନ ହେଉଅଛି । ମୟୂରଭଞ୍ଜ ମହାରାଜା ରାଜପୁତାନାର ଜଣେ ଜେମାଙ୍କ ପାଣିଗ୍ରହଣ କରିବା ସମୟରେ ଏ ଯୁକ୍ତି ପ୍ରଦର୍ଶିତ ହୋଇଥିଲେ ବୋଧହୁଏ ଭାରତ ସରକାର (India Government) ଓଡ଼ିଶା ସଙ୍ଗେ ରାଜପୁତାନାର (Administrative Union) ଏକୀକରଣ ପ୍ରସ୍ତାବ ଶିରୋଧାର୍ଯ୍ୟ କରିଥାନ୍ତେ ! କୌଣସି ଇଂଲଣ୍ଡୀୟଙ୍କ ସଙ୍ଗେ ଫ୍ରେଞ୍ଚଙ୍କର ମଙ୍ଗଳକୃତ୍ୟ ହେଲେ ସଭ୍ୟଜଗତ୍ ଇଂଲଣ୍ଡ ଓ ଫ୍ରାନ୍ସକୁ ଏକ ଶାସନାଧୀନ ରଖିବାକୁ ମତ ଦେବେ ! ଆଜି କୁରୁପମ୍ ରାଜବଂଶ ସଙ୍ଗେ ଓଡ଼ିଶା ରାଜବଂଶର ବିବାହ ସମ୍ବନ୍ଧ ନୂତନ ନୁହେଁ । କୁରୁପମ୍ ରାଜାଙ୍କ ମାତା ଓଡ଼ିଶାର କନ୍ୟା । ଓଡ଼ିଶାର ରାଜବଂଶମାନେ ବିବାହ ସୂତ୍ରରେ ମଧ୍ୟପ୍ରଦେଶ ଓ ଛୋଟନାଗପୁରର ରାଜବଂଶମାନଙ୍କ ସଙ୍ଗେ ସମ୍ବନ୍ଧ । ଗଞ୍ଜାମ ଅଞ୍ଚଳରେ ରାଜବଂଶମାନ ମଧ୍ୟପ୍ରଦେଶସ୍ଥ ରାୟପୁର ଓ ବିଶାଖାପଟଣା ଆଦିର ରାଜବଂଶମାନଙ୍କ ସଙ୍ଗେ ବିବାହ ସୂତ୍ରରେ ଆବଦ୍ଧ । ଏ ଯୁକ୍ତି ଦ୍ୱାରା ତତ୍ତଦ୍ ପ୍ରଦେଶମାନ ଏକଶାସନାଧୀନ ରହିବାର ଆବଶ୍ୟକତା ପ୍ରତିପନ୍ନ ହୋଇ ନ ପାରେ । ଓଡ଼ିଶା ମାତା (Mother Utkal) ଗଞ୍ଜାମ କନ୍ୟାଙ୍କ (Ganjam daughter) ମଧ୍ୟରେ ରାଜନୀତିକ ପ୍ରଣାଳୀ (Gulf-Administration) ବ୍ୟବଧାନ ଥିବା ବୈଚିତ୍ର୍ୟ ଦ୍ୱାରା ମଧ୍ୟ ପ୍ରସ୍ତାବିତ Utkal union, (ଉତ୍କଳ-ସମ୍ମିଳନ) ଯୁକ୍ତି ସମର୍ଥିତ ହୋଇଅଛି । ମାତା ଓ ପୁତ୍ର ଏକାନ୍ତ ଏକବାସରେ ରହିବାର ଦେଖା ଅଛି । କିନ୍ତୁ 'ଘରଜୋଇଁଆ ଛଡ଼ା ମା ଝିଅ ଏକାନ୍ନ ଏକବାସରେ ରହିବାର ସଂସାରରେ ଦେଖା ନାହିଁ । କନ୍ୟା ବିବାହ ହେବା ପରେ ନିଜ ସ୍ୱାମୀ ଘରକୁ ଯାଇ ମାତାଙ୍କଠାରୁ ପୃଥକ୍ ରହନ୍ତି । ଏପରି ସ୍ଥଳରେ ଏହି 'ମାତା-କନ୍ୟା' ବିଚିତ୍ର ଉପସ୍ଥିତ କ୍ଷେତ୍ରରେ କେଉଁ ଯୁକ୍ତିକୁ ସମର୍ଥନ କଲା, ତାହା ବୁଝାଯାଉ ନାହିଁ । ଏ ଦୁଇଗୋଟି ଉଦାହରଣକୁ ଆମ ଜାତିର 'ଭାବୁକତା'ର ଗଭୀରତା ସହଜରେ ନିରୂପଣ କରାଯାଇପାରେ ।

ଏଣିକି ପୋଥି ବଢ଼ାଇବା ଦ୍ୱାରା କଥାଗୁଡ଼ାକ ବେଶି ବ୍ୟକ୍ତିଗତ ହୋଇଯିବା ଭୟରେ ଆଜି ଘରର ହାଲଚାଲ ଏହିଠାରେ ସମାପ୍ତ କରିବାକୁ ପଡ଼ିଲା । ଫଳ କଥା ଏହିକି, ଆମର ଯୋଗ୍ୟତା ନ ହେବାଯାକେ ଗଭର୍ଣ୍ଣମେଣ୍ଟ ଆମକୁ ଜାତୀୟ ମାର୍କା ଦେଇପାରିବେ ନାହିଁ । କେବଳ ଖଣ୍ଡକେତେ ସରକାରୀ ଚାକିରି ଓ ବୃତ୍ତି ମିଳିବ ମାତ୍ର । ଗଭର୍ଣ୍ଣମେଣ୍ଟ ସ୍ତ୍ରୀ ଶିକ୍ଷା ପାଇଁ କଟକରେ ଗୋଟିଏ କଲେଜ ସ୍ଥାପନ କରି ଦେବେ ମାତ୍ର, କିନ୍ତୁ ସେଥିରେ ଓଡ଼ିଆ ଝିଅ ଆଣି ଭର୍ତ୍ତି କରିବାକୁ ଆଇନ ପାସ୍ କରିପାରିବେ ନାହିଁ । କୃଷି ଶିକ୍ଷା ପାଇଁ ସରକାର ବାହାଦୁର କଟକ ବିଦ୍ୟାଧରପୁରରେ ଗୋଟିଏ ଆଦର୍ଶ କୃଷି କ୍ଷେତ୍ର ସ୍ଥାପନ କରି ଦେବେ, କିନ୍ତୁ ସେଥିର ଅନୁକରଣରେ ନିଜ ନିଜ କ୍ଷେତ୍ରରେ କୃଷିର ଉନ୍ନତି କରିବାପାଇଁ

ରାମ ପ୍ରଧାନ, ଶାମ ସାମଲ ଓଗେରଙ୍କୁ ବାଧ୍ୟ କରିପାରିବେ ନାହିଁ। ସରକାର ବାହାଦୁର ଆମକୁ ସ୍ୱାୟତ୍ତ-ଶାସନରେ କ୍ଷେତ୍ର ଦେବା ପାଇଁ ଆମ ହାତରେ ନିର୍ବାଚନ-ପ୍ରଥା-ଯୁକ୍ତ ମ୍ୟୁନିସିପାଲିଟି ଦେବେ, କିନ୍ତୁ ଅଯୋଗ୍ୟ ଲୋକକୁ ନିର୍ବାଚନ ନ କରିବାପାଇଁ ଆଇନ ପାସ୍ କରିପାରିବେ ନାହିଁ - କିମ୍ବା ମ୍ୟୁନିସିପାଲିଟି ଶାସନପ୍ରଣାଳୀରେ ମନୋନିବେଶ କରିବା ପାଇଁ ନିର୍ବାଚିତ କମିସନରମାନଙ୍କୁ ବାଧ୍ୟ କରିପାରିବେ ନାହିଁ । ଏସବୁ ଉଦାହରଣ ମାତ୍ର । ଏ ସବୁକୁ ଆପଣମାନେ ନିଜର 'Ruling' ବୋଲି ଘେନି ଆଜ୍ଞା ଦେବେ ନାହିଁ ।

ସମଗ୍ର ଭାରତବର୍ଷ ଯେତେବେଳେ Responsible form of Government (ସ୍ୱାୟତ୍ତ-ଶାସନ) ପାଇବ, ସେତେବେଳେ ଆମେ ବଳେ ବଳେ ଆମ କିସମର ମଥୋଟ ମୁତାବକ ସେ ଅଧିକାର ପାଇବା । ସରକାର ବାହାଦୁର Linguistic Basis ରେ (ଭାଷାମୂଳକ ଭିତ୍ତି) ପ୍ରଦେଶ-ବିଭାଗ କଲାବେଳେ ସମଗ୍ର ଉତ୍କଳଭାଷୀ ପ୍ରଦେଶକୁ ଏକଶାସନଭୁକ୍ତ କରିଦେବେ; କିନ୍ତୁ ଏତିକିରେ ଆମର ଗଙ୍ଗାସ୍ନାନ ଫଳ ହୋଇଯିବ ନାହିଁ - ଆମ୍ଭମାନଙ୍କୁ ପ୍ରତିନିୟତ ବ୍ୟକ୍ତିଗତ ଚେଷ୍ଟା, ଉଦ୍ୟମ, ଶିକ୍ଷା, ଆଦର୍ଶ ଓ ସାଧନ ଦ୍ୱାରା ନିଜେ ନିଜେ ଉନ୍ନତି କରିବାକୁ ହେବ । ତାହା ନ ହେଲେ ଏସବୁ କେବଳ 'ମାଳୀକୁ ଛେଳି ଅଡୁଆ' କାମ ମାତ୍ର ହେବ - କେବଳ ବହେ ଲେଖାଏଁ ହଲାପଟା ହେବା ମାତ୍ର ।

ଉ.ସ. - ୨୧ଶ ଭାଗ/୧୧ଶ ସଂଖ୍ୟା/ଫାଲ୍‌ଗୁନ/୧୩୨୫ ସାଲ ।

## ।। ତେର ।।

ମୁଁ ଆମ ଘରର ହାଲଚାଲ ଦାଣ୍ଡରେ ପକାଇବା ଯୋଗୁଁ କେତେକ ବନ୍ଧୁଙ୍କର 'ଅନୁରାଗ' ଭାଜନ ହୋଇଅଛି । 'ବନ୍ଧୁ' ଶବ୍ଦର ଅନେକ ଅର୍ଥ ଓ ବ୍ୟବହାର ଅଛି । ମୌଳିକ ଅର୍ଥ - ଯାହାଙ୍କ ସଙ୍ଗରେ ମୋର ଗୋଟିଏ ବନ୍ଧନ (ସମ୍ପର୍କ) ଅଛି । ବନ୍ଧନଟା ସାମାଜିକ, ଚଳିତ ଅର୍ଥରେ ବୈବାହିକ, ଯଥା - ପିତୃ-ବନ୍ଧୁ, ମାତୃ-ବନ୍ଧୁ, ସ୍ୱ-ବନ୍ଧୁ, ଭଗିନୀ-ବନ୍ଧୁ, ଅପତ୍ୟ-ବନ୍ଧୁ-ମାମୁଅଜା, ମାମୁ ଓ ଗୃହିଣୀ ସାହେବାଙ୍କ ସୋଦର ବିରାଦରାନ୍, ଭଗିନୀପତି, ଭଣଜା, ସମୁଧୀ ଆଦି । ହିନ୍ଦୁମାନଙ୍କର ଜାୟାଧିକାରରେ ମୃତବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିରେ ନିର୍ଦ୍ଦିଷ୍ଟ ବନ୍ଧୁଙ୍କର ସ୍ୱତ୍ୱଲାଭ ନିର୍ଣ୍ଣୀତ ହୋଇଅଛି । ଅର୍ଥ ଅନୁସାରେ ଏତେ ସ୍ଥଳରେ ଏ ବନ୍ଧୁ ଶବ୍ଦଟି ପ୍ରଯୋଜ୍ୟ ହେଲେ ହେଁ ଯେଉଁ ଜାଗାରେ ବନ୍ଧନଟା ନିଗଡ଼ ତାହାକୁ ହିଁ 'ସମ୍ବନ୍ଧୀ' ବୋଲାଯାଏ । ଆମ ଦେଶରେ ସମ୍ବନ୍ଧୀ କହିଲେ ପୁତ୍ରକନ୍ୟାଙ୍କ ଶ୍ୱଶୁରଙ୍କୁ ବୁଝାଏ । ବଙ୍ଗଦେଶରେ ଏ ଶବ୍ଦ ଗୃହିଣୀଙ୍କର ବିବୁଦରାନଙ୍କୁ ବୁଝାଏ । ବନ୍ଧୁ ଶବ୍ଦର ଆହୁରି କେତେଗୁଡ଼ିଏ ପ୍ରୟୋଗାର୍ଥ ଅଛି । ''ଉତ୍ସବେ ବ୍ୟସନେ ଚୈବ ଦୁର୍ଭିକ୍ଷେ ଶତ୍ରୁବିଗ୍ରହେ । ରାଜଦ୍ୱାରେ ଶ୍ମଶାନେ ଚ ଯ ତିଷ୍ଠତି ସ ବାନ୍ଧବଃ ।'' ଏ ଅର୍ଥରେ ବିପଦ ଆପଦରେ ଓ ଆମୋଦ ଆନନ୍ଦରେ ଯେ ମୋ ସଙ୍ଗରେ ଯୋଗ ଦିଅନ୍ତି, ସେ ମୋର ବନ୍ଧୁ । ଶେଷୋକ୍ତ ପ୍ରୟୋଗରେ 'ବନ୍ଧୁ' ଶବ୍ଦର ସୀମା ଖୁବ୍ ବଡ଼ । ଆହୁରି

ମଧ୍ୟ ଲେଖା ଅଛି ଯେ, ଯାହା ସଙ୍ଗେ ପଦେ କଥାବାର୍ତ୍ତା ହେଲା, ସେ ହେଲେ ତୁମର ବନ୍ଧୁ । ''ସମ୍ବନ୍ଧେ ମା ଭାଷଣ ପୂର୍ବମାହୁଃ ସମ୍ବନ୍ଧିନଂ ସାଦ୍ରପଦୀନ ମୁଚ୍ୟତେ'' - ପାଶ୍ଚାତ୍ୟ ସଭ୍ୟତା ଅନୁସାରେ ବନ୍ଧୁ ଶବ୍ଦର ପ୍ରୟୋଗରେ ମଧ୍ୟ ବେଶି ଧରପଗଡ଼ ହୁଏ ନାହିଁ । ଏ ଶବ୍ଦଟା ଆଧୁନିକ ସଭ୍ୟ ସମାଜରେ ଗୋଟାଏ 'କାଏଦା' (Etiquette) ଯୁକ୍ତ ବାକ୍ୟ ମାତ୍ର । ନିଃସମ୍ପର୍କୀୟ ବ୍ୟକ୍ତି ଏମନ୍ତ କି ଶତ୍ରୁ, ପ୍ରତିଦ୍ୱନ୍ଦ୍ୱୀ ଓ ପଶୁମାନଙ୍କୁ ସୁଦ୍ଧା ବନ୍ଧୁ ଶବ୍ଦରେ ସମ୍ବୋଧନ କରାଯାଏ ।

ଆଜିକାଲି ଆମ୍ଭେମାନେ ଯେଉଁ ସଭ୍ୟତା-ମନ୍ତ୍ରରେ ଶିକ୍ଷିତ ଓ ଦୀକ୍ଷିତ ହେଉଥାଇଁ, ସେଥିରେ ବାହାରର 'କାଇଦା' ଓ ଢଙ୍ଗଟା ଠିକ୍ ରହିଲେ, 'କାଗଜ କଲମଦୋରସ୍ତ' ରହିଲେ ହେଲା । ଭିତରର କଥା ଯାହା ଇଚ୍ଛା ତାହା ହେଉ, ବାହାରର 'କାଏଦା' ଦୋରସ୍ତ ହେଲେ ହେଲା । ତୁମ ଦିହରେ ରମ୍ପା, ଯାଦୁ, କାଛୁ, କୁଣ୍ଡିଆ, ଘିମିରି, ବାତଫୁଟ, ବାତରକ୍ତ, ଆକୁମାତ୍ରା, କଳା ଓ ଧଳା ଜାଇମନ୍ଦା ସବୁ ଥାଉ, କିନ୍ତୁ ବାହାରେ ଫେସନ ମୁତାବକ କାଟଛାଣ୍ଟ ହୋଇଥିବା ପୋଷାକ ତୁମର ସବୁ ବାଗକୁ ଘୋଡ଼ାଇ ପକାଇବ । ତୁମେ ହାକିମ ହୋଇ ଯାହା ଇଚ୍ଛା ତାହା କର, ପର ପୁଅର ଚଳନ୍ତି, ଅଚଳନ୍ତି, ପୋତା, ନୋତା, ନିଧି, ନିଖାତ, ଉଡ଼ନ୍ତି, ବହନ୍ତି, ସଜୀବ, ନିର୍ଜୀବ, ଖଞ୍ଜା, ଅଖଞ୍ଜା, ସବୁ ପ୍ରକାରର ସମ୍ପତ୍ତି ପ୍ରତି ତୁମର ପୂର୍ଣ୍ଣ 'ମମତା' ଥାଉ, ତୁମରି ଘରେ ଖୋଦ ତୁମେ ତାଣ୍ଡବ କରୁଥାଅ, କିନ୍ତୁ ଦାଣ୍ଡକୁ ବାହାରି ପଡ଼ିଲାକ୍ଷଣି ତୁମେ ହାକିମ ପୋଷାକ ଲଗାଇ ପାଗପଟୁକା ବାନ୍ଧି ମିସଲରେ ପହଞ୍ଚିଯାଅ, ତୁମେ ହୋଇଯିବ 'ଧର୍ମାବତାର', 'ଖୋଦାବନ୍ଦ', 'ଖାମିନ୍ଦ', 'ମା - ବାପ', 'ଦୁନିଆକା ବାଦଶା' । ଚାରିଅଣାର ବାସନାତେଲ ପାଇଁ ଆଠଅଣା ଖରଚ କରି ଶିଶି, ଛାପା, ମୋହର, ଛାପଚିକଣିଆ ମଲାଟ ଓ ବିଜ୍ଞାପନ ଦରକାର । ବାହାରର ଥାଟଟା ଦୋରସ୍ତ ରହିଲେ ପାଠ ଶେଷ । ଭିତରେ ଯାହା ଇଚ୍ଛା ତାହା ଥାଉ, ସେଥିରେ ଯାଏ କେତେ ଆସେ କେତେ ? ସେହିପରି ବର୍ତ୍ତମାନ 'Dear friend' (ପ୍ରିୟ ବନ୍ଧୁ) କଥାରେ ପ୍ରୟୋଗ ସଙ୍ଗେ ପ୍ରକୃତ ବନ୍ଧୁତାର ସତ୍ତା ରହିବାର ଆବଶ୍ୟକ ନାହିଁ । ଅତଏବ ଯାହାଙ୍କ ସଙ୍ଗେ ମୋର କରମର୍ଦ୍ଦନ ଚଳେ ବା ଚଳିବାର କୌଣସି ବାଧା ନାହିଁ, ତାଙ୍କ ସଙ୍ଗେ ବନ୍ଧୁତା ଥାଉ କି ନ ଥାଉ ସେ ମୋର ବନ୍ଧୁ । ମୁଁ ଏହି ଅର୍ଥରେ ଉପରେ ବନ୍ଧୁ ଶବ୍ଦଟା ପ୍ରୟୋଗ କରିଅଛି । ଏପରି 'ବନ୍ଧୁ'ଙ୍କ ମତ ପ୍ରତି ଅବଜ୍ଞା ପ୍ରଦର୍ଶନ କରିବାର ଲୁ' ନାହିଁ । ସମୟ କାଟିବା ଲାଗି ବସିବା ବେଳେ କାଶିବା ପରି ମୁଁ ଯେଉଁ ପୃଷ୍ଠା କେତେ ଗାରେଇ ପକାଏ, ସେଥିରେ କୌଣସି ଲୋକ କିଛି ଶିକ୍ଷା ପାଇବ ବା ତାହା ପଢ଼ି କୌଣସି ବ୍ୟକ୍ତିର ଶାରୀରିକ, ମାନସିକ, ଆଧ୍ୟାତ୍ମିକ, ସାମାଜିକ ବା ବୈଷୟିକ ଉନ୍ନତି ହେବ, ଏପରି ଆଶା ମୁଁ କେବେ କରି ନାହିଁ ।

ମୋ ଭଳି ପୃଥିବୀରେ ଅନେକ ନିଷ୍କର୍ମା ଅଛନ୍ତି । ସମୟ କାଟିବା ପାଇଁ କିଏ ପଶା, ତାସ, ଗଞ୍ଜାପା, ଚଉସାର, ବାଘବଜାରି, ନ୍ୟାୟବଳ ଖେଳନ୍ତି; କିଏ ଦୈନିକ ଓ ନୈଶ

ବିଦ୍ୟାଳୟ, ସଭା, ସମିତି, କ୍ଲବ, ଆସୋସିଏସନ, କମେଟି, ଭିକ୍ଷୁକ ଓ ପ୍ରଚାରକ ସମ୍ପ୍ରଦାୟ କରନ୍ତି; କିଏ ସଂକୀର୍ତ୍ତନ, ପାଲା, ଗୋଟିପୁଅ, ରାମଲୀଳା, କୃଷ୍ଣଲୀଳା, ବୋହୂ ସୁଆଙ୍ଗ, ଚନ୍ଦ୍ରାବତୀ ହରଣ କରନ୍ତି; କିଏ ଭାଙ୍ଗ, ଆୟ, ଚଉସ, ଚଣ୍ଡୁ, ଗୁଡ଼ାଖୁ, ପିକା, ଅଲବଲା, କୋକେନ, ସେବନ କରନ୍ତି; କିଏ ସଙ୍ଗୀତ, ଚଉପଦୀ, କାବ୍ୟ, ନାଟକ, ଉପନ୍ୟାସ, ପାଠ୍ୟପୁସ୍ତକ ପାଠ କରନ୍ତି, କିଏ ସନ୍ଧ୍ୟାବେଳେ ଖଞ୍ଜଣୀ ଓ ଚଙ୍ଗି ମାଡ଼ ଓ ଘୁମୁରା ମାଡ଼ କରନ୍ତି; ମୁଁ କାଗଜ କଲମ ଧରି ବହେ ରାମ୍ପେ । ଏହା ବୋଲି ଯେ ଅନ୍ୟାନ୍ୟ କାଳକଟା ଅବଲମ୍ବନର ମୁଁ ଧାର ଧାରେ ନାହିଁ, ଏକଥା ମୁଁ କହୁ ନାହିଁ; ଅଛ ବହୁତ ମୋର ପଶା ଆଦି, ବିଦ୍ୟାଳୟ ଆଦି, ସଂକୀର୍ତ୍ତନ ଆଦି, ଭାଙ୍ଗ ଆଦି, ସଙ୍ଗୀତ ଆଦି, ଖଞ୍ଜଣି ମାଡ଼ ଆଦି ସବୁ ମାଲମସଲା ଅଛି । କିନ୍ତୁ ଗୁଡ଼ିଏ କାଗଜ କଲମ ମତେ ମାଗଣା ବା ଶସ୍ତାରେ ମିଳିବାରୁ ଓ ସେଥିରେ ଅନ୍ୟ ସହଚର ଓ ସହଚରୀଙ୍କର ସାହଚର୍ଯ୍ୟ ଆବଶ୍ୟକ ନ ଥିବାରୁ ମୋ ମନକୁ ଯାହା ଆସେ ତାହା ଗାରେଇ ଯାଏଁ । ମୋ ଭଳି ନିଷ୍କର୍ମା ସମ୍ପାଦକ ଅଛନ୍ତି, ସେ ସେଗୁଡ଼ାକ ତାଙ୍କ କାଗଜରେ ପୂରଣ କରିଦିଅନ୍ତି, ତାଙ୍କ ଭଳି ଫେର ଥୋକେ ନିଷ୍କର୍ମା ଅଛନ୍ତି ଯେ, ସେମାନେ ସେଗୁଡ଼ାକ ପଢ଼ି କାଳ କାଟନ୍ତି ।

ମୋର ଉପରୋକ୍ତ 'ବନ୍ଧୁ'ମାନଙ୍କ ମଧ୍ୟରୁ ଏଥିପୂର୍ବେ କେହି କେହି ମୋତେ ଲମ୍ବା ଲମ୍ବା ସାର୍ଟିଫିକେଟ ଦେଇଥିଲେ ଓ କହିଥିଲେ ଯେ, ମୁଁ ଉତ୍କଳ ସାହିତ୍ୟରେ ଜଣେ ଖ୍ୟାତନାମା, ଉଦୀୟମାନ, ଉଚ୍ଚ ଶ୍ରେଣୀର ଫୁଟନ୍ତ ଲେଖକ । ବର୍ତ୍ତମାନ ସେ ବନ୍ଧୁମାନଙ୍କର ମତ ଓ ମତି ପରିବର୍ତ୍ତିତ ହୋଇଥିବାର ମୁଁ ଦେଖୁଅଛି । କଥା କଥାକେ ମୋର ବନ୍ଧୁମାନେ ଉଘାଉଛନ୍ତି ଯେ, ମୋର ଆଗର ଉଚ୍ଚ ଧରଣର ଲେଖା ଉଭେଇ ଗଲାଣି, ଏବେ ମୋ ଲେଖା କେବଳ ନୀଚତା ଓ ସ୍ୱାର୍ଥଖେଳା ଓ ପରଦ୍ୱେଷରେ ପୂର୍ଣ୍ଣ । ବନ୍ଧୁମାନଙ୍କର ଏହି ଉକ୍ତିର ସାରବତ୍ତା ମୁଁ ହାଉଲେ ହାଉଲେ ହୃଦୟଙ୍ଗମ କରିବାକୁ ଚେଷ୍ଟା କରୁଅଛି । ଯେତେବେଳେ ମୁଁ ଦୁନିଆର ହାଲଚାଲ ଲେଖୁଥିଲି, ସେତେବେଳେ ମୋ ଲେଖାରେ ନାନା ବିଷୟର, ନାନା ବ୍ୟକ୍ତିଙ୍କର, ନାନା ଘଟଣାର ଚର୍ଚ୍ଚା କରୁଥିଲି; ଏହି ଅନଧିକାର ଚର୍ଚ୍ଚା ଯୋଗୁଁ ଉତ୍କଳର ଅନେକ ପଦସ୍ଥ ବ୍ୟକ୍ତି ମୋ ଉପରେ ଖପ୍‌ପା ହୋଇଥିଲେ, ହେବା ମଧ୍ୟ ସ୍ୱାଭାବିକ - ''ତୋର ସମୟ ନ କଟିଲା ବୋଲି ତୁ ପରଦିହକୁ ଖେଞ୍ଚୁବୁ, ଏ କେଉଁଠା ନିଶାପ ? ତୁ ପର ପାଇଁ ଗାତ ଖୋଳିଲେ ପରପୁଏ ମଧ ତୋ ଲାଗି ଖଣି ଖୋଳି ତତେ ଉପରକଣ୍ଠା କରିବେ ।'' ଏ ସବୁ କଥା ଦେଖି ମୁଁ ସ୍ଥିର କଲି ଯେ, ଦୁନିଆର ହାଲଚାଲ ନ ଉଣ୍ଡି, ମୋ ଘରର ହାଲଚାଲ ଲେଖିଲେ, ମୋରି ଖେଞ୍ଚା ମୋରି ଠେଙ୍ଗ ବାଜିବ, ସେଥିରେ ଅନ୍ୟ କେହି ଦାଉ ଘାତ ହେବେ ନାହିଁ । ଏ ପାଞ୍ଚ ପାଞ୍ଚି ମୋ ଘର କଥା ଦାଣ୍ଡରେ ପକାଇ ସ୍ଥିର କଲି । ସେଥିରେ ମଧ ଦେଖିଲି ଯେ, ଘର କଥା କହୁ କହୁ ମୋର ସାଇପଡ଼ିଶା, ଭାଇ ଭଗାରି, ଜମିଦାର ପ୍ରଜା, ପରିବାର ବିରାଦର, ସମଧର୍ମା, ସମକର୍ମା, ଚାକର ବାକର, ସାଆନ୍ତାଣୀ ପୋଇଲୀ, ବନ୍ଧୁବାନ୍ଧବ ଆଦିଙ୍କ କଥା ପ୍ରସଙ୍ଗକ୍ରମେ

ଉଠୁଅଛି । ଏହା ଦେଖି ମୋର ପିଲାଦିନର ଶିକ୍ଷାଗୁରୁ ବୁଢ଼ା ବାଞ୍ଛାନିଧି ମାଷ୍ଟର ହୁଲର କରୁଅଛନ୍ତି - ''ଆୟୁର୍ବିତ୍ତଂ ଗୃହଚ୍ଛିଦ୍ରଂ ।'' ଘରଆଡ଼େ (Secretary, Home Department) ଗୃହ ବିଭାଗର ମାଲିକ (ଗୃହିଣୀ ଗୃହ ମୁଚ୍ୟତେ) ଅଭିମାନ କରୁଅଛନ୍ତି - ''ଆମ ଘରଟା ତୁମର ଷୋଳପଣି ହସ୍ତମୁଦି ମାହାଲ ନୁହେ । ତୁମ ଇଲାକାଧୀନ ଅଂଶ (ଯଥା - ଦାଣ୍ଡପିଣ୍ଡା, ସଦର ଦରୋଜା, କଚେରିମେଲା, ଦାଣ୍ଡମାମଲତ, ସଦର ଗୁମାସ୍ତା, ବିଲବାଡ଼ି ଧନ୍ଦା ଏସବୁ ନେଇ ତୁମେ ଦାଣ୍ଡରେ ପକାଅ, କିନ୍ତୁ ପରଦା ଆଢୁଆଳର ବସ୍ତୁ ଓ ଜୀବଙ୍କୁ ଟାଣିନେଇ ଦାଣ୍ଡରେ ଠିଆ କରାଇବାକୁ ତୁମେ କିଏ ? ଆମ ଖାସମାହାଲର ବାଡ଼ିତରଫର ଏକାଧିପତି ମାଲିକ ଆମେ । ତୁମର ସେଥିରେ ପାଟି ଫିଟାଇବାର ଜୁ ନାହିଁ ।'' ଦେଶ ଗୁରୁ, ସମାଜ ଗୁରୁ, ଜାତି ଗୁରୁମାନେ ମଧ କହୁଅଛନ୍ତି, ''ତୁମ କଥା ତୁମେ ଦିନରାତି ବିଳିବିଳାଉଥାଅ, କିନ୍ତୁ ହୁସିଆର ! ଆମ ଦିହରେ ତୁମର ''ଛାଇ ବାଇ ଲେନ୍ଦରା ଲାଗିଲେ ତୁମର ମଗଜ ଥଣ୍ଡା କରିଦେବୁ ।'' ପଣ୍ଡିତ ଆପଣେ କହୁଅଛନ୍ତି - ''ସତ୍ୟଂ ବ୍ରୂୟାଦ୍ ପ୍ରିୟଂ ବ୍ରୂୟାଦ୍ ମା ବ୍ରୂୟାଦ୍ ସତ୍ୟମପ୍ରିୟଂ'' । ବାଲାଦସ୍ତି ପାଗଳ କହୁଅଛି - ''ସଚ୍ କହୋ, ମରମ୍ ମତ୍ କହୋ !'' ଏହିସବୁ ନାନାଦି ଅଭିଯୋଗ ମଧ୍ୟରେ ପଡ଼ି ମଝିରେ ମଝିରେ ମୁଁ ଭାବୁଛି ଯେ, ସିଂହବାହିନୀ ମା ଶାରଳାଙ୍କ ଦୟାରୁ ଏପରି କୌଣସି ପ୍ରସଙ୍ଗ ଲେଖନ୍ତି, ଯେଉଁଥିରେ ମୋର ଖୋଦ୍ ନିଜର କଥା ବ୍ୟତୀତ ଅନ୍ୟ କିଛି ପ୍ରସଙ୍ଗ ନ ରହନ୍ତା । କିନ୍ତୁ ଏଥିର ମଧ କୌଣସି ମୀମାଂସା କରି ନ ପାରି ନଡ଼ବଡ଼ ହେଉଅଛି ।

ଅବଶ୍ୟ ପଣ୍ଡିତମାନେ ଲେଖାକୁ ଦୁଇ ଭାଗରେ ବିଭକ୍ତ କରିଥାନ୍ତି - Subjective (ମାନସିକ) Objective (ବୈଷୟିକ) ପ୍ରଥମ ଶ୍ରେଣୀ ଲେଖାରେ ଲେଖକ ନିଜର ଆଭ୍ୟନ୍ତରୀଣ ଭାବ ଓ ଚିନ୍ତା ପ୍ରକାଶ କରିଥାଏ । ଦ୍ୱିତୀୟ ଶ୍ରେଣୀରେ ଲେଖକ ବାହାରର କୌଣସି ବସ୍ତୁ ବା ଘଟଣା ବା ଜୀବକୁ ଅବଲମ୍ବନ କରି କୌଣସି ବିଷୟ ଚର୍ଚ୍ଚା କରିଥାଏ । ପ୍ରଥମ ଶ୍ରେଣୀର ଲେଖକଙ୍କ ଲେଖା ଭାବୁକତା ଓ ଉଚ୍ଚ ଚିନ୍ତାରେ ପୂର୍ଣ୍ଣ । ଦ୍ୱିତୀୟ ଶ୍ରେଣୀର ଲେଖକ ନିମ୍ନ ଶ୍ରେଣୀର, ଅର୍ଥାତ୍ ଆଶା-ବାଡ଼ିଖଣ୍ଡେ ନ ହେଲେ ସେମାନେ ଖୋଜେ ଆଗକୁ ଗୋଡ଼ ବଢ଼ାଇପାରନ୍ତି ନାହିଁ । ମୋ ଲେଖା ପ୍ରତି ବନ୍ଧୁମାନଙ୍କର 'ଅନୁରାଗ' ଦେଖି ମୁଁ ବିଚାର କରିଅଛି ଯେ, ଦିନାକେତେ କୌଣସି ଗୁରୁଙ୍କଠାରେ ତାଲିମ ହୋଇ ଲେଖିବାର କାଇଦା କଟକଣାଟା ଶିଖିନେଇ ଏଣିକି ତୁଚ୍ଛା (Subjective) ସମ୍ପର୍କଶୂନ୍ୟ ଲେଖା ଲେଖିବି । ଧର୍ମଚିନ୍ତା, ଅଧ୍ୟାତ୍ମ ଚିନ୍ତା, ନୈତିକ ଚିନ୍ତା, ସ୍ୱପ୍ନ ଦର୍ଶନ, ହରି କଥା, ଶାସ୍ତ୍ର କଥା ଏହି ସବୁ ଏଣିକି ମୋ ଲେଖାରେ ରହିବ । ତାହାହେଲେ ମୋର କୌଣସି ସଜୀବ ଓ ସତେଜ ବନ୍ଧୁବାନ୍ଧବ, ସରଦାର ବିରାଦର, ଅନ୍ତର ଓ ପ୍ରତ୍ୟନ୍ତରଙ୍କଠାରେ ଆଁଚ ବାଜିବ ନାହିଁ । ପାଠ ମଧ ଡାକୁଛି - ''ଯାଦୃଶୀ ଭାବନା ଯତ୍ର ସିଦ୍ଧିର୍ଭବତି ତାଦୃ ।'' ମୋର ଏ ଭାବନାକୁ ଭଗବାନ୍ ସିଦ୍ଧ କରି ମତେ ଗୋଟିଏ ଗୁରୁଙ୍କ ନିକଟରେ ହାବୁଡ଼ାଇବେ ବୋଲି ମୋର ଆଶା ହେଉଅଛି । ସେ ଦିନ ପର୍ଯ୍ୟନ୍ତ ଘରର ହାଲଚାଲ ଲେଖି ସମୟ

କଟାଇବା ଛଡ଼ା ଅନ୍ୟ ଉପାୟ ନାହିଁ । ଅତଏବ 'ବନ୍ଧୁ'ମାନଙ୍କ ନିକଟରେ କିଛି ଦିନ ମହଲତ ପ୍ରାର୍ଥନା କରୁଅଛି । ତା ପରେ ପ୍ରକୃତ ଜଗତକୁ ଛାଡ଼ି ଲେଖକ କାଳ୍ପନିକ, ମାନସିକ ଓ ସ୍ୱପ୍ନ ଜଗତରେ ଚାଲବୁଲ କରିବ ଓ ତଦ୍ଦ୍ୱାରା ଅନ୍ୟ କାହାରି ଦିହରେ ଲେଖକର ହାଉଆ ବାଜିବ ନାହିଁ ।

ଉ.ସା. - ୨୧ଶ ଭାଗ / ୧୨ଶ ସଂଖ୍ୟା / ଚୈତ୍ର / ୧୩୨୫ ସାଲ ।

## ।। ଚଉଦ ।।

୧୯୧୮ ଇଷ୍ଟର ବା ଗୁଡ଼ଫ୍ରାଇଡେ ଓ ଦୋଳଯାତ୍ରା ଛୁଟିରେ କଟକ ସହରଟି 'ମେଳନ'ରେ ସରଗରମ ହୋଇ ଉଠିଥିଲା । ଦୋଳ ସମୟରେ ସଂକୀର୍ତ୍ତନ ମେଳ ଓ ରାଧାକୃଷ୍ଣ ଠାକୁରମାନଙ୍କର 'ମେଳନ' ହେବାର ଆମ ଦେଶରେ ନୂଆ କଥା ନୁହେଁ । 'ଯଥା ଦେହେ ତଥା ଦେବେ' ଏହି ପ୍ରବାଦ ଅନୁସାରେ ମନୁଷ୍ୟମାନେ ମଧ୍ୟ ଗୋଟିଏ ଗୋଟିଏ ଠାକୁର । ଠାକୁର ମେଳନ ପରି ମନୁଷ୍ୟ ମେଳନ ମଧ୍ୟ ଆମୋଦ ଆହ୍ଲାଦର ସ୍ଥଳ । ସମଗ୍ର ଭାରତରେ ଏହି ଛୁଟିରେ କେଉଁଠାରେ ପ୍ରାଦେଶିକ ସମିତି (Provincial Conference) କେଉଁଠାରେ ଜାତୀୟ ସମିତି (National association), କେଉଁଠାରେ ବ୍ୟାବସାୟିକ ସମିତି ଓ ପ୍ରଦର୍ଶନୀ (Industrial Conference and Exhibition) ସବୁ ହୋଇଗଲା । ଆମ ଓଡ଼ିଶା ଭାରତର ଅନ୍ୟ କୌଣସି ଦେଶ ଅପେକ୍ଷା ମାନରେ, ମହତ୍ତ୍ୱରେ, ମର୍ଯ୍ୟାଦାରେ କମ୍ ନୁହେଁ । ଅତଏବ ଓଡ଼ିଶାର କେନ୍ଦ୍ର କଟକଠାରେ କେତେଗୁଡ଼ିଏ ମେଳନ (Conference) ହେବା ସ୍ୱାଭାବିକ ଓ ଆଇନସଙ୍ଗତ । ଏହା ନ ହୋଇଥିଲେ ବରଂଚ ଆମ ଉତ୍କଳୀୟ ଜାତିର ନିର୍ଜୀବତା ପଦାରେ ପଡ଼ିଥାନ୍ତା । ଏହିସବୁ ଜାତୀୟ ଅନୁଷ୍ଠାନରେ ଯେଉଁ ଯେଉଁ ଅଭିନୟମାନ ହେଲା, ତାହା ବାହାରରୁ ଦେଖଣାହାରି ସ୍ୱରୂପ କଳନା କରିବା ସହଜ ନୁହେଁ । କାରଣ ସରକାରୀ ଛୁଟିଦିନମାନଙ୍କରେ ମୁଁ ଗେର୍ଦ ଓଡ଼ିଶା, ଜିଲ୍ଲେ : କଟକ । ପ୍ର : କୋଦିଣ୍ଡା ତାଲୁକେ ରଘୁନାଥପୁରଠାରେ ମୋର (Domestic Conference) ସମ୍ମିଳନରେ ଗାର୍ହସ୍ଥ୍ୟ ଯୋଗ ଦେବାର ସୁବିଧା ପାଇଥାଏଁ । ବିଶେଷତଃ ଦୋଳ ସମୟରେ ଆମ ଗ୍ରାମର ଠାକୁର ଦୋଳ ବେଦିରେ ବିଜେ କରନ୍ତି, ଗାଁରେ ଘର ଘର ବୁଲି ଭୋଗ ଖାଆନ୍ତି । ଗ୍ରାମର ଠାକୁର ମେଳନରେ ଯୋଗ ଦିଅନ୍ତି ଓ ଫଗୁ ଖେଳନ୍ତି । ଏହି ଦୋଳ ସମୟରେ ମଧ୍ୟ ପ୍ରତ୍ୟେକ ଗୃହସ୍ଥ ଆପଣାର ଗୃହ ନିମନ୍ତେ ଚାକର, କୋଠିଆ, ଗୋରୁ ଜଗୁଆଳ ବନ୍ଦୋବସ୍ତ କରନ୍ତି । ଗ୍ରାମର ସେବାକାରୀ ଭଣ୍ଡାରି, କମାର, କୁମ୍ଭାର, ଧୋବା ଆଦିଙ୍କୁ ଯାତ୍ରା ଖରଚ ଦେଇ ଆଗାମୀ ବର୍ଷକ ନିମନ୍ତେ ଗାର୍ହସ୍ଥ୍ୟ ଯନ୍ତ୍ର (Domestic machine) ରେ ତେଲ ଦିଅନ୍ତି; ଆଗାମୀ ବର୍ଷ ନିମନ୍ତେ ଘର ଛାଆଣି, ଆଗାମୀ ଫସଲ ନିମନ୍ତେ ଚାଷ, ଆଗାମୀ ବର୍ଷ ନିମନ୍ତେ ଧାନ୍ୟ ସଞ୍ଚୟ, ଆଗାମୀ ବର୍ଷ

ନିମନ୍ତେ ଲୁଗାପଟାର ବ୍ୟବସ୍ଥା କରନ୍ତି । ଏସବୁ ଯାହାଙ୍କୁ କରିବାକୁ ନ ପଡ଼େ, ସେମାନେ ଭାଗ୍ୟବାନ୍ । ପରନ୍ତୁ ଯେ ଏସବୁ କାମର ବ୍ୟବସ୍ଥା କରିପାରି ସାଧାରଣ କାର୍ଯ୍ୟ ଓ ସଭାସମିତିରେ ଯୋଗ ଦେଇପାରନ୍ତି, ସେମାନେ ଆହୁରି ଭାଗ୍ୟବାନ୍ । କିନ୍ତୁ 'ଏସବୁ ଘରୋଇ କାର୍ଯ୍ୟ ଯୋଗୁଁ ମୁଁ ସଭାସମିତିରେ ଯୋଗ ଦେବାକୁ ଅକ୍ଷମ' ଏକଥା କହିଲେ ଲୋକେ ମତେ ନିତାନ୍ତ ସ୍ୱାର୍ଥାନ୍ଧ ବୋଲି କହିବେ - ଏଥିଲାଗି ଆଧୁନିକ ସଭ୍ୟତା କାଏଦା ଅନୁସାରେ 'ଘରଧନ୍ଦା' କଥା ଗୋପନ ରଖି ଅନ୍ୟ ଗୋଟିଏ Excuse (ବାହାନା)ର ଆଶ୍ରୟ ନେବା କାଏଦା ସଙ୍ଗତ ।

ଗତ (୧୯୧୮ ମାର୍ଚ୍ଚ) ଦୋଳ ଓ ଗୁଡ଼ ଫ୍ରାଇଡ଼େ ଛୁଟିରେ କଟକଠାରେ Utkal Union Conference, All Orissa Bengalee Settlers' Conference, All Orissa Students' Conference, ଆଦିକାଣ୍ଡ ଏଜନ ଅନ୍ତକାଣ୍ଡ Orissa Domiciled Bengalees' Arbitration Conference ଏହିପରି କେତେଗୁଡ଼ିଏ ସଭାସମିତିର ଅଧିବେଶନ ହୋଇ ଯାଇଅଛି । ଏଗୁଡ଼ିକରୁ ଓଡ଼ିଶାରେ ବଡ଼ବଡ଼ୁଆ ଲଗାଏତ ଟୋକାଟାକରିଆମାନଙ୍କ ମଧ୍ୟରେ ଜୀବନ ଥିବାର ସ୍ପଷ୍ଟ ପ୍ରମାଣିତ ହୋଇଅଛି । ଅଛି ବହୁତ ଆମ ସମସ୍ତଙ୍କର ଜୀବନ ଅଛି । ଯେଉଁ ହଡ଼ା ବୁଢ଼ା କଙ୍କାଳବିଶିଷ୍ଟ ଘୋଡ଼ା ପିଠିରେ କୋରଡ଼ା ମାଡ଼ ଖାଇ ବଗି ଟାଣେ, ତାହାର ଜୀବନ ଅଛି, ଆଉ ଯେଉଁ ଲୋକ କୋରଡ଼ା ମାଡ଼ ଦେଇ ସେ ଘୋଡ଼ାକୁ ହଙ୍କାଏ, ତାହାର ମଧ୍ୟ ଜୀବନ ଅଛି । ଗାଡ଼ି ଚାଲିଲା ବେଳେ ଘୋଡ଼ାର ଜୀବନୀଶକ୍ତି ଓ କୋଚମାନର ଜୀବନୀ ଶକ୍ତିର ସମ୍ମିଳିତ ବଳର କାର୍ଯ୍ୟ ସଂସାର ଦେଖୁଥାଏ । ଯେଉଁ ଜୀବନୀଶକ୍ତି ବଳରେ ସବଳ ଦୁର୍ବଳକୁ ଗ୍ରାସ କରିବାକୁ ଦଉଡ଼େ, ସେହି ଜୀବନୀଶକ୍ତି ବଳରେ ଦୁର୍ବଳ ସବଳର ଗ୍ରାସରୁ ଆତ୍ମରକ୍ଷା ନିମନ୍ତେ ସବଳଠାରୁ ଦୂରକୁ ପଳାଇଯାଏ । ଯେଉଁ ଶକ୍ତି କ୍ରୀତଦାସ ପିଠିରେ ଚାବୁକ ବସାଇ ତାକୁ ଦିନରାତି ଘଣା ପେଲାରେ ଲଗାଏ, ସେହି ଶକ୍ତି ପୁଣି କ୍ରୀତଦାସ ଠାରେ ପ୍ରବିଷ୍ଟ ହୋଇ ସେ ମାଡ଼ ଓ ଭିଡ଼ ସମ୍ଭାଳିବାକୁ ତାକୁ ବଳ ଦିଏ । ଏଥିରୁ ଆମ୍ଭେମାନେ ଦେଖିପାରୁଅଛୁଁ ଯେ, ଏକ ଶକ୍ତି ଭିନ୍ନ ଭିନ୍ନ ଦେହ ଓ କ୍ଷେତ୍ରରେ ପ୍ରବେଶ କରି ଭିନ୍ନ ଭିନ୍ନ ଅବତାର ଗ୍ରହଣ କରୁଅଛି । ଭଗବାନ୍ ଗୀତା (୧୦ମ ଅଧ୍ୟାୟ) ରେ କହିଅଛନ୍ତି 'ଦ୍ୟୁତଂ ଛଳୟତାମସ୍ମି ତେଜସ୍ତେଜସ୍ୱିନାମହଂ । xxx ଦଣ୍ଡୋ ଦମୟିତାମସ୍ମି ନୀତିରସ୍ମି ଜିଗୀଷତାଂ ।' ଏଣେ ମଧ୍ୟ ଚଣ୍ଡୀରେ ଭକ୍ତ ଦେବୀ ସଂହାରିଣୀ ଶକ୍ତିକୁ ସ୍ତବ କରୁଅଛି, 'ନମସ୍ତସ୍ୟୈ ନମସ୍ତସ୍ୟୈ ନମୋନମଃ । ଯା ଦେବୀ ସର୍ବଭୂତେଷୁ ଶକ୍ତି ରୂପେଣ ସଂସ୍ଥିତା ।' ଏଥିରୁ ଆମ୍ଭେମାନେ ଦେଖିପାରୁଥାଇଁ ଯେ, ଏକ ଶକ୍ତି ଭିନ୍ନ ଭିନ୍ନ ଆକାର ଓ ଅବତାର ଗ୍ରହଣ କରି ଏ ଜଗତରେ ସୃଷ୍ଟି ପୁଷ୍ଟି ନଷ୍ଟି* ସମ୍ପାଦନ କରୁଅଛି । ଆଧୁନିକ ପାଶ୍ଚାତ୍ୟ ଜଗତର ବୈଜ୍ଞାନିକ ଶକ୍ତି

* ଲାଭକ୍ଷତି

ସଂହାରକ ରୂପରେ ପ୍ରତିଦିନ ନାନା ବୈଜ୍ଞାନିକ କୌଶଳ ଓ କଳଦ୍ୱାରା ସହସ୍ର ସହସ୍ର ଜୀବଙ୍କୁ ହତାହତ କରୁଅଛି । ପୁଣି ସେହି ଶକ୍ତି ରକ୍ଷକ ଓ ସେବକ ରୂପରେ ଆହତ ପ୍ରାଣୀଙ୍କ ପ୍ରାଣରେ ମୃତସଞ୍ଜୀବନୀ ସୁଧା ଢାଳୁଅଛି । ସେହି ଶକ୍ତି ସଂଯତ ହେଲେ ତହିଁର କରାମତରେ ରେଳ, ଜାହାଜ, ଅଗ୍ନିବୋଟ ନିଜ ନିଜ ପଥରୁ ସୂତାଏ ଏଣେ ତେଣେ ନ ଟପି ଦିନରାତି ମନୁଷ୍ୟର ସେବାରେ ଲାଗିଛି । ଫେର ସେହି ଶକ୍ତିର ବାଗ ହାତରୁ ଖସିଗଲେ ଓ ତାହା ଅସଂଯତ ହେଲେ କ୍ଷଣକେ ଶତ ଶତ ପ୍ରାଣୀଙ୍କି ଉହଳ ବିକଳ କରି ପକାଉଅଛି ।

ମୁଁ କହୁଥିଲି ଯେ, ଗତ ଦୋଳ ଛୁଟିରେ କଟକରେ ଯେଉଁ ସବୁ ସଭା, ସମିତି, ସମ୍ମିଳନୀ ଆଦିର ଅଭିନୟ ହୋଇଥିଲା, ସେଥିରୁ ଆମ ଦିହରେ ଜୀବନୀଶକ୍ତି ଥିବାର ଅନୁଭବ କରାଗଲା । କିନ୍ତୁ ସେ ଜୀବନୀଶକ୍ତିର ଲକ୍ଷ୍ୟ ଗତି, ପ୍ରକାର ଓ କ୍ରିୟା କଣ, ତାହା ଥରେ ଅନୁସନ୍ଧାନ କରି ଦେଖିବା ଉଚିତ ଯେ, ସେ ଶକ୍ତି ରାକ୍ଷସୀ ଶକ୍ତି କି ଦୈବୀ ଶକ୍ତି ? ପାଶବ କି ଆଧାତ୍ମିକ ? ସ୍ୱାର୍ଥପୂର୍ଣ୍ଣ କି ନିଃସ୍ୱାର୍ଥ, ମାୟାବୀ କି ସରଳ ?

ସେହି ଜୀବନୀଶକ୍ତି ଅଶୀ ବର୍ଷର ଅସ୍ଥିକଙ୍କାଳବିଶିଷ୍ଟ ବୃଦ୍ଧ ଦେହରେ ପ୍ରବେଶ କରି ତାଙ୍କୁ ଯୁବକଜନୋଚିତ ତେଜରେ ବଳୀୟାନ୍ କରିଦେଲା । ସେହି ଶକ୍ତି ଓଢ଼ଣାସୀନ ସ୍ତ୍ରୀଲୋକଙ୍କ ମହଲରେ ପ୍ରବେଶ କରି ତାଙ୍କୁ ଆଣି ସମ୍ମିଳନୀ ମଣ୍ଡପରେ ପରଦା ଭିତରେ ଓ ପରଦା ବାହାରେ ଠିଆ କରାଇଦେଲା, ସେହି ଶକ୍ତି ଲୋକନାୟକ ଦେଶସେବକଙ୍କ ଠାରେ ଆବିର୍ଭୂତ ହୋଇ ସେମାନଙ୍କୁ ମାତୃପୂଜା ମଣ୍ଡପରେ 'ବୃକ୍ଷସ୍ୟ ବୃକ୍ଷଣଂ' ସ୍ୱର୍ଶ କରାଇ ଦେଇ ଗୋପଲୀଳା ସୁଆଙ୍ଗର ସୂତ୍ରଧର କରାଇଦେଲା । ସେହି ଶକ୍ତି କଚୁଆନ, ସଇସ, ଘାସି, ମେହେନ୍ତର, ପାଣ, ହାଡ଼ି, ଡମ, ଚମାରଙ୍କୁ ସାମାଜିକ ରସାତଳକୁ ଝିଙ୍କି ଆଣି ସମ୍ମିଳନୀ ମଣ୍ଡପରେ ସମାଜର ଶୀର୍ଷସ୍ଥାନୀୟ ଜାତ୍ୟଭିମାନୀ ବ୍ରାହ୍ମଣ କରଣଙ୍କ ସଙ୍ଗେ ବାଉଁଶପଟି ଉପରେ ବସାଇ ଦେଲା । ସେହି ଶକ୍ତି ଆମ ଦେଶରେ କପାଚାଷ, ଜଗନ୍ନାଥ ମନ୍ଦିରର ଜୀର୍ଣ୍ଣସଂସ୍କାର, ଦେଶୀୟ ତନ୍ତ ପ୍ରତିଷ୍ଠା, ଓଡ଼ିଶାରେ ଲୁଣ ଆମଦାନୀ ଆଦି ସମ୍ବନ୍ଧରେ ମହତୋମହୀୟାନ୍ ଆଡ଼ମ୍ବରପୂର୍ଣ୍ଣ ପ୍ରସ୍ତାବମାନ ଓଡ଼ିଆ ଜାତିଙ୍କ ଦ୍ୱାରା ସମର୍ଥିତ, ଅନୁମୋଦିତ ଓ 'କରତାଳିତ' କରାଇଦେଲା । ସେହି ଶକ୍ତି କୋଟି ସନ୍ତାନଙ୍କ କପୋଳକଳ୍ପିତ ପ୍ରତିନିଧିମାନଙ୍କର ଦୈନନ୍ଦିନ ଲୁଣ ମାଲପା ଖରଚର ଉପାୟ ଉଦ୍ଭାବନ କରି ମାତୃପୂଜା ମଣ୍ଡପରେ ଗୋଟିଏ ଜାତୀୟ ପାଣ୍ଠିର ଲୁହା ସିନ୍ଦୁକ ପ୍ରତିଷ୍ଠିତ କରାଇ ଦେଲା । ଏପରିକି, ସେହି ଜୀବନୀଶକ୍ତି ମୋହନ-ମନ୍ତ୍ର ଫୁଙ୍କି ଦେବାରୁ ''ଭୂମିକମ୍ପ ହେବ, ଧରଣୀ ଫାଟିବ, ଉଠିବେ ସହସ୍ରଭୁଜା''ର ଇସ୍ତିହାର ଜାରି କରିଦେଲା । ସେହି ଶକ୍ତି ସେହି ସହସ୍ରଭୁଜାଙ୍କୁ ପ୍ରଥମ ପଦରେ 'ମାତା' କରି ଦେଇ ପର ପଦରେ ଲିଙ୍ଗ ଭେଦ ବର୍ଜନ କରି ତାଙ୍କୁ 'ଭ୍ରାତା' ଅବତାରରେ ଦେଖାଇଦେଲା । ସେହି ଶକ୍ତି କୃଷକର ସ୍ୱେଦ ପ୍ରସୂତ ଫସଲକୁ (ସୁନା) ଅସରଫିରେ ପରିବର୍ତ୍ତିତ କରି ବିଲଠାରୁ ରାଜକୋଷ ପର୍ଯ୍ୟନ୍ତ

ଗୋଟିଏ ହାଇଲେଭଲ କେନାଲ ଖୋଲିଦେଇ ସେଥିରେ ସମସ୍ତଙ୍କୁ ଭସାଇ ନେଲା । ସେହି ଶକ୍ତି ରାଜନୀତିକ ଓ ଧର୍ମସମ୍ବନ୍ଧୀୟ ଆନ୍ଦୋଳନ ବିବର୍ଜିତ ସାବକ ନାବାଳକ ଉତ୍କଳ-ସମ୍ମିଳନୀକୁ ଆଣି ରାଜନୀତିକ ଦେଶ ମିଶ୍ରଣ-ଲୁଣ ପୋଡ଼ାନି ନିଷ୍କ୍ରିୟ ପ୍ରତିରୋଧରେ (Passive resistance) ପହଞ୍ଚାଇ ଦେଲା । ସେହି ଶକ୍ତି ହିନ୍ଦୁକ ନିଜସ୍ୱ ଧର୍ମାନୁଗତ ଜଗନ୍ନାଥ ମନ୍ଦିରକୁ କଳିଚୂନ ଦ୍ୱାରା ସଫେଦ କରାଇଦେଲା । ଉତ୍କଳ-ସମ୍ମିଳନୀର ଜୀବନ-ନାଟିକା-କମିଟିରୁ ଜନୈକ ବିଶିଷ୍ଟ ବ୍ୟକ୍ତିଙ୍କର ନାମ ଉଠିଯିବାର ପ୍ରସ୍ତାବ ହେବାମାତ୍ରକେ ସେହି ଶକ୍ତି ଗୋଟିଏ Village peasant ର (ମଫସଲିଆ ଚଷା) ବକ୍ଷରେ ବିରାଜମାନ ହୋଇ ଏ ପ୍ରସ୍ତାବକୁ immediately (ଖଡ଼େଦମ) ବ୍ୟର୍ଥ (opposed) କରାଇ ଦେଲା । ଏସବୁ ସ୍ୱ ଚକ୍ଷୁରେ ଦେଖି ସେହି ଶକ୍ତିର କରାମତ ଅନୁଭବ କରିବା ଭଳି ଭାଗ୍ୟ ଯେଉଁମାନଙ୍କର ନାହିଁ, ମୁଁ ତହିଁ ମଧ୍ୟରୁ ଜଣେ । କିନ୍ତୁ ଆମ ହିନ୍ଦୁ ଶାସ୍ତ୍ର ଅନୁସାରେ ଯେ ତୀର୍ଥକୁ ଯାଇ ନ ପାରେ, ସେ ଘରେ ବସି ତୀର୍ଥୋଦକ ଆଣି ମୁଣ୍ଡରେ ଛିଞ୍ଚି ହୋଇ ତୀର୍ଥଯାତ୍ରୀଙ୍କ ସମାନ ଫଳ ଲାଭ କରେ । ମୁଁ ସେହିପରି ଘରେ ବସି ମୋ ଭାଇ, ଭାୟା, ପୁତୁରା, ନାତି ଓଗେର ଯେଉଁମାନେ କି ସେ ତୀର୍ଥ ମାଡ଼ି ଆପଣାକୁ ଧନ୍ୟ କରିଅଛନ୍ତି, ସେମାନଙ୍କଠାରୁ ଏଥର ହାଲଚାଲ ଶୁଣି ଏଥିର କରାମତ ଉପଲବ୍ଧି କରି ଆପଣାକୁ ଧନ୍ୟ ମଣିଲି ଓ ଶେଷରେ ସେହି 'ଶକ୍ତି'କୁ ଆରାଧନା କରି ଗୀତାର ୧୦ମ ଅଧ୍ୟାୟର 'ଯଚ୍ଚାପି ସର୍ବଭୂତାନଂ ବୀଜଂ ତଦହ ମର୍ଜ୍ଜୁନ । ନ ତଦସ୍ତି ବିନା ଯତସ୍ୟାନ୍ମୟା ଭୂତଂ ଚରାଚରଂ । xxx ଅଥବା ବହୁ ନୈତେନ କି ଜ୍ଞାତେନ ତବାର୍ଜ୍ଜୁନ । ବିଷ୍ଟଭ୍ୟାହମିଦଂ କୃତସ୍ନ ମେକାଂ ଶେନ ସ୍ଥିତୋ ଜଗତ୍ ।' ସ୍ତବ ପାଠ ଦ୍ୱାରା ମୋର ବାସନା ପୂର୍ଣ୍ଣ କଲି ।

ଯେଉଁ ଶକ୍ତିର କରାମତି ଏଡ଼େ, ଯେଉଁ ଶକ୍ତି ଏପରି ଅସାଧ୍ୟ ସାଧନ କରିପାରେ, ଏପରି ଅକଥ୍ୟ କଥନ କରିପାରେ, ଏପରି ଅଭାବନୀୟ ଭାବନା କରିପାରେ, ସେହି ମାୟାବିନୀ ଶକ୍ତିକୁ ମୋର ଓ ସମଗ୍ର ଜାତିର ତ୍ରିକାଳ ସନ୍ଧ୍ୟାରେ ସାଷ୍ଟାଙ୍ଗ ନମସ୍କାର ।

ଆମେ ପିଲାଦିନରୁ ପାଠ ପଢ଼ି ଆସିଲେଣି, 'ଧର୍ମର ଜୟ, ସତ୍ୟର ଜୟ, ପାଶବ ବଳର ପରାଜୟ ।' କିନ୍ତୁ ବର୍ତ୍ତମାନ ଜର୍ମାନ ଘୋଷଣା କରୁଅଛି, 'ଅଧର୍ମର ଜୟ, ଅସତ୍ୟର ଜୟ, ପାଶବ ବଳର ଜୟ ।' ଏହି କନ୍ଦଳରେ ସମଗ୍ର ସଭ୍ୟଜଗତ୍ ନିଜ ନିଜର ସାମର୍ଥ୍ୟ ଓ ସ୍ୱାର୍ଥକୁ ବଳି ଦେଇ ଧର୍ମର ଜୟ, ସତ୍ୟର ଜୟ ନିମନ୍ତେ ପ୍ରାଣ ସମ୍ପିଦେଇ ଅଛନ୍ତି । ଆମ ସମସ୍ତଙ୍କ ମନରେ ଏହି ଦମ୍ଭ ଅଛି ଯେ, ଭଗବାନ୍ ଧର୍ମର ସୃଷ୍ଟି କରି, ସମସ୍ତଙ୍କ ଧର୍ମରେ ଆତଯାତ କରି ଶେଷରେ ଅଧର୍ମ, ଅସତ୍ୟକୁ କଦାପି ବିଜୟୀ କରାଇ ଦେବେ ନାହିଁ । ଜର୍ମାନୀର ବଳଦୃପ୍ତ ସେନା ଓ ସେନାପତିମାନେ ପାଶବ ବଳ ଦ୍ୱାରା ଲକ୍ଷ ଲକ୍ଷ ନିରୀହ ପ୍ରାଣୀଙ୍କୁ ହତ୍ୟା କରୁଅଛନ୍ତି, ଶତ ଶତ ନଗର ଧ୍ୱଂସ କରୁଅଛନ୍ତି, ସହସ୍ର ସହସ୍ର କୀର୍ତ୍ତି ଲୋପ କରୁଅଛନ୍ତି । ସେହି ପାଶବ-ବଳ-ଦୃପ୍ତ ଜର୍ମାନୀ ସେନା-ନିୟାମିକା ଶକ୍ତି, ବିବେକ ଓ ଅନ୍ତର୍ଜାତୀୟ ବିଧି ବିଧାନକୁ ପ୍ରତି ମୁହୂର୍ତ୍ତରେ ପଦଦଳିତ

କରୁଅଛି । ଏହି ବିଶ୍ୱବ୍ୟାପୀ ମହାସମରରେ ରାକ୍ଷସୀ ଶକ୍ତି ଓ ଦୈବୀଶକ୍ତି ମଧ୍ୟରେ କନ୍ଦଳ ଲାଗିଅଛି - ଭଗବାନ୍‌ଙ୍କ ରାଜ୍ୟରେ ସତ୍ୟର ଜୟ ନିଶ୍ଚୟ ହେବ, ଧର୍ମର ଜୟ ନିଶ୍ଚୟ ହେବ, ଅଧର୍ମର ପରାଜୟ ନିଶ୍ଚୟ ହେବ । କିନ୍ତୁ ଅଧର୍ମ କ୍ଷଣକାଳ ଲାଗି ଚେଇଁଉଠି ଜଗତକୁ ବ୍ୟତିବ୍ୟସ୍ତ କରୁଅଛି ମାତ୍ର ! ଅପରନ୍ତୁ ଦେଖିବାକୁ ଗଲେ ଏ କନ୍ଦଳରେ ସତ୍ୟ ଓ ଧର୍ମ ବିଷମ ଅଗ୍ନି ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେବା ପରେ ଜଗତରେ ଧର୍ମର ଗରିମା ଓ ସତ୍ୟର ଗରିମା ବଢ଼ିବ । ରାବଣ 'ସୀତାଙ୍କୁ ହରଣ କରି ପାଶବ ବଳ ଦ୍ୱାରା ରାମଚନ୍ଦ୍ରଙ୍କୁ ଦିନା କେତେ ତ୍ରସ୍ତ ବ୍ୟସ୍ତ କରି ପକାଇଲା । କିନ୍ତୁ ଶେଷରେ ଦୈବୀ ଶକ୍ତିର ଜୟ, ପାଶବ ଶକ୍ତିର ପରାଜୟ ହେଲା । ଏହାହିଁ ସଂସାରର ନିୟମ । ଏହାହିଁ ବିଶ୍ୱନିୟନ୍ତାଙ୍କ ସୃଷ୍ଟିର ଉଦ୍ଦେଶ୍ୟ । ବର୍ତ୍ତମାନ ଜର୍ମାନ ରାକ୍ଷସୀ ଶକ୍ତିର ଉପାସନା କରୁଅଛି - ଆମର ମିତ୍ରପକ୍ଷମାନେ ଦୈବୀଶକ୍ତିର ଆରାଧନା କରୁଅଛନ୍ତି । ବର୍ତ୍ତମାନ ଓଡ଼ିଶାର ଯେଉଁ ଶକ୍ତି ଆସ୍ମମାନଙ୍କ ରଙ୍ଗଭୂମିରେ ନଚାଉ ଅଛନ୍ତି, ସେ କେଉଁ ଶକ୍ତି ? ଦୈବୀ ଶକ୍ତି ? ନା ରାକ୍ଷସୀ ଶକ୍ତି ? ସେ ଶକ୍ତିଙ୍କୁ ଶତ ଶତ ନମସ୍କାର ।

ଏ ଗଲା ଓଡ଼ିଶାର ମହତୋମହୀୟସୀ ସୂତ୍ରଧାରିଣୀ 'ଶକ୍ତି'ଙ୍କର ଆବାହନ । ଏହାପରେ ଶକ୍ତି ପୂଜା ଓ ଉପକ୍ରମଣିକା । ସବୁ ବଡ଼ବଡୁଆ ଭାଇମାନଙ୍କୁ ମୁଁ ବିନୀତ ଭାବରେ ପଚାରୁଛି ଯେ, ସେମାନେ ଆଜିକି ୧୪ ବର୍ଷ ହେଲା ଆମର ଏ ଉତ୍କଳ ସମ୍ମିଳନୀରେ ଯୋଗ ଦେଉଅଛନ୍ତି, ଏଥିଲାଗି ଅନେକ ସ୍ୱାର୍ଥତ୍ୟାଗ, ବକ୍ତୃତା, ପ୍ରଚାର, ଆୟ ବ୍ୟୟ, ବୃଷ-ବୃଷଣ-ଘର୍ଷଣ, ଶବ-ସମିତି-ଗଠନ ଓ ଜାତୀୟ ପାଣ୍ଠି ସର୍ଜନ ହୋଇ ଆସୁଅଛି - କିନ୍ତୁ ଯେଉଁ ଶକ୍ତି ଅନ୍ତରାଳରେ ଥାଇ ଏସବୁ କସରତ୍ ବର୍ଷକେ ଥରେ ସମ୍ମିଳନୀ ମଣ୍ଡପରେ ଦେଖାଇ ଆସୁଅଛି ଓ ସମସ୍ତଙ୍କୁ ଗାଇବାଇ ନଚାଇ ଶିଖାଉଅଛି, ସେ କି ଶକ୍ତି ? ବର୍ଷକ ଯାକ କୃଷକ ତା ବିଲବାଡ଼ି ଧନ୍ଦାରେ ଲାଗିଛି, ମୂଲିଆ ମିସ୍ତ୍ରି ତା ଫନ୍ଦାରେ ଲାଗିଛି, ସଇସ ଘୋଡ଼ା କାମରେ ଲାଗିଛି, ମେହେନ୍ତର ଝାଡୁ ବରଦାରିରେ ଲାଗିଛି, କୀର୍ତ୍ତନମଣ୍ଡଳୀ ଖୋଳ କରତାଳରେ ଲାଗିଛନ୍ତି । ସମ୍ମିଳନୀର ଅଧିବେଶନର ଓଳିକ ପୂର୍ବରୁ ସମ୍ମିଳନୀର ଚାଳକ ଶକ୍ତିମାନେ ପ୍ରଚାର ଓ ନିମନ୍ତ୍ରଣରେ ଲାଗି ଯାଇ କୁହୁକ ଦେଖାଇ କାହାକୁ ଖୋଳ ପୂଜା ନିମନ୍ତେ ଆଠଅଣା ପଇସା ଦେଇ ବା ଦେବାର ଆଶା ଦେଇ ସମସ୍ତଙ୍କୁ ଆଣି ସମ୍ମିଳନୀ ମଣ୍ଡପରେ ରୁଣ୍ଡ କରାଇ ଦେଉଅଛନ୍ତି ଓ ବହିର୍ଜଗତକୁ ଦେଖାଉଅଛନ୍ତି ଯେ, ଓଡ଼ିଶାର untouchable class (ଅସ୍ପୃଶ୍ୟ ସମ୍ପ୍ରଦାୟ), mass (ପାମର ସାଧାରଣ) ଓ meanest peasant (ନୀଚତମ କୃଷକ) ସମ୍ମିଳନୀର ବୀଜମନ୍ତ୍ର ଗ୍ରହଣ କରି ସାରିଲେଣି । ଏହା କୁହୁକ ଓ ଗୋପଲୀଳା ସୁଆଙ୍ଗ ନୁହେଁ ତ ଆଉ କଣ ? ଆଜିଯାକେ ସମ୍ମିଳନୀ ପାଇଁ କେତେ ଚାନ୍ଦା ଉଠିଲା, କେତେ ବ୍ୟୟ ହେଲା, ସମ୍ମିଳନୀ ପ୍ରଭାବରୁ ଦେଶରେ କି ସ୍ଥାୟୀ ଅନୁଷ୍ଠାନ ହେଲା, ସମ୍ମିଳନୀ କେଉଁ ନିୟମରେ ପରିଚାଳିତ, ଏସବୁ କେହି ଠିକ୍ କରି କହିପାରିବେ କି ?

ଶ୍ରୀଯୁକ୍ତ ଗଣେଶଲାଲ ପଣ୍ଡିତ, ଶ୍ରୀଯୁକ୍ତ ଚନ୍ଦୁଲାଲ, ଶ୍ରୀଯୁକ୍ତ ରାଧାପ୍ରସାଦ ଭଗତ, ଶ୍ରୀଯୁକ୍ତ ଏରା ଆନେୟା, ଶ୍ରୀଯୁକ୍ତ ଆକାଶି ସୋମ ଶେଖରଂ ଏମାନେ ହେଲେ ଉତ୍କଳୀୟ ଅର୍ଥାତ୍ ସମ୍ମିଳନୀର ମେମ୍ବର୍ କିନ୍ତୁ ଶ୍ରୀଯୁକ୍ତ ଯୋଗେନ୍ଦ୍ରନାଥ ବୋଷ ଉତ୍କଳୀୟ ହୋଇପାରିବେ ନାହିଁ । ଯୋଗେନ୍ଦ୍ରବାବୁଙ୍କର ଓଡ଼ିଶା ଛଡ଼ା ଅନ୍ୟତ୍ର ଭିଟା ଅଛି । କିନ୍ତୁ ପୂର୍ବୋକ୍ତ ମେମ୍ବରମାନଙ୍କର ମଧ ସ୍ୱଦେଶରେ ଭିଟା ଅଛି । ଯୋଗେନ୍ଦ୍ରବାବୁଙ୍କୁ ଉତ୍କଳ ସମ୍ପ୍ରଦାୟରେ ପ୍ରବେଶାଧିକାର ନିଷେଧ ହେଲା । ଚନ୍ଦୁଲାଲ ସେଥିରେ ଉଚ୍ଚାସନ ପାଇଲେ । ଏଥିର କାରଣ ଆପଣମାନେ କିଛି ସ୍ଥିର କରିଅଛନ୍ତି କି ? କାଲି ରାଜନୀତିକ ଆନ୍ଦୋଳନ, ଧର୍ମଚର୍ଚ୍ଚା ଉତ୍କଳ ସମ୍ମିଳନୀରେ ସ୍ଥାନ ପାଇବ ନାହିଁ ବୋଲି ଘୋଷଣା ହୋଇଗଲା । ଫେର ଆଜି ଘୋଷଣା ହେଲା ଯେ, ସମ୍ମିଳନୀ ରାଜନୀତିକ ଚର୍ଚ୍ଚାରେ ଯୋଗ ଦେଇ ଦେଶ ମିଶ୍ରଣ, ଲୁଣ ପୋଖାନି, କଚେରି ଭାଷା ପ୍ରବର୍ତ୍ତନ ଆଦି ପ୍ରସ୍ତାବ କରିବେ ଓ ଜଗନ୍ନାଥ ମନ୍ଦିରର ଜୀର୍ଣ୍ଣ ସଂସ୍କାର ପାଇଁ ପାଣ୍ଠି ସ୍ଥାପନ କରିବେ । ଏ ସବୁ କରୁଛି କିଏ ଓ ହେଉଛି କିପରି ? କାଲି ସମ୍ମିଳନୀର ପରିଚାଳନ ନିମନ୍ତେ କେତେଗୁଡ଼ିଏ ନିୟମ ବିଧିବଦ୍ଧ ହେଲା । କିନ୍ତୁ ଆଜି ଘୋଷଣା ହେଲା ଯେ, ନିୟମାଧୀନ ହୋଇ ଚଳିବା ସମ୍ମିଳନୀ ପକ୍ଷରେ କାପୁରୁଷତା । ବାହାରେ ଦେଖାଇଲା ବେଳକୁ ହେଲା ଯେ, ସମ୍ମିଳନୀ ରାଜନୀତି ଚର୍ଚ୍ଚାର ସ୍ଥାନ ନୁହେଁ - ଏଥିରେ କାହାରି ଯୋଗ ଦେବାର ଆପତ୍ତି ନାହିଁ; କିନ୍ତୁ ସମ୍ମିଳନୀ ମଣ୍ଡପରେ ଢେଉ ଉଠିଲା ଯେ, ଗଭର୍ଣ୍ଣମେଣ୍ଟ ଆମ କଥା ନ ଶୁଣିଲେ ଆମେ ଉପବାସ ରହିବା ଓ Passive resistance 'ଚୋରକୁ ମାନ କରି ଖପରାରେ ଖାଇବା' ନୀତି ଅବଲମ୍ବନ କରିବା । ସରକାରଙ୍କ ସଙ୍ଗେ ସବୁ ସମ୍ପର୍କ ଛିଣ୍ଡାଇ ଦେବା । ଏସବୁ କ୍ରିୟାକଳାପରେ ଓ ବାଚାଳତାରେ ସାମଞ୍ଜସ୍ୟ କାହିଁ ? ଆଜି ସମ୍ମିଳନୀ ମଣ୍ଡପରେ 'The Oriya' ସମ୍ବାଦପତ୍ର ସମ୍ମିଳନୀର ମୁଖପତ୍ର ବୋଲି ଉଦ୍‌ଘୋଷିତ ହେଲା । ସମ୍ମିଳନୀ ଏହାର ନୀତି (policy) କେବେ ସ୍ଥିର କଲେ ? ଏହାର ଲେଖା ଉପରେ ସମ୍ମିଳନୀର କେଉଁ ଅଧିକାର (control) ଅଛି ? ଏହା ସୁପରିଚାଳିତ ଓ ସଂଯତ ହେବା ନିମନ୍ତେ ଦାୟୀ କିଏ ? ଏସବୁ କଥା ଆମ୍ଭେମାନେ ଦୃଢ଼ ଭାବରେ ଭାବିଅଛୁଁ କି ? ଜଣେ ସ୍ୱଜାତିବତ୍ସଳ ବ୍ୟକ୍ତି ଓଡ଼ିଆ ଖବରକାଗଜ ପରିଚାଳନ ପାଇଁ ଟ ୫୫୦୦-୦୦ ଦେବାର ପ୍ରସ୍ତାବ ସମ୍ମିଳନୀ ମଣ୍ଡପରେ ଉପସ୍ଥାପିତ ହେବାମାତ୍ରକେ ଘନ ଘନ କରତାଳିରେ ସଭାମଣ୍ଡପ କମ୍ପି ଉଠିଲା । କିନ୍ତୁ 'ଅମୁକ ଲୋକ ସମ୍ପାଦକ ନ ହେଲେ ମୁଁ ଏ ଟଙ୍କା ଦେବି ନାହିଁ, ଏହି ସର୍ତ୍ତ ମଧ ସେହି କରତାଳି ଧ୍ୱନିରେ ସମର୍ଥିତ ହୋଇଗଲା' । ''ଏ ସମ୍ବାଦପତ୍ରଟି ସମ୍ମିଳନୀ ଏତକ ସର୍ତ୍ତ ବିନା ପରିଚାଳନ କରିପାରିବେ'' - ସମ୍ମିଳନୀର ଶକ୍ତି ଉପରେ ଯେଉଁ ଦାତାଙ୍କର ଏତକ ଆସ୍ଥା (confidence) ନାହିଁ, ସେ ସର୍ତ୍ତ ଉଲ୍ଲେଖ କରି ତାଙ୍କର ନିଜର ଜାତ୍ୟଭିମାନ ବଢ଼ାଇଲେ ନା ସମ୍ମିଳନୀର ଟେକ ବଢ଼ାଇଲେ ? ନା 'ଓଡ଼ିଆ' କାଗଜର ମହତ୍ତ୍ୱ ବଢ଼ାଇଲେ ? ନା ଉପସ୍ଥିତ ସମ୍ପାଦକଙ୍କର ଗରିମା ବଢ଼ାଇଲେ ? ଏକଥା

ଥରେ କେହି ଭାବୁଅଛନ୍ତି କି ? ଗୋଟିଏ Central Council (କେନ୍ଦ୍ର ସଭା) ଗଠିତ ହେଲା, ସେଥିରେ କଟକରୁ ୧୫, ବାଲେଶ୍ୱରରୁ ୮, ପୁରୀରୁ, ୮, ଗଞ୍ଜାମରୁ ୧୦, ସମ୍ବଲପୁରରୁ ୫, ଗଡ଼ଜାତରୁ ୧୦ ଇତ୍ୟାଦି ଇତ୍ୟାଦି ଯେଉଁସବୁ ସଂଖ୍ୟା ଓ ଯେଉଁ ନାମ ସବୁ ଖଞ୍ଜା ହେଲା, ତାହା କେଉଁ ରୀତି, କେଉଁ ନିୟମ, କେଉଁ ବ୍ୟବସ୍ଥା ଓ କେଉଁ କଳ୍ପନା ଓ କେଉଁ ଗଣନା ଦ୍ୱାରା ସ୍ଥିରୀକୃତ ହେଲା ? ଏ କଥା ସବୁ କଟକଠାରେ ଖଡ଼େଦମ ଓଳିକି ମଧରେ ଠିକ୍‌ଠାକ୍ ମୀମାଂସା ହୋଇଗଲା । ଏ Council (ସମିତି) ହେଲା ଉତ୍କଳର ପ୍ରତିନିଧି ଓ ଉତ୍କଳର ଭାଗ୍ୟଚକ୍ର ନିୟାମକ !! ଏଥିପାଇଁ କହନ୍ତି - 'ଖଜୁରି ଗଛର କି ଗୁଣ ବର୍ଣ୍ଣିବି ମୂଳରୁ ପାହାଚ ପାହାଚ ।'

ସମ୍ମିଳନୀ ଜଣକର ବା ଜଣ କେତେକଙ୍କର ମନଗଢ଼ା ମେଢ଼ । ସେହି ଜଣକ ବା ଜଣ କେତେ ତାହାର ସୃଷ୍ଟି-ସ୍ଥିତି-ପ୍ରଳୟକର୍ତ୍ତା । ତୁମେ ଆମେ ସମସ୍ତେ କେବଳ ନାଚୁଆ, ହାଚୁଆ ଓ ବାଚୁଆ ମାତ୍ର । ଏହା ଯେଉଁପରି ଭାବରେ ପରିଚାଳିତ ହେଉଅଛି, ଏଥିରେ କେବଳ ବ୍ୟକ୍ତିଗତ ରୀତି (Self-advertisement), ବ୍ୟକ୍ତିଗତ ଖିଆଲ (Whims), ବ୍ୟକ୍ତିଗତ ଜିଦ୍ (Personal zid), ବ୍ୟକ୍ତିଗତ ଅନୁଗ୍ରହ (favouritism), ବ୍ୟକ୍ତିଗତ ଦଳ ପ୍ରତିଷ୍ଠା ଓ ରାଜତ୍ୱ (Rule of a party-faclion), ବ୍ୟକ୍ତିଗତ ରିପୁଭାବ (Personal feelings of enmity), ବ୍ୟକ୍ତିଗତ ପ୍ରତିଷ୍ଠା ଆକାଂକ୍ଷା (Personal popularity), ବ୍ୟକ୍ତିଗତ ଗୋପଲୀଳା ସୁଆଙ୍ଗ (Personal wirepulling and manipulation) ବଢ଼ୁଅଛି । ଏହି ସମ୍ମିଳନୀର ଭକ୍ତ ଅଭକ୍ତ ସମସ୍ତେ ଗୋପନରେ ସ୍ୱୀକାର କରୁଅଛନ୍ତି, କିନ୍ତୁ ପଦାରେ ପ୍ରକାଶ କରିବାକୁ ସମସ୍ତେ କୁଣ୍ଠିତ । ଯେଉଁ ହୀନକର୍ମା ବ୍ୟକ୍ତି ଚାଳକ ବା ତାଙ୍କ ଦଳ ବା ତାଙ୍କ କାର୍ଯ୍ୟ ରୀତି ବିରୋଧରେ ପଦେ କଥା କହିବ ବା ସମ୍ମିଳନୀର କାର୍ଯ୍ୟକଳାପ ଓ ଚାଳକ-ରୀତିର ପ୍ରତିବାଦ କରିବ, ତାହା ନାମ ତିନି ପାଞ୍ଜିରୁ ପୋଛା ହେବ । 'ସେ ଓଡ଼ିଆ ନୁହେଁ ତାକୁ ଏକଘରକିଆ କରିବାକୁ ହେବ । ଯେଉଁ ବ୍ୟକ୍ତି କୌଣସି କଥାରେ ପ୍ରତିବାଦ କରିବାର ସମ୍ଭାବନା ଥିବ, ତାକୁ ସମ୍ମିଳନୀ ମଣ୍ଡପରେ ପାଟି ଫିଟାଇବାକୁ ଦିଆଯିବ ନାହିଁ । ତାହାର ଗୋଛି କଟାଯିବ । ଏ ସମ୍ମିଳନୀରେ ଯୋଗ ଦେଉଥିବା ଅପାମର ସାଧାରଣ ଅଧିକାଂଶ ବ୍ୟକ୍ତିଙ୍କୁ ପଚାର, ''କିହୋ କୁଆଡ଼େ ଆସିଥିଲ ?'' ଏଥିର ଉତ୍ତର ପାଇବ, ''ମଧୁବାବୁଙ୍କ ସଭାକୁ ଆସିଥିଲୁଁ - ମଧୁବାବୁ ବାରିଷ୍ଟର ଓ କନିକା ରାଜା ନିମନ୍ତ୍ରଣପତ୍ର ପଠାଇଥିଲେ, ଆସନ୍ତୁ ନାହିଁ କିପରି ?'' ତାଙ୍କୁ ପଚାର - 'କଣ ଦେଖିଲ' - ଉତ୍ତର - ''ଖୁବ୍ ପାଟି, ଖୁବ ନାଟ, ଖୁବ ହାତତାଳି ଦେଖିଲୁ, ଅନେକ ରାଜା ମହାରାଜାଙ୍କୁ ଦେଖିଲୁଁ, କିନ୍ତୁ ଲୁଣ ଲୁଗା ତ ଶସ୍ତା ହେଲା ନାହିଁ ।''

ଏ ତ ଗଲା ଆମର ସାଧାରଣଙ୍କ କଥା - ଆଚ୍ଛା, ମୁଁ ଆମ ଦେଶର ବଡ଼ବଡ଼ୁଆ-ପାମରମାନଙ୍କୁ ପଚାରୁଛି, ''ବର୍ଷକୁ ଏତେ ଖର୍ଚ୍ଚାନ୍ତ ହୋଇ ବହୁ ଦୂରରୁ ଆସୁଛ, ଏ ୧୪ ବର୍ଷ ଭିତରେ କଣ ଧାରାବାହିକ କାର୍ଯ୍ୟ ହେଲାଣି ?'' ଏଥିର ସନ୍ତୋଷଜନକ ଉତ୍ତର ନ

ଦେବା ପର୍ଯ୍ୟନ୍ତ 'ଯଥୈ ବାସ୍ତେ ତଥୈ ବାସ୍ତେ' ଅନ୍ୟ କଥା ଦୂରେ ଥାଉ, କେତେଦିନ ପୂର୍ବେ ଜଣେ ନଗଣ୍ୟ ଏକଘରିଆ ହତଭାଗାକୁ ଖୋଦ ମଧୁବାବୁ ପଚାରିଲେ, "କି ହୋ ! ତୁମେ ଏ ସମ୍ମିଳନୀରେ ଯୋଗ ଦେଉ ନ ଥିବା କଥା ସତ ?" ସେ ବ୍ୟକ୍ତି ଲିଖିତ ଜବାବ ଦାଖଲ କରି କହିଲା ଯେ, "ଏ ଗୋପଲୀଳା ସୁଆଙ୍ଗରେ, କେଳା କୁହୁକରେ, ଘର ସାହାବି ମାମଲତାରେ ଯୋଗ ଦେବାକୁ ମୋ ମନ ହେଉ ନାହିଁ । ଏ ସବୁଥିରେ କେବଳ ଜଣକେତେ ସୂତ୍ରଧର, ତାଙ୍କର ଅଗମୂଳ କିଛି ନାହିଁ । ବ୍ୟକ୍ତିବିଶେଷ ଯାହା କହିବେ, ତାହାହିଁ ପାଠ । ତାଙ୍କର ପେଟ ଫୁଲାଇଲେ ସମ୍ମିଳନୀର ପେଟ ଫୁଲାଉଛି, ତାଙ୍କର ଖଇରି ହାକୁଟି ହେଲା ବେଳକୁ ସମଗ୍ର ଜାତିର ଖଇରି ହାକୁଟି ହେଉଛି । ସମଗ୍ର ଜାତିଟା ଯାକ ଏ 'ହୋ'ରେ ମାତିଅଛନ୍ତି, ମୋ ଭଳିଆ ଗୋଟାଏ ଅଧେ ଯୋଗ ନ ଦେଲେ, ଯାଏ କେତେ ଆସେ କେତେ !" ଏ ଚିଠିଖଣ୍ଡିକ ଯେତେ ଜଣ ସମ୍ମିଳନୀର ତଥା ତାକ ନାମ ଭକ୍ତ ଦେଖିଲେ, ସମସ୍ତେ ରାବି ଉଠିଲେ, "ସତେ ତ ! ଭାଇରେ ! ଏ କଥା ଅକ୍ଷରେ ଅକ୍ଷରେ ସତ ! ସତକୁ ସତ ସମ୍ମିଳନୀଟା କେବଳ ଗୋଟାଏ ତାମସା ।" କିନ୍ତୁ ଆରଓଳିକୁ ସେହି ନାମଜାଦା ପୁରୁଷମାନେ ବିନା ବାକ୍ୟବ୍ୟୟରେ ବ୍ୟକ୍ତିଗତ ସ୍ତବ-ପାଠରେ ଯୋଗ ଦେଲେ । ଯେଉଁ ଜାତୀୟ ବୀରମାନେ ବିବେକର ତଣ୍ଟିକୁ ଏପରି ଚିପିଦେଇ ପାରନ୍ତି ଓ ଘଡ଼ିକୁ ଘଡ଼ି ବହୁରୂପା ଏଣ୍ଡୁଅ ଭଳିଆ କାୟା ବଦଳାଇପାରନ୍ତି, ସେମାନଙ୍କୁ କିଛି ଅସାଧ ନୁହେଁ । ସେମାନଙ୍କ ପଛଆଡ଼େ ଘୋଡ଼ାବାଳଟିଏ ଲଗାଇ ଦେଇ ପରଦା ଭିତରେ ରହି ସୂତ୍ରଧର ତାଙ୍କୁ ଯେଉଁପରି ନଚାଇବେ, ସେମାନେ ସେହିପରି ନାଚିବେ । ଯେବେ ଜଣେ ନ ନାଚିଲା ତାକୁ 'ସାତ ଚକଟା, ପୋଲୁହ ଘଣ୍ଟା, ବିଭୂତିଭୂଷଣ, ଗାଲିଶି କଟା' କରି ଦିଅ, ତାହାହେଲେ ସବୁ ଅଡୁଆ ଛିଣ୍ଡିଯିବ । ମୁଁ ଭାବୁଛି ଯେ, ଦିହରେ ଛାପଚିକଣିଆ ପୋଷାକ ଲଗାଇ ବଡ଼ରୋଗ ଛଉମନ୍ଦାକୁ ଘୋଡ଼ାଇ ରଖିଲେ ଦାଣ୍ଡ ଲୋକେ ବର୍ତ୍ତମାନ ତୁମ ଦିହର ରୋଗ ଠଉରାଇ ପାରିବେ ନାହିଁ ସତ, କିନ୍ତୁ ସେହି ଛଉମନ୍ଦା ଯେତେବେଳେ ଫୁଟିଉଠି ଦିହଯାକ ମାଡ଼ିଯିବ ଓ ମୁହଁ ହାତ ନାକ କାନ ରକ୍ତ-ପୂଯ-ଘା' ମୟ ହୋଇଯିବ, ସେତେବେଳେ ତା୍କୁ ଲୁଚାଇବ କିପରି ? ଏଥିପାଇଁ ତୁମ ଦିହରେ ଛଉଦାଗ ହେବାମାତ୍ରକେ ତୁମ ପରିବାରର ଯେଉଁ ବ୍ୟକ୍ତି ତାର ଆଶୁ ପ୍ରତିକାର କରିବାକୁ କହେ, ତା କଥା ସେତେବେଳେ ଅପ୍ରିୟ ହେଉ ପଛକେ ସେ ତୁମର ହିତାକାଙ୍କ୍ଷୀ ବୋଲି ମନେ ରଖିବ । ଆଉ ଯେ କହିବେ ଯେ, ସେ ଛଉମନ୍ଦାକୁ ପୋଷାକ ତଳେ ଘୋଡ଼ାଇ ଦେଇ ଦାଣ୍ଡକୁ ବାହାରିପଡ଼, ତାଙ୍କୁ ଜାଣିବ, ସେ 'ଖୋସାମଦିଆ' । ଯେଉଁ ଲୋକ ତୁମ ଛଉମନ୍ଦାର ଆଶୁ ପ୍ରତିକାର ପାଇଁ ପରାମର୍ଶ ଦେଉଛି, ଦେଖିବ ଯେ ସେହି ଜଣକ ଶେଷ ବେଳକୁ ତୁମ ମୁହଁ ହାତର ପୂଯରକ୍ତ ଧୋଇ ତୁମର ସେବା ଶୁଶ୍ରୂଷା କରିବ ଓ ଯେଉଁମାନେ କହୁଛନ୍ତି ଯେ ସେ ମନ୍ଦାଯାକ ଘୋଡ଼ିଆଘୋଡ଼ି କରି ଦାଣ୍ଡକୁ ବାହାର, ସେମାନେ ଶିକାର ବେଳକୁ ଝାଡ଼ା ଫେରିବା ବାହାନାରେ ଚମ୍ପଟ ଦେବେ ।

ଯେଉଁ ଜାତୀୟ ଅନୁଷ୍ଠାନ 'ନୀତି' ଓ ନିୟମର ଧାର ଧାରେ ନାହିଁ, ଯେଉଁଠାରେ ଅଧିକାଂଶ ବ୍ୟକ୍ତି ସ୍ୱାଧୀନ ଭାବରେ ଚିନ୍ତା କରିବାକୁ, କାର୍ଯ୍ୟ କରିବାକୁ ଅକ୍ଷମ ବା ପରାଙ୍ମୁଖ ବା ଭୟାକୁଳ, ଯେଉଁଠାରେ ଲୋକଗୁଡ଼ାକ କେବଳ ପର ଗୋଡ଼କୁ ଅନାଇ ବାଟ ଚାଲନ୍ତି, ଯେଉଁ ଜାତିର ନେତାମାନେ ନିୟମ (Principle), ନିୟମତନ୍ତ୍ରତା (Discipline), ନୈତିକ ସାହସ (moral courage)ର ଧାର ଧାରନ୍ତି ନାହିଁ ଓ ଅବଲମ୍ବିତ ଧର୍ମ ସଙ୍ଗେ ଆଚରିତ ଧର୍ମାନୁଷ୍ଠାନର, କଥା ସଙ୍ଗେ କାର୍ଯ୍ୟର ସାମଞ୍ଜସ୍ୟ ରକ୍ଷା କରିବା କର୍ତ୍ତବ୍ୟ ମନେକରନ୍ତି ନାହିଁ, ନିକଟ ଭବିଷ୍ୟଦ୍‌ରେ ସେ ଜାତି ସମ୍ବନ୍ଧରେ କିଛି ଆଶା କରିବା ନିତାନ୍ତ ବିଡ଼ମ୍ବନା ।

ଉତ୍କଳର ଏ ଗୋଟିଏ ଅନୁଷ୍ଠାନର ଆଲୋଚନା କରିବାକୁ ଯାଇ ଗୋଟିଏ ପୋଥି ହେଲାଣି । ଏହିପରି ଅନ୍ୟ ଅନୁଷ୍ଠାନମାନଙ୍କ ସମ୍ବନ୍ଧରେ ବକ୍ତବ୍ୟ ଲିପିବଦ୍ଧ କଲେ ପୋଥି ବଢ଼ିଯିବ । ଏହି ଭୟରୁ ସେଥିରୁ କ୍ଷାନ୍ତ ହେଲି । ଭାତହାଣ୍ଡିରୁ ଗୋଟିଏ ଚିପିଲେ ହାଣ୍ଡିଟା ଯାକରେ ଥିବା ଭାତର ଅବସ୍ଥା ଜଣାପଡ଼େ । ଆମ୍ଭମାନଙ୍କ ଦେଶରେ ବର୍ତ୍ତମାନ ଯେଉଁ ହାଉଆ ବହୁଅଛି, ସେଥିର କରାମତିରେ ଅଧିକାଂଶ ଅନୁଷ୍ଠାନମାନ ବ୍ୟକ୍ତିଗତ ଖିଆଲର କ୍ରୀଡ଼ାକ୍ଷେତ୍ର ରୂପରେ ପରିଣତ ହୋଇଅଛି । ଭଗବାନ୍ କରନ୍ତୁ, ସେ ବ୍ୟକ୍ତିଗତ ପ୍ରାଧାନ୍ୟ ଶୀଘ୍ର ଲୁପ୍ତ ହେଉ ଓ ଜାତୀୟ ଅନୁଷ୍ଠାନମାନ ପ୍ରକୃତରେ ଜାତିର ସଭ୍ୟତା ଓ ଉନ୍ନତିର ପଥପ୍ରଦର୍ଶନ ହେଉ । ଆଜି ଏତିକି ।

ଉ.ସା. - ୨୨ଶ ଭାଗ / ୧ମ ସଂଖ୍ୟା / ବୈଶାଖ / ୧୩୨୬ ସାଲ ।

## ॥ ପନ୍ଦର ॥

ଗତ ପୂର୍ବ ଥରକ ଉତ୍କଳ ସାହିତ୍ୟରେ 'ଆମ ଘରର ହାଲଚାଲ' ପ୍ରସଙ୍ଗରେ ଉତ୍କଳ ସମ୍ମିଳନୀ ସମ୍ବନ୍ଧରେ ପଦେ ଅଧେ କଥା ଲେଖିଥିଲି ବୋଲି ଉତ୍କଳର କେତେଗୁଡ଼ିଏ ନାମସାଫି ଓ ନାମଚୋରି ବ୍ୟକ୍ତିଙ୍କଠାରୁ ଉତ୍ତମ ମଧ୍ୟମ ଶୁଣିବାକୁ ପଡ଼ିଅଛି ଓ ଏପରି 'ବେଆଡ଼ା' ସମାଲୋଚନା ଯେଉଁ ପତ୍ରିକାରେ ପ୍ରକାଶିତ ହୋଇଥିଲା, ସେ ପତ୍ରିକାର ସମ୍ପାଦକ ମହାଶୟ ମଧ୍ୟ କିଛି ଉତ୍ତମ ମଧ୍ୟମ ପାଇଅଛନ୍ତି । କର୍ମଯୋଗ ଉପରେ ମନୁଷ୍ୟର ହାତ ନ ଥାଏ । ମୋ ସମ୍ମିଳନୀ-ହାଲଚାଲର ସମାଲୋଚନା ହେବା ସମୟରେ ମୁଁ କଟକଠାରୁ ଦୂରରେ ଗଡ଼ଜାତର ଜଙ୍ଗଲରେ ଜଣେ ବନ୍ଧୁଙ୍କ ରୋଗଶଯ୍ୟା ନିକଟରେ ପରିଚର୍ଯ୍ୟା କରିବାରେ ବ୍ୟସ୍ତ ଥିଲି, ଏଥିପାଇଁ ସେହି ସମାଲୋଚନାରେ ବଜାର ସରଗରମ ହେବା ସମୟରେ ମୁଁ ସେ ଗରମିର ଦାଉଠାରୁ ଦୂରରେ ଥାଇ ନିରାପଦରେ ଥିଲି ଓ ମନେ ମନେ ବିଚାରିଲି ଯେ, ଏ ତାତିରୁ ମତେ ଦୂରରେ ରଖାଇବାପାଇଁ ଈଶ୍ୱର ବନ୍ଧୁଙ୍କୁ ରୋଗାକ୍ରାନ୍ତ କରାଇଥିଲେ ପରା ? ଏ ଗରମିର ତାତି ଟିକିଏ ଶୀତୁଳିଯିବା ପରେ ମୁଁ

କଟକ ଫେରି ଆସିଲି । ସେତେବେଳକୁ ତତ୍‌ପରବର୍ତ୍ତୀ ସଂଖ୍ୟା ଉତ୍କଳ-ସାହିତ୍ୟ ପ୍ରକାଶିତ ହୋଇ ସାରିଥିଲା । ଅତଏବ ଅଗତ୍ୟା ମୋର କୌଣସି କୈଫିୟତ୍ ଗତ ସଂଖ୍ୟା ସାହିତ୍ୟରେ ସ୍ଥାନ ପାଇପାରି ନ ଥିଲା । ଏତକ କୈଫିୟତ୍ ଦେବାର କାରଣ ଏହି କି, ଗତ ସଂଖ୍ୟା ସାହିତ୍ୟରେ 'ଆମ ଘରର ହାଲଚାଲ' ନ ଦେଖି କେହି କେହି ବନ୍ଧୁ ମତେ କହିଥିଲେ, 'ପହରାଜେ ! କୁଲା ଢାଉଁ ଢାଉଁରେ ଡରିଗଲ ?' କିନ୍ତୁ ପହରାଜେ କଂସାରି ଘରର ପାରା ବୋଲି ବନ୍ଧୁଙ୍କୁ ଜଣା ନ ଥିଲା । ଲେଖକ ଯେଉଁ ଗୁରୁଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲା, ସେ ଗୁରୁଙ୍କ ଜାତରେ "କୁଲା ଢାଉଁ ଢାଉଁକୁ ଡରିବା" ଲେଖା ନାହିଁ । ସେ ଗୁରୁଙ୍କର ଉପଦେଶ - "ହକ୍ କହେଗା, ଗୁରୁ ଚିଡ଼େଗା ତ ଚିଡ଼େଗା ।" ସେହି ଗୁରୁଙ୍କର ଆହୁରି ଗୋଟିଏ ମଧ ଉପଦେଶ ଏହି ଯେ, 'କୌଣସି କାମ କଲାବେଳେ ମୁଣ୍ଡକୁ ପାଣି ଛଡ଼ାଇ ଦେଇ କାମ କରିବ ।' ଯେଉଁ ଗୁରୁ * ଏ ଶିକ୍ଷା ଦେଇଥିଲେ, ସେହି ଗୁରୁ ଏତକ ହେଜି ପାରିଲେ ନାହିଁ ଓ କୁଲା ଢାଉଁ ଢାଉଁ କରି ପାରା ହୁରୁଡ଼ାଇବାକୁ ବସିଲେ, ଏହାହିଁ ମୁଁ ଭାବୁଅଛି ।

ପାଠକମାନଙ୍କ ସଙ୍ଗେ ଯେବେ ବାଇ ମାହାନ୍ତିଙ୍କର ଆଳାପ ପରିଚୟ ଘଟିଥିବ, ତେବେ ମାହାନ୍ତିଙ୍କ ପାଞ୍ଜିରୁ ଗୁରୁ-ଶିଷ୍ୟ-ସଂବାଦ ବିଡ଼ାରୁ ସେମାନେ ଦେଖିଥିବେ ଯେ, ମୋର କୌଣସି ସମାଲୋଚନାର ଯେବେ "ତୀବ୍ର ପ୍ରତିବାଦ, ଅନୁବାଦ, ହେତୁବାଦ, ସମ୍ବାଦ ତୀବ୍ରତର ବିବାଦ ଓ ତୀବ୍ରତମ ବିସମ୍ବାଦ" ଲାଗିଯାଏ, ତେବେ ମୁଁ ଜାଣିବି ଯେ ମୋ ସମାଲୋଚନା ଢେଲାଟି ଲକ୍ଷ୍ୟ ଭ୍ରଷ୍ଟ ହୋଇ ନାହିଁ; ଅର୍ଥାତ୍ ମୋ ଟେକାଟି ଠିକଣା ଜାଗାରେ ବାଜିଅଛି । ମୁଁ ଟେକାଟିଏ ମାଇଲି ବାଜିବ ବୋଲି, ଯାହା ଦେହରେ ବାଜିଲା, ସେ ଯେବେ ଟିକିଏ 'ଓହୋ' ହେଲା ବା ମତେ ବୋଲୁଅଟାଏ ଉଞ୍ଚେଇଲା, ତେବେ ମୋର ମନରେ ସନ୍ତୋଷ ହେବା ଉଚିତ ଯେ, ମୋ ଟେକାଟି ଲକ୍ଷ୍ୟଭ୍ରଷ୍ଟ ହୋଇ ନାହିଁ । ଅତଏବ ମୋର ଉଦ୍ଦେଶ୍ୟ ସିଦ୍ଧ ହେଲା । ସେ ଯାହାହେଉ ଉତ୍କଳ-ସମ୍ମିଳନୀର ପ୍ରଥମ 'ସିଧିରସ୍ତୁ' ବେଳେ ମୋ ହାତରେ ମଧ ଖଡ଼ି ପଡ଼ିଥିଲା । ମୋ ଝାଳ ବୁହା କଉଡ଼ିରୁ କଡ଼ାଏ ହେଲେ ମୁଁ ସମ୍ମିଳନୀର ଅସରନ୍ତି ଭଣ୍ଡାରରେ ଢାଳିଥିଲି ଓ ଦିନେ ହେଲେ ସୁଦ୍ଧା ମୁଁ ସମ୍ମିଳନୀ ପାଇଁ ଶାଖା ସମିତି ଗଠନ, ପ୍ରଚାର କାର୍ଯ୍ୟ, ବକ୍ତୃତା, ରିପୋର୍ଟ, ଦଉଡ଼ଧାପଡ଼, ଅତିଥିସେବା, ମହାପ୍ରସାଦସେବା କରିଥିଲି । ଏପରିକି, ସମ୍ମିଳନୀର ମାର୍କାମରା ବକ୍ତୃତାମାନଙ୍କରେ ମଧ ମୋର କାରିଗରି ଥିଲା । ଏ ସବୁ ମୋର ମନଗଢ଼ା ସାର୍ଟିଫିକଟ୍ ନୁହେ । ସମ୍ମିଳନୀର 'ଉପଦେଷ୍ଟା, ଅନୁମନ୍ତା, ଭର୍ତ୍ତା, ଭୋକ୍ତା' ବିବ୍ ବଜାରରେ, ସମ୍ମିଳନୀର କାର୍ଯ୍ୟନିର୍ବାହିକା-ସମିତିରେ, ବଡ଼ ବଡ଼ ହାକିମଙ୍କ ପାଖରେ

---

* ଏଠାରେ ଶ୍ରୀ ମଧୁସୂଦନ ଦାସଙ୍କୁ ଗୁରୁ ସମ୍ବୋଧନ କରାଯାଇଛି ।

ମୋ ପରି ନଗଣ୍ୟ ଲୋକକୁ ତାଙ୍କର 'ଚେଲା' ବୋଲି ଘୋଷଣା କରିବାକୁ କୁଣ୍ଠିତ ହୋଇ ନ ଥିଲେ ।

ଯେଉଁ ସମ୍ମିଳନୀର ମୁଁ ଏଡ଼େ ମାର୍କାମରା ଭକ୍ତ ଥିଲି, ଏ ଚଉଦ ବର୍ଷରେ ମୋର ଭକ୍ତି ଏପରି ପାଣି ଫାଟିଗଲା କାହିଁକି ? ସ୍ୱତଃ ଏ ପ୍ରଶ୍ନଟି ପାଠକଙ୍କ ମନରେ ଉଦୟ ହେବ । ଏହି ପ୍ରଶ୍ନ ମଧ ଖୋଦ ଗୁରୁଦେବଙ୍କ ମନରେ ଉଦୟ ହୋଇଥିଲା ଓ ସେ ଏଥିପାଇଁ ମତେ କୈଫିୟତ୍ ମାଗିଥିଲେ । ମୁଁ ମଧ ଏଥିର ଟାଇପ୍ ମୁଦ୍ରିତ କୈଫିୟତ୍ ଦେଇଥିଲି ଓ ଆବଶ୍ୟକ ହେଲେ ତାହା ସର୍ବସାଧାରଣରେ ପ୍ରକାଶ କରିବି ବୋଲି ଅନୁମତି ମାଗିଥିଲି । ସେ ଖଣ୍ଡିକ ଠିକଣାରେ ପହଞ୍ଚିବାର ସ୍ୱୟଂ ଗୁରୁଦେବଙ୍କର ଓ ତାଙ୍କ ପାର୍ଶ୍ୱଦେବଙ୍କର ଶ୍ରୀହସ୍ତାଙ୍କିତ ନିଦର୍ଶନ ଅଛି । ଗତ ସମ୍ମିଳନୀ ଅଧିବେଶନର କେତେକ ଦିନ ପୂର୍ବେ ଏ ଘଟନା ଘଟିଥିଲା । କିନ୍ତୁ ସମ୍ମିଳନୀର ଅଧିବେଶନ ସମୟରେ ସମ୍ମିଳନୀର କାର୍ଯ୍ୟାବଳୀ ଓ ଚାଳନ ପ୍ରଣାଳୀ ସମ୍ବନ୍ଧରେ ମୁଁ ଯାହା ଲୋକମୁଖାତ୍ ଅବଗତ ହେଲି, ସେଥିରୁ ଦେଖିଲି ଯେ, ମୋ କୈଫିୟତ୍ ଅରଣ୍ୟ ରୋଦନରେ ପରିଣତ ହୋଇଅଛି । ଅର୍ଥାତ୍ ସମ୍ମିଳନୀର କାର୍ଯ୍ୟକଳାପ ମଧରେ ଅସଂଯମ, ଅନିୟମ, ବ୍ୟକ୍ତିଗତ ଖିଆଲ, ଅସାମଞ୍ଜସ୍ୟ ଆଦି ପୂର୍ବ ପରି ରହିଅଛି । ସମ୍ମିଳନୀର ବିଧାତାଙ୍କଠାରୁ ନିରସ୍ତ ହେବାରୁ ଅଗତ୍ୟା 'ଆମ ଘରର ହାଲଚାଲ' ପ୍ରସଙ୍ଗରେ ମୋର ସେହି ଆକ୍ଷେପଗୁଡ଼ିକ ପ୍ରକାଶ କରିଥିଲି ମାତ୍ର । ଫଳତଃ ଯାହା ପତ୍ରିକାସ୍ଥ ହୋଇଅଛି, ସେଥିନିମନ୍ତେ ମୁଁ ଏବଂ ମୁଁ ଏକା ଦାୟୀ ଅଟେ ।

ଆମ ଜାତିର ସମ୍ମିଳନୀ ସମ୍ବନ୍ଧରେ ଅଳ୍ପ ବହୁତ ସମାଲୋଚନା କରିବାର ଜାତିର ପ୍ରତ୍ୟେକ ବ୍ୟକ୍ତିର ଅଧିକାର ଅଛି, ମୋର ମଧ ଅଛି । ମନୁଷ୍ୟ ସ୍ୱତଃ ଭ୍ରମ-ପ୍ରମାଦପୂର୍ଣ୍ଣ, ମୁଁ ମଧ ସେଥିରୁ ବାହାର ନୁହେଁ । ଏପରି ମହାପୁରୁଷ ଥାଇପାରନ୍ତି, ଯେଉଁମାନେ ସ୍ୱତଃ ଭ୍ରମ-ପ୍ରମାଦଶୂନ୍ୟ କିମ୍ବା ଆପଣାକୁ ଭ୍ରମ-ପ୍ରମାଦଶୂନ୍ୟ ବୋଲି ମନେ କରନ୍ତି ଓ ବଜାରରେ ଡେଙ୍ଗୁରା ଦେଇ ବୁଲନ୍ତି; କିନ୍ତୁ ସେମାନେ ଯେତେବେଳେ ଦାଣ୍ଡକୁ ବାହାରି ପଡ଼ନ୍ତି, ସେତେବେଳେ ତାଙ୍କର ଦାଣ୍ଡର କ୍ରିୟାକଳାପକୁ ଆଲୋଚନା କରିବାର ଅଧିକାର ଦାଣ୍ଡ ଲୋକଙ୍କଠାରେ ପ୍ରବର୍ତ୍ତିଥାଏ ବୋଲି ତାଙ୍କର ଜାଣିରଖିବା ଉଚିତ । ଦାଣ୍ଡକୁ ସାଜ ନେଇ ବାହାରିବା, ଅଥଚ ଦାଣ୍ଡରେ କେହି ଆମ ସାଜସଜ୍ଜାର ଆଲୋଚନା କରିପାରିବେ ନାହିଁ, ଏପରି ଗୋଟିଏ ଫଏସଲା ଦାଣ୍ଡ ଲୋକଙ୍କୁ ଅଡୁଆ ବୋଧହୁଏ । ମୋର ସମାଲୋଚନାରେ ଭ୍ରମ-ପ୍ରମାଦ ନାହିଁ, ଏ କଥା କହିବାର ଦୁରାକାଂକ୍ଷା ମୋର ନାହିଁ; କିନ୍ତୁ ଭୁଲ ଭ୍ରାନ୍ତି କେଉଁଠାରେ, ତାହା ମୁଁ ଜାଣିବାପାଇଁ ଅବଶ୍ୟ ଅଧିକାରୀ ଅଟେ । ଆଜିପର୍ଯ୍ୟନ୍ତ ମୋ 'ହାଲଚାଲ'ର ଯେତେଗୁଡ଼ିଏ ସମାଲୋଚନା ପ୍ରକାଶିତ ହୋଇଅଛି, ସେଥିରେ ଉତ୍କଳ-ସମ୍ମିଳନୀର କାର୍ଯ୍ୟକଳାପ ସମ୍ବନ୍ଧରେ ମୁଁ ଯେଉଁ ସମାଲୋଚନା କରିଅଛି, ତାହାର ପ୍ରତିବାଦ କେହି କରି ନାହାନ୍ତି । ମୋ ଲେଖା 'ବଜାରୀ ଲେଖା', 'ଅଶ୍ଳୀଳ ଲେଖା', 'ଅପବାଦସୂଚକ ଲେଖା' ବୋଲି ଉଦ୍‌ଘୋଷିତ ହୋଇଅଛି । ଏପରି ମନ୍ତବ୍ୟ ଦ୍ୱାରା ଦାଣ୍ଡ ଲୋକଙ୍କ ଆଖିରେ

ଧୂଳି ପଡ଼ିପାରେ, କିନ୍ତୁ ଯେଉଁମାନଙ୍କ ବିରୋଧରେ ମୁଁ ଅଭିଯୋଗ କରିଅଛି, ସେମାନଙ୍କର ନିଜର ମନ ବୋଧ ହେବଟି କି ? ଗୋଟିଏ ଚଳିତ ଢଗ ଅଛି - 'କଥା କହୁଥାଏ ସରମକୁ, ଭିତରେ ଭିତରେ ଯାହା ହେଉଥାଏ ସାକ୍ଷୀ ଦେଇଥାଏ ଧରମକୁ ।' ସମ୍ମିଳନୀର କାର୍ଯ୍ୟକଳାପ ସମ୍ବନ୍ଧରେ ମୁଁ ଯାହା ଆଲୋଚନା କରିଅଛି, ତାହା ହୁଏତ ଭୁଲ, ନଚେତ୍ ଠିକ୍ ଯେବେ ଭୁଲ, ତେବେ ମତେ ମୋ ଭ୍ରାନ୍ତି ଦେଖାଇ ଦିଅ, ବୁଝାଇ ଦିଅ, ମୁଁ ନ ବୁଝିଲେ ସଂସାର ମତେ କହିବ 'ବଜାରୀ' 'ଛୋଟଲୋକ' । ନଚେତ୍ ଯେବେ ମୋ କଥାଯାକ ଠିକ୍ ହୋଇଥାଏ, ତେବେ ସମ୍ମିଳନୀର ଆଲୋଚିତ କାର୍ଯ୍ୟ ପ୍ରଣାଳୀ ସଂଶୋଧନ କର । ଏହା ନ କରି ମତେ ଫଉଜଦାରୀ ଦେବାନୀ ଧମକ ଦେବା ଦ୍ୱାରା ତୁମ ମନ ଓରମାନ ଓ ମୁହଁ-ଗଲୁ ସିନା ମେଣ୍ଟିବ, କିନ୍ତୁ ଜାତି ଉନ୍ନତ ହେବ ନାହିଁ ! କାହିଁ, ସେତକ କରିବାର ଲକ୍ଷଣ ତ କୁଆଡ଼େ କିଛି ଦିଶୁ ନାହିଁ । କେବଳ ମୋ ଲେଖା ଭିତରେ କେଉଁଠି କି ଛିଦ୍ର ଅଛି; କେଉଁ କଥା ପଦକରେ ମୁଁ ଜବଦ ହେବି, ଅଣ୍ଡଳା ଲାଗିଅଛି । ସେଥିରେ ଭଲା କାହାର କି ଉପକାରଟା ହେବ ?

ସମ୍ମିଳନୀରେ ମାତୃପୂଜା ମଣ୍ଡପରେ ସହସ୍ର ଭ୍ରାତାଙ୍କ ଆଗରେ, କେତେକ ଭଦ୍ରମହିଳାଙ୍କ ଆଗରେ କେହି ବିଶିଷ୍ଟ ବକ୍ତା ଜଳଦ ଗମ୍ଭୀରନାଦରେ ବ୍ରୁଂ ବ୍ରୁଂ ଶବ୍ଦ ଉଚ୍ଚାରଣ କରି 'ଶଙ୍କରସ୍ୟାବଲୋକନଂ' ବାକ୍ୟାନ୍ତ ଶାସ୍ତ୍ରୀୟ ଶ୍ଳୋକଟି ଆବୃତ୍ତି କଲେ । ଏହା ଶୁଣି ସଭାମଣ୍ଡପ କରତାଳିରେ ପୂର୍ଣ୍ଣ ହୋଇଗଲା । ଯେଉଁମାନେ ବକ୍ତାଙ୍କ ମୁଖରୁ ଏ ଶ୍ଳୋକଟି ଉଚ୍ଚାରିତ ହେବାର ଶୁଣି ଆସି ମତେ କହିଲେ, ସେହିମାନଙ୍କ ରିପୋର୍ଟ ଉପରେ ନିର୍ଭର କରି ମୁଁ ଏ ଅଶ୍ଳୀଳତାର ପ୍ରତିବାଦ କଲି ଓ ମାତୃପୂଜା ମଣ୍ଡପରେ ଏପରି ଅକଥ୍ୟ କଥନ ଯେଉଁ ଶକ୍ତି କରାଇଲା, ତାକୁ ପ୍ରମାଣ କଲି । ଏଥିରେ ମୁଁ ହେଲି ଦୋଷୀ ! ଏଥିପାଇଁ 'ଗରିବ ମାଇପ' ଉପରେ ସମସ୍ତଙ୍କର ରଗଡ଼ । ଯେଉଁ ମାଜିଷ୍ଟ୍ରେଟ ଏହି ଅଶ୍ଳୀଳତା ଅପରାଧ ଯୋଗୁଁ ମତେ ଅଭିଯୋଗ (charge) କରିବେ, ଫଉଜଦାରୀ ଆଇନର ବିଧାନ ଅନୁସାରେ ସେ ତ ଅଭିଯୋଗ ଫର୍ଦ୍ଦରେ (Chargesheet) ମୋ ବ୍ୟବହୃତ 'ଅଶ୍ଳୀଳ' କଥାଗୁଡ଼ିକ ଉଲ୍ଲେଖ କରିବାକୁ ବାଧ ହେବେ । ଏଥିଯୋଗୁଁ ଉକ୍ତ ମାଜିଷ୍ଟ୍ରେଟ ମଧ୍ୟ ସେ ଅପରାଧରେ ଅପରାଧୀ ନ ହେବେ କିଆଁ ? ଆଚ୍ଛା, ଯେଉଁମାନେ ମତେ ଫଉଜଦାରୀ ଅପରାଧରେ ଟାଣିବାକୁ ଗର୍ଜନ, ରଡ଼ି କରୁଅଛନ୍ତି, ସେମାନେ କଣ ଏତକ ବୁଝିପାରୁ ନାହାନ୍ତି ? ପୁଣି କେହି କେହି ନେତୃସ୍ଥାନୀୟ ବ୍ୟକ୍ତି କହୁଅଛନ୍ତି ଯେ, ସମ୍ମିଳନୀ ମଣ୍ଡପରେ ଏପରି ବାକ୍ୟ କେହି ବକ୍ତା କହି ନାହାନ୍ତି ! ଯେଉଁ ଯୁକ୍ତିରେ ଏଡ଼େ ନୈତିକ ଉଚ୍ଚତା ପ୍ରଚ୍ଛନ୍ନ, ସେ ଯୁକ୍ତିକୁ ମଧ୍ୟ ଶତ ଶତ ନମସ୍କାର ଓ ଯେଉଁ ଶକ୍ତିର ଭୁରୁଡ଼ ଏତେ ଦୂର, ସେ ଶକ୍ତିକୁ ନମସ୍କାର ।

ମୋ ବିରୋଧରେ ଦ୍ୱିତୀୟ ଅଭିଯୋଗ ଏହି ଯେ 'ନେତାମାନଙ୍କ ତେଲ ଲୁଣ ଖରଚ ଜାତୀୟ ପାଣ୍ଠି ଦ୍ୱାରା ଚଳିବ ।' ଏଡ଼େ ବଡ଼ ମାନହାନିକର କଥାଟାଏ ମୁଁ କହି

ଦେଲି ଏବଂ ସେଥିପାଇଁ ପୁଳାଏ ଖେସରା ମୋ ଠାରୁ ଆଦାୟ ହେବ । ଯେଉଁ ଜାତିର ଲୋକସଂଖ୍ୟା ଅଙ୍କ ବହୁତ କୋଟିଏ, ଡେଙ୍ଗୁରା ଦିଆ ହୋଇ ସୁଦ୍ଧା ମାତୃପୂଜା ମଣ୍ଡପରେ ସେ ଜାତିର ଜାତୀୟ ପାଣ୍ଠି ପାଇଁ ଶହେଖଣ୍ଡେ ଟଙ୍କା ଉଠିଲା, ଏଥିରେ ଭଲା କେହି ସ୍ୱପ୍ନରେ କୌଣସି ଜାତୀୟ ଉନ୍ନତିକର ଅନୁଷ୍ଠାନର ବ୍ୟୟ ଚଳାଇପାରିବ ? ସେ କଥା ଦୂରକୁ ଥାଉ, ଏଥିରେ ନେତାମାନଙ୍କର ତେଲଲୁଣ (ଅତି ସାମାନ୍ୟ) ଖରଚ ସୁଦ୍ଧା ଚଳିବ ନାହିଁ । ଯାହା କେତେଜଣଙ୍କର ଅତି ସାମାନ୍ୟ ନିତ୍ୟନୈମିତ୍ତିକ ତେଲଲୁଣ ଖରଚ ଚଳାଇବା ନିମନ୍ତେ ସୁଦ୍ଧା ଯଥେଷ୍ଟ ନୁହେଁ, ସେଥିରେ ଜାତୀୟ ପାଣ୍ଠି ଗଢ଼ିବା ବାତୁଳତା ନୁହେଁ ଆଉ କଣ ? ତା'ପରେ ଦେଖା ଯାଇଅଛି ଯେ, ସମ୍ମିଳନୀ ପାଇଁ ଚାନ୍ଦା ଆଦାୟ ହେବା ଆରମ୍ଭଠାରୁ ଆଜି ପର୍ଯ୍ୟନ୍ତ କୌଣସି ଧାରାବାହିକ ହିସାବ ସାଧାରଣରେ ପ୍ରକାଶିତ ହୋଇ ନାହିଁ । ସମ୍ମିଳନୀର ଅଧିବେଶନମାନଙ୍କର ଅତିଥି ପରିଚର୍ଯ୍ୟା, ପ୍ରଚାର ଆଦି ଖରଚ କାହୁଁ ଅଇଲା ? କିଏ ଦେଲା ? କିଏ ନେଲା ? କାହା ପାଖରେ କେତେ ତହବିଲ ରହିଲା ? ଏ କଥା ସମ୍ମିଳନୀର କେହି ନେତା ସାଧାରଣଙ୍କୁ ସନ୍ତୋଷଜନକ ରୂପେ ବୁଝାଇ ଦେଇପାରିବେ କି ? ଜଣେ ତାଙ୍କ ନିଜ ତହବିଲରୁ ସବୁ ଖରଚ କଲେ ଓ ତହିଁର କିଛି ହିସାବ ସାଧାରଣରେ ପ୍ରକାଶିତ ନ ହେଲା - ଏହା କୌଣସି ଜାତୀୟ ଅନୁଷ୍ଠାନ ପକ୍ଷରେ କିମ୍ବା କୌଣସି ଜାତି ପକ୍ଷରେ ଗୋଟାଏ ଭାରି ବାହାଦୁରି କଥା ନୁହେଁ । ଏପରି ଅବସ୍ଥାରେ ଜାତୀୟ ପାଣ୍ଠି ରହିବ କାହାଠାରେ ? ଖରଚ ହେବ କେଉଁ ପ୍ରକାରରେ ? ହିସାବ ରଖିବ କିଏ ? ପରିଚାଳିତ ହେବ କେଉଁ ନିୟମରେ ? ଏ ସବୁ କଥା ସ୍ଥିର ନ ହେଉଣୁ ଯେବେ ସମ୍ମିଳନୀ ମଣ୍ଡପରେ ଭିକ୍ଷା ଥାଳ ବସି ଶହେ ଖଣ୍ଡେ ଟଙ୍କା ଉଠିଲା, ଏହା ଦେଖି ଯେବେ କେହି ପଚାରେ, ଏ ଟଙ୍କାତକ ଉଠିଲା କାହିଁକି ? ବଡ଼ମୁଣ୍ଡିଆମାନଙ୍କ ତେଲ ଲୁଣ ଖରଚ ପାଇଁ ? ନା ଜାତୀୟ ଅନୁଷ୍ଠାନ ପାଇଁ - ଏଥିରେ ସେ ବିଚାରା ହେଲା ଅପରାଧୀ !

ମୋ ଲେଖା ବିରୋଧରେ ପ୍ରକାଶ୍ୟ ଅଭିଯୋଗ ଏହି ଦିଓଟି । ଏହା ଛଡ଼ା ଅପ୍ରକାଶ୍ୟ ଅଭିଯୋଗ ମଧ୍ୟ ଅଛି । ଯଥା - ଯେଉଁ ଉତ୍କଳ-ଲଳନାମାନେ ଗତ ଥର ସମ୍ମିଳନୀ ସଭାରେ ଯୋଗ ଦେଇଥିଲେ ଓ ଯେଉଁମାନଙ୍କ ମଧ୍ୟରୁ କେତେକ ସମ୍ମିଳନୀ ମଣ୍ଡପରେ ପରଦା ପଛଆଡ଼େ ଓ କେତେକ ପରଦା ବାହାରେ ସ୍ଥାନ ପାଇଥିଲେ, ସେମାନଙ୍କ ପ୍ରତି ମୁଁ ଯେଉଁ ଭାଷା ମୋ ପ୍ରବନ୍ଧରେ ବ୍ୟବହାର କରିଅଛି, ତଦ୍ଦ୍ୱାରା ସେମାନଙ୍କୁ ତଥା ସେମାନଙ୍କର ଅଭିଭାବକମାନଙ୍କୁ ଅପମାନ କରାଯାଇଅଛି । ନିର୍ଦ୍ଦୋଷ ବ୍ୟକ୍ତିମାନଙ୍କ ପ୍ରତି, ନିର୍ବଳା ଅବଳାଙ୍କ ପ୍ରତି ମୁଁ ଯେବେ ଅପମାନସୂଚକ ବାକ୍ୟ ବ୍ୟବହାର କରିଥାଏଁ, ତାହା ମୁଁ ପ୍ରତ୍ୟାହାର କରିବାକୁ ପ୍ରସ୍ତୁତ ଅଛି; କିନ୍ତୁ ଯେଉଁ ବାକ୍ୟଦ୍ୱାରା ଅପମାନ ପ୍ରକାଶ ପାଉଅଛି, ତାହା ନ ଜାଣିବା ପର୍ଯ୍ୟନ୍ତ ମୁଁ ପ୍ରତ୍ୟାହାର କରିବି କଣ ? କେଉଁଠାରେ ଭାଷା ପ୍ରୟୋଗ ଦୋଷାବହ ହୋଇଅଛି, ତାହା ମୁଁ ଜାଣିପାରିଲେ ଅବଶ୍ୟ ସେଥିପାଇଁ ମୁଁ ଦୁଃଖ ପ୍ରକାଶ କରିବାକୁ ପ୍ରସ୍ତୁତ ଅଛି ।

ଏଥି ମଧ୍ୟରେ ସମ୍ମିଳନୀର ମୁଖପତ୍ର 'ଓଡ଼ିଆ' ମୋର ଓ ବିଶେଷତଃ ଉତ୍କଳ ସାହିତ୍ୟ ସମ୍ପାଦକଙ୍କର ବ୍ୟକ୍ତିଗତ ଓ ବ୍ୟବସାୟଗତ ପ୍ରତିଷ୍ଠାକୁ ଖର୍ବ କରିବା ନିମନ୍ତେ ଖୁବ୍ ବେଗ ପାଇଥିଲେ ଓ ଏ ଉଦ୍ଦେଶ୍ୟରେ ଗଭର୍ଣ୍ଣମେଣ୍ଟ, ସ୍ଥାନୀୟ କର୍ତ୍ତୃପକ୍ଷ ସାହିତ୍ୟର ଅନ୍ନଦାତା (ଗ୍ରାହକମଣ୍ଡଳୀ)ଙ୍କୁ ମଧ୍ୟ ଧର୍ମଡାକ ଦେଇଥିଲେ; କାହିଁରେ କିଛି ନ ହେଲେ ବହୁ ସହସ୍ର ମୁଦ୍ରା କ୍ଷତି ପୂରଣ ଦାବିରେ ଦେବାନି ଅଦାଲତରେ ମକଦ୍ଦମା ହେବ ବୋଲି ମଧ୍ୟ ରଡ଼ି ପଡ଼ିଥିବାର ମୁଁ ଶୁଣିଲି । ସାହିତ୍ୟର ସମ୍ପାଦକଙ୍କ ମନ କଥା ତାଙ୍କୁ ଜଣା; କିନ୍ତୁ ଏହି ସଂକୀର୍ତ୍ତନ ରଡ଼ି ଦ୍ୱାରା ମୋ ଭଳିଆ ଜଣେ ନଗଣ୍ୟ ଓ ଅଖ୍ୟାତନାମା ଲୋକର ନାମ ସମଗ୍ର ଉତ୍କଳରେ ବାଜିଗଲା ବୋଲି ମୁଁ ଭାରି ଆନନ୍ଦିତ ହୋଇଅଛି । ସମଗ୍ର ଉତ୍କଳରେ ମୋର ନାମ, ପରିଚୟ ଓ ପ୍ରତିପତ୍ତି ବଢ଼ାଇଥିବା ଯୋଗୁଁ ମୁଁ 'ଓଡ଼ିଆ'ର ସମ୍ପାଦକ, 'ଉତ୍କଳ ଦୀପିକା'ର ସମ୍ପାଦକ ଓ ସମ୍ମିଳନୀର ଦୈବ ବିଧାତାମାନଙ୍କର ନିକଟରେ ଚିର କୃତଜ୍ଞତା ପାଶରେ ଆବଦ୍ଧ ରହିଲି । ବାଟରେ 'ଦୁଇ' କଲେ ନାଆଁ ପଡ଼େ ବୋଲି ଶୁଣିଥିଲି; କିନ୍ତୁ ବର୍ତ୍ତମାନ ଦେଖିଲି ଯେ, ଦିଅଁଙ୍କ ଖଟୁଲିକୁ ଟେକା ମାଇଲେ ବେଶ୍ ନାଆଁ ପଡ଼େ । ଅତଏବ ଦିଅଁଙ୍କ କରାମତକୁ ଜୁହାର ।

ସଂସାରରେ 'ପରୋପଦେଶେ ପାଣ୍ଡିତ୍ୟଂ' ସମସ୍ତଙ୍କର ଥାଏ । କିନ୍ତୁ ଆପଣା ଉପରେ ପଡ଼ିଲା ବେଳକୁ ସମସ୍ତଙ୍କର ବୁଦ୍ଧି ହଜେ । ଆଇନର ବିଧାନ ସମସ୍ତଙ୍କପାଇଁ ସମାନ । ସାଧାରଣ ଲୋକେ ଆଇନର ମର୍ମ ବୁଝି ନ ପାରି ଅକଳରେ ପଡ଼ିଯିବେ ବୋଲି ସରକାର ଓକିଲ ମୁକ୍ତାର ବାରିଷ୍ଟରମାନଙ୍କୁ ଭେକ ଓ ଝୁଲା ଦେଇ ମାର୍କାମରାଇ ଦାଣ୍ଡରେ ଠିଆ କରାଇ ଅଛନ୍ତି । ଆମେ ଆଇନ ବ୍ୟବସାୟୀମାନେ ହେଲୁ 'ପରୋପଦେଶେ ପଣ୍ଡିତ' । ଆମେ 'ବତାଇ ଦେଉଁ ପରକୁ, ବୁଦ୍ଧି ନ ଆସେ ଘରକୁ !' ମୋ ଲେଖାରୁ ଗୋଟିଏ ଶବ୍ଦ, ବାକ୍ୟକୁ ତର୍ଜମା କରି ମିସଲରେ ପକାଇ ଦେବା ମାତ୍ରକେ ହାକିମ ଖଡ଼େଦମ ମତେ ବତିଶ ବଖରା କିମ୍ବା ଦେବାନି ଫାଟକକୁ ପଛବୁହା କରି ପେଲି ଦେବେ ନାହିଁ । ସେଠାରେ ବିବ୍ ଅଦାଲତରେ ଦୋତରଫା ବିଚାର ହେବ । ସାକ୍ଷୀ ନିଆଯିବ, ପ୍ରମାଣ ନିଆଯିବ, ମୋର ସମସ୍ତ ପ୍ରବନ୍ଧ ତର୍ଜମା ହେବ, ମୋର ଏ ସମ୍ବନ୍ଧରେ ପୂର୍ବ କାର୍ଯ୍ୟ ଓ ଉକ୍ତିମାନ ଉପସ୍ଥାପିତ ହେବ, ତୁମର ପୂର୍ବର କ୍ରିୟାକଳାପ ଉପସ୍ଥାପିତ ହେବ, ମୋର ଉଦ୍ଦେଶ୍ୟ, ମୋ ଅଭିଯୋଗର ସତ୍ୟତା, ଏ ସବୁ ମଧ୍ୟ ଅଦାଲତରେ ସମାଲୋଚିତ ହେବ । ମୋ ଠାରେ ବାଟିଆ ଲଗାଇଲା ବେଳକୁ କେତେ ଲୋକଙ୍କ ବାଡ଼ିଆଡ଼ ଖତକୁଢ଼ ଓ ଦାଣ୍ଡଆଡ଼ ଅଳିଆଗଦା ଘଣ୍ଟାଚକଟା ହେବ । ତେବେ ଯାଇ ମୁଁ ବତିଶ-ବଖରାକୁ ପହଣ୍ଡି ବିଜେ କରିବି । ଏ ସବୁ ନ ହୋଇ ତୁମ ରଡ଼ିରେ ମତେ ଏକତରଫା ବିଚାରରେ ଶୂଳିଆପଦାକୁ ଝିଙ୍କାଓଟରା ହେବ ନାହିଁ । ଏତେ କଥା ପରେ ଯେବେ ମୁଁ ଦଣ୍ଡ ପାଇବି, ତେବେ ଘଣା ପେଲିଲେ ସୁଦ୍ଧା ମୋ ମନରେ ଶାନ୍ତି ହେବ ଯେ, ସମ୍ମିଳନୀର ତ୍ରୁଟି ପ୍ରତି ପରିଚାଳକମାନଙ୍କର ଓ ସାଧାରଣଙ୍କର ଦୃଷ୍ଟି ଆକର୍ଷଣ କରି ଦଣ୍ଡ ପାଇଲି । ତେବେ

ଗୋଟାଏ ପ୍ରତିଜ୍ଞାକୁ ମୋର ଜବାବ ନାହିଁ । ଆମ ଦେଶରେ 'ସତ୍ୟବାଦୀ'ର ଅର୍ଥ 'ସତ୍ୟଂ ବ୍ରୂୟାଦ୍ ପ୍ରିୟଂ ବ୍ରୂୟାଦ୍, ମାବ୍ରୂୟାଦ୍ ସତ୍ୟମପ୍ରିୟଂ ।' 'ସତ୍ୟଟି ଅପ୍ରିୟ ହେଲେ ତାହା କଦାପି ପ୍ରକାଶ କରିବା ନାହିଁ ।' ଯେବେ ଉକ୍ତ ପ୍ରତିଜ୍ଞାର ଏହି ଅର୍ଥ ହୁଏ, ତେବେ ମୁଁ ନାଚାର । କିନ୍ତୁ ମୋର ମଧ କହିବାର ଏତିକି ଯେ, ସତ୍ୟକୁ ଅପ୍ରିୟ ନ କରି ଯେବେ ତୁନିକରି କହିପାରିବ, ତେବେ ଉତ୍ତମ । ଯେଉଁଠାରେ ତାହା ହୋଇ ନ ପାରିବ, ସେଠାରେ ସମାଜର ଓ ଦେଶର ମଙ୍ଗଳ କାମନାରେ ଅପ୍ରିୟ ହେଲେ ସୁଦ୍ଧା ସତ୍ୟ କଥା ସାଧାରଣରେ ପ୍ରକାଶ କରିବାକୁ ମନୁଷ୍ୟ ଧର୍ମତଃ ସମାଜ ଓ ଦେଶ ନିକଟରେ ଦାୟୀ । ମୋଠାରୁ ଏସବୁ କୈଫିୟଦ୍ ଶୁଣିସାରି ତା ପରେ ମୋ ସଙ୍ଗେ, ମୋ ଜାତି ସଙ୍ଗେ ଅବୈବାହିକ ମୌଖିକ ସମ୍ବନ୍ଧ ସ୍ଥାପନ କର, ମନା ନାହିଁ ।

କେହି କେହି ବନ୍ଧୁ ଇତିମଧ୍ୟରେ ମୋ ନିକଟରେ ପରୋକ୍ଷ ଭାବରେ ପ୍ରସ୍ତାବ କରିଅଛନ୍ତି (ଏ ପ୍ରସ୍ତାବଟା ଅବଶ୍ୟ ମୋର ମଙ୍ଗଳ କାମନାରେ କରାଯାଇଅଛି) ଯେ, ମୁଁ ମୋର ବେଆଡ଼ା ସମାଲୋଚନା ପାଇଁ କ୍ଷମା ପ୍ରାର୍ଥନା କରିଦେଲେ ସବୁ ନଟ ଛିଣ୍ଡିଯିବ । ଏଥିରେ ଟିକିଏ ବିଶ୍ଳେଷଣ ଦରକାର । ପ୍ରଥମ କଥା ଏହି ଯେ, ମୁଁ କ୍ଷମାପ୍ରାର୍ଥନା କରିବି କାହାଠାରେ ? ସମ୍ମିଳନୀ ଗୋଟିଏ Public Performance ବା ସାଧାରଣ କାର୍ଯ୍ୟ, ଏହା କାହାର ବ୍ୟକ୍ତିଗତ ସମ୍ପତ୍ତି ନୁହେଁ । ଏଥିରେ ବ୍ୟକ୍ତିଗତ ଖିଆଲ, ବ୍ୟକ୍ତିଗତ ପ୍ରାଧାନ୍ୟ, ବ୍ୟକ୍ତିଗତ ପରିଚାଳନାର ମାତ୍ରା ଅତ୍ୟଧିକ ହୋଇ ପଡ଼ିଅଛି - ଏହା ମୋର ମନଗଢ଼ା ବା ସ୍ୱପ୍ନର କଥା ନୁହେଁ, ଉତ୍କଳର ଅନେକ ବ୍ୟକ୍ତି ଏ କଥା ଅନୁଭବ କରିଅଛନ୍ତି ଓ କେତେକ ବ୍ୟକ୍ତି ମଧ ସଂବାଦପତ୍ରରେ ଏକାଧିକ ଥର ପ୍ରକାଶ କରିଅଛନ୍ତି । ଏପରି ସ୍ଥଳରେ ମୁଁ ଯେବେ ସେଗୁଡ଼ାକ ପ୍ରତି କଟାକ୍ଷ କଲି ଓ ସମ୍ମିଳନୀ ବର୍ତ୍ତମାନ ଯେଉଁ ରୀତିରେ ପରିଚାଳିତ ହେଉଅଛି, ତାହା ପରିବର୍ଜନୀୟ ବୋଲି ପ୍ରକାଶ କଲି ଓ ଏଥିରେ ଯେବେ ବ୍ୟକ୍ତିବିଶେଷ କ୍ଷୁଣ୍ଣ ହେଲେ ବା ଚିଡ଼ିଗଲେ, ତେବେ ମୁଁ କ୍ଷମା ପ୍ରାର୍ଥନା କରିବି କାହାଠାରେ ? ଏ କ୍ଷମା ପ୍ରାର୍ଥନା ପ୍ରସ୍ତାବ ମଧ ମୁଁ ଗ୍ରହଣ କରିବାକୁ ରାଜି ଅଛି, କିନ୍ତୁ ତାହା କରିବା ପୂର୍ବରୁ ବିବ୍ ବଜାରରେ ପ୍ରକାଶ୍ୟ ଭାବରେ ମୋର ଦୋଷ, ମୋର ତ୍ରୁଟି, ମୋର ଭ୍ରମ ମତେ ଦେଖାଇ ଦିଅ ଓ କାହାକୁ କ୍ଷମା ପ୍ରାର୍ଥନା କରିବି ମତେ ବତାଇ ଦିଅ । କିନ୍ତୁ ତାହା ନ କରି ମାଇପି ଧମକ ଦେଇ ଯେବେ କହିବ, ''ତୁ ମତେ ଗାଳି ମନ୍ଦ କରୁଛୁ, ମୁଁ ଗମ୍ଭୀରି ଘରେ କବାଟ କିଳି ଶୋଇବି, ମୁଁ ଓପାସ ରହିବି, ମୁଁ ଘରଦ୍ୱାର ପିଲାପିଲି ଛାଡ଼ି ପଳାଇଯିବି, ମୁଁ ତିଅଣ ଅଲଣା କରିଦେବି, ମୁଁ ତତେ ଚୁମୁଟି ଦେବି, ତୁ ମୋ ହାତ ଗୋଡ଼ ନ ଧଇଲେ ମୁଁ ଏ ଘର ସମ୍ଭାଳିବି ନାହିଁ'', ଏ ଯୁକ୍ତିକୁ ଜୁହାର !

ଏଥି ଉପରେ ପୁଣି ବ୍ୟକ୍ତିଗତ ଆକ୍ରୋଶ କଥା ମଧ କେହି କେହି ଉଠାଇବାକୁ ଛାଡୁ ନାହାନ୍ତି । ଅବଶ୍ୟ କାହା ତୁଣ୍ଡରେ କେହି ବାଡ଼ ବତା ହେବ ନାହିଁ । କିଛି ଅନୁମାନ ବା କଳ୍ପନାଟାକୁ ଏତେ ଦୂର ଦଉଡ଼ାଇବାର କାରଣ କେହି ଦେଇପାରିବେ କି ? ମୁଁ କେଉଁ

ବ୍ୟକ୍ତିବିଶେଷଙ୍କ ପ୍ରତି କି ଆକ୍ରୋଶ ପ୍ରକାଶ କରିଅଛି, କେହି ଦେଖାଇ ଦେଇପାରିବେ କି ? ଅନୁଷ୍ଠାନଗୁଡ଼ାକ କିଛି ଶୂନ୍ୟରେ ନିରାଲମ୍ବରେ ଝୁଲୁ ନ ଥାଏ ! ଅନୁଷ୍ଠାନର ସମାଲୋଚନା କରିବାକୁ ଗଲେ ଅନୁଷ୍ଠାତାମାନେ ବାଧ୍ୟ ବଳେ ଆସି ପଡ଼ନ୍ତି । ତାକୁ ଦୋଷ ବୋଲି ଧରିଲେ ସମାଲୋଚନା ଜିନିଷଟାକୁ ମାନବସମାଜରୁ ନିର୍ବାସିତ କରିଦେବାକୁ ହେବ । ଖାଲି 'ଆକ୍ରୋଶ', 'ବିଦ୍ୱେଷ' ବୋଲି କହିଦେଲେ ତ ହେବ ନାହିଁ, ସେଥିପାଇଁ ସାକ୍ଷୀ, ସାବୁଦ୍, ହେତୁ ପ୍ରମାଣ ଆବଶ୍ୟକ ।

ମୋ କଥାଗୁଡ଼ାକ ଥରେ ଧୀରଚିତ୍ତ ସ୍ଥିରବୁଦ୍ଧିରେ ଆଲୋଚନା କରିବାପାଇଁ ଦେଶବାସୀଙ୍କୁ ସବିନୟ ଓ ସନିର୍ବନ୍ଧ ଅନୁରୋଧ କରି ଆଜି ଏହିଠାରେ କ୍ଷାନ୍ତ ହେଲି ।

ଉ.ସା. - / ୨୨ଶ ଭାଗ / ୩ୟ ସଂଖ୍ୟା / ଆଷାଢ଼ / ୧୩୨୬ ସାଲ ।

## ।। ଷୋହଳ ।।

ଉତ୍କଳର ବ୍ୟାସ-ବାଲ୍ମୀକି ଓ ଉତ୍କଳ ସରସ୍ୱତୀଙ୍କ ବରପୁତ୍ର ଫକୀରମୋହନ ସେନାପତି ଇହସଂସାରରୁ ବିଦାୟ ଘେନି ଅମର ଧାମକୁ ଚାଲି ଯାଇଅଛନ୍ତି । ଗତ କେତେକ ବର୍ଷ ମଧ୍ୟରେ ଉତ୍କଳ-ଜନନୀ ଆଧୁନିକ ଉତ୍କଳ-ସାହିତ୍ୟ କ୍ଷେତ୍ରରୁ କେତେଗୁଡ଼ିଏ ରଥୀ ଅର୍ଥାତ୍ ରାଧାନାଥ, ମଧୁସୂଦନ ଓ ଗୌରୀଶଙ୍କରଙ୍କୁ ହରାଇ ସୁଦ୍ଧା ଫକୀରମୋହନଙ୍କ ଯୋଗୁଁ ସେ ଅଭାବ ଦୃଢ଼ରୂପେ ଅନୁଭବ କରି ନ ଥିଲେ । ଆଜି ଫକୀରମୋହନଙ୍କୁ ହରାଇବା ଦ୍ୱାରା ଉତ୍କଳ-ସାହିତ୍ୟାକାଶ ଶୂନ୍ୟ ହୋଇଅଛି ବୋଲିବାକୁ ହେବ । ଚାରିଜଣଙ୍କର ନିଷ୍ପାପର ସାହିତ୍ୟ ସେବା ଓ ସାହିତ୍ୟ କ୍ଷେତ୍ରରେ ସାଧନା ଉତ୍କଳରେ ଦୁର୍ଲଭ । ସାହିତ୍ୟ ଓ ମାତୃଭାଷାର ସେବା କରିବା ବେଳେ ଏମାନେ ସମସ୍ତ ଅଭାବ, ସମସ୍ତ ସାଂସାରିକ ଓ ଶାରୀରିକ ଦୁଃଖ ଓ ବାର୍ଦ୍ଧକ୍ୟର କଷ୍ଟ ଓ ଅସୁବିଧାକୁ ତୁଚ୍ଛ ମଣି ନିଜ ନିଜ ଜୀବନକୁ ସରସ୍ୱତୀଙ୍କ ଆରାଧନାରେ ଉତ୍ସର୍ଗ କରିଥିଲେ । ଆଧୁନିକ ଉତ୍କଳ-ସାହିତ୍ୟ ଯୁଗରେ ଏ ଚାରିଜଣଙ୍କର ସ୍ଥାନ ସ୍ୱତନ୍ତ୍ର ଓ ଅତ୍ୟୁଚ୍ଚ; ଏହା ଉତ୍କଳ-ସାହିତ୍ୟର ଇତିହାସ ଲେଖକ କଳନା କରିବେ । ଉତ୍କଳ ସାହିତ୍ୟର କାବ୍ୟ ଯୁଗ ବା ଉପେନ୍ଦ୍ରଭଞ୍ଜ ଯୁଗର ଏବଂ ଆଧୁନିକ ଯୁଗର ସନ୍ଧିସ୍ଥଳରେ ଏମାନେ ଆବିର୍ଭୂତ ହୋଇ ଅଳଙ୍କାରଜଡ଼ିତ ସାହିତ୍ୟକୁ ସୁରୁଚିପୂର୍ଣ୍ଣ ଓ ସ୍ୱାଭାବିକ ପରିଚ୍ଛଦ ଦ୍ୱାରା ପରିପାଟୀ କରିଯାଇଅଛନ୍ତି । ଉତ୍କଳ ଦୀପିକାର ପରିଚାଳନ ଦ୍ୱାରା ଗୌରୀଶଙ୍କର ଯେଉଁ ଏକନିଷ୍ଠତା ଦେଖାଇ ଯାଇଅଛନ୍ତି ଓ ଆଧୁନିକ ଉତ୍କଳ ଭାଷା ଗଠନ ପକ୍ଷରେ ଯେଉଁ ସାହାଯ୍ୟ କରିଅଛନ୍ତି, ତାହାର ମୂଲ୍ୟ ନିରୂପଣ କରିବା ସହଜ ନୁହେଁ ।

ଉପରୋକ୍ତ ଚାରିଜଣଙ୍କୁ ଆଧୁନିକ ସାହିତ୍ୟ ଓ ଭାଷାକ୍ଷେତ୍ରରୁ ବାଦ ଦେଲେ ଆଧୁନିକ ଉତ୍କଳ-ସାହିତ୍ୟରେ ଗର୍ବ କରିବାର ବସ୍ତୁ ଅତି ଅଳ୍ପ ରହିଯିବ ।

ନବ୍ୟ ଯୁଗର ପୂର୍ବବର୍ତ୍ତୀ ଯୁଗରେ ଉତ୍କଳ ସାହିତ୍ୟର କେବଳମାତ୍ର ସମ୍ବଳ ଥିଲା ପଦ୍ୟ ବା କାବ୍ୟ । ବ୍ରିଟିଶ ଜାତିର ଓଡ଼ିଶା ଅଧିକାର ସଙ୍ଗେ ସଙ୍ଗେ ଓଡ଼ିଶାବାସୀମାନେ ଯେପରି ବିଦେଶୀୟ ଭାବର ସଂସ୍ରବରେ ଆସିଲେ, ସେହିପରି ଉତ୍କଳ ଭାଷା ଓ ସାହିତ୍ୟ ମଧ ବିଦେଶୀୟ ଓ ବିଶେଷତଃ ବଙ୍ଗୀୟ ସାହିତ୍ୟ ଓ ଭାଷାର ସଂସ୍ରବରେ ଆସି ପୁଲାଭ କରିବାକୁ ଲାଗିଲା । ଯେହେଉ, ଏ ସବୁ ବିଷୟ ଆଲୋଚନା କରିବା ସାହିତ୍ୟର ଇତିହାସ ଲେଖକଙ୍କର ସୀମା । ସେ ସୀମା ମଧକୁ ପ୍ରବେଶ କରିବାପାଇଁ ମୋର ବିଦ୍ୟା, ବୁଦ୍ଧି ଓ ଶକ୍ତି ନାହିଁ । ରାଧାନାଥ ଉତ୍କଳର ପ୍ରାକୃତିକ ଦୃଶ୍ୟ ଓ ଗୌରବମୟ ଅତୀତକୁ ଯେଉଁ ଭାବରେ ଚିତ୍ରିତ କରି ଯାଇଅଛନ୍ତି, ତଦ୍ୱାରା ଭାବୁକ ଚକ୍ଷୁରେ ଉତ୍କଳର ପ୍ରତ୍ୟେକ ଲୋଷ୍ଟ୍ରଖଣ୍ଡ ଓ ପ୍ରତ୍ୟେକ ଧୂଳିକଣା ସ୍ୱର୍ଣ୍ଣରେଣୁ ରୂପେ ଉଭାସିତ ହୋଇଅଛି । ଉତ୍କଳ-ପ୍ରକୃତିର ପ୍ରଚ୍ଛନ୍ନ-ମାଧୁରୀକୁ ରାଧାନାଥ ଆଣି ଆମ୍ଭମାନଙ୍କ ଆଗରେ ରଖି ସେମାନେ ଚିତ୍ରକରର ତୂଳିକା ଦ୍ୱାରା ମଧୁମୟ ଓ ବିଚିତ୍ର କରି ଯାଇଅଛନ୍ତି । ପ୍ରତିବେଶୀ ସାହିତ୍ୟମାନଙ୍କର ଭାବ ଓ ଛଟାକୁ ସେ ଆହରଣ କରି ଆଧୁନିକ ଉତ୍କଳ ସାହିତ୍ୟକୁ .ଚିରକାଳପାଇଁ ପରିପୁଷ୍ଟ କରି ଯାଇଅଛନ୍ତି ।

ସାହିତ୍ୟରେ ସାହିତ୍ୟିକ ଗଦ୍ୟ ଲେଖା ମଧୁସୂଦନଙ୍କଠାରୁ ଆରମ୍ଭ କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରବନ୍ଧମାଳାର ଶବ୍ଦବିନ୍ୟାସ, ବାକ୍ୟ-ରଚନା, ପଦଯୋଜନାମାନ ପ୍ରତ୍ୟେକ ପାଠକର ହୃଦୟ କନ୍ଦରକୁ ଝଙ୍କାରିତ କରିଦିଏ । ଉତ୍କଳଭାଷାର ଏହି ଓଜସ୍ୱିତା ପୂର୍ବେ କେହି ଉପଲବ୍ଧି କରି ନ ଥିଲା । ମଧୁସୂଦନ ଭାଷାର ଏହି ଅଚିନ୍ତନୀୟ କ୍ଷମତା-ଉତ୍ସକୁ ପ୍ରବନ୍ଧମାଳା ଦ୍ୱାରା ଉଦ୍ଘାଟିତ କରିଥିଲେ । ଛାନ୍ଦମାଳାରେ ଉତ୍କଳର ଷଡ଼୍ଋତୁ ଚିତ୍ର ଓ ପଲ୍ଲୀଶୋଭା ପ୍ରତି ପ୍ରଥମେ ଆମ୍ଭମାନଙ୍କର ଦୃଷ୍ଟି ଆକର୍ଷିତ ହୋଇଥିଲା । ଲୋକେ ସଭ୍ୟ, ଶିକ୍ଷିତ ଓ ମାର୍ଜିତ ହେବା ମାତ୍ରକେ ରାଜଧାନୀ ଓ ସହର ପ୍ରତି ସେମାନଙ୍କର ମମତା ବଢୁଥିଲା । କିନ୍ତୁ 'ଛାଡ଼ି ବନ୍ଧୁ ନଗର ଚହଳ, ଯିବା ଚାଲ ଯେଉଁ ସ୍ଥାନେ ଗୋପାଳ, କୃଷକମାନେ ଆନନ୍ଦେ କାଟନ୍ତି ଦିନ' ଏ କଥା ମଧୁସୂଦନ ଆମ୍ଭମାନଙ୍କୁ ଶିଖାଇଲେ । ଫଳତଃ କବିତା ମଧୁସୂଦନଙ୍କର କ୍ଷେତ୍ର ଥିଲା - ପ୍ରଥମେ ପ୍ରଥମେ ପ୍ରତ୍ୟେକ କବିତାର ଶେଷରେ ପାଠକର ମନକୁ ଲୀଳାମୟ ବିଭୁଙ୍କ ଆଡ଼କୁ କବି ଆକର୍ଷଣ କରୁ କରୁ ଶେଷରେ କବି ନିଜେ ବିଭୁପ୍ରେମରେ ଏପରି ମତ୍ତ ହୋଇ ଯାଇଥିଲେ ଯେ, ତାଙ୍କର ପ୍ରତ୍ୟେକ କବିତାରୁ ଭକ୍ତି-ପ୍ରସ୍ରବଣ ବହି ପାଠକ ମନକୁ ପ୍ରେମରେ ବିଭୋର କରି ପକାଉଥିଲା । ମଧୁସୂଦନ ଜାତୀୟ ଭାବୋଦ୍ଦୀପକ ପଦ୍ୟ ଓ ସ୍ୱଦେଶ-ପ୍ରେମୋଦ୍ଦୀପକ କବିତାଦ୍ୱାରା ମଧ ଉତ୍କଳ-ସାହିତ୍ୟ-କୁଞ୍ଜକୁ ଝଙ୍କାରିତ କରି ଯାଇଅଛନ୍ତି । ମଧୁସୂଦନଙ୍କ ଲେଖାରେ ଭାଷାର ମାଧୁରୀ, ଭାବର ପବିତ୍ରତା ଓ ହୃଦୟର ସରଳ ବିଶ୍ୱାସ ପ୍ରତି ପୃଷ୍ଠାରେ ଉଛୁଳି ପଡ଼ିଅଛି ଓ ଉତ୍କଳ ତାଙ୍କୁ ଭକ୍ତ-କବି ଆଖ୍ୟା ଦ୍ୱାରା ସମ୍ମାନିତ କରିଅଛି ।

ଗୌରୀଶଙ୍କର ସମ୍ବାଦପତ୍ରର ସମ୍ପାଦକରୂପେ ଅବତୀର୍ଣ୍ଣ ହେବା ପୂର୍ବେ ଉତ୍କଳରେ ଗୋଟିଏ ସାଧାରଣ ଭାଷା ନ ଥିଲା । ପୂର୍ବେ ଲିଖିତ ଉପାୟରେ ଉତ୍କଳୀୟମାନଙ୍କ ମଧ୍ୟରେ ଭାବର ଆଦାନପ୍ରଦାନ ହେଉ ନ ଥିବାରୁ ଉତ୍କଳ ଭାଷା ପ୍ରାଦେଶିକତାରେ ପୂର୍ଣ୍ଣ ଥିଲା; ଏମନ୍ତ କି, ଉତ୍କଳ-ଭାଷୀ ଗୋଟିଏ ଅଞ୍ଚଳରେ ବ୍ୟବହୃତ ହେଉଥିବା ଭାଷାକୁ ଅନ୍ୟ ଅଞ୍ଚଳରେ ଲୋକେ ବୁଝିପାରୁ ନ ଥିଲେ । ଭାଷାରୁ ଏହିସବୁ ପ୍ରାଦେଶିକତା ଦୂର କରି ସମଗ୍ର ଉତ୍କଳରେ ଗୋଟିଏ ସାଧାରଣ ଭାଷା ପ୍ରବର୍ତ୍ତାଇବା ବିଷୟରେ ଉତ୍କଳ ଦୀପିକା ଯେଉଁ କାର୍ଯ୍ୟ କରିଅଛି, ତହିଁର ମୂଲ୍ୟ ନିରୂପଣ କରିବା ସହଜ ନୁହେ ।

ଉପରେ ଯେଉଁ ତିନି ଜଣ ମହାତ୍ମାଙ୍କର ନାମ ଉଲ୍ଲେଖ କରିଅଛି, ସେମାନେ ଉତ୍କଳ-ସାହିତ୍ୟର ଗୋଟିଏ ଗୋଟିଏ ବିଭାଗକୁ ଅବଲମ୍ବନ କରି ଉତ୍କଳ ସାହିତ୍ୟକୁ ମାର୍ଜିତ, ଉନ୍ନତ ଓ ପରିପ୍ଲୁତ କରି ଯାଇଅଛନ୍ତି । କିନ୍ତୁ ଫକୀରମୋହନଙ୍କ ଠାରେ ଏ ତିନି ଜଣଙ୍କର କାର୍ଯ୍ୟର ସମନ୍ୱୟ ଦେଖା ଯାଉଥିଲା । କି ଗଦ୍ୟ, କି ପଦ୍ୟ, କି ପାଠ୍ୟପୁସ୍ତକ, କି ଧର୍ମଶାସ୍ତ୍ର, କି ଉପନିଷଦ, କି ଦର୍ଶନ, କି ଉପନ୍ୟାସ, କି ବ୍ୟଙ୍ଗୋକ୍ତି, ସବୁଥିରେ ସେ ସିଦ୍ଧହସ୍ତ ଥିଲେ । ବାଲ୍ୟକାଳରୁ ନାନା ବୈଷୟିକ ଅବସ୍ଥାରେ ଓ ସୁଖରେ ଦୁଃଖରେ ପଡ଼ି ସଂସାର ସଙ୍ଗେ ତାଙ୍କର ଏତେଦୂର ପରିଚୟ ହୋଇଥିଲା ଓ ମନୁଷ୍ୟ-ପ୍ରକୃତିକୁ ପର୍ଯ୍ୟବେକ୍ଷଣ କରିବାରେ ସେ ଏପରି ପଟୁ ଥିଲେ ଯେ, ସେ ଯେତେବେଳେ ଯେଉଁ ରୂପ ଗଢ଼ିବାକୁ ଚେଷ୍ଟା କରିଅଛନ୍ତି ଓ ଯେତେବେଳେ ପାଠକ ମନରେ ଯେଉଁ ରସ ଢାଳିବା ନିମନ୍ତେ ଇଚ୍ଛା କରିଅଛନ୍ତି, ତାହା ସେ ଅକ୍ଳେଶରେ କରିପାରିଅଛନ୍ତି । ଓଡ଼ିଶାର କନ୍ଦି ବିକନ୍ଦି ଓ ଓଡ଼ିଆଙ୍କର ହାଲଚାଲ କିଛି ତାଙ୍କୁ ଅଜଣା ନ ଥିଲା - ଚରିତ୍ର ଚିତ୍ରଣ ବିଷୟରେ ସେ ସିଦ୍ଧହସ୍ତ ଥିଲେ । ଏମନ୍ତ କି, ତାଙ୍କର କଳ୍ପିତ ଚିତ୍ର ଓ ମନୁଷ୍ୟମାନଙ୍କ ବିଷୟ ପାଠ କଲାବେଳେ ପାଠକ ବାସ୍ତବ ରାଜ୍ୟରେ ଅଛି କି କଳ୍ପନାରାଜ୍ୟରେ ଅଛି, ଏହା ବେଳେବେଳେ ଠଉରାଇ ହୁଏ ନାହିଁ । ଏହାଙ୍କ ପୂର୍ବରୁ ଓଡ଼ିଶାରେ ଦୁଇଟା ଭାଷା ପ୍ରଚଳିତ ଥିଲା । ୧ - ପୁସ୍ତକଗତ ଭାଷା, ୨ - କଥିତ ଭାଷା । ପୁସ୍ତକଗତ ଭାଷାରେ ପାଣ୍ଡିତ୍ୟ, ଅଳଙ୍କାର, ଶବ୍ଦାଡ଼ମ୍ବର ଓ ସଂସ୍କୃତମୂଳକ ଶବ୍ଦମାନ ପୂର୍ଣ୍ଣ ଥିଲା ଓ କଥିତ ଭାଷାକୁ ସାହିତି୍ୟକମାନେ ଅତି ହେୟ ବୋଲି ମନେ କରୁଥିଲେ । ମୁଁ ଯେତେବେଳେ ଶୈଶବାବସ୍ଥାରେ ଆଖ୍ୟାନ ମଞ୍ଜରୀ ଓ ଛାନ୍ଦମାଳା ଆଦି ସ୍କୁଲରେ ପଢୁଥିଲି, ଗୋଟିଏ ଗୋଟିଏ ସ୍ଥାନ ଓ ବିଷୟ ମତେ ଏଡ଼େ ଭଲ ଲାଗୁଥିଲା ଯେ, ମୁଁ ସ୍କୁଲରୁ ଛୁଟି ପାଇଲେ ଘରକୁ ଯାଇ ସେହି କଥାମାନ ବୋଉ (ମାତା), ନାନୀ (ଜ୍ୟେଷ୍ଠା ଭଗିନୀ) ଆଦିଙ୍କୁ କହିବି ବୋଲି ଉଚ୍ଛନ୍ନ ହେଉଥିଲି । କିନ୍ତୁ ଘରକୁ ଯାଇ ସେମାନଙ୍କ ଆଗରେ ସେ କଥାମାନ କହିବାକୁ ବସି ଦେଖେଁ ଯେ, ପୁସ୍ତକସ୍ଥ ସମସ୍ତ ଭାବ ମୁହଁରେ ବ୍ୟକ୍ତ କରିପାରିବାର କ୍ଷମତା ମୋର ସେତେବେଳେ ହୋଇ ନ ଥିଲା । ଅତଏବ ଅଗତ୍ୟା ପାଠ୍ୟପୁସ୍ତକଖଣ୍ଡିମାନ ଆଣି ସ୍ତ୍ରୀଲୋକମାନଙ୍କ ଆଗରେ ଧରି ପଢ଼ିବସୁଥିଲି । କିନ୍ତୁ ସେ ଭାଷା ଘରୋଇ ଭାଷା

ନ ଥିବାରୁ ମୁଁ ପାଠ୍ୟପୁସ୍ତକର ଗଦ୍ୟ ବା ପଦ୍ୟାଂଶମାନ ଆବୃତ୍ତି କଲାବେଳେ ଶ୍ରୋତୃମଣ୍ଡଳୀ ସେ ଭାଷା ବୁଝି ନ ପାରି ମୋ ମୁହଁକୁ ବଲବଲ କରି ଚାହିଁଥାନ୍ତି ।

ମୋ ପିଲାଦିନେ (ଆଜକୁ ୫୫ ବରଷ ତଳେ) ଓଡ଼ିଆ ଭାଷାର ଏ ଅବସ୍ଥା ଥିଲା । ଭାଷାଟା ଯେତିକି ସାଳଙ୍କାର, ସାଡ଼ମ୍ବର, ସଂସ୍କୃତ ହେଉଥିଲା, ତାହା ସେତିକି ସାହିତ୍ୟିକ ଭାଷା ବୋଲି ଆଦୃତ ହେଉଥିଲା । ମୁଖ ପ୍ରଚଳିତ ଭାଷାକୁ ସାହିତ୍ୟ କ୍ଷେତ୍ରରେ ପ୍ରବେଶାଧିକାର ନିଷେଧ ଥିଲା । ଅନ୍ୟାନ୍ୟ ଉନ୍ନତ ସାହିତ୍ୟମାନଙ୍କରେ ଦେଖା ଯାଇଅଛି ଯେ, ଯେଉଁ ସାହିତ୍ୟରେ କଥିତଭାଷା ଓ ଲିଖିତଭାଷା ମଧ୍ୟରେ ପାର୍ଥକ୍ୟ ଅଳ୍ପ, ସେ ଭାଷା ସେତିକି ଉନ୍ନତ । ଇଂରାଜୀରେ ମଧ୍ୟ ଉପଦେଶ ଅଛି - 'Write as you speak' । କିନ୍ତୁ ଆମ ଦେଶରେ ୪୦ ବର୍ଷ ପୂର୍ବେ ଥିଲା - 'Write as you do not speak.' ବର୍ତ୍ତମାନ ପ୍ରସଙ୍ଗରେ ଏ ସବୁ କଥା ଆଲୋଚନା କରିବାର ଅବସର ନୁହେଁ । ତେବେ ଏତିକି କହିଲେ ଯଥେଷ୍ଟ ହେବ ଯେ, କି ଗଦ୍ୟରେ, କି ପଦ୍ୟରେ, କଥିତ ଭାଷା ଓ ଲିଖିତ ଭାଷାକୁ ପରସ୍ପରର ନିକଟକୁ ଆଣି ଗୋଟିଏ ସର୍ବଜନବୋଧ ଭାଷା ସୃଷ୍ଟି କରିବାରେ ଫକୀରମୋହନଙ୍କର ଦୃଢ଼ ଚେଷ୍ଟା ଫଳବତୀ ହୋଇଥିଲା । ସେ ଉତ୍କଳ ସାହିତ୍ୟକୁ ଆପାମର ସାଧାରଣଙ୍କ ସମ୍ପତ୍ତି କରି ଯାଇଅଛନ୍ତି - ମୋର ଯେତେଦୂର ମନେ ହେଉଅଛି, ଫକୀରମୋହନଙ୍କ 'ଉପହାର' ଓ 'ପୁଷ୍ପମାଳା' ପଢ଼ିବା ପୂର୍ବରୁ ଆଦ୍ୟପ୍ରାନ୍ତ ଏପରି ସରଳ ଓ ପ୍ରାକୃତିକ ଭାଷା ଆଧୁନିକ ସାହିତ୍ୟରେ ମୁଁ ପଢ଼ି ନ ଥିଲି । ହୃଦୟର ଆବେଗ ଓ ପ୍ରାକୃତିକ ଚିତ୍ରକୁ ସର୍ବଜନବୋଧ ଘରୋଇ ଭାଷାରେ ପଦ୍ୟାକାରରେ ଉପସ୍ଥାପିତ କରିବାର ମାର୍ଗ ଫକୀରମୋହନ ପ୍ରଥମେ ଆଧୁନିକ ଉତ୍କଳ ସାହିତ୍ୟକୁ ଦେଖାଇଥିବାର ମୋର ଧାରଣା । ତହିଁ ପରେ ଉତ୍କଳ ସାହିତ୍ୟରେ 'ପଲ୍ଲୀଚିତ୍ର' ଆଦି ସରଳ ପଦ୍ୟମାନ ମୋର ଦୃଷ୍ଟିଗୋଚର ହୋଇଥିଲା । ମୁଁ ମଧ୍ୟ କେତେକ ସରଳ ପଦ୍ୟ ଲେଖିବାକୁ ଚେଷ୍ଟା କରିଥିଲି, କିନ୍ତୁ କୃତକାର୍ଯ୍ୟ ହୋଇପାରିଲି ନାହିଁ । ଫକୀରମୋହନ ଉତ୍କଳରେ ଗଦ୍ୟକୁ ଯେଉଁ ଭାଷା ଦେଇ ଯାଇଅଛନ୍ତି, ସେ ଭାଷା ତତ୍‌ପୂର୍ବେ ସାହିତ୍ୟକ୍ଷେତ୍ରରେ ପ୍ରଚଳିତ ନ ଥିଲା ବୋଲି କହିଲେ ଚଳେ । କି ଭାଷାର ଗ୍ରାମ୍ୟ ମାଧୁରୀ, କି ସମାଜଚିତ୍ର ଚିତ୍ରଣ, କି ମାନବ ପ୍ରକୃତି ବର୍ଣ୍ଣନ, କି ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନ, ସବୁଥିରେ 'ଛ ମାଣ ଆଠଗୁଣ୍ଠ' ଉତ୍କଳ ସାହିତ୍ୟରେ ଗଦ୍ୟ ବିଭାଗରେ ଗୋଟିଏ ନବଯୁଗର ସୂଚନା କରିଥିଲା । ଖାଣ୍ଟି ଓଡ଼ିଆ ଭାଷା ଫକୀରମୋହନଙ୍କ ଲେଖାର ପ୍ରତି ଛତ୍ରରେ ପୂର୍ଣ୍ଣ । ସେ ନିଜେ ଅନେକଥର କଥା ପ୍ରସଙ୍ଗରେ ପ୍ରକାଶ କରିଥିଲେ ଯେ, ତାଙ୍କର ବାଲ୍ୟକାଳରେ ଓଡ଼ିଆ ପୁସ୍ତକର ସଂଖ୍ୟା ଆଙ୍ଗୁଠି ଅଗରେ ଗଣତି ହେଉଥିଲା, କିନ୍ତୁ ତାଙ୍କରି ଜୀବନକାଳରେ ସେ ଉତ୍କଳ ସାହିତ୍ୟ ଓ ଭାଷାର ବିଶେଷ ସୃଷ୍ଟି ଓ ଉନ୍ନତି ଦେଖି କୃତାର୍ଥ ହୋଇଥିଲେ ।

ଗଦ୍ୟରେ ମୁଁ ମୋ କ୍ଷୁଦ୍ର ଶକ୍ତି ଅନୁସାରେ ତାଙ୍କର ଖାଣ୍ଟି ସରଳ ଘରୋଇ ଓଡ଼ିଆ ଭାଷାକୁ ଅନୁକରଣ କରିଥିଲି ଓ ସେ ଚେଷ୍ଟାରେ ମୁଁ କେତେଦୂର କୃତକାର୍ଯ୍ୟ ହୋଇଅଛି,

ତାହାର ମୀମାଂସା ଉତ୍କଳୀୟ ପାଠକସାଧାରଣଙ୍କ ଠାରେ । ଫକୀରମୋହନ କେତେଥର ମୋର ଖାଣ୍ଟି ଓଡ଼ିଆ ଲେଖା ଯୋଗୁଁ ମତେ ଧନ୍ୟବାଦ ଦେବାକୁ ଆସି 'ମୋର ଆଦର୍ଶ କିଏ' ଏ ପ୍ରଶ୍ନର ଉତ୍ତରରେ 'ମୋ ଲେଖା ଆପଣଙ୍କ ଲିଖନଭଙ୍ଗୀ ଓ ଭାଷା ଛଟାର ବିକୃତ ଅନୁକରଣ ମାତ୍ର' ଶୁଣି ପ୍ରେମରେ ଗଦ୍‌ଗଦ ହୋଇଥିବାର ମୁଁ ନିଜେ ଅନୁଭବ କରିଅଛି । ମୋର କୌଣସି ପ୍ରବନ୍ଧ ବା ପୁସ୍ତକ ପ୍ରକାଶିତ ହେବା ମାତ୍ରକେ ଯେଉଁ ବ୍ୟକ୍ତିମାନେ ମତେ ଉତ୍ସାହିତ କରିଥିଲେ, ସେମାନଙ୍କ ମଧ୍ୟରେ ଫକୀରମୋହନଙ୍କ ନାମ ଅଗ୍ରେ ଉଲ୍ଲେଖଯୋଗ୍ୟ । ଉତ୍କଳ-ସାହିତ୍ୟର ସମସ୍ତ କ୍ଷେତ୍ର ତାଙ୍କର ପ୍ରତିଭା ଦ୍ୱାରା ଅଳଙ୍କୃତ ହୋଇଥିଲା ଓ ଆଧୁନିକ ଉତ୍କଳ ସାହିତ୍ୟରେ ତାଙ୍କର ପ୍ରଭା ପ୍ରତିଫଳିତ ହୋଇଅଛି । ବୃଦ୍ଧ ବୟସରେ ଖିଳ ହରିବଂଶ, ଉପନିଷଦ୍ ଆଦି ବିରାଟ ଗ୍ରନ୍ଥମାନ ଅନୁବାଦ କରିବାରେ ଏବଂ ନବ ନବ ଗଳ୍ପ ଉପନ୍ୟାସ ସୃଷ୍ଟି କରିବାରେ ସେ ଯେଉଁ ଅଧ୍ୟବସାୟ ଓ ସାହିତ୍ୟ ସେବାର ଦୃଷ୍ଟାନ୍ତ ଦେଖାଇଅଛନ୍ତି, ତାହା ଆମ ଦେଶରେ ବିରଳ । ସାମାଜିକ ଚିତ୍ର ଚିତ୍ରଣରେ ସେ ଯେଉଁ କୃତିତ୍ୱ ଦେଖାଇଅଛନ୍ତି, ତାହା ଓଡ଼ିଆ ସାହିତ୍ୟର ଅନ୍ୟତ୍ର ଦୁର୍ଲଭ ବୋଲି ମୋର ଧାରଣା । ଗାଁର ପୋଖରୀ ତୁଠ ଠାରୁ ଜମିଦାରଙ୍କ ଅନ୍ତଃପୁର ପର୍ଯ୍ୟନ୍ତ, ଅଦାଲତ ମିସଲଠାରୁ ତନ୍ତୀର ଦାଣ୍ଡଘର ପର୍ଯ୍ୟନ୍ତ, ସେ ଯେଉଁଠାକୁ ଯାଇଅଛନ୍ତି, ସେ ସ୍ଥାନର ଅବିକଳ ଫଟୋଗ୍ରାଫ ଆଣି ପାଠକଙ୍କ ଆଗରେ ଥୋଇ ଦେଇଅଛନ୍ତି । ଇଂରାଜୀରେ କଥା ଅଛି, 'This is art which conceals art' ଯେଉଁ କୃତିତ୍ୱ ଏପରି ପ୍ରାକୃତିକ ଯେ ସେଥିରେ କୃତ୍ରିମତା ଅଛି ବୋଲି ସାଧାରଣ ଜାଣିପାରନ୍ତି ନାହିଁ, ତାହାହିଁ କୃତିତ୍ୱ । ଫକୀରମୋହନଙ୍କର କୃତିତ୍ୱ ଏହି ଶ୍ରେଣୀର । ଆନନ୍ଦର ବିଷୟ ଯେ, ସେ ନିଜେ 'ଆତ୍ମଜୀବନୀ' ଲିପିବଦ୍ଧ କରି ଯାଇଅଛନ୍ତି ଓ ଆଶା କରାଯାଏ ଯେ ତାଙ୍କର ସୁପୁତ୍ର ମୋହିନୀମୋହନ ପିତୃଦେବଙ୍କର ଅପ୍ରକାଶିତ, ଅମୁଦ୍ରିତ ଗ୍ରନ୍ଥ ଓ ଲେଖାଗୁଡ଼ିକରୁ ଉତ୍କଳକୁ ବଞ୍ଚିତ କରିବେ ନାହିଁ ।

ଫକୀରମୋହନଙ୍କ ସଙ୍ଗେ ମୋର ପ୍ରଥମ ବ୍ୟକ୍ତିଗତ ଆଳାପ ୧୯୦୩ ଅପ୍ରେଲ ମାସରେ ଗଞ୍ଜାମର ବ୍ରହ୍ମପୁରଠାରେ ଉତ୍କଳ ସାମାଜିକ କନଫରେନ୍ସ ସମୟରେ ଘଟିଥିଲା । ସେହି ସମୟରେ ରାଜନୀତିକ ଉତ୍କଳକୁ ଯେଉଁ କେତେକ ବ୍ୟକ୍ତି ନିମନ୍ତ୍ରିତ ହୋଇ ବ୍ରହ୍ମପୁରକୁ ଯାଇଥିଲେ, ତାଙ୍କ ସଙ୍ଗେ ମୁଁ ମଧ୍ୟ ଯାଇଥିଲି । ଏକ ସ୍ଥାନରେ ବସା କରି ଫକୀରମୋହନଙ୍କ ସାହଚର୍ଯ୍ୟରେ ଯେଉଁ ସୁଖ ଲାଭ କରିଥିଲି, ତାହା ପାସୋରି ହେବ ନାହିଁ । ଗତ (୧୯୧୮) ଅପ୍ରେଲ ମାସରେ ସୋନପୁର - ବୃହଦ୍‌ଖେମୁଣ୍ଡି ବିବାହ ଉତ୍ସବରେ ଯୋଗ ଦେବା ନିମନ୍ତେ ଆମ୍ଭେମାନେ ବ୍ରହ୍ମପୁର ଯାଇଥିବା ସମୟରେ ବ୍ରହ୍ମପୁରଠାରେ ଫକୀରମୋହନଙ୍କ ସଙ୍ଗେ ମୋର ଶେଷ ସାକ୍ଷାଦ୍ ହୋଇଥିଲା - ଏହି ପନ୍ଦର ବର୍ଷ ମଧ୍ୟରେ ଅନେକ ଥର ତାଙ୍କର ସାହଚର୍ଯ୍ୟ ଲାଭ କରି ତାଙ୍କର ନିଷ୍କପଟ ସ୍ନେହ, ଯୁବକ ଲେଖକମାନଙ୍କ ପ୍ରତି ପୁତ୍ରବାତ୍ସଲ୍ୟ, ଅମାୟିକ ବ୍ୟବହାର, ସରଳ ବିଶ୍ୱାସରେ ମୁଁ ମୁଗ୍ଧ ହୋଇଥିଲି । ମୋ ଲେଖା ଓ ପ୍ରବନ୍ଧ

ପାଠ କରି ସେ ଅଯାଚିତ ଭାବରେ ମୋଠାକୁ ଯେଉଁ କେତେ ଖଣ୍ଡ ପତ୍ର ସମୟ ସମୟରେ ଲେଖୁଥିଲେ, ତାହା ମୁଁ ମୋର ଅକିଞ୍ଚନ ସାହିତ୍ୟ ସେବାର ପୁରସ୍କାରସ୍ୱରୂପ ବହୁ ଯତ୍ନରେ ସମ୍ପାଦି ରଖିଅଛି । ତାଙ୍କର ଜୀବନର ଗୋଟିଏ ସାମାନ୍ୟ ଘଟଣାରୁ ତାଙ୍କର ବାଳ-ସୁଲଭ ସରଳ ବିଶ୍ୱାସର ମାତ୍ରା ଅନୁମିତ ହେବ ।

୧୯୧୫ ସାଲରେ ବାମଣ୍ଡା ରାଜକୁମାରୀଙ୍କ ମଙ୍ଗଳକୃତ୍ୟ ଉପଲକ୍ଷରେ ଆମ୍ଭେମାନେ ନିମନ୍ତ୍ରିତ ହୋଇ ବାମଣ୍ଡା ଗଡ଼କୁ ଯାଇଥିଲୁଁ - ବାମଣ୍ଡାର ସ୍ୱର୍ଗୀୟ ରାଜାଙ୍କ ସଭାରେ ସେ 'ସରସ୍ୱତୀ' ଉପାଧି ପ୍ରାପ୍ତ ହୋଇଥିଲେ । ବାମଣ୍ଡା ଷ୍ଟେସନଠାରୁ ରେଲରୁ ଓହ୍ଲାଇ ସେ, ଶ୍ରୀଯୁକ୍ତ ବିଶ୍ୱନାଥ କର ଓ ମୁଁ ଏକତ୍ର ଖଣ୍ଡେ ମଟରଗାଡ଼ିରେ ବାମଣ୍ଡାକୁ ଯାଉଥିଲୁଁ । ବାଟରେ ଅନେକ ନଦୀ, ପର୍ବତ, ଅରଣ୍ୟ ଓ ଗ୍ରାମ ଆମ୍ଭେମାନେ ଅତିକ୍ରମ କରି ଯିବା ସମୟରେ ଫକୀରମୋହନ ଆମ ଦୁହିଁଙ୍କୁ ପ୍ରତ୍ୟେକ ବସ୍ତୁର ପରିଚୟ ପଚାରୁଥିଲେ । ପ୍ରଥମେ ମୁଁ କହିଥିଲି ଯେ, ଏ ସବୁର ନାମ ମୁଁ କହିପାରିବି ନାହିଁ । କିଛିକ୍ଷଣ ଗଲାରୁ ସେ ଏଥିରୁ ନିରସ୍ତ ନ ହୋଇ ପିଲାଙ୍କ ପରି ପୁନର୍ବାର ପଚାରନ୍ତି, 'ଏ ନଦୀଟିର ନାମ କଣ ? ଏ ପର୍ବତଟିର ନାମ କଣ ? ଏ ଗ୍ରାମଟିର ନାମ କଣ ?' ମୁଁ ସଙ୍ଗେ ସଙ୍ଗେ ଗୋଟାଏ କିଛି ଉତ୍ତର ଦେଉଥାଏଁ । ଯଥା - ଏ ନଦୀର ନାମ ଖଣ୍ଡାଝରୀ, ଏ ପର୍ବତର ନାମ ସପ୍ତଶୃଙ୍ଗୀ, ଏ ଗ୍ରାମର ନାମ ମହୁରିଖଣ୍ଡି, ଇତ୍ୟାଦି, ଇତ୍ୟାଦି । ବିଶ୍ୱନାଥବାବୁ ଏହା ଶୁଣି ମୋର ବାଚାଳତା ଓ ଚଗଲାପଣ ଦେଖି ମୁରୁକେଇ ମୁରୁକେଇ ହସୁଥାନ୍ତି, କିନ୍ତୁ ଫକୀରମୋହନ ମୋ ଉତ୍ତରକୁ ସରଳ ଭାବରେ ବିଶ୍ୱାସ କରି ତତ୍ତଦ୍ ନଦୀ, ପର୍ବତାଦିର ନାମ ନିଜର ନୋଟ୍ ବହିରେ ଲେଖିନେବାକୁ ପ୍ରସ୍ତୁତ ! ଏହା ଦେଖି ମୁଁ ଓ ବିଶ୍ୱନାଥବାବୁ ହସି ହସି ତାଙ୍କୁ କହିଲୁଁ ଯେ, ଏ ସବୁ ନାମ କେବଳ ମୋର କଳ୍ପନାପ୍ରସୂତ । ବୃଦ୍ଧ କବିଙ୍କୁ ଏ କଥା ୨।୩ ଥର ଦୃଢ଼ଭାବରେ କହିବା ପରେ ସେ ଉକ୍ତ ନାମମାନ ନୋଟ ବହିରେ ଲେଖିନେବାର ଚେଷ୍ଟାରୁ ବିରତ ହେଲେ ଓ ମୋର ଏ ବଗୁଲିଆପଣ ଦେଖି ଉଚ୍ଚହାସ୍ୟ କଲେ ।

ଫକୀରମୋହନଙ୍କ ଜୀବନରେ ଆଉ ଗୋଟିଏ ଘଟନା ଘଟିଥିବା ବିଷୟ ଏଠାରେ ଉଲ୍ଲେଖଯୋଗ୍ୟ । ପ୍ରଥମେ ଯେତେବେଳେ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠିତ ହେଲା, ସେହିଦିନଠାରୁ ଉକ୍ତ ସଭାରେ ସଭାପତି ପଦ କେବଳ ରାଜା ମହାରାଜା ଆଦିଙ୍କ ଦ୍ୱାରା ଅଳଂକୃତ ହୋଇ ଆସୁଥିଲା । କଥାପ୍ରସଙ୍ଗରେ କେହି କେହି ସମ୍ମିଳନୀର ଭାଗ୍ୟବିଧାତାଙ୍କ ମୁହଁରୁ ଶୁଣାଯାଇଥିଲା ଯେ, ସାହିତ୍ୟସେବକ, କବିତାଲେଖକ ଓ ଖବରକାଗଜବାଲା ଲୁଚାକ ନିକମା । ସେମାନଙ୍କ ହାତରେ ଶାଗ ସିଝେ ନାହିଁ । ଏଥିପାଇଁ ଉତ୍କଳରୁ ବଛାବଛି ହୋଇ ଚୋଖା କାମିକା ବ୍ୟକ୍ତିମାନଙ୍କୁ ଆଜିପର୍ଯ୍ୟନ୍ତ ଜାତୀୟ ସମ୍ମିଳନୀରେ ସଭାପତି କରା ଯାଉଥିଲା । ଏ ବର୍ଷ ମଧ ପାରଳାର ଗଜପତିଙ୍କୁ ଉକ୍ତ ଆସନ ଅଳଂକୃତ କରିବାକୁ ନିମନ୍ତ୍ରଣ ହୋଇଥିଲା । କିନ୍ତୁ ଭଗବାନ୍‌ଙ୍କ ବରାଦରୁ ରାଜା ମହୋଦୟ ସଭାପତିତ୍ୱ ଗ୍ରହଣ କରିବାକୁ ଅକ୍ଷମ ହେବାରୁ ଶେଷରେ ସେହି ନିକମା ଶ୍ରେଣୀର କବିତାବାଲା ବ୍ୟାସ-କବି

ଫକୀରମୋହନଙ୍କ ଉପରେ ସମ୍ମିଳନୀର ଉଦ୍‌ଯୋକ୍ତାମାନଙ୍କର ନଜର ପଡ଼ିଲା ଓ ଫକୀରମୋହନ ବୃଦ୍ଧ ବୟସରେ ଉତ୍କଳର ଜାତୀୟ ମଣ୍ଡପରେ ନେତୃତ୍ୱ ପଦ ଦ୍ୱାରା ଗୌରବାନ୍ୱିତ ହୋଇଥିଲେ । ତାଙ୍କର ମୃତ୍ୟୁର ଅଳ୍ପଦିନ ପୂର୍ବେ ସେ ଏ ଯେଉଁ ସମ୍ମାନ ପାଇଥିଲେ, ତଦ୍ୱାରା ସମଗ୍ର ଉତ୍କଳୀୟ ଜାତି ଗୌରବାନ୍ୱିତ ହୋଇଅଛି ଓ 'ପୂଜ୍ୟ-ପୂଜା-ବ୍ୟତିକ୍ରମ' କଳଙ୍କରୁ ଖଲାସ ପାଇଅଛି ।

ଫକୀରମୋହନଙ୍କର ଆଦ୍ୟ ଜୀବନ କର୍ମମୟ ଥିଲା ଓ ପ୍ରବୀଣତା ଲାଭ କରିବା ପରେ ସେ ଜାତୀୟ ସାହିତ୍ୟକୁ ନିଜର ଅଭିଜ୍ଞତା ଓ ଅନୁଭୂତି ଦ୍ୱାରା ଐଶ୍ୱର୍ଯ୍ୟଶାଳୀ କରି ଯାଇଅଛନ୍ତି । ତାଙ୍କର ଈଶ୍ୱର-ନିଷ୍ଠା ମଧ୍ୟ ତାଙ୍କର ଲେଖାବଳୀରେ ସୁସ୍ପଷ୍ଟ ପ୍ରତିଭାତ ହେଉଥିଲା । ତାଙ୍କୁ ହରାଇବା ଦ୍ୱାରା ଉତ୍କଳ-ସାହିତ୍ୟ ଦରିଦ୍ର ହୋଇଅଛି ।

ମୁଁ ଏହି କଥା ଭାବୁଅଛି ଯେ, ଉତ୍କଳାକାଶରୁ ଗୋଟି ଗୋଟି ହୋଇ ଯେଉଁ ଜ୍ୟୋତିଷ୍କମାନେ ଖସି ପଡୁଅଛନ୍ତି, ତାଙ୍କ ସ୍ଥାନମାନ ପୂର୍ଣ୍ଣ ହେବା କ'ଣ ଭଗବାନ୍‌ଙ୍କର ଅଭିପ୍ରାୟ ନୁହେଁ ?

ଉ.ସା. - ୨୨ଶ ଭାଗ / ୪ର୍ଥ ସଂଖ୍ୟା / ଶ୍ରାବଣ / ୧୩୨୬ ସାଲ ।

## ।। ସତର ।।

୧୯୧୭ ମସିହା ଅଗଷ୍ଟ ମାସ ୨୦ ତାରିଖରେ ଭାରତ ସମ୍ରାଟ୍‌ଙ୍କ ମୁଖପତ୍ର ସ୍ୱରୂପ ବିଲାତର ପାର୍ଲିଆମେଣ୍ଟ ମହାସଭାରେ ଭାରତ ମନ୍ତ୍ରୀ (Secretary of State of India) ଘୋଷଣା କରିଥିଲେ ଯେ, ଭାରତବର୍ଷକୁ ସମଗ୍ର ବ୍ରିଟିଶ ସାମ୍ରାଜ୍ୟର ଗୋଟିଏ ଅବିଚ୍ଛେଦ୍ୟ ଅଂଶସ୍ୱରୂପ ଗଣ୍ୟ କରାଯାଇ ଭାରତରେ କ୍ରମଶଃ ସ୍ୱାୟତ୍ତ- ଶାସନ ପ୍ରଣାଳୀ ଓ ଅନୁଷ୍ଠାନମାନ ପ୍ରବର୍ତ୍ତିତ କରିବା ବିଷୟରେ ବିଲାତ ସରକାର ଓ ଭାରତ ସରକାର ଏକମତ ହୋଇଅଛନ୍ତି । ଅତଏବ ଏହି ଉଦ୍ଦେଶ୍ୟ ସାଧିତ ହେବାଲାଗି ବର୍ତ୍ତମାନ 'ଶନୈଃ ପନ୍ଥା' ମତରେ କି କି ଉପାୟମାନ ଅନୁସୃତ ହେବ, ତାହା ଭାରତର ବଡ଼ଲାଟଙ୍କ ପରାମର୍ଶରେ ଠିକଣା କରିବା ନିମନ୍ତେ ଓ ଲୋକମତ ସଂଗ୍ରହ କରିବା ନିମନ୍ତେ ବିଲାତର ଭାରତ ସଚିବ ମଣ୍ଟେଗୁ ସାହେବ ସରଜମିନକୁ ବିରାଜମାନ କରିବେ ।

ଅତଏବ ଏତଦୁଦ୍ଦେଶ୍ୟରେ ମଣ୍ଟେଗୁ ସାହେବ ଗତ (୧୯୧୭) ନଭେମ୍ବର ମାସରେ ଭାରତରେ ପଦାର୍ପଣ କରି ସ୍ଥାନୀୟ ହାକିମହୁକୁମାଙ୍କର, ଜନସାଧାରଣଙ୍କର, ସଭାସମିତିର ଓ ଭାରତର ଭିନ୍ନ ଭିନ୍ନ ସମ୍ପ୍ରଦାୟର ମତ ସଂଗ୍ରହ କରି ବଡ଼ଲାଟ ଚେମ୍‌ସଫୋର୍ଡ୍‌ଙ୍କ ସଙ୍ଗେ ପରାମର୍ଶ କରି ଭାରତରେ ସ୍ୱାୟତ୍ତ ଶାସନ ପ୍ରଣାଳୀ ପ୍ରବର୍ତ୍ତିତ ହେବା ଉଦ୍ଦେଶ୍ୟରେ ବର୍ତ୍ତମାନ ସର୍ବାଦୌ କି କି ଆନୁପୂର୍ବିକ ପ୍ରଣାଳୀ ଓ ପନ୍ଥା ଅବଲମ୍ବିତ ହେବ, ତହିଁ ସମ୍ବନ୍ଧରେ ୨୨।୪।୧୯୧୮ ତାରିଖ ସମ୍ବଳିତ ଗୋଟିଏ ରିପୋର୍ଟ ଲେଖିଅଛନ୍ତି । ଏ ରିପୋର୍ଟରେ

ବଡ଼ଲାଟ ଓ ଷ୍ଟେଟ ସେକ୍ରେଟେରୀ ଦୁହେଁ ସନ୍ତକ କରିଅଛନ୍ତି । ଏ ରିପୋର୍ଟ ସର୍ବସାଧାରଣରେ ଆଲୋଚିତ ଓ ପାର୍ଲିଆମେଣ୍ଟ ମହାସଭାରେ ବିବେଚିତ ହେଲା ପରେ ସଂସ୍କୃତ ରିପୋର୍ଟ ଅନୁସାରେ ଭାରତରେ ସ୍ୱାୟତ୍ତ-ଶାସନ-ପ୍ରବର୍ତ୍ତନ କାର୍ଯ୍ୟ ଆରମ୍ଭ ହେବ । ଭାରତୀୟ ଜାତୀୟ ମହାସମିତି (Indian National Congress) ଏବଂ ଭାରତୀୟ ମୁସଲମାନ ସମିତି (All-India Muslim League) ଏକମତ ହୋଇ ଗୋଟିଏ ଖସଡ଼ା-ଶାସନ ପ୍ରଣାଳୀ ଷ୍ଟେଟ ସେକ୍ରେଟେରୀଙ୍କ ଛାମୁରେ ଦେଇଥିଲେ ଓ ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାର ୧୯ ଜଣ ବେସରକାରୀ ସଭ୍ୟ ମଧ ଗୋଟିଏ ଖସଡ଼ାର ଚୁମ୍ବକ ଉପସ୍ଥାପିତ କରିଥିଲେ । ଉପରୋକ୍ତ ରିପୋର୍ଟରେ ଅନେକ ବିଷୟ ଆଲୋଚିତ ହୋଇଅଛି ଓ ଭାରତର ସାମାନ୍ୟ ପଲ୍ଲୀଗ୍ରାମରୁ ଆରମ୍ଭ କରି ବିଲାତରେ ଭାରତ ଦରବାର (India Council) ପର୍ଯ୍ୟନ୍ତ ଅନୁଷ୍ଠାନମାନଙ୍କରେ କି କି ଶାସନ ସଂସ୍କାର ଆବଶ୍ୟକ, ତାହା ଉକ୍ତ ରିପୋର୍ଟରେ ଲିପିବଦ୍ଧ ହୋଇଅଛି । ଏ ରିପୋର୍ଟଟି ଅଳ୍ପଦିନ ହେଲା ସାଧାରଣରେ ପୁସ୍ତକାକାରରେ ପ୍ରଚାରିତ ହୋଇଅଛି । ଏହାର ପ୍ରଚାର ସଙ୍ଗେ ସଙ୍ଗେ ଭାରତର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଆଲୋଚନାର ଢେଉ ଛୁଟି ଯାଇଅଛି । କିଏ କହୁଅଛନ୍ତି, ଏ ରିପୋର୍ଟ ଖାଲି 'ଦିଲ୍ଲୀ କା ଲଡ୍ଡୁ' । (ରିପୋର୍ଟରେ ମଧ ଏକ ଜାଗାରେ ଲେଖା ଅଛି, ହାନୋଜ୍ ଦିଲ୍ଲୀ ଦୁର୍‌ଆସ୍ତ୍' ଅର୍ଥାତ୍ 'ବର୍ତ୍ତମାନ ମଧ ଦିଲ୍ଲୀ ତୁମଠାରୁ ବହୁଦୂରରେ', ଅର୍ଥାତ୍ ଦିଲ୍ଲୀ କା ଲଡ୍ଡୁ ଅବ୍‌ଭି ନେହିଁ ମିଲେଗା ।) କେହି କେହି କହୁଅଛନ୍ତି, ଏ ରିପୋର୍ଟଟି ଷୋଳପଣି ଅଗ୍ରାହ୍ୟ; କେହି କହୁଅଛନ୍ତି, ଆଠପଣି ଅଗ୍ରାହ୍ୟ; କେହି କେହି କହୁଅଛନ୍ତି, ଏ ରିପୋର୍ଟଟି ପୂରା ଗ୍ରାହ୍ୟ, ଇତ୍ୟାଦି, ଇତ୍ୟାଦି । ଚରମପନ୍ଥୀ ଦଳ (extremists) କହନ୍ତି, 'ଯେବେ ଦେଲ ତେବେ ଆମେ ଯାହା ମାଗୁଛୁଁ, ତାହା ସବୁ ଦିଅ, ନ ହେଲେ ଆମେ କିଛି ନେବୁ ନାହିଁ ।' ନରମପନ୍ଥୀ ଦଳ କହନ୍ତି, 'କାନ୍ଦୁଥିବା, ଯାହା ପାଉଥିବା ବାନ୍ଧୁଥିବା ।' କରମପନ୍ଥୀ ଦଳ କହନ୍ତି, 'କର୍ମ କରି, ଯୋଗ୍ୟତା ଦେଖାଇ ଆମ୍ଭେମାନେ ଏତକ ପାଇଥାଇଁ; ଅଧିକତର ଯୋଗ୍ୟତା ଦେଖାଇଲେ କର୍ମବୀର ହେଲେ ବଳେ ବଳେ ଏଥୁଁ ଅଧିକ ପାଇବା । ଏଥିପାଇଁ ଏତେ ଦାନ୍ତନିକୁଟା କିଆଁ ଲାଗିଛି ?' ଏହି ପ୍ରକାରେ ନାନା ମୁନିଙ୍କର ନାନା ମତ ଦେଖା ଯାଉଅଛି । ତେବେ ସ୍ଥୂଳରେ ଏତିକି ବୋଲାଯାଇପାରେ ଯେ, ଇଂରେଜମାନେ ଭାରତକୁ ବିଜେ (ବିଜୟ) କରିବା ଦିନଠାରୁ ଅବଧି ପର୍ଯ୍ୟନ୍ତ ଭାରତୀୟ ଶାସନପ୍ରଣାଳୀର ଗତି ଓ ଦିଗ ନିରୂପଣ କରି, ଭାରତୀୟମାନଙ୍କର ଗତି ସ୍ଥିତି ପର୍ଯ୍ୟବେକ୍ଷଣ କରି ଆଧୁନିକ ଭାରତ ପାଇଁ କେଉଁ ପ୍ରକାର ଶାସନପ୍ରଣାଳୀ ପ୍ରଯୁଜ୍ୟ, ଅଥଚ ଭାରତବାସୀମାନେ, ଶେଷରେ ଦିନେ ପୂରା ସ୍ୱାୟତ୍ତ-ଶାସନ ପାଇବେ, ଏହି ସ୍ଥିର ଲକ୍ଷ୍ୟକୁ ସମ୍ମୁଖରେ ରଖି ମଣ୍ଟେଗୁଚେମ୍‌ସଫୋର୍ଡ଼ ଭାରତ ପ୍ରତି କର୍ତ୍ତବ୍ୟ-ପରାୟଣତାର ଯେଉଁ ନିଦର୍ଶନ ଉକ୍ତ ରିପୋର୍ଟରେ ଦେଖାଇଅଛନ୍ତି, ତାହା ସର୍ବଥା ପ୍ରଶଂସାଯୋଗ୍ୟ ଓ ଅନୁମୋଦନୀୟ । ଏକ ସ୍ଥଳରେ ରିପୋର୍ଟରେ ସ୍ପଷ୍ଟ ଲେଖା ଅଛି ଯେ, 'We hope to start India on the

road leading to responsible Government with the prospect of winning her way to the ultimate goal' Para 177. ଅର୍ଥାତ୍ ଶେଷକୁ ଦିନେ ଭାରତବାସୀମାନେ ସ୍ୱାୟତ୍ତ-ଶାସନ ଭୋଗ କରିବେ, ଏହି ଲକ୍ଷ୍ୟକୁ ଆଗରେ ରଖି ଅଗ୍ରସର ହେବାର ମାର୍ଗରେ ଭାରତବାସୀଙ୍କୁ ଚଳାଇବା ନିମନ୍ତେ ଆମ୍ଭେମାନେ ରିପୋର୍ଟରେ ପ୍ରସ୍ତାବମାନ ଲିପିବଦ୍ଧ କରିଅଛୁଁ ।

ରିପୋର୍ଟର ୫୭୪ ପ୍ରକରଣରେ ଲେଖା ଅଛି, 'We are no lbnger seeking to govern a subject race by means of the services. We are seeking to make the Indian people self-governing' ଏଣିକି ସରକାରୀ କର୍ମଚାରୀମାନଙ୍କ (ହାକିମ) ହୁକୁମାତି ଦ୍ୱାରା ଅଧୀନସ୍ଥ ଜାତିମାନଙ୍କୁ ଶାସନ କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେଁ । ଭାରତୀୟମାନଙ୍କୁ ସ୍ୱାୟତ୍ତ-ଶାସକ ରୂପେ ପରିଣତ କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ।

ରିପୋର୍ଟର ୫୯୯ ଦଫାରେ ଲେଖା ଅଛି -

Our conception of the eventual future of India is a sisterhood of states, self-governing in all matters of purely local or provincial interest. 'Over these would preside a Central Government increasingly representative of and responsible to the people of all of them dealing with matters both internal and external, of common interest to the whole of India and representing the interests of all India on equal terms with the self-governing Units of the British Empire. In this picture there is a place also for native States.

ଅର୍ଥାତ୍ ଆମ୍ଭମାନଙ୍କର ଧାରଣା ଯେ ଭାରତବର୍ଷ ପରିଶେଷରେ ଏହିପରି ରାଜନୀତିକ ଆକାର ଧାରଣ କରିବ, ଯଥା - ଏହା କେତେଗୁଡ଼ିଏ ସମାନ ଅଧିକାରପ୍ରାପ୍ତ ରାଜ୍ୟ (ବା ପ୍ରଦେଶ) ମାନଙ୍କଦ୍ୱାରା ଗଠିତ ହେବ, ଉକ୍ତ ପ୍ରଦେଶମାନ ନିଜ ନିଜର ପ୍ରାଦେଶିକ ଓ ସ୍ଥାନୀୟ ବିଷୟମାନ ନିଜେ ନିଜେ (ସ୍ୱାୟତ୍ତ-ଶାସନ ନିୟମରେ) ପରିଚାଳନ କରିବେ । ଏହି ସମସ୍ତ ପ୍ରାଦେଶିକ ବିଭାଗମାନଙ୍କ ଉପରେ ଗୋଟିଏ କେନ୍ଦ୍ର ଗଭର୍ଣ୍ଣମେଣ୍ଟ କର୍ତ୍ତା ରୂପେ ରହିବେ । କେନ୍ଦ୍ର ଗଭର୍ଣ୍ଣମେଣ୍ଟ ସମସ୍ତ ପ୍ରାଦେଶିକ ବିଭାଗର ଅଧିବାସୀ ଜାତିମାନଙ୍କର ପ୍ରତିନିଧି ହେବେ ଓ ଏମାନଙ୍କଠାରେ ଆପଣା କ୍ରିୟାକଳାପ ନିମନ୍ତେ ଦାୟୀ ରହିବେ ଏବଂ ଯେଉଁ ବିଷୟମାନଙ୍କ ସଙ୍ଗେ ସମସ୍ତ ପ୍ରାଦେଶିକ ବିଭାଗମାନଙ୍କର ସମ୍ପର୍କ ଅଛି, ଏପରି ବହିଃସମ୍ବନ୍ଧଯୁକ୍ତ ଓ ଆଭ୍ୟନ୍ତରିକ ସମ୍ବନ୍ଧଯୁକ୍ତ ବିଷୟମାନଙ୍କର ଏବଂ ଯେଉଁ ବିଷୟରେ ସମଗ୍ର ଭାରତବର୍ଷର ସମ୍ପର୍କ ନିହିତ ଅଛି,

ଏପରି ବିଷୟମାନଙ୍କରେ କେନ୍ଦ୍ର ଗଭର୍ଣ୍ଣମେଣ୍ଟଙ୍କର ଅଧିକାର ରହିବ ଏବଂ ଏହି କେନ୍ଦ୍ର ଗଭର୍ଣ୍ଣମେଣ୍ଟ ବ୍ରିଟିଶ ସାମ୍ରାଜ୍ୟର ଅନ୍ୟାନ୍ୟ ସ୍ୱାୟତ୍ତ-ଶାସନ ଦେଶମାନଙ୍କ ସଙ୍ଗେ ଏକାସନ ଓ ସମାନ ଅଧିକାରପ୍ରାପ୍ତ ହୋଇ ସମଗ୍ର ଭାରତର ସ୍ୱାର୍ଥରକ୍ଷକ ପ୍ରତିନିଧି ରୂପେ ବ୍ରିଟିଶ ସାମ୍ରାଜ୍ୟରେ ସ୍ଥାନ ଲାଭ କରିବ । ଏହି କଳ୍ପିତ ଭାରତୀୟ ଗଭର୍ଣ୍ଣମେଣ୍ଟରେ ଦେଶୀୟ ରାଜ୍ୟମାନଙ୍କପାଇଁ ମଧ୍ୟ ସ୍ଥାନ ନିର୍ଦ୍ଦିଷ୍ଟ ରହିବ ।

ରିପୋର୍ଟର ୧୮୯ ଦଫାରେ ମଧ୍ୟ କହିଅଛନ୍ତି -

Our aim is to give (to India) complete responsibility (in govt.) as soon as conditions prevail. ଅର୍ଥାତ୍ ଭାରତବାସୀମାନେ ସ୍ୱାୟତ୍ତ-ଶାସନ ଅଧିକାର ପରିଚାଳନ କରିବାକୁ ସମର୍ଥ ଓ ଯୋଗ୍ୟ ହେବା ମାତ୍ରକେ ସେମାନଙ୍କୁ ପୂର୍ଣ୍ଣ ସ୍ୱାୟତ୍ତ-ଶାସନ ପ୍ରଦାନ କରିବା ଆମ୍ଭମାନଙ୍କର ଲକ୍ଷ୍ୟ ଅଟେ ।

ରିପୋର୍ଟର ୧୫୧ ପ୍ରକରଣରେ ଲେଖା ଅଛି -

Self-Government for India within time. Empire is the highest aim which her people can set before themselves or which we as trustees for her can help her to attain. Without it there can be no fullness of civic life, no satisfaction of the natural aspirations which fill the soul of every self-respecting man.

ବ୍ରିଟିଶ ସାମ୍ରାଜ୍ୟର ଅଙ୍ଗସ୍ୱରୂପ ଭାରତବର୍ଷକୁ ଗୋଟିଏ ସ୍ୱାୟତ୍ତ-ଶାସକ ରାଜ୍ୟ ରୂପେ ପରିଣତ କରିବା ଭାରତବାସୀଙ୍କର ସର୍ବୋଚ୍ଚ ଲକ୍ଷ୍ୟ ଏବଂ ଏହି ଲକ୍ଷ୍ୟରେ ପହଞ୍ଚିବା ପାଇଁ ଭାରତକୁ ଭାରତ-ଟ୍ରଷ୍ଟି ସ୍ୱରୂପ (ଅର୍ଥାତ୍ ଭାରତର ମଙ୍ଗଳ ନିମନ୍ତେ ଭଗବାନ୍‌ଙ୍କ ଠାରେ ଦାୟୀ) ବ୍ରିଟିଶ ଜାତିର ସାହାଯ୍ୟ କରିବା ବିଧେୟ । ଏହା ନ ହେଲେ ପ୍ରତ୍ୟେକ ଆତ୍ମ-ମର୍ଯ୍ୟାଦାସମ୍ପନ୍ନ ବ୍ୟକ୍ତି ମନରେ ଯେଉଁ ସହଜ ଆକାଂକ୍ଷାର ଉଦ୍ରେକ ହୁଏ, ତାହା ଅପୂର୍ଣ୍ଣ ରହିବ ଓ ରାଜନୀତିକ ଜୀବନ ମଧ୍ୟ ଅପୂର୍ଣ୍ଣ ରହିବ ।

ରିପୋର୍ଟର ଉପର୍ଯ୍ୟୁକ୍ତ କେତେଗୋଟି ଅଂଶ ମୁଁ ଏଠାରେ ଉଦ୍ଧୃତ କଲି । ଏହିପରି ପ୍ରମାଣ ରିପୋର୍ଟରେ ଭୂରି ଭୂରି ରହିଅଛି । ଏପରି ସ୍ଥଳରେ 'ଦିନେ ଭାରତବର୍ଷ ବ୍ରିଟିଶ ଉପନିବେଶମାନଙ୍କର ସମକକ୍ଷ ହୋଇ ବ୍ରିଟିଶ ସାମ୍ରାଜ୍ୟର ଗୋଟିଏ ବିଶିଷ୍ଟ ଅଙ୍ଗ ହୋଇ ଭାରତବାସୀମାନଙ୍କ ସ୍ୱାୟତ୍ତ-ଶାସନରେ ରହିବ,' ବିଲାତ ସରକାରଙ୍କର ଏହାହିଁ ଦୃଢ଼ ଲକ୍ଷ୍ୟ ଅଟେ, ଏଥିରେ ଏଣିକି ଆମ୍ଭମାନଙ୍କର ସନ୍ଦେହ ହୋଇ ନ ପାରେ । କାରଣ ଏହି ରିପୋର୍ଟଖଣ୍ଡିକ ବିଲାତବାସୀଙ୍କ ପ୍ରତିନିଧି ଭାରତ ମନ୍ତ୍ରୀ (State Secretary) ଏବଂ ଭାରତ ସମ୍ରାଟ୍‌ଙ୍କ ପ୍ରତିନିଧି ବଡ଼ଲାଟ (Viceroy and Governor General) ଏ ଦୁହିଁଙ୍କର ଇଜମାଲି ହଲପାନ ଇଜହାର ଓ ଏହା ଆମ୍ଭମାନଙ୍କ ପକ୍ଷରେ ତମ୍ବାପାତିଆ ସନନ୍ଦ ଅଟେ ।

ଶିକ୍ଷିତ ଭାରତବାସୀମାନଙ୍କର ମଧ୍ଯ ଶେଷ ଲକ୍ଷ୍ୟ ଏହିତା । ବର୍ତ୍ତମାନ ଏହି ଲକ୍ଷ୍ୟରେ ପହଞ୍ଚିବା ରାସ୍ତା ନେଇ ବିବାଦ ବିସମ୍ବାଦ ଓ କୋଡ଼ମାଡ଼ ଲାଗିଅଛି - ଏଥିରେ ନାନା ମୁନିଙ୍କର ନାନା ମତ । ଆମର କଂଗ୍ରେସ ଓ ମୁସଲିମ-ଲିଗ୍ ଗୋଟିଏ ରାସ୍ତାର ଖସଡ଼ା କରିଦେଲେ ବଡ଼ଲାଟଙ୍କ ବ୍ୟବସ୍ଥାପକ ସଭାର ବେସରକାରୀ ୧୯ ଜଣ ସଦସ୍ୟ ଗୋଟିଏ ବାଟ ଗାରି ଦେଲେ; ଅଚ୍ଚ ବହୁତ ସବୁ ସମ୍ପ୍ରଦାୟ, ସବୁ ଗଣ୍ୟମାନ୍ୟ ଓ ମୁଖିଆ ବଡ଼ଲୋକମାନେ ଗୋଟିଏ ଗୋଟିଏ ବାଟ ଗାରି ଦେଇଅଛନ୍ତି । ବର୍ତ୍ତମାନ ରିପୋର୍ଟରେ ଷ୍ଟେଟ ସେକ୍ରେଟରୀ ଓ ବଡ଼ଲାଟ ଗୋଟିଏ ବାଟ ଗାରି ଦେଇଅଛନ୍ତି ।

କଂଗ୍ରେସ-ଲିଗ୍ ଖସଡ଼ାରେ ଜାଗା, ବରଜାଗା, ଖମା, ଖଣି, କୋଇଲିଖିଆ କଣ୍ଟା ଓ ପଙ୍କ ଥିବାର ମନ୍ତ୍ରୀ - ଲାଟ ଏହି ରିପୋର୍ଟରେ ତନ୍ନ ତନ୍ନ କରି ଦେଖାଇ ଦେଇଅଛନ୍ତି । ଏଣେ ମନ୍ତ୍ରୀ-ଲାଟଙ୍କ ପ୍ରଦର୍ଶିତ ବାଟରେ ନାଗଫେଣିଆ, ଜଳପାଟ, ଶଁବାଳୁଆ ପୋକ, ଉପର-ଘୋଡ଼ିଆ ଗାଡ଼ ଓ ଚିକିଟା କାଦୁଅ ଅଛି ବୋଲି କଂଗ୍ରେସ-ଲିଗ୍ର କେତେ ଜଣ ନେତା ରଡ଼ି ଛାଡ଼ିଅଛନ୍ତି । କିନ୍ତୁ ମୋର ଦେଶବାସୀଙ୍କ ପ୍ରତି କ୍ଷୁଦ୍ର ନିବେଦନ ଏହି କି, ଭାରତର ଶାସନ ପ୍ରଣାଳୀ ସମ୍ବନ୍ଧରେ ବଡ଼ଲାଟ ଓ ଭାରତ ମନ୍ତ୍ରୀଙ୍କର ଯେଉଁ ଅଭିଜ୍ଞତା ଓ ଯେଉଁ ଅନୁଭବ ଅଛି, ତାହା ଅନ୍ୟାନ୍ୟ ପ୍ରସ୍ତାବ-ରଚୟିତାମାନଙ୍କ ମଧ୍ୟରୁ କେତେ ଜଣଙ୍କର ଅଛି ? ଏପରି ସ୍ଥଳରେ ଅନୁଭବୀ ଲୋକର କଥାଟାକୁ ଏକଦମ୍ ବାଏଁ ବାଏଁ ଉଡ଼ାଇ ଦେଲେ ଚଳିବ କାହୁଁ ? ମନ୍ତ୍ରୀ ଓ ଲାଟ ସ୍ପଷ୍ଟ କହିଅଛନ୍ତି ଯେ, ଏ ଖସଡ଼ା ପ୍ରଦର୍ଶିତ ପନ୍ଥା କେବଳ ପରୀକ୍ଷାସ୍ୱରୂପ । ଏହା ସଫଳ ହେବାର ଦେଖାଗଲେ କ୍ରମଶଃ ଏହି ରାସ୍ତା ଚଉଡ଼ା କରିବାକୁ ହେବ ଓ ଭାରତରେ ସ୍ୱାୟତ୍ତ ଶାସନର ଅଧିକାର କ୍ରମଶଃ ପ୍ରସାରିତ ହେବ । ଆମର ଗୋଟିଏ ପ୍ରଧାନ କଥା ଦେଖିବା ଉଚିତ ଯେ, ବର୍ତ୍ତମାନ ଆମ୍ଭେମାନେ ଅଳି କରୁଥିବା ଭଳି ପୂର୍ଣ୍ଣ ମାତ୍ରାରେ ସ୍ୱାୟତ୍ତ-ଶାସନ ଆମ୍ଭମାନଙ୍କୁ ଦିଆଗଲେ ଆମ୍ଭେମାନେ ତାହା ଚଳାଇ ପାରିବାକି ? କେଉଁ କେଉଁ କାରଣରୁ ଆମ୍ଭେମାନେ ତାହା ଚଳାଇ ନ ପାରିବା, ତହିଁର କାରଣମାନ ଧାରାବାହିକରୂପେ ଉକ୍ତ ରିପୋର୍ଟରେ ବିଶଦ ଭାବରେ ବିବୃତ ଅଛି - ଆମ ଦେଶରେ ଶିକ୍ଷା ବିସ୍ତାର ହୋଇ ନାହିଁ; ଦେଶରେ ରାଜନୀତିକ ଶିକ୍ଷାର ଅଭାବ, ଦେଶର ଅଧିକାଂଶ ଲୋକେ ରାଜନୀତିକ ଅଧିକାର ପରିଚାଳନ କରିବାକୁ ଅସମର୍ଥ ଓ ଅଜ୍ଞ; ଆମ୍ଭମାନଙ୍କ ମଧ୍ୟରେ ଧର୍ମଗତ ଭେଦବୁଦ୍ଧି, ସାମ୍ପ୍ରଦାୟିକ ସଙ୍କୀର୍ଣ୍ଣତା, ସାମାଜିକ ଅସାମଞ୍ଜସ୍ୟ, ବ୍ୟକ୍ତିଗତ ସ୍ୱାର୍ଥପରତା ଓ ହାମବଡ଼ା ଢଙ୍ଗ ପୂର୍ଣ୍ଣମାତ୍ରାରେ ବିରାଜମାନ; ଏ ସବୁର ପ୍ରମାଣ ଦିନ ଭିତରେ ୧୦ ଥର ଦେଖୁଥାଇଁ ଓ ଏ ସବୁ ନ ଯିବା ପର୍ଯ୍ୟନ୍ତ ସ୍ୱାୟତ୍ତ-ଶାସନ ଦିଆଗଲେ ତହିଁର ଅପବ୍ୟବହାର ଅନିବାର୍ଯ୍ୟ । ଆମର ଗୋଟିଏ ପ୍ରଧାନ ଅଭାବ ଶିକ୍ଷାଭାବ । ଦେଶରେ ବୈଷୟିକ, ବ୍ୟାବସାୟିକ, ରାଜନୀତିକ ଶିକ୍ଷା ବିସ୍ତାର ନ ହେବାଯାକେ, ଦେଶରେ ସାମ୍ପ୍ରଦାୟିକ ଉଦାରତା ଦୃଢ଼ ନ ହେବାଯାକେ

ସାଧାରଣ ଲୋକେ ସ୍ୱାୟତ୍ତ-ଶାସନର ମର୍ଯ୍ୟାଦା ବୁଝିପାରିବେ ନାହିଁ କିମ୍ବା ସ୍ୱାୟତ୍ତ-ଶାସନର ଅଧିକାର ପରିଚାଳନ କରିପାରିବେ ନାହିଁ ।

ରିପୋର୍ଟର ୧୫୩ ପ୍ରକରଣରେ ଲେଖା ଅଛି -

'While we do not doubt the eventual capacity of Indians for Self-Government, we find it freely and widely admitted that they are not at present ready.'

ଅର୍ଥାତ୍ ଦିନେ ଯେ ଭାରତବାସୀମାନେ ନିଜେ ଶାସନ କରିବାକୁ ଯୋଗ୍ୟ ହେବେ, ଏ କଥାରେ ଆମ୍ଭମାନଙ୍କର ସନ୍ଦେହ ନାହିଁ; କିନ୍ତୁ ଏହା ଅନେକ ବ୍ୟକ୍ତି ଅକୁଣ୍ଠିତ ଭାବରେ ସ୍ୱୀକାର କରୁଅଛନ୍ତି ଯେ, ବର୍ତ୍ତମାନ ଭାରତୀୟମାନେ ଉକ୍ତ ଅଧିକାର (ଗ୍ରହଣ ଓ ପରିଚାଳନ) ଲାଗି ପ୍ରସ୍ତୁତ (ଯୋଗ୍ୟ) ନୁହନ୍ତି ।

ରିପୋର୍ଟର ୧୮୬ ପ୍ରକରଣରେ ଲେଖା ଅଛି -

'A very general extension of the franchise is impossible until literacy is far more widely spread than is the case at present.'

ବର୍ତ୍ତମାନ ସାଧାରଣରେ ଯାହା ଶିକ୍ଷା ବିସ୍ତାର ହୋଇଅଛି, ତାହା ଆହୁରି ବହୁତ ବର୍ଦ୍ଧିତ ନ ହେବା ପର୍ଯ୍ୟନ୍ତ ସ୍ୱାୟତ୍ତ-ଶାସନ ନିମନ୍ତେ ଆବଶ୍ୟକ 'ଭୋଟ' ଦେବାର ଓ ପ୍ରତିନିଧି ନିର୍ବାଚନ କରିବାର ଅଧିକାର ସାଧାରଣ ଲୋକଙ୍କଠାରେ ଅର୍ପିତ ହୋଇପାରିବା ଅସମ୍ଭବ ।

ବର୍ତ୍ତମାନ ଦେଖିବା ଉଚିତ ଯେ, ସ୍ୱାୟତ୍ତ-ଶାସନର ମାହାତ୍ମ୍ୟ, ତାହାର ଗୁଣ, ତାହାର କରାମତ, ଏମନ୍ତ କି ତାହା କିମ୍ଭୂତ ପଦାର୍ଥ, ଏ କଥା ଆମ୍ଭମାନଙ୍କ ମଧ୍ୟରୁ ଶତକଡ଼ା ୯୦ ଜଣ ଜାଣି ନାହାନ୍ତି ଅବା ଭାବିବାକୁ ଶିଖି ନାହାନ୍ତି - ଏପରି ସ୍ଥଳରେ ଆମ ହାତରେ ପୂର୍ଣ୍ଣ ସ୍ୱାୟତ୍ତ-ଶାସନ ଦେବାର ଅର୍ଥ ଏହିତା ହେବ ଯେ, ଯେଉଁ ଶତକଡ଼ା ୧୦ ଜଣ ସିଆଣା ବାସି ଧୋବ ଲୁଗା ପିନ୍ଧି ଦାଣ୍ଡରେ ନହର ପହର ହେଉଥାଇଁ, ସେହିମାନେ ଦେଶକୁ ଶାସନ କରିବେ । ମୂର୍ଖ ପାମର ସାଧାରଣଙ୍କ ଠାରୁ 'ଦିଲ୍ଲୀକା ଲଡୁ' ଟି ମାନ ସିଆଣା ଭାଇଯାକ ଛଡ଼ାଇ ନେଇ ଗିଳିଦେବାର ସାର ହେବ ସିନା !

ଆଗେ ଏ ସମ୍ବନ୍ଧରେ କେତେକ ଲୋକଙ୍କ ମୁହଁରୁ ଆପତ୍ତି ଶୁଣା ଯାଉଥିଲା ଯେ, ସାଧାରଣ ଲୋକେ ଶିକ୍ଷିତ ହେବେ କାହୁଁ ? ଶିକ୍ଷାର ଚାବି ଯେଉଁମାନଙ୍କ ହାତରେ, ସେମାନେ ଆମକୁ ଅଶିକ୍ଷିତ କରି ରଖିଲେ, ଅଥଚ କୌଣସି କଥା ପଡ଼ିଲେ କହୁଅଛନ୍ତି, ତୁମ୍ଭେମାନେ ଅଶିକ୍ଷିତ । ଆମକୁ ଅଶିକ୍ଷିତ କଲା କିଏ ରେ ବାପା ? ଏଥିପାଇଁ ରିପୋର୍ଟ କର୍ତ୍ତାମାନେ ରିପୋର୍ଟରେ ସ୍ପଷ୍ଟ କହିଅଛନ୍ତି ଯେ (୧୮୭ ପ୍ରକରଣ) The direction of Indian Education should be increasingly transferred to Indian hands.

ଭାରତବାସୀଙ୍କ ଶିକ୍ଷାର ବ୍ୟବସ୍ଥା କରିବାର ଭାର କ୍ରମଶଃ ଭାରତବାସୀଙ୍କ ଠାରେ ନ୍ୟସ୍ତ ହେବ । ଆମର ଶିକ୍ଷାର ବ୍ୟବସ୍ଥା ଆମରି ହାତକୁ ଆଣିଲେ ଦେଶରେ କ୍ରମଶଃ ଶିକ୍ଷା ବିଞ୍ଚି ହୋଇଯିବ । ବର୍ତ୍ତମାନ ଯେତେବେଳେ ବ୍ରିଟିଶ ସରକାର ଓ ବିଲାତ ପାର୍ଲିଆମେଣ୍ଟ ଆମର ଯୋଗ୍ୟତା ଅନୁସାରେ ଆମକୁ ସ୍ୱାୟତ୍ତ-ଶାସନ ଅଲବତ ମିଳିବ ବୋଲି ଏକରାର କରି ସାରିଲେଣି, ଏ ଏକରାରନାମାରୁ ଏ ପକ୍କା ଚୁକ୍ତିରୁ ଆଉ ପଛଘୁଞ୍ଚା ଦେବାର ଜୁ' ନାହିଁରେ ବାପା ! ପଛଘୁଞ୍ଚା ଦେଲେ ସାରା ସଭ୍ୟଜଗଦ୍ ତାଙ୍କୁ ଆଖି ତରାଟିବ । ଆଉ ଭାରତବାସୀ ମଧ୍ୟ ସହଜରେ ନ ଛାଡ଼ନ୍ତି । ଅତଏବ ବର୍ତ୍ତମାନ ଆମର ପ୍ରଧାନ କଥା ଯୋଗ୍ୟତା ଦେଖାଇବା । ଆମ ହାତରେ ବର୍ତ୍ତମାନ ଯେତିକି 'ବାଙ୍ଗେ ରିପୋର୍ଟ' ଓ 'ତହସିଲ ଆଲାହେଦା' ମାହାଲ ବୁଝିବାକୁ ଦିଆଗଲାଣି, ସେତିକି ଯେବେ ଆମେ କମଣ କରି ଦୋରସ୍ତ କରି ପକାଇବା, କାଲିକୁ ବଳେ ବଳେ ଆମରି ଷୋଳପଣି ତଉଜ ଜମିଦାରି ଓ ରାଜକି, ଆବାଦି, ଅନାବାଦି, ନିଜ ଚାଷ, ନିଜ ଜୋତ ଆମକୁ ମିଳିବ । ଏଥିପାଇଁ ପ୍ରସ୍ତୁତ ହେବା ଦରକାର । ଦେଶର ଶିକ୍ଷିତମାନଙ୍କଠାରେ ବର୍ତ୍ତମାନ ଠାରୁ ଗୋଟିଏ କଠୋରତମ କର୍ତ୍ତବ୍ୟ ଲଦା ହେଲା । ପାମରସାଧାରଣଙ୍କୁ, ଅସ୍ପୃଶ୍ୟ ଜାତିକୁ, ଅନ୍ୟାନ୍ୟ ସମ୍ପ୍ରଦାୟଙ୍କୁ, ଦେଶର ମାତା ଓ କନ୍ୟାମାନଙ୍କୁ ଶିକ୍ଷା ଓ ଦୀକ୍ଷା ସେହି ଚରମ ଲକ୍ଷ୍ୟ ଆଡ଼କୁ ଅଗ୍ରସର କରାଇବାକୁ ହେବ, ରାଜନୀତିକ ଅଧିକାର ପରିଚାଳନ କରିବାରେ ଅଭ୍ୟାସ ଶିଖାଇବାକୁ ହେବ, ନିଜକୁ ନିଜେ ରକ୍ଷା କରିବାକୁ, ଶିକ୍ଷା ଦେବାକୁ ହେବ, ସାମ୍ପ୍ରଦାୟିକ ସଂକୀର୍ଣ୍ଣତା, ବର୍ଣ୍ଣାଶ୍ରମ-ଜାତି-ଜନିତ ଅଭିମାନ, କୁସଂସ୍କାର, ସାମାଜିକ କୁରୀତି ଓ ଅସମତାମାନ ସମୂଳରେ ଲୋପ କରିବାକୁ ହେବ । ଏଥିପାଇଁ ଏକାଗ୍ର ସଂଯମ, କଠୋର ସାଧନା, ପ୍ରଚୁର ସ୍ୱାର୍ଥତ୍ୟାଗ ଆବଶ୍ୟକ । ସମଗ୍ର ସଭ୍ୟଜଗଦ୍ ସଙ୍ଗେ ସମତୁଲ ହେଲେ ତ ତାଙ୍କ ଅଧିକାର ପାଇପାରିବା - ଖାଲି ରଡ଼ି ବୋବାଳି ଛାଡ଼ିଲେ ତଣ୍ଟି ଦରଜ ସାର ହେବ ।

ରିପୋର୍ଟ ସମ୍ବନ୍ଧରେ ଏ କେତେଟା ମୋଟାମୋଟି କଥା କହିଲି । ଅବଶ୍ୟ ଏ ରିପୋର୍ଟଟି ପ୍ରତ୍ୟେକ ଶିକ୍ଷିତ ଭାରତବାସୀ ତନ୍ନ ତନ୍ନ କରି ପାଠ କରି, ହୃଦୟଙ୍ଗମ କରି, ବିଚାର କରି, ଆଲୋଚନା କରି ନିଜ ନିଜର ମତ ପ୍ରକାଶ କରିବେ ଓ ଉକ୍ତ ମତଗୁଡ଼ିକର ସାରାସାର ବିଚାର କରାଯାଇ ଏ ରିପୋର୍ଟ ପରିମାର୍ଜିତ, ସଂସ୍କୃତ ଓ ଗୃହୀତ ହେବ । ତେବେ ନିଃସନ୍ଦେହରେ ଏତିକି ବୋଲାଯାଇପାରେ । ଆଜିଯାକେ ଭାରତବାସୀମାନେ 'Subject nation' (ପରାଧୀନ ଜାତି) ଥିଲେ ଓ ଇଂରେଜମାନେ ଥିଲେ ଆମ୍ଭମାନଙ୍କର ମାତା ମାହାପିସ ଓ ଆସନ୍ନ ବନ୍ଧୁ । କିନ୍ତୁ ବର୍ତ୍ତମାନ ଆମ ଜାତିର ସେହି ନାବାଳକଟି ଯିବାର ସମୟ ଉପସ୍ଥିତ ହୋଇଅଛି ଓ ଆମ୍ଭମାନଙ୍କ ଘରର ଭାର ଆମକୁ ଦିଆଯିବା ନିମନ୍ତେ ଆମର ଯୋଗ୍ୟତାର ପରୀକ୍ଷାର ସମୟ ଉପସ୍ଥିତ ହୋଇଅଛି । ଏ ପରୀକ୍ଷାରେ ପାସ୍ କରିପାରିଲେ ସମଗ୍ର ସଭ୍ୟଜାତିଙ୍କ ସଙ୍ଗେ ଆମେ ସରିକଦାର ମାମଲତକାର ସ୍ୱରୂପ

ପରିଗଣିତ ହେବୁଁ । ନଇଲେ 'ପୁନର୍ମୂଷିକୋଭବ' ରେ ବାପା ! ଫେର ପୃଥ୍ୱୀରାଜ ଜୟଚନ୍ଦ୍ରଙ୍କ କାଳଠାରୁ ଆରମ୍ଭ କରି ଭାରତ ଇତିହାସର ପୁନରାବୃତ୍ତି ହେବ ମାତ୍ର !

ରିପୋର୍ଟର ମୋଟାମୋଟି କଥା ଏହି - ବର୍ତ୍ତମାନ ଗ୍ରାମେ ଗ୍ରାମେ ଗ୍ରାମବାସୀମାନଙ୍କ ଦ୍ୱାରା ମନୋନୀତ ପଞ୍ଚାଏତ ପ୍ରଥା ପ୍ରବର୍ତ୍ତିବ । ପଞ୍ଚାଏତଙ୍କ ଠାରେ ଗ୍ରାମର ଶିକ୍ଷା, ସ୍ୱାସ୍ଥ୍ୟ, ଶାସନ ଓ ବୈଷୟିକ ଉନ୍ନତି ଓ କର ବସାଇବାର ଭାର ରହିବ । ମ୍ୟୁନିସିପାଲିଟି ଓ ଡିଷ୍ଟ୍ରିକ୍ଟବୋର୍ଡ଼ରେ ନିର୍ବାଚନ ପ୍ରଣାଳୀ ବଳବତ୍ତର ହେବ ଓ ଏମାନେ ହାକିମଙ୍କ ଅନୁଗ୍ରହ ପ୍ରାର୍ଥୀ ଓ ମୁଖାପେକ୍ଷୀ ନ ହୋଇ ନିଜ ନିଜର ମାମଲତ ବୁଝିବେ । ଏଣିକି କଲଟର, କମିସନରମାନେ ହାକିମ ପୋଷାକ ଛାଡ଼ି ଆମର ପରାମର୍ଶଦାତା ବନ୍ଧୁଙ୍କ ସ୍ଥାନ ଅଧିକାର କରିବେ । ମ୍ୟୁନିସିପାଲିଟି ଓ ବୋର୍ଡ଼ରୁ ଆମରି ଭିତରୁ ମୁଖିଆମାନେ ଯାଇ ପ୍ରାଦେଶିକ ଶାସନ ଓ ବ୍ୟବସ୍ଥା ବିଭାଗରେ ରହିବେ । ଆମର ଶିକ୍ଷା ଆମରି ଉପରେ ରହିବ । ବର୍ତ୍ତମାନ ପରୀକ୍ଷାସ୍ୱରୂପ କେତେଗୁଡ଼ିଏ ବିଭାଗ ଆମ ହାତରେ ପୂରା ରହିବ - କେତେଗୁଡ଼ିଏ ବିଭାଗ ଛୋଟଲାଟଙ୍କ ହାତରେ ରହିବ । ଆଗେ ଯେପରି ଛୋଟଲାଟମାନେ ପ୍ରଦେଶର ସର୍ବେସର୍ବା ମା ବାପ ଥିଲେ, ଏଣିକି ତାହା ହେବ ନାହିଁ । ଛୋଟଲାଟଙ୍କ ସଙ୍ଗେ ଗୋଟିଏ Executive Council (କାର୍ଯ୍ୟକାରୀ ଦରକାର) ରହିବ । ଆମ ହାତ୍‌ରେ ଯେତିକି ବିଭାଗ ବର୍ତ୍ତମାନ ଦିଆ ଯାଉଅଛି, ସେଗୁଡ଼ିକ ଆମେ 'ନେଇ ଆଣି ଥୋଇ' ଜାଣିବାର ଦେଖାଗଲେ ଛୋଟଲାଟଙ୍କ ଉପରେ ନ୍ୟସ୍ତ ଥିବା ବିଭାଗ ଗୋଟି ଗୋଟି ହୋଇ ଆମ ହାତକୁ ଆସିବ । ଆମରି ଭିତରୁ, ଆମରି ନିର୍ବାଚିତ ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣେ ଦୁଇଜଣ ଲେଖାଏଁ ଛୋଟଲାଟଙ୍କ ମନ୍ତ୍ରୀ ହେବେ । ଯେଉଁ ବିଭାଗମାନଙ୍କ କାର୍ଯ୍ୟପ୍ରଣାଳୀ ସଙ୍ଗେ ସମଗ୍ର ଭାରତର ଓ ବ୍ରିଟିଶ ସାମ୍ରାଜ୍ୟର ଦୃଢ଼ ସମ୍ବନ୍ଧ ରହିଅଛି (ଯଥା - ଲଟଣ ବିଭାଗ, ଯୁଦ୍ଧଜାହାଜ ବିଭାଗ, ଦେଶରକ୍ଷା ବିଭାଗ, ଅନ୍ତର୍ଜାତୀୟ ବାଣିଜ୍ୟ ବିଭାଗ, ଦେଶୀୟ ରାଜାଙ୍କ ସଙ୍ଗେ ସମ୍ବନ୍ଧ, ଇତ୍ୟାଦି) ସେହି ବିଭାଗମାନଙ୍କରେ ବଡ଼ଲାଟଙ୍କର ଅଧିକାର ରହିବ । ଏଣିକି ମୋ ଘରର ହାଲଚାଲ ମୁଁ ବୁଝିବି, ମୋ ଗାଁର ମାମଲତ ଗାଁବାଲା ବୁଝିବେ, ସହରର ମାମଲତ ସହରିଆ ବୁଝିବେ, ପ୍ରଦେଶର ମାମଲତ ପ୍ରାଦେଶିକ କର୍ମକର୍ତ୍ତା (ଅର୍ଥାତ୍ ମନ୍ତ୍ରୀ ସଦସ୍ୟ ପରିବୃତ ଛୋଟଲାଟ) ବୁଝିବେ, ସମଗ୍ର ଭାରତର ମାମଲତ ସଦସ୍ୟ-ପରିବୃତ୍ତ ବଡ଼ଲାଟ ବୁଝିବେ, ଦେଶୀୟ ରାଜାମାନଙ୍କ ମାମଲତ ରଜା ବୁଝିବେ, ପ୍ରଜାଙ୍କ ମାମଲତ ପ୍ରଜା ବୁଝିବେ । କେବଳ ସାମ୍ରାଜ୍ୟର ମାମଲତ ବ୍ରିଟିଶ ପାର୍ଲିଆମେଣ୍ଟ ଓ ସଦସ୍ୟ-ପରିବୃତ୍ତ ଷ୍ଟେଟ ସେକ୍ରେଟେରୀ ବୁଝିବେ । ଏଥିରେ ସୁଦ୍ଧା ଭାରତବାସୀଙ୍କର ମତ ନିଆଯିବ । ଦଶବର୍ଷରେ ପାର୍ଲିଆମେଣ୍ଟଙ୍କ ଦ୍ୱାରା ନିଯୁକ୍ତ ଗୋଟିଏ ଅନୁସନ୍ଧାନ ସମିତି ବଇଠକ କରିବେ ଓ ଆମ୍ଭେମାନେ ବିଗତ ୧୦ ବର୍ଷ ମଧ୍ୟରେ ଆମ ଉପରେ ନ୍ୟସ୍ତ ହୋଇଥିବା ବିଭାଗମାନଙ୍କର ମାମଲତ କିପରି ବୁଝିଅଛୁଁ, ତାହା ସନ୍ଧାନ କରି ଏ ସମିତି ପାର୍ଲିଆମେଣ୍ଟଙ୍କୁ ଜଣାଇବେ - ଯେବେ ଦେଖାଯିବ ଯେ

ଆମ ଉପରେ ଦିଆ ଯାଇଥିବା ମାମଲତ ଆମେ ଠିକଣା କରି ବୁଝିଅଛୁଁ, ତେବେ ଭାରତର ବର୍ତ୍ତମାନ ହାକିମମାନଙ୍କ ଠାରୁ (ଛୋଟଲାଟ, ବଡ଼ଲାଟ, ଷ୍ଟେଟ ସେକ୍ରେଟେରୀ, ପାର୍ଲିଆମେଣ୍ଟ ସଭା) ଗୋଟିଏ ଗୋଟିଏ ଅଧିକାର କଢ଼ା ହୋଇ ଆମ୍ଭମାନଙ୍କୁ ଦିଆଯିବ ଓ ଈଶ୍ୱର କରନ୍ତୁ - ଏପରି ଦିନ ଆସିବ ଯେ, କେବଳ ଯେଉଁ ଯେଉଁ ପ୍ରଶ୍ନର ମୀମାଂସା ସଙ୍ଗେ ସମଗ୍ର ବ୍ରିଟିଶ ସାମ୍ରାଜ୍ୟର ସ୍ୱାର୍ଥ ବିଜଡ଼ିତ, ସେହି ପ୍ରଶ୍ନ ଛଡ଼ା ଅନ୍ୟ ସମସ୍ତ ବିଷୟରେ ଆମ ମାମଲତ ଆମେ ବୁଝିବୁଁ । ଆମ ଘରକଥାରେ ଦାଣ୍ଡଲୋକଙ୍କର ପାଟି ଫିଟାଇବାର ଅଧିକାର ରହିବ ନାହିଁ । ବ୍ରିଟିଶ ଜାତି ଓ ବ୍ରିଟିଶ ପାର୍ଲିଆମେଣ୍ଟ କେବଳ ଏତିକି ଜଗିବେ ଯେ, ଆମେ ଯେପରି ଆମରି ମଧ୍ୟରେ ତଣ୍ଟି ଚିପାଚିପି ହେବା ନାହିଁ; କିମ୍ବା ପରର ତଣ୍ଟି ଚିପିବା ନାହିଁ । ଆମ ମାମଲତ ଆମେ ବୁଝିବା, ଆମ ଦେଶର ପଦାର୍ଥ ଆମେ ବ୍ୟବହାର କରିବା । ଆମ କଉଡ଼ି ହାଡ଼ି ଖାଇବେ ନାହିଁ, ଆମ ବାଣିଜ୍ୟରୁ, ଆମ କାରଖାନାରୁ ଆମେ ଲାଭ ପାଇବା, ଆମ ଅଭାବ ଆମ ଦେଶ ପୂରଣ କରିବ, ଆମ ପାଇଁ ଆଇନ ଆମେ କରିବା, ଆମ ଉପରେ କର ଆମେ ବସାଇବା, ଆମରି ପଲଟଣ ଓ ଯୁଦ୍ଧ ଜାହାଜ ଆମ ଦେଶକୁ ରକ୍ଷା କରିବ, ଆମ ସମାଜ କଥା ଆମେ ବୁଝିବା, ଆମ ଶିକ୍ଷାର ବ୍ୟବସ୍ଥା ଆମେ କରିବା, ଆମରି ନିର୍ବାଚିତ ପ୍ରତିନିଧି ଆମକୁ ଶାସନ କରିବେ । କେବଳ ଏଥିରେ ବାହାର ସଙ୍ଗେ ଗୋଟିଏ ମାତ୍ର ସମ୍ପର୍କ ରହିବ । ତାହା ପ୍ରଭୁ-ଭୃତ୍ୟ ସମ୍ପର୍କ ନୁହେଁ, ଜେତା-ବିଜିତ ସମ୍ପର୍କ ନୁହେଁ, ହାକିମ-ଆସାମୀ ସମ୍ପର୍କ ନୁହେଁ, ଖାଦ୍ୟ-ଖାଦକ ସମ୍ପର୍କ ନୁହେଁ, ଧନୀ-ଗରିବ ସମ୍ପର୍କ ନୁହେଁ, ସଭ୍ୟ-ଅସଭ୍ୟ ସମ୍ପର୍କ ନୁହେଁ, ଗୋରା ଚମଡ଼ା-କଳା ଚମଡ଼ା ସମ୍ପର୍କ ନୁହେଁ । ସେ ସମ୍ବନ୍ଧ ଭାଇ ଭାଇର ସମାନ ଅଧିକାରଜନିତ ସମ୍ପର୍କ, ଏକ ସାମ୍ରାଜ୍ୟର ବିଶିଷ୍ଟ ଅଙ୍ଗପ୍ରତ୍ୟଙ୍ଗର ସମ୍ପର୍କ, ଏକ ସାର୍ବଜନିକ ସଭ୍ୟ ସମାଜର ଭିନ୍ନ ଭିନ୍ନ ଅବୟବର ସମ୍ପର୍କ, ସମାନ ଅଧିକାରପ୍ରାପ୍ତ ଦିଓଟି ସଭ୍ୟ ଓ ଶିକ୍ଷିତ ଜାତି ମଧ୍ୟରେ ସମ୍ପର୍କ - ଏ ସମ୍ପର୍କଦ୍ୱାରା ଭାରତ ଉନ୍ନତ ହେବ, ପାଶ୍ଚାତ୍ୟ ସଭ୍ୟତାରେ ଆଲୋକିତ ହେବ, ଆତ୍ମମର୍ଯ୍ୟାଦାରେ ସମ୍ମାନିତ ହେବ, ସମାନ ଅଧିକାର ଲାଭ ଦ୍ୱାରା କୃତାର୍ଥ ହେବ - ଏକ ପୃଥିବୀବ୍ୟାପୀ ବ୍ରିଟିଶ ସାମ୍ରାଜ୍ୟ ରୂପ ପରିବାରର ଗୋଟିଏ ଅଙ୍ଗରୂପେ ସଭ୍ୟଜଗତ୍‌ରେ ପରିଚିତ ହେବ । ଏହାହିଁ ହେଲା ଚରମ ଲକ୍ଷ୍ୟ ଓ ଆଦର୍ଶ । ବର୍ତ୍ତମାନ ପ୍ରସ୍ତାବ କେବଳ ତାହାରି କ୍ଷୀଣ ସୂଚନା ମାତ୍ର । ଭଗବାନ୍ କରନ୍ତୁ, ଏ ସୁଦିନ ଶୀଘ୍ର ଆସୁ । ଭାରତ ଦିନେ ଆର୍ଯ୍ୟମାନଙ୍କ ସାଧନାରେ ପ୍ରାଚ୍ୟ ସଭ୍ୟତାର ଚରମ ସୀମାରେ ପହଞ୍ଚିଥିଲା । ଆଜି ସୁପ୍ରଭାତ ହୋଇଅଛି । ନ୍ୟାୟପୁର, ସ୍ୱାଧୀନତାପ୍ରିୟ, ଆତ୍ମମର୍ଯ୍ୟାଦା ଦ୍ୱାରା ଅନୁପ୍ରାଣିତ, ଆତ୍ମନିର୍ଭର ଦ୍ୱାରା ବଳପ୍ରାପ୍ତ, ସ୍ୱାୟତ୍ତ-ଶାସନ ଦ୍ୱାରା ଆନନ୍ଦିତ, ପାଶ୍ଚାତ୍ୟ ସଭ୍ୟତା, ଶିକ୍ଷା, ବିଜ୍ଞାନ, ବାଣିଜ୍ୟ, ଶିଳ୍ପାଦି ଦ୍ୱାରା ଲାଭପ୍ରାପ୍ତ ନ୍ୟାୟପର ବ୍ରିଟିଶ ଜାତି ସଂସ୍ରବରେ ଆସିବାର ଫଳସ୍ୱରୂପ ପାଶ୍ଚାତ୍ୟ ସଭ୍ୟତାର ଚରମ ସୀମାରେ ଭଗବାନ୍ ଅଚିରେ ଭାରତବର୍ଷକୁ ପହଞ୍ଚାନ୍ତୁ । ବାଟ ଫିଟି ଯାଇ ସାରିଲାଣି, ଏ ପଥ ଦୂର,

କିନ୍ତୁ ଅଗମ୍ୟ ନୁହେଁ । ଆମକୁ ନିଜ ଗୋଡ଼ରେ ଚାଲିବାକୁ ହେବ, ନିଜ ଶିଙ୍ଗରେ ମାଟି ଖୋଳିବାକୁ ହେବ । ଏହା ଶୀଘ୍ର ହେଉ, ଏହାହିଁ ଭଗବାନ୍‌ଙ୍କ ପଦରେ ପ୍ରାର୍ଥନା ।

ଅତଏବ ମଣ୍ଟେଗୁ-ଚେମ୍‌ସଫୋର୍ଡ଼ ରିପୋର୍ଟଟି ଆଉ କିଛି ନୁହେଁ, ଏହା ଆମ ଘରର ହାଲଚାଲରୁ ଅସଲ କାଣ୍ଡିଏ ।

ଏ ତ ଗଲା ସମଗ୍ର ଭାରତବର୍ଷ ସମ୍ବନ୍ଧରେ ଆମ ଘରର ହାଲଚାଲ । ବର୍ତ୍ତମାନ ଦେଖାଯାଉ, ଏ 'ଦିଲ୍ଲୀକା ଲଡୁ'ର ହରିଲୁଟରେ ଆମ ଓଡ଼ିଶା ମାତାଙ୍କୁ ଓ ଓଡ଼ିଆ ଜାତିକୁ କଣ ମାଲ ମିଳୁଅଛି ବା ମିଳିବାର ଆଶା ଅଛି । ଆମେ ବହୁକାଳରୁ କୋଡ଼ି କଚାଡ଼ି ହେଉଥାଇଁ ଯେ, ସମଗ୍ର ଉତ୍କଳଭାଷୀ ଅଞ୍ଚଳକୁ ଏକ ଶାସନାଧୀନ ରଖାଯାଉ । ମଣ୍ଟେଗୁ ସାହେବ ଭାରତରେ ପଦାର୍ପଣ କଲାବେଳେ ଆମର ମୁଖିଆଯାକ ଏହି ରାଜନୀତିକ ଏକୀକରଣ ପାଇଁ ଭାରି ହୁଲର ପକାଇଥିଲେ - ଆମ ଜାତି ମୁଖପତ୍ର ରୂପେ 'ଦି ଓଡ଼ିଆ' ସମଗ୍ର ଓଡ଼ିଆଙ୍କର ଏହି ଆଳକୁ ସଭ୍ୟଜଗତ୍ ଆଗରେ ଉପସ୍ଥାପିତ କରିଥିଲେ ଓ ମନ୍ତ୍ରୀ ଲାଟଙ୍କୁ ମୁଲାକାତୀ ଅରଜି ଭେଟିଲା ବେଳେ ଆମର ପ୍ରତିନିଧିମାନେ ମଧ ଏହି ପ୍ରସଙ୍ଗକୁ ଦୃଢ଼ ଭାବରେ ଉତ୍‌ଥାପନ କରିଥିଲେ । ସେତିକିବେଳେ କେହି କେହି କହିଥିଲେ ଯେ, ଏପରି କରିବା ଦ୍ଵାରା ଘୋଡ଼ାକୁ ଗାଡ଼ି ଟାଣିବା (The cart before the horse) ପ୍ରଣାଳୀ ଅବଲମ୍ବିତ କରାଯାଉଅଛି । ଏଇଟା ମତେ ସେତେବେଳେ ଦୋଦିଣ୍ଡାନିଶାପ ଭଳି ଜଣା ପଡୁଥିଲା - ଫେର ବିଚାରିଲି, କେଜାଣି ବିରାଡ଼ି କପାଳକୁ ଶିକା ଛିଣ୍ଡିବ ପରା ! ଆମ ମୁଖିଆମାନେ ଯେଉଁ ଆନ୍ଦୋଳନ ଲଗାଇଥିଲେ, ସେଥିରେ ଯେ କିଛି ଫଳ ଫଳି ନାହିଁ କିମ୍ବା ସେଥିରେ ମନ୍ତ୍ରୀ-ଲାଟଙ୍କ ମନ ତରଳି ନାହିଁ, ଏ କଥା ବୋଲା ଯାଇ ନ ପାରେ । ବର୍ତ୍ତମାନ ଐତିହାସିକ ବା ପ୍ରାକୃତିକ ଓଡ଼ିଶା- ଚାରି ଫାଙ୍କ ଉତ୍ତର ଫଡ଼ାକ ବଙ୍ଗଦେଶରେ, ଦକ୍ଷିଣ ଫାଳକ ମାନ୍ଦ୍ରାଜରେ, ପଶ୍ଚିମ ଖଣ୍ଡକ ମଧ୍ୟପ୍ରଦେଶରେ; ବାକି ଗଣ୍ଡି ଖଣ୍ଡିକ ପଡ଼ିଛି ବିହାରୋତ୍କଳ ପ୍ରଦେଶସ୍ଥ ଓଡ଼ିଶା ବିଭାଗରେ । କେବଳ Orissa proper ଗଣ୍ଡି ଖଣ୍ଡୁକ ଛଡ଼ା ଅନ୍ୟ ସମସ୍ତ ଅଂଶରେ ବାସ କରୁଥିବା ଓଡ଼ିଆପୁଏ minority (ସଂଖ୍ୟାରେ ନ୍ୟୁନ) ହେବେ । ଏପରି ସ୍ଥଳରେ ତତ୍ତତ୍ ଅଞ୍ଚଳମାନଙ୍କରେ ବାସ କରୁଥିବା ଓଡ଼ିଆମାନଙ୍କର ସ୍ଵରକୁ (voice) କର୍ତ୍ତୃପକ୍ଷମାନ ଶୁଣିବେ ନାହିଁ । ଫଳତଃ Minority representation (ଅଳ୍ପସଂଖ୍ୟକ ବ୍ୟକ୍ତିଙ୍କ ପ୍ରତିନିଧି ନିର୍ବାଚନ) ପ୍ରଣାଳୀ ସୃଷ୍ଟି ନ କଲେ ଓଡ଼ିଆମାନଙ୍କ ଦଶା ଶୋଚନୀୟ ହେବ । ରିପୋର୍ଟର ୩୯ ପ୍ରକରଣରେ ଲେଖା ଅଛି -

The present map of British India was shaped by the military, political and administrative exigencies or conveniences of the moment (except in the case of the reconstitution of Bengal) with small regard to the natural affinities or wishes of the people.

ଅର୍ଥାତ୍ ବର୍ତ୍ତମାନ ବ୍ରିଟିଶ ଭାରତର ଯେଉଁ ମାନଚିତ୍ର ଗଠିତ ହୋଇଅଛି, ତାହା ସେନାସମ୍ପର୍କୀୟ, ରାଜନୀତିକ ଓ ଶାସନଗତ ସୁବିଧା ପ୍ରତି ବା ତାତ୍କାଳିକ ପ୍ରୟୋଜନ ଅନୁସାରେ ସ୍ଥିରୀକୃତ ହୋଇଥିଲା । କେବଳ ବଙ୍ଗପ୍ରଦେଶର ପୁନର୍ଗଠନ ଛଡ଼ା ଅନ୍ୟ କୁତ୍ରାପି ଅଧିବାସୀମାନଙ୍କର ସ୍ୱାଭାବିକ ଏକତ୍ୱ ବା ସମତା ପ୍ରତି କିମ୍ବା ସେମାନଙ୍କ ଅଭିମତ ପ୍ରତି ଆସ୍ଥା ପ୍ରଦର୍ଶନ କରାହୋଇ ନାହିଁ ।

୧ ପ୍ରକରଣରେ ଲେଖା ଅଛି - The attachment of Orissa to the rest of the Province (Bihar and Orissa) was dictated by the need of providing for areas which the new Presidency could not absorb rather than by considerations of convenience or economy.

ଅର୍ଥାତ୍ ଓଡ଼ିଶା ଯେ ବିହାର-ଓଡ଼ିଶା ପ୍ରଦେଶ ସହିତ ଯୁକ୍ତ ହୋଇଅଛି, ତାହା ସୁବିଧା ବା ଆର୍ଥିକ କାରଣବଶତଃ ନୁହେଁ, କେବଳ ଏହି ଅତିରିକ୍ତ ଅଂଶକୁ କୌଣସି ପ୍ରକାରେ ସ୍ଥାନ ଯୋଗାଇବା ପାଇଁ ସେପରି କରା ହୋଇଅଛି ।

୨୫୭ ପ୍ରକରଣରେ ଲେଖା ଯାଇଅଛି ଯେ, For the representation of other minorities (than Mahomedans and Sikhs) we should prefer nomination. ଅର୍ଥାତ୍ ମୁସଲମାନ ଓ ଶିଖ ସମ୍ପ୍ରଦାୟ ଛଡ଼ା ଅନ୍ୟାନ୍ୟ ସ୍ୱଳ୍ପସଂଖ୍ୟକ ଦଳପାଇଁ ପ୍ରତିନିଧି ନିଯୋଗ ବିଷୟରେ ନିର୍ବାଚନ ବିଧି ପରିବର୍ତ୍ତରେ ସରକାରୀ ନିଯୋଗ ପ୍ରବର୍ତ୍ତିତ ହେବା ବିଧେୟ ।

ଓଡ଼ିଆମାନେ ଏକ ପ୍ରଦେଶାଧୀନ ହେଲେ ବିଭିନ୍ନ ପ୍ରଦେଶରେ ବାସ କରୁଥିବା ଅଳ୍ପସଂଖ୍ୟକ ଓଡ଼ିଆଙ୍କ ଭାଗ୍ୟରେ 'ପୁନର୍ମୂଷିକୋ ଭବ' । ଅର୍ଥାତ୍ ''ମୁଠିଏ ଭିକ୍ଷା ଦିଅ ରେ ବାବା ।''

ପରିଶେଷରେ ନୂତନ ଭାବରେ ଲୋକଙ୍କ ରୁଚି, ପ୍ରକୃତି ଓ ସୁବିଧା ଅନୁସାରେ ପ୍ରଦେଶ ଗଠନ ସମ୍ବନ୍ଧରେ ଅନୁକୂଳ ପ୍ରତିକୂଳ ଅନେକ କଥା କହି ରିପୋର୍ଟ-ରଚୟିତାମାନେ କହିଅଛନ୍ତି ଯେ -

In Orissa and Berar at all events it seems to us that possibility of instituting Sub-provinces need not be excluded from consideration at an early date.

ଅର୍ଥାତ୍ ଓଡ଼ିଶା ଓ ବେରାର ସମ୍ବନ୍ଧରେ ଉପ-ପ୍ରଦେଶ ଗଠନର ଆବଶ୍ୟକତା ସତ୍ୱର ବିବେଚନା କରିବା ଉଚିତ ।

ଏତକ ଅବଶ୍ୟ ଆଶାର କଥା । ମାତ୍ର ଏଥିରୁ ଓଡ଼ିଆ ପାଠକମାନେ ଓ ନେତାମାନେ ଦେଖିବେ ଯେ ''ହନୋଜ୍ ଦିଲ୍ଲୀ ଦୂର୍ ଅସ୍ତ ।'' ଅର୍ଥାତ୍ ବର୍ତ୍ତମାନ ଆମେ ଓଡ଼ିଆଯାକ

ମିଶିଯିବା ଭାରି ଗହନ କଥା । ଏ ବିଷୟ ମୀମାଂସା କରିବ କିଏ ? ଉତ୍ତର - ଯେଉଁ ପ୍ରାଦେଶିକ ଗଭର୍ଣ୍ଣମେଣ୍ଟମାନେ ତାଙ୍କ ଅଧୀନସ୍ଥ ଓଡ଼ିଆ - ଅଞ୍ଚଳ ଖଣ୍ଡମାନ ତେଲ ହଳଦୀ ପଟଣା ଭଳିଆ ପାଇଅଛନ୍ତି, ସେହିମାନେ ନିଷ୍ପତ୍ତି କରିବେ । କେହି କେହି ସେମାନଙ୍କ ଅଧୀନସ୍ଥ ଓଡ଼ିଆ ଅଞ୍ଚଳ ଖଣ୍ଡିମାନ ଛାଡ଼ିବାକୁ ଆଗରୁ ଅନିଚ୍ଛା ପ୍ରକାଶ କରି ଆସୁଅଛନ୍ତି । ବର୍ତ୍ତମାନ ଯେ ସେମାନେ ସହଜରେ ରାଜି ହୋଇଯିବେ, ଏ କଥା ସ୍ୱପ୍ନ ପରି ଲାଗୁଅଛି । ଏତେବେଳେ ଆମ ନାମଟା 'ଗେଜେଟ'ରେ ଉଠିଲାଣି ବୋଲି ଯେବେ ଗୋଟାଏ ସାନ୍ତ୍ୱନା ଘେନି ଆମେ ନିଶ୍ଚିନ୍ତ ହୋଇ ଶୋଇପଡ୍ଡୁ, ତେବେ ସବୁ ସଫା ହୋଇଯିବ - ଦିଲ୍ଲୀ ଯଥାର୍ଥରେ ବହୁ ଦୂରରେ ରହିଥିବ । ଯେବେ ଏହି ସମୀକରଣ ଆନ୍ଦୋଳନଟାକୁ ଆମେ ବଜାୟ ରଖିପାରୁଁ, ତାହା ହେଲେ ଆଜି ନ ହେଲେ କାଲି, ଆମ ପୁରୁଷରେ ନ ହେଲେ ଆମ ପିଲାଙ୍କ ପୁରୁଷରେ- ଆମେ ଏକାଠେଇଁ ହେବା । ଈଶ୍ୱରଙ୍କୁ ଏତିକି ପ୍ରାର୍ଥନା ଯେ, ପ୍ରସ୍ତାବିତ 'Sub-province of Orissa' (ଓଡ଼ିଶା ଶବ-ପ୍ରଦେଶଟି) ଗୋଟିଏ ଦିଅଁ-ଗଜୁ-ଗଜୁ-ମାଙ୍କଡ଼-ପ୍ରଦେଶ ନ ହେଉ । ଓଡ଼ିଶାର ନିଶାପ ସ୍ୱତନ୍ତ୍ର - ଏପରି ସ୍ଥଳରେ ଓଡ଼ିଶା ଭାଗ୍ୟରେ ଯେ ଏପରି ଗୋଟିଏ କିମ୍ଭୂତକିମାକାର ପଦାର୍ଥ ନାହିଁ, ଏହା କିଏ କହିବ ? ଥାଉ ଏତିକି ।

ଉ.ସା. - ୨୨ଶ ଭାଗ / ୫ମ ସଂଖ୍ୟା / ଭାଦ୍ର / ୧୩୨୬ ସାଲ ।

## ।। ଅଠର ।।

ମାନ୍ୟବର ସମ୍ପାଦକ ମହାଶୟ - ରିଫର୍ମ ସ୍କିମ୍ କାର୍ଯ୍ୟରେ ପରିଣତ ହେବା ପର୍ଯ୍ୟନ୍ତ ଏ ମାନ୍ୟବର ସମ୍ବୋଧନଟା ଆଉ ଦିନାକେତେ ଅଘରଦ୍ୱାରୀ ଚଳୁ । ତା ପରେ କେବଳ ବଡ଼ଲାଟଙ୍କ ସୁଲି ମେହେମ୍ବରମାନଙ୍କୁ କେବଳ ଏହି ମାନ୍ୟବର ଉପାଧି ଦ୍ୱାରା ବିଭୂଷିତ କରାଯିବ । ବର୍ତ୍ତମାନ ଏ ସମ୍ବନ୍ଧରେ ତେତେ ଧରୋଟ ନ ଥିବାରୁ ଓ ଶୀଘ୍ର ଏ ସୁଖ ଆମ୍ଭମାନଙ୍କର ହାତଛଡ଼ା ହେବାର ଅନିବାର୍ଯ୍ୟ ଥିବାରୁ ମୁଁ ଆପଣଙ୍କୁ ସମ୍ବୋଧନ କରିବାକୁ ଯାଇ ଟିକିଏ ପାଟିସୁଆଦିଆ କରିନେଲି । ଆପଣଙ୍କ ପାଠକପାଠିକାମାନେ ମୋର ଏ ଚପଳତା ମାର୍ଜନା କରିବେ ।) ଆପଣ ଏଥରକ ସାହିତ୍ୟର ଦୁଇଗୋଟି ସଂଖ୍ୟାପାଇଁ ମାଲମସଲା ଯୋଜନାରେ ବ୍ୟସ୍ତ । ଏଥିପାଇଁ ଆପଣଙ୍କ ଫରମାସ ଅନୁସାରେ ଦିଓଟି ସଂଖ୍ୟାପାଇଁ ବାଟ କାଟିବା ଦରକାର । ଆମେ ଫେର ଲାଗୁଆ ଲେଖକ, ଅର୍ଥାତ୍ ଜାଗିରିଖିଆ ବେଠିଆ - ଆପଣଙ୍କ କାମ ଚଳାଇବାକୁ ହେବ - ଆମ ଘରେ ମାଲମସଲା ଥିବା ନ ଥିବା କଥା ଗୁଜାରିଲେ କେବଳ ଗଳା ସେବା ଓ ପୃଷ୍ଠ ସୁଖ ଛଡ଼ା ଆମର ଗତ୍ୟନ୍ତର ନାହିଁ, ଆମର ହାରିଗୁହାରି ଶୁଣାଯିବ ନାହିଁ । ଆପଣ ସିଧା ଆମ ତକା ପ୍ରତି କାନ ଦେବେ ନାହିଁ, ତେବେ ଆପଣଙ୍କ ଛଡ଼ା ଆମର ବିଚାରକ ଅଛନ୍ତି । ସେମାନେ ତ ଅବଶ୍ୟ ଶୁଣିବେ । ଦେଖିବା ହେଉନ୍ତୁ ଯେ, ଆମେ ଆପଣଙ୍କ ସଙ୍ଗେ ଯୁଗେ ହେବ

ବାରବାର କରିଆସିଲୁଁ, ଅଥଚ ଅବଧି ଆପଣ ଆମର ମୂଳଧନ ଓ ଙ୍କୁ କଳିପାରିଲେ ନାହିଁ । ଆମକୁ ଏକା ହସ୍ତାରେ ଯୋଡ଼ିଏ ଯୋଡ଼ିଏ 'ନିମିତ୍ୟର' ମାଲମସଲା ଫରମାସୀ ଦେଇ ବସିଲେ । ଏଥିପାଇଁ ତହଳ ବିକଳରେ ଆପଣଙ୍କ ପିଆଦାର ତଲବକୁ ଏଡ଼ିବା ପାଇଁ ଆମର ପ୍ରଥମ ଚେଷ୍ଟା ହେଲା ସହରରୁ ପଳାଇ ଆସି 'ଘରେ' ପହଞ୍ଚିବା ।

'ଘର' ଶବ୍ଦର ଅନେକ ଅର୍ଥ, ଅନେକ ପ୍ରକାଶ୍ୟ ଓ ଅପ୍ରକାଶ୍ୟ କରାମତ (patent & latent power) ଅଛି, ଏହା ସଂସାରରେ ସମସ୍ତେ ଅଳ୍ପ ବହୁତ ଜାଣନ୍ତି । କଟକରେ ଥାଇ ଗୋଟିଏ ମଗଜର କରାମତରେ ଆମ ଦେହି ଯାହା ହୋଇପାରିବ, ଘରକୁ ଆସି ଅନ୍ତତଃ ଏକାଧିକ ମସ୍ତିଷ୍କର ବୁଦ୍ଧି ଖରଚ କରି ଆପଣଙ୍କ ଦାଉରୁ ରକ୍ଷା ମିଳିପାରିବ, ଏହି ହେମତରେ ଲେଖକ ବର୍ତ୍ତମାନ ଜିଲ୍ଲେ କଟକ, ପ୍ରଗନେ କୋଦିଣ୍ଡା ଦଣ୍ଡପାଟ, ତାଲୁକେ ରଘୁନାଥପୁର, ମୌଜେ ସିଦ୍ଧେଶ୍ୱରପୁର (ଡାକ ନାମ ସିଧରପୁର) ଆପଣାର କାଠ କୁଡ଼ିଆରେ (ନୋଟ ! ଯେପରି ପତ୍ର କୁଡ଼ିଆରେ ଅର୍ଥ ଛପରଘର, କାଠ କୁଡ଼ିଆର ଅର୍ଥ କୋଠା) ଉପସ୍ଥିତ । ଦୈବଯୋଗକୁ ଆଜି ୧୬୦୦ ସାଲ ପରେ ୧୬୦୧ ସାଲ ଆରମ୍ଭ; ଏଥିପାଇଁ ଓଡ଼ିଶାରେ ବଡ଼ ସାନ ସବୁ ଜମିଦାରଙ୍କର ସିରସ୍ତା ପୂଜା ହୁଏ । କେହି କେହି ଏହି ଉପଲକ୍ଷରେ ଖୁବ ଧୂମଧାମ କରନ୍ତି ଓ ମେନେଜର, ତହସିଲଦାର, ଛାମୁକରଣ, ରଇତ, ଦେଖଣାହାରି, ପିଲାପିଲିଙ୍କୁ ନେଇ ଶୋଭାଯାତ୍ରା, ଠାକୁର ଦର୍ଶନ, ଭୋଜନ, ମଜଲିସ, ନବବସ୍ତ୍ର ଓ ନବାନ୍ନ ଆଦି ଅନୁଷ୍ଠାନମାନ କରନ୍ତି । ମୋ ଭଳିଆ କର୍ପୂର-ବିହୀନ କନାମାତ୍ରା ବିଶିଷ୍ଟ ଜମିଦାରମାନେ ଖଣ୍ଡେ କାଠ ଚଉକିରେ ପାଞ୍ଜି ଓ ଲେଖନ କଲମ, ଦୁଆତ, ଛୁରି, କଟୁରି, ଫାରସା, କଲମବରାସକୁ ଖଣ୍ଡେ ନେଇ ଗାରୁଆ କନା ଉପରେ ରଖି ମା ଲକ୍ଷ୍ମୀ ଓ ମା ସରସ୍ୱତୀଙ୍କୁ ଛେନାଗୁଡ଼ ଟିକକରେ ବୋଧ କରି ଦିଅନ୍ତି ଏବଂ ଦୋଷ ଛଡ଼ାଇବା ଲାଗି ଆପଣାପାଇଁ ଓ ଆପଣା ଘରେ ଥିବା ପାରିବାରିକ ସୀମାନ୍ତର୍ଭୁକ୍ତ ବ୍ୟକ୍ତିଙ୍କପାଇଁ ଖିରି ଖେଚଡ଼ି, ଜାଉ ଅଟକାଳି, ଡାଲି, ଘାଣ୍ଟିଅଣ, ଥୋଡ଼, ବଡ଼ି, ଖଡ଼ା ଆଦି ପ୍ରସ୍ତୁତ କରି ଆପଣାର ଜମିଦାର ଉପାଧିର ଟେକକୁ ସମ୍ଭାଳି ନିଅନ୍ତି । ଲେଖକଙ୍କର କୋଡ଼ିଏ ଟଙ୍କା ସଦର ଜମା ବିଭୂଷିତ ଜମିଦାରିରେ ୧୪ ଘର ରଇତଙ୍କ ମଧ୍ୟରେ ଗଉଡ଼ି ଜଣେ ମାତ୍ର । କାଣୀ ବିରାଡ଼ି କୁଜି ଅସରପା ଉପରେ ସବାର ହେଲା ଭଳି ଆମର ସାତ ପରବ, ବାର ପୁନିଅଁ, ସତେଇଶ ଓଷାରେ ଯୋଗୀ ବେହେରା ଗଉଡ଼ ଉପରେ ରଗଡ଼ ପଡ଼େ । ବେହେରା ପୁଅତ ଆମର ଘରବାଡ଼ିଖିଆ ଚାନ୍ଦନା ରଇତ । ସେ ଅଗତ୍ୟା ଆମର ସବୁ କଟାଳ ସମ୍ଭାଳେ ଓ ଲାଟବନ୍ଦିକୁ ଲାଟବନ୍ଦି ଆମ ତହସିଲଦାରଙ୍କ ଦିଆ 'ତନଖା' ଗୁଡ଼ିକ ଆଣି ସିରସ୍ତାରେ ଗୁଜାରି ଆମ ଗୋସାଇଁବାପାଙ୍କ ଅମଳର ଭାଉ ଅନୁସାରେ ସେ ଯୋଗାଇଥିବା ଜିନିଷମାନଙ୍କର ଦାମ କଷା ଯାଇ ତାହାର ଅନ୍ୟାନ୍ୟ ରଏତି ଜମି ନିମନ୍ତେ ଦେୟ ଖଜଣାରେ ମଜୁରା ପାଏ । ଏ ରୀତି ଏକା ଆମରି ଘରେ

କିମ୍ବା ଆମରି ପୁରୁଷରେ ହେଉଛି, ଏପରି ନୁହେଁ । 'ଓଖର' * ସେରକୁ ଅଣାଏ, ବସାଦହି ସେରକୁ ପାଞ୍ଚ ପଇସା, ଘିଅ ସେରକୁ ଟଙ୍କାଟିଏ, ଛେନା ଖଣ୍ଡକୁ ପଇସାଟିଏ, ଏହା ଆମ ସିରସ୍ତାରେ ରାଜାରାମ ପଣ୍ଡିତଙ୍କ ଅମଳରୁ ମାମୁଲି ଧରାବନ୍ଧା ରହିଅଛି - ଏହି ରୀତିରେ ଯୋଗୀ ବେହେରା ମଧ ଆମ ଅମଳରୁ ଅଧାଅଧି ମାରିଗଲାଣି । ଏହାଛଡ଼ା ସୁନିଆକୁ ଯୋଗୀ ବେହେରାଙ୍କ ତରଫରୁ ଖଣ୍ଡିଏ ବସାଦହି (ପାଠକ ଅବଧାନ ! ବସାଦହି ତରଳ ପଦାର୍ଥ, ତାହା ପ୍ରତି ଖଣ୍ଡିଏ ଶବ୍ଦ ବ୍ୟବହାର କରିବା ବିଜ୍ଞାନବିରୁଦ୍ଧ ହେଲେହେଁ ଅଳଙ୍କାର (Figure of expression) ଅନୁସାରେ ଖଣ୍ଡିଏ ଦହିର ଅର୍ଥ ଗୋଟିଏ ପାତ୍ରରେ ଯେତିକି ଦହି ବସେଇବ, ସେହି ପରିମାଣ ଦହି ଶହେ ହାଣ୍ଡି) ଭେଟି ଦିଏ ଓ ତହିଁ ପ୍ରତିବଦଳରେ ଦୋଳ ବେଳକୁ ବେହେରାପୁଅର ଗାଈଗାଧୁଆ ଦିନ ଗାଈ ନିଉଛାଳିକୁ ଜମିଦାରଙ୍କ ତରଫରୁ ଖଣ୍ଡେ ଛଅ ହାତି ଗାମୁଛା ବିଦାକି ବିଥଳ ଭଇଙ୍କ ଅମଳରୁ ଖଞ୍ଜା ଅଛି ।

ଛାଡ଼ ସେ କଥା - ସବୁ ବର୍ଷ ସୁନିଆ ବେଳକୁ ଯୋଗୀଙ୍କୁ ଯେଉଁ ପରିମାଣର 'ନିରୋତା କ୍ଷୀର', ଅସଲ ହୈୟଙ୍ଗବୀନ, ଚାଲୁଣିଆ ବସାଦହି, ନେଡ଼ି ଗହଳ ସରପକା ଛେନା ଫରମାସ ଦିଆ ଯାଇଯାଏ, ଏ ବର୍ଷ ମଧ ସେହିତା ହୋଇଥିଲା ଓ ବେହେରା ବାପୁଡ଼ା ମଧ ସେହି ସାବକ ଦସ୍ତୁରମତେ ସକାଳୁ ଗାଧୁଆ ପାଧୁଆଟାଏ ସାରି ଗାଈ ଦି'ଟାଙ୍କ ଚିରରେ ହାତ ମାରି ଦେଇ ତୋଡ଼ାଣି ମିଶା ପଖାଳ କଂସାଏ ଭିଡ଼ି ଦେଇ ଆସି ତହସିଲଦାରଙ୍କ ବରାଦୀ ଦୁଧ ଦହିରେ ସଭାଟିଏ ସଜାଡ଼ି ସ-ଭାର ଆସି ଆମ ଦିହୁଡ଼ିରେ ହାଜର । (ପାଠକମାନେ ଅବଶ୍ୟ ଜାଣନ୍ତି ଯେ, ସାମାନ୍ୟ ସାମାନ୍ୟ ଦୈନନ୍ଦିନ ଘଟଣାରୁ ଅନନ୍ୟୋପାୟ ଓ ହତବୁଦ୍ଧି ମନୁଷ୍ୟ ଅନେକ ସମୟରେ ବୁଦ୍ଧି ଓ ଉପାୟ ଶିଖେ । ସ୍କଟଲାଣ୍ଡର ରାଜା ରବର୍ଟ ବ୍ରସ୍ (Robert Brace) ଇଂରେଜ ରାଜାଙ୍କ ସଙ୍ଗେ ଯୁଦ୍ଧରେ ଉପର୍ଯ୍ୟୁପରି ପରାସ୍ତ ହୋଇ ନିରାଶ ହୋଇ ବସିଥିଲେ; ଏଭଳି ସମୟରେ ଗୋଟିଏ ବୁଢ଼ିଆଣୀ (Spider) ଜାଲବୁଣା ବିଷୟରେ ଉପର୍ଯ୍ୟୁପରି ଅକୃତକାର୍ଯ୍ୟ ହୋଇ ସୁଦ୍ଧା ପୁନର୍ବାର ଚେଷ୍ଟା କରି କରି ଶେଷରେ କୃତକାର୍ଯ୍ୟ ହେବାର ଦେଖି ରବର୍ଟ ବ୍ରୁସ୍‌ଙ୍କର ମଧ ଚୈତନ୍ୟ ଓ ବୁଦ୍ଧି ଉଦୟ ହେଲା । ସେ ମନେ ମନେ ସ୍ଥିର କଲେ, ବୁଢ଼ିଆଣୀଟି ଯେଉଁପରି ବାରମ୍ବାର ଅକୃତକାର୍ଯ୍ୟ ହୋଇ ସୁଦ୍ଧା ହତୋଦ୍ୟମ ନ ହୋଇ ଥରକୁଥର ଜାଲ ବୁଣିବାକୁ ଲାଗିଲା ଓ ଶେଷରେ କୃତକାର୍ଯ୍ୟ ହେଲା, ମୁଁ ମଧ ସେହିପରି ଯୁଦ୍ଧରେ ବାରମ୍ବାର ପରାସ୍ତ ହୋଇଥିଲେ ହେଁ ହତଚେଷ୍ଟା ଓ ହତୋତ୍ସାହ ନ ହୋଇ ପେର ଯୁଦ୍ଧ କରିବି ଓ ଜୟୀ ନ ହେବା ପର୍ଯ୍ୟନ୍ତ ଯୁଦ୍ଧରୁ ବିମୁଖ ହେବି ନାହିଁ । ସ୍କଟଲାଣ୍ଡର ରାଜା ଗୋଟିଏ କ୍ଷୁଦ୍ର ଜୀବଠାରୁ ଏହି ଜ୍ଞାନ ପାଇ ଏହି ଦୃଢ଼ ସଂକଳ୍ପ ବଳରେ ଇଂଲଣ୍ଡ ସଙ୍ଗେ ଅବିରାମ ଯୁଦ୍ଧ କରି ନିଜ ମାତୃଭୂମିକୁ ସ୍ୱାଧୀନ କରି ସେଥିରେ ଆପେ ରାଜଛତ୍ର ଧରିଥିଲେ ।) ଆମ ଯୋଗୀ

* କ୍ଷୀର

ଭାରଟି ଥୋଇଦେଇ ଲଠ୍‌କିନି ଆମକୁ ମୁଣ୍ଡିଆଟିଏ ମାରିଦେଲେ । ଆମ ତହସିଲଦାର ଦୁଧ-ପଟୁଆ ମହଁରୁ ଆବରଣଟି କାଢ଼ି ଦେଇ ଆସି ଦେଶୀୟ Lactometer (ଦୁଗ୍ଧପରୀକ୍ଷକ ଯନ୍ତ୍ର) କୁଟାଖଣ୍ଡକ ସାହାଯ୍ୟରେ ଯୋଗୀଙ୍କ 'ନଳପାଣି'କୁ ପରୀକ୍ଷା କଲାବେଳକୁ ଦେଖାଗଲା ଯେ ପ୍ରାକୃତିକ ଦୁଗ୍ଧର ଗୋଟିଏ ମାତ୍ର ଗୁଣ (ଶ୍ୱେତବର୍ଣ୍ଣ) ଯୋଗୀଙ୍କ ଆନୀତ ତରଳ ପଦାର୍ଥରେ ବିଦ୍ୟମାନ । ଦାଣ୍ଡରେ ବର୍ତ୍ତମାନ ଦୁଧ ସେରକ ଦୁଇ ଅଣା, କିନ୍ତୁ ଯୋଗୀ ବେହେରା ଆମ ସିରସ୍ତାରୁ ଛଅ ମାସରେ ଥରେ ମଜୁରି ପାଇବେ ସେରକୁ ଚାରିପଇସା ଦରରେ । ଆମର ଫରମାସ ଦୁଧ ପାଞ୍ଚସେର ପାଇଁ, ଯୋଗୀଙ୍କ ଘରେ ଥିବା ଦୁଧିଆଳୀ ଗାଈଙ୍କଠାରୁ ଓଳିକେ ଆଦାୟ ଦେଢ଼ସେର ମାତ୍ର । ଏ କଥା ଜମିଦାର ଓ ତହସିଲଦାରଙ୍କୁ ଜଣା । ଦି'ଅଣା ପଇସା ଦେଇ ଦାଣ୍ଡରୁ ଦୁଧ କିଣି ଆମକୁ ଯୋଗାଇବା ଯୋଗୀଙ୍କର କାଠିକର ପାଠ । ଅତଏବ ଯୋଗୀ ଆପଣାର ବଂଶାନୁଗତ ଓ ଜାତ୍ୟନୁକୂଳ ବୁଦ୍ଧି ଖରଚ କରି କେତେଗୁଡ଼ିଏ ଉପକରଣ ସାହାଯ୍ୟରେ (ଯଥା - ଜଳ, ଆରାରୋଟ, ସଫା ଚିନି) ତାଙ୍କ ଗୁହାଳରୁ ଉତ୍ପନ୍ନ ଦେଢ଼ସେର ଅଉଲ ନମ୍ବର ମାଲକୁ ପାଞ୍ଚସେର ଜମିଦାରଙ୍କୁ ଦେୟ ମାଲରେ ପରିଣତ କରି ନିଜର ଦାୟିତ୍ୱରୁ ନିଷ୍କୃତି ଲଭିବାର ଚେଷ୍ଟା କରେ । ତହସିଲଦାର ହେଲେ ଆମ ଭଳି ଗରହାଜିରି (absentee) ଜମିଦାରଙ୍କର ଚଳନ୍ତି ଓ କହନ୍ତି ଓ ମାରନ୍ତି ପ୍ରତିମା । ତହସିଲଦାର ଯୋଗୀଙ୍କର ଏପରି ଗଫଲିଆତି, ଅସଦାଚରଣ, ଲୋଭ, ଜମିଦାର ଅବମାନନା (Contempt of Zamindar) ଓ ଅମାନିଆପଣିଆ ଦେଖି ଯୋଗୀଙ୍କ ଶରୀରର କେତେକ ବିଶିଷ୍ଟ ନରମ ଅଂଶମାନଙ୍କ ସଙ୍ଗେ ଆପଣାର ବିଶିଷ୍ଟ ଅଙ୍ଗବିଶେଷମାନଙ୍କର ଦୈନିକ ସମ୍ବନ୍ଧ ଓ ଯୋଗୀଙ୍କ ଅତୀତ ଓ ବର୍ତ୍ତମାନ 'ପୁରୁଷ' ମାନଙ୍କ (ଉଭୟ ଲିଙ୍ଗ) ସଙ୍ଗେ ଯଥାକ୍ରମେ ଆପଣାର କେତେଗୁଡ଼ିଏ ଅତୀତ ଓ ବର୍ତ୍ତମାନ ମୌଖିକ ଅପ୍ରାଜାପତ୍ୟ ସମ୍ବନ୍ଧ ଲଗାଇ ଦେଲେ । ଖାମିଦ ସାମନାରେ ଏପରି ପ୍ରଭାବ ଦେଖାଇବା ଦ୍ୱାରା ଆମ ତହସିଲଦାର ନିମକସଚ୍ଚା ଥିବା ବିଷୟକ ଧାରଣା ଆମ ମନରେ ଦୃଢ଼ତର ହେବାକୁ ଲାଗିଲା । ପୂର୍ବୋକ୍ତ ଦୈହିକ ଓ ମୌଖିକ ସମ୍ବନ୍ଧି-ପ୍ରୟୋଗରେ ଯୋଗୀଙ୍କ ଶରୀର ଓ ମନ ବିଚଳିତ ହେଲା ଓ ଶେଷରେ ନିର୍ଦ୍ଧାରିତ ହେଲା ଯେ, ବେହେରାପୁଅ ଜୋରିମାନାସ୍ୱରୂପ ଆଜି ଆଣିଥିବା ଦୁଧର ଦାମ ପାଇବେ ନାହିଁ । କିନ୍ତୁ ଯୋଗୀଙ୍କଠାରୁ ଆମେ ଯେଉଁ ଶିକ୍ଷା ପାଇଲୁ, ସେଥିପାଇଁ କୃତଜ୍ଞତାର ନିଦର୍ଶନସ୍ୱରୂପ ଉକ୍ତ ଜୋରିମାନା ତାଙ୍କୁ ମାଫ ଦିଆଗଲା ଓ ଯୋଗିଏ ବିଚରା ବର୍ତ୍ତିଗଲେ ।

ସାହିତ୍ୟ ସମ୍ପାଦକ ମହାଶୟଙ୍କର ଆମେ ହେଲୁଁ ହାଟୁଆ ପ୍ରଜା । ଆମର ଗାଈଗୋରୁଙ୍କ ସଂଖ୍ୟା ଓ କରାମତି ମଧ ତାଙ୍କୁ ଜଣା । ତଥାପି ସେ ଯେବେ ଆମକୁ ଆମ ବଳରୁ ବଳି ପଡ଼ିବା ଭଳି ଏକାଥରକେ ଦୁଇ ଦୁଇ ସଂଖ୍ୟା ପାଇଁ ମାଲ ଫରମାସି କରି ବସନ୍ତି, ଆମର ମଧ ବେହେରା ପୁଅର ବୁଦ୍ଧି ଖରଚ କରି ଭେଲ ମିଶାଇବାର ଅଧିକାର ଅଛି, ଅର୍ଥାତ୍ ଏଣୁତେଣୁ ମାଲଗୁଡ଼ିଏ ସଂଗ୍ରହ କରି ତାଙ୍କ ବରାଦୀ

'ପାଞ୍ଚ ସେର ଦୁଧ'କୁ ମହଲି ମୁଣ୍ଡରେ ପହଞ୍ଚାଇ ଦେଇପାରିବା । ଅତଏବ ଏତେଗୁଡ଼ିଏ ଅବତାରଣା କରିବାର ଲେଖକର ଉଦ୍ଦେଶ୍ୟ ଏହି କି, ମାମୁଲି ସୁନିଆ ବରାଦୀ ପ୍ରବନ୍ଧ ଅବଶ୍ୟ ଦେୟ, ହେଲେ ସେଥିରେ ନିରୋଡା ଦୁଧ ଖୋଜିଲେ ପାଇବାର ଆଶା ବୃଥା । ଯାହାହେଉ ଏଗୁଡ଼ିକ ଅବତାରଣା - ବର୍ତ୍ତମାନ ଅସଲ ମାଲ କ'ଣ ତାହା ଦେଖାଯାଉ ।

ଗତଥର ମୁଁ କହିଥିଲି ଯେ ଆମ୍ଭେମାନେ ସାବାଳକ ନ ହେବା ପର୍ଯ୍ୟନ୍ତ ଅର୍ଥାତ୍ ଯୋଗ୍ୟ ଓ ଶିକ୍ଷିତ ନ ହେବା ପର୍ଯ୍ୟନ୍ତ ଆମ୍ଭମାନଙ୍କୁ ପୂର୍ଣ୍ଣ ସ୍ୱାୟତ୍ତ-ଶାସନ ମିଳିବ ନାହିଁ, କି ମିଳିଲେ ଆମେ ତାହା ନେଇ ଆଣି ଥୋଇପାରିବା ନାହିଁ । କେହି କେହି ଯୁକ୍ତି କରନ୍ତି ଯେ, ସ୍ୱାୟତ୍ତ-ଶାସନ ଆମ୍ଭମାନଙ୍କୁ ନ ଦିଆଯିବା ପର୍ଯ୍ୟନ୍ତ ଆମ୍ଭେମାନେ ସ୍ୱାୟତ୍ତ-ଶାସନରେ ତାଲିମ ହୋଇପାରିବା ନାହିଁ । ଅର୍ଥାତ୍ 'The granting of Self-government to us will be the training ground for our being fit for Self-Government.' ଏହି ଯୁକ୍ତିର ପୋଷକତାରେ ସେମାନେ କହନ୍ତି ଯେ, ପାଣିକୁ ନ ଯିବା ଯାକେ ଆମ୍ଭେମାନେ ପାଣିରେ ପହଁରି ଶିଖିବା ଅସମ୍ଭବ । ପାଣିରେ ନ ପଶିଲେ ପହଁରି ଜାଣିବା ନ ଜାଣିବା କଥା ବୋଲାଯାଇପାରିବ ନାହିଁ । କିନ୍ତୁ ଏହି ତର୍କକାରୀମାନେ ଭୁଲିଯା'ନ୍ତି ଯେ, ଯେଉଁ ବ୍ୟକ୍ତି ଆଦୌ ପହଁରି ଜାଣି ନ ଥାଏ, ତାକୁ ନେଇ ସର୍ବପ୍ରଥମେ ସାତତାଳ ପାଣିରେ ଛାଡ଼ି ଦିଆଯାଏ ନାହିଁ । ଯେ ପହଁରି ଶିଖେ, ସେ ପ୍ରଥମେ ଗୋଡ଼ ପାଇବାଭଳି ଗଭୀର ପାଣିରେ ଖଣ୍ଡି ପହଁରା ଶିଖେ; ଏମନ୍ତ ମଧ୍ୟ ଦେଖାଯାଏ, ପ୍ରଥମ ଶିଖାଳି ଅଣ୍ଟାଏ ଛାତିଏ ପାଣିରେ ହାତଗୋଡ଼ ଛାଟିଲା ବେଳେ ତାଙ୍କୁ ପହଁରି ଶିଖାଇବା ଗୁରୁ ତାଙ୍କ ପେଟ ତଳେ ବା ଅଣ୍ଟା ପାଖରେ ହାତ ଦେଇଥାନ୍ତି ଓ ନୂଆ ଶିଖାଳି ପାଣିରେ ଭାର-କେନ୍ଦ୍ର ଠିକ୍ ରଖି ନ ପାରିଲେ ବା ଉବେଇ ଟୁବେଇ ହେଲେ ଗୁରୁ ତାଙ୍କୁ କଦର ଉଣ୍ଡି ଧରି ନିଅନ୍ତି ଓ ଗୁରୁଙ୍କ ଉପରେ ଭରା ଦେଇ ପହଁରୁ ପହଁରୁ ଯେତେବେଳେ ଦେଖାଯାଏ ଯେ ମାଲିକର ଛାତିକ ପାଣିରେ ଆଉ ଉତ୍ତର ସାଧକଙ୍କର ଆଶା ଲୋଡ଼ା ହୁଏ ନାହିଁ, ସେତେବେଳେ ଜଣାଯାଏ ଯେ ନୂଆ ଶିଖାଳି ଏ ବିଦ୍ୟାରେ ଦୋରସ୍ତ ହେଲେଣି, ତା ପରେ ଯାଇଁ ପ୍ରଥମେ ଗୁରୁଙ୍କ ସାକ୍ଷାତ୍‌ରେ ଓ ପରେ ଗୁରୁଙ୍କ ଅପେକ୍ଷା ନ ରଖି ଗହୀର ପାଣିରେ ପହଁରନ୍ତି । ଆମକୁ ବର୍ତ୍ତମାନ ଏକଦମ ଗହୀର - ଚିଲିକାରେ ଛାଡ଼ିଦେଲେ ଆମର ମଧ୍ୟ ଉବେଇ ଟୁବେଇ ଅବସ୍ଥା ନିଶ୍ଚୟ ହେବ, ଏହା ଧରବନ୍ଧା କଥା । ବର୍ତ୍ତମାନ ରାଜନୀତିକ ସାମାନ୍ୟ ସାମାନ୍ୟ ଅଧିକାର ପାଇକରି ଆମ୍ଭମାନଙ୍କ ମଧ୍ୟରେ ବେଳେ ବେଳେ ଯେଉଁ 'ହରିନାଟ' ଅଭିନୟ ହେଉଅଛି, ସେଥିରେ ଆପାତତଃ ଦେଖାଯାଉଅଛି ଯେ 'ସ୍ୱାୟତ୍ତ-ଶାସନ' କଣ, ଏହା ଆମ ମଧ୍ୟରୁ ଶତକଡ଼ା ୯୦ ଜଣ ଜାଣୁ ନ ଥିବା ଅବସ୍ଥାରେ ପୂର୍ଣ୍ଣ ସ୍ୱାୟତ୍ତ-ଶାସନ ଆମ ହାତରେ ଛାଡ଼ି ଦେବା ବିଡ଼ମ୍ବନା ମାତ୍ର ।

ବର୍ତ୍ତମାନ ସ୍ୱାୟତ୍ତ-ଶାସନ ପ୍ରସଙ୍ଗରେ ଆମ୍ଭେମାନେ ଏକମତ ହେବା କାଠିକର ପାଠ, ସେ କଥା ଦୂରେ ଥାଉ, କୌଣସି ରାଜନୀତିକ ଆନ୍ଦୋଳନରେ ଆମ୍ଭେମାନେ

ଏକମତ ହେବା କଥା ଗାଧୋଇଯାଉ - ଜଣକର ମତକୁ ଅନ୍ୟ ଜଣେ ସମ୍ମାନ ଚକ୍ଷୁରେ ଦେଖିବାକୁ ଆମ୍ଭେମାନେ ଅଦ୍ୟାବଧି ଶିଖିପାରି ନାହୁଁ । ମୋ ମତ ସଙ୍ଗେ ଯାହା ମତ ନ ମିଳିଲା, ସେ ମୋ ଚକ୍ଷୁରେ ଦେଶଦ୍ରୋହୀ, ଜାତିଦ୍ରୋହୀ, ପାଜି, ସ୍ୱାର୍ଥପର ଇତ୍ୟାଦି, ଇତ୍ୟାଦି । ସ୍ୱାୟତ୍ତ-ଶାସନ ପ୍ରସ୍ତାବ ଆରମ୍ଭ ହେବା ମାତ୍ରକେ ଆମ ଭିତରେ ନାନା ମୁନିଙ୍କର ନାନା ପନ୍ଥା ହୋଇ ସାରିଲାଣି । ଆମ୍ଭେମାନେ ପଦପଦକେ ବିଲାତ ଆଦି ସଭ୍ୟ ଦେଶର ନଜିର ଦେଇଥାଉଁ - ବିଲାତବାସୀମାନେ ଓ ଆମେରିକାବାସୀମାନେ ପୂର୍ଣ୍ଣ ମାତ୍ରାରେ ସ୍ୱାୟତ୍ତ ଶାସନ ଚଳାଇ ପାରୁଅଛନ୍ତି, ଆମେ କାହିଁକି ତାହା ପାରିବା ନାହିଁ ? କିନ୍ତୁ ସେସବୁ ସଭ୍ୟ ଜାତିଙ୍କର କେଉଁ ଗୁଣକୁ ଆମେ ସରି ? ରିଫର୍ମ ସ୍କିମ ରିପୋର୍ଟ ବାହାରୁଣୁ ନ ବାହାରୁଣୁ କେତେ ପାଲା, କେତେ ସୁଆଙ୍ଗ, କେତେ ସମ୍ମିଳନୀ, କେତେ ଆଲୋଚନା ସଭା ହୋଇଗଲାଣି । ଆଗେ ଯେତେବେଳେ ଆମର କୌଣସି ରାଜନୀତିକ ଅଧିକାରର ନିକଟ ସମ୍ଭାବନା ନ ଥିଲା, ସେତେବେଳେ ଗୋଟିଏ ସମଗ୍ର ଭାରତରେ ଜାତୀୟ ମହାସଭା (Indian National Congress) ଥିଲା । ବର୍ତ୍ତମାନ ରାଜନୀତିକ ଅଧିକାର ପାଇବାର ଆଶା ଜାଗ୍ରତ ହେବା ମାତ୍ରକେ ଗୋଟିଏ Extremist Congress (ଚରମପନ୍ଥୀ ମହାସମ୍ମିଳନୀ) ଗୋଟିଏ Moderate Conference (ନରମପନ୍ଥୀ ସମ୍ମିଳନୀ) ଏପରି ଦିଓଟି ଜାତୀୟ ସଭା ହୋଇଗଲାଣି । ଆଚ୍ଛା ଭଲା କେହି ବିଲାତରେ ଏପରି ଦୋଫାଙ୍କିଆ Extremist Parliament (ଚରମପନ୍ଥୀ ମହାସଭା) ଓ Moderate Parliament (ନରମପନ୍ଥୀ ମହାସଭା) କଥା ଶୁଣିଥାଉଁ ? ବିଲାତରେ ଓ ଅନ୍ୟାନ୍ୟ ସଭ୍ୟ ଜାତି ମଧ୍ୟରେ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ମଧ୍ୟରେ ଅନେକ ସମୟରେ ମତଭେଦ ଘଟିଥାଏ; କିନ୍ତୁ ସମସ୍ତେ ରାଜନୀତିକ କ୍ଷେତ୍ରରେ ମତଭେଦଜନିତ ମନୋମାଳିନ୍ୟ ଓ ବ୍ୟକ୍ତିଗତ ଆକ୍ରୋଶ ଭୁଲିଯାଇ ଦେଶର ଓ ଜାତିର ଉନ୍ନତି କଲେ ଅଧିକାଂଶଙ୍କ ମତକୁ (Vote of the majority) ଜାତିର ଅବଶ୍ୟ ଗ୍ରାହ୍ୟମତ ବୋଲି ଗ୍ରହଣ କରି ଭିନ୍ନ ମତାବଲମ୍ବୀ ଅଳ୍ପସଂଖ୍ୟକ ବ୍ୟକ୍ତିମାନେ ଅଧିକାଂଶଙ୍କ ଦ୍ୱାରା ପ୍ରବର୍ତ୍ତିତ ମତକୁ ଶିରୋଧାର୍ଯ୍ୟ କରନ୍ତି । ଭାରତବାସୀଏ ଅବଧି ଏହା ଶିଖି ନାହାନ୍ତି । ଏହା ନ ଶିଖିବା ପର୍ଯ୍ୟନ୍ତ ଓ ଏହା ସଭ୍ୟଜଗତ୍‌କୁ ପ୍ରମାଣ ଦ୍ୱାରା ନ ଦେଖାଇବା ପର୍ଯ୍ୟନ୍ତ ଆମେ ପୂର୍ଣ୍ଣ ମାତ୍ରାରେ ସ୍ୱାୟତ୍ତ-ଶାସନ ପାଇବା ପ୍ରହେଳିକା ମାତ୍ର ।

ଆହୁରି ଗୋଟିଏ କଥା ଏହି କି, ଆମ ଦେଶରେ ଶିକ୍ଷା ବିସ୍ତାର ହୋଇ ନାହିଁ, ଏହା ସମସ୍ତେ ସ୍ୱୀକାର କରୁଥାଉଁ । ଦେଶ ମଧ୍ୟରେ ଅଘର ଦ୍ୱାରା ଶିକ୍ଷା ବିସ୍ତାର ନ ହେବା ପର୍ଯ୍ୟନ୍ତ, ଦେଶର ଆପାମର ସାଧାରଣ ଆପଣାର ନ୍ୟାଯ୍ୟ ଅଧିକାର ହୃଦୟଙ୍ଗମ କରି ନ ପାରିବା ପର୍ଯ୍ୟନ୍ତ ଆମ ଦେଶବାସୀଙ୍କ ହାତରେ ପୂର୍ଣ୍ଣ ସ୍ୱାୟତ୍ତ-ଶାସନ ଦେବା ବିଡ଼ମ୍ବନା ମାତ୍ର ହେବ । ମ୍ୟୁନିସିପାଲିଟିରେ ସ୍ୱାୟତ୍ତ-ଶାସନର ପ୍ରଥମ ଅଧ୍ୟାୟ ସ୍ୱରୂପ ଆମକୁ ସରକାର ଯେଉଁ ଅଧିକାର ଦେଇଅଛନ୍ତି, ସେହି ଅଧିକାର ନ୍ୟାୟତଃ ପରିଚାଳିତ ହେଉଅଛି କି ?

ଯେଉଁମାନେ ମ୍ୟୁନିସିପାଲିଟିର କମିସନର ନିର୍ବାଚିତ ହେଉଅଛନ୍ତି, ସେମାନେ ଓ ସେମାନଙ୍କ ଉତ୍ତରସାଧକମାନେ ନିର୍ବାଚନ ପୂର୍ବରୁ ଭୋଟ ଦେବାବାଲାଙ୍କ ଓଳିତଳ, ବାଡ଼ିଦୁଆର, ନଡ଼ାଗଦା, ବାଡ଼ିପନ୍ଦଡ଼ାରେ ହରଦମ ଦଉଡ଼ି ଦଉଡ଼ି ଗୋଟାଏ ଲେଖାଏଁ ବାଟ ଛିଣ୍ଡାଇ ଦିଅନ୍ତି; କିନ୍ତୁ ନିର୍ବାଚନ ପରେ ଭୋଟରଙ୍କ ସଙ୍ଗେ ତାଙ୍କର ଆଉ ତିନି ବର୍ଷ ମଧ୍ୟରେ ଦେଖାସାକ୍ଷାତ୍ ହୁଏଟି କି ? ନିର୍ବାଚିତ ହୋଇସାରିଲେ ତେଣିକି ଆମ ହାତରେ ଆମେ ଚଉଦ ପା ହୋଇଯାଉଁ । ମୁଁ ନିଜେ ଏପରି ବ୍ୟକ୍ତି ଦେଖିଛି, ଯେ ଭୋଟ ଦେବାବାଲାମାନଙ୍କ (Voters) ଦାଣ୍ଡଦୁଆରେ ପାଦ ନ ଦେଇ ସୁଦ୍ଧା ଭୋଟ୍ ପାଆନ୍ତି ଓ ମ୍ୟୁନିସିପାଲିଟିରେ କୌଣସି ଗୁରୁତର ପ୍ରଶ୍ନ ଉତ୍‌ଥାପିତ ହେଲେ ସେ ଆପଣା ଇଲାକାର କରଦାତା ଓ ଭୋଟରମାନଙ୍କ ମତ ଜାଣିବାକୁ ଚେଷ୍ଟା କରନ୍ତି । କିନ୍ତୁ ଏହା ସାଧାରଣ ନିୟମ ନୁହେଁ, ନିପାତନ ମାତ୍ର । ମୁଁ ଜମିଦାର, ମୋର ଅଧିକାଂଶ ଭୋଟର୍ ରୟତ । ମୁଁ ମହାଜନ, ମୋର ଅଧିକାଂଶ ଭୋଟର ଖାତକ । ମୁଁ ଓକିଲ, ମୋର ଅଧିକାଂଶ ଭୋଟର ମକ୍କେଲ । ମୁଁ ଦୋକାନଦାର, ମୋର ଅଧିକାଂଶ ଭୋଟର ଗ୍ରାହକ; ଏଥିପାଇଁ ମୋର ଯୋଗ୍ୟତା ଥାଉ ନ ଥାଉ, ମୋ ଅକ୍ତିଆରି ଭୋଟରମାନେ ମତେ କିମ୍ବା ମୁଁ ଯାହାଙ୍କ ମୁଣ୍ଡରେ ଶିରୋପା ବାନ୍ଧି ଦେବି ସେମାନଙ୍କୁ ନିଶ୍ଚେ ଭୋଟ ଦେବେ । କେବଳ ମ୍ୟୁନିସିପାଲିଟିରେ କାହିଁକି, ଲାଟସଭା ପର୍ଯ୍ୟନ୍ତ ମଧ୍ୟ ଏହି ଅଭିନୟ ସର୍ବଦା ଆମ୍ଭମାନଙ୍କ ଦୃଷ୍ଟିଗୋଚର ହେଉଅଛି । ବ୍ୟକ୍ତିଗତ ଉଦାହରଣ ଦେଇ ପୋଥି ଓ ଫଉଜଦାରି ମହାଫିସଖାନାର ନଥିସଂଖ୍ୟା ବଢ଼ାଇବାର ଆବଶ୍ୟକ ନାହିଁ ।

ଏ ତ ଗଲା ଅଶିକ୍ଷିତଙ୍କ କଥା । ବର୍ତ୍ତମାନ ଶିକ୍ଷିତମାନଙ୍କ କଥା ଦେଖାଯାଉ । ଯେଉଁ ଦେଶରେ ସାଧାରଣ ଶିକ୍ଷା (Mass education) ବିସ୍ତାର ହେବାର ପ୍ରସ୍ତାବ ଉଠିଲା ମାତ୍ରକେ ତହିଁ ବିରୋଧରେ ସହସ୍ର ସହସ୍ର ଶିକ୍ଷିତ ବ୍ୟକ୍ତି (ଜମିଦାର, ରାଜା, ମହାରାଜା, ଧନୀ, ହାକିମ, ହୁକୁମା, ମହାଜନ ଇତ୍ୟାଦି) ଗଭର୍ଣ୍ଣମେଣ୍ଟଙ୍କ ନିକଟକୁ Memorial (ପ୍ରାର୍ଥନା ପତ୍ର) ପଠାଇ ତାହା ବନ୍ଦ କରିବାକୁ ଚେଷ୍ଟା କରନ୍ତି, ସେ ଦେଶରେ ସ୍ୱାୟତ୍ତ-ଶାସନ ଫଳପ୍ରଦ ହେବା ଯୁଗକର ଓ କାଠିକର ପାଠ । ସାଧାରଣ ଲୋକେ ଶିକ୍ଷିତ ହେଲେ ଆମକୁ ମୂଲିଆ, ଚାକିରିଆ, ବେଠିଆ, କୋଠିଆ ମିଳିବେ ନାହିଁ, ଚାକରମାନେ ଆମ ଶ୍ରୀହସ୍ତରୁ ବିଧାଟାଏ ବା ଚାପୁଡ଼ାଟାଏ ଖାଇ ତାହାକୁ ଅମୃତ ରୂପେ ଗ୍ରହଣ କରିବେ ନାହିଁ, ପ୍ରଜାମାନେ ଆମକୁ ବିନା ଓଜରରେ ଆମେ ତଲବ କରିବା ଖଜଣା ଆଦି ଦେବାକୁ ହରକତ କରିବେ ଓ ପଦପଦକେ ଆମକୁ ଆଇନର ନଜିର ଦେଖାଇବେ, ଗରିବ ଲୋକମାନେ ଆମର ଉଚ୍ଚ ହାର ସୁଧ ଦେବାକୁ ରାଜି ନ ହୋଇ Co-operative Credit Society (ସମବାୟ ଋଣ ସମିତି) ପ୍ରତିଷ୍ଠା କରି ଆମର ମହାଜନିକୁ ବୁଡ଼ାଇଦେବେ । କ୍ରମଶଃ ଭକ୍ଷ୍ୟାଭକ୍ଷ୍ୟ, ବର୍ଜ୍ୟାବର୍ଜ୍ୟ, କଥ୍ୟାକଥ୍ୟ, କାର୍ଯ୍ୟାକାର୍ଯ୍ୟ ଉଠିଯିବ ଓ ଆମ ଦେଶରେ ପ୍ରଚଳିତ ଜାତିଗତ ନିଗଡ଼ ପାର୍ଥକ୍ୟ ଶିଥିଳ ହେବ ! ଏହା ହେଲେ ସଂସାର ବୁଡ଼ିଯିବ !

ଯେଉଁ ଦେଶରେ ପଦସ୍ଥ ଓ ଶିକ୍ଷିତ ସମାଜରେ ଏପରି ପ୍ରାର୍ଥନାପତ୍ରରେ ସ୍ୱାକ୍ଷର କରିବା ଭଳି ସହସ୍ର ସହସ୍ର ଜୀବ ଅଛନ୍ତି, ସେ ଦେଶ ଅନ୍ୟାନ୍ୟ ସଭ୍ୟଦେଶ ସଙ୍ଗେ ସମକକ୍ଷ ହେବାକୁ ଅଛି ଆହୁରି ଢେର ଯୁଗରେ ବାପା ! ଏଥିପାଇଁ ଆମ ଭିତରୁ ଜଣ କେତେ ସ୍ୱାୟତ୍ତ-ଶାସନ ପାଇଁ ହୁରି ଛାଡ଼ିଲେ ତାହା ଦେଉଛି କିଏ ? ବିଲାତର ଭାରତୀୟ ମନ୍ତ୍ରୀ ଆମ ଦେଶକୁ ଆସି ଆମର ଘର ଘର ବୁଲି ଆମର ନାଡ଼ି ଚିପି ପ୍ରାଦେଶିକ ଲାଟ ଓ ବଡ଼ଲାଟଙ୍କ ସଙ୍ଗେ ପରାମର୍ଶ କରି ପାଞ୍ଚଣର ବ୍ୟବସ୍ଥା କରିଅଛନ୍ତି । ପିତା ଲାଗିଲେ ଛାଡ଼ିବ କିଏ ? ଏ ତ ଗଲା ଭାରତର ଅନ୍ୟାନ୍ୟ ଅସଲ ଓ ଅନ୍ୟାନ୍ୟ ଜାତିର କଥା - ବର୍ତ୍ତମାନ ଓଡ଼ିଶା କଥା ଓ ଓଡ଼ିଆଙ୍କ କଥା ଭାରତରୁ ବାହାର । ଆମ ଓଡ଼ିଆଙ୍କର ଅନ୍ୟାନ୍ୟ ଭାରତବାସୀଙ୍କଠାରୁ ଢେର ପାର୍ଥକ୍ୟ ଓ ବିଶେଷତ୍ୱ ଅଛି । ଆମର 'ଓଡ଼ିଶା-ମତ' ସବୁ ମତରୁ ସ୍ୱତନ୍ତ୍ର । ଏସବୁ ଲେଖକର ମନଗଢ଼ା କଥା ନୁହେଁ । ଓଡ଼ିଶାଟା ବର୍ତ୍ତମାନ କେଉଁ ଆୟତ୍ତ-ଶାସନ ନିମନ୍ତେ ଉପଯୁକ୍ତ, ତାହା ଭବିଷ୍ୟତ୍‌ରେ ଆଲୋଚନା କରିବାର ଆଶା ରହିଲା । ଇତ୍ୟବସରରେ ପାଠକ ପ୍ରପାଠକମାନେ ଚିନ୍ତା କରିବା ପାଇଁ ତାଙ୍କ ଆଗରେ ଦିଓଟି ଗୋଟିଏ ମାଲ ମସଲା ଏଥର ରଖାଗଲା ।

୧. ଜନ ସୁମାରି (Census) ରିପୋର୍ଟରୁ ଦେଖାଯାଏ ଯେ ଭାରତର ଅନ୍ୟାନ୍ୟ ଜାତି ଅପେକ୍ଷା ଓଡ଼ିଶାରେ ଶିକ୍ଷିତଙ୍କର ହାର (Percentage) ବେଶି ।

୨. ଓଡ଼ିଶାରେ ସ୍ତ୍ରୀମାନେ ଅନ୍ୟ ଜାତୀୟ ସ୍ତ୍ରୀମାନଙ୍କ ଅପେକ୍ଷା ବେଶି ଶିକ୍ଷିତା ଓ ଉଦାରା ।

୩. ଓଡ଼ିଶାର ସ୍ତ୍ରୀମାନେ Freehand drawing (ସ୍ୱାଧୀନ-ହସ୍ତିକା-ଚିତ୍ରବିଦ୍ୟା) ଯାହା ଜାଣନ୍ତି, ତାହା ଅନ୍ୟାନ୍ୟ ଦେଶରେ ନାହିଁ ।

୪. ଅନ୍ୟାନ୍ୟ ସଭ୍ୟ ଓ ଆମ୍ବମ୍ବରୀ ଜାତିମାନେ ଓଡ଼ିଶାକୁ ସହଜରେ ଖାଇପାରିବେ ନାହିଁ । ସେମାନେ ଖାଇବାକୁ ମୁଖ ବ୍ୟାଦାନ କଲା ବେଳକୁ ଆମେ ତାଙ୍କ ଆମ ମଝିରେ ପାହାଡ଼ ଓ ଜଙ୍ଗଲ ବ୍ୟବଧାନ ରଖିଦେବା ।

୫. ଓଡ଼ିଶାରେ ନୂତନ ଧରଣର ଶିକ୍ଷା ବିସ୍ତାର ହେବା ଲାଗି ଯେପରି ପ୍ରାକୃତିକ ସୁବିଧା ଓ ନୈସର୍ଗିକ କ୍ଷେତ୍ର ଅଛି, ତାହା ଅନ୍ୟ ଦେଶରେ ନାହିଁ ।

୬. ଓଡ଼ିଶାର ମଫସଲରେ ପକ୍କା କୋଠା ସଂଖ୍ୟା କମ ଥିବାରୁ ଓଡ଼ିଶାର ସ୍ୱାସ୍ଥ୍ୟ ଓ ପ୍ରତ୍ନବିଶେଷତ୍ୱ ଅନ୍ୟାନ୍ୟ ଦେଶ ଅପେକ୍ଷା ବେଶି ବଜାୟ ଅଛି ।

୭. ଓଡ଼ିଶାର ଜଗନ୍ନାଥ, ଲିଙ୍ଗରାଜ, ସାକ୍ଷିଗୋପାଳ, କୋଣାର୍କ, ତାଳପତ୍ର ପୋଥି, ମାଦଳାପାଞ୍ଜି, ମୁକ୍ତିମଣ୍ଡପ ଅନ୍ୟତ୍ର ନଦାରଦ ।

୮. ଭାରତର ବିଭିନ୍ନ ଅଞ୍ଚଳରେ ବିଭିନ୍ନ ସମ୍ପ୍ରଦାୟରେ ବିଭିନ୍ନ ଯୁଗରେ ଯେତେଗୁଡ଼ିଏ ମାର୍କାମରା ଦେଶଭକ୍ତ ଓ ଅନ୍ୟାନ୍ୟ ମହାପୁରୁଷ ଜନ୍ମ ହୋଇଅଛନ୍ତି ଓଡ଼ିଶାର ବର୍ତ୍ତମାନ ଯୁଗରେ ଏକ ଅଞ୍ଚଳରେ, ଏକ ସ୍ଥାନରେ, ଏମନ୍ତ କି ଏକାଧାରରେ

ସେମାନଙ୍କର ପୂରା ଦସ୍ତୁର ନମୁନା (Prototype) ବିଦ୍ୟମାନ ଅଛନ୍ତି । କେବଳ ଅନ୍ୟ ଅଞ୍ଚଳବାସୀମାନେ ଈର୍ଷା ଓ ପରଶ୍ରୀକାତରତା ଯୋଗୁଁ ସେମାନଙ୍କୁ ଚିହ୍ନୁ ନାହାନ୍ତି ।

୯. ଭାରତର ବିଭିନ୍ନ ଅଞ୍ଚଳରେ ବିଭିନ୍ନ ଯୁଗରେ ଯାହା ଯାହା ଉଲ୍ଲେଖଯୋଗ୍ୟ ପଦାର୍ଥ ଥିଲା, ଓଡ଼ିଶାରେ ବର୍ତ୍ତମାନ ତାହା ମହଜୁଦ ଅଛି ।

ଏ ଗୋଟିଏ ଗୋଟିଏ ପ୍ରତିଜ୍ଞାର ବ୍ୟାଖ୍ୟା ଓ ଟୀକା ଲେଖିବାପାଇଁ ଖଣ୍ଡିଏ ଖଣ୍ଡିଏ ପୋଥି, ଗୋଟିଏ ଲେଖାଏଁ ଓଜନଦାର ଛଣି ଦରକାର । ଏଥିପାଇଁ ଏସବୁ ସୂଚନାରୁ ପାଠକମାନେ ନିଜେ ନିଜେ ବିନା ଟୀକାରେ ଓଡ଼ିଆଙ୍କର ରାଜନୀତିକ ଚିତ୍ର ଆଙ୍କିବାକୁ ଚେଷ୍ଟା କରନ୍ତୁ । ସେଥିରେ ଫଳ ନ ହେଲେ ଫେର ଏଠାକୁ ଦରକାର ବେଳକୁ ଆପଣଙ୍କର ଆମର କଥାଭାଷା ହେବ ।

(ନୋଟ - ପାଠକମାନଙ୍କ ଉଦ୍ଦେଶ୍ୟରେ - ଯୋଗୀ ବେହେରା ପ୍ରଦତ୍ତ ଅଣିକିଆ ସେର ଓ ଖରର ନମୂନା ପାଇଲେ ତ ?) ଆଜି ରହିଲି । ଅବଧାନ ! ନମସ୍ତେ ।

ଉ.ସା. - ୨୨ଶ ଭାଗ / ୭ମ ସଂଖ୍ୟା / କାର୍ତ୍ତିକ / ୧୩୨୬ ସାଲ ।

## ।। ଉଣେଇଶ ।।

ଗତ ଥର ସାହିତ୍ୟର ବିଧାତା ପୁରୁଷ ତାଙ୍କର ମତି ପରିବର୍ତ୍ତନ କରି ଗୋଟିଏ ସଂଖ୍ୟାରେ 'ଦୁର୍ଗାପୂଜା' ଭେଟି କାମ ସାଙ୍ଗ କରିଦେବାରୁ ଆମକୁ ଯୋଗୀ ବେହେରାଙ୍କ କାରସାଦି କରିବାକୁ ପଡ଼ିଲା ନାହିଁ । ହେଲେ କଣ ହେବ, ଚଳିତ ମାସିକ ସଂଖ୍ୟା ପାଇଁ ଲାଗୁଆ ଜିନିଷଟା ତ ବନ୍ଦ ହେବାର ନୁହେଁ । ବର୍ତ୍ତମାନ ଯେପରି କାଳ ପଡ଼ିଛି, ଏଥିରେ ପେଟ ଓ ପିଠି ଚିନ୍ତା ମନୁଷ୍ୟକୁ ଦିନରାତି ଘାଣ୍ଟୁଛି । ମା' ଲକ୍ଷ୍ମୀଙ୍କ ବେଅନୁଗ୍ରହ ସଙ୍ଗେ ସଙ୍ଗେ ମା' ସରସ୍ୱତୀ ମଧ ଆମ କଣ୍ଠରେ ବିଜେ କରିବାକୁ ନାରାଜ । ଦେଖାଯାଉଛି ଯେ ଦାନା-କନା, ଟଙ୍କା-ସୁନା, କଂସା-ଗିନା, ସବୁ ଏକାଳରେ ମହରଗ ହେଲା । କିନ୍ତୁ ମୋ ଭଳିଆ ଲେଖକଙ୍କ ଦୁରବସ୍ଥା ଯିବାକୁ ନାହିଁ । କିରେ ବାପା ! ସବୁ ଜିନିଷର ଭାଉ ବଢ଼ିଲା, ସାହିତ୍ୟର ଓ ଲେଖକଙ୍କର ଅପରାଧ କିସ ରେ ? କାଗଜର ଦର ବଢ଼ିଲା, ଛାପା କଳର ଦାମ, ଟାଇପର ଦାମ, କାଳିର ଦାମ, ପ୍ରିଣ୍ଟରର ମଜୁରି ସବୁ ବଢ଼ିଲା । କିନ୍ତୁ ଉତ୍କଳ-ସାହିତ୍ୟର ତଥାକଥିତ ଅଗ୍ରିମ ବାର୍ଷିକ ମୂଲ୍ୟ ଯାହା ଥିଲା, ପ୍ରାୟ ସେହିତ ରହିଲା । ଏଥିର କାରଣ - ସାହିତ୍ୟଟା necessaries (ଜୀବନର ଅବଶ୍ୟ ପ୍ରୟୋଜନୀୟ ବସ୍ତୁ) ମଧରେ ସୁମାରି ନୁହେଁ । ଏହା luxury (ସୌଖୀନ ଜିନିଷ) ମଧରେ । ଏ ମହର୍ଗ କାଳରେ ବଡ଼ଠାରୁ ସାନ ପର୍ଯ୍ୟନ୍ତ ସମସ୍ତେ ବ୍ୟୟ ସଂକୋଚରେ ବ୍ରତୀ ହୋଇଅଛନ୍ତି । ସରୁ ଚାଉଳ ପରିବର୍ତ୍ତରେ ମୋଟା ଖଇର-କାଣ୍ଡିଆ ବଗଡ଼ା, ବିଲାତୀ ପତଳା

ରେଶମପାଢ଼ୀ ଲୁଗା ପରିବର୍ତ୍ତରେ ଦେଶୀ ମୋଟା ଖଦି, କିରାସିନି ପରିବର୍ତ୍ତରେ ଜଡ଼ା ଓ ପୁନାଙ୍ଗ ମଥାଦହି, ଏହିପରି ଜୀବନର ଦୈନନ୍ଦିନ ଅତ୍ୟାବଶ୍ୟକ ବସ୍ତୁମାନ ବ୍ୟବହାର କରିବା ବିଷୟରେ ଲୋକେ ନିଜ ନିଜର ମତ ଓ ଅଭ୍ୟାସକୁ ସଂଯତ କରିବାକୁ ବସିଲେଣି । ଏପରି ସ୍ଥଳରେ ସାହିତ୍ୟ ପତ୍ରିକା ନ ହେଲେ ମଧ୍ୟ ମୋ ଭଳି ଅଧିକାଂଶ ଗୃହୀଙ୍କର ଚଳିବ । ଅତଏବ ସମ୍ପାଦକ ମହାଶୟଙ୍କୁ ମୁଁ ସତର୍କ କରି ଉପଦେଶ ଦେଉଅଛି ଯେ, ସେ କଦାପି ଏ ବୁଦ୍ଧି ବାହାର କରିବେ ନାହିଁ । ଏହି 'ଆର' ଟି ମିଳିବା ମାତ୍ରକେ ଅନେକ ଗ୍ରାହକ ଖସିବେ । ମନୁଷ୍ୟର ବିପଦ, ଆପଦ, ଅଭାବରେ ପଡ଼ିଲେ 'ଓଇ ବି ଗୁଜର ଯାଏଗା' କରି ମନଟାକୁ ସମ୍ଭାଳି ରଖେ ଓ ଭବିଷ୍ୟତ୍‌ର ଆଶାର ସ୍ୱପ୍ନରେ ବର୍ତ୍ତମାନର କଠୋର ଅନୁଭବକୁ ବୁଡ଼ାଇ ଦିଏ ।

ବର୍ତ୍ତମାନ ଦେଖନ୍ତୁ ଯେ, ସମଗ୍ର ପୃଥିବୀ ବିପଦ ଓ ଅଭାବ ଆଦିରେ ଜର୍ଜରିତ । ଜାତି-ଭୟ, ଶତ୍ରୁ-ଭୟ, ଅତ୍ୟାଚାର-ଭୟ, ଯୁଦ୍ଧ-ଭୟ, ଚୌର-ଭୟ, ରୋଗ-ଭୟ, ମୃତ୍ୟୁ ଭୟ, ରାଜ୍ୟନାଶ ଭୟ ସମଗ୍ର ପୃଥିବୀକୁ ମାଡ଼ି ବସିଅଛି ।

ସମଗ୍ର ପୃଥବୀବ୍ୟାପୀ ମହାସମର ସଭ୍ୟ, ରାକ୍ଷସ ଜର୍ମାନୀର ପ୍ରବଳ ଅତ୍ୟାଚାର, ଜ୍ୱରରୂପୀ (Influenza) ମହାମାରୀ, ଅଧିକାଂଶ ସ୍ଥଳରେ ବର୍ଷା ଅଭାବରୁ ଫସଲର ଦୁରବସ୍ଥା, ଯୁଦ୍ଧ ଯୋଗୁଁ ବ୍ୟବସାୟ-ବାଣିଜ୍ୟର କ୍ଷତି ଏସବୁ ଆମ୍ଭମାନଙ୍କୁ ଘୋଟି ରହିଅଛି । ଲକ୍ଷ ଲକ୍ଷ ବଳୁଆ ଓ ମଜଭୁତ ଲୋକମାନେ ଯୁଦ୍ଧରେ ଲକ୍ଷ ଲକ୍ଷ ପ୍ରାଣତ୍ୟାଗ କରୁଅଛନ୍ତି । ଯୁଦ୍ଧବ୍ୟୟରେ ସଭ୍ୟ ଜାତିମାନେ କାଙ୍ଗାଳ ଓ ଦେଣଦାର ହୋଇଗଲେଣି; ବର୍ଷା ଅଭାବରୁ, ବନ୍ୟା ଇତ୍ୟାଦି ଯୋଗୁଁ, ଫସଲର ଦୁରବସ୍ଥା ଯୋଗୁଁ କୃଷକମାନଙ୍କ ଘରେ କାନ୍ଦବୋବାଳି/ ଯୁକ୍ତରାଜ୍ୟର ସଭାପତିଙ୍କ (President of the United States) ସନ୍ଧି ପ୍ରସ୍ତାବରେ ସମ୍ମତ ହୋଇଅଛନ୍ତି ଓ ଆଶା କରାଯାଏ ଯେ, ମହାଯୁଦ୍ଧର ଅନୁଭବ ଓ ଶିକ୍ଷା ପରେ ଯେଉଁ ସନ୍ଧି ସ୍ଥାପିତ ହେବ, ତାହା ଚିରସ୍ଥାୟୀ ହେବ । ସ୍ୱାଧୀନତା ପ୍ରିୟ ବ୍ରିଟିଶ ଜାତି ଓ ତାଙ୍କର ମିତ୍ରଶକ୍ତିମାନେ ଏହି ଚିରସ୍ଥାୟୀ ସନ୍ଧି ସ୍ଥାପିତ ହେବାର ସୁଦିନ ଆସିବାର ଆଶାରେ ଯେଉଁ ସ୍ୱାର୍ଥ-ତ୍ୟାଗର ଉଦାହରଣ ଦେଖାଇ ଅଛନ୍ତି, ତାହା ପୃଥିବୀରେ ବିରଳ - ସମଗ୍ର ପୃଥିବୀରେ ଶାନ୍ତି ବିରାଜିତ ହେବ, ପ୍ରବଳ ଜାତି ନିର୍ବଳ ଜାତି ଉପରେ ଆଉ ଅତ୍ୟାଚାର ବା ଅଧିକାର ନ କରିବ, ପରାକ୍ରାନ୍ତି ସମ୍ରାଟ୍ କ୍ଷୁଦ୍ର ଅସହାୟ ଜାତିକୁ ପ୍ରପୀଡ଼ିତ ନ କରିବ, ପ୍ରତ୍ୟେକ ଦେଶବାସୀଙ୍କ ହସ୍ତରେ ତତତ୍ ଦେଶ ଶାସନ କରିବାର ଓ ଶାସନ ପଦ୍ଧତି ସ୍ଥିର କରିବାର କ୍ଷମତା ଓ ଅଧିକାର ରହିବ, ନିଜ ନିଜର ବୈଷୟିକ ଉନ୍ନତି କରିବା ନିମନ୍ତେ କେହି କାହାରିକୁ ବାଧା ଦେଇପାରିବେ ନାହିଁ; ପୃଥିବୀରେ ସତ୍ୟର ଜୟ, ଧର୍ମର ଜୟ, ସ୍ୱାଧୀନତାର ଜୟ, ଅଧର୍ମର ପରାଜୟ, ପାପର ପରାଜୟ, ପାଶବ ଶକ୍ତିର ବିନାଶ ଉଦ୍ଘୋଷିତ ହେବ - ଏହି ନୀତିଗୁଡ଼ିକ କାର୍ଯ୍ୟରେ ପରିଣତ କରିବା ଲାଗି ଇଂରେଜ ଜାତି ଓ ଆମର ମିତ୍ର ଶକ୍ତିମାନେ ଏହି ମହାଯୁଦ୍ଧ ରୂପବେଦିକାରେ ଅଜସ୍ର ଧନ, ଜନ ଅକୁଣ୍ଠିତ

ଚିତ୍ତରେ ଢାଳି ଦେଇଅଛନ୍ତି ଓ ଏହି ବନ୍ଦୀର (Sacrifice) ଫଳ ସମଗ୍ର ଜଗତ୍ ଭୋଗ କରିବ । ଭଗବାନ୍ କରନ୍ତୁ, ଏ ସୁଦିନ ଶୀଘ୍ର ଆସୁ ।

ଇତିମଧ୍ୟରେ ଭାରତରେ ଜ୍ୱରରୂପୀ ମହାମାରୀ ଉପସ୍ଥିତ ହୋଇ ବଡ଼ସାନ ସବୁ ଶ୍ରେଣୀରୁ ଟିକସ ଆଦାୟ କରୁଅଛି ଓ ସଙ୍ଗେ ସଙ୍ଗେ ବର୍ଷା ଅଭାବରୁ ଶାରଦୀୟ ଫସଲର ଅବସ୍ଥା ଅତି ମନ୍ଦ । ଗଭର୍ଣ୍ଣମେଣ୍ଟ ଯେଉଁ ଯେଉଁ ଅଞ୍ଚଳରେ କେନାଲ ଖୋଲାଇ ଅଛନ୍ତି, ସେ ଅଞ୍ଚଳମାନଙ୍କରେ ଶସ୍ୟର ଅବସ୍ଥା ଉତ୍ତମ - କିନ୍ତୁ ଭାରତରେ ଏପରି କେନାଲ-ରକ୍ଷିତ ଅଞ୍ଚଳ ବେଶି ନୁହେଁ । ଏ ସବୁ କାରଣରୁ ଏତେବେଳଠାରୁ ଅନ୍ନାଭାବ ଘୋଟିଅଛି । ଏଥିପାଇଁ କେତେକ ସ୍ଥାନରେ ଲୁଟପାଟ ହୋଇ ଯାଇଅଛି । ଦେଶର ବର୍ତ୍ତମାନ ଅବସ୍ଥାରେ ଧନୀ-ଦରିଦ୍ର, ଜମିଦାର-ପ୍ରଜା, ମହାଜନ-ଖାତକ, ହାକିମ-ଆସାମୀ ସମସ୍ତେ ଏକ ମନ ହୋଇ ଚେଷ୍ଟା କଲେ ଆସନ୍ନ ଦୁର୍ଭିକ୍ଷର ଦାଉ ଅନେକ ପରିମାଣରେ କମିଯିବ, ଏଥିରେ ସନ୍ଦେହ ନାହିଁ । ଏ ଅନ୍ନ ବସ୍ତ୍ରର ସଙ୍କଟ ସମୟରେ ଆମ୍ଭେମାନେ ନିଜେ ନିଜେ ନିଜ କ୍ଷେତ୍ରରେ ଉଦ୍ୟମ, ସ୍ୱାର୍ଥତ୍ୟାଗ, ଆତ୍ମନିର୍ଭର ଓ ଅଧ୍ୟବସାୟର ଉଦାହରଣ ନ ଦେଖାଇଲେ ଭାରତବାସୀଙ୍କର ପରମୁଖାପେକ୍ଷିତାରୂପ କଳଙ୍କ ମୋଚନ ହେବ ନାହିଁ । ଆଜି ଥାଉ ।

ଉ.ସା. - ୨୨ ଭାଗ / ୮ମ ସଂଖ୍ୟା / ମାର୍ଗଶିର / ୧୩୨୬ ସାଲ ।

## ।। କୋଡ଼ିଏ ।।

"Man proposes, God disposes". ମନୁଷ୍ୟ ବିଚାର କରେ, 'ଏଷା କରେଙ୍ଗା, ତେଷା କରେଙ୍ଗା', କିନ୍ତୁ 'ଦଇବ ଦଉଡ଼ି, ମଣିଷ ଗାଈ, ଯେଣିକି ଓଟାରେ ତେଣିକି ଯାଇ ।' ଛାର ମନୁଷ୍ୟର କରାମତ କେତେ ? ମନୁଷ୍ୟର ଚାରା କେତେ ? ମନୁଷ୍ୟର ବା କସରତ୍ କେତେ ? ଦିହରେ ବଳ ବୟସ ଥିବାଯାକେ ମନୁଷ୍ୟ କାନ୍ଦୁଥାଏ, ନାଚୁଥାଏ, କିନ୍ତୁ ଏ ଅଢ଼େଇଦିନିଆ ଢଙ୍ଗ ମନୁଷ୍ୟକୁ ଶୀଘ୍ର ଛାଡ଼ି ପଳାଏ । ସେତେବେଳେ ମନୁଷ୍ୟ ଉପଲବ୍ଧି କରେ, 'ଆରେ ! ମୁଁ ତୁଚ୍ଛାଟାକୁ ଏତେ ଡିଆଁ କୁଦା ମାରୁଥିଲି ! ମୋ ଦେହି ତ ଶାଗ ସିଝିବ ନାହିଁ ! କଳାବାଲା ଆଉ ଜଣେ, ମୁଁ କେବଳ ରାମନୀଳାର ପିତୁଳି ମାତ୍ର ।' ମନୁଷ୍ୟ ଏ କଥା ସମଝିଗଲାରୁ, ସଂସାର କ୍ଷେତ୍ରରେ ଠିକିଯାଇ ଏ କଥା ଶିଖିଲାରୁ ତାହାର ମଗଜ ଥଣ୍ଡା ହୋଇଯାଏ । ମନୁଷ୍ୟ ବିଚାରିଥାଏ, ମୁଁ ଘର କରିବି, କୋଠା କରିବି, ରୋଜଗାର କରିବି, ଚାକିରି କରିବି, ପୁଅ ମାଇପ କରିବି, ସଂସାର କରିବି, ଦୁନିଆରେ ବଡ଼ ହେବି, ନାମ କରିବି, ବାହାଦୁରି ପାଇବି, ଶହେ ଘର ଭାଙ୍ଗି ମୋର ଘର କରିବି, ଯାକୁ ଧରିବି, ତାକୁ ମାରିବି, ଯା ଘର ପୋଡ଼ିଦେବି, ତା ଘର ଲୁଟିକରି ବୋହି ଆଣିବି, ଯାକୁ ସଜା ଦେବି, ତାକୁ ଜବଦ୍ କରିବି, ମାମଲା କରିବି, ଦରବାର କରିବି, ଇତ୍ୟାଦି; କିନ୍ତୁ ଫଳତଃ ଦେଖାଯାଏ ଯେ, ଏ ବଡ଼ପଣ ଅଢ଼େଇଦିନିଆ, ସେ ଅଢ଼େଇଦିନ

ବିତିଗଲେ ମନୁଷ୍ୟ ହାତରେ କୁଟାଖଣ୍ଡିକ ବି'ଖଣ୍ଡ ହୋଇପାରେ ନାହିଁ, ମନୁଷ୍ୟ ଖାଲି କଲବଲ କରି ଚାହିଁଥାଏ ଓ ଚାହିଁ ଜଳକା ହୋଇଥାଏ ।

ଏଥିପାଇଁ ମହାଜନମାନେ ଡାକିହାକି ନାଗରା ବଜାଇ ସମସ୍ତଙ୍କୁ ହୁସିଆର କରି ଦେଇଅଛନ୍ତି ଯେ, ''ନଳିନୀ-ଦଳ-ଗତ-ଜଳମତିତରଳଂ !'' ''ଶୁଖା ଖଡ଼୍ ଖଡ଼୍ ଖଡ଼୍ ଖଡ଼୍ - ମିଛ ମାୟାରେ ପଡ଼ି ତୁ ନଡ଼ବଡ଼୍ ନଡ଼ବଡ଼୍ ।'' ସଂସାରରେ ଆମେ ଏହି କଥା ଦେଖୁଥାଇଁ, ଶୁଣୁଥାଇଁ, ପଢୁଥାଇଁ, ଗୁଣୁଥାଇଁ, ଠେକୁଥାଇଁ, ତଥାପି ଏ ଜ୍ଞାନ ତ ଆମ୍ଭମାନଙ୍କର ହେଉ ନାହିଁ । ସଂସାରରେ ପଶି ଆମେ କହୁଛୁଁ ''ପେଟ ପୋଷ, ନାହିଁ ଦୋଷ ।'' ''ଆମେ ଅମର, ଅଜର ।'' ''ଆମେ କୋଳି ଖାଇ କୋଳି ମଞ୍ଜି ପୋତିଛୁଁ ।'' ଏହାକୁ ହିଁ କହନ୍ତି 'ମୋହ' 'ମାୟା' । ଏହି ମୋହ ଓ ମାୟାର ନିଶା ଆମ୍ଭମାନଙ୍କୁ ଦିନ ରାତି ଘୋଟିଛି ଓ ଆମର ନିଜର ହେୟତା, କୀଟସ୍ୟ କୀଟତା ଅନୁଭବ କରିବାକୁ ଆମକୁ ଶକ୍ତି ଦେଉ ନାହିଁ । ଏହି ସମ୍ବନ୍ଧରେ ଜଣେ ବିଶିଷ୍ଟ ବନ୍ଧୁଙ୍କ ସଙ୍ଗେ କଥା ପଡ଼ିବାରୁ ସେ ମତେ ପଚାରିଥିଲେ, କେଉଁଟା ବଡ଼ ? ପାଶ୍ଚାତ୍ୟ ଆଦର୍ଶ (ideal), ନା ପ୍ରାଚ୍ୟ ଆଦର୍ଶ (ideal) ? ପାଶ୍ଚାତ୍ୟମାନଙ୍କର କର୍ମମୟ (materialistic) ଜୀବନ ଓ ମନୁଷ୍ୟର ଶେଷ ବାହାଦୁରି "He died while in harness" ଅର୍ଥାତ୍ କର୍ମକ୍ଷେତ୍ରରେ ଲାଗୁ ଲାଗୁ ଅମୁକଙ୍କର ପ୍ରାଣ ଗଲା । ପ୍ରାଚ୍ୟଙ୍କର ଭାବମୟ (idealistic) ଜୀବନ ଆମର ଶେଷ ବାହାଦୁରି ''ବାର୍ଦ୍ଧକ୍ୟେ ମୁନିବୃତ୍ତିନାଂ ଯୋଗେନାନ୍ତେ ତନୁତ୍ୟଜାଂ ।'' ବନ୍ଧୁଙ୍କ ପ୍ରଶ୍ନର ଉତ୍ତର ଦେବା ପୂର୍ବରୁ ମୁଁ ଅନେକ ଭାବିଲି । ବିଚାରିଲି, ବନ୍ଧୁ ୫ ବରଷ ପୂର୍ବରୁ ମତେ ଏ ପ୍ରଶ୍ନ ପଚାରିଥିଲେ ମୁଁ ନିଶ୍ଚୟ ପାଶ୍ଚାତ୍ୟ ଆଦର୍ଶକୁ ସର୍ବୋଚ୍ଚ ସ୍ଥାନ ଦେଇଥାନ୍ତି; କିନ୍ତୁ ଏଥିମଧ୍ୟରେ ଭଗବାନ୍ ମୋ ଆଖିରୁ ଅନେକ ପରଦା ପରଳ କାଢ଼ି ଦେଇଅଛନ୍ତି; ସେଥିପାଇଁ ଆମର ରକ୍ତରେ ଗରମି, ଆଇନ ବ୍ୟବସାୟର ଦାଉ, ଦେଶ ହିତୈଷୀର କିଳିକିଳା, ଦେଶନେତା ହେବାର ମାଦକତା, ଖବରକାଗଜରେ ନାମ ଛାପା ହେବାର ପ୍ରଲୋଭନ ଅନେକ ପରିମାଣରେ ଉଭେଇ ଯାଇଅଛି ଓ କର୍ମକ୍ଷେତ୍ରରେ ବେଙ୍ଗଳାରେ ଘୋଷାରି ହେବା ପାଇଁ ମୋ ଦେହରେ ବନ୍ଧା ହୋଇଥିବା ଦାଉଁଣି (harness) ବର୍ତ୍ତମାନ ଦୁର୍ଗନ୍ଧମୟ ବୋଧ ହେଲାଣି ଅତଏବ ଗାଡ଼ି ଓଟାରୁ ଓଟାରୁ ହଡ଼ା ଘୋଡ଼ାର ପ୍ରାଣ ଯିବା ଆଦର୍ଶଟା ଏବକୁ ମତେ ଭଲ ଲାଗୁ ନାହିଁ । ଏଥିପାଇଁ ବନ୍ଧୁଙ୍କୁ ଉତ୍ତର ଦେଲି, 'ପୁତ୍ରନିବେଶି ପତ୍ନୀପାଶ' ଆକାଡ଼୍କ୍ଷାଟା ମତେ ଅପେକ୍ଷାକୃତ ଉଚ୍ଚ ବୋଲି ବୋଧ ହେଉଅଛି । ଏ ବିଷୟରେ ବନ୍ଧୁଙ୍କ ସଙ୍ଗେ ଅନେକ 'ଦୁଃଖ ସୁଖ' ହେଲି । ମୁଁ ଅନୁଭବ କରୁଅଛି ଯେ, ସଂସାରରେ ମନୁଷ୍ୟର ଆକାଡ଼୍କ୍ଷାର ଶେଷ ନାହିଁ । ଗୋଟିଏ ଆକାଡ଼୍କ୍ଷା ପୂର୍ଣ୍ଣ ନ ହେଉଣୁ ଆଉ ଗୋଟିଏ ଆକାଡ଼୍କ୍ଷା ମନରେ ଉଦୟ ହେଉଅଛି, ଏ ଅଗ୍ନିର ନିର୍ବାପନ ନାହିଁ । ''ନିଃସ୍ୱୋବ୍ୟଷ୍ଟି ଶତଂ ଶତୀ ଦଶଶତଂ ଲକ୍ଷଂ ସହସ୍ରାଧିପଃ ।'' ଗରିବ ଲୋକ ଶତ ମୁଦ୍ରା ଆକାଡ଼୍କ୍ଷା କରେ, ଶତ ସହସ୍ର ମୁଦ୍ରା ଓ ସହସ୍ରାଧିପ ଲକ୍ଷମୁଦ୍ରା ପାଇବାକୁ ଆଶା କରୁଥାଏ ।

ଏ ଆଶା ଏତିକିରେ ବୋଧଶୋଧ ହୁଏ ନାହିଁ । ଏଥିରୁ ମନକୁ ଫେରାଇବା ବଡ଼ ସହଜ ନୁହେଁ ।

ମୁଁ ଗତ ପନ୍ଦର ବର୍ଷ ହେବ ସଂସାରରେ ପଶି ଦେଖୁଛି ଯେ, ମୁଁ ମଧ ଏହି କୁହୁକରେ ମାତିଅଛି । ଏ ଦ୍ୱନ୍ଦ୍ୱରୁ ଅପସୃତ ହୋଇ ଶାନ୍ତିରେ ନିଭୃତ ନିଳୟରେ ବସି ଧର୍ମଚର୍ଚ୍ଚା, ସାହିତ୍ୟଚର୍ଚ୍ଚା, ଜ୍ଞାନଚର୍ଚ୍ଚା ଆଦି କରିବାର ଛବି ବହୁକାଳରୁ ହୃଦୟରେ ଟଙ୍ଗା ହୋଇଅଛି ମାତ୍ର, କିନ୍ତୁ ସେ ଛବି ଖଣ୍ଡକୁ ଚାହିଁ ତହିଁର ମାଧୁର୍ଯ୍ୟ ଉପଲବ୍ଧି କରିବାକୁ ବେଳ ହେଉ ନାହିଁ । ଏ ପନ୍ଦର ବର୍ଷ ହେଲା କେବଳ ମହଲତ ନେଇ ଆସୁଅଛି ଓ ବର୍ତ୍ତମାନ ଦେଖିପାରୁଅଛି ଯେ, ଏପରି ବାରଂବାର ମହଲତ ନେଉଥିବା ଯୋଗୁଁ ମତେ ଯେତେ ମୁଲତବି ଖର୍ଚ୍ଚା ଅଙ୍କାରୁ ଗଣିବାକୁ ପଡ଼ିଲାଣି, ସେତକ ଶେଷକୁ ମକଦ୍ଦମା ଖରଚାରୁ ଢେର ବଳିପଡ଼ିବ । ଏ ମୁଲତବି ଖରଚା ଅପବ୍ୟୟ ପାଇଁ ଦାୟୀ ମୋ ଅବୁଝା ମନ । ବିଚାରୁଅଛି, ବ୍ୟବସାୟରେ ଲକ୍ଷପତି ହେବି, ଖେତାବ ପାଇବି, ତକମା ପାଇବି, ଛାପା କାଗଜରେ ଧନ୍ୟ ଧନ୍ୟ ପଦ ପାଇବି, କୋଠାବାଡ଼ି, ନଅର ଉଆସ, ଜମିଦାରି ରାଜଗି କରିବି, ଶାଲ ଦୋଶାଲ ଘୋଡ଼ି ହେବି, ଯୋଡ଼ିଗାଡ଼ି ଓ ମଟର ଚଲାଇବି, ଦେଉଳ ତୋଳାଇବି, ପୋଖରୀ ଖୋଳାଇବି, ଇତ୍ୟାଦି ଯେତେଗୁଡ଼ିଏ ଆଦର୍ଶ ମନରେ ଥାପି ବ୍ୟବସାୟରେ ପଶିଥିଲି, ସେଗୁଡ଼ାକ ଏକଦମ ତ୍ୟାଗ କରି ନିପଟ ମଫସଲରେ ଆପଣା କୁଡ଼ିଆରେ ବସି, ମୋଟ ଖାଇ ରୋଟ ପିନ୍ଧି ଏ କର୍ମମୟ ଜୀବନଟାକୁ କଳଙ୍କିତ (ruled) କରିଦେବି ଓ ମୋ ନାମଟା ଜାତୀୟ ପାଞ୍ଜିରୁ ପୋଛା ହୋଇଯିବ, ଏ କଥା ଏ ଦେହ ସହିବ ନାହିଁ । ମୋ ଅନୁପସ୍ଥିତିରେ ମୋ କାରଖାନା କିଏ ସମ୍ଭାଳିବ ? ମୋର ବିନା ରୋଜଗାର, ବିନା ସାହାଯ୍ୟ, ବିନା ତଦାରଖ, ବିନା ପ୍ରଭୁତ୍ୱ, ବିନା କରାମତ ଜାହେରିରେ ମୋ ଘର, ମୋ ସଂସାର, ମୋ ପରିବାର, ମୋ ବାଲବଚ୍ଚା ଦଣ୍ଡେ ଚଳିପାରିବେ ନାହିଁ । ହାଇରେ ବିଧାତା ! ନିର୍ବୋଧ ମନୁଷ୍ୟ ସବୁବେଳେ ବିଚାରୁଛି ଓ ଗଣାପୋଛା କରୁଛି ଯେ -

ଇଦମଦ୍ୟ ମୟା ଲବ୍ଧମିମଂ ପ୍ରାପ୍ୟେ ମନୋରଥଂ ।
ଇଦମସ୍ତୀଦମପି ମେ ଭବିଷ୍ୟତି ପୁନର୍ଦ୍ଧନଂ
ଅସୌ ମୟା ହତଃ ଶତ୍ରୁର୍ହନିଷ୍ୟେ ଚାପରାନପି ।
ଈଶ୍ୱରୋଽଦମହଂ ଭୋଗୀ ସିଦ୍ଧୋଽହଂ ବଳବାନ୍ ସୁଖୀ ।
ଅଢ୍ୟୋଭିଜନବାନସ୍ମି କୋଽନ୍ୟୋଽସ୍ତି ସଦୃଶୋମୟା । (ଭଗବଦ୍ ଗୀତା ୧୬ ଅଧ୍ୟାୟ ।)

(ଆଜି ମୁଁ ପାଇଲି ଏହା,
କାଲି ମୁଁ ପାଇବି ତାହା,
ମନୋରଥ ମୋର ଯାହା,
ହୋଇବ ପୂର୍ଣ୍ଣ ।

ଆଜି ଅଛି ଏତେ ଧନ,
କାଲି ହେବ ପୁଣି ଧନ,
ଧନର ଉପରେ ଧନ ପାଇବି ପୁଣ !
ଆଜି ଏ ଶତ୍ରୁ ବଧିଲି,
ଆଉ ବଧିବି ମୁଁ କାଲି,
ଶତ୍ରୁମୁଖେ ଦେଇ କାଳି ହେବି ମୁଁ ଜୟୀ ।
ମୁଁ ଈଶ୍ୱର, ମୁହିଁ ଭୋଗୀ,
ସିଦ୍ଧ, ସୁଖୀ, ବଳୀ, ଯୋଗୀ,
ମୋହଠାରୁ ବଳି ସୁଖୀ ସଂସାରରେ ନାହିଁ ।
ଧନ ଜନ ଲକ୍ଷ୍ମୀ ମୋତେ
ବେଢ଼ିଅଛନ୍ତି ନିରତେ
ପୂଜା କରନ୍ତି ସମସ୍ତେ ମୋ ପାଦ ଚାହିଁ ।
ମୋ ପରି ବଳୁଆ କେହି
ସାରା ସଂସାରରେ ନାହିଁ
ଏହା ଭାବି ଦିବାନିଶି ବିଚରେଁ ମୁହିଁ ।)

କିନ୍ତୁ ମନୁଷ୍ୟ ! ବିଚାରି ପାରୁ ନାହୁଁ ଯେ ଏ ସବୁ କେଳାକୁହୁକ । ବୁଢ଼ିଆଣୀ ଜାଲଭଳିଆ କେଉଁଆଡ଼େ ମିଳାଇଯିବ । ସେତେବେଳେ ତତେ ଜଗିବାକୁ, ତତେ ସେବା କରିବାକୁ ତୋ ସଙ୍ଗରେ କେହି ଗୋଡ଼ାଇ ଯିବେ ନାହିଁ । ସେତେବେଳେ ତୋର ଧର୍ମ (ଅର୍ଥାତ୍ ସନ୍ତୋଷ-ଶାନ୍ତିପରିଷ୍କୃତ ବିବେକ) ଏକା ତୋର ସାଥୀ ହେବ । ଏ କଥା ମନୁଷ୍ୟ ଯେବେ ଭାବୁଥାନ୍ତା, ତେବେ ପୃଥିବୀରୁ ପଣ ପଣ ପାପ, ଅତ୍ୟାଚାର, ଜୁଲମ, ଅନାଚାର, ଅବିଚାର କେଉଁଆଡ଼େ ଲିଭିଯାନ୍ତା । ଆଉ ସଂସାର ଯାହାକୁ ଭାଗ୍ୟ ବିପର୍ଯ୍ୟୟ ବୋଲି ଭାବୁଅଛି, ପ୍ରକୃତରେ ସେହି ଅବସ୍ଥା ପରିବର୍ତ୍ତନ ଦ୍ୱାରା ପ୍ରକୃତ ମନୁଷ୍ୟତା ଫୁଟିଉଠନ୍ତା । ଏ ସଂସାରଟା ଧୂଳିଖେଳ ବୋଲି ଯେଉଁମାନେ କହିଯାଇଅଛନ୍ତି, ସେମାନେ ନିତାନ୍ତ ଗମାର ନ ଥିଲେ ବା ଅନଭିଜ୍ଞ ନ ଥିଲେ । 'ଧୂଳିରେ ମିଶିବ ଏଇ ମର କଳେବର ।' ଧୂଳିରେ ଘର କରିବାକୁ ହେବ, ଧୂଳିରେ ଟଙ୍କା କମାଇବାକୁ ହେବ, ଧୂଳିରେ ପୁଅମାଇପ କରିବାକୁ ହେବ, ଧୂଳିରେ ବଡ଼ଲୋକ ହେବାକୁ ହେବ, ଶେଷରେ ଏ ସମସ୍ତ ଧୂଳିରେ ମିଶିଯିବ ଓ ତୋର ଦେହ ମଧ୍ୟ ଧୂଳିରେ ମିଶିଯିବ । ''ଯୁଗକୁ ଯୁଗ ଏହିମତେ, ପରମାନନ୍ଦ ଏ ଜଗତେ ।'' ଏ ସଂସାରରେ କର୍ମ ରୂପ ଆବର୍ତ୍ତରେ ମୁଁ ଏପରି ବେଗରେ ଘାଉଁରି ଖାଉଛି ଯେ, ମୁଁ ଭାବୁଛି, ମୋ ସଂସାରର ଭାରକେନ୍ଦ୍ର-ବିନ୍ଦୁଟି ମୋର ମସ୍ତିଷ୍କ ମଧ୍ୟରେ ଅବସ୍ଥିତ । କିନ୍ତୁ ମୁଁ ଥରେ ଭାବିପାରୁ ନାହିଁ ଯେ, ମୁଁ ମଲା ବାସି ଦିନ ମୋ ପାଇଁ କେଉଁ

କଥା, କେଉଁ କାରଖାନା ଅଟକିଯିବ ନାହିଁ, କେଉଁ କାମ ଅଚଳ ହୋଇ ପଡ଼ି ରହିବ ନାହିଁ । କିନ୍ତୁ ସମସ୍ତେ ଯେବେ ଏପରି ଭାବି କର୍ମମୟ ଜୀବନରୁ ଓ କର୍ମକ୍ଷେତ୍ରରୁ ଅପସୃତ ହେବେ, ତେବେ ଏ ସଂସାରର ଲୀଳା ଚଳିବ କିପରି ? ମୋହନିଶା, ମାୟାବନ୍ଧନ ତୁଟିଗଲେ, ସଂସାର ଶଗଡ଼ର ଅଣକିଳ ହୁଗୁଳି ଗଲେ ଦୁନିଆଟା ଚଳିବ କିପରି ? ଏଥିପାଇଁ ଧର୍ମଶାସ୍ତ୍ର ଓ ମହାଜନ ଚରିତ ଓ ସତ୍‌ସଙ୍ଗରୁ ଆମ୍ଭମାନଙ୍କୁ ଉପଦେଶ ଗ୍ରହଣ କରିବାକୁ ହୁଏ । ଭଗବାନ୍ ଗୀତାରେ କହିଅଛନ୍ତି ''କର୍ମଣ୍ୟେବାଧିକାରସ୍ତେ ମା ଫଳେଷୁ କଦାଚନ ।'' ମନୁଷ୍ୟର କର୍ମରେ ଅଧିକାର ଅଛି, କିନ୍ତୁ ଫଳରେ ଅଧିକାର ନାହିଁ । ମନୁଷ୍ୟ ଯେତେବେଳେ ଆପଣାର ହେୟତା ଉପଲବ୍ଧି କରି ଆପଣାକୁ ବିଶ୍ୱ ବ୍ରହ୍ମାଣ୍ଡ ରୂପ କଳର ଗୋଟିଏ କ୍ଷୁଦ୍ରାଦପି କ୍ଷୁଦ୍ର ଅଂଶବିଶେଷ ବୋଲି ବିଚାର କରି, ଫଳ ପ୍ରତି ଆସକ୍ତି ପରିତ୍ୟାଗ କରି କର୍ତ୍ତବ୍ୟାନୁରୋଧରେ କର୍ମକ୍ଷେତ୍ରରେ ପ୍ରବେଶ କରେ, ସେତେବେଳେ ଏକା ମନୁଷ୍ୟ ସୃଷ୍ଟିକର୍ତ୍ତାଙ୍କ ଉଦ୍ଦେଶ୍ୟ ଉପଲବ୍ଧି କରିବାକୁ ସମର୍ଥ ହୁଏ ।

ଲୋକେ କହନ୍ତି, 'ସମସ୍ତେ ଯୋଗୀ ହେଲେ ଭିକ ଦେବ କିଏ ?' ସମସ୍ତେ ସଂସାର-ବିରାଗୀ ହେଲେ ସଂସାର ଆତଯାତ ହେବ କିପରି ? ଦେଶବାସୀଯାକ ସମସ୍ତେ ବଇଷମ ହେଲେ ଲୋକସଂଖ୍ୟା ବଢ଼ିବ କାହୁଁ ? ଏଥିପାଇଁ ସଂସାରରେ ରହି ସଂସାର ଧର୍ମ ପାଳନ କରିବା ସଙ୍ଗେ ସଙ୍ଗେ ବୈରାଗୀ ହେବା ନିମନ୍ତେ ଭଗବାନ୍ ଅର୍ଜୁନଙ୍କୁ ଉପଦେଶ ଦେଇଅଛନ୍ତି - ଜନକ ଆଦି ସମ୍ରାଟ୍‌ମାନେ ଗୃହସ୍ଥ ଧର୍ମରେ ବ୍ୟାପୃତ ଥାଇ ମଧ ଋଷି ଥିଲେ । ସଂସାରରେ ଥାଇ ସଂସାରରେ ଲିପ୍ତ ନ ହେବା ସହଜ କଥା ନୁହେଁ । ଏହା ଶିକ୍ଷା କରିବାକୁ, ଏହା ସିଦ୍ଧ କରିବାକୁ କଠିନ ସାଧନା ଆବଶ୍ୟକ । ସଂସାରରେ ଜଣେ ହେବା, ଅଥଚ ସଂସାରର ବନ୍ଧନରେ ପଡ଼ିବା ନାହିଁ, ଏ ସାଧନା ପାଇଁ ମନ ଆବଶ୍ୟକ, ପ୍ରେମ ଆବଶ୍ୟକ, ମୈତ୍ରୀ ଆବଶ୍ୟକ, ଭକ୍ତି ଆବଶ୍ୟକ ଓ ଉପଯୁକ୍ତ ଗୁରୁ ଆବଶ୍ୟକ । ଏ ସଂସାରର ଜଞ୍ଜାଳ ମଧରେ ଏହା ସମସ୍ତଙ୍କ ଭାଗ୍ୟରେ ଘଟେ ନାହିଁ, ମୋ ଭାଗ୍ୟରେ ଘଟୁ ନାହିଁ, ଏହା କିଛି ବିଚିତ୍ର ନୁହେଁ । କିନ୍ତୁ ଏହା ଘଟିପାରିଲେ ମନୁଷ୍ୟର କ୍ଷୁଦ୍ର ଜୀବନ ସାର୍ଥକ ହୁଅନ୍ତା । ଦେଖାଯାଉ, ଭଗବାନ୍‌ଙ୍କ ବରାଦ କେତେଦୂର, ଆମ ଦଉଡ଼ କେତେଦୂର । ଏଥିପାଇଁ ପ୍ରଥମେ କହୁଥିଲି - Man proposes, God disposes.

ଉ.ସା. - ୨୨ଶ ଭାଗ / ୯ମ ସଂଖ୍ୟା / ମାର୍ଗଶିର / ୧୩୨୬ ସାଲ ।

## ।। ଏକୋଇଶ ।।

ଆମ ଘରର ହାଲଚାଲ ପ୍ରସଙ୍ଗରେ ଗତଥର ମୁଁ କହିଥିଲି ଯେ, ଏଣିକି ପାଗପଟୁକା ଦିହରୁ କାଢ଼ି ମଫସଲରେ ଖଣ୍ଡେ ରୋଟା ପିନ୍ଧି ମୁଠାଏ ମୋଟା ଖାଇ ପଡ଼ି ରହିବା ପାଇଁ ମନଟା ଭାରି ଉଚ୍ଛନ୍ନ ହେଉଅଛି; କିନ୍ତୁ 'ଘଟନାଚକ୍ର'ରେ ସେ କଥା ବର୍ତ୍ତମାନ ହୋଇପାରୁ ନାହିଁ । କେବେ ଯେ ତାହା ହେବ, ତାହା ସେହି ବିଶ୍ୱନିୟନ୍ତା ନୃସିଂହନାଥଙ୍କୁ ଜଣା ।

ବର୍ତ୍ତମାନ ସଭ୍ୟତାର ପ୍ରଭାବରେ ଲୋକେ ଗ୍ରାମ ପଲ୍ଲୀ ଛାଡ଼ି ସହର ଆଡ଼କୁ ଧାଉଡ଼ି ଲଗାଇ ଆସୁଥିଲେ । ଧନୀ ଓ ବଡ଼ଲୋକମାନେ ମଫସଲରେ ଏକୁଟିଆ ହୋଇ ପଡ଼ି ରହିବାଠାରୁ ସହରରେ ଆସି, ସହରର ମଉଜ ମଜଲିସ ଓ ନାଟତାମସାରେ ଯୋଗ ଦେଇ ନିଜର ସମୟ ଓ ପଇସାକୁ ବ୍ୟୟ କରିବା ଅଧିକତର ଆନନ୍ଦମୟ ବୋଲି ବୋଧ କରୁଥିଲେ । ଶିକ୍ଷିତ ଲୋକମାନେ ମଫସଲରେ ରାମ ସେଠୀ, ଶାମ ସାମଲଙ୍କ ସହ ବାସକୁ ତୁଚ୍ଛ ମଣି, ଗ୍ରାମରେ ଥାଇ ଆପଣା ବୁଦ୍ଧି ବିଦ୍ୟାରେ କଳଙ୍କି (rust) ଲଗାଇବା ଅପେକ୍ଷା ସହରକୁ ଆସି ସହରର କାର୍ଯ୍ୟାଳୟ, ବିଦ୍ୟାଳୟ, ବିଚାରାଳୟ, ସଭାଳୟମାନଙ୍କରେ ଆପଣାର ବୁଦ୍ଧିବିଦ୍ୟାକୁ ଶାଣ ଦେବାକୁ ଅଧିକତର ସୁଖମୟ ମଣୁଥିଲେ । ଅଶିକ୍ଷିତ ଲୋକମାନେ ମଧ ଗ୍ରାମରେ ପଡ଼ିରହି ଦିନଯାକ ମୁଣ୍ଡପାଣି ଗୋଡ଼ରେ ମାରି ଚାଷଧନ୍ଦା ଓ ମୂଲ ଲାଗି ଧାନର ସେର ବା ପଇସା ଦି'ଅଣା କମଉ କମଉ ଆପଣା ବଳବୟସଟା ଅକାରଣ ଗମେଇ ଦେବା ଅପେକ୍ଷା ସହରକୁ ଆସି ହାକିମହୁକୁମା ଓ ବଡ଼ଲୋକଙ୍କ ପାଖରେ ଦରମାଖିଆ ଚାକିରି କରି, ଗୋଦାମ ଓ କଲକାରଖାନାରେ, ଅଫିସ ମହକୁମାମାନଙ୍କରେ ପେଟପୂରା ଚାକିରି କରି ପଇସା କମେଇବା ଅଧିକତର ଆନନ୍ଦମୟ ବୋଧ କରୁଥିଲେ । ବାକି ରହିଗଲେ ମଫସଲରେ କେବଳ ଲୁଚାଏ ନିଷ୍କର୍ମା, ନିର୍ବଳୁଆ ଓ ନିର୍ବୁଦ୍ଧିଆ । ସେମାନଙ୍କ ଦେହି ଶାଗ ସିଝିବ ନାହିଁ । ଫଳତଃ ସେହିମାନଙ୍କ ହାତରେ ଗ୍ରାମର କୃଷି, ଗ୍ରାମର ସ୍ୱାସ୍ଥ୍ୟ ରହିଲା । ଏଥିପାଇଁ ଗ୍ରାମକୁ ସ୍ୱାସ୍ଥ୍ୟକର ରଖିବା ଓ କୃଷିର ଉନ୍ନତି କରିବା ଏ ଦୁଇ କଥା ଅସମ୍ଭବ ହେଲା ।

ମନୁଷ୍ୟ ଯେଡ଼େ ଇଚ୍ଛା ତେଡ଼େ ବଡ଼ ହେଉ, ଯେଡ଼େ କରାମତ୍‌ଦାର ହେଉ, ଯେଡ଼େ ପଢୁଆ ବା ଧନୀ ହେଉ, ଈଶ୍ୱର ତା ଦେହର ମଝିରେ ଗୋଟାଏ ଲମ୍ୱ ଓସାରିଆ ଗହୀର ରଖିଅଛନ୍ତି, ସେଇଟାକୁ କଞ୍ଚା, ସଢ଼ା, ସିଝା, ଅସିଝା ଦରସିଝା ତିଅଣ ଦେଇ ଦିନକେ ଦୁଇ ଥରଠାରୁ ଚାରିଥର ଭରତି କରିବାକୁ ହେବ । ସେଥିର ଉପାଦାନ ବିଦ୍ୟାଳୟ, କାର୍ଯ୍ୟାଳୟ, ବିଚାରାଳୟ, ସଭାଳୟ, କାରଖାନାଳୟରେ ମିଳିବ ନାହିଁ । ତାହା ଜନ୍ମାଇବ ମଫସଲର କୃଷିକ୍ଷେତ୍ର । ମା ବସୁଧା ଶସ୍ୟପ୍ରସୂ ନ ହେଲେ ରାଜା ପ୍ରଜା, ଧନୀ ଦରିଦ୍ର, ବିଦ୍ୱାନ୍ ମୂର୍ଖ, ଗୁରୁ ଶିଷ୍ୟ, ଓକିଲ ମକ୍କେଲ, ଡାକ୍ତର ମଳୁ, ସୁଖୀ ଦୁଃଖୀ, ସାହେବ ଖାନସମା, ସଭାପତି ସମ୍ପାଦକ, ହାକିମ ଆସାମୀ, ହିନ୍ଦୁ ମୁସଲମାନ, ଗୃହୀ ବୈରାଗୀ ସମସ୍ତେ ଉପାସରେ ଶୁଖିବେ ଓ ମରିବେ । ଏମାନଙ୍କୁ ପୋଷିବା ଭଳି ଶସ୍ୟ ''ନିବାର ବୀଜ ଜାତ ବିନା କର୍ଷଣେ'' ହେବ ନାହିଁ । ପୃଥିବୀ ଶସ୍ୟପ୍ରସୂ ହେବା ନିମନ୍ତେ କୃଷି ଆବଶ୍ୟକ । କୃଷି ନିମନ୍ତେ ଭଲ ଜମି, ଭଲ ବିହନ, ଭଲ ବଳଦ, ଭଲ ରୂପେ କର୍ଷଣ, କୃଷିର ଉତ୍କୃଷ୍ଟ ପ୍ରକ୍ରିୟା, ଜଳସେଚନ ଆଦି ଦରକାର । କିନ୍ତୁ ଏହା କରିବ କିଏ ? କୃଷିକ୍ଷେତ୍ରମାନ ସହରରୁ ବହୁ ଦୂରରେ, ଅର୍ଥାତ୍ ନିପଟ ମଫସଲରେ । ମନୁଷ୍ୟ ସହରରେ ରହି ମଫସଲରେ କୃଷିକାର୍ଯ୍ୟ କରିବା ଅସମ୍ଭବ । ଯେଉଁମାନେ ମଫସଲ ଛାଡ଼ି ସହରକୁ

ବାସ କରିବାକୁ ଆସିବେ, ସେମାନଙ୍କ ଦେହି ଜମି ତରତୁଦ ଆବାଦ କାର୍ଯ୍ୟ ସାଧନ ହେବା ଅସମ୍ଭବ । ଅତଏବ ଫଳତଃ ଯେଉଁ ଲୁଚାକ ମଫସଲରେ ପଡ଼ି ରହିବେ, ସେହିମାନେ କୃଷିରେ ଲାଗିବେ । କିନ୍ତୁ ମଫସଲବାସୀଙ୍କ ମଧ୍ୟରୁ ଯାହାଙ୍କର ବୁଦ୍ଧି ଅଛି, ବଳ ଅଛି, ବୟସ ଅଛି, କଳ ଅଛି ସେମାନେ ମଫସଲ ଛାଡ଼ି ସହରରେ ରହିଲେ । ଯେତକ ନିକର୍ମା, ଅକ୍ଷମ, ନିର୍ବୁଦ୍ଧିଆ, ନିର୍ବଳୁଆ ଓ ଯେଉଁମାନଙ୍କର ମଫସଲରେ ମୋଟ ଖାଇ ରୋଟ ପିନ୍ଧି ପଡ଼ିରହିବା ଛଡ଼ା ଗତ୍ୟନ୍ତର ନାହିଁ, ସେହିମାନେ ହେଲେ ଆମ ଦେଶରେ କୃଷିର ହର୍ତ୍ତା, କର୍ତ୍ତା, ବିଧାତା । କୃଷିରୁ ଉତ୍ପନ୍ନ ଦ୍ରବ୍ୟରେ ସଂସାର ଆତଯାତ ହେଉଅଛି ଓ ହେବ । ଯାହା ଉପରେ ଦୁନିଆ ନିର୍ଭର କରୁଅଛି, ତହିଁର ଚାବି ରହିଲା ମୂର୍ଖ ଓ ନିର୍ବୁଦ୍ଧିଆ ଗରିବଙ୍କଠାରେ । ଏଥିର ଅବଶ୍ୟମ୍ଭାବୀ ଫଳ ଏହିତା ହେଉଅଛି ଯେ, ଆମ ଦେଶର ଲୋକସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ଅନୁପାତ ଅନୁସାରେ କୃଷିର ଉନ୍ନତି ହେଉ ନାହିଁ । ଯେଉଁ ଭୂମି ଆଗେ ୪ ଜଣ ଲୋକଙ୍କ ପେଟ ପୂର୍ଣ୍ଣ କରୁଥିଲା, ବର୍ତ୍ତମାନ ସେ ଭୂମି ୪୦ ଜଣ ଲୋକଙ୍କ ପେଟ ପୂରିବା ପାଇଁ ଶସ୍ୟ ଉତ୍ପାଦନ କଲେ ସମସ୍ତଙ୍କ ପେଟ ପୂରନ୍ତା - କିନ୍ତୁ ସେଥିରୁ ସାବକ ୪ ଜଣଙ୍କ ପେଟ ପୂରିବା ଭଳି ଶସ୍ୟ ଉତ୍ପନ୍ନ ହେବା ଲାଗି ଯେଉଁ ବୁଦ୍ଧି, ଉଦ୍ୟମ ଓ ପରିଶ୍ରମ ଦରକାର, ତାହା ହେଉ ନାହିଁ । ଆମ ଦେଶରେ 'ଚଷା' ଠାରୁ ବଳି ତୁଚ୍ଛ ଗାଳି ନାହିଁ । ଏଥିରେ ଶେଷ ଫଳ ଏହିତା ହେଉଅଛି ଓ ହେବ ଯେ, ଆମର ଧନ ଜନ ଗୋପ ଲକ୍ଷ୍ମୀରେ ସୀମା ରହିବ ନାହିଁ, କିନ୍ତୁ ପେଟର ଦାନା ପାଇଁ ଅନ୍ୟାନ୍ୟ ଶସ୍ୟ-ପ୍ରସୂ ଦେଶମାନଙ୍କ ଉପରେ ନିର୍ଭର କରିବାକୁ ହେବ । ଦେଶରେ ସମୃଦ୍ଧିଶାଳୀ ନଗରମାନଙ୍କର ସଂଖ୍ୟା ବୃଦ୍ଧି ସଙ୍ଗେ ସଙ୍ଗେ ବିଭବଶାଳୀ ଜନପଦମାନଙ୍କର ସଂଖ୍ୟା କମିବ । ସଭ୍ୟତାର ବୃଦ୍ଧି ସଙ୍ଗେ ଦେଶରେ ରେଳ, ଜାହାଜ, ଅଗ୍ନିବୋଟ, ହାଓଆ ଗାଡ଼ି, ଶୂନ୍ୟଗାଡ଼ିର ବୃଦ୍ଧି ହେଲା ଓ ଆମ ଦେଶରେ ଶସ୍ୟ ନ ହେଲେ ମଧ୍ୟ ଆମ ହାତରେ ପଇସା ଥିଲେ ଅନ୍ୟ ଦେଶରୁ ଶସ୍ୟ ଆମଦାନୀ କରି ଆମେ ଆମ ପେଟ ପୋଷିପାରିବା । ଆମ୍ଭେମାନେ ଏହି 'ଗେଣ୍ଡ'ରେ ବସିଥାଇଁ; କିନ୍ତୁ କୌଣସି କାରଣରୁ ସଭ୍ୟତାର ଏ ସବୁ ସୁବିଧା ଓ କଳ ଦିନକ ପାଇଁ ସୁଦ୍ଧା ବିଗିଡ଼ିଗଲେ ତହିଁ ଆରଦିନ ଆମ୍ଭମାନଙ୍କୁ ଉପବାସରେ ମରିବାକୁ ହେବ । ଆଧୁନିକ ସଭ୍ୟତାର କରାମତ ମୁଁ ଯେତିକି ଦେଖୁଅଛି, ମୋ ମନରେ ସେତିକି ଏହି ଧାରଣା ଦୃଢ଼ତର ହେଉଅଛି । ଦେଶର ନୈସର୍ଗିକ ବିଭବ ଉପରେ ନିର୍ଭର ନ କରି କୃତ୍ରିମ ବିଭବ ଉପରେ ନିର୍ଭର କଲେ, ତହିଁର ଅବଶ୍ୟମ୍ଭାବୀ ଫଳ-ହଟହଟା ଓ ଉପବାସ ।

ପାଶ୍ଚାତ୍ୟ ସଭ୍ୟତା ଯେତେ ଆମ ଦେଶକୁ ଆକ୍ରମଣ କରୁଅଛି, ଦେଶରେ ନଗରର ସୃଷ୍ଟି, ଜନପଦର ବିନାଶ, କୃଷିର ଅବନତି, ପରମୁଖାପେକ୍ଷିତାର ବୃଦ୍ଧି ପରିଲକ୍ଷିତ ହେଉଅଛି ଓ କର୍ମାନୁସାରେ ଜାତି-ବିଭାଗର ଲୋପ ସଙ୍ଗେ ସଙ୍ଗେ ଧନାନୁସାରେ ଜାତି-ବିଭାଗର ସୃଷ୍ଟି ହେଉଅଛି । ମରହଟ୍ଟିଆ ପୁରୁଣା କାଳର କଥା ଛାଡ଼ିଦିଅନ୍ତୁ । ମୁଁ ଗତ

୪୦ ବର୍ଷ ମଧ୍ୟରେ ଯାହା ଦେଖୁଅଛି, ସେଥିରୁ ମୋର ଧାରଣା ହୋଇଅଛି ଯେ, ଆମ୍ଭମାନଙ୍କ ଦେଶରେ 'ଅଢ଼େଇଦିନିଆ' ବିଭବ ବଢ଼ିଅଛି, କିନ୍ତୁ ନୈସର୍ଗିକ ବିଭବ କମୁଅଛି । ମୁଁ ନିଜେ ପିଲାଦିନେ (ଅର୍ଥାତ୍ ୫୫ ବର୍ଷ ତଳେ) ଏପରି ଗୃହସ୍ଥ ଦେଖିଅଛି, ଯେଉଁମାନେ କେବଳ ଲୁଣ ଛଡ଼ା ଗୃହସ୍ଥର ଦୈନନ୍ଦିନ ବ୍ୟବହାରୋପଯୋଗୀ ଅନ୍ୟାନ୍ୟ କୌଣସି ବସ୍ତୁମାନଙ୍କ ପାଇଁ ପର ଉପରେ ନିର୍ଭର କରୁ ନ ଥିଲେ । ବସୁମାତାଙ୍କ ପ୍ରସାଦରୁ ସେମାନଙ୍କର ନିଜ ନିଜର ଭୂମିର ଉତ୍ପାଦନରୁ ଭାତ, ଡାଲି, ତିଅଣ, ମାଛ, ଜାଳିବା ତେଲ, ପିନ୍ଧିବା ଲୁଗା, ଶୋଇବା ବିଛଣା ସବୁ ହେଉଥିଲା । ମୋ ପିଲାଦିନେ ଏପରି ଗୃହସ୍ଥ ଦେଶରେ ପଣ ପଣ ମିଳୁଥିଲେ । କିନ୍ତୁ ବର୍ତ୍ତମାନ ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବରୁ ଫି କଥାରେ ଦାଣ୍ଡକୁ, ବଜାରକୁ ନ ବାହାରିଲେ ଓ ଅନ୍ୟ ଉପରେ ନିର୍ଭର ନ କଲେ ନ ଚଳେ । ଏବେ ଏପରି ଗୃହସ୍ଥ ''ଔଷଧ ପାଇଁ ଆଖିରେ ପକାଇବାକୁ'' ଖୋଜିଲେ ମଧ୍ୟ ମିଳିବା କଷ୍ଟକର । ଏହାକୁ ହିଁ ପାଶ୍ଚାତ୍ୟ ସଭ୍ୟତାର ଅଭିଧାନରେ କହନ୍ତି 'Division of labour' ବା 'କର୍ମ-ବିଭାଗ' ! ଆଧୁନିକ ସଭ୍ୟତାର କଳ ଠିକ୍‌ମତେ ଚଳୁଥିବା ପର୍ଯ୍ୟନ୍ତ ସବୁ କଥା ବେଧଡ଼କ୍ ।

ଆମ ଦେଶରେ ଖାଦ୍ୟର ଅଭାବ ହେଲା, ଜାହାଜରେ ରେଙ୍ଗୁନରୁ ଖୁଦ ଅଣାଇ ନେବା  ମୋ ଦେଶରେ ବସ୍ତ୍ରାଭାବ ହେଲା, ଆଚ୍ଛା, ବିଲାତୀ ଓ ମାର୍କିନ ଲୁଗା ଆଣି ଆମର କାମ ଚଳାଇନେବା; ଜାଳିବା ତେଲର ଅଭାବ ହେଲା, ବିଦେଶରୁ ବିଲୋରି ଲ୍ୟାମ୍ପ, ବିଜୁଳିବତି, ଗେସ୍ ବତି, କେରାସିନି, ପେଟ୍ରୋଲ ତେଲ ଆଣି ଘରଦ୍ୱାର ହାଲୋରମୟ କରିଦେବା  ଶଗଡ଼ ଗାଡ଼ି ଟାଣିବାପାଇଁ ଭଲ ବଳଦର ଅଭାବ ହେଲା; ବିଦେଶରୁ ବଗି, ଟମ୍‌ଟମ୍, ଫିଟନ୍, ମଟର, ଶୂନ୍ୟଗାଡ଼ି, ହାଓଆ ଗାଡ଼ି ଆଣି ମନ ଓରମାନ ମେଣ୍ଟାଇ ନେବା  ଖାଇବାକୁ ଶାକସବଜି ଓ ପରିବାପତ୍ରର ଅଭାବ ହେଲା; ବିଦେଶରୁ ପାର୍ଶଲ ଦ୍ୱାରା ନାନାଦି ରକମର ଦେବଭୋଗ୍ୟ ବସ୍ତୁ (ଯଥା - ରୁଟି, ବିସ୍କୁଟ, କେକ୍, ବୈଜ୍ଞାନିକ ଉପାୟରେ ବହୁ ଦୂରରୁ ଆନୀତ ଅଥଚ ସୁରକ୍ଷିତ ଓ ଟଟକା ଫଳମୂଳ, ମାଛ, ମାଂସ) ସରବରାଦ କରି କର୍ଣ୍ଣ ଓ ଜିହ୍ୱାର ବିବାଦ ମେଣ୍ଟାଇ ଦେବା । ଦୁଧର ଅଭାବ ହେଲା, ବିଦେଶରୁ Condensed milk (ବସା-ଦୁଧ) କିଣି କାମ ଚଳାଇଦେବା । ଏହିପରି ଦେଖାଯାଉଅଛି ଯେ, ଗୋଡ଼ର ଜୋତାଠାରୁ ଆରମ୍ଭ କରି ମୁଣ୍ଡର ଛତା ପର୍ଯ୍ୟନ୍ତ, ଶୋଇବା ବସିବା ଆସନ ଠାରୁ ଲଗାଏତ ଝାଡ଼ା ଫେରିବା ବାସନ ପର୍ଯ୍ୟନ୍ତ, ଘରେ ଜାଳିବା ଦୀପ ଠାରୁ ବିବାହ ଉତ୍ସବରେ ଆବଶ୍ୟକ ଦିହୁଡ଼ି ଆଲୋକମାଳା ପର୍ଯ୍ୟନ୍ତ, ରାତି ପିନ୍ଧା ପଖାଳକରା ଠାରୁ ଦରବାରର ଲାଖି ପୋଷାକ ପର୍ଯ୍ୟନ୍ତ ଆମର ଦୈନନ୍ଦିନ ବ୍ୟବହାରୋପଯୋଗୀ ପ୍ରାୟ ସମସ୍ତ ପଦାର୍ଥ ପାଇଁ ଆମକୁ ଆଉ ଚିନ୍ତା କରିବାକୁ ହେଉ ନାହିଁ । ଦରକାର ହେବା ମାତ୍ରକେ ଦୂର ବିଦେଶରୁ ଆମ ପାଇଁ ବେପାରୀ ମହାଜନମାନେ

ଅଉଲ୍ ଅଉଲ୍ ଦେବଭୋଗ୍ୟ ବସ୍ତୁମାନ ସରବରାହ କରି ଆଣି ଗଞ୍ଜ ମାରି ରଖି ଦେଇଅଛନ୍ତି । କେବଳ ଆମେ ଆଜି ପଇସାଗୁଡ଼ିଏ କମାଇପାରିଲେ ଯଥେଷ୍ଟ ହେବ ।

ଆଗେ ପୁରାଣ ଆଦିରେ ଶୁଣାଅଛି ଯେ, ପ୍ରବଳପରାକ୍ରାନ୍ତ ବୀରମାନଙ୍କୁ ଦେବତା ଓ ଦିକ୍‌ପାଳମାନେ ଖଟାଉଥିଲେ; ବାୟୁଦେବତା ପଙ୍ଖା କରୁଥିଲେ, ଅଗ୍ନିଦେବତା ନିଆଁ ଯୋଗାଉଥିଲେ, ବରୁଣ ରତ୍ନ ଭେଟି ଦେଉଥିଲେ, ଇନ୍ଦ୍ର ପାଣି ଯୋଗାଉଥିଲେ ଓ ବିଜୁଳିବତି ଯୋଗାଉଥିଲେ, ବିଶ୍ୱକର୍ମା ନଅର ଉଆସ ତୋଳି ଦେଉଥିଲେ, ଅଶ୍ୱିନୀକୁମାରମାନେ ଔଷଧ ଯୋଗାଣ କରାଉଥିଲେ; ଏବେ ଦେଖାଗଲା ଯେ, ପାଶ୍ଚାତ୍ୟବିଜ୍ଞାନ, ପାଶ୍ଚାତ୍ୟ ସଭ୍ୟତା ବଳରୁ ଫି ଘରେ ଘରେ ଦେବତାମାନେ ଆମର ସେବାରେ ଲାଗିଅଛନ୍ତି । ଅଗ୍ନିଦେବତା ଆମ ପାଇଁ ରେଳ ଜାହାଜ ଚଳାଉ ଅଛନ୍ତି, ଇନ୍ଦ୍ର ବିଜୁଳିବତି ଯୋଗାଉ ଅଛନ୍ତି, ପବନଦେବତା କଳପଙ୍ଖା ଚଳାଉଅଛନ୍ତି, ଇତ୍ୟାଦି ଇତ୍ୟାଦି । କିନ୍ତୁ ମୁଁ ଭାବେଁ, ଏଗୁଡ଼ାକ ଦ୍ୱାରା ଆମେ ଉନ୍ନତି କରୁଅଛୁଁ ନା ଅବନତି ଲଭୁଅଛୁଁ । ପାଶ୍ଚାତ୍ୟ ବିଜ୍ଞାନ ଦ୍ୱାରା ଅଦୃଷ୍ଟପୂର୍ବ, ଅଶ୍ରୁତପୂର୍ବ, ଅନାସ୍ୱାଦିତପୂର୍ବ, ଅନାଘ୍ରାତପୂର୍ବ, ଅସ୍ପୃଷ୍ଟପୂର୍ବ ଜିନିଷ ଓ ଘଟନାମାନ ପ୍ରତ୍ୟକ୍ଷୀଭୂତ ହେଉଅଛି  କିନ୍ତୁ ବିଜ୍ଞାନ ଦିଓଟି କଥା ବଦଳାଇପାରି ନାହିଁ -

୧. ଲୋକୋତ୍ପାଦନର ସର୍ବପ୍ରଧାନ ଉପକରଣ (ସ୍ତ୍ରୀ) ।

୨. ଖାଦ୍ୟୋତ୍ପାଦନର ସର୍ବପ୍ରଧାନ ଉପକରଣ (ଭୂମି) ।

ଆଗେ ପୁଲାଙ୍ଗ ମାଳପା ଓ ମାଟି ଦୀପରେ ଆମ ଘର ଉଜ୍ଜାଳା ହେଉଥିଲା, ଏବେ ତହିଁ ପରିବର୍ତ୍ତରେ ବିଜୁଳିବତିରେ ବେଶ୍ କାମ ଚଳୁଅଛି; ଆଗେ ଆମ ଦେଶର ତନ୍ତୀ-ବାପୁଡ଼ା ଆମ ପାଇଁ ପିନ୍ଧା ଦୋଷଡ଼ା, ଜାମାରୁ ଯୋଡ଼ ଏକପଟା ଦୋପଟା କରୁଥିଲା, ଏବେ ସେଥିପାଇଁ କଳ ହୋଇ ଆମର ବସ୍ତ୍ରାଭାବକୁ ଶତଗୁଣ ଦୂର କଲାଣି; କିନ୍ତୁ ଲୋକୋତ୍ପାଦନ ଓ ଶସ୍ୟୋତ୍ପାଦନ ପାଇଁ ବିଧାତା ସୃଷ୍ଟି ଆଦ୍ୟରୁ ଯେଉଁ ଉପକରଣ ଦିଓଟି ସୃଷ୍ଟି କରିଥିଲେ, ପାଶ୍ଚାତ୍ୟ ସଭ୍ୟତା ଓ ବିଜ୍ଞାନ ତହିଁ ବଦଳରେ ଅନ୍ୟ କିଛି Substitute (ପଦାର୍ଥାନ୍ତର) ଆବିଷ୍କାର କରିପାରି ନାହିଁ । ନିକଟ ଭବିଷ୍ୟତ୍‌ରେ ଯେ ପାରିବ, ଏହା ମୁଁ କଳ୍ପନା କରିପାରୁ ନାହିଁ । ଏପରି ସ୍ଥଳରେ ଏ ସୃଷ୍ଟିର ଯୋଡ଼ିଏ ବିଶିଷ୍ଟ ଅଭାବ ପୂରଣ କରିବା ପାଇଁ ଅଗତ୍ୟା ଆମ୍ଭମାନଙ୍କୁ ମାନ୍ଧାତାଙ୍କ ଅମଳର ସେହି ପୁରୁଣାକାଳିଆ ପଦାର୍ଥ ଦିଓଟି ଉପରେ ନିର୍ଭର କରିବାକୁ ହେବ । ବିଜ୍ଞାନ ବଳରେ ସଂସାରରେ ସବୁ ଅଭାବ ପୂର୍ଣ୍ଣ ହେଉଅଛି ଓ ହେବ, କିନ୍ତୁ ଏ ଦିଓଟି ଅଭାବ ପୂରଣ ପାଇଁ ଯାହା ଥିଲା, ତାହାହିଁ ଅଛି ଓ ରହିବ ।

ଲୋକସଂଖ୍ୟା ବୃଦ୍ଧି ପ୍ରସଙ୍ଗ ମୋର ବର୍ତ୍ତମାନ ଆଲୋଚ୍ୟ ବିଷୟ ନୁହେଁ । ଅତଏବ ସେ ସମ୍ବନ୍ଧରେ ଏଠାରେ ପଦେ ଅଧେ ଅବତାରଣା କରିବା ଅସ୍ୱାଭାବିକ ହେବ ବୋଲି ସେ ପ୍ରସଙ୍ଗର ଇସାରା ମାତ୍ର କଥା ପ୍ରସଙ୍ଗରେ କହିଲି । ବର୍ତ୍ତମାନ କୃଷି ସମ୍ବନ୍ଧରେ ବିଚାର

କରାଯାଉ । ମନୁଷ୍ୟ ବଞ୍ଚିରହିବା ପାଇଁ ଖାଦ୍ୟ ଏକାନ୍ତ ଆବଶ୍ୟକ । ସେ ଖାଦ୍ୟ ପ୍ରତ୍ୟକ୍ଷ ଭାବରେ ହେଉ ବା ପରୋକ୍ଷ ଭାବରେ ହେଉ, ବସୁମାତା (ଭୂମି) ଆମ୍ଭମାନଙ୍କୁ ଯୋଗାନ୍ତି । ନିରାମିଷଭୋଜୀମାନେ ଯାହା ଖାଆନ୍ତି, ତାହା ଭୂମିରୁ ଉତ୍ପନ୍ନ, ଆମିଷାଶୀମାନେ ଯେଉଁ ଜୀବଜନ୍ତୁଙ୍କ ଦ୍ୱାରା ଆପଣାର କ୍ଷୁନ୍ନିବୃତ୍ତି କରନ୍ତି, ସେ ଜୀବଜନ୍ତୁମାନଙ୍କ ଆହାର ଭୂମିରୁ ଉତ୍ପନ୍ନ ବା ସଂଗୃହୀତ । ଅତଏବ ଶସ୍ୟହିଁ ମନୁଷ୍ୟ ବଞ୍ଚିରହିବାର ସର୍ବପ୍ରଧାନ ଓ ସର୍ବପ୍ରଥମ ଆଶ୍ରୟ । ତାହା ଭୂମିରୁ ହିଁ ଉତ୍ପନ୍ନ ହେବ । ଭୂମିରୁ ଶସ୍ୟ ଉତ୍ପନ୍ନ ହେଲେ ମଧ ତାହା ବିନା ପରିଶ୍ରମ, ବିନା କୃଷିରେ ହେବ ନାହିଁ - ଯାହା ଇଚ୍ଛା ତାହା କରି ଗୁଡ଼ିଏ ପଣ୍ଡଶ୍ରମ କଲେ ହେବ ନାହିଁ । ଦିନକୁ ଦିନ କ୍ଷେତ୍ରମାନ ପୂର୍ବ ଅପେକ୍ଷା ବେଶି ଫଳ ଉତ୍ପନ୍ନ ନ କଲେ, ବଢ଼ିଥିବା ଲୋକସଂଖ୍ୟା ପାଇଁ ଯଥେଷ୍ଟ ଖାଦ୍ୟ ମିଳିବ ନାହିଁ । ଏଥିପାଇଁ ଫସଲର ଉନ୍ନତି କଲେ ଉନ୍ନତତର କୃଷିପ୍ରଣାଳୀମାନ (ଯଥା - ଉତ୍କୃଷ୍ଟ ବୀଜ ସଂଗ୍ରହ ଓ ସଂରକ୍ଷଣ, ଲାଭପ୍ରଦ ଫସଲ ଉତ୍ପନ୍ନ, ଗଭୀର ଚାଷ, ଜଳସେଚନ, ଭୂମିରେ ବଳପ୍ରଦ ସାର ପ୍ରଦାନ ଆଦି) ଅବଲମ୍ବନ କରିବାକୁ ହେବ । ଏହା କରିବ କିଏ ? ଯେଉଁମାନଙ୍କର ବୁଦ୍ଧି ଅଛି, ବିଦ୍ୟା ଅଛି, ଧନ ଅଛି, ଜ୍ଞାନ ଅଛି, ସେମାନେ ଗ୍ରାମ ଛାଡ଼ି ସହରକୁ ଗଲୁ ! ସମସ୍ତେ ଯୋଗୀ ହେଲେ ଭିକ ଦେବ କିଏ ? ଫଳତଃ ନିର୍ବୁଦ୍ଧିଆ, ମୂର୍ଖ, ନିର୍ଦ୍ଧନ, ଅଜ୍ଞାନୀଯାକଙ୍କ ଉପରେ କୃଷି କରିବାର ଭାର ପଡ଼ିଅଛି । ସେଥିର ଅନିବାର୍ଯ୍ୟ ଫଳ ଏହିତା ହେଉଅଛି ଯେ, ଆମ ଦେଶରେ କୃଷିର ଉନ୍ନତି ହେଉ ନାହିଁ ଓ ଦିନକୁ ଦିନ କୃଷକ ଶ୍ରେଣୀଙ୍କ ଅବସ୍ଥା ଅତି ଶୋଚନୀୟ ହୋଇ ଉଠୁଅଛି - ସେମାନଙ୍କ କ୍ଷେତର ଆୟରୁ ଲାଭ ହେବା କଥା ଦୂରେ ଥାଉ, ସେମାନଙ୍କ ନିଜର ପେଟ ପୋଷିହେବା ଅସମ୍ଭବ ହୋଇ ପଡୁଅଛି ଓ ସେମାନେ ଦାରିଦ୍ର୍ୟ ଓ ଋଣରେ ଅହରହ ପ୍ରପୀଡ଼ିତ । ଯେଉଁମାନଙ୍କର ପାଞ୍ଚ ବାଟି ଦଶ ବାଟି ଚାଷ ଅଛି, ସେମାନେ ମଧ ମୂର୍ଖ ହଳିଆ, ମୂଲିଆଙ୍କ ଉପରେ କୃଷିର ଭାର ଛାଡ଼ିଦେଇ ସହରରେ ରହିଅଛନ୍ତି । ତାଙ୍କୁ ଯେତିକି ମିଳିଲା ସେତିକିରେ 'ଯଥାଲାଭ' । ଏପରି ସ୍ଥଳରେ ତାଙ୍କର ମଧ ବ୍ୟୟକୁ ଚାହିଁ କୃଷିରୁ ଆୟ ହେଉ ନାହିଁ । କୃଷକ ଉପରେ ଓ କୃଷିର ମଙ୍ଗଳ ଉପରେ ଦେଶର ଅନ୍ନସଂସ୍ଥାନ ନିର୍ଭର କରୁଅଛି - କୃଷକ ଟାଣୁଆ ନ ହେବା ପର୍ଯ୍ୟନ୍ତ ଓ କୃଷି ଗୋଟିଏ ଲାଭଜନକ ଅବଲମ୍ବନ ନ ହେବା ପର୍ଯ୍ୟନ୍ତ ଦେଶ ପ୍ରକୃତ ପକ୍ଷରେ ସୁସ୍ଥ ହେବ ନାହିଁ ।

ବିଶେଷତଃ, ଭାରତବର୍ଷ କୃଷିପ୍ରଧାନ ଦେଶ । ଶତକଡ଼ା ୯୦ ଜଣ କୃଷି ଉପରେ ନିର୍ଭର କରନ୍ତି । ଏପରି ସ୍ଥଳରେ କୃଷିର ଉନ୍ନତି କରିବାର ଉପାୟମାନ ଅବଲମ୍ବିତ ନ ହେବା ପର୍ଯ୍ୟନ୍ତ ଆମ୍ଭମାନଙ୍କ ଦେଶକୁ ଦାରିଦ୍ର୍ୟ ଘୋଟି ରହିଥିବ । ଯେତେବେଳେ ଦେଶର ବିଦ୍ୱାନ୍, ଧନୀ ଓ ଜ୍ଞାନୀ ଲୋକମାନେ କୃଷି ଆଡ଼କୁ ଆଖି ଦେବେ ଓ କୃଷିର ଉନ୍ନତି କରିବେ, ସେତେବେଳେ କୃଷି ଗୋଟିଏ ଲାଭଜନକ ଅବଲମ୍ବନ ହୋଇ ଉଠିବ; ମଧବିତ୍ତ ଓ ଗରିବ କୃଷକମାନେ ସେହି ପ୍ରଣାଳୀ ଅବଲମ୍ବନ କରି ସ୍ୱଚ୍ଛନ୍ଦରେ ଜୀବିକା ନିର୍ବାହ

କରିପାରିବେ । ଏସବୁ ଗଭର୍ଣ୍ଣମେଣ୍ଟ କୃଷିର ଅତ୍ୟାବଶ୍ୟକତା ଉପଲବ୍ଧି କରି ସ୍ଥାନେ ସ୍ଥାନେ ଆଦର୍ଶ କୃଷିକ୍ଷେତ୍ରମାନ ସ୍ଥାପନ କରି ସେଥିରେ ଉନ୍ନତ ଓ ଲାଭଜନକ କୃଷିପ୍ରକ୍ରିୟାମାନ ପରୀକ୍ଷା ଓ ପ୍ରବର୍ତ୍ତନ କରି ସାଧାରଣ କୃଷକକୁ ସେହି ବାଟ ଦେଖାଇବା ପାଇଁ ଚେଷ୍ଟା କରୁଅଛନ୍ତି । କିନ୍ତୁ ଯେତେବେଳଯାଏ ଦେଶର ଶିକ୍ଷିତ, ପଦସ୍ଥ ଓ ବିଭବଶାଳୀ ଲୋକମାନେ ସେ ଆଡ଼କୁ ମନ ଦେଇ ନାହାନ୍ତି, ସେତେବେଳ ପର୍ଯ୍ୟନ୍ତ ସାଧାରଣ କୃଷକ ଆଦର୍ଶ କୃଷିକ୍ଷେତ୍ରର ମାହାତ୍ମ୍ୟ ଉପଲବ୍ଧି କରି କୃଷି କ୍ଷେତ୍ରର ଉଦାହରଣରୁ ପ୍ରାପ୍ତ ଶିକ୍ଷାକୁ କାର୍ଯ୍ୟରେ ପରିଣତ କରିପାରିବ ନାହିଁ । ବର୍ତ୍ତମାନ ଦେଖାଯାଏ ଯେ, ଭଦ୍ରଲୋକ ଚାଷଧନ୍ଦାରେ ଓ ବିଲବାଡ଼ିରେ ଲାଗିବାର ଦେଖାଗଲେ ତାଙ୍କୁ ଲୋକେ କହନ୍ତି, ''ଆପଣ ଏଡ଼େ ଲୋକ ହୋଇ ଏ ଛୋଟ କାମରେ ଲାଗୁଛ !'' କିନ୍ତୁ ଯେତେବେଳେ କୃଷି କାମରେ ଲାଗିବା ଆଉ ଛୋଟ-କାମ, ହେୟ କାର୍ଯ୍ୟରେ ସୁମାରି ହେବ ନାହିଁ, ସେତେବେଳେ ଯାଇ କୃଷିର ଉନ୍ନତି ହେବ । ଇଂଲଣ୍ଡ, ଜର୍ମାନ, ଆମେରିକାରେ ବଡ଼ ବଡ଼ ଲୋକମାନେ କୃଷିକୁ ଗୋଟିଏ ଲାଭଜନକ ବ୍ୟବସାୟରେ ପରିଣତ କରିଅଛନ୍ତି । କିନ୍ତୁ ଆମ ଦେଶରେ ସେଇଟା ସବୁଠାରୁ ନିଉଁଛୁଣା ଜୀବିକା ହୋଇଅଛି । କୃଷକର ବର୍ତ୍ତମାନ ପରିଲକ୍ଷିତ ଶୋଚନୀୟ ଅବସ୍ଥା ଆମ ଦେଶର ଗୋଟିଏ ପ୍ରହେଳିକାମୟ ସମସ୍ୟା ହୋଇ ଉଠିଅଛି । ସେ ସମସ୍ୟାର ସମାଧାନ ନ ହେବା ପର୍ଯ୍ୟନ୍ତ ଆମ୍ଭମାନଙ୍କୁ ପରମୁଖାପେକ୍ଷୀ ହୋଇ ରହିବାକୁ ହେବ । ସାଧାରଣ କୃଷକର ଯଥେଷ୍ଟ ଭୂମି ନାହିଁ, ଯଥେଷ୍ଟ ମୂଳଧନ ନାହିଁ, ଯଥେଷ୍ଟ ବୁଦ୍ଧି ନାହିଁ, ଯଥେଷ୍ଟ ବଳ ନାହିଁ, ଯଥେଷ୍ଟ ବିଦ୍ୟା ନାହିଁ । ଏଗୁଡ଼ିକ ପୂରଣ କରିବା ନିମନ୍ତେ କେତେଗୁଡ଼ିଏ ଅନୁଷ୍ଠାନ ଦରକାର । ଗଭର୍ଣ୍ଣମେଣ୍ଟ ସେ ଆଡ଼କୁ ଦୃଷ୍ଟି ପକାଇଅଛନ୍ତି ସତ୍ୟ; ଦେଶରେ ପ୍ରାଥମିକ ଶିକ୍ଷା ବିସ୍ତାର, ଆଦର୍ଶ କୃଷିକ୍ଷେତ୍ର ସ୍ଥାପନ, ସମବାୟ ଋଣସମିତି ସ୍ଥାପନ, ଜମିଦାର ଓ ମହାଜନଙ୍କ ଦାଉରୁ କୃଷକକୁ ରକ୍ଷା କରିବା ପାଇଁ ବ୍ୟବସ୍ଥା ପ୍ରବର୍ତ୍ତନ, ଏହିପରି କେତେଗୁଡ଼ିଏ ଅନୁଷ୍ଠାନର ସୂଚନା ହୋଇଅଛି ମାତ୍ର । କିନ୍ତୁ ଏସବୁ ସିଦ୍ଧ ହେବା ନିମନ୍ତେ ଦେଶର ମୁଖିଆମାନେ ଅଣ୍ଟା ନ ଭିଡ଼ିଲେ ଓ ନିଜେ ଉଦାହରଣ ଓ ଉଦ୍ୟମ ଦ୍ୱାରା ବାଟ ନ ଦେଖାଇଲେ କୃଷକମାନେ ''ଆଜି ଯେ ତିମିରେ, କାଲି ସେ ତିମିରେ !''

ଏଥିପାଇଁ ମୁଁ କହୁଥିଲି ଯେ, ସମସ୍ତେ ଗ୍ରାମ ଛାଡ଼ି, ଦେଶ ଛାଡ଼ି କେବଳ ଚାକିରି ଓ ରୋଜଗାର ଉପରେ ନିର୍ଭର କଲେ ହେବ ନାହିଁ । ନିଜ ଦେଶରେ, ନିଜ ଗ୍ରାମରେ ରହି କୃଷକମାନଙ୍କୁ ହେୟ ଅପଦାର୍ଥ ବୋଲି ଜ୍ଞାନ ନ କରି, କୃଷିକୁ ଜୀବିକା ନିର୍ବାହରେ ଗୋଟିଏ ନଗଣ୍ୟ ଉପାୟ ବୋଲି ମନେ ନ କରି, ଯେଉଁମାନଙ୍କର ଭୂମି ଅଛି, ଶକ୍ତି ଅଛି, ବିଦ୍ୟା ଅଛି, ବୁଦ୍ଧି ଅଛି, ଧନ ଅଛି, ସେମାନେ କୃଷିର ଓ କୃଷକର ଉନ୍ନତି ପ୍ରତି ମନ ଦିଅନ୍ତୁ । ଏଥି ନିମନ୍ତେ କିଛି ସ୍ୱାର୍ଥତ୍ୟାଗ କରିବାକୁ ହେବ ନାହିଁ । ବିଦ୍ୱାନ୍‌ମାନେ କୃଷି ଆଡ଼କୁ ମନ ଦେଲେ କୃଷିର ଉନ୍ନତ ଉପାୟ ଅବଲମ୍ବନ ଦ୍ୱାରା କୃଷିର ଲଭ୍ୟ ତାଙ୍କ ପ୍ରତି ମଧ୍ୟ ଆୟଜନକ ଓ ଲାଭଜନକ ହେବ ବୋଲି ମୋର ଧାରଣା । ସଙ୍ଗେ ସଙ୍ଗେ ତାଙ୍କ ପ୍ରବର୍ତ୍ତିତ ଉପାୟମାନ

ସାଧାରଣ କୃଷକ ଅବଲମ୍ବନ କରି, ତାଙ୍କ ଉଦାହରଣକୁ ଅନୁକରଣ କରି ସାଧାରଣ କୃଷକର ଅବସ୍ଥା ମଧ୍ୟ ପରିବର୍ତ୍ତିତ ହେବ । ଏତଦ୍ଦ୍ୱାରା ଦେଶର ବୈଷୟିକ ଉନ୍ନତି ଅବଶ୍ୟମ୍ଭାବୀ । ଏଥିପାଇଁ ମୋର ଧାରଣା ହୋଇଅଛି ଯେ, ବର୍ତ୍ତମାନ ପଲ୍ଲୀରୁ ସହରଆଡ଼କୁ ଯେଉଁ ସ୍ରୋତ ଉଜାଣି ବହୁଅଛି, ତାହା ଫେରାଇ ପଲ୍ଲୀର କରାମତ ଜାହେର କରିବା ପ୍ରତି ପ୍ରତ୍ୟେକ ଶିକ୍ଷିତ ଓ ପଦସ୍ଥ ବ୍ୟକ୍ତିଙ୍କର ଦୃଷ୍ଟି ପଡ଼ିବା ଅତ୍ୟନ୍ତ ଆବଶ୍ୟକ ହୋଇ ଉଠିଅଛି । ପଲ୍ଲୀ ଆମ୍ଭମାନଙ୍କ ଅବସରବାସର (holiday) ସମୟର କ୍ରୀଡ଼ାଭୂମି (Recreation ground) ନ ହୋଇ ଆଠକାଳି-ବାରମାସି କାର୍ଯ୍ୟକ୍ଷେତ୍ର ରୂପେ ପରିବର୍ତ୍ତିତ ହେଉ ।

ପଲ୍ଲୀଗ୍ରାମରେ ଶିକ୍ଷିତମାନଙ୍କ ପାଇଁ ଯଥେଷ୍ଟ କାର୍ଯ୍ୟକ୍ଷେତ୍ର ଉନ୍ମୁକ୍ତ ରହିଅଛି । ଦେଖାଯାଉଅଛି ଯେ, ଅନ୍ୟାନ୍ୟ କ୍ଷେତ୍ରରେ ଆଗ କରି ବିଦେଶୀମାନେ ଆସି ଆମ ଦେଶରେ ଲାଭଜନକ ଉପାୟ ଓ ବ୍ୟବସାୟମାନ ଅବଲମ୍ବନ କରି ଆମ ଦେଶରୁ ସର ଲବଣିତକ ଛାଣି ନେଲା ପରେ ଆମ ଦିହରେ ଚେତା ପଶୁଅଛି ଓ ଆମେ ସେ ଉପାୟ ଧରୁଅଛୁ, କିନ୍ତୁ ଆମେ କର୍ମକ୍ଷେତ୍ରରେ ଉପସ୍ଥିତ ହେଲା ବେଳକୁ, ଉକ୍ତ ଲାଭଜନକ ବ୍ୟବସାୟରେ ପଶିଲା ବେଳକୁ 'ଘର ବୁଡ଼ି ପାଣି ଆଣ୍ଠୁଏ ହେଲାଣି । ଏ କ୍ଷେତ୍ରରେ ମଧ୍ୟ ଯେତିକି କରିବା ପାଇଁ ବାକି ଅଛି, ସେତକ ଶେଷକୁ ଯେପରି ଆମ ହାତରୁ ନ ଖସୁ । ନଚେତ୍ ଆମେ 'ପାଗ ବାନ୍ଧୁ ବାନ୍ଧୁ କଚେରି ବରଖାସ୍ତ !' ଆମ ଦେଶର ବାଣିଜ୍ୟ ଆମ ହାତରୁ ଯାଇଅଛି, ଲାଭଜନକ ବ୍ୟବସାୟ ଯାଇଅଛି, ଜମିଦାରି ଯାଇଅଛି, ଚାକିରି ଯାଇଅଛି, ଅଛି କେବଳ ବାକି ସେତିକି - ଭିଟାମାଟି । ସେତକ ଚାଲିଗଲେ ଆମେ ଚିରକାଳ କାଙ୍ଗାଳ ହୋଇ ପଡ଼ିଥିବା । ଆମରି ଧନରେ ଅନ୍ୟ ଲୋକମାନେ ବିଭବ କରିବେ, ଆମେ ବଲବଲ କରି ଅନାଇଥିବା । ଏତିକି ଥାଉ ।

ଉ.ସା. - ୨୨ଶ ଭାଗ / ୧୦ମ ସଂଖ୍ୟା / ମାଘ / ୧୩୨୬ ସାଲ ।

## ।। ବାଇଶ ।।

ବର୍ତ୍ତମାନ ସମଗ୍ର ଜଗତ୍‌ରେ ଭବିଷ୍ୟତ୍‌ରେ ଅବିଚ୍ଛିନ୍ନ ଶାନ୍ତି ବିରାଜମାନ କରିବ ବୋଲି ମିତ୍ରଶକ୍ତିଯାକ ଫ୍ରାନ୍ସର ରାଜଧାନୀ ପ୍ୟାରିସ୍ ନଗରୀରେ ଶାନ୍ତି-ସମ୍ମିଳନୀର (Peace Conference) ବୈଠକ ଆରମ୍ଭ କରିଅଛନ୍ତି - ସେଥିରେ ଆମେରିକା ଯୁକ୍ତରାଜ୍ୟର ପ୍ରେସିଡେଣ୍ଟ ଉଇଲସନ୍ ପ୍ରଥମ ଆହୂତି ଦେଇ ଶାନ୍ତିଦେବୀଙ୍କୁ ଆବାହନ କରିଅଛନ୍ତି । ତାଙ୍କ ବକ୍ତୃତାରେ ଯେଉଁ ସାର୍ବଜନୀନ ମୈତ୍ରୀବ୍ରତ ଉଦ୍‌ଘୋଷିତ ହୋଇଅଛି, ତାହା ଜଗତ୍‌ର ପ୍ରତ୍ୟେକ ସଭ୍ୟଜାତିର ଅବଲମ୍ବନୀୟ । ସମଗ୍ର ଜଗତ୍‌ର ଶକ୍ତିମାନଙ୍କୁ ଅନୁମୋଦିତ ଅନ୍ତର୍ଜାତୀୟ ବିଧାନମାନଙ୍କ ଦ୍ୱାରା ନିୟନ୍ତ୍ରିତ କରିବା ଉଦ୍ଦେଶ୍ୟରେ ଯେଉଁ League of

Nations (ଅନ୍ତର୍ଜାତୀୟ ସଂଘ) ପ୍ରତିଷ୍ଠା ହେବାର ପ୍ରସ୍ତାବ ଚାଲିଅଛି, ସେହି ପ୍ରସ୍ତାବକୁ ଶାନ୍ତି ସମ୍ମିଳନୀରେ ଉପସ୍ଥାପିତ କରିବା ଉପଲକ୍ଷରେ ପ୍ରେସିଡେଣ୍ଟ ଉଇଲସନ୍ ଯେଉଁ ଉଦାର ନୀତିମାନଙ୍କର ସାମାନ୍ୟ କଥନମାନ ଘୋଷଣା କରିଅଛନ୍ତି, ତାହା କାର୍ଯ୍ୟରେ ପରିଣତ ହୋଇପାରିଲେ ଜଗତ୍‌ରେ ଅଚିରେ ଚିର ଶାନ୍ତି ବିରାଜିତ ହେବ, ଏଥିରେ ସନ୍ଦେହ ନାହିଁ । ପ୍ରତି ଦେଶର ଓ ପ୍ରତ୍ୟେକ ଜାତିର ଶାସନ ପ୍ରଣାଳୀ ତଉଦ୍ ଜାତିର ବ୍ୟକ୍ତିମାନଙ୍କ ମତ ଅନୁସାରେ ଗଠିତ ହେବ; ଯେଉଁମାନଙ୍କଠାରେ ଶାସନଭାର ନ୍ୟସ୍ତ, ସେମାନେ ଶାସିତ-ମଣ୍ଡଳୀର ପରିଚାରକସ୍ୱରୂପ ଆପଣାକୁ ବିବେଚନା କରିବେ; ଦୁର୍ବଳ ଓ କ୍ଷୁଦ୍ର ଜାତିମାନ ପ୍ରବଳ ଓ ପରାକ୍ରାନ୍ତ ଜାତିମାନଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ଓ ଲୁପ୍ତ ହେବେ ନାହିଁ; ଏହି ଅନ୍ତର୍ଜାତୀୟ ସଂଘ ଯେଉଁ ବିଧିମାନ ପ୍ରଣୟନ କରିବେ, ତାହା ସମସ୍ତ ଜାତି ପାଳନ କରିବାକୁ ବାଧ ହେବେ; ତାହା ପାଳିତ ନ ହେଲେ ଲଙ୍ଘନକାରୀ ପ୍ରତି ଦଣ୍ଡ ଦେବାର ଉପାୟ, କ୍ଷମତା ଓ ଉପକରଣ ସେହି ସଂଘଠାରେ ଅର୍ପିତ ହେବ; ଉକ୍ତ ସଂଘରେ ବିଭିନ୍ନ ଜାତିର (Nations) ପ୍ରତିନିଧିମାନେ ସଭ୍ୟଶ୍ରେଣୀଭୁକ୍ତ ହେବେ; ଅନ୍ତର୍ଜାତୀୟ (International) ବିବାଦମାନ ଏହି ସଂଘ (League) ମୀମାଂସା କରିବେ ଓ ସଂଘଙ୍କର ଫଏସଲାକୁ ସମଗ୍ର ଜଗଦ୍ ନତମସ୍ତକରେ ଗ୍ରହଣ କରିବେ । ଏ ସାମାନ୍ୟକଥନ ଓ ପ୍ରସ୍ତାବମାନ କେବେ କାର୍ଯ୍ୟରେ ପରିଣତ ହେବ, ତାହା ସେହି ବିଶ୍ୱନିୟନ୍ତା ଭଗବାନ୍‌ଙ୍କୁ ଜଣା; କିନ୍ତୁ ଏଗୁଡ଼ିକ କାର୍ଯ୍ୟରେ ପରିଣତ ହେଲେ ସମଗ୍ର ଜଗଦ୍ ଶାନ୍ତ ହେବ; ପ୍ରବଳ ପରାକ୍ରାନ୍ତ ଜାତିର ପରରାଜ୍ୟାଧିକାର ଆକାଙ୍‌କ୍ଷା ଆଗରେ ଦୁର୍ବଳ ଜାତି ଆପଣାକୁ ବଳି ଦେବ ନାହିଁ । ଭଗବାନ୍ ଏ ଦିନ ଆଣିଲେ ପୃଥିବୀରୁ ଯୁଦ୍ଧରୂପ 'କାଳ' ଚିରକାଳ ପାଇଁ ବିଦାୟ ଗ୍ରହଣ କରିବ ।

ବିଗତ ଯୁଦ୍ଧରେ ଭାରତବର୍ଷ ଇଂରେଜ-ସାମ୍ରାଜ୍ୟ ପ୍ରତି ଐକାନ୍ତିକ ମମତା ଦେଖାଇ ଯୁଦ୍ଧକ୍ଷେତ୍ରରେ ଧନ ଜନ ମନ ପ୍ରାଣ ଢାଳିଦେବାକୁ କୁଣ୍ଠିତ ହୋଇ ନାହିଁ । ଏହି ସ୍ୱାର୍ଥତ୍ୟାଗର ଫଳସ୍ୱରୂପ ଭାରତବର୍ଷ ଆଜି ସଭ୍ୟ ଜାତିମାନଙ୍କ ସଙ୍ଗେ ଗୋଟିଏ ଆସନ ପାଇପାରିଅଛି । ଆଜିପର୍ଯ୍ୟନ୍ତ ପାଶ୍ଚାତ୍ୟ ସଭ୍ୟଜଗତ୍‌ରେ ଯେତେଗୁଡ଼ିଏ Peace Conference ର (ଶାନ୍ତି-ସମ୍ମିଳନୀ) ବୈଠକମାନ ହୋଇଥିଲା, ଭାରତ ବିଜିତ ଜାତି ରୂପେ ପରିଗଣିତ ହୋଇ ସେଥିରେ ପ୍ରବେଶାଧିକାର ପାଇ ନ ଥିଲା । କିନ୍ତୁ ଆଜି ଉଦାର ବ୍ରିଟିଶ ଜାତି ଭାରତକୁ ସ୍ୱାୟତ୍ତ ଶାସନ ଦେବା ଲାଗି ପ୍ରତିଶ୍ରୁତି ଦେଇଅଛନ୍ତି ଓ ଭାରତବାସୀଙ୍କୁ ରାଜକୀୟ ସମାନ ଅଧିକାର ପ୍ରଦାନ କରିବାକୁ କୁଣ୍ଠିତ ହେଉ ନାହାନ୍ତି । Peace Conference ରେ (ଶାନ୍ତି-ସମ୍ମିଳନୀ) ଭାରତୀୟ ପ୍ରତିନିଧିମାନଙ୍କୁ ଆଜି ଯେଉଁ ଆସନ ମିଳିଲା, ଭାରତବାସୀ ତଦ୍‌ଯୋଗ୍ୟ ବୋଲି ସଭ୍ୟଜଗତକୁ ଦେଖାଇପାରିଲେ ଭାରତର ଦୁର୍ଦ୍ଦଶା ରହିବ ନାହିଁ । ବ୍ରିଟିଶ ଜାତିର ଏହି ଉଦାର ନୀତି ଆଜି ତାକୁ ସମଗ୍ର ସଭ୍ୟଜଗତ୍‌ରେ ପୂଜ୍ୟ ଓ ସମ୍ମାନାର୍ହ କରିଅଛି । ଜନୈକ ଭାରତୀୟଙ୍କୁ 'Lord' (ଲର୍ଡ଼) ଉପାଧି ଦେଇ

ଇଂଲଣ୍ଡରେ ପ୍ରତିଷ୍ଠିତ ଭାରତ-ଶାସକ-ସମିତିର (India Council) ସହକାରୀ ସମ୍ପାଦକ (Under Secretary of State for India) ରୂପେ ବରଣ କରି ଉଦାର ଇଂରେଜ ଜାତି ସମଗ୍ର ଜଗତକୁ ଦେଖାଇଅଛନ୍ତି ଯେ, ଭାରତବର୍ଷକୁ ଉଚ୍ଚ ଆସନ ଦେବାର ପ୍ରସ୍ତାବ କେବଳ ମାତ୍ର 'ପୋଥିପାଠ' ନୁହେ । ଯେଉଁ Lord ଉପାଧି ବ୍ରିଟିଶମାନଙ୍କର ଏକଚେଟିଆ ଥିଲା, ଯେଉଁ House of Lords ରେ ବ୍ରିଟିଶଜାତୀୟ କୁଳୀନ ବ୍ୟକ୍ତିମାନଙ୍କର ପ୍ରବେଶାଧିକାର ଥିଲା, ସେଥିରେ ଆଜି ବ୍ରିଟିଶ ଜାତି ଜଣେ ଭାରତୀୟଙ୍କୁ ସ୍ୱେଚ୍ଛାରେ ବରଣ କରିଅଛନ୍ତି ଓ ସମାନ ଅଧିକାର ପ୍ରଦାନ କରିଅଛନ୍ତି, ଭାରତ ପକ୍ଷରେ ଏହାଠାରୁ ବଳି ଗୌରବର ବିଷୟ କଣ ହୋଇପାରେ ? ସମ୍ରାଟ୍ ପଞ୍ଚମ ଜର୍ଜ ପାର୍ଲିଆମେଣ୍ଟ ମହାସଭା ଉଦ୍‌ଘାଟନ କରିବା ଉପଲକ୍ଷରେ ଯେଉଁ ଅବତାରଣା କରି ବକ୍ତୃତା କରିଅଛନ୍ତି, ସେଥିରେ ଭାରତ ପ୍ରତି ଯେଉଁ ସ୍ନେହ ଓ ଆଶାର ବାଣୀ ଶୁଣାଇଅଛନ୍ତି, ତାହା ଶୁଣି କେଉଁ ଭାରତବାସୀର ହୃଦୟ ଆନନ୍ଦ ଓ ଆଶାରେ ନାଚି ଉଠି ନାହିଁ ? ବିଲାତର ଷ୍ଟେଟ ସେକ୍ରେଟାରୀ ଓ ଭାରତର ବଡ଼ଲାଟ, ଭାରତର ଶାସନ ସଂସ୍କାର ସମ୍ବନ୍ଧରେ ଯେଉଁ ପ୍ରସ୍ତାବମାନ (Indian Reforms Scheme) ଖସଡ଼ା କରିଅଛନ୍ତି, ସେ ସମ୍ବନ୍ଧରେ ବର୍ତ୍ତମାନ ପାର୍ଲିଆମେଣ୍ଟ ନିଯୁକ୍ତ କମିଟିମାନ ସରଜମିନ ତଦନ୍ତ ଓ ଅନୁସନ୍ଧାନ କରୁଅଛନ୍ତି ଓ ସେମାନେ ରିପୋର୍ଟ କରିବା ମାତ୍ରକେ ତାଙ୍କ ରିପୋର୍ଟ ପାର୍ଲିଆମେଣ୍ଟରେ ଉପସ୍ଥାପିତ ହୋଇ ଶୀଘ୍ର ଭାରତୀୟ ଶାସନ-ସଂସ୍କାର ବିଧିମାନ ପାର୍ଲିଆମେଣ୍ଟର ଚଳିତ ବୈଠକରେ ପାସ୍ କରିବେ ବୋଲି ସମ୍ରାଟ୍ ଘୋଷଣା କରିଅଛନ୍ତି ।

ଏ ସବୁ ଆଶାର ଚିହ୍ନ ମଧ୍ୟରେ ଖଣ୍ଡେ ଖଣ୍ଡେ କଳା ମେଘ ଉଇଁବାର ଦେଖା ଯାଉଅଛି । ଭଗବାନ୍ କରନ୍ତୁ, ସେ ମେଘଖଣ୍ଡମାନ ଫସର ଫାଟିଯାଉ ଓ ସମଗ୍ର ସଭ୍ୟଜଗତ୍‌ରେ ଅବିଚ୍ଛିନ୍ନ ଶାନ୍ତି ପ୍ରତିଷ୍ଠିତ ହେଉ । ଏହିସବୁ ଖଣ୍ଡ-ବାଦଲ ମଧ୍ୟରେ ଆୟର୍ଲାଣ୍ଡର ବିଦ୍ରୋହ, ଚୀନ-ଜାପାନ ବିବାଦ, ଆଫ୍ରିକା ଯୁକ୍ତରାଜ୍ୟରେ କେତେଜଣ ଉଦ୍ୟମୀ ବ୍ୟକ୍ତିଙ୍କର ବ୍ରିଟିଶ ସାମ୍ରାଜ୍ୟରୁ ସମ୍ପର୍କ ଛିନ୍ନ କରିବାର କଳ୍ପନା, ଭାରତରେ ରାଜଦ୍ରୋହ ଆଇନକୁ (Sedition Law) ଚିରସ୍ଥାୟୀ ରୂପେ ବିଧିବଦ୍ଧ କରିବାର ପ୍ରୟୋଜନୀୟତା, ଜର୍ମାନ୍ ସେନାପତି ହଣ୍ଡେନବର୍ଗଙ୍କ ଦ୍ୱାରା ବହୁ ଲକ୍ଷ ସେନା ସଂଗ୍ରହର ସମ୍ବାଦ ଉଲ୍ଲେଖଯୋଗ୍ୟ ଅଟେ । ବର୍ତ୍ତମାନ ମିତ୍ରଶକ୍ତିମାନଙ୍କ ମଧ୍ୟରେ ଯେଉଁ ବିଜ୍ଞ ପଣ୍ଡିତମାନେ ଅଛନ୍ତି, ସେମାନେ League of Nations ର ମୂଳଭିତ୍ତି ପ୍ରତିଷ୍ଠା କରିବାକୁ ଦୃଢ଼ସଂକଳ୍ପ ହୋଇଅଛନ୍ତି । ସେହି ମୂଳଦୁଆଟି ଠିକଣା ହୋଇଗଲେ ପୃଥିବୀର ସମସ୍ତ ରାକ୍ଷସୀ ଶକ୍ତି, ସମସ୍ତ ଜିଘାଂଷା, ଜଘଂସା, ରାଜ୍ୟ-ଲିପ୍‌ସା, ପରରାଜ୍ୟ ଅଧିକାର କରିବାର ଦୁରାକାଙ୍‌କ୍ଷା ସମୂଳରେ ଉତ୍ପାଟିତ ହେବ ।

ସଭ୍ୟଜଗତ୍‌ର ଏହି ହାଲଚାଲ ସଙ୍ଗେ ଆମ ଘରର ହାଲଚାଲ ଦୃଢ଼ ଭାବରେ ସଂବଦ୍ଧ । ଇଉରୋପଖଣ୍ଡରେ ମହାସମର ହୋଇଥିଲେ ମଧ ତହିଁର ଫଳ ଆମ ସମସ୍ତଙ୍କୁ

ଭୋଗ କରିବାକୁ ପଡ଼ିଅଛି; ସେହିପରି ବର୍ତ୍ତମାନ ଯେଉଁ ଅନ୍ତର୍ଜାତୀୟ ସଂଘ ପ୍ରତିଷ୍ଠିତ ହେବାର ସୂତ୍ରପାତ ହେଉଅଛି, ତହିଁର ଅମୃତମୟ ଫଳ ଓ ଉପକାର ଆମେ ସମସ୍ତେ ଘରେ ଘରେ ପାଇବା ।

ଆମ୍ଭେମାନେ ବର୍ତ୍ତମାନ ଦେଖିପାରୁଥାଉଁ ଯେ, ସବୁ କାର୍ଯ୍ୟରେ ଭଗବାନ୍‌ଙ୍କର ଗୂଢ଼ ବିଶ୍ୱଜନୀନ ଉଦ୍ଦେଶ୍ୟ ନିହିତ ଅଛି - ପାଶ୍ଚାତ୍ୟ ସଭ୍ୟଜାତିମାନେ ଆପଣାକୁ ଜ୍ଞାନୀ, ସଭ୍ୟ, ଶିକ୍ଷିତ, ବିଜ୍ଞାନୀ ବୋଲି ଗର୍ବରେ ସ୍ଫୀତ ହେଉଥିଲେ ଓ ଅନ୍ୟାନ୍ୟ ଜାତିମାନଙ୍କୁ ବର୍ବର, ଅଜ୍ଞ ଓ ଅନ୍ଧ ବୋଲି ଆସ୍ଫାଳନ କରୁଥିଲେ । ଆଜି ଜର୍ମାନୀର ରାକ୍ଷସୀ ମାୟାରୁ ଯେଉଁ ଯୁଦ୍ଧ-ବହ୍ନି ସମଗ୍ର ପୃଥିବୀରେ ଯୁଗପତ୍ ଜଳିଉଠିଲା, ସେଥିରୁ ଦେଖାଗଲା ଯେ, ପାଶ୍ଚାତ୍ୟ ସଭ୍ୟତାର ଆବରଣ ମଧ୍ୟରେ ନିଷ୍ଠୁରତା, ବର୍ବରତା, ଲୋଭ, ଅବିଚାର ପୂର୍ଣ୍ଣ ମାତ୍ରାରେ ରହିଅଛି; ଏହା ଉପଲବ୍ଧି କରି ପାଶ୍ଚାତ୍ୟ ଜାତିମାନେ ନିଜ ନିଜ ଘର ସାଫି କରିବାକୁ ଚେଷ୍ଟା କରୁଅଛନ୍ତି । ଆଜି ସମଗ୍ର ଜଗତ୍‌ରେ ଯେଉଁ ଶାନ୍ତି-ହୋମର ଆୟୋଜନ ଲାଗିଅଛି, ତାହା ଏହି ନର-ପିଶାଚ-ଯୁଦ୍ଧର ଗୋଟିଏ ଅମୃତମୟ ଫଳ ଅଟେ ଓ ଏହା କାର୍ଯ୍ୟରେ ପରିଣତ ହେଲେ ଆଜି ମହାଯୁଦ୍ଧରେ ଯେଉଁ ଲକ୍ଷ ଲକ୍ଷ ମହାଜୀବ ବଳି ପାଇଅଛନ୍ତି, ସେହି ଯାଗର ସୁଫଳ ସମଗ୍ର ଜଗଦ୍ ଅଚିରେ ଭୋଗ କରିବ । ଆଧୁନିକ ସଭ୍ୟତା ଓ ବୈଷୟିକ ଉନ୍ନତି ଆମ୍ଭମାନଙ୍କୁ ଓ ବିଶେଷତଃ ଭାରତବାସୀଙ୍କୁ ପରମୁଖାପେକ୍ଷୀ ହେବାକୁ ଶିଖାଉଥିଲା - ଆମ୍ଭେମାନେ, ଆମ୍ଭମାନଙ୍କ ଦେଶର ପ୍ରଚ୍ଛନ୍ନ ଧନମାନଙ୍କର ସଦ୍‌ବ୍ୟବହାର କରିବାକୁ ଭୁଲି ଯାଉଥିଲୁଁ ଓ ବିଦେଶାଗତ ବସ୍ତୁମାନଙ୍କ ଦ୍ୱାରା ଆମ୍ଭମାନଙ୍କ ଅଭାବ ପୂରଣ କରିବାକୁ ଶିଖୁଥିଲୁଁ - ଏହି ସମୟରେ ଏ ମହାଯୁଦ୍ଧ ପୃଥିବୀକୁ ଘୋଟିଯିବାରୁ ବିଦେଶରୁ ମାଲମାନ ଆସିବା ଅସମ୍ଭବ ହୋଇଉଠିଲା ଓ ପୂର୍ବେ ଆମ୍ଭେମାନେ ବିଦେଶରୁ ଯେଉଁ ଯେଉଁ ଛାପଚିକିଣିଆ ସୌଖୀନ ଓ ପ୍ରୟୋଜନୀୟ ଦ୍ରବ୍ୟମାନ ପାଉଥିଲୁଁ, ତାହାର ଆମଦାନୀ ଏକପ୍ରକାର ବନ୍ଦ ହୋଇଗଲା । ସମସ୍ତ ଜିନିଷ୍ ମହର୍ଗ ହେଲା ଓ ସମସ୍ତେ ଅଭାବ ଅସୁବିଧା ଅନୁଭବ କଲେ । ବିଦେଶରୁ ଆନୀତ ପଦାର୍ଥମାନଙ୍କ ଦ୍ୱାରା ଏ ଅଭାବମାନ ଦୂର ହେବାର ସମ୍ଭାବନା କମିଯିବାରୁ ଉକ୍ତ ଅଭାବମାନ ଦେଶୀୟ ଦ୍ରବ୍ୟମାନଙ୍କ ଦ୍ୱାରା ଦୂର କରିବା ନିମନ୍ତେ ସମସ୍ତେ ଜାଗ୍ରତ ହୋଇଅଛନ୍ତି - ଦେଶରେ କୃଷି ପ୍ରତି, ଶିଳ୍ପ ପ୍ରତି, ଦେଶୀୟ ବ୍ୟବସାୟ ପ୍ରତି, ଦେଶୀୟ ପ୍ରଚ୍ଛନ୍ନ ଶକ୍ତିମାନଙ୍କର ସଦ୍‌ବ୍ୟବହାର ପ୍ରତି ଆମ୍ଭମାନଙ୍କର ଦୃଷ୍ଟି ପଡ଼ିଅଛି । ଏଥିର ଫଳରେ ଆମ ଦେଶରେ ଅନେକ ଲୁପ୍ତ ସମ୍ପଦର ପୁନରୁଦ୍ଧାର ହେବ, ଲୁପ୍ତ ବ୍ୟବସାୟମାନ ପୁନରୁଜ୍ଜୀବିତ ହେବ । ଲୁଗାର ଅଭାବ ଦୂର ହେବା ପାଇଁ ଦେଶରେ କପା ଚାଷ ବଢ଼ିବ, ଦେଶର ମ୍ରିୟମାଣ ତନ୍ତୀମାନେ ପୁନର୍ବାର ଜୀଇଁଉଠିବେ, ତୈଳର ଅଭାବ ପୂରଣ ହେବା ପାଇଁ ସୋରିଷ, ଜଡ଼ା ଆଦି ଫସଲ ଆବାଦ ହେବ । ଘରର ଅଭାବମାନ ଘରେ ଘରେ ପୂରଣ ହେବ । ଦେଶୀୟ ଶିଳ୍ପର ଉନ୍ନତି ହେବ, ଦେଶର ଯୌଥକାରବାରମାନ ଉଦ୍‌ଘାଟିତ ହେବ; ଏହିପରି ଦେଶର

ଅନେକ ପ୍ରଚ୍ଛନ୍ନ ଓ ଲୁପ୍ତପ୍ରାୟ ବିଭବର ସଦ୍‌ବ୍ୟବହାର କରିବାକୁ ଆମ୍ଭେମାନେ ଶିଖିବୁଁ । ସରକାର ମଧ୍ୟ ଏ ବିଷୟରେ ଭାରତବାସୀଙ୍କୁ ସାହାଯ୍ୟ କରିବା ନିମନ୍ତେ ଦୃଢ଼ପରିକର ହୋଇଅଛନ୍ତି । ଏଥିଲାଗି ସ୍ଥାନେ ସ୍ଥାନେ ଶିକ୍ଷାଗାର, ବାଣିଜ୍ୟାଗାର, କଳକାରଖାନା, କୃଷି-ଖାନା ପ୍ରତିଷ୍ଠା କରିବା ବିଷୟରେ ଗଭର୍ଣ୍ଣମେଣ୍ଟ ବିଶେଷ ଉଦ୍ୟମ କରୁଅଛନ୍ତି । ଏ ସବୁ ଦେଖି ମନେ ହେଉଅଛି, ଏ ମହାଯୁଦ୍ଧର କ୍ଷତି ପୂରଣସ୍ୱରୂପ ଭାରତର ଶ୍ରୀବୃଦ୍ଧି ସଙ୍ଗେ ସଙ୍ଗେ ଆମ ଘରର ମଧ୍ୟ ଶ୍ରୀବୃଦ୍ଧି ହେବ । ଏଥିପାଇଁ ବିଶ୍ୱନିୟନ୍ତାଙ୍କର ପ୍ରତ୍ୟେକ କାର୍ଯ୍ୟରେ ଶୁଭ ପରିଣାମ ପ୍ରଚ୍ଛନ୍ନ ଭାବରେ ନିହିତ ଥିବାର ଦେଖାଯାଏ ।

ଉ.ସା. - ୨୨ଶ ଭାଗ / ୧୧ ସଂଖ୍ୟା / ଫାଲ୍‌ଗୁନ / ୧୩୨୬ ସାଲ ।

## ।। ତେଇଶ ।।

ମାନବଜାତିର ଜଣେ ଗୁରୁ କହିଅଛନ୍ତି, 'Man know thyself' ''ଆହେ ମନୁଷ୍ୟ ! ଆପଣାକୁ ଚିହ୍ନ ।'' ଆପଣା ଭିତରେ ଯେଉଁ ପାଞ୍ଚ ମନ ପଚିଶ ପ୍ରକୃତି ଅଛି, ଆପଣାର ମନ ଓ ଶରୀର କ୍ଷେତ୍ରରେ ବିବେକଜ୍ଞାନ ସଙ୍ଗେ ହରଘଡ଼ି ଷଡ଼ରିପୁମାନଙ୍କର ଯେଉଁ ବିଷମ ବିବାଦ ଲାଗିଅଛି, ସେ ସମସ୍ତ ଆଗେ ଥୟ କରି ଜାଣିଲେ ପଛେ ଆପଣାକୁ ମନୁଷ୍ୟ ମଧ୍ୟରେ ସୁମାରି କରିବ । କାରଣ ଏ ସବୁ ନ ଠଉରାଇ, ଆପଣାର 'ଜ୍ଞ' ନ କଳି ସରଜମିନକୁ ଗସ୍ତ କରିବାକୁ ବାହାରିଲେ ଅନର୍ଥ ଛଡ଼ା ଇଷ୍ଟ ନାହିଁ । ସଂସାରରେ ଚଳିବାକୁ ହେଲେ ପ୍ରଥମେ ଆପଣା ମନ ଚିହ୍ନିବା ଦରକାର । ସେତକ ଠିକଣା କରିସାରିଲେ ପର ମନ ଚିହ୍ନିବାକୁ ହେବ । ମୁଁ ନିଜେ ଫଳତଃ ଅନୁଭବ କରିଅଛି ଯେ, ମୁଁ ଯେତେଥର ଆପଣା ମନକୁ ନ ଚିହ୍ନି ପରର କାର୍ଯ୍ୟକଳାପ ସମାଲୋଚନା ବା ବିଚାର କରିବାକୁ ଯାଇଅଛି, ସେତେଥର କେବଳ ଅନର୍ଥରେ ପଡ଼ିଅଛି । ପରର କାର୍ଯ୍ୟକଳାପ ଉପରେ ଯେଉଁ ବ୍ୟକ୍ତି ବିଚାରକର ଆସନ ଗ୍ରହଣ କରେ, ତାହାର ପ୍ରଥମ ଚିନ୍ତା ଏହି ହେବା ଉଚିତ - ''ଅମୁକ ଲୋକ ଯେଉଁ ଘଟନାଚକ୍ରରେ ପଡ଼ି ସେ କାର୍ଯ୍ୟ କରିଅଛି, ମୁଁ ନିଜେ ସେହିପରି ଘଟନାଚକ୍ରରେ ପଡ଼ିଥିଲେ କିପରି କରିଥାନ୍ତି ?'' ଯେବେ ଦେଖିପାରିବ ଯେ, ମୁଁ ଏବଂଭୂତ ଘଟନାଚକ୍ରରେ ପଡ଼ିଥିଲେ ଏ ବ୍ୟକ୍ତି ଅପେକ୍ଷା ଉଚ୍ଚତର ବା ନିର୍ଦ୍ଦୋଷତର କାର୍ଯ୍ୟ କରିଥାନ୍ତି, ତେବେ ଏ ବ୍ୟକ୍ତି ଦଣ୍ଡାର୍ହ, ଯେବେ ମୁଁ ଘଟନାଚକ୍ରରେ ପଡ଼ିଥିଲେ ଏ ବ୍ୟକ୍ତି ଅପେକ୍ଷା ନୀଚତର ବା ଅଧିକ ଦୋଷଜନକ କାର୍ଯ୍ୟ କରିଥାନ୍ତି, ତେବେ ଏ ବ୍ୟକ୍ତି କ୍ଷମାର୍ହ, କିମ୍ବା ଅନ୍ତତଃ କରୁଣାର୍ହ । ଏଥିପାଇଁ ବିଚାରକର ଆସନ, ସମାଲୋଚକର ଆସନ ସାଧାରଣତଃ ଉଚ୍ଚରେ କଳ୍ପିତ ହୋଇଥାଏ ।

କ୍ରୋଧହୀନତା, ଦ୍ୱେଷହୀନତା, ଧୈର୍ଯ୍ୟଶୀଳତା ଏ ସବୁ ବିଚାରକର ଗୋଟିଏ ଗୋଟିଏ ପ୍ରଧାନ ଗୁଣ - ଏ ଗୁଣମାନ ନ ଥିଲେ ବିଚାର ବା ସମାଲୋଚନା ସମୀଚୀନ ହୋଇପାରେ ନାହିଁ । ବିଚାରକ ବା ସମାଲୋଚକ ଆସନ ଗ୍ରହଣ କଲା ପୂର୍ବରୁ ମନୁଷ୍ୟକୁ

'ରାତିପିନ୍ଧା' ପୋଷାକ, ପଖାଳକରା ଲୁଗା ପାଲଟି ପକାଇବାକୁ ହେବ, ବିଚାରକଙ୍କ ପୋଷାକ ପିନ୍ଧିବାକୁ ହେବ । ଯାହାର କାର୍ଯ୍ୟକଳାପ ଉପରେ ମୁଁ ରାୟ ବା ଦଣ୍ଡାଜ୍ଞା ଦେବାକୁ ଯାଉଅଛି, ତା ସଙ୍ଗେ ମୋର ବ୍ୟକ୍ତିଗତ ବୈର, ମନୋମାଳିନ୍ୟ, ମତଭେଦ, ନାନା ବିଷୟରେ ବିବାଦ ଥାଇପାରେ; କିନ୍ତୁ ବିଚାରକର ପବିତ୍ର ଆସନରେ ମୁଁ ଗୋଡ଼ ଦେଲାକ୍ଷଣି, ମୋଠାରେ ଗୋଟିଏ କଠୋର କର୍ତ୍ତବ୍ୟ ଲଦି ହୋଇଯାଏ; ଏଥିପାଇଁ ଅଦାଲତରେ ବିଚାରାସନରେ ବସିବା ସମୟରେ ବିଚାରପତିଙ୍କ ପାଇଁ ଗୋଟିଏ ସ୍ୱତନ୍ତ୍ର ପୋଷାକର (gown) ବ୍ୟବସ୍ଥା ହୋଇଥିବା ଦେଖାଯାଏ । ବିଚାରକ-ପଦବୀର ଗାମ୍ଭୀର୍ଯ୍ୟ ବିଚାରକ ଓ ଜନସାଧାରଣ ବିଶେଷଭାବରେ ଉପଲବ୍ଧି କରିବେ, ଏହି ଉଦ୍ଦେଶ୍ୟରେ ଏଠାରେ ସ୍ୱତନ୍ତ୍ର ପୋଷାକ ପିନ୍ଧିବାର ବ୍ୟବସ୍ଥା ହୋଇଅଛି । କିନ୍ତୁ ସରକାର ସିନା ପୋଷାକର ବ୍ୟବସ୍ଥା କରି ଦେଇ ବସିଅଛନ୍ତି, ବିଚାରକଙ୍କ ମନରେ ଅଳିଆ ସଫା କରିବା କ୍ଷମତା ସରକାରଙ୍କର ନାହିଁ । କାରଣ ସଂସାରରେ ଦେଖାଯାଉଅଛି ଯେ, ବହୁଶଃ ଅବିଚାର ଦ୍ୱାରା ବିଚାରାସନାମାନ କଳୁଷିତ ହେଉଅଛି । ବିଚାରକଙ୍କ ହାତରେ ନ୍ୟସ୍ତ ଥିବା କ୍ଷମତାର ଅପବ୍ୟବହାର ହେଉଅଛି; ବିଚାରାଳୟରେ ଅନେକ ବିଭ୍ରାଟ, ବ୍ୟଭିଚାର ଘଟୁଅଛି । ଏ ସବୁ କ୍ଷମତାର ଅପଚୟ ଅନିବାର୍ଯ୍ୟ । ବିଚାରକଙ୍କ ଉଚ୍ଚ ଆସନକୁ ଯୋଗ୍ୟ ହେବାପାଇଁ କଠୋର ସାଧନା, କଠୋର ସଂଯମ ଆବଶ୍ୟକ । ଆପଣାର ବ୍ୟକ୍ତିଗତ ଖେୟାଲ, ବ୍ୟକ୍ତିଗତ ବିଦ୍ୱେଷ, ବ୍ୟକ୍ତିଗତ ମତ ଏଗୁଡ଼ିକ ହୃଦୟରୁ ପୋଛି ନ ପକାଇଲେ ବିଚାରକ ପ୍ରତି ମୁହୂର୍ତ୍ତରେ ବାଟ ହୁଡ଼ିବା ଅବଶ୍ୟମ୍ଭାବୀ ହୋଇଉଠେ । ମନୁଷ୍ୟ ପକ୍ଷରେ ବ୍ୟକ୍ତିଗତ ସ୍ୱାର୍ଥକୁ ସାର୍ବଲୌକିକ ସ୍ୱାର୍ଥ ଆଗରେ ବଳି ଦେବା ଯେଉଁପରି କଷ୍ଟସାଧ୍ୟ, ବ୍ୟକ୍ତିଗତ ସୁଖକାମନାକୁ ସାର୍ବଜନୀନ ସୁଖକାମନା ଆଗରେ ବଳିଦେବା ଯେଉଁପରି କଷ୍ଟସାଧ୍ୟ, ସାଧାରଣଙ୍କ ମତ ଆଗରେ ବ୍ୟକ୍ତିଗତ ଜୀବନକୁ ବିସର୍ଜନ କରିବା ଯେଉଁପରି କୃଚ୍ଛ୍ରସାଧ୍ୟ, ବିଚାରକଙ୍କ ପକ୍ଷରେ ବ୍ୟକ୍ତିଗତ ଦ୍ୱେଷ, କ୍ରୋଧ, ଆଦି ତ୍ୟାଗ କରି ବିବେକ ଓ କର୍ତ୍ତବ୍ୟଜ୍ଞାନ ଦ୍ୱାରା ଆପଣା ବିଚାରକୁ ନିୟନ୍ତ୍ରିତ କରିବା ମଧ୍ୟ ସେହିପରି କଷ୍ଟସାଧ୍ୟ । ଏଥିରେ କେତେଜଣ କୃତକାର୍ଯ୍ୟ ହେଉଅଛନ୍ତି, ତାହା ଦେଖିବାକୁ ଗଲେ ଓ ସେଗୁଡ଼ିକ ତନ୍ନ ତନ୍ନ କରି ଆଲୋଚନା କରିବାକୁ ଗଲେ ଜଣ ଜଣ କରି ବିଷୟ ଘେନି ଗୋଟିଏ ଗୋଟିଏ 'ମହାଭାରତ ଗ୍ରନ୍ଥ' ହୋଇଯିବ । ତା ପରେ ମଧ୍ୟ ଦେଖାଯାଏ ଯେ, ଘଟନା ବେଳେ ପକ୍ଷମାନେ ଯେଉଁ ଘଟନା-ଚକ୍ର ଆବର୍ତ୍ତରେ ପଡ଼ି ଆପଣାର ବିବେକ ଜ୍ଞାନ ରୂପ ଭାରକେନ୍ଦ୍ରକୁ ଥୟ କରି ନ ପାରି ବାଟ ହୁଡ଼ିଯାନ୍ତି, ବିଚାରକ ବିଚାରକାମଡ଼ାରେ ବିଜୁଳିବତି ଓ ବିଜୁଳିପଙ୍ଖା ତଳେ ଗଦିଲଗା ଚଉକିରେ ବସି ହାଉଆ ଖାଉ ଖାଉ ପକ୍ଷମାନଙ୍କର ଘଟନାକାଳୀନ ଅବସ୍ଥା ଠଉରାଇ ନେବା ସହଜ କଥା ନୁହେଁ । ଏହା ସବୁ ଥୟ କରି, ଝୁଣ୍ଟି ମାଛି ପରଖ କରି, ନିକିତି ତୁଳି ରାୟ ଦେବା ପ୍ରକୃତ ବିଚାରକର କାର୍ଯ୍ୟ । ସମାଲୋଚକ ପକ୍ଷରେ ମଧ୍ୟ ଉପରୋକ୍ତ ମନ୍ତବ୍ୟମାନ ପ୍ରଯୋଜ୍ୟ ଅଟେ ।

ସାଧାରଣତଃ ଦେଖାଯାଏ ଯେ, ସମାଲୋଚକ 'ପରପୁଅ' ସମ୍ବନ୍ଧରେ ଯେଉଁପରି ସମାଲୋଚନା କରିଥାନ୍ତି, ସେହି ଆଦର୍ଶ ଘେନି ସେ ଆପଣାର କାର୍ଯ୍ୟକଳାପକୁ ନିୟନ୍ତ୍ରିତ କରିପାରନ୍ତି ନାହିଁ - ଏଥିଲାଗି ଲୋକେ କହିଥାନ୍ତି - 'ବତେଇ ଦିଏ ପରକୁ, ବୁଦ୍ଧି ନ ଆସେ ଘରକୁ ।' ''ରାଜନ୍ ! ସର୍ଷପ ମାତ୍ରାଣି ପରଚ୍ଛିଦ୍ରାଣି ପଶ୍ୟସି । ଆତ୍ମନୋ ବିଲ୍ୱରୂପାଣି ପଶ୍ୟନ୍ନପି ନ ପଶ୍ୟସି ।'' ''ଗୋଦରୀ ଲୋ ! ଆପଣା ଗୋଡ଼କୁ ଚାହାଁ ।'' ଇତ୍ୟାଦି । ସାଧାରଣତଃ ମଧ୍ୟ ଦେଖାଯାଏ ଯେ, ଅଳ୍ପ ବହୁତ ସମସ୍ତେ ପରର କାର୍ଯ୍ୟକଳାପକୁ ସମାଲୋଚନା କରିଥାନ୍ତି ଓ ଅଧିକାଂଶ ସମାଲୋଚକ ପର ଉପରେ ଅଳିଆଗଦା ଲଦି ଦେଇ ମନ ସୁଖ ଭୋଗ କରନ୍ତି; କିନ୍ତୁ ଆମ୍ଭେମାନେ ସମାଲୋଚକର କଠୋର ଓ ପବିତ୍ର କର୍ତ୍ତବ୍ୟ ଉପଲବ୍ଧି କରୁଥିଲେ, ଆପଣା ଆପଣା ଅନୁଭବରୁ ମନୁଷ୍ୟର ଦୁର୍ବଳତା ଓ ଘଟନାଚକ୍ର ଉପରେ ମନୁଷ୍ୟର ଅନଧିକାର ହୃଦୟଙ୍ଗମ କରୁଥିଲେ, ପୃଥିବୀରେ ତୀବ୍ର ସମାଲୋଚନା, କଠୋର କଟାକ୍ଷପାତର ମାତ୍ରା ଅନେକ ପରିମାଣରେ କମୁଥାନ୍ତା । ଆହୁରି ମଧ୍ୟ ଦେଖାଯାଏ ଯେ, ଅନେକ ସମାଲୋଚନାର ଅପ୍ରିୟତାର ମୂଳ ଅନୁସନ୍ଧାନ କଲେ ତହିଁରେ ବ୍ୟକ୍ତିଗତ ପୂର୍ବବୈର, କାର୍ଯ୍ୟକ୍ଷେତ୍ରରେ ପ୍ରତିଦ୍ୱନ୍ଦ୍ୱିତା, ସମାଲୋଚିତ ବ୍ୟକ୍ତିଙ୍କ ଶତ୍ରୁପକ୍ଷୀୟ ବ୍ୟକ୍ତିଙ୍କର ଗୁପ୍ତ ପ୍ରେରଣା ଧରା ପଡ଼ିଯାଏ । କିନ୍ତୁ ଜନସାଧାରଣ ସେ କଥା ବୁଝନ୍ତି ନାହିଁ । ଅଧିକାଂଶ ସମୟରେ ସମାଲୋଚକ ଯେଉଁ କୁହୁଡ଼ି ଓ ଜାଲ ମେଲି ଦେଇଥାନ୍ତି, ସେଥିରେ ସାଧାରଣ ଅନ୍ଧାରକଣା ହୋଇଯାନ୍ତି ଓ ସମସ୍ତ ତଥ୍ୟ ଅନୁସନ୍ଧାନ ନ କରି ଜନସାଧାରଣ ମଧ୍ୟ ସମାଲୋଚକଙ୍କ ଅତୁଆ ଧରି ହଡ଼ା ଠେଙ୍ଗୁରେ କୁଆ ହାଣିଲା ଭଳିଆ ରକ୍ତବୁହା କରି ପକାନ୍ତି ? ମୁଁ ମଧ୍ୟ ଏ ଦୋଷରୁ ବହିର୍ଭୂତ ନୁହେଁ । ମୁଁ ନିଜେ ମଧ୍ୟ ଏହିପରି କେତେ ନିର୍ଦ୍ଦୋଷ ବ୍ୟକ୍ତିଙ୍କ ଠେଙ୍ଗୁରେ ଥଣ୍ଟ ବସାଇଅଛି । ତତ୍‌କାଳୀନ ଘଟନାଚକ୍ରରେ, ଘଟନାଚକ୍ରର ଉତ୍ତେଜନାରେ, ରକ୍ତର ଉଷ୍ଣତାରେ, ବ୍ୟକ୍ତିଗତ ଭାଷାର ଆବେଗରେ ମୁଁ ମୋର ପବିତ୍ର କର୍ତ୍ତବ୍ୟ ଭୁଲିଯାଇ କେତେ ଲୋକଙ୍କୁ 'କୁଆବୁଆ' କରିଅଛି । ବର୍ତ୍ତମାନ ମୁଁ ମୋର ହେୟତା, ଅଯୋଗ୍ୟତା, ଅପଦାର୍ଥତା, ଅକିଞ୍ଚନତ୍ୱ କେତେକ ପରିମାଣରେ ଉପଲବ୍ଧି କରିପାରୁଅଛି । ତଥାପି ବେଳେ ବେଳେ ଏ ଅବୁଝା ମନ 'ଲଗାମ' ମାନୁ ନାହିଁ, ଅଙ୍କୁଶକୁ ଡରୁ ନାହିଁ କାହିଁକି ? ଯେଉଁ ସ୍ଥାନରେ ବସିବାକୁ ମୋର ଅଧିକାର ନାହିଁ, ମୋର ଶକ୍ତି ନାହିଁ, ମୋର ଯୋଗ୍ୟତା ନାହିଁ, ମୋର ପବିତ୍ରତା ନାହିଁ, ସେ ସ୍ଥାନ ପାଇବା ନିମନ୍ତେ ମୁଁ ବେଳେ ବେଳେ ପ୍ରଣୋଦିତ ହେଉଛି କିଆଁ ? ମୁଁ ବସ୍ତୁତଃ ଯାହା ନୁହେଁ, ଜନସାଧାରଣଙ୍କ ଆଖିରେ ତାହା ଅପେକ୍ଷା ଗୋଟିଏ ଉଚ୍ଚତର ଚିତ୍ର ପ୍ରତିପାଦିତ କରିବାକୁ ମୁଁ ଏତେ ଉତ୍କଣ୍ଠିତ କିଆଁ ?

ମୋର ଯେତେଗୁଡ଼ିଏ ସାଧାରଣସୁଲଭ ଦୋଷ ଓ ମଇଳା ଅଛି, ସେଗୁଡ଼ିକ ରଙ୍ଗିନ ଛିଟ ପରଦା ତଳେ ଲୁଚାଇବାକୁ ମୋର ଏତେ ଉଦ୍‌ବେଗ କାହିଁକି ? 'ପରୋପଦେଶେ ପାଣ୍ଡିତ୍ୟ' ପ୍ରକାଶ କରିବାକୁ ମୁଁ ସର୍ବଦା ମୁସ୍ତେଜ ହେଉଅଛି କିଆଁ ? ମୁଁ ପ୍ରକୃତରେ

ଯାହା, ତାହା ଯଦି କେହି ଦାଣ୍ଡରେ ପିଟାଇ କହି ଦେଉଅଛି, ସେଥିପାଇଁ ମୁଁ ତାହା ଉପରେ ବିରକ୍ତ ହୁଏଁ କିଆଁ ? ମୁଁ ଯେଉଁ ପ୍ରଣାଳୀରେ ପରର କାର୍ଯ୍ୟ ସମାଲୋଚନା କରିଥାଏଁ, ସେହି ପ୍ରଣାଳୀରେ, ସେହି ଅନୁପାତରେ ମୋ କାର୍ଯ୍ୟକଳାପ କେହି ସମାଲୋଚନା କଲେ ମୁଁ ନିଆଁ ଖପରା ହୋଇଯାଏ କାହିଁକି ? ଏହା ମନୁଷ୍ୟ ପ୍ରକୃତିର ଦୁର୍ବଳତା ଛଡ଼ା ଆଉ କିଛି ନୁହେଁ । ମୁଁ ଯେଉଁ କଥା ଲାଗି ପରକୁ ଧିକ୍କାର କରେଁ, ସମାଜରେ ଅପଦସ୍ଥ କରେଁ, ପରକୁ ବଦନାମ କରେଁ, ଦଣ୍ଡ ଦିଏଁ, ଖୁଣୁଥାଏଁ, ମୋଠାରେ ସେହି ସେହି ଦୁର୍ଗୁଣମାନ ପୂର୍ଣ୍ଣମାତ୍ରାରେ ରହିଅଛି, ଅଥଚ ତାହା ସଂଶୋଧନ କରିବାକୁ ମୋର ଆନ୍ତରିକ ଇଚ୍ଛା ନୁହେଁ; କିନ୍ତୁ ପର ପୁଅ ସେ କଥା କଲା ମାତ୍ରକେ ମୁଁ ତାହା ବିଚ୍ ବଜାରରେ ନାଗରା ଦେଇ ଜାହେର କରିଦିଏଁ । ଏହା ମନୁଷ୍ୟ ପ୍ରକୃତିର ଦୁର୍ବଳତା । ଏ ଦୁର୍ବଳତାକୁ ଏଡ଼ି, ଏ ନୀଚତାର ଉପରକୁ ଉଠିପାରିଲେ ମନୁଷ୍ୟ ଦେବତ୍ୱ ଆଡ଼କୁ ଅଗ୍ରସର ହୁଏ, ନଚେତ୍ "ଯେତେ ମାଠୁଥିବୁ ମାଠ, ମୁଁ ସେହି ଦରପୋଡ଼ା କାଠ !" ଏଥିପାଇଁ କବି ଗାଇଥିଲେ -

"ଚିହ୍ନିବାକୁ ଶିଖି ନାହିଁ ପର ମନ,
ସେ କି କେବେ ପ୍ରଭୁପଣକୁ ଭାଜନ ?"

ମୁଁ କହୁଛି -

"ଚିହ୍ନିବାକୁ ଶିଖି ନାହିଁ ନିଜ ମନ
ସେ କି କେବେ ନରପଣକୁ ଭାଜନ !"

ଆଜି ଥାଉ ।

ଉ.ସା. - ୨୩ଶ ଭାଗ / ୧ମ ସଂଖ୍ୟା / ବୈଶାଖ / ୧୩୨୭ ସାଲ ।

## ।। ଚବିଶ ।।

ଜଣେ ପ୍ରଧାନ ଚିନ୍ତାଶୀଳ ଆମେରିକାନ ଲେଖକ କହିଅଛନ୍ତି ଯେ, ପ୍ରତ୍ୟେକ ମନୁଷ୍ୟର ତିନିଗୋଟି ରୂପ - (୧) ଈଶ୍ୱର ତାକୁ ଯେପରି ସୃଷ୍ଟି କରିଅଛନ୍ତି, (୨) ସେ ନିଜେ ଆପଣାକୁ ଯେଉଁପରି ଗୁଣବିଶିଷ୍ଟ ବୋଲି ମନେ କରେ ଓ (୩) ଦାଣ୍ଡଲୋକେ ଅର୍ଥାତ୍ ସାଧାରଣ ତାକୁ ଯେପରି ବିଶିଷ୍ଟ ବୋଲି ମନେ କରନ୍ତି । ମନେକରନ୍ତୁ, ଈଶ୍ୱର ମତେ କେତେଗୁଡ଼ିଏ ସାଧାରଣ ଗୁଣ ଓ ପ୍ରକୃତି ଦେଇ ଜନ୍ମ ଦେଇଅଛନ୍ତି, ସେ ରୂପଟି ସବୁବେଳେ ଈଶ୍ୱର ଦେଖୁଅଛନ୍ତି । ତଦନୁସାରେ ମୁଁ ସ୍ୱାର୍ଥପର, ସଂସାରୀ, କ୍ରୋଧପ୍ରକୃତିକ, ମାୟାବିଜଡ଼ିତ ଇତ୍ୟାଦି ଇତ୍ୟାଦି । କିନ୍ତୁ ମୁଁ ଏ ସବୁକୁ ଛାପଚିକ୍କଣ ପୋଷାକ ତଳେ ଘୋଡ଼ାଇ ପକାଇ ମୋ ନିଜ ଆଖିରେ ଧୂଳି ଦେବାକୁ ଚେଷ୍ଟା କରୁଅଛି ଓ ମୁଁ ବିଚାରୁଛି

ଯେ, ମୋ ଠାରୁ ବଳି ଧାର୍ମିକ, ଦୟାଶୀଳ, ଦାନକଳ୍ପତରୁ, ନିଃସ୍ୱାର୍ଥ ବ୍ରତଧାରୀ, ପରୋପକାରୀ ସଂସାରରେ କେହି ନାହିଁ । ଫଳତଃ ମୁଁ ମନେ ମନେ ଆପଣାର ଯେଉଁ ଚିତ୍ର ମୋ ହୃଦୟରେ ଆଙ୍କିବାକୁ ଚେଷ୍ଟା କରୁଅଛି, ସେ ଚିତ୍ରକୁ ଦାଣ୍ଡଲୋକଙ୍କ ଆଖିକୁ ଆହୁରି ଆଖିଦୃଶିଆ କରିବାକୁ ମୋର ସତତ ଇଚ୍ଛା ଓ ଚେଷ୍ଟା । ଆଉ ଏହି ଚେଷ୍ଟାରେ ମୁଁ ଅନେକ ସମୟରେ କୃତକାର୍ଯ୍ୟ ମଧ୍ୟ ହୋଇଥାଏଁ ଏବଂ ଜନସାଧାରଣ ସେହି ବାର୍ଣ୍ଣିସଦିଆ ରୂପକୁ ଦେଖି ଅଧିକାଂଶ ସମୟରେ ମୁଗ୍ଧ ହୋଇଯାନ୍ତି ଓ ବିଚାରନ୍ତି ଯେ, ମୁଁ ଜଣେ ପ୍ରାତଃସ୍ମରଣୀୟ, ଅସାଧାରଣ ଦେବୋପମ ମନୁଷ୍ୟ ଅଟେ । ମନୁଷ୍ୟ ସଂସାରରେ ବିଚରଣ କଲାବେଳେ ଏତିକି କିସମର ତିନୋଟି ଚିତ୍ର (ଫଟୋଗ୍ରାଫ) ତାହା ସଙ୍ଗେ ସଙ୍ଗେ ବୁଲୁଥାନ୍ତି ଓ ଯେତେବେଳେ ଯେଉଁ ଫଟୋଗ୍ରାଫ ଉପରେ ଲୋକଙ୍କର ଦୃଷ୍ଟି ପଡ଼ିଯାଏ, ଲୋକେ ସେହି ଘଡ଼ିକ ସେହି ଚିତ୍ରପ୍ରତିମାକୁ ମୋ'ଠାରେ ପୋଡ଼ି ଦିଅନ୍ତି । ମୋର ଯେ ଏକା ଏହି ହରଭଙ୍ଗୀ ରୂପ, ତାହା ନୁହେଁ । ସଂସାରରେ ସମସ୍ତଙ୍କର ଏହି ତ୍ରିମୂର୍ତ୍ତି ଓ କଦାଚିତ୍ ଏହି ତିନି ରୂପର ସାମଞ୍ଜସ୍ୟ ଘଟିଥାଏ । ମନେକରନ୍ତୁ, ଘଟନାଚକ୍ରରେ ଗୋପାଳ ଓ ହରିଙ୍କର ଭେଟ ହେଲା । ପ୍ରକୃତରେ ଦେଖିବାକୁ ଗଲେ ଏଥିରେ ୬ ଜଣଙ୍କର କାରବାର ଚଳେ । ଅର୍ଥାତ୍ ୧ - ଈଶ୍ୱର ସୃଷ୍ଟ ଗୋପାଳ, ୨ - ଆତ୍ମସୃଷ୍ଟ ଗୋପାଳ, ୩ - ଦାଣ୍ଡ-ଦୃଷ୍ଟ ଗୋପାଳଙ୍କ ସଙ୍ଗେ । ୧ - ଈଶ୍ୱରସୃଷ୍ଟ ହରି, ୨ - ଆତ୍ମସୃଷ୍ଟ ହରି ଓ ୩ - ଦାଣ୍ଡ-ଦୃଷ୍ଟ ହରିଙ୍କର ମିଳନ ବା ଆଳାପ ବା ସଂଘର୍ଷଣ ହୋଇଥାଏ । ଏ ୬ ମୂର୍ତ୍ତିଙ୍କର ଭେଟ ହେଲାବେଳେ ଗୋଳମାଳ ଅନିବାର୍ଯ୍ୟ ହୋଇଉଠେ । ଏହି ୬ ଜଣଙ୍କ ମଧ୍ୟରେ ଓଡ଼ାଙ୍କ ମେଲାଙ୍କ (permutation and combination) ହିସାବରେ ୯ ରକମର ଫଳ ଘଟିବା ସ୍ୱାଭାବିକ । ଏହି ୯ ରକମ ଘଣ୍ଟାଚକଟାରେ ବେଳେ ବେଳେ ପ୍ରୀତିକର, ବେଳେ ବେଳେ ଅପ୍ରୀତିକର, ବେଳେ ବେଳେ ମିଶ୍ରଫଳ ଫଳେ । ଏଥିପାଇଁ ଲୋକେ କହିଥାନ୍ତି, ''ଦାଣ୍ଡକୁ ବାହାରିଲା ବେଳେ ଆପଣା ହୁସିଆରରେ ଚଳୁଥିବ ।''

ଫଳତଃ ଦେଖାଯାଏ ଯେ, ଆମ୍ଭେମାନେ ନିଜେ ନିଜେ ଅନେକ ସମୟରେ ନିଜ ନିଜର ଦୋଷଗୁଣ ପ୍ରତି ଅନ୍ଧ ଓ ବଧୀର ହୋଇଥାଉଁ । ସାଧାରଣ ଲୋକେ ଆମ ସମ୍ବନ୍ଧରେ ଯେଉଁ ରୂପ ଗଢ଼ନ୍ତି, ତାହା ଆମ୍ଭମାନଙ୍କ ଆଖିରେ ବା କାନରେ ନ ପଡ଼ିବାରୁ ଆମେ ମନରେ ବିଚାରୁଁ ଯେ, ଆମ ପସରା ବେଶ ବିକାଉଛି; କିନ୍ତୁ ଥରେ 'ଅନ୍ଧାରି ବିଜେ' କଲେ ଦେଖିପାରନ୍ତେ ଯେ ଲୋକେ ଅକୁଣ୍ଠିତ ଭାବରେ ବିନା ଚକ୍ଷୁଲଜ୍ଜାରେ, ପରୋକ୍ଷରେ ଆମ ବିଷୟ ସମାଲୋଚନା କରି ଆମ ସମ୍ବନ୍ଧରେ ସ୍ୱାଧୀନ ମତ ବ୍ୟକ୍ତ କରିଥାନ୍ତି । ଏଥିପାଇଁ ମରହଟୀ ରାଜାମାନଙ୍କର 'ଅନ୍ଧାରି ବିଜେ' ରୀତି ଥିଲା । ପରୋକ୍ଷରେ ଜନସାଧାରଣ ତାଙ୍କ ସମ୍ବନ୍ଧରେ କି କି ମତ ପୋଷଣ କରିଅଛନ୍ତି, ତାହା ଜାଣିବା ଓ ଶୁଣିବା ନିମନ୍ତେ ରାଜାମାନେ ଗୁପ୍ତ ବେଶରେ ଜନସାଧାରଣଙ୍କ ଅଗୋଚରରେ ଆପଣା ରାଜ୍ୟରେ ବୁଲି ସାଧାରଣଙ୍କ ସଙ୍ଗେ ମିଶିଯାଇ ଆପଣା ସମ୍ବନ୍ଧରେ ଲୋକମାନଙ୍କର

ସମାଲୋଚନା ଶୁଣୁଥିଲେ ଓ ତଦନୁସାରେ ଆପଣାର କାର୍ଯ୍ୟକଳାପକୁ ସଂଶୋଧନ ବା ନିୟନ୍ତ୍ରିତ କରୁଥିଲେ । ଈଶ୍ୱର ମନୁଷ୍ୟକୁ 'ଚକ୍ଷୁଲଜ୍ଜା' ବା 'ମୋହବତ' ବୋଲି ଗୋଟିଏ ଗୁଣ ଦେଇଅଛନ୍ତି । ଜଣକ ମୁହଁକୁ ଚାହିଁ ଚାହିଁ ତା ବିରୋଧରେ କୌଣସି ଅପ୍ରିୟ ସତ୍ୟ ତା ମୁହେଁ ମୁହେଁ କହିହୁଏ ନାହିଁ । ଏହି 'ଚକ୍ଷୁଲଜ୍ଜା'ର କରାମତରୁ ମୁଁ ମୋର ବନ୍ଧୁମାନଙ୍କ ମୁହଁରୁ ମୋ ଦୋଷଗୁଡ଼ିକ ଶୁଣିପାରେ ନାହିଁ । ଏ ସଂସାରରେ କେତେଗୁଡ଼ିଏ ସିଆଣା ଲୋକ ଅଛନ୍ତି ଯେ, ସେମାନେ ମନୁଷ୍ୟ ପ୍ରକୃତିର ଏହି ଦୁର୍ବଳତାକୁ ଆପଣାର କାର୍ଯ୍ୟ ସାଧନରେ ଲଗାଇ ନିଅନ୍ତି ଓ ବିଚ୍ ବଜାରରେ ଆପଣାର ଗୂଢ଼ ଉଦ୍ଦେଶ୍ୟକୁ ଫଏସଲା କରାଇ ନିଅନ୍ତି ।

ଏ ପ୍ରସଙ୍ଗରେ ଜଣେ ବଡ଼ଲୋକଙ୍କ କଥା ମୋର ମନେ ପଡ଼ିଗଲା । ବଡ଼ଲୋକଟି ଜଣେ ନାମଜାଦା ବ୍ୟକ୍ତି - ଦେଶରେ ଗଣ୍ୟ, ମାନ୍ୟ ଓ ସମ୍ମାନିତ । ଏକଦା ଅନ୍ୟ ଜଣେ ବିଶିଷ୍ଟ ବ୍ୟକ୍ତି ବିପଦ୍‌ଗ୍ରସ୍ତ ହୋଇ ଉକ୍ତ ବଡ଼ଲୋକଙ୍କର ବାହୁଛାୟାର ଆଶ୍ରୟ ନେଇଥିଲେ । ନାମଜାଦା ବଡ଼ଲୋକ ତାଙ୍କୁ ବିପଦ ସାଗରରୁ ଉଦ୍ଧାର କରିବେ ବୋଲି ନିର୍ଭର ଜବାବ ଦେଇଥିଲେ ଓ ଆପଣାର ପାରିଶ୍ରମିକ ବିଧିମତେ ନେବେ ବୋଲି ଚୁକ୍ତି କରିଥିଲେ । କିନ୍ତୁ ସେ ସମୟରେ ଉକ୍ତ ଆଶ୍ରିତ ବ୍ୟକ୍ତି କପଟଶୂନ୍ୟ ଓ ଶତ୍ରୁ ପରିବେଷ୍ଟିତ ଥିଲେ । ସେ ବିପଦଗ୍ରସ୍ତ ହୋଇଥିବାର ସମସ୍ତଙ୍କୁ ଜଣାଥିବାରୁ ତାଙ୍କୁ ସାହାଯ୍ୟ କରିବାକୁ ସାଧାରଣ ବ୍ୟକ୍ତିମାନେ କୁଣ୍ଠିତ ହେଉଥିଲେ । ବିପନ୍ନ ବ୍ୟକ୍ତି ଆମ ମାର୍କାମରା ଓସ୍ତାତଙ୍କ ଆଶ୍ରୟରେ ଦିନା କେତେ ରହିବା ପରେ ଦେଖିପାରିଲେ ଯେ, ତାଙ୍କ ପ୍ରତି ପ୍ରଥମେ ପ୍ରଥମେ ଯେଉଁ ଆଦର, ଅଭ୍ୟର୍ଥନା ଓ ମର୍ଯ୍ୟାଦା ପରିଲକ୍ଷିତ ହେଉଥିଲା, ତହିଁର ମାତ୍ରା କମି ଆସୁଥାଏ । ଅନନ୍ୟୋପାୟ ହୋଇ ବିପନ୍ନ ବ୍ୟକ୍ତି ପ୍ରସ୍ତାବ କଲେ ଯେ, ତାଙ୍କ ପିଛା ଆଶ୍ରୟଦାତାଙ୍କର ଯାହା ଯାହା ଖରଚ ହେଉଅଛି ଓ ତାଙ୍କର ରକ୍ଷା ନିମନ୍ତେ ଆଶ୍ରୟଦାତା ଯେଉଁ ପରିଶ୍ରମ କରୁଅଛନ୍ତି, ତହିଁର କିଞ୍ଚିତ୍ କ୍ଷତିପୂରଣ କରିବା ନିମନ୍ତେ ବିପନ୍ନ ବ୍ୟକ୍ତିଙ୍କର ସେ ସମୟରେ ଆର୍ଥିକ ବଳ ନ ଥିବାରୁ ବିପନ୍ନ ବ୍ୟକ୍ତିଙ୍କର କେତେକ ଘରକରଣା ପଦାର୍ଥ (ଯଥା - ସୁନା, ରୁପାର ଅଳଂକାର, ଜହୁରାତି ଆଦି) ଆଶ୍ରୟଦାତା ବର୍ତ୍ତମାନ ଗ୍ରହଣ କରିବେ ଓ ଈଶ୍ୱର ସୁଦିନ ଦେଲେ ବିପନ୍ନ ବ୍ୟକ୍ତି ବିପଦମୁକ୍ତ ହୋଇ ସେଧବୁ ଅର୍ଥ ଦ୍ୱାରା ମୁକୁଳାଇ ନେବେ । ଭିତରେ ଭିତରେ ଏ ବନ୍ଦୋବସ୍ତ ଓ କାର୍ଯ୍ୟକ୍ରମ ଚାଲିଥାଏ, ଅଥଚ ବାହାରେ ସଂସାର ଜାଣିବାକୁ ଆଶ୍ରୟଦାତା 'ସ୍ୱାର୍ଥହୀନ, ମୈତ୍ରୀବ୍ରତ' ଦ୍ୱାରା ବିପନ୍ନ ବ୍ୟକ୍ତିଙ୍କୁ ଆପଣା ବାହୁଛାୟା ତଳେ ରଖିଅଛନ୍ତି । ସଂସାରରେ ଏହି ନିଃସ୍ୱାର୍ଥ ଉପକାର ପାଇଁ ଆଶ୍ରୟଦାତାଙ୍କୁ 'ଧନ୍ୟ ଧନ୍ୟ ପଦ' ଲାଗିଥାଏ ।

ଦିନେ ଘଟନାଚକ୍ରରେ ମୁଁ ଓ କେତେ ଜଣ ବନ୍ଧୁ ଆଶ୍ରୟଦାତାଙ୍କ ନିକଟକୁ ଯାଇଥିଲୁଁ । ସେଦିନ ସେହି ସମୟରେ ବିପନ୍ନ ବ୍ୟକ୍ତିଟି ମଧ୍ୟ ତାଙ୍କ ନିକଟରେ ଉପସ୍ଥିତ ଥାନ୍ତି । କଥା ପ୍ରସଙ୍ଗରେ ଦେଶର ଅବସ୍ଥା, ଆମ ଜାତିର ଅବସ୍ଥା, ଆଶ୍ରୟଦାତାଙ୍କର ବଦାନ୍ୟତା,

ପରୋପକାର, ଦେଶସେବା, ବିପନ୍ନ-ମୈତ୍ରୀ ଆଦି ଅନେକ କଥା ଆଶ୍ରୟଦାତାଙ୍କ ମୁହଁରୁ ବକ୍ତୃତା ଛଳରେ ଶୁଣି ଆମ୍ଭେମାନେ କୃତାର୍ଥ ହେଲୁଁ । ଆଶ୍ରୟଦାତା ବକ୍ତୃତା ଛଳରେ ବିପନ୍ନ ବ୍ୟକ୍ତିଙ୍କ ଆଡ଼କୁ ଆଙ୍ଗୁଠି ଦେଖାଇ କହି ପକାଏଲେ, ''ଆପଣମାନେ ଦେଖନ୍ତୁ, ସଂସାରରେ ଲୋକେ ଅତି ଶୀଘ୍ର ଉପକାର ଭୁଲି ଯା'ନ୍ତି ଓ ମୁଁ ଯେଉଁପରି ଭାବରେ ନିଃସ୍ୱାର୍ଥ ପରୋପକାର କରିଥାଏଁ, ତାହା ଜନସାଧାରଣ ପାସୋରି ପକାନ୍ତି । ଆପଣମାନେ ଦେଖନ୍ତୁ ଯେ, ଗତ କେତେ ମାସ ହେଲା ଏହି ବିପନ୍ନ ବ୍ୟକ୍ତିଙ୍କୁ ମୁଁ ଆଶ୍ରୟ ଦେଇ ତାଙ୍କର ଯାବତୀୟ ଅଭାବ ଅସୁବିଧା ଦୂର କରୁଅଛି ଓ ତାଙ୍କର ବିପଦ କିପରି ଦୂର ହେବ, ଏଥିପାଇଁ ମୁଁ ଦିବାନିଶି ଚିନ୍ତିତ ଓ ବ୍ୟସ୍ତ ଅଛି ଓ ହାକିମହୁକୁମାଙ୍କୁ ଅନୁସରଣ କରୁଅଛି, ଅଥଚ ଲୋକେ କହିବେ ଯେ, ମୁଁ ଲାଭ ଆଶାରେ ଏହାଙ୍କୁ ଆଶ୍ରୟ ଦେଇଅଛି । ଏ ବ୍ୟକ୍ତିଙ୍କୁ ନିଜେ ଆପଣମାନେ ପଚାରି ବୁଝନ୍ତୁ, ମୁଁ ଏହାଙ୍କ ପିଛା ଅକାତରରେ କେତେ ଟଙ୍କା ଖରଚ କରି ସାରିଲିଣି ଓ କେତେ ପରିଶ୍ରମ କଲିଣି ।'' ବିପନ୍ନ ବ୍ୟକ୍ତି 'ମୌନଂ ସମ୍ମତି ଲକ୍ଷଣଂ' ଦ୍ୱାରା ଆଶ୍ରୟଦାତାଙ୍କ ପୂର୍ବ ଉକ୍ତିକୁ ସମର୍ଥନ କଲେ ଓ ଆମ୍ଭେମାନେ ଆଶ୍ରୟଦାତାଙ୍କର ଏହି ନିଃସ୍ୱାର୍ଥ ବ୍ରତ ଯୋଗୁଁ ତାଙ୍କୁ ବାହାରେ ଓ ଭିତରେ କେତେ ଧନ୍ୟବାଦ ଓ ଆର୍ଶୀବାଦ ଦେଇ ସେଠାରୁ ଫେରିଲୁଁ ।

ଗଲା ଦିନା କେତେ । ବିପନ୍ନ ବ୍ୟକ୍ତିଙ୍କର ସାଂସାରିକ ବିପଦର ମାତ୍ରା ଓସ୍ତାତଙ୍କର ଚେଷ୍ଟା ସତ୍ତ୍ୱେ କିଛି କମିଲା ନାହିଁ ଓ ବିପନ୍ନ ବ୍ୟକ୍ତି ଆଶ୍ରୟଦାତାଙ୍କର ଆଶ୍ରୟ ତ୍ୟାଗ କଲେ । ଆମ୍ଭେମାନେ ବିପନ୍ନ ବ୍ୟକ୍ତିଙ୍କର ବିପଦର ଆଗମନ ଯୋଗୁଁ ଯେତେଦୂର ବ୍ୟଥିତ ହୋଇ ନ ଥିଲୁଁ, ଆଶ୍ରୟଦାତାଙ୍କର ପଣ୍ଡଶ୍ରମ ଓ ବୃଥା ଧନବ୍ୟୟ ଯୋଗୁଁ ତଦପେକ୍ଷା ବେଶି ବ୍ୟଥିତ ହେଲୁଁ । ଘଟନାଚକ୍ରରେ ବିପନ୍ନ ବ୍ୟକ୍ତିଙ୍କ ସଙ୍ଗେ କ୍ଷେତ୍ରାନ୍ତରରେ ମୋର ଦେଖା ହେଲା ଓ ଏତେ ବଡ଼ ମୁରବିଙ୍କର ବାହୁଛାୟା ଧରି ସୁଦ୍ଧା ତାଙ୍କର କିଛି ଉପକାର ନ ହେବା ତାଙ୍କ କର୍ମର ଦୋଷ ବୋଲି ଦୁଃଖ ପ୍ରକାଶ କଲି, ଆଉ ତାଙ୍କ ଆଶ୍ରୟଦାତା କେତେ ପରିଶ୍ରମ ଓ ଅର୍ଥ ବ୍ୟୟ କଲେ, ସେଥିପାଇଁ ମଧ ଦୁଃଖ ପ୍ରକାଶ କଲି । ବିପଦ ସହି ସହି ସେତେବେଳକୁ ବିପନ୍ନ ବ୍ୟକ୍ତି ବିପଦରେ ଅଭ୍ୟସ୍ତ ହୋଇଯାଇଥିଲେ; ସେ ଏ କଥା ଶୁଣି ମୁରୁକିହସା ଦେଇ ପୂର୍ବୋକ୍ତ ଦିବସର ବକ୍ତୃତାର କଥା ଉତ୍ଥାପନ କରି କହିଲେ, ''ଭଦ୍ରଲୋକ କି ଭୟାନକ ଭାଣ୍ଡ ! ଯେଉଁଦିନ ସେ ଆପଣମାନଙ୍କ ନିକଟରେ ମତେ ସାକ୍ଷୀ ଦେଇ ମୋ ପ୍ରତି କରୁଥିବା ନିଃସ୍ୱାର୍ଥ ପରୋପକାର ସମ୍ବନ୍ଧରେ ବକ୍ତୃତା କରୁଥିଲେ, ସେହିଦିନ ସକାଳଓଳି ସେ ମୋଠାରୁ ହଜାର ଟଙ୍କାର ଅଳଙ୍କାର ସାମାନ୍ୟ ଉପଢୌକନସ୍ୱରୂପ ଗ୍ରହଣ କରିଥିଲେ, ଅଥଚ ଆପଣମାନଙ୍କ ଆଗରେ ମୋତେ ସାକ୍ଷୀ ଦେଇ, କେଡ଼େ ସଫେଇ ହୋଇ ବକ୍ତୃତା କରିଗଲେ ! ମୁଁ 'ଚକ୍ଷୁଲଜ୍ଜା'ରେ ସବୁ କଥା ଶୁଣି ତୁନି ହୋଇ ରହିଲି ।'' ମୁଁ ବିପନ୍ନ ବନ୍ଧୁଙ୍କଠାରୁ ଏହା ଶୁଣି କ୍ଷଣକାଳ ନିମନ୍ତେ ସ୍ତବ୍ଧ ଓ ଚିତ୍ରାର୍ପିତ ହୋଇ ରହିଲି । ଫଳତଃ ବୁଝିଲି ଯେ, ବିପନ୍ନ ବ୍ୟକ୍ତି ଚକ୍ଷୁଲଜ୍ଜାରେ

ଆଶ୍ରୟଦାତାଙ୍କ ପ୍ରୌଢ଼ିର ପ୍ରତିବାଦ କରିବେ ନାହିଁ । ଆଶ୍ରୟଦାତା, ଏହି କଥା ଆଗରୁ ଉତ୍ତମରୂପେ ଠଉରାଇ ମନୁଷ୍ୟ ପ୍ରକୃତିର ଏହି ଦୁର୍ବଳତା ଉପରେ ଏକ ପେଞ୍ଚ ଖେଳ ଖେଳିଦେଲେ ଓ ଭିତିରି ଅର୍ଥଲାଭ ସଙ୍ଗେ ସଙ୍ଗେ ଓପରି ବାହାଦୁରିଟା ମଧ ମାରିନେଇ ବିପନ୍ନ ବ୍ୟକ୍ତିଙ୍କଠାରୁ ଅବଶିଷ୍ଟ ଧାତବ ବସ୍ତୁତକ ଭାଲୁଶୋଷା କରି ନେଇ ଛାଡ଼ିଦେଲେ । ଏଥିପାଇଁ କହୁଥିଲି ଯେ, ଆପାତତଃ ପ୍ରତ୍ୟେକ ବ୍ୟକ୍ତିଙ୍କ ସଙ୍ଗେ ସଙ୍ଗେ ତାଙ୍କର ୩ ଗୋଟି ଚିତ୍ରପଟ ଝୁଲୁଥାଏ । ଉପସ୍ଥିତ କ୍ଷେତ୍ରରେ ଆମର ଆଶ୍ରୟଦାତା ଓସ୍ତାତଙ୍କର ୪ ଗୋଟି ଫଟୋଗ୍ରାଫ ବିଷୟମାନ ଥିଲା । ୧ - ଈଶ୍ୱରସୃଷ୍ଟ, ୨ - ସ୍ୱକଳ୍ପିତ, ୩ - ଆଶ୍ରିତାନୁଭୂତ ଓ ୪ - ସାଧାରଣ କଳ୍ପିତ ।

(୧) ଭଗବାନ୍ ଜାଣନ୍ତି ଯେ, ଓସ୍ତାତଙ୍କ ଦେହି କଡ଼ାକର ଶାଗ ସିଝିବ ନାହିଁ (୨) ଓସ୍ତାଦ୍ ନିଜେ ଜାଣନ୍ତି ଯେ, ସେ ମାଛତେଲରେ ମାଛ ଭାଜିନେବେ (୩) ବିପନ୍ନ ବ୍ୟକ୍ତି ଜାଣନ୍ତି ଯେ, ତାଙ୍କ ଉପକାର ପାଇଁ ଓସ୍ତାତ ଯେଉଁ ପରିଶ୍ରମ କରିବେ, ସେଥିର ଦସ୍ତୁରମତେ କ୍ଷତିପୂରଣ ଆଦାୟ କରିନେବେ (୪) ସାଧାରଣ ଜାଣିଲେ ଯେ, ଓସ୍ତାତ ନିଃସ୍ୱାର୍ଥ ମୈତ୍ରୀବ୍ରତ ଧାରଣ କରି ବିପନ୍ନ ବ୍ୟକ୍ତିର ମୁରବି ବନି ଅନନ୍ୟ ସାଧାରଣ ଦେବତ୍ୱ ପ୍ରକଟନ କରୁଅଛନ୍ତି । ଏଥିପାଇଁ କହନ୍ତି, ସିଆଣା ଲୋକ ମାଛତେଲରେ ମାଛ ଭାଜି ନେଇ ଆପଣାର ଓସ୍ତାତି ହାତ ଜାହେର କରିପାରେ । ଏ ଓସ୍ତାତି ସମସ୍ତଙ୍କ ଦେହି ସାଧ ହୋଇପାରେ ନାହିଁ । ମୁଁ ବହୁତ ଚେଷ୍ଟା କରୁଛି, କିନ୍ତୁ ମୋ ଦେହି ହୋଇପାରୁ ନାହିଁ । ଇତି ।

ଉ.ସା. - ୨୩ଶ ଭାଗ / ୨ୟ ସଂଖ୍ୟା / ଆଷାଢ଼ / ୧୩୨୭ ସାଲ ।

## ।। ପଚିଶ ।।

ପାଠକମାନେ ଅବଶ୍ୟ ଅବଗତ ଅଛନ୍ତି ଯେ, ମୁଁ ବର୍ତ୍ତମାନ ପୂରା ସଂସାରୀ । ଆପଣାର ପୁଅବୋହୂ, ଝିଅ ଜୋଇଁ, ସ୍ତ୍ରୀ ପରିବାର, ଘରଦୁଆର, ଦୁଃଖଧନ୍ଦା, ଜମିବାଡ଼ି, ଫନ୍ଦିଫିକର, ଚାଷବାସ, ଜମିଦାରି ମହାଜନି, ଦେଣାପାଉଣା, ଗାଈଗୋରୁ - ବର୍ତ୍ତମାନ ମୁଁ ଏ ସବୁ ଘେନି ଦିନ ରାତି ବ୍ୟସ୍ତ । ଏଥିଯୋଗୁଁ ଏଗୁଡ଼ିକ ସମ୍ଭାଳି ଦୁଇମୁଣ୍ଡ (ଆୟ ବ୍ୟୟ) ମିଳାଇ ଏ ସଂସାରରେ ଦଦରା ଡଙ୍ଗା ଚଳାଇବା ପାଇଁ ଓକିଲାତି ବ୍ୟବସାୟର ବାନା ଧରିବାକୁ ପଡ଼ିଅଛି । ପୂର୍ବର ଦେଶସେବା, ପୂର୍ବର ବକ୍ତୃତା, ପୂର୍ବପରି ସମ୍ବାଦପତ୍ରରେ ସ୍ୱନାମୀ, ବେନାମୀ ଓ ଅନାମୀ ପ୍ରବନ୍ଧ ଲେଖା ମୋର ଆଉ ନାହିଁ । ତା ପରେ ବିଶେଷତଃ 'ଦେଶସେବକ' ହେବା ଲାଗି ଯେତେଗୁଡ଼ିଏ ଗୁଣ ଓ କରାମତ ଦରକାର, ସେସବୁ ମୋର ତିଳେମାତ୍ର ନାହିଁ । (ଉତ୍କଳ ସାହିତ୍ୟ ୨୩ ଭାଗ ୧୬୦୧ ୨ୟ ସଂଖ୍ୟାରେ ଦେଶସେବକ ଆପଣାର ଗୁଣାବଳୀର ଯେଉଁ ନିର୍ଘଣ୍ଟ ଗାଇ ଯାଇଅଛନ୍ତି ସେଥିରୁ ପାଠକମାନେ ଦେଶସେବାର ପ୍ରୟୋଜନୀୟ ଜାୟଜାତ ଓ ଅବାଏବସ୍ତର ତାଲିକା

ଦେଖିପାରିବେ । ଏଥିଲାଗି ସାଧାରଣ ସଭାସମିତି, କମେଟି, ସମାଜ, ପଞ୍ଚାଏତ, ଭଲଲୋକି, ବୋର୍ଡ଼ କାଉନ୍ସିଲ, ଖବରକାଗଜ ପତ୍ରିକା. ସ୍କୁଲ କଲେଜ, ହାକିମହୁକୁମା, ଏ ସବୁରୁ ମୁଁ ଏବେ ଦୂରରେ ରହିଅଛି । ଏ ଅବସ୍ଥାଟା ^ଏକପ୍ରକାର ବିକାରଗ୍ରସ୍ତ ଅବସ୍ଥା । ତେବେ ନିତାନ୍ତ ପିଲାଦିନର ଅଭ୍ୟାସ ଓ ଖୋଇ ଏକଦମ ଛାଡ଼ି ହେଉ ନାହିଁ ବୋଲି ବେଳେ ବେଳେ ଅଭ୍ୟାସ ଦୋଷରୁ କେତେବେଳେ କେଉଁଠି ମୋ ମୁଣ୍ଡଟା ଦେଖାଇ ଦଉଅଛି । ମୁଁ ଏକୁଟିଆ କାହିଁକି ? ମୋ ଭଳି କେତେଗୁଡ଼ିଏ ସୁପୁତ୍ର ଏ ମାତୃଭୂମିର ପୁତ୍ରତା ବଢ଼ାଉଅଛନ୍ତି ।

ଦିନେ ମୋର ଜଣେ ପରମ ବନ୍ଧୁ ମତେ ଭେଟିବାକୁ ଆସି ଭାରି ଦୁଃଖ ଓ ଅଭିମାନରେ କହିଲେ, ''ଆପଣଙ୍କଠାରୁ ଦେଶଟା ଅନେକ ଉଚ୍ଚ ଆଶା କରିଥିଲା, ସେ ଆଶାଟା ପାଣିଫୋଟକା ଭଳି କେଉଁଆଡ଼େ ଉଭେଇଗଲା ।'' ପୂର୍ବେ ଏହିପରି କୈଫିୟତ୍ କେତେଥର ମତେ ତଲବ ହୋଇଥିଲା, କିନ୍ତୁ ସେଥିରେ ସରଳତା ଓ ଆନ୍ତରିକତା ନ ଥିବାରୁ ମୁଁ କଥାଟାକୁ ବାଏଁ ବାଏଁ ଉଡ଼ାଇ ଦେଇଥିଲି; କିନ୍ତୁ ଏଥର ଯେଉଁ ବନ୍ଧୁ ମତେ କୈଫିୟତ୍ ତଲବ କଲେ, ସେ ବହୁ କାଳର ସୁହୃଦ୍ ତାଙ୍କର ଉକ୍ତି ଆନ୍ତରିକ ଥିବାର ଦେଖି ମୁଁ ନିରୁତ୍ତର ହୋଇ ରହିପାରିଲି ନାହିଁ । ମୁଁ ତାଙ୍କୁ ନିମ୍ନୋକ୍ତ ଭାବରେ ଉତ୍ତର ଦେଲି, ''ଭାଇ ! ଜାଣୁଛ ଯେ, ମୋର ପ୍ରକୃତି ସ୍ୱାର୍ଥଲିପ୍ସାରେ ପୂର୍ଣ୍ଣ; ବୁଝୁଛି ଯେ, ମୋର ତିଳେମାତ୍ର ସ୍ୱାର୍ଥତ୍ୟାଗ ନାହିଁ କି ହେବ ନାହିଁ; ବୁଝୁଛି ଯେ, ଦେଶର ଦୋହି ଦେଇ କେତେଗୁଡ଼ିଏ ଲୋକଙ୍କୁ ଓଲୁ ବନାଇ ନିଜର ମନୋବାଞ୍ଛା ହାସଲ କରିବାକୁ ବସିଲେ ଦେଶରେ ଘରେ ଘରେ, କାଗଜେ କାଗଜେ ମୋ ନାମ ବିଞ୍ଚି ହୋଇଯାନ୍ତା; ଦେଖୁଛି ଯେ, ମୋରି ଭଳି କେତେଗୁଡ଼ିଏ ପ୍ରକୃତଶକ୍ତି ଓ ବିବେକବିହୀନ ବ୍ୟକ୍ତି ମୁଖ, ସ୍ୱର, ଲେଖା ଓ ବକ୍ତୃତାର ଚମକରେ ଶତ ଶତ ଲୋକଙ୍କୁ ଓଲୁ ବନାଇ 'ଦେଶସେବକ' ବାନା ଉଡ଼ାଇ ଜେଜେ-କାର ପାଉଅଛନ୍ତି ଓ 'ସାଧାରଣ କାର୍ଯ୍ୟ ବ୍ରତ', 'ଦେଶସେବା ଭେକ' ଓ 'ମୈତ୍ରୀ ପତାକା' ଧରି ସେହି ଭେକ ଭିତରେ ଆପଣାର ପେଟ ପୋଷିବା ଲାଗି ଥାଳଖଣ୍ଡିମାନ ଲୁଚାଇ ରଖି ଦେଶତମାମ ଲୋକଙ୍କୁ ଚାହିଁ ଢଳକା ବନାଉଅଛନ୍ତି । ମୁଁ ମଧ୍ୟ ଦିନେ ସେହି ପନ୍ଥାରେ ପଥିକ ହୋଇଥିଲି । କିନ୍ତୁ ନିଜେ ଅନୁଭବ ଦ୍ୱାରା ବୁଝିଲି ଯେ, ଆମ ଦେଶରେ ଦେଶସେବାର ଅର୍ଥ 'ନାମ ବଡ଼ା ଦର୍ଶନ ଥୋଡ଼ା' । ଦେଶସେବକ ଲିଷ୍ଟରେ ନାମ ଉଠାଇବାକୁ ହେଲେ ଶକ୍ତି, ବିବେକ, ସ୍ୱାର୍ଥତ୍ୟାଗ, ଉଦ୍ୟମ ଏ ସବୁ କିଛି ଦରକାର ନାହିଁ - କେବଳ ଉଣ୍ଡି ଉଣ୍ଡି ଜଣେ ଜଣେ ପେଁଚ-ବାଜ ଓସ୍ତାତଙ୍କ ପାଦରେ ତେଲ ମାଲିସ କରିପାରିଲେ ଓ ତାଙ୍କ ଘରଆଡ଼େ ବେଠି କରିପାରିଲେ ଓ ତାଙ୍କ ବାଡ଼ିଆଡ଼ର ଅସନା ଅଳିଆ ଗଦା ଦେଖି ତାହା ଝାଡୁ କରିପାରିଲେ ଓ ସେ ସମୟରେ ନାକ ଟାଉଁ ଟାଉଁ କରି ନ ପାରିଲେ ଦିନାକେତେ ଉମେଦବାରି ପରେ ନାମଟା ଦେଶରେ ମାର୍କାମରା ହୋଇ ବାହାରି ପଡ଼ିବ ।

ମୁଁ ପ୍ରକୃତରେ ଦେଶର ଓ ସମାଜର ଉପକାର କରୁଅଛି କି ନାହିଁ, ଏ କଥା କମ୍ ଲୋକ ବୁଝିବେ, କିନ୍ତୁ ଓସ୍ତାତଙ୍କ ଗଳାବାଜି ଓ କଲମ ମୁନରୁ ଓ ଓସ୍ତାତଙ୍କ ପ୍ରସାଦରୁ

ସମ୍ବାଦପତ୍ରମାନଙ୍କରେ ଯେଉଁ କିଳିକିଳା ରାବ ବାହାରିବ, ଦେଶ ଲୋକେ ସେଥିର ତୁହା ଧରି ମତେ ଧନ୍ୟ ଧନ୍ୟ କରିବେ । ମୋର ମଧ୍ୟ ଦିନେ ଏହି ଧନ୍ୟ ଧନ୍ୟ ପଦ ପାଇଁ ପାଟିରୁ ଲାଳ ବହୁଥିଲା - କିନ୍ତୁ ବୟସ ବୃଦ୍ଧି ଓ ଶକ୍ତି ହ୍ରାସ ହେବା ସଙ୍ଗେ ସଙ୍ଗେ ସେ ଲାଳସା କମିଗଲାଣି ଓ ଦେଶର ଏ ସବୁ ବାହାଦୁରିଠାରୁ ମୁଁ ଯେତିକି ଦୂରରେ ରହିପାରୁଅଛି, ଆପଣାକୁ ସେତିକି ନିଶ୍ଚିନ୍ତ ବୋଲି ମନେ କରୁଅଛି । ପ୍ରକୃତରେ ଦେଖିବାକୁ ଗଲେ ଗୋଖଲେ, ଗାନ୍ଧି, ରାଣାଡ଼େ, ମାଲବ୍ୟ, ସୁରେନ୍ଦ୍ରନାଥ, ଲଜପତ ଇତ୍ୟାଦିଙ୍କ ଭଳି ଆମ ଦେଶରେ ଜଣେ କେହି ନାହିଁ - କିନ୍ତୁ ଆମ ଦେଶରେ ନୀଚ ସ୍ତାବକତା ଓ କପଟତା ଏତେ ବଢ଼ିଅଛି ଯେ, ଆମରି ଦେଶରେ, ଆମରି ଜିଲ୍ଲାରେ, ଆମରି ଗ୍ରାମରେ ପଣେ ପଣେ କ୍ଷଣଜନ୍ମା ଓ କ୍ଷୀଣକର୍ମା ଗାନ୍ଧି, ଗୋଖଲେ ଆବିର୍ଭୂତ ହୋଇଥିବାର ଆମେ କୁହାଟ ମାରୁଅଛୁଁ । ଯେଉଁ ଦେଶର ହାଲଚାଲ ଏବଂବିଧ ବିଶେଷଣବିଶିଷ୍ଟ, ସେ ଦେଶରେ ଦେଶ ସେବକଙ୍କର ଆସନ କେଡ଼େ ଉଚ୍ଚ ଓ ଚିରସ୍ଥାୟୀ, ତାହା ସହଜରେ ଅନୁମେୟ । ଦେଖୁଛି ଯେ, ଆମ ଦେଶରେ କପା କପୂର ଏକା ମୂଲ ହୋଇଅଛି, ଆମ ଦେଶରେ ପଦସ୍ଥ ବ୍ୟକ୍ତିମାନେ ବକ୍ତୃତାଭଙ୍ଗୀ ଓ ମୁଖବିବୃତି ହାସଲ କରିପାରିଲେ ତେଣିକି ତାଙ୍କ କଥା ସଙ୍ଗେ କାମର ଜମିନ୍ ଆସମାନ୍ ତଫାତ୍ ଥାଉ ପଛକେ ସେ କଥା କେହି ବୁଝିବେ ନାହିଁ । ଆମ ଦେଶର ବଡ଼ ଲୋକଗୁଡ଼ାକ ଯେଉଁ ଶିଡ଼ି ଦ୍ୱାରା ଉଚ୍ଚ ସ୍ଥାନକୁ ଚଢୁ ଅଛନ୍ତି, ସେ ଥାନ ମାଡ଼ିଲାକ୍ଷଣି ଏକା ନାତକେ ସେ ଶିଡ଼ିକୁ କଚଡ଼ାରେ ଖଣ୍ଡ ଖଣ୍ଡ କରି ତହିଁର ସତ୍ତା ଲୋପ କରି ଦେଉଅଛନ୍ତି । ଆମ ଦେଶଟାଯାକ ବର୍ତ୍ତମାନ ଚାହିଁ-ଜଳକା । ଯେ ଚାହିଁ-ଜଳକା, ତେଇଁ ଶୁଆ, କାନ ଥାଇ ବଧିର, ତୁଣ୍ଡ ଥାଇ ଜଡ଼ା ହେବାକୁ ନାରାଜ ହେଲା, ତା'ପାଇଁ ଧର୍ମଘଟ ଯେଉଁ ଦେଶର କର୍ମବୀରମାନଙ୍କ ଜୀବନର ଦୈନନ୍ଦିନ କର୍ତ୍ତବ୍ୟ, ସେ ଦେଶରେ 'ଜଣେ' ବୋଲି ସୁମାରି ହେବା ସୁଖରୁ ଦୂରରେ ରହିଲେ ମଧ୍ୟ ଗୋଟାଏ ସୁଖ ଅଛି । ଆମର କଥା ସଙ୍ଗେ କାର୍ଯ୍ୟର ସାମଞ୍ଜସ୍ୟ ନାହିଁ promise ସଙ୍ଗେ performance ର ସମତା ନାହିଁ; ଉମେଦବାରି ବେଳର ଅନୁସରଣିଆ ଅବସ୍ଥା ସଙ୍ଗେ କାମ ହାସଲ ହେଲା ପରେ ଗଉଁଦାର ଅବସ୍ଥାର ସମ୍ପର୍କ ନାହିଁ; ଗଣ୍ଡି ସଙ୍ଗେ ମୁଣ୍ଡରେ ସମ୍ବନ୍ଧ ନାହିଁ; ପୋଥି ବାଇଗଣ ସଙ୍ଗେ ବାଡ଼ି ବାଇଗଣର ଇଲାକା ନାହିଁ । ଏ ଅବସ୍ଥା ପାଇଁ ମୁଁ ଅବଶ୍ୟ କିସମତ୍ ଅନୁସାରେ ଦୋଷୀ, କିନ୍ତୁ ମୋ ଠାରୁ ଅନେକ ମାର୍କାମରା ବଡ଼ ମୁଣ୍ଡିଆମାନେ ଏହି କୁହୁଡ଼ି ପହଁରାରେ ବ୍ୟସ୍ତ । ଆମେ ଧାରାବାହିକତା, ନିୟମାଧୀନତା, ଦୃଢ଼ନୀତି, ନୈତିକ ବଳର ପାଖ ଛୁଇଁ ନାହୁଁ । ଏ ଅବସ୍ଥାରେ ଆମ ଦେଶରେ ସ୍ତାବକତା, ନୀଚ ସ୍ୱାର୍ଥ, ପରଶ୍ରୀକାତରତା, ଗଳାଢକାବାଜ ଓ କପଟତା ପୂର୍ଣ୍ଣ ମାତ୍ରାରେ ବିରାଜିତ । ଏ ସବୁ ଦିନାକେତେ ଦେଖି, ଶୁଣି, ଦିହରେ ଅନୁଭବ କରି ମୁଁ ସ୍ଥିର କରିଅଛି ଯେ, ଏ କ୍ଷେତ୍ରରେ 'ମୌନ' ହିଁ ବିବେକାନୁମୋଦିତ ପନ୍ଥା ।

ବନ୍ଧୁ ଏ କଥାଗୁଡ଼ିକ ଏକଚିତ୍ତ ହୋଇ ଶୁଣିଗଲେ, ଶେଷକୁ କହିଲେ, ''ଯେପରି ସାହିତ୍ୟ କ୍ଷେତ୍ରରେ 'Critics are cut down Poets', ସେହିପରି ରାଜନୀତି କ୍ଷେତ୍ରରେ,

'Critics are cut down Diplomats' ଅର୍ଥାତ୍ ଆପଣ କସରତ୍ କାର୍ଯ୍ୟ ନ ଜାଣି କଚଡ଼ା ଖାଇ ବର୍ତ୍ତମାନ ନିନ୍ଦୁକ ଓ ବୈରାଗୀ ବନିଅଛନ୍ତି ।''

ଏ କଥା ମିଛ ବୋଲି ଉଡ଼ାଇ ଦେବାର ମୋର 'ଜ୍ଞ' ନାହିଁ - କାରଣ ମୁଁ ମଧ ଦିନେ ଚାହିଁ ଜଳକା ବନିଥିଲି ଓ ଦେଶବାସୀଙ୍କୁ ଚାହିଁ ଜଳକା ବନାଇବାକୁ ଚେଷ୍ଟା କରିଥିଲି । କିନ୍ତୁ ଦେଶରେ ମୋଠାରୁ ବଳି ଗୁଣିଆ ବାହାରି ମୋ କରାମତ୍ ଓ ନାମକୁ ଚୂନା କରି ଆପଣା କରାମତ ଜାହେର କରି ବସିଲେ ଓ ମୋତେ ଗୋଠଖଣ୍ଡିଆ କରି ନିଆଁପାଣି ଅଟକ କରିଦେଲେ । ମୋର ପ୍ରକୃତରେ କୌଣସି ଅସାଧାରଣ ଗୁଣ, ପ୍ରତିଭା, ପ୍ରଭା, କର୍ତ୍ତବ୍ୟନିଷ୍ଠା, ପରାର୍ଥପରତା, ବିଶ୍ୱଜନୀନତା ନ ଥିଲା, କି ନାହିଁ । ଏ ସବୁ ନ ଥାଇ ସୁଦ୍ଧା ମୁଁ ଓଲୁଙ୍କ ଆଖିରେ ଧୂଳି ପକାଇ ଫୋକଟରେ କିଛି ନାମ ଓ କଉଡ଼ି ମାରିନେବାକୁ ବସିଥିଲି । ଯେଉଁମାନେ ମୋଠାରୁ ବଳିଯାଇ ମୋ ଗୁଣି-ବିଦ୍ୟାକୁ କାଟୁ କଲେ, ସେମାନଙ୍କ ଉପରେ ମୋର ଯେ ଗୋଟାଏ ବେଜାୟ ରାଗ ହେବ, ଏଥିରେ ବିଚିତ୍ର କଣ ? ଏହାହିଁ ମନୁଷ୍ୟ ପ୍ରକୃତି । ଆମ ଦେଶରେ ଠାକୁରାଣୀଙ୍କ ନିକଟରେ 'ବଳି' ନ ଦେଲେ ମନସ୍କାମନା ପୂର୍ଣ୍ଣ ଓ ଇଷ୍ଟସିଦ୍ଧ ହୁଏ ନାହିଁ । କୌଣସି କଥା ହାସଲ କରିବାକୁ ହେଲେ ବିରାଡ଼ିଟିଏ ହେଉ, କୁକୁଡ଼ାଟିଏ ହେଉ, ଛେଳି, ମେଣ୍ଢା, ପୋଡୁହ (ଅଣ୍ଡିରା ମଇଁଷି) ଏମନ୍ତ କି କିଛି ନ ·ମିଳିଲେ ଆପଣା ଦିହରୁ ରକ୍ତ ଟୋପାଏ ବଳି ଦେବା ଦରକାର । ତାହା ନ ହୋଇପାରିଲେ କାକୁଡ଼ିଟିଏ କିମ୍ବା ପାଣିକଖାରୁଟିଏ କାଟି ଠାକୁରାଣୀଙ୍କୁ ସନ୍ତୁଷ୍ଟ ଓ ବରପ୍ରଦା କରିବାକୁ ହୁଏ । ମନୁଷ୍ୟଙ୍କୁ ବଳି ଦେବା ଓ ମେରିଆ ଦେବା ଆମ ଦେଶରେ ଅଳ୍ପ ଦିନ ତଳର କଥା । ଏପରି ସ୍ଥଳରେ ମୋ ଭଳି ଗୋଟାକେତେ ମେଣ୍ଢାମୁଣ୍ଡିଆଙ୍କୁ ମା ଠାକୁରାଣୀଙ୍କ ବେଦୀ ଉପରେ ବଳିଦେଇ ତଦ୍ୱାରା ଯେବେ କେତେ ଲୋକଙ୍କର ବା ଦେଶବାସୀଙ୍କର ଆଖି ଫିଟେ ଓ ଚିଆଁ ପହଡ଼ ଭାଙ୍ଗେ, ତାହାହେଲେ ମଧ ଦେଶର ତଥା ସମାଜର ମଙ୍ଗଳ । ଆଉ ମୋର ମଧ ଜୀବନ ସାର୍ଥକ ।

ଏତଦ୍ୱାରା ବଳି ପାଇବା ଜୀବର ମଧ ପାରତ୍ରିକ ମୁକ୍ତିଲାଭ ହୁଏ ବୋଲି ଶାସ୍ତ୍ର ଡାକୁଅଛି - ଯେ ଠାକୁରାଣୀଙ୍କ ଆଗରେ ବଳି ପାଏ, ସେ ଇହଜନ୍ମରୁ ଖଲାସ ଓ ପରଜନ୍ମ ପାଇଁ ମଧ ନିଶ୍ଚିନ୍ତ । ମୁଁ ନିଜେ ଅନୁଭବ କରୁଅଛି ଯେ ବଳି ପାଇବା ଦ୍ୱାରା ମୋର ଇହାମୁତ୍ର ଉଭୟତଃ ଲାଭ । ମୋ ଭଳି ହୀନଜନ୍ମା ଓ ହୀନକର୍ମା ଲୋକ ଯେ କେବେହେଲେ ଦେଶର ତିଳେମାତ୍ର ଉପକାର କରିପାରିଥାନ୍ତା, ଏହା ଭାବିବା ବାତୁଳତା - ମୋ ଭଳି ଅଧର୍ମା ଓ ଅକର୍ମା ଲୋକଙ୍କୁ କାର୍ଯ୍ୟ କ୍ଷେତ୍ରରୁ ଘଉଡ଼ି ଦେବା ଦ୍ୱାରା ଓ କର୍ମକ୍ଷେତ୍ରର ହତା-ଫାଟକରୁ ବାହାରେ ରଖିବା ଦ୍ୱାରା ଦେଶକୁ ଅନେକ ଅତ୍ୟାଚାରରୁ ରକ୍ଷା କରାଯାଇଅଛି ଓ ସଙ୍ଗେ ସଙ୍ଗେ ମୋର ନିଜର ମଧ ଉପକାର ହୋଇଅଛି । କାରଣ ଦେଶସେବାରୁ ବାସନ୍ଦ ହୋଇ ଘରସେବା କରିବାକୁ ମତେ ଫୁରସତ୍ ମିଳିଅଛି । ଏଥିପାଇଁ କହୁଥିଲି ଯେ, ''ଅବଧାନ ! ମୁଁ ବର୍ତ୍ତମାନ ପୂରା ସଂସାରୀ ।''

ଉ.ସା. - ୨୩ଶ ଭାଗ / ୩ୟ ସଂଖ୍ୟା / ଶ୍ରାବଣ / ୧୩୨୭ ସାଲ ।

## ।। ଛବିଶ ।।

ବିଜ୍ଞାନ ସଭ୍ୟ ଯୁଗରେ, ସଭ୍ୟଜଗତ୍‌ରେ ଅନେକ ପ୍ରକାର ବାଜିଗର ଓ କସରତ୍ ଦେଖାଇଲାଣି ଓ ଦେଖାଇବ । ମନୁଷ୍ୟ ଘୋର ଜଙ୍ଗଲରୁ ବନ୍ୟ ପଶୁଙ୍କୁ ଧରି ଆଣି ତାକୁ ପୁରୁଷାନୁକ୍ରମେ ପୋଷି, ପାଳି ତାର ପ୍ରକୃତିକୁ ବଦଳାଇ ଦେଉଅଛି; ଜଙ୍ଗଲରୁ କଣ୍ଟାଗଛ ଆଣି ବୈଜ୍ଞାନିକ ପ୍ରକ୍ରିୟା ବଳରେ ତା ଦେହରୁ କଲମ ଉତାରି ଉତାରି ତା ଠାରୁ କଣ୍ଟା ଛଡ଼ାଇ ଦେଉଅଛି, ଅମଞ୍ଜି ଫଳ (seedless) ସବୁ ଉତାରି ନେଉଅଛି; ନାଲି ଫୁଲ ଫୁଟିବା ଗଛରେ ଧଳା ଫୁଲ ଫୁଟାଇ ଦେଉଅଛି; ମାଂସାହାରୀ ଜନ୍ତୁକୁ ଫଳାହାରୀ କରି ଦେଉଅଛି; ଜଡ଼ ପଦାର୍ଥକୁ ତେଜୋମୟ ସଜୀବ ପଦାର୍ଥରେ ପରିଣତ କରୁଅଛି ।

କିନ୍ତୁ ମୁଁ ଭାବୁଅଛି, ମନୁଷ୍ୟ ପ୍ରକୃତି ତ ଆଜିପର୍ଯ୍ୟନ୍ତ ଯେଉଁପରି ଥିଲା, ସେହିପରି ରହିଅଛି । ସେହି ମାନ୍ଧାତାଙ୍କ ଅମଳର ଆଦାମ୍ ଓ ଇଭ୍‌ଙ୍କ (Adam and Eve) ପ୍ରଭୃତି ତ ବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ସେହିତା ରହିଅଛି । କେତେ ନୈତିକ, ବୈଜ୍ଞାନିକ, ଆଧ୍ୟାତ୍ମିକ ଉପାୟ ଅବଲମ୍ବିତ ହେଲାଣି ଓ ହେବ, କିନ୍ତୁ ମନୁଷ୍ୟର ସେହି ଆଦିମ ସ୍ୱଭାବ - ଲୋଭ, ମୋହ, ପରଲିପ୍ସା, ହିଂସା ଇତ୍ୟାଦି, ଇତ୍ୟାଦି - ଅଚଳ, ଅଟଳ ରହିଅଛି । ସଂସାରରେ ଓ ବିଶେଷତଃ ସଭ୍ୟଜଗତ୍‌ରେ କେତେ କେତେ କବି, ଭାବୁକ, ଲେଖକ, ଭକ୍ତ, ବକ୍ତା, ବୈଜ୍ଞାନିକ, ଜ୍ଞାନୀ, ମୁନିମାନେ ଆବହମାନ କାଳରୁ ମନୁଷ୍ୟ ପ୍ରକୃତିକୁ ସୁଧାରିବାକୁ କେତେ କେତେ ପୁସ୍ତକ ଲେଖିଲେ ଓ ଉପଦେଶ ଦେଲେ ଓ ଭଜନ ଗାଇଲେ, ତଥାପି ମନୁଷ୍ୟ ପ୍ରକୃତି 'ଆଜି ଯେ ତିମିରେ - କାଲି ସେ ତିମିରେ' ରହିଅଛି । ଅନ୍ୟ କଥା ଦୂରେ ଥାଉ, ଯେ ନିଜେ ନିଖାଦ ସ୍ୱରରେ ସ୍ୱର ଚଢ଼ାଇ ''ଧାର୍ମିକ ହୁଅ, ଭକ୍ତ ହୁଅ, ରିପୁ ଦମନ କର, ପର ଧନ ପର ଦାରା ଆଡ଼କୁ ଚାହଁ ନାହିଁ ଆଦି ଉପଦେଶମାନ କଥା ଛଳରେ, ଢୁଆ, ଢଗ, ଢମାଳି, ନାଟକ, ଉପନ୍ୟାସ, ସ୍ତବ, କବଚ, ବକ୍ତୃତା ଛଳରେ ଦେଉଅଛନ୍ତି, ସେମାନେ ଆପଣା ଭେକ ପାଲଟି ପକାଇବା ମାତ୍ରକେ ତହିଁର ବିପରୀତ ଆଚରଣ କରୁଅଛନ୍ତି । ଏ ସବୁ ଦେଖି ମନରେ ହୁଏ ଯେ, ସବୁ କଥା ବଦଳୁଅଛି ଓ ବଦଳିବ; କିନ୍ତୁ ମନୁଷ୍ୟର ସେହି ଆଦିମ ପଶୁବୃତ୍ତି ବଦଳୁ ନାହିଁ କି ବଦଳିବ ନାହିଁ । ଏ ସବୁ ଆପଣା ଆପଣା ଅନୁଭବ କଥା । ମନୁଷ୍ୟ ପ୍ରତି ମୁହୂର୍ତ୍ତରେ ଯେଉଁ ଗୋଲକଧନ୍ଦାରେ ପଶେ, ସେ ଗୋଲକଧନ୍ଦାରୁ ଉଧୁରିବାର, ସେ ସମସ୍ୟା ସମାଧାନ କରିବାର ଉପାୟ ନାହିଁ । ସଭ୍ୟତା ବୋଲ, ଶିକ୍ଷା ବୋଲ, ଉପଦେଶ ବୋଲ, କୋରଡ଼ା, ବେଡ଼ି, ହରିକାଠ, ଜେଲଖାନା ଏ ସବୁ କେବଳ ପଶୁ ପ୍ରକୃତିକୁ ମାଡ଼ ଦ୍ୱାରା ଜବତ କରିବାର, ପୋଷାକ ଦ୍ୱାରା ଘୋଡ଼ାଇବାରେ ଓ ମାଡ଼ ଭୟ ଦେଖାଇ ନିବର୍ତ୍ତାଇବାର ଉପାୟାନ୍ତର ମାତ୍ର । ଗରିବ, ଅଶିକ୍ଷିତ, ମୂର୍ଖ, ମୂଢ଼ ଲୋକ ଆଦିମ ପ୍ରକୃତିକୁ ଘୋଡ଼ାଇ ରଖି ନ ପାରି ଦାଣ୍ଡରେ ଚିହ୍ନା ପଡ଼ିଯାଏ; କିନ୍ତୁ ସଭ୍ୟ, ଶିକ୍ଷିତ, ପଣ୍ଡିତ, ଜ୍ଞାନୀ ଏହି ପ୍ରକୃତିକୁ ସଭ୍ୟତା ଓ ଶିକ୍ଷାଦ୍ୱାରା ଲୁଚାଇ ରଖନ୍ତି, କେହି କ୍ୱଚିତ୍ କୋଟିକେ ଗୋଟିଏ ଏହାକୁ ସଂଯତ କରନ୍ତି ମାତ୍ର । କିନ୍ତୁ ମନୁଷ୍ୟ ମଧ୍ୟରେ ରାଜତ୍ୱ

କରୁଥିବା ପଶୁର ପଘା କି ଲଗା କିଛି ନାହିଁ - ସେ ଗୁଆଁର ପଶୁ, କିଛି କାରଣ ଶୁଣିବା ଜନ୍ତୁ ନୁହେଁ । ''ତାକୁ ଯେତେ ମାଠୁଥିବୁ ମାଠ, ସେ ସେହି ଦରପୋଡ଼ା କାଠ'' ଥିଲା, ଅଛି ଓ ଥିବ । ସଭ୍ୟଜଗତ୍‌ରେ ଏ ଯେଉଁ ମହାପ୍ରଳୟ ଓ ମହାଯୁଦ୍ଧର ଅଭିନୟ ହୋଇଗଲା, ଏଥିରେ ସେହି ପଶୁର କିଳିକିଳା, ଦାନ୍ତରଗଡ଼ା, ମୁଖବ୍ୟାଦାନ, କାମୁଡ଼ାଭିଣା, ନାତମରା ଛଡ଼ା ଆଉ କିଛି ଦେଖାଗଲା ନାହିଁ । ପୁନର୍ବାର ସେ ପଶୁଙ୍କୁ ଶାଙ୍କୋଳିରୁ ମୁକୁଳାଇ ଦେଲାକ୍ଷଣି ସେ ତାହାର ଖୋଇ ପୁନର୍ବାର ପୂର୍ବ ପରି ସଭ୍ୟଜଗତକୁ ଦେଖାଇବ ।

ଜର୍ମାନୀ ପାଶବ ବଳରେ ସମସ୍ତ ଜଗତକୁ ଜବତ କରିବାକୁ ବସିଥିଲା, ମିତ୍ରଶକ୍ତିଙ୍କୁ ୪।୫ ବର୍ଷ ଗରାଏ ଲେଖାଏଁ ପାଣି ପିଆଇ ଦେଲା ଓ ଭଗବାନ୍‌ଙ୍କ ମରଜିରୁ ମିତ୍ରଶକ୍ତିମାନେ ଆପଣା ଆପଣା ବୁଦ୍ଧି, ବଳ, କୌଶଳକୁ କେନ୍ଦ୍ରୀଭୂତ କରି ଏକ ମନ, ଏକ ମୁନ, ଏକ ଚଇତନ ହୋଇ ଜର୍ମାନୀକୁ କାଞ୍ଜିହାଉସରେ ଠେଲାଠେଲି କରି ପୂରାଇ ଅଛନ୍ତି; କିନ୍ତୁ ଏ କଥା ନିଶ୍ଚିତ ଯେ, ସେ ବନ୍ଧା ହୋଇଥିବା ପଘା ଟିକିଏ ହୁଗୁଳା ହେଲା ମାତ୍ରକେ ସେ ଫେର ଆପଣା ବିକ୍ରମ ଦେଖାଇ ତାହାର ନାଡୁଆ ଖୋଇକୁ ଜାହେର କରିବ । ଏଥିପାଇଁ ମିତ୍ରଶକ୍ତିମାନେ ବହୁ ଆଲୋଚନା ଓ ଚିନ୍ତା ପରେ ସନ୍ଧିର ସର୍ତ୍ତମାନଙ୍କୁ ଖୁବ କଷାକଷ କରିଅଛିନ୍ତି । ଏଥିପାଇଁ କେହି କେହି ମିତ୍ରଶକ୍ତିଙ୍କ ଉପରେ ଭାରି ନାରାଜ; କିନ୍ତୁ ବୃଦ୍ଧ ଚାଣକ୍ୟ କହିଅଛନ୍ତି, ''ନ ବିଶ୍ୱସେତ୍ ଅବିଶ୍ୱସ୍ତଂ'' ଅର୍ଥାତ୍ ଅବିଶ୍ୱାସୀ ଲୋକକୁ ବିଶ୍ୱାସ କରିବ ନାହିଁ । ଜର୍ମାନ ଜାତି ଓ ଜର୍ମାନ ଯୋଦ୍ଧା ଓ ଯୁଦ୍ଧର ଉଦ୍‌ଯୋକ୍ତାମାନେ ସଭ୍ୟତା ଓ ଦୟାମାୟାକୁ ଭୁଲିଯାଇ ଯେଉଁ ଆଦିମ ପାଶବ ବୃତ୍ତିକୁ ଚରିତାର୍ଥ କରି ଲକ୍ଷ ଲକ୍ଷ ନିରୀହ ପ୍ରାଣୀଙ୍କର ପ୍ରାଣ ନାଶ କରାଇଅଛନ୍ତି, ଲକ୍ଷ ଲକ୍ଷଙ୍କୁ ନିରନ୍ନ, ନିରାଶ୍ରୟ ଓ ନିରବଲମ୍ବନ କରାଇଅଛନ୍ତି, ସେହି ଜାତିଙ୍କ ହସ୍ତରେ କୌଣସି କ୍ଷମତା ପ୍ରତ୍ୟର୍ପିତ ହେଲେ ସେମାନେ ପୁନର୍ବାର ତହିଁରେ ଅସଦ୍ ବ୍ୟବହାର କରି ପୁନର୍ବାର ଦିନେ ସଭ୍ୟଜଗତକୁ ବିଲିବିଲି କରିବେ, ଏଥିରେ ଆଉ ସନ୍ଦେହ ନାହିଁ । ଏ କଥାର ସତ୍ୟତାକୁ ଇତିହାସ ବଜ୍ର ନିର୍ଘୋଷରେ ଘୋଷଣା କରୁଅଛି । ମିତ୍ରଶକ୍ତିର ନେତାମାନେ ଏହାହିଁ ଉପଲବ୍ଧି କରି ସନ୍ଧିର ସର୍ତ୍ତମାନଙ୍କୁ ଭାରି କଷାକଷ କରିଅଛନ୍ତି ଓ ଜର୍ମାନ ସମ୍ରାଟ୍‌ଙ୍କର ଅନ୍ତର୍ଜାତୀୟ ଧର୍ମାଧିକରଣରେ ବିଚାର ହେବାର ସର୍ତ୍ତ ଲିପିବଦ୍ଧ କରିଅଛନ୍ତି । ଏହି ବିଚାରର ଫଳ ପୃଥିବୀରେ ଅନ୍ୟାନ୍ୟ ଆତତାୟୀ ଶକ୍ତିଙ୍କୁ ଭବିଷ୍ୟତ୍ ପ୍ରତି ଶିକ୍ଷାରୂପେ ନିୟନ୍ତିତ କରିବ ଓ ଭବିଷ୍ୟତ୍‌ରେ କୌଣସି ସର୍ବଗ୍ରାସିଷ୍ଣୁ ସମ୍ରାଟ୍ ଅନ୍ତର୍ଜାତୀୟ ବିଧାନମାନ ଲଂଘନ କରିବାକୁ ଦ୍ୱିଧା କରିବେ । ଯେବେ ଏତେ ବହୁବର୍ଷ ବ୍ୟାପୀ ରକ୍ତପାତ, ନରହତ୍ୟା, ସ୍ତ୍ରୀବାଳକ ହତ୍ୟା, ଦେଶନାଶ, ଦୁର୍ଭିକ୍ଷ, ବିପ୍ଲବ, ଧନ ଓ କ୍ଷମତାକ୍ଷୟ ପରେ ସଭ୍ୟଜଗଦ୍ କିଛି ଶିକ୍ଷା ଲାଭ ନ କରିବ, ତାହାହେଲେ ଏହା ସବୁ ପଣ୍ଡ ହେବ । ଯଦି ଏ ମହା କୁରୁକ୍ଷେତ୍ର ପରେ ଜଗତରେ ଓ ଆପାତତଃ ସଭ୍ୟଜଗତ୍‌ରେ ଶାନ୍ତିର ଭିତ୍ତି ସ୍ଥାପିତ ହୋଇ ନ ପାରିବ, ତେବେ ବୁଝିବାକୁ ହେବ ଯେ, ସଭ୍ୟଜଗତ୍‌ର ଉନ୍ନତିର ଆଶା ଦୁରାଶା ମାତ୍ର ।

ଉ.ସା. - ୨୩ଶ ଭାଗ / ୫ମ ସଂଖ୍ୟା / ଭାଦ୍ର / ୧୩୨୭ ସାଲ ।

## ।। ସତେଇଶ ।।

''କିମାଶ୍ଚର୍ଯ୍ୟମତଃ ପରଂ ।'' ''ଭିତଃ କିଂ ତତଃ କିଂ ତତଃ କିଂ ତତଃ କିଂ ।'' ଏ ଦୁନିଆ କେବଳ ଅଜବ ତାମସାର ଲୀଳାଭୂମି । ଏଥିରେ ନିତି ନିତି ଆଶ୍ଚର୍ଯ୍ୟ ଘଟନାମାନ ଅଭିନୀତ ହେଉଅଛି । କବି, ଋଷି, ଦାର୍ଶନିକ, ପଣ୍ଡିତ, ବୈଜ୍ଞାନିକ, ଜ୍ଞାନୀ, ଏହିପରି କେତେ କେତେ ମହାବଳୀ ଗଲେଣି ଏ ସଂସାରର ଘଟନା ବୈଚିତ୍ର୍ୟ ଦେଖି ଓ ଅନୁଭବ କରି ଶେଷକୁ ସମସ୍ତେ ଏକମୁଖରେ ବୋବାଳି ପକାଇଅଛନ୍ତି, ''କିମାଶ୍ଚର୍ଯ୍ୟମତଃ ପରଂ ।'' ''କିସ ପୁଣି ଦେଖା ନ ଯାଏ ଯେବେ ଥାଇ ଜୀବରେ ।'' "Oh ! Wonder of wonders is this universe !" ଏଥି ମଧ୍ୟରେ ପୁଣି ବିଶେଷ ଆଶ୍ଚର୍ଯ୍ୟର କଥା - 'ମନୁଷ୍ୟର ପ୍ରକୃତି' । ମନୁଷ୍ୟ ଜାଣୁଅଛି ଯେ, ଜର ବେଳେ ପାଣି ପିଇଲେ ସନ୍ନିପାତ କଫ ଧରିବ, ତେବେ ସୁଦ୍ଧା ଯେଡ଼େ ଜ୍ଞାନୀ ହେଉ ପଛକେ ତା ଦିହରେ ଖଇ ଫୁଟିଲା ବେଳେ ତା ଆଗରେ ତାଟିଆଏ ପାଣି ରଖିଦିଅ, ଦେଖିବା ଦେଖି ଜର ବାଉଳାର କରାମତ ବେଶି ନା ସ୍ୱାସ୍ଥ୍ୟରକ୍ଷା ନିୟମାଭିଜ୍ଞତାର ତେଜ ବେଶି ? ମହାପାପ, ପ୍ରଲୋଭନ ମଧ୍ୟରେ ସିଦ୍ଧପୁରୁଷଙ୍କୁ ଅବଲୀଳା-ଗତ ଓ ଅବାଧ ପ୍ରବେଶ୍ ଅଧିକାର ଦିଅ, ଦେଖିବା ଦେଖି କେତେ ଜଣ ସେଥିରୁ ବାହାରିଲା ବେଳେ ତାଙ୍କ ଦିହ ମୁଣ୍ଡରେ ଫୋଟକା, ଘୋଷଡ଼ା ଦାଗ, କାଦୁଅ ବୋଳା ଚିହ୍ନ ଓ ଦ୍ୱାରିକା ଛାପା ମରା ହୋଇ ନ ଥିବ ? ମନୁଷ୍ୟ ଏ ସବୁ ଘଟନା ଯେତିକି ଦେଖେ ଓ ଏ ମାୟା କୁହୁକର ଦାଉକୁ ଅଙ୍ଗେ ନିଭାଇ ଅନୁଭବ କରେ, ମନୁଷ୍ୟ-ପ୍ରକୃତିର ବୈଚିତ୍ର୍ୟ ସେତିକି ଉପଲବ୍ଧି କରୁ କରୁ ସ୍ତମ୍ଭୀଭୂତ ହୁଏ । ଏ ସଂସାରର ଅଳିଆ ଅସନଟିଆ ମଇଳା ବଣରେ ପଣ୍ଡିତେ ଆପଣେ ପଟାକେତେ ଘୋଷରା ଘୋଷରି ପାଇ ସାରି ଶାନ୍ତିଲାଭାର୍ଥ ଶ୍ରୀକ୍ଷେତ୍ରକୁ ଯାଇ ଚକାଡୋଳାଙ୍କୁ ଦର୍ଶନ କଲାବେଳେ 'ଶିବା ପଥର ଜଗା କାଠ' ଉକ୍ତିର ମୂଳମନ୍ତ୍ର ଖୋଜି ଖୋଜି ସିଦ୍ଧାନ୍ତ କଲେ ଯେ - ''ସ୍ମାରଂ ସ୍ମାରଂ ସ୍ୱଗୃହଚରିତଂ ଦାରୁଭୂତୋ ମୁରାରିଃ'' ଅର୍ଥାତ୍ ଖୋଦ୍ ବଳିଆରଭୁଜ ମହାପ୍ରଭୁ ଆପଣା ଘରର ହାଲଚାଲ ଦେଖି ଦେଖି କାଠ ପାଲଟିଗଲେ ପରା ! କାଠମୁହାଁ ବନିଗଲେ ପରା !

ଏହି ଜଗତକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ, ଏକ ବହିର୍ଜଗଦ୍ ଅର୍ଥାତ୍ ସ୍ଥାବର ଜଙ୍ଗମ ସୃଷ୍ଟି (microcosm) ଓ ଅନ୍ୟଟି ଅନ୍ତର୍ଜଗଦ୍ (microcosm) । ବହିର୍ଜଗତରେ ସୃଷ୍ଟିକର୍ତ୍ତା ଯେଉଁ ଓସ୍ତାତି ହାତ ଦେଖାଇ ଆସୁଅଛନ୍ତି, ତାହା ଦେଖି ସୃଷ୍ଟି ଆଦ୍ୟରୁ ଅବଧି ମନୁଷ୍ୟ ଚକିତ ଓ ସ୍ତବ୍ଧ ହୋଇ ଆସିଅଛି; କିନ୍ତୁ ଅନ୍ତର୍ଜଗଦ୍ ତହିଁରୁ ବଳି ବିଚିତ୍ର ଓ ପ୍ରହେଳିକାମୟ । ବହିର୍ଜଗତରେ ବିଜ୍ଞାନ, ସ୍ୱାସ୍ଥ୍ୟରକ୍ଷା, ଗଣିତ, ଭୂଗୋଳ ଆଦି ଏକପ୍ରକାର ଅଟେ । କିନ୍ତୁ ଅନ୍ତର୍ଜଗତର ସମସ୍ୟାମାନ ଜଟିଳ, ସମସ୍ୟା ପୂର୍ତ୍ତି ଆହୁରି ଜଟିଳ, ସମସ୍ୟା-ସିଦ୍ଧି ତହୁଁ ବଳି ଜଟିଳ - ଚରାଚର ସୃଷ୍ଟିରେ ଯାହା ଅସମ୍ଭବ, ଅନ୍ତର୍ଜଗତରେ ତାହା ପ୍ରତିନିୟତ ଘଟୁଅଛି । ଏହି ଅନ୍ତର୍ଜଗତଟା ଆଉ କିଛି ନୁହେଁ; ମନୁଷ୍ୟର

ପ୍ରକୃତି (Human nature) । ପାଠ ଡାକୁଅଛି ଯେ, ମନୁଷ୍ୟ ପାଞ୍ଚ ମନ ପଚିଶ ପ୍ରକୃତି ନେଇ ଆତଜାତ ହେଉଅଛି । ଏ ପାଞ୍ଚ ମନ ପଚିଶ ପ୍ରକୃତି ମଧ୍ୟରେ ସବୁବେଳେ ନମ୍ବରି, ସରାସରି, ଫଉଜଦାରୀ, ଜନାକାରୀ, ଜଳଡୁବି, ଜମାଏତବସ୍ତ, ଓସ୍ତାତି ପେଞ୍ଚ ଚାଲିଅଛି । ତୁମ୍ଭେ ବହିର୍ଜଗତରେ ଶୋଉଛ, ବସୁଛ, ଖେଳୁଛ, ଖାଉଛ, ଘର କରୁଛ, ନିମିତ୍ୟ କରୁଛ, କଚେରି କରୁଛ, ମକଦ୍ଦମା ବୁଝୁଛ, ରାଜ୍ୟ ଚଳାଉଛ, ସଭା କରୁଛ, ସମ୍ବାଦପତ୍ର ସମ୍ପାଦନ କରୁଛ; ଏ ସବୁ ବହିର୍ଜଗତର ନିୟମ ଅନୁସାରେ ଠିକଣାମତେ ଚାଲିଅଛି ଓ ଲାଗିଅଛି, ଟିକିଏ ଉଁ ଚୁଁ ହେବାର ଢୁ ନାହିଁ । କିନ୍ତୁ ତେଣେ ଅନ୍ତର୍ଜଗତରେ ଏ ପାଞ୍ଚ ମନ ଓ ପଚିଶ ପ୍ରକୃତି ବହିର୍ଜଗତର ଅବସ୍ଥା ପ୍ରତି ଭ୍ରୂକ୍ଷେପ ନ କରି ତାଙ୍କ ପ୍ରଥମ ଏତଲାଇ (First information), ଫଉଜଦାରୀ ଦରଖାସ୍ତ (petition of complaint), କଲମିଇଜାହାର (oral statement), ହଲପାନ ଇଜାହାର (statement on oath), ନିୟମସ୍ୱୀକୃତ (affidavit) ଆଦି ତଦବିରରେ ଲାଗିଅଛନ୍ତି । ସେଠାରେ "ସାହୁକୁ ଖାତକ ଗଞ୍ଜି ମାରୁଅଛି, ବାଡ଼ ଭାଙ୍ଗି ପଳାଉଛି ବେଉସା" । "ପିମ୍ପୁଡ଼ି ବାପୁଡ଼ା ବିଭା ହୋଇଗଲା, ଗଗନେ ଉଡ଼ିଲା ଧୂଳି, ବିଲର କଙ୍କଡ଼ା ମୃଦଙ୍ଗ ଧଇଲେ ବେଙ୍ଗ ଦେଲେ ହୁଳହୁଳି ।" ସେଠାରେ ଅଜପା ଜପା, ଅମପା ମପା, ଅଟପା ଟପା, ଅକଥା କଥା, ଅଖିଆ ଖିଆ, ଅଦିଆ ଦିଆ, ଅଦେଖା ଦେଖା, ଅଶୁଣା ଶୁଣା, ଅଛୁଆଁ ଛୁଆଁ ଲାଗିଅଛି । ଭକ୍ତ ଏ ପ୍ରହେଳିକାମୟ ଲୀଳା ଦେଖି ବିହ୍ୱଳ ଓ ସ୍ତବ୍ଧ ହୋଇ ହୁଲର ପକାଇ ଖଞ୍ଜଣି ଟିପି ଡକା ଛାଡୁଅଛି - "ବାଇ ମନ ରେ ! ତୁ କି ହୋଇଲୁ ବାଇ । ଯେତେ ବୁଝାଇଲେ ବୁଝିଲୁ ନାହିଁ । ବାଇ ମନ ରେ (ଇତ୍ୟାଦି) ।" ବାହାରେ ଦେଖିଲା ବେଳକୁ ଏତେ ଆଇନ, କାନୁନ, ବିଧି, ଉପବିଧି, ନିଷେଧ, ପ୍ରତିଷେଧ, ପ୍ରତିଲିପି, ପାଣ୍ଡୁଲିପି, ପିଙ୍ଗଳକୋର୍ଡ଼, କାର୍ଯ୍ୟବିଧି, ଆଇନ, ପ୍ରମାଣ ଆଇନ, ମିତାକ୍ଷରା, ଦାୟଭାଗ, ବ୍ୟବସ୍ଥା, ସନନ୍ଦ, ଛାଡଁ ଚିଠି, ସିହା, ଚାଲାଣ, ଆମଦାନୀ ରପ୍ତାନୀ, ଆୟବ୍ୟୟ, ବଜେଟ୍, ଗେଜେଟ୍, ବାଇ-ଲ (bye-law), ସାଜସଜ୍ଜା, ଅଳଙ୍କାର ଜହୁରାତ  ଆବରଣ ବିବରଣ, ମାଲି ମାମଲା, ଦେବାନ ଫଉଜଦାରୀ, ହାକିମି ହୁକୁମାତି, ନିତ୍ୟନୈମିତ୍ତିକ କାର୍ଯ୍ୟ ଚାଲିଅଛି - କିନ୍ତୁ ଅଣ୍ଟାରୁ କଞ୍ଚି କାଢ଼ି କୋଲପ ଫିଟାଇ ଘର ଭିତରକୁ ଚାହିଁଦେଲା ବେଳକୁ ସେଠାରେ ଆଇନ, କାନୁନ, ବିଧି, ଉପବିଧି ଆଦି ସବୁ ନଦାରଦ । ହାକିମ ମିସଲରେ ବସି ପାଞ୍ଚ ଆଇନ ମୁତାବକ ପରପୁଅକୁ ମାସେ ଘଣାରେ, ମାସେ କତାବାଡ଼ିଆରେ, ମାସେ ତେଲ ପେଡ଼ିବାରେ, ମାସେ ଡ଼ିଙ୍କି କୁଟିବାରେ ଲାଗିବାର ବରାଦ ଦେଇସାରି ମିସଲରୁ ଓହ୍ଲାଇ ଘରେ ପହଞ୍ଚି ଦେଖିଲାବେଳକୁ ଘରପୁଅ ଜଙ୍ଘରେ ପୋଖରୀପାଣି ବସି ମଇଲା କରି ସାରିଲାଣି । ଏଥିକି ଚାରା କାହାର ?

'ପୋଥି ବାଇଗଣ' ପୋଥିଏ ପୋଥିଏ ରହିଲା । 'ବାଡ଼ି ବାଇଗଣ' ବାଡ଼ିରେ ଫଳି ଘରେ ପନିପରିବା ମଧ୍ୟରେ ସୁମାରି ହୋଇ ତଦ୍ୱାରା ଆମ ଗୁଜୁରାଣ ମେଣ୍ଟୁ ଅଛି - ଆମେ

ଦେଖୁଥାଉଁ ଯେ, ଆମର ଦାଣ୍ଡ ପାଇଁ ଗୋଟିଏ ନିଶାପ, ଆପଣା ଘର ପାଇଁ ଆଉ ଗୋଟିଏ ଅଲଗା ମନଗଢ଼ା ନିଶାପ । ଦାଣ୍ଡ ମାମଲତରେ ଯେଉଁ ନ୍ୟାୟ ଖଟାଇ ଆମେ ଗାଦିରେ ବସି ଯେଉଁପରି ଡିଗ୍ରୀ ଡିସ୍‌ମିସ୍ ହୁକୁମ ଶୁଣାଇ ଦେଉଅଛୁଁ, ଆମରି ଘର ମାମଲତ ବେଳକୁ ସେ ନ୍ୟାୟ ସବୁ କେଉଁ ଆଡ଼େ ଫସର ଫାଟି ଯାଉଅଛି ! ପରକୁ ବୁଦ୍ଧି ଦେଲା ବେଳକୁ ଆମେ ବୃହସ୍ପତିଙ୍କ ବଡ଼ବାପା ବନିଥାଉଁ; କିନ୍ତୁ ଆପଣା ଉପରେ ପଡ଼ିଲା ବେଳକୁ ଆମେ ବଙ୍କା ଓ ଉଲୁ ବନିଯାଉଁ । ଏହାଠାରୁ ବଳି ସଂସାରରେ ଆଶ୍ଚର୍ଯ୍ୟତର ଆଉ କଣ ଅଛି ? ମୁହଁରେ ସମସ୍ତେ କହୁଥାଉଁ, ପାଠରେ ସମସ୍ତେ ପଢୁଥାଉଁ, ଗୁରୁ କାନରେ ସମସ୍ତେ ଶୁଣୁଥାଉଁ ଯେ, ଏ ସଂସାରରେ ବଡ଼ତି ଅଢ଼େଇ ଦିନିଆ ପାଣି ଫୋଟକା, ଅର୍ଥ ଅନର୍ଥର ମୂଳ, ଧନ ଜନ ଦାରା ସୁତ ଆଦି ସବୁ ମିଥ୍ୟା, 'ମହୀମଣ୍ଡଳେ ଜନ୍ମ ହୋଇ, ଦେବତା ହୋଇଲେ ମରଇ,' ପରଦ୍ରବ୍ୟ ଲୋଷ୍ଟ୍ରବତ୍, ପରଦାରା ମାତୃବତ୍; କିନ୍ତୁ କାର୍ଯ୍ୟକ୍ଷେତ୍ରରେ ଆମ ମଧ୍ୟରୁ କେତେ ଜଣ ଏ ସବୁ ସତ୍ୟକୁ, ଏ ସବୁ ଉପଦେଶକୁ, ଏ ସବୁ ଗୁରୁବଚନକୁ ପ୍ରତିପାଳନ କରିଥାଉଁ ? ପରପୁଅ ଆମ ଘରେ ମୂଲ ଲାଗି ଯେବେ ସେ ନିଃଶ୍ୱାସ ମାରିବା ପାଇଁ, ତା କପାଳରୁ ଶ୍ରମଝାଳ ପୋଛିବା ପାଇଁ, ତା ଅଣ୍ଟା ସଳଖିବା ପାଇଁ, କିମ୍ବା ଦାମ୍ ମାରିବା ପାଇଁ, ଖରା ବରଷା ପାଳିବା ପାଇଁ, ଆଣ୍ଠୁ ପିଠି ସଳଖ କରିବା ପାଇଁ ଦଣ୍ଡେ ଠିଆ ହେଲା, ତେବେ ଆମ କାମରେ ଖଇଚା ହେଲା ବୋଲି ଆମେ ତା ଉପରେ ଗେଧ ମାଙ୍କଡ଼ ଭଳିଆ ଖିଙ୍କାରି ହୋଇ ଉଠୁଁ ଓ ସନ୍ଧ୍ୟା ବେଳକୁ ତାହାର ପଡ଼ିକାଟ କରିଦେଉଁ । ଏ ତ ଭଲ କଥା, ଏଥିରେ ଆମକୁ କେହି କାଇଲ୍ କରିପାରିବେ ନାହିଁ । ମୁଁ ହକ୍ କଉଡ଼ି ଗଣି ଦେବି, କଉଡ଼ିର ଉପଯୁକ୍ତ କାମ ମୁଁ ନ ପାଇଲେ ମୂଲ କାଟିଦେବି; ଏ ତ ଧରାବନ୍ଧା କଥା, ନ୍ୟାୟାନୁମୋଦିତ ପନ୍ଥା; କିନ୍ତୁ ପୁଅ ବେଳକୁ ଏହି ଯେଉଁ ଆଇନ ଜାରି କଲି, ମୁଁ ପର ଘରେ ମୂଲ ଲାଗିଲା ବେଳକୁ ମୋର ଏ ହିସାବ ଓ ନ୍ୟାୟ ଠିକ୍ ରହେଟି କି ? ସେତେବେଳକୁ ଆଉ ଗୋଟିଏ କଣ୍ଟ (standard) ବାହାରି ପଡ଼େ ! ଏହି ବିଚିତ୍ର କାଣ୍ଡର କୈଫିୟତ୍ (explanation) ଖୋଜୁ ଖୋଜୁ ମନୁଷ୍ୟ ଗୋଲକଧନ୍ଦାରେ ଧନ୍ଦି ହୋଇଯାଏ । ଏହି 'ସସିମିରା' ସମସ୍ୟାର (solution) ଦରାଣ୍ଡୁ ଦରାଣ୍ଡୁ ମନୁଷ୍ୟର ଦାନ୍ତ ପଡ଼ିଯାଏ, ଆଖି ଜଳକା ହୋଇଯାଏ, ପାଟି ଖନି ମାରିଯାଏ, ବାଳ ପାଚିଯାଏ, ଗୋଡ଼ ଥର ଥର ହୋଇଯାଏ, ଦିହହାତ କୋଲ ମାରିଯାଏ, ଅଙ୍ଗପ୍ରତ୍ୟଙ୍ଗ ଗୋଦରା ହୋଇଯାଏ; ତଥାପି ଏ ସମସ୍ୟାର ସନ୍ତୋଷଜନକ ସାଧନା ହୋଇପାରେ ନାହିଁ । ଏହାକୁ ହିଁ ସାଧନା କରି କୃତକାର୍ଯ୍ୟ ହେବା ପାଇଁ ସତ୍ୟ, ତ୍ରେତା, ଦ୍ୱାପର, କଳି ଏପରି ତେପନ ଗଣ୍ଡା ଯୁଗରେ ଚତୁର୍ମୁଖ, ଶତମୁଖ, ସହସ୍ରମୁଖ, କୋଟିମୁଖ ଏପରି କେତେ କେତେ ବ୍ରହ୍ମା ଥକିଗଲେଣି, ବ୍ରହ୍ମାଙ୍କ ପରମାୟୁରୁ ପ୍ରଥମ ପରାର୍ଦ୍ଧ ଭୋଗ ସରି ଦ୍ୱିତୀୟ ପରାର୍ଦ୍ଧ ଭୋଗ ହେବାକୁ ଲାଗିଲାଣି; ତଥାପି ବହିର୍ଜଗତ୍ ଓ ଅନ୍ତର୍ଜଗତ୍‌ର ଏହି ବୈଷମ୍ୟର ସମତା କେହି କରିପାରିଲା ନାହିଁ; ବ୍ରହ୍ମାଙ୍କ ଦ୍ୱିତୀୟ ପରାର୍ଦ୍ଧ ଶେଷ ବେଳକୁ ମଧ ଏ ସମସ୍ୟା ଏହିପରି ଅସିଦ୍ଧ ଅପୂର୍ଣ୍ଣ

ରହିଥିବ । ଏହା ମନୁଷ୍ୟ ଯେତିକି ବେଶି ଭାବେ, ସେତିକି ବେଶି ବେଶି କୁହୁଡ଼ି ମାଡ଼ିଆସେ, ଆଖିରେ ପରଳ ମାଡ଼ିଯାଏ ।

ପରୋପଦେଶେ ପାଣ୍ଡିତ୍ୟ - ପର ଘର ପାଇଁ ବୁଦ୍ଧି ଅଛ ବହୁତ ସମସ୍ତଙ୍କ ଜିଭ ଆଗରେ ଥୁଆ; କିନ୍ତୁ ଆପଣା ଘରର ସରଜମିନ୍ ତଦାରଖ ବେଳକୁ ଯେଉଁ ସିଦ୍ଧି ଓ କୃତିତ୍ୱ ଦରକାର, ତାହା ଆମ ଭିତରେ କେତେ ଜଣଙ୍କର ଅଛି ? ଏପରି ମଧ ହୋଇପାରେ ଯେ, ବ୍ୟକ୍ତିଗତ ଭାବରେ ଦେଖିବାକୁ ଗଲେ ମୁଁ ଷୋଳପଣ ସ୍ୱାର୍ଥପର, ନୀଚ ପ୍ରକୃତିକ, ବକ ଧାର୍ମିକ (hypocrite) ଇତ୍ୟାଦି ବହୁବିଧ ବିଶେଷଣ ବିଶିଷ୍ଟ; ମୁଁ ଦୁନିଆର ନିଶାପ ସଙ୍ଗେ ମୋର ଘରହିସାବୀ (କୋଦିଣ୍ଡା) ନିଷ୍ପାପର ସାମଞ୍ଜସ୍ୟ ଘଟାଇବାକୁ ଅକ୍ଷମ ହେଲି । ମୋ ଭଳିଆ ଊଣେଇଶ ଗଣ୍ଡା ଅକାମିକା ଲୋକଙ୍କ ଦ୍ୱାରା ଦୁନିଆରେ ଯାଏ କେତେ ଆସେ କେତେ ? କିନ୍ତୁ ମୋର ଏ ଦୁନିଆର ହାଟରେ ସାଇପଡ଼ିଶା, ବନ୍ଧୁବାନ୍ଧବ, ପ୍ରିୟାପ୍ରୀତି, ଭାଇକୁଟୁମ୍ବ, ସରଦାର ବିରାଦର, ସାହୁ ଖାତକ, ଜମିଦାର ରଇତ, ଜ୍ୱୋଇଁ ଭଣଜା, ବାପ ଅଜା, ହାକିମହୁକୁମା, ଜମାଦାର ତହସିଲଦାର, ପାତ୍ରମନ୍ତ୍ରୀ, ଚାକର ନଉକର, ମୂଲିଆ କୋଠିଆ, ମାଷ୍ଟର ପଣ୍ଡିତ, ସାଙ୍ଗସୁଖ, ପୁଅନାତି, ଭାବଦୋସ୍ତ, ଚିହ୍ନାପରିଚୟ, ଗାଉଁଲୀ ସହରୀ, ମୁନିଋଷି, ଗୁରୁଚେଲା, ବାବାଜି ବୈଷ୍ଣବ, ରାମାଉତି କାମାଉତି, ଓକିଲ ମହକିଲ, ଓସ୍ତାଦ୍ ସାଗିରଦ୍, ଦରବାରୀ ମାମଲତକାର, ଦେଶୀ ବିଦେଶୀ ଇତ୍ୟାଦିଙ୍କ ସଙ୍ଗେ ନାନା କ୍ଷେତ୍ରରେ, ନାନା ସ୍ଥାନରେ, ନାନା ଅବସ୍ଥାରେ, ନାନା ଘଟନାଚକ୍ରରେ, ନାନା ଉପଲକ୍ଷରେ, ନାନା ପ୍ରସଙ୍ଗରେ, ନାନା ଛଳରେ, ନାନା ରଙ୍ଗରେ ଦେଖାସାକ୍ଷାତ୍, ଭାବ ଲାଭ, ରଜ ଘସ, ଝିଙ୍କା ଓଟରା, ଧକମ୍ ଧକା, ପାରଉତାର, ଫେର ଫରିଆଦି, ଲେଖାପଢ଼ି, କଥମ୍ କଥା, ରଗାରଗି, ଦୁଃଖସୁଖ, ଛଳ ପରିହାସ, ଆଳାପ ପରିଚୟ, କୁହାବୋଲା, ଠାରଠୁର ଆଦି ହୋଇଅଛି; କିନ୍ତୁ ଏଥି ଭିତରୁ ଜଣେ କାହାକୁ ମନ ମୁତାବକ ପାଇଲି ନାହିଁ, ଯେ ବହିର୍ଜଗତ୍ ଓ ଅନ୍ତର୍ଜଗତ୍‌ର ସମତା ବିଧାନ କରିବାକୁ ସମର୍ଥ ହୋଇଅଛନ୍ତି, ଯାହାଙ୍କ ରାଜ୍ୟରେ ବାହାର ପାଇଁ ଯେଉଁ ଆଇନ୍, ଭିତର ପାଇଁ ସେହି ଆଇନ୍, ପର ପାଇଁ ଯେଉଁ ନିଶାପ, ଘର ପାଇଁ ସେହି ନିଶାପ । ମୁଁ ଅନେକ 'ଜୁଆ' ଓ 'ହୋ' ଦେଖିଲି ଓ ଶୁଣିଲି, କହିଲି ଓ ଲେଖିଲି, ଶିଖିଲି ଓ ସାଧିଲି - ଦେଶସେବା, ସାର୍ବଜନୀନ ମୈତ୍ରୀ ବ୍ରତ, ବିଶ୍ୱ ପ୍ରେମ, ମାତୃ ପୂଜା, ମାତୃଭୂମି ଉଦ୍ଧାର, ସମାଜ ସଂସ୍କାର, ପରଦୁଃଖକାତରତା, ଆନ୍ତରିକ ସ୍ନେହୋଚ୍ଛ୍ୱାସ, ବିଶ୍ୱଜନୀନ ଅଭେଦଭାବ, ନିଃସ୍ୱାର୍ଥ ଦାନ, ଲୋକଶିକ୍ଷା ବ୍ରତ, ଦେଶହିତୈଷିତା, ଏ ସବୁ ଶିରୋନାମା କେବଳ ପୋଥିଗତ, ମୁଖଗତ, କାଗଜକଲମଗତ - 'ଘତ' ବା 'ବୋଲି' ରେ ପରିଣତ ହେଉଅଛି । ବାହାର ଢଙ୍ଗ ଓ ଭଡ଼ଙ୍ଗ ସଙ୍ଗେ ଭିତରର ମାଲ ଓ କାମର ଜମିନ୍ ଆସମାନ୍ ଫରକ ପଡୁଅଛି । ବହୁ ଦୂରରୁ ବଡ଼ିଆ ନାମ ଶୁଣି ଓ ବାନା ଉଡ଼ିବାର ଦେଖି ହୃଦୟର ଭକ୍ତି କୁମ୍ଭ ପୂର୍ଣ୍ଣ କରି ହାତରେ ଧରି ମୂର୍ଦ୍ଧନା ଅଭିଷେକ କରିବାକୁ ସରଜମିନରେ ଗଡୁ ପିଢ଼ା ଘେନି

ଗମ୍ଭୀରା ଭିତରେ ପହଞ୍ଚି ଦେଖିଲା ବେଳକୁ ଆସ୍ଥାନ ଓ ଶକ୍ତି ଦିହଯାକ ଖାଲି ଲାଙ୍ଗୁଡ଼ା ପୋକ ଲୁଚାଏ ସାଲୁସାଲୁ ହେଉଅଛନ୍ତି ଓ ବଦବୋଇ ଉଠୁଅଛି । ସବୁଠାରେ ଦେଖିଲି, 'ନାମ ବଡ଼ା ଦରଶନ ଥୋଡ଼ା', 'ମାରେ ସିପାହି ନାମ ସରଦାରକା' ହେଉଅଛି । ଯେ ବାହାରକୁ ଛାପ ଚିକ୍‌କଣ ଦିଶୁଅଛି, ପାଖକୁ ଗଲାବେଳକୁ ସେ ଚିକଣିଆ କେବଳ ମହଣ ବୋଳା ବନହଳଦୀ ମଖା, ଆରିଶିସଜଡ଼ା, କଲିସାଉଁଳା,ସୁନ୍ଥାକଟା, ପାନିଆମରା, ଟୋପିଦିଆ ମୁଖଶିଙ୍ଗାର ମାତ୍ର । ନିରେଖି କରି ପାଖରେ ଉଖୁରେଇଲା ବେଳକୁ ଦିହ ଫାଟି, କାଠ ବରୁଣ ଓ ଧଳାଛଉ ଓ ଟାଆଁସା ରୁମ ଗୁଡ଼ାଏ । ସବୁ ଦେଖି ଆଖି ଜଳକା ହୋଇଅଛି ଓ ହେଉଅଛି । ଏ ସବୁ ଦେଖି ଭକ୍ତକବି ବିହ୍ୱଳ ସ୍ୱରରେ ଚିତ୍କାର କରିଅଛନ୍ତି - ''କୋଟି ମନୁଷ୍ୟ ମା ଗୋ ! ଧରିଅଛୁ କୋଳେ ଗୋଟିଏ ମନୁଷ୍ୟ କିନ୍ତୁ ନ ଦେଖିଲି ଡୋଳେ ।'' ଏହି 'କୋଟିକ' ମଧ୍ୟରେ ମୁଁ ଜଣେ ଓ ଏହି 'ଗୋଟିକ' ମୁଁ ନୁହେଁ, ମୁଁ ଏତିକିମାତ୍ର ଦୃଢ଼ ରୂପେ ଉପଲବ୍ଧି କରୁଅଛି ମାତ୍ର । ଏ ସବୁ ଦେଖି ସ୍ୱତଃ କେତେଗୁଡ଼ିଏ ପ୍ରଶ୍ନ ମନରୁ ଉଦୟ ହୋଇ ତହିଁର ଉତ୍ତର ମିଳି ସେଗୁଡ଼ିକ ମନକୁ ଉଭେଇ ଯାଉଅଛି ।

ଶିକାର ବେଳେ କୁକୁରକୁ ପୋଖରୀ ମାଡ଼େ କାହିଁକି ? କାର୍ଯ୍ୟ କ୍ଷେତ୍ରରେ ମନୁଷ୍ୟ ବିବେକ ହରାଏ କାହିଁକି ? ଆପଣାର ଦୋଷ ଦୁର୍ଗୁଣଗୁଡ଼ାକ ଆପଣା ଆଖିକୁ ଛୋଟ ଦିଶେ କାହିଁକି ? ମନୁଷ୍ୟ ସଂସାରରେ ଠେକି କରି ସୁଦ୍ଧା ଶିଖେ ନାହିଁ କାହିଁକି ? ପ୍ରତିଦିନ ହଜାର ହଜାର ଲୋକ ଯମ ମନ୍ଦିରକୁ ଯାତ୍ରା କରିବାର ଦେଖି ଅବଶିଷ୍ଟ ଲୋକେ ଚିରାୟୁ କାମନା କରନ୍ତି କିଆଁ ? ମୁଁ ବଡେଇଦିଏ ପରକୁ, ବୁଦ୍ଧି ନ ଆସେ ଘରକୁ କିଆଁ ? ଆପଣା ସୁନା ତ ଭେଣ୍ଡି, ପର ସଙ୍ଗେ କିଆଁ ବାଳ ଧରାଧରି ? ମନୁଷ୍ୟ ଆପଣାର କର୍ତ୍ତବ୍ୟ ଓ ଦାୟିତ୍ୱ ସବୁବେଳେ ହେଜି ନ ପାରେ କିଆଁ ? ମନୁଷ୍ୟ ଜାଣିଶୁଣି ପାପାଚାର, ଅନ୍ୟାଚାର, ଅତ୍ୟାଚାର, ଅନାଚାର, ଅବିଚାର, ଅଭିଚାର, ଅପଚାର, କଦାଚାର, ଗ୍ରହାଚାରରେ ପଡ଼େ କିଆଁ ? ପର ଆଖିରେ ଧୂଳି ପକାଇ ଆପଣାର ନୀଚ ସ୍ୱାର୍ଥପରତାକୁ ଘୋଡ଼ାଇ ରଖି ଦାଣ୍ଡ ଲୋକଙ୍କଠାରୁ 'ବାହାବା' ଓ ବାହାଦୁରି ପାଇବାକୁ ମନୁଷ୍ୟର ମନ ଦଉଡ଼େ କାହିଁକି ? ଜାଣିଶୁଣି ଲୋକେ କାଦୁଅରେ ପଶେ କିଆଁ ? ଏ ସବୁ ପ୍ରଶ୍ନର ଉତ୍ତର ନାହିଁ ।

ମାନବୀୟ ପ୍ରକୃତି ଅତି ଦୁର୍ବଳ, ମନୁଷ୍ୟ ପ୍ରକୃତି କୁହେଳିକାମୟ, ମନୁଷ୍ୟ ପ୍ରକୃତି ନିରଙ୍କୁଶ, ମନୁଷ୍ୟ ପ୍ରକୃତି ଲଗାମକୁ ମାନିବା ଜନ୍ତୁ ନୁହେଁ । ସେ ନିୟମ ମାନେ ନାହିଁ, ବନ୍ଧ ମାନେ ନାହିଁ, ଆଗପଛ ହେଜେ ନାହିଁ, ଭଲମନ୍ଦକୁ ପରେଇ (ପସନ୍ଦ) କରେ ନାହିଁ । ଏ ଦୃଷ୍ଟିରେ ଦେଖିବାକୁ ଗଲେ ନଗ୍ନ ଆଦିମ ନିବାସୀ ଓ ସୁସଭ୍ୟ ପାଶ୍ଚାତ୍ୟ ମଧ୍ୟରେ ପ୍ରଭେଦ ଅତି କମ୍ - ନାହିଁ ବୋଇଲେ ଚଳେ । ଏହି ମତ୍ତ ମତଙ୍ଗଜକୁ ଯଥା - କଥା ସାଧାୟତ୍ତ କରି, ସଂଯତ କରି ସଂସାରର ମଙ୍ଗଳରେ, ସମାଜର ମଙ୍ଗଳରେ, ଦେଶର ମଙ୍ଗଳରେ, ପରିବାରର ମଙ୍ଗଳରେ ଲଗାଇବା ହିଁ ସବୁ ଧର୍ମର ଓ ସର୍ବଶାସ୍ତ୍ରର ଉଦ୍ଦେଶ୍ୟ । ଏହି ସୃଷ୍ଟିଛଡ଼ା, ପ୍ରକୃତି-ଛଡ଼ା, ନିୟମ-ଛଡ଼ା, ନିଶାପ-ଛଡ଼ା, ଦୁନିଆ-ଛଡ଼ା ଜନ୍ତୁକୁ

ଅବାଟରୁ ଫେରାଇ ବାଟକୁ ଆଣିବାକୁ, ଅବାଗରୁ ଆଣି ବାଗରେ ପୂରାଇବାକୁ, ଅକଳରୁ କଳ କରିବାକୁ ମୁନି, ମୌନୀ, ଜ୍ଞାନୀ, ଦାନୀ, ମାନୀ ସମସ୍ତେ ଯୁଗଯୁଗାନ୍ତରବ୍ୟାପୀ ମାଳ ମାଳ ଆଦେଶ ଉପଦେଶ ଦେଇ ଯାଇଅଛନ୍ତି ଓ ଯାଉଅଛନ୍ତି । ସେଗୁଡ଼ିକ ପଢ଼ି ଶୁଣି ଜାଣି ଗଣି ସୁଦ୍ଧା ମନୁଷ୍ୟ ମନ ସବୁବେଳେ ବାୟା ଓ ଅବୁଝ ଓ ଅଝଟ ହେଉଅଛି, ''ମତେ ଯେତେ ମାଠୁଥିବୁ ମାଠ, ମୁଁ ସେହି ଦରପୋଡ଼ା କାଠ'' ରହିଅଛି । ଏ ବାଇମନକୁ ଯେ ବୁଝାଇବାକୁ ଯେତିକି ଚେଷ୍ଟା କରିପାରେ, ସେ ସେତିକି ପରିମାଣରେ ମନୁଷ୍ୟ, ସେ ଭକ୍ତ, ସେ ଈଶ୍ୱରାନୁଗୃହୀତ, ସେ ଭାଗ୍ୟବାନ୍, ସେ ପ୍ରାତଃସ୍ମରଣୀୟ । ନଚେତ୍ ଆଉ ସମସ୍ତେ ମୋହରି ଭଳିଆ କୁହୁଡ଼ିପହଁରା ତନ୍ତୀ ଓ ତୁଳାଭିଣା । ମାତ୍ର, ମୁଁ ମାନୁଅଛି, ସେମାନେ ମୁହଁରେ ମାନୁ ନାହାନ୍ତି - ପ୍ରଭେଦ ଏତିକି । ଇତି ।

ଉ.ସା. - ୨୩ଶ ଭାଗ / ୮ମ ସଂଖ୍ୟା / ମାର୍ଗଶିର / ୧୩୨୭ ସାଲ ।

## ।। ଅଠେଇଶ ।।

ଲୋକେ କହନ୍ତି - 'ଦୁଃଖ କହିବି, କି ସୁଖ କହିବି ? ଯାହା ଅଙ୍ଗେ ନିଭେଇଛି ତାହା କହିବି ?' ମନୁଷ୍ୟ ଯେତେ କଥା ଅଙ୍ଗେ ନିଭାଏ, ଅର୍ଥାତ୍ ଅନୁଭବକୁ ଆଣେ, ସେଗୁଡ଼ିକ ବର୍ଣ୍ଣନା କରୁଥିଲେ ଫି ଜଣକେ ଗୋଟିଏ ଲେଖାଏଁ ପୋଥି ହେଉଥାନ୍ତା ଓ ଉକ୍ତ ଅନୁଭବମାନଙ୍କରେ ଯାହା ଶିକ୍ଷଣୀୟ କଥା ଥାଏ, ମନୁଷ୍ୟ ଯେବେ ସବୁବେଳେ ସେହି କଥାକୁ ଚେତି କାର୍ଯ୍ୟରେ ସାବଧାନ ହେଉଥାନ୍ତା, ତେବେ ସଂସାରରେ ମନୁଷ୍ୟର ଜୀବନ ଅନେକ ପରିମାଣରେ ସୁଖମୟ, ଶାନ୍ତିମୟ ହେଉଥାନ୍ତା । ଫଳତଃ ଏହି କଥା ହୁଏ ଯେ, ମନୁଷ୍ୟ ବଡ଼ ଦୁର୍ବଳ ଜୀବ, ସବୁବେଳେ ସବୁ କଥାକୁ ହେଜି କାମ କରିପାରେ ନାହିଁ, ମନୁଷ୍ୟର ମନ ସବୁବେଳେ ଏକ ନ ଥାଏ । ଘଡ଼ି ଘଡ଼ିକେ ଘଟନାଚକ୍ରରେ ପଡ଼ି ମନୁଷ୍ୟର ମନ ବହୁରୂପା ଏଣ୍ଡୁଅ ଭଳି ହରରଙ୍ଗୀ ହେଉଥାଏ । ଏ ଘଡ଼ିକ ମୋ ମନ ଓ ମିଜାଜ ଭଲ ଅଛି, ସଂସାର ମତେ ଭଲ ଲାଗୁଅଛି, ହଲିଲା ପାଣିକୁ ଗୋଡ଼ ବଢ଼ାଇବାକୁ ମୋର ଇଚ୍ଛା ହେଉ ନାହିଁ, ପରର ଉପକାର କରିବି, ଗରିବର ଦୁଃଖ ଲାଘବ କରିବି, ନିରନ୍ନକୁ ଅନ୍ନ ଦେବି, ନିରାଶ୍ରୟକୁ ଆଶ୍ରୟ ଦେବି, ବସ୍ତ୍ରହୀନକୁ ବସ୍ତ୍ର ଦେବି, ନିର୍ବଳକୁ ବଳ ଦେବି, ନିର୍ଦ୍ଧନକୁ ଧନ ଦେବି ବୋଲି ମନରେ ବିଚାରୁଅଛି । ଫେର ଆର ଘଡ଼ିକି ଦେଖିଲା ବେଳକୁ ମୁଁ ବିବାକ ବେଚିହ୍ନଟ୍ ବଦଳି ଗଲିଣି - ସେ ଘଡ଼ିକ ମୋ ମନ ଖରାପ, ମିଜାଜ କଡ଼ା ହେଉଅଛି, ଚାଲିଲା ଶଗଡ଼ରେ ହାତ ପୂରାଇବାକୁ ମୋ ମନ ଖୁଜୁବୁଜୁ ହେଉଅଛି, ପରର ଅନିଷ୍ଟ କରିବି, ଗରିବ ବିଚାରାର ଦୁଃଖର ବୋଝ ଉପରେ ବୋଝ ହେଇ ତାକୁ ଡହଳ ବିକଳ କରିବି, ଯାହାକୁ ଦି' ଓଳିରେ ମୁଠାଏ ଦାନା ପେଟପୂରା ମିଳୁ ନାହିଁ, ତା ଆଗରୁ ତା ପଖାଳକଂସାଟି ଅଜାୟ ଜବରଦସ୍ତ ଉଠାଇ ଆଣିବି, ଯାହାର କେହି ଆଶ୍ରୟ ନାହିଁ,

ତା ପତ୍ର କୁଡ଼ିଆଖଣ୍ଡକ ଭାଙ୍ଗି ଭସ୍ମସାତ୍ କରିଦେବି, ଯାହାର ଚିରା କନାପଟା ଦ୍ୱାରା ଗୁଙ୍ଗୁରାଣ ମେଣ୍ଟୁଅଛି, ତା କଣ୍ଠା ଦରବା ଖଣ୍ଡକରେ ମୁନ୍ଦାଏ ପାଣି ଢାଳିଦେବି, ଯାହାର କେହି ବଳ ନାହିଁ, ତାରି ଉପରେ ଜମାଏତବସ୍ତରେ ଜୁଲମ କରିବି, ଯାହାର ଧନ ନାହିଁ, ତାହାରି ରକ୍ତ ଶୋଷଣ କରିବି ବୋଲି ମୁଁ ବଦ୍ଧପରିକର ହେଉଅଛି । ଏସବୁ ହରରଙ୍ଗୀ କାରଖାନାକୁ ମନୁଷ୍ୟ ଯେତେ ଦେଖୁଅଛି, ସେତିକି ବେଶି ଅଜ୍ଞାନ, ସେତିକି ବେଶି ଅନ୍ଧ ଓ ବାଉଳା ହୋଇ ଯାଉଅଛି ।

ବେଳେ ବେଳେ ମୁଁ ମନେ ମନେ ବିଚାରେଁ ଯେ, ସମୟ ସମୟରେ ମନୁଷ୍ୟ ମନରେ ଯେତେଗୁଡ଼ିଏ ସଦ୍ ସଂକଳ୍ପର ଉଦୟ ହୁଏ, ସେଗୁଡ଼ିକ ଯେବେ ମନୁଷ୍ୟ କାର୍ଯ୍ୟରେ ପରିଣତ କରିପାରୁଥାନ୍ତା, ତେବେ ଏ ସଂସାରଟା କେଡ଼େ ମଧୁମୟ ହେଉ ନ ଥାନ୍ତା ? ମୁଁ ଦେଖିଅଛି ଯେ, ଆପଣା ହାତରେ ପଇସା ନ ଥିଲା ବେଳେ ଓ ଆପଣାର ଶକ୍ତି ନ ଥିଲା ବେଳେ ପରର ଦୁଃଖ, ଅଭାବ ଦେଖି ମୋ ମନେ ମନେ ମୁଁ କହିହୁଏଁ - ''ଆହା ! ଏ ପ୍ରାଣୀଟି କେଡ଼େ କଷ୍ଟ ପାଉଅଛି, ମୋ ହାତରେ ପଇସା ବା ଶକ୍ତି ଥାନ୍ତା କି, ମୁଁ ଏହାର ଏ କଷ୍ଟକୁ ଲାଘବ କରିଦିଅନ୍ତି ।'' କିନ୍ତୁ ଫଳତଃ ଦେଖିଅଛି, ହାତକୁ ପଇସା ବା ଶକ୍ତି ଆସିବା ମାତ୍ରକେ ମୁଁ ଚାହିଁ ଢଳକା ବନିଯାଏ, ସେତେବେଳେ ପରର ଦୁଃଖ, ପରର ଅଭାବ ମୋ ଆଖିରେ ପଡ଼େ ନାହିଁ । ମନ ଥିଲା ବେଳେ ଧନ ନାହିଁ, ଧନ ଥିଲା ବେଳେ ମନ ନାହିଁ । 'ଅମୁକ ଲୋକ ତାହା ଶକ୍ତିର ଅପବ୍ୟବହାର କରୁଅଛି, ଧନର ଅପବ୍ୟବହାର କରୁଅଛି, କ୍ଷମତା ଓ ସୁବିଧାର ଅପବ୍ୟବହାର କରୁଅଛି, ମୋ ହାତକୁ ଏତିକି ଶକ୍ତି, ଧନ ବା କ୍ଷମତା ଆସନ୍ତା କି, ମୁଁ ଦୁନିଆଟାକୁ ସୁଖରେ ବୁଡ଼ାଇ ଦିଅନ୍ତି; ଅମୁକ ଲୋକ ଏ ଗୃହର, ଏ ଅଞ୍ଚଳର, ଏ ରାଜ୍ୟର କର୍ତ୍ତା ହୋଇ କିଛି କାମ କରୁ ନାହିଁ, ମୋ ଠାରେ ଏ କର୍ତ୍ତୃତ୍ୱ ଥା'ନ୍ତା କି, ମୁଁ ଘଡ଼ିକେ ଏ ସ୍ଥାନକୁ ରାମରାଜ୍ୟ ବନାଇ ଦିଅନ୍ତି ।' ଅନେକ ସମୟରେ ମୋ ମନରେ ଏହିପରି ଭାବର ଉଦୟ ହୁଏ, କିନ୍ତୁ ମୁଁ ଅନୁଭବ କରିଅଛି, ପରର ଉପକାର କରିବା ଭଳି ଶକ୍ତି, ଧନ, କ୍ଷମତା ଓ କର୍ତ୍ତୃତ୍ୱ ମୋତେ ପ୍ରାପ୍ତ ହେଲା ବେଳକୁ ଏସବୁ ସଦ୍‌ସଂକଳ୍ପ କେଉଁଆଡ଼େ ପାଣିଫୋଟକା ଭଳି ଉଭେଇ ଯାଇଅଛି ? ଏସବୁ କି ପ୍ରକାର ପ୍ରହେଳିକା ? ଗୋଟାଏ ପାଖରେ ଚିତ୍ର ଦେଖିଲେଇଁ, ଏହିତା । ଆର ପାଖର ଚିତ୍ର ମଧ ତହୁଁ ବଳି । ବେଳେ ବେଳେ ମନୁଷ୍ୟ ମନରେ ଯେଉଁ ଆସୁରିକ ଭାବର ଉଦ୍ରେକ ହୁଏ 'ପରର ସର୍ବନାଶ କରି ମୋ ଘର କରିବି, ପରର ଧନ ବୁହାଇ ଆଣି ମୋ ଲୁହା ସିନ୍ଦୁକରେ ରଖିବି, ପର ଉପରେ ଜୁଲମ କରି ଏ ଦୁନିଆକୁ ମୋ ମୁଠା ତଳେ ରଖିବି, ଅମୁକ ନାମରେ ମାମଲା ମକଦମା କରି ତାର ଯାନାସ୍ଥାନ ଉଠାଇଦେବି, ତା ଡିହରେ ବିଲୁଆ ଡିଆଇଁଦେବି, ତା ଦୁଆର ମୁହଁରେ କଣ୍ଟା ଛଟାଇ ଦେବି, ତାକୁ ବେଇଜ୍ଜତ୍ କରାଇବି, ଯେନତେନ ଉପାୟରେ ମୁଁ ବଡ଼ଲୋକ, ନାଂଜାଦା, ଧନୀ ହେବି, ଏ ସଂସାରଟାକୁ ଉଜାଡ଼ମସ୍ତ କରିବି', ଇତ୍ୟାଦି ଯେଉଁ ରାକ୍ଷସୀ କଳ୍ପନା ସବୁ ବେଳେ ବେଳେ ମନରେ

ଉଙ୍କିଉଠେ, ସେଗୁଡ଼ାକ ଯେବେ କାର୍ଯ୍ୟରେ ପରିଣତ ହେଉଥାନ୍ତା, ତେବେ ଏ ଦୁନିଆଟା କେଡ଼େ ବିଷମୟ ହେଉ ନ ଥାନ୍ତା ?

ମନୁଷ୍ୟକୁ ଏ ସବୁ ନ କରାଇ ଦିଏ କିଏ ? କେଉଁ ଶକ୍ତି କରାମତରେ ପୃଥିବୀରେ ପାପର ଭାରା ବଢ଼େ ନାହିଁ ? ଏସବୁ ଭାବିଲେ ମନୁଷ୍ୟ ଆପଣାର ଅକିଞ୍ଚନତ୍ୱ ଉପଲବ୍ଧି କରେ । ଏ ସମ୍ବନ୍ଧରେ ଗୋଟିଏ କାହାଣୀ ଶୁଣିଥିଲି । ଜଣେ ମନୁଷ୍ୟ ଜୀବିତ କାଳରେ ମନ୍ଦଚିନ୍ତା ନେଇ ବ୍ୟସ୍ତ ଥାଏ । 'ଅମୁକର ଅନିଷ୍ଟ କରିବି, ଅମୁକକୁ ଚିତା କାଟିବି, ଅମୁକର ଘର ଭାଙ୍ଗିବି' ଦିନରାତି ଏହିପରି ଅନିଷ୍ଟ ଚିନ୍ତାରେ କାଳ କାଟୁଥାଏ । ତାହାର ମୃତ୍ୟୁ ହେଲାରୁ ଯମଦୂତମାନେ ଆସି ତା 'ସାହା'କୁ ବାନ୍ଧି ନେଲେ । ବାନ୍ଧି ନେଇ ଯିବା ସମୟରେ ସେ ବାଟରେ ଭାବିଲା ଯେ, ମତେ ମୋର ସାଂସାରିକ ଦୁଶ୍ଚିନ୍ତା ନିମନ୍ତେ ଯମରାଜା ଅବଶ୍ୟ ଦଣ୍ଡ ଦେବେ, ସେଥିପାଇଁ ଦୂତମାନେ ମତେ ନେଇ ଯାଉଅଛନ୍ତି । ସଞ୍ଜୀବନୀପୁରୀକୁ ଗଲାବେଳେ ବାଟରେ ଦେଖିଲା ଯେ, ଧାର୍ମିକ ମହାପୁରୁଷମାନେ କେଉଁଠାରେ ଅନ୍ନଛତ୍ର, କେଉଁଠାରେ ଜଳଛତ୍ର, କେଉଁଠାରେ କୂଅ, ପୋଖରୀ, କେଉଁଠାରେ ଦେଉଳ, ସଦାବ୍ରତ ଏହିପରି କରୁଅଛନ୍ତି । ଏହା ଦେଖି ସେ ବାଟଯାକ ଡାକିହାକି ଯମଦୂତମାନଙ୍କୁ ଶୁଣାଇ ଶୁଣାଇ କହିକହିକା ଗଲା - ମୁଁ ଅମୁକ ସ୍ଥାନରେ ଅନ୍ନଛତ୍ର ଦେଇଥାନ୍ତି, ଅମୁକ ସ୍ଥାନରେ ଜଳଛତ୍ର, ସଦାବର୍ତ୍ତ ଦେଇଥାନ୍ତି, ଅମୁକ ସ୍ଥାନରେ ପୋଖରୀ ଖୋଳାଇଥାନ୍ତି, ଅମୁକ ସ୍ଥାନରେ ଦେଉଳ ତୋଳାଇଥାନ୍ତି, ତୁମ୍ଭେମାନେ ମତେ ଆଉ କିଛିଦିନ ଛାଡ଼ିଯାଅ, ମୁଁ ଏସବୁ ମନସ୍କାମନାତକ ପୂରଣ କରିସାରେଁ, ତା ପରେ ତୁମ୍ଭେମାନେ ମତେ ନେବ ।' କାଳ ବିକାଳ ଆଦି ଯମଦୂତମାନେ କହିଲେ, 'ଆମେ ହୁକୁମ ବରଦାର୍, ଆମେ ତତେ ନେବାକୁ ଆସିଅଛୁଁ, ଛାଡ଼ି ଦେଇ ନ ପାରୁଁ । ଏହିପରି କଥାବାର୍ତ୍ତା ହେଉଁ ହେଉଁ ସେମାନେ ଯାଇ ଯମରାଜାଙ୍କ ଛାମୁରେ ପହଞ୍ଚିଗଲେ । ସେଥିରୁ ଚିତ୍ରଗୁପ୍ତଙ୍କ ଡାକରା ହେଲା, ସେ ଆସି ପାଞ୍ଜି ଲେଉଟାଇ ଆସାମୀର ଇହଲୋକର ସିହା, ଉଆରିଜା, ଜନଜାତି ହିସାବ ମେଲିଦେଲେ, 'ଆସାମୀ ମହାପାପୀ, ଘୋର ଅପରାଧୀ; ଏ କେବଳ ପରର ଅନିଷ୍ଟ ଚିନ୍ତାରେ କାଳଯାପନ କରିଅଛି ଦଫା - ୫୫୩ ସଜା - ଶିମିଳି ଗଛରେ ଘୋଷରା ଓ ନାକକାନରେ ତିନ୍ତୁଳିଆ ବିଛା ଛାଡ଼ିବା, ଇତ୍ୟାଦି ଇତ୍ୟାଦି ।' ଆସାମୀ ଏହା ଶୁଣି ଚିତ୍କାର କରି କହିଲା, 'ଧର୍ମାବତାର ! ଛାମୁକରଣେ ମୋ ବଦନାମି କଥାଗୁଡ଼ାକ ପାଞ୍ଜିରେ ଗୁଞ୍ଜି ଦେଇଅଛନ୍ତି, ଭଲ କଥାଗୁଡ଼ାକ ବିବାକ୍ ଛାଡ଼ି ଦେଇଅଛନ୍ତି ! ମୁଁ ଯେତେ ଯେତେ ମନ୍ଦ କଥା ପାଞ୍ଚୁଥିଲି, ସେ କଥାଗୁଡ଼ିକ ଗାରେଇ ପକାଇଅଛନ୍ତି; କିନ୍ତୁ ମୁଁ ଯେତେ ଭଲ କଥା କରିବାକୁ ପାଞ୍ଚୁଥିଲି, ସେ କଥାଗୁଡ଼ିକ ଲେଖିବାକୁ ତାଙ୍କ ମନକୁ ପାଇଲା ନାହିଁ; ମୁଁ କେତେ କେତେ ଭଲ କଥା କରିବାକୁ ବସିଥିଲି, କିନ୍ତୁ ସେ କାମ ନ କରୁଣୁ ମତେ ଛାମୁଙ୍କ ଦୂତମାନେ ଉଆରଣ୍ଟରେ ଘେନି ଅଇଲେ; ମୋର ସଫେଇ ସାକ୍ଷୀ ଖୋଦ୍ ଛାମୁଙ୍କ ପିଆଦାମାନେ ।' ସେଥିରୁ

ପିଆଦାମାନଙ୍କୁ ତଲବ ହେବାରୁ ସେମାନେ ବାଟରେ ଯାହା ଯାହା ଶୁଣିଥିଲେ, ତାହା ସବୁ ହୁବହୁ ବାଚନି କରିଗଲେ । ଆସାମୀର ସଫେଇ ସଫଳ ହୋଇଗଲା, ଆସାମୀ ସନ୍ଦେହରେ ଖଲାସ ହେଲା ! ତେଣୁ ଫେରିଆସି ଦିନାକେତେ ଫେର ଘରଦୁଆର କରି କେତେଗୁଡ଼ିଏ ଭଲ କାମ କଲା ।

ଯାହା ହେଉ, ମୁଁ କହୁଥିଲି ଯେ, ଏ ଦିଗରେ ମନୁଷ୍ୟ ଯେତେ ସାଧୁ ସଂକଳ୍ପ ମନରେ କରେ, ସେଗୁଡ଼ିକ କାର୍ଯ୍ୟରେ ପରିଣତ ହେଉଥିଲେ ସଂସାର ଯେପରି ପ୍ରେମମୟ, ଆନନ୍ଦମୟ ହେଉଥାନ୍ତା, ଅନ୍ୟ ଦିଗରେ ମନୁଷ୍ୟ ଯେତେଗୁଡ଼ିଏ ପାପଚିନ୍ତା କରେ, ସେଗୁଡ଼ିକ କାର୍ଯ୍ୟରେ ପରିଣତ ହେଉଥିଲେ ଏ ସଂସାରଟା ତତୋଽଧିକ କଷ୍ଟମୟ, କନ୍ଦଳମୟ ହୋଇଉଠୁଥାନ୍ତା । ଏସବୁର ଫଳକୁ ଏ ସଂସାରରେ ହରଣ ପୂରଣ କରେ କିଏ ? ଏଥିର ନିୟାମକ, ଅନୁମନ୍ତା କେଉଁ ଶକ୍ତି ? କଥାରେ ଅଛି - 'ଜାଣି ଘୋଡ଼ାର ଶିଙ୍ଗ ନାହିଁ, ଶିଙ୍ଗ ଥିଲେ ଘୋଡ଼ା (ଏ ସଂସାର) ରଖନ୍ତା ନାହିଁ ।' ଘୋଡ଼ାକୁ ଶିଙ୍ଗ ନ ଦେଇଛି କେଉଁ କର୍ତ୍ତା ? ଏସବୁ ମନୁଷ୍ୟ ଯେତିକି ଭାବେ, ସେତିକି ସେତିକି ଜାଲଜାଲୁଆ କୁହୁଡ଼ି ମଧ୍ୟରେ ଜଳକା ହୋଇଯାଏ ଓ ଶେଷରେ ଚିତ୍କାର କରି ଉଠେ - 'କିମାଶ୍ଚର୍ଯ୍ୟମତଃପରଂ ।' କବିମାନେ, ଭାବୁକମାନେ କହିଅଛନ୍ତି, 'ଦୁନିଆ ଦୋ ରଙ୍ଗ', ଅର୍ଥାତ୍ ଏ ଦୁନିଆରେ ସବୁ ପଦାର୍ଥର ଦୁଇଟା ପାଖ ଅଛି, ସବୁ ଜିନିଷକୁ ଦେଖିବା ପାଇଁ ଦୁଇଟା ମଞ୍ଚ (Stand-point) ଅଛି । ସେହି ଜିନିଷଟାକୁ ଏକ ଦିଗରୁ ଦେଖିଲେ ତାହା ଉଜ୍ଜ୍ୱଳ ଦିଶେ, ଅନ୍ୟ ଦିଗରୁ ଦେଖିଲେ ତାହା ଅନ୍ଧକାରମୟ ଦିଶେ ।

ମତେ ଜଣେ ଲୋକ ବୃଥାରେ ଚଟକଣାଟିଏ ବଜାଇଲା । ଏକଦୃଷ୍ଟିରେ ଚାହିଁବାକୁ ଗଲେ ମୋର 'ଉଧାର ମାଣକ ପାଞ୍ଚ ପାଆ' କରିବା ଉଚିତ - ''ସେ ମତେ ଚଟକଣାଟିଏ ମାରିଦେଇ ବର୍ତ୍ତିଯିବ କିଆଁ ? ମୋ କଉଡ଼ି କଣ କାଣୀ ? ସେ ମତେ ଚଟକଣାଟିଏ ମାଇଲା - ସେ ମରଦପୁଅ, ମୁଁ କଣ ମାଈ ପିଲା ? ମୁଁ ତାକୁ ତହିଁ ପ୍ରତି ଓଝେ ଚାପୁଡ଼ାଟିଏ ନ ବଜାଇଲେ ମୋର ମନୁଷ୍ୟପଣିଆ ରହିବ ନାହିଁ, ମୋ କରାମତ ଜାହେର ହେବ ନାହିଁ, ସଂସାରରେ ଲୋକେ ମତେ ହସିବେ; ଅତଏବ ମୁଁ ତା ଗାଲରେ ଉତ୍ତମ ବାଇଶିପଳିଆ ପାଞ୍ଚଆଙ୍ଗୁଠିଆ ଚାପୁଡ଼ାଟିଏ ବସାଇ ଦେବା ଏକାନ୍ତ ଦରକାର । ତାର ବଳ ଅଛି, ମୁଁ କଣ ନିର୍ବଳୁଆ ? ଏପରି ଲୋକକୁ ଶିକ୍ଷା ଦେବା ଦରକାର ।'' ଏକ ଦୃଷ୍ଟିରେ ଏ ଏକପ୍ରକାର 'ଶିକ୍ଷା' ।

ଏହି ବିଷୟଟାକୁ ଅନ୍ୟ ଦୃଷ୍ଟିରେ ଦେଖିବାକୁ ଗଲେ ଦେଖିପାରିବା ଯେ, 'ସେ ମତେ ଚଟକଣାଟିଏ ମାରିବା ଦ୍ୱାରା ତାର ଅମନୁଷ୍ୟତା ପ୍ରକାଶ ପାଇଲା, ମୋର କଣ ଗଲା ? ସେ ମତେ ମାରିବା ଦ୍ୱାରା ତାର ଯେଉଁ ମନୁଷ୍ୟତା ହେଲା, ଏହାହିଁ ଚଟକଣା ମାରିବା ବ୍ୟକ୍ତି ପ୍ରତି ଯଥେଷ୍ଟ ସଜା । ସେ ଅମନୁଷ୍ୟ ହେଲା ବୋଲି ମୋ ମନୁଷ୍ୟପଣିଆ ମୁଁ ହରାଇ ବସିବି କିଆଁ ? ତାକୁ ଓଲଟି କରି ମୁଁ ଚଟକଣାଟିଏ ମାରିଦେଲେ ମୁଁ ଖାଇଥିବା

ଚଟକଣା ତ ଆଉ ଫେରିଆସିବ ନାହିଁ କିମ୍ବା ମୋ ଗାଲପାଟି ଦରଜ ତ କମିଯିବ ନାହିଁ ? ଯେବେ ମତେ ଚଟକଣାଟିଏ ମାରି ଦେଇ ତା ମନର ଓରମାନା ମେଣ୍ଟିଗଲା, ତା ଚିତ୍ତ ଥଣ୍ଡା ହୋଇଗଲା, ହେଉ; ମତେ ଚଟକଣାଟିଏ ମାରି ଯେବେ ସେ ସୁଖ ପାଇଲା, ପାଉ; ସେ ସୁଖରୁ ତାକୁ ବଞ୍ଚିତ କରିବାକୁ ମୁଁ କିଏ ? ମୁଁ ତାକୁ ମାଇଲେ ତା ମନରେ ରାଗ ବଢ଼ିବ; ସଂସାରରେ ଗୋଟିଏ ଦୁଷ୍ଟ ଜୀବ ଥିଲା, ମୁଁ ଆଉ ସେ ସଂଖ୍ୟା ବଢ଼ାଇବି କାହିଁକି ? ବରଂଚ ମୁଁ ଯେବେ ତା ଚଟକଣାଟି ସହିଯିବି, ତେବେ ସେ ଉତ୍ତମ ଶିକ୍ଷା ପାଇବ, ତା ମନରେ ଦିନେ ଅନୁତାପ-ବହ୍ନି ଜଳିଉଠିବ; ଏପରି ସ୍ଥଳରେ ଚଟକଣା ମାରିବା ବ୍ୟକ୍ତିକୁ ଚଟକଣାଟିଏ ମାରିବା କଥା ଦୂରେ ଥାଉ, ତାକୁ ମୋର ଆର ଗାଲଟି ଦେଖାଇ ଦେବା ଉଚିତ; ସେ ମତେ ଆଉ ଗୋଟିଏ ଚଟକଣା ମାରି ତାର ମୋ ଉପରେ ଥିବା ଅବଶିଷ୍ଟ ରାଗତକ ଶାନ୍ତ କରୁ; ମତେ ଗୋଟିଏ ଚଟକଣା ମାରିବା ଦ୍ୱାରା ଦିନେ ତା ମନରେ ଯେଉଁ ଅନୁତାପ ଉଦୟ ହେବ, ଦିଓଟି ମାରିବା ଦ୍ୱାରା ସେ ଅନୁତାପର ମାତ୍ରା ନିଶ୍ଚେ ଦ୍ୱିଗୁଣ ବଢ଼ିବ, ତାହାର ଅଧିକତର ଶିକ୍ଷା ହେବ । ଏଣେ ମୋର ମନୁଷ୍ୟତ୍ୱ ଓ ମହତ୍ତ୍ୱ ବଢ଼ିବ ।' ଏହି ଦୃଷ୍ଟିରେ ମହାତ୍ମା ଈଶା, ମହାତ୍ମା ବୁଦ୍ଧ ଆଦି ମହାପୁରୁଷମାନେ ଉପଦେଶ ଦେଇ ଯାଇଅଛନ୍ତି ଯେ, ଯେ ତୁମ୍ଭଙ୍କୁ ଗୋଇଠାଟିଏ ମାରିବ, ତା ଶ୍ରୀପଦକୁ କେଡ଼େ ଘାଏଁ ବାଧୁଥିବ, ତା ପାଆତଳକୁ ତୁମେ ଆଉଁଶି ଦେବା ଉଚିତ ।

ଫଳତଃ ଦେଖିଲେଇଁ ଯେ, ମାଡ଼କୁ ମାଡ଼ ଖାଇଲି, ତା ସଙ୍ଗେ ସଙ୍ଗେ ଏତକ ଓପରି ଲାଭ ।

ଏଥିପାଇଁ ସବୁ କଥାରେ ଦେଖୁଥାଇଁ ଯେ, ସାଂସାରିକ ଦୃଷ୍ଟିରେ ଯାହା ଏକରକମ ସୂକ୍ଷ୍ମ ଅନ୍ୟ ଦୃଷ୍ଟିରେ ତାହା ଅନ୍ୟ ରକମ ଦେଖାଯାଏ । ବୈଷୟିକ ଦୃଷ୍ଟିରେ ଧନ, ଜନ, ଐଶ୍ୱର୍ଯ୍ୟ, ଅଧିକାର, କ୍ଷମତା ଯେପରି ଆଦରଣୀୟ ଓ ସ୍ପୃହଣୀୟ ବସ୍ତୁ, ଆଧ୍ୟାତ୍ମିକ ଦୃଷ୍ଟିରେ ଏଗୁଡ଼ିକ ସେହିପରି ହେୟ ଓ ବର୍ଜନୀୟ । ତୁମେ ଧନକୁ ହେୟ ବୋଲି ମନେ କରୁଅଛ, ମୁଁ ତାକୁ ଅତି ଆଦରଣୀୟ ବୋଲି ପୂଜା କରୁଅଛି । ବ୍ୟକ୍ତିବିଶେଷ ସେହି ବସ୍ତୁକୁ ଭିନ୍ନ ଭିନ୍ନ ଦୃଷ୍ଟିରେ ଦେଖୁଅଛନ୍ତି । ସଂସାରୀ ଆଖିରେ ସୁନା 'ମହୁଡ଼'ଟା ଯେପରି ମୂଲ୍ୟବାନ୍, ବୈରାଗୀ ଆଖିରେ, ସେ ତାହା ନୁହେଁ । ଯେପରି ମନୁଷ୍ୟ ମନୁଷ୍ୟ ମଧ୍ୟରେ ଏ ସମ୍ବନ୍ଧରେ ଦୃଷ୍ଟି ପୃଥକ୍ ସେହିପରି ଜାତି ଜାତି, ଦେଶ ଦେଶ ମଧ୍ୟ ଏହିତା । କେଉଁ ଜାତି ଆଧ୍ୟାତ୍ମିକ ଉନ୍ନତିକୁ ପ୍ରଥମ ସ୍ଥାନ ଦିଅନ୍ତି, କେଉଁ ଜାତି ବୈଷୟିକ ଉନ୍ନତିକୁ ପ୍ରଥମ ସ୍ଥାନ ଦିଅନ୍ତି । ଏପରି ପ୍ରଭେଦ ଘଟିବା ସ୍ୱାଭାବିକ ଓ ଅନିବାର୍ଯ୍ୟ, ଏହା ବିଚିତ୍ର ନୁହେଁ; କିନ୍ତୁ ମୋହରି ମନରେ ଆଜି ଏକ ବସ୍ତୁ ସମ୍ବନ୍ଧରେ ଯେଉଁ ଭାବର ଉଦୟ ହେଉଅଛି, କାଲି ସେହି ବସ୍ତୁ ସମ୍ବନ୍ଧରେ ବିପରୀତ ଭାବର ଉଦୟ ହେଉଅଛି କିଆଁ ? ଦିନେ କାହିଁକି ସଂସାରଟା ମତେ ଛାପଚିକଣିଆ, ମସୃଣ, ମନୋହର ଦେଖା ଯାଉଅଛି; ଫେର ଆର ଦିନ ସେହି 'ମୁଁ' ଅଛି, ସେହି ଘରଦୁଆର ଅଛି, ଏ ସଂସାରଟା ପାଣ୍ଡୁରା, ପାଉଁଶିଆ, ଆବାଖାବା ଓ

ଦୃଷ୍ଟିକଟୁ ଦେଖା ଯାଉଅଛି ? ଆଜି କେହି ମତେ ଚଟକଣାଟିଏ ମାଇଲେ ତାକୁ ଆର ଗାଲଟିଏ ଦେଖାଇ ଦେବାକୁ ମନ ହେଉଅଛି; କିନ୍ତୁ କାଲି ସେହି ମନୁଷ୍ୟ ମତେ ଚଟକଣାଟିଏ ମାଇଲେ ତାକୁ ମୁଁ ବିଧାଟିଏ ମାରିବାକୁ ମୁସ୍ତେଜ ହେଉଅଛି କିଆଁ ? ଗତକାଲି ମୋ ଆଗରେ କୁଢ଼ କୁଢ଼ ଅସରପି ଗଦା ହୋଇଥିଲା, ମୁଁ ତାକୁ ଆଡ଼ଚକ୍ଷୁରେ ଚାହିଁଲି ନାହିଁ; କିନ୍ତୁ ଆଜି ପରର ବଟୁଆରେ ପଇସା ଦି' ଅଣା ଦେଖି ମୁଁ ଲୋଭ ସମ୍ବରଣ କରି ନ ପାରି ତାହା ଚୋରି କଲି କିଆଁ ? ଏହା ପ୍ରହେଳିକା ନୁହେଁ ତ ଆଉ କଣ ?

ଫଳତଃ ମନୁଷ୍ୟ ଭିନ୍ନ ଭିନ୍ନ ବିଷମ ବିପରୀତ ମାନସିକ ବୃତ୍ତିମାନଙ୍କର କ୍ରୀଡ଼ାଭୂମି ଅଟେ । ଏହି ଅବୋଧ ମାନବ-ପ୍ରକୃତି ଇହ ସୃଷ୍ଟିର ପ୍ରଧାନ ଉପକରଣ; ଏହା କ୍ଷଣକ୍ଷଣକେ ବଦଳୁଅଛି; କେତେବେଳେ ମନୁଷ୍ୟକୁ ନେଇ ସ୍ୱର୍ଗରେ, କୋଇଲି ବୈକୁଣ୍ଠରେ ଦୋଳି ପହଞ୍ଚାଇ ଦେଉଅଛି; ଫେର ଆର ଘଡ଼ିକି ସେହି ମନୁଷ୍ୟକୁ ପଛବୁହା କରି କାନ୍ଧ ହାବୁକା ମାରି ମାରି ନରକରେ, କୁମ୍ଭୀପାକରେ, ଶିମିଳି ଗଛରେ ପିଚା ଘଷାଇ ଦେଉଅଛି ! ଏଥିପାଇଁ 'ବେଙ୍ଗ କହେ, ବେଙ୍ଗୁଲି ଲୋ ! ମହୀ କ୍ଷଣ କ୍ଷଣକେ ଆନ ।' ଆଜି ଥାଉ ।

ଉ.ସା. - ୨୩ଶ ଭାଗ / ୧୦ମ ସଂଖ୍ୟା / ମାଘ / ୧୩୨୬ ସାଲ ।

## ।। ଅଣତିରିଶ ।।

ଇଉରୋପରେ ମହାକାଳୀ କରାଳୀ ରଣଚଣ୍ଡୀ ନର ଶୋଣିତ ପାଇଁ ଲେଳିହ୍ୟମାନ ଜିହ୍ୱା ବିସ୍ତାର କରି ଯେଉଁ ତାଣ୍ଡବ ନୃତ୍ୟ କରୁଥିଲେ, ତାଙ୍କର ଶୋଣିତଲିପ୍ସା ତୃପ୍ତ ହେଲାରୁ ମହାସମର ସ୍ଥଗିତ ହେଲା ଓ ପୃଥିବୀରେ ଚିରଶାନ୍ତି ବିରାଜିତ ହେବା ଆଶାରେ ରାଜଶକ୍ତିମାନେ ଫ୍ରାନ୍ସ ଦେଶସ୍ଥ ମାର୍ଶେଲି ନଗରରେ ସନ୍ଧି ସ୍ୱାକ୍ଷର କଲେ । କିନ୍ତୁ ଏ ସମ୍ବନ୍ଧରେ ଅନେକ ରକମର କନ୍ଦି-ସନ୍ଧି ରହି ଯାଇଥିବାରୁ ସମଗ୍ର ଜଗତ୍ ସନ୍ନିପାତ-ସନ୍ଧିରେ ଜର୍ଜରିତ ହେଉଅଛି ! ଏହି ଯୁଦ୍ଧ ସମଗ୍ର ଜଗତ୍‌ରେ ଯେଉଁ ଜାଗରଣର ଢେଉ ଉଠାଇ ଦେଲା, ତହିଁର ଫଳସ୍ୱରୂପ କେତେ ସୁପ୍ତ ଜାତି ଚେଇଁ ଉଠିଲେ, କେତେ ଜାଗ୍ରତ ଜାତି ବାରଦ୍ୱାର ଶୁଣ୍ଢିପିଣ୍ଡା ହେଲେ ଓ ହେବେ, କେତେ ଅର୍ଦ୍ଧମୃତ ଜାତି ମୃତସଞ୍ଜୀବନୀ ମନ୍ତ୍ର ପଢ଼ି ଆପଣା ଦିହରୁ ଧୂଳି ଝାଡ଼ିଝୁଡ଼ି ହେଲେ । ଅନେକ ସୁଖସ୍ୱପ୍ନ ଭାଙ୍ଗିଗଲା, ଅନେକ ନିରାଶ ପ୍ରାଣରେ ଆଶାର ବସନ୍ତ-ଅନିଳ ବହିଲା ଇତ୍ୟାଦି । ନିର୍ବାଣୋନ୍ମୁଖ ପ୍ରଦୀପ ନିଭିଯିବା ପୂର୍ବରୁ ଯେପରି ଧକ୍‌କିନି ଶେଷ ହପାଟା ଜଳିଉଠି ପର ମୁହୂର୍ତ୍ତରେ ନିଭିଯାଏ, ଜର୍ମାନ ଜାତି ସେହିପରି ଘଡ଼ିବାଣଭଳିଆ ଚନ୍ଦ୍ରଉଦିଆ ଚମ୍ପା ସବୁଆଡ଼େ ଛିଞ୍ଚାଡ଼ି କ୍ଷଣକାଳ ପାଇଁ ସମଗ୍ର ଜଗତକୁ ସେହି ଆଲୋକ ଦ୍ୱାରା ଜଳକା ବନାଇଦେଇ ପର ମୁହୂର୍ତ୍ତରେ ଧପ୍‌କିନି ନିଭିଗଲା । ରୁଷିଆ ସାମ୍ରାଜ୍ୟ ତାହାର ସର୍ବମୟ ସମ୍ରାଟ୍ ଜାରଙ୍କୁ ସିଂହାସନରୁ ଝିଙ୍କି ଆଣି, ଜହରଖାନାରେ ପୂରାଇ, ପଛକୁ କିଲିବିଲି କରି ଜୀବନରେ

ମାଇଲା ଓ ରୁଷିଆରେ ପ୍ରଜାତନ୍ତ୍ର ଶାସନ-ପ୍ରଣାଳୀ ପ୍ରତିଷ୍ଠା ହେବା ସଙ୍ଗେ ସଙ୍ଗେ ଯେଉଁ ରାଷ୍ଟ୍ରବିପ୍ଳବ ଉପୁଜିଲା, ତହିଁର କି ଅମୃତମୟ ବା ବିଷମ ବା ମିଶ୍ର ଫଳ ହେବ, ତାହା ଏକା ସେହି ମହାମାୟା ଚଣ୍ଡୀଙ୍କୁ ମାଲୁମ ! ରୁଷିଆରେ ଯେଉଁ ବଲସେବୀ (Bolshevik) ଦଳ ମାତିଅଛନ୍ତି, ସେମାନଙ୍କର ଚଣ୍ଡଦୁର୍ଦଣ୍ଡ ପ୍ରତାପ ସମଗ୍ର ଜଗତକୁ ତ୍ରସ୍ତ ଭୀତ କରି ପକାଇଅଛି - ପାଶ୍ଚାତ୍ୟ ସଭ୍ୟତାର ଆରମ୍ଭରୁ ଯେତେଗୁଡ଼ିଏ ଅନୁଷ୍ଠାନ ହୋଇ ଆସୁଥିଲା, 'ବଲସେବୀ' ଦଳମାନେ ସେମାନେ ଚୂରମାର କରି ସମଗ୍ର ପୃଥିବୀକୁ ଓ ରାଜ୍ୟକୁ 'ଏକାକାର' କରିବାକୁ ବସିଅଛନ୍ତି । କେବଳ ରୁଷିଆରେ କାହିଁକି, ସମଗ୍ର ପୃଥିବୀରେ ଏହି ବଲସେବୀ ଦଳଙ୍କ ହାଓଆ ବାଜି ଜାଗା ବରଜାଗାରେ ଆପାମର ସାଧାରଣ ମାତି ଉଠିଅଛନ୍ତି । ଇଂଲଣ୍ଡ, ଆମେରିକା, ଆୟର୍ଲାଣ୍ଡ, ମିଶର, ଚୀନ୍, ଭାରତ ବର୍ଷ, ସବୁଠାରେ ବଲସେବୀ ଉଚ୍ଛୃଙ୍ଖଳତା ଚେଇଁ ଉଠିଲା ପରି ଜଣାଯାଉଅଛି । ଆଜିଯାକେ ବଡ଼ଲୋକ ଗରିବ ଉପରେ, ସବଳ ଦୁର୍ବଳ ଉପରେ, ଜମିଦାର ପ୍ରଜା ଉପରେ ମୂଳଧନାଧିକାରୀ ମୂଲିଆ ଉପରେ, ବ୍ରାହ୍ମଣ ଶୂଦ୍ର ଉପରେ, ପୁରୁଷ ସ୍ତ୍ରୀ ଉପରେ, ଗୁରୁ ଶିଷ୍ୟ ଉପରେ, ପିତା ପୁତ୍ର ଉପରେ, ଜ୍ୟେଷ୍ଠ କନିଷ୍ଠ ଉପରେ, ମହାଜନ ଖାତକ ଉପରେ, ହାକିମ ଆସାମୀ ଉପରେ, ଗୋରା ଚମଡ଼ା କଳା ଚମଡ଼ା ଉପରେ ଆଧିପତ୍ୟ ବିସ୍ତାର କରି ଆସୁଥିଲେ, ସେ ସବୁ ଦିନକୁ ଦିନ ମଉଳି ଯାଉଅଛି ।

ଫଳତଃ ଦେଖାଯାଉଅଛି ଯେ, ଏଣିକି ଜୀବନସଂଗ୍ରାମ କଠୋରତାପୂର୍ଣ୍ଣ ହେବ । ମୂଲିଆ ବିଚାରା ଭୋରରୁ ଉଠି ରାତି ଦି' ଘଡ଼ି ପର୍ଯ୍ୟନ୍ତ ମୁଣ୍ଡପାଣି ଦିହରେ ମାରି ଘରକୁ ଅଇଲା ବେଳକୁ ତା ଭୋକିଲା ପେଟ ପାଇଁ ମୁନ୍ଦାଏ ତୋରାଣି ସୁଦ୍ଧା ତା ହାଣ୍ଡିରେ ନ ଥାଏ, ଅଥଚ ଧନୀ ପୁଅ ଦିନ ପହରକେ ବହୁ କଷ୍ଟରେ ପହଡ଼ ଭାଙ୍ଗି ଆସି ଧୂପ ଅବକାଶ ନୀତି ସାରି 'ଜୁଆ ଶକଟା ପାରାରାଙ୍ଗ' କରି ଷୋଡ଼ଶୋପଚାର ନୈବେଦ୍ୟମୁଣୋହି ସାରି ତାଙ୍କର ଖଇରି ହାକୁଟି ଉଠିବାରୁ କବିରାଜ ତାଙ୍କପାଇଁ 'ଜୀର୍ଣ୍ଣଜୀରକାଦି'ର ବ୍ୟବସ୍ଥା କରୁଅଛନ୍ତି ! ଏପରି ଦୃଶ୍ୟ ଜଗତରେ ନିତ୍ୟ ପ୍ରତ୍ୟକ୍ଷ ହେଉଅଛି । ମୂଲିଆ ବାପୁଡ଼ାର ପେଟକୁ ଦାନା ପିଠିକି କନା ମିଳୁ ନାହିଁ, ଅଥଚ ମହାଜନପୁଅର ଭଣ୍ଡାରରେ ମହଣ ମହଣ ବାସୁମତୀ ଚାଉଳ ପୋକ ଲାଗି ନଷ୍ଟ ହେଉଅଛି ଓ ଆଲମାରି ମଧ୍ୟରେ ଯୋଡ଼ାକୁ ଯୋଡ଼ା ଶାଲ ଦୋଶାଲା ପୋକ ଲାଗି ଅକାମି ହେଉଅଛି । ବର୍ତ୍ତମାନ ଯୁଗର ଜାଗରଣର କରାମତରେ ଏ ସବୁ ଦୃଶ୍ୟ ଜଗତରୁ କମିଯିବ ବୋଲି ଅନୁମାନ ହେଉଅଛି, କିନ୍ତୁ ପୃଥିବୀରେ ନିୟମାଧୀନତା ପରିବର୍ତ୍ତରେ ଯେଉଁ ଉଚ୍ଛୃଙ୍ଖଳତାର ଚିହ୍ନ ଦେଖାଯାଉଅଛି, ତହିଁର ଉପସ୍ଥିତି ଫଳ ବିଷମୟ ବୋଲି ମୁଁ ଅନୁମାନ କରୁଅଛି । ସମଗ୍ର ସଭ୍ୟଜଗତ୍‌ର ନେତା ଓ ଚିନ୍ତାଶୀଳ ବ୍ୟକ୍ତିମାନଙ୍କର ଏହି ଉଚ୍ଛୃଙ୍ଖଳତାକୁ ଦମନ କରିବା ନିମନ୍ତେ ପାରୁପର୍ଯ୍ୟନ୍ତ ଚେଷ୍ଟା କେତେଦୂର ଫଳବତୀ ହେବ, ତାହା ସେହି ମହାମାୟାଙ୍କୁ ଜଣା ।

ଏ ତ ଗଲା ସମଗ୍ର ଜଗତର କଥା; ଆମ ଘରେ ଅର୍ଥାତ୍ ଭାରତରେ ମଧ୍ୟ ଆଧୁନିକ କାଳର 'ବାଇ' ବାଦ ଅଛି, ବର୍ତ୍ତମାନ ଭାରତରେ ନବଜାଗରଣର ଚିହ୍ନ ପ୍ରକାଶ ପାଉଅଛି - ଇଙ୍ଗିତଜ୍ଞ ଉଚ୍ଚମନା ରାଜପୁରୁଷମାନେ ଏହି ଜାଗରଣର ଆରାମ ପାଇଁ ଭାରତ ଯେପରି କୌଣସି ହଠାତ୍ ପରିବର୍ତ୍ତନ ଦ୍ୱାରା କ୍ଷତିଗ୍ରସ୍ତ ଓ ଉଦ୍ଭ୍ରାନ୍ତ ନ ହୁଏ, ସେଥିପାଇଁ ଭାରତବାସୀମାନଙ୍କୁ ସଂଯତ କରି ସରଳ ମାର୍ଗରେ ନେବାପାଇଁ ଚେଷ୍ଟା କରୁଅଛନ୍ତି । ଆଧୁନିକ ଯୁଗରେ ଆଜିପର୍ଯ୍ୟନ୍ତ ଭାରତବର୍ଷ ଇଂରେଜଙ୍କ ଶାସନାଧୀନ ଥିଲା ଓ ଅଛି । ଏଣିକି ଭାରତବାସୀମାନଙ୍କୁ ସ୍ୱାୟତ୍ତ-ଶାସନ ଦେବା ନିମନ୍ତେ ଇଂରେଜ ଜାତି ସଂକଳ୍ପ କରିଅଛନ୍ତି; କିନ୍ତୁ ପୂର୍ଣ୍ଣ ପରାଧୀନ ଅବସ୍ଥାରୁ ଏକଦମ୍ ପୂରା ସ୍ୱାଧୀନତାକୁ ଉଠିଲେ ଅର୍ଥାତ୍ ନାବାଳକ ନ ଯାଉଣୁ ପୂର୍ଣ୍ଣାଧିକାର ଦିଆଗଲେ ନାନା ଅନିଷ୍ଟ, ଅମଙ୍ଗଳ ଆଶଙ୍କା କରାଯାଏ  ଏଥିପାଇଁ ଭାରତବର୍ଷ ଦିନେ ପୂର୍ଣ୍ଣ ସ୍ୱାୟତ୍ତ-ଶାସନ ପାଇବାର ଅବସ୍ଥାରେ ପହଞ୍ଚିବା ଲାଗି ବିଲାତର ପ୍ରଧାନ ପ୍ରଧାନ ରାଜନୀତି ବିଶାରଦ ପଣ୍ଡିତମାନେ ଗୋଟିଏ ଶିଢ଼ି ତିଆରି କରିବାରେ ଲାଗିଅଛନ୍ତି । ଏହି ଶିଢ଼ିଟିର ନାମ 'Montague Chelmsford Reform Scheme'. 'ଭାରତ ଶାସନ-ସଂସ୍କାର ପଦ୍ଧତି' । ବହୁ ଆଲୋଚନା, ଆନ୍ଦୋଳନ, ପ୍ରତିବାଦ, ବିବାଦ ପରେ ବିଲାତରୁ ପାର୍ଲିଆମେଣ୍ଟ ଭାରତ-ଶାସନ ସଂସ୍କାର ଆଇନ୍ "Reform of India Act'. ପାସ୍ କରି ସାରିଅଛନ୍ତି । ଏହି ଆଇନ ବଳରେ ଭାରତୀୟମାନେ କ୍ରମଶଃ ରାଜନୀତିକ ଓ ଶାସନ ସମ୍ବନ୍ଧୀୟ ଅଧିକାର ମାନ ପାଇ ତାହା ଚାଳନ କରିବେ ଓ ଦିନେ ପୂର୍ଣ୍ଣ ସ୍ୱାୟତ୍ତ-ଶାସନ ଅଧିକାରକୁ ସୁପରିଚାଳନ କରିବା ନିମନ୍ତେ ତାଲିମ ଦେବେ । ଜଗଦ୍‌ବ୍ୟାପୀ ବ୍ରିଟିଶ ସାମ୍ରାଜ୍ୟ (The British Empire) କେତେଗୁଡ଼ିଏ ରାଜ୍ୟର ସମଷ୍ଟି । ଗ୍ରେଟ୍ ବ୍ରିଟେନ, କାନାଡ଼ା, ଆଫ୍ରିକା, ଅଷ୍ଟ୍ରେଲିଆ ଓ ଭାରତବର୍ଷ, ଏହିପରି କେତେଗୁଡ଼ିଏ ଉପାଦାନରେ ବ୍ରିଟିଶ ସାମ୍ରାଜ୍ୟର ଅଙ୍ଗସୌଷ୍ଠବ ହୋଇଅଛି । ଏହି ବ୍ରିଟିଶ ସାମ୍ରାଜ୍ୟର ଅନ୍ୟାନ୍ୟ ଯେପରି ସ୍ୱାୟତ୍ତ-ଶାସନ ପଦ୍ଧତିରେ ଚଳୁଅଛନ୍ତି, ଭାରତ ମଧ୍ୟ ସେହି ପଦ୍ଧତି ଅନୁସାରେ ପରିଚାଳିତ ହୋଇ ସାମ୍ରାଜ୍ୟର ଗୋଟିଏ ବିଶିଷ୍ଟ ଅଙ୍ଗ ବୋଲି ଗଣ୍ୟ ହେବ - ଭାରତୀୟମାନେ ଏଣିକି ଭାରତର ମଙ୍ଗଳକର ଅନୁଷ୍ଠାନମାନଙ୍କରେ ଏ ଶାସନ ବିଭାଗରେ ଓ ସେନା ବିଭାଗରେ ଓ ରାଜନୀତିକ ବିଭାଗରେ ଉଚ୍ଚ ଓ ଦାୟିତ୍ୱପୂର୍ଣ୍ଣ ସ୍ଥାନମାନ ଅଧିକାର କରିପାରିବେ ଓ ବ୍ରିଟିଶ ସାମ୍ରାଜ୍ୟର ମନ୍ତ୍ରଣା ସଭାରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିବେ । ଏ ଅଧିକାର ମିଳିବା ସଙ୍ଗେ ସଙ୍ଗେ ଭାରତୀୟଙ୍କ ଉପରେ କେଡ଼େ ଦାୟିତ୍ୱପୂର୍ଣ୍ଣ ବୋଝ ଲଦା ହେଲା, ତାହା ଯଦି ଆମ୍ଭେମାନେ ଉପଲବ୍ଧି କରିପାରିବୁଁ, ତେବେ ଆମ୍ଭେମାନେ ଅଧିକାର ଲାଭରେ ସ୍ଫୀତ ଓ ଦିଗ୍‌ବିଦିଗ ଜ୍ଞାନଶୂନ୍ୟ ନ ହୋଇ ଧୀର ଭାବରେ ଚିନ୍ତା କରି ଭାରତକୁ ଆଧୁନିକ ଯୁଗର ପାଶ୍ଚାତ୍ୟ ସଭ୍ୟତାର ଉଚ୍ଛୃଙ୍ଖଳତାରୁ ଦୂରରେ ରଖିବାକୁ ଚେଷ୍ଟା କରିବୁ ।

ଭାରତ ଦିନେ ସଭ୍ୟ ଥିଲା, ସ୍ୱାଧୀନ ଥିଲା, ଉଚ୍ଚ ଥିଲା, ବିଦ୍ୱାନ୍ ଥିଲା, ରାଜନୀତିଜ୍ଞ ଥିଲା, ମହତ୍ ଥିଲା; କିନ୍ତୁ କାଳ ତାହା ସବୁ ଲୋପ କରିବାକୁ ବସିଥିଲା; ଶୁଭ ଲଗ୍ନରେ ଏଠାରେ ମୁଷ୍ଟିମେୟ ବ୍ରିଟିଶ ଜାତୀୟ ବଣିକମାନେ ପଦାର୍ପଣ କରି ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାରେ ଭାରତକୁ ଦୀକ୍ଷିତ କରାଇଲେ - ଆଜି ଭାରତର ହୃଦୟତନ୍ତ୍ରୀରେ ଯେଉଁ ନବ ଜାଗରଣ ଝଙ୍କୃତ ହେଉଅଛି, ତାହା ବ୍ରିଟିଶ ଜାତିଙ୍କ ପ୍ରଦତ୍ତ ଶିକ୍ଷା ଓ ଦୀକ୍ଷାର ଫଳ । ଏ କଥା ଯେ ଅସ୍ୱୀକାର କରିବ, ସେ କୃତଘ୍ନ । ଏହି ପାଶ୍ଚାତ୍ୟ ଶିକ୍ଷାର ସଂଘର୍ଷରେ ହିନ୍ଦୁ-ମୁସଲମାନ ଭେଦ, ବ୍ରାହ୍ମଣ-ଶୂଦ୍ର ପ୍ରଭେଦ, ସ୍ପୃଶ୍ୟ-ଅସ୍ପୃଶ୍ୟ ଭେଦ, ଶିକ୍ଷିତ-ଅଶିକ୍ଷିତ ଭେଦ କ୍ରମଶଃ ଅପସାରିତ ହେଉଅଛି ଓ ଦିନେ ଏହି ଏକ ଜାତୀୟତାର ଭାବ ସମଗ୍ର ଭାରତକୁ ପ୍ଲାବିତ କରିବ ବୋଲି ଆଶା କରାଯାଏ । ଆଧୁନିକ ଭାରତର ଇତିହାସକୁ ପ୍ରଗାଢ଼ ଭାବରେ ଅନୁଧ୍ୟାନ କଲେ ଦେଖାଯିବ ଯେ, ଭାରତର ଆଧୁନିକ ପିଣ୍ଡ ଇଂରେଜମାନଙ୍କ ପ୍ରଦତ୍ତ ଛାଞ୍ଚରେ ଢଳା । ବର୍ତ୍ତମାନ ଦେଖାଯାଉଅଛି ଓ କାନରେ ଶୁଣାଯାଉଅଛି ଯେ, ଯୋଗ୍ୟତା ଦେଖିଲେ ଇଂରେଜ ଜାତି ଭାରତବାସୀଙ୍କୁ ସବୁ କ୍ଷେତ୍ରରେ ସମାନ ଅଧିକାର ଦେବାକୁ କୁଣ୍ଠିତ ହେବେ ନାହିଁ । ଭାରତକୁ ଅନ୍ତର୍ଜାତୀୟ ସାମ୍ରାଜ୍ୟ ସଭାରେ ସ୍ୱତନ୍ତ୍ର ସ୍ଥାନ ଦେବା, ଭାରତୀୟଙ୍କୁ ଲର୍ଡ଼ ଉପାଧି ଭୂଷିତ କରି ବିଲାତ ପାର୍ଲିଆମେଣ୍ଟରେ ଇଂରେଜଙ୍କ ସଙ୍ଗେ ସମାନ ଅଧିକାର ଦେବା, ଉଚ୍ଚତମ ଶାସନ ବିଭାଗରେ ଭାରତବାସୀଙ୍କୁ ପ୍ରବେଶାଧିକାର ଦେବା, ମହାସମରର ଅବସାନରେ ରାଜଶକ୍ତିମାନଙ୍କ ମଧ୍ୟରେ ଯେଉଁ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା, ତହିଁରେ ଭାରତ ପ୍ରତିନିଧିଙ୍କର ସ୍ୱାକ୍ଷର ରହିବା ପ୍ରଭୃତି କେତେଗୁଡ଼ିଏ କାର୍ଯ୍ୟରୁ ସ୍ପଷ୍ଟ ବୁଝାଯାଉଅଛି ଯେ, ଆମ୍ଭମାନଙ୍କ ଉପରେ ପଡୁଥିବା 'କାଲା ଆଦମୀ' ଦୃଷ୍ଟି ଏଣିକି ବିଲୁପ୍ତ ହେବ; କିନ୍ତୁ ଏହି ସବୁ ସମାନ ଆସନ ଓ ସମାନ ଅଧିକାର ମିଳିବା ସଙ୍ଗେ ସଙ୍ଗେ ଭାରତବାସୀ ଓ ବିଶେଷତଃ ଶିକ୍ଷିତ ଭାରତବାସୀମାନଙ୍କର ଦାୟିତ୍ୱ ଢେର ବଢ଼ିଅଛି । ସାଧାରଣ ଦେଶବାସୀମାନେ କିପରି ଶିକ୍ଷା ପାଇବେ, ରାଜନୀତିକ ଅଧିକାର ସୁପରିଚାଳନା କରିବାକୁ ସମର୍ଥ ହେବେ, ଶାସନ ନୀତି ଓ ତତ୍ତ୍ୱମାନ କିପରି ହୃଦୟଙ୍ଗମ କରିବେ, ସ୍ୱାୟତ୍ତ-ଶାସନ କ୍ଷମତାର କିପରି ସଦ୍‌ବ୍ୟବହାର କରିବେ, ବିଜ୍ଞାନ, କୃଷି, ବାଣିଜ୍ୟ, ବ୍ୟବସାୟ ଆଦି ପ୍ରତି କିପରି ଦେଶବାସୀମାନେ ଆକୃଷ୍ଟ ହେବେ, ଏଥିପ୍ରତି ପ୍ରତ୍ୟେକ ଶିକ୍ଷିତ ଭାରତବାସୀଙ୍କର ମନୋଯୋଗ ଦେବା ଆବଶ୍ୟକ । ଏଣିକି ପରମୁଖାପେକ୍ଷୀ ହେଲେ ଚଳିବ ନାହିଁ । ନିଜେ ନିଜ ପାଇଁ ପ୍ରାଣପଣେ ଲାଗିବାକୁ ହେବ ।

ବର୍ତ୍ତମାନ ପ୍ରସ୍ତାବିତ ଶାସନ ପଦ୍ଧତିରେ ଅଞ୍ଚଳ ବିଶେଷର ସାଧାରଣ ଲୋକେ ଯାହାଙ୍କୁ ନିର୍ବାଚନ କରିବେ, ସେହି ନିର୍ବାଚିତ ବ୍ୟକ୍ତି ତତ୍ତଦ୍ ଅଞ୍ଚଳର ପ୍ରତିନିଧିସ୍ୱରୂପ ଗଣ୍ୟ ହେବେ । ବେଳେ ବେଳେ ବ୍ୟବସ୍ଥାପକ ସଭାକୁ ସଭ୍ୟ ନିର୍ବାଚନ କଲାବେଳେ ମ୍ୟୁନିସିପାଲିଟି କମିସନର ଓ ଡିଷ୍ଟ୍ରିକ୍ଟ ବୋର୍ଡ଼ ମେମ୍ବର ଓ ଜମିଦାର ମେମ୍ବରମାନଙ୍କଠାରୁ

ଭୋଟ ସଂଗୃହୀତ ହେବା ନିମନ୍ତେ କେତେକ ପ୍ରାର୍ଥୀଙ୍କ ପକ୍ଷରୁ ଯେଉଁ ଯେଉଁ ଅଭିନୟମାନ ଘଟୁଥିବାର ଦେଖାଯାଏ ଓ ମ୍ୟୁନିସିପାଲିଟି କମିସନର ପାଇଁ ଭୋଟ ସଂଗ୍ରହ କରିବା ବେଳେ ଯେଉଁ କାଣ୍ଡ ବେଳେ ବେଳେ ଘଟେ, ସେହି ଓସ୍ତାତି ପେଞ୍ଚ ସବୁ ଯେବେ ମଫସଲ ପଢ଼ାଗାଁରେ ରାମ ମଳିକ, ଶାମ ସାମଲ, ସଦା ପ୍ରଧାନଠାରେ କଷାଯିବ, ତେବେ ଆଉ ରକ୍ଷା ଅଛି କି ?

ମୁଁ ତୋ ଜମିଦାର, ତୁ ମୋ ନାମରେ ଭୋଟ ଦେବୁ; ମୁଁ ତୋ ମହାଜନ, ତୁ ଅଲବତ ମୋ ନାମରେ ଭୋଟ ଦେବୁ; ମୁଁ ତୋ ଓକିଲ, ତୁ ମୋ ନାମରେ ଭୋଟ ଦେ - ଯେବେ ମଫସଲରେ ବଡ଼ ଲୋକ ଓ ଶିକ୍ଷିତମାନେ ଏହି ତାଣ୍ଡବ ଆରମ୍ଭ କରନ୍ତି, ତେବେ ଆମର 'Reform Scheme' ବା ଶାସନ-ସଂସ୍କାର ପଦ୍ଧତିରେ ଫଳ ଆମରି ଆଗେ ଆଗେ ଥୁଆ । ଏଥିପାଇଁ କହୁଥିଲି ଯେ, ଇଂରେଜ ଜାତି ଓ ଇଂରେଜ ପାର୍ଲିଆମେଣ୍ଟ ଓ ବ୍ରିଟିଶ ସମ୍ରାଟ୍ ଆମକୁ ଯେଉଁ ବର ଦେଲେ, ସେ ଅଭୟବରର ଫଳ ଫଳିବା ଆମରି ହାତରେ ଅଛି; ଯେବେ ଆମ୍ଭେମାନେ ଏପରି ମାହେନ୍ଦ୍ର ଯୋଗକୁ ଛାଡ଼ି ଦେଇ ଯେଝା ହାତରେ ଯେ ଚଉଦପା ହେବାକୁ ବସୁଁ, ତେବେ ଯେ ଯେଉଁଠି, ସେ ସେଇଠି ଥିବ ଓ ଚିଆଁ ପହଡ଼ କରୁ କରୁ ଫସର ଫାଟି ଦିନ ପହରେ ହୋଇଯିବ !

ଅତଏବ ପହଡ଼ ଭାଙ୍ଗି ଯେ ଯାହାର କାର୍ଯ୍ୟକ୍ଷେତ୍ରରେ ନିଜ ନିଜର ଶକ୍ତି, ବିଦ୍ୟା, ବୁଦ୍ଧି ଅନୁସାରେ ସାଇପଡ଼ିଶା ପାଞ୍ଚଜଣଙ୍କୁ ଅଗ୍ରସର କରାଇବା ଓ ବକ୍ତୃତାରେ ସବୁ କରାମତ୍‌ଯାକ ଜାହେର କରି କାମ ବେଳକୁ କବାଟ କିଳି ନ ଶୋଇବା ପାଇଁ ପ୍ରତ୍ୟେକ ଶିକ୍ଷିତ ଓ ପଦସ୍ଥ ବ୍ୟକ୍ତି ଚେଷ୍ଟା କରିବା ଏକାନ୍ତ ଆବଶ୍ୟକ ।

ଏ ତ ଗଲା ଘର କଥା - ଏ ପରେ ଅନ୍ଦର ମାହାଲା ଅର୍ଥାତ୍ ଗେର୍ଦ ଓଡ଼ିଆ କଥା । ମୁଁ ମନେକରେଁ ଯେ, ଆମ ଓଡ଼ିଶୀ ମତଟା ଦୁନିଆରୁ ସ୍ୱତନ୍ତ୍ର । ସଂସାରରେ ଅନ୍ୟ ଦେଶରେ ଯାହା ନିୟମ, ଏଠାରେ ସେଇଟା ଅନିୟମ; ଦୁନିଆରେ ଯାହା ପାଠ, ଏଠାରେ ତାହା ଅପାଠ । ଓଡ଼ିଶାଯାକ ଅଧିକାଂଶ କ୍ଷେତ୍ରରେ ଏହିପରି 'ହଳୀଶା, ଲାଙ୍ଗଳୀଶା' ପୂର୍ଣ୍ଣ । ଆମ୍ଭେମାନେ ସବୁବେଳେ, ସବୁ କ୍ଷେତ୍ରରେ ଅତି ସଂକୀର୍ଣ୍ଣ ସୀମା ମଧ୍ୟରେ ଘୂରୁଅଛୁଁ । ସଭ୍ୟଜଗତ୍‌ରେ, ସମଗ୍ର ଭାରତରେ କେତେ ପ୍ରକାର ଘଟନା ଘଟୁଅଛି ଓ ଅନୁଷ୍ଠାନ ଅନୁଷ୍ଠିତ ହେଉଅଛି,କିନ୍ତୁ ଆମ ଭିତରୁ କେତେ ଜଣ ତହିଁର ଖବର ରଖିଥାଉଁ ? ଆମ ଅଭିଧାନରେ ଥିବା କେତେଗୁଡ଼ିଏ ଶବ୍ଦ ଓ ଅର୍ଥ ଭାରତର ଅନ୍ୟତ୍ର ଦୁର୍ଲଭ । ଉତ୍କଳ ସମ୍ମିଳନୀର ସଭାପତି ଗତ ଅଧିବେଶନରେ ଓଡ଼ିଶାର ଏହି ବିଶେଷତ୍ୱ ପ୍ରତି ଲକ୍ଷ୍ୟ କରି ଆକ୍ଷେପ କରିଥିଲେ ଯେ, ଭାରତୀୟ ଅନୁଷ୍ଠାନ ଓ ଆନ୍ଦୋଳନମାନଙ୍କରେ ଓଡ଼ିଆ ପୁଅଙ୍କର ଯଥୋଚିତ ଯୋଗ ଦେବା ଦୃଶ୍ୟ ବିରଳ । ଓଡ଼ିଆ ବହିର୍ଜଗତର ଖବର ରଖିବାକୁ ନିତାନ୍ତ ନାରାଜ - 'ଓଢ଼େ କମ୍ବଲ୍ ପଡ଼େ ରହୋ' ହେଲା ଆମର ନୀତି ! ଦିନରାତି କେବଳ

ଭାବନା ଯେ କିପରି ସମଗ୍ର ଉତ୍କଳ-ଭାଷୀ ଅଞ୍ଚଳଯାକ ଏକ ଶାସନାଧୀନକୁ ଆସିବ; ଏଥିପାଇଁ ବର୍ଷକେ ଥରେ ସମ୍ମିଳନୀରେ କୁହାଟଟାଏ ମାରି ଦେଲେ ଆମର ସ୍ୱଜାତି ପ୍ରତି କର୍ତ୍ତବ୍ୟ ସମାଧାନ ହୋଇ ଯାଉଅଛି । ଭାରତରେ ଗତ ୪।୫ ବର୍ଷ ମଧ୍ୟରେ ଯେତେଗୁଡ଼ିଏ ଭାରତବ୍ୟାପୀ ଆନ୍ଦୋଳନ ହୋଇ ଯାଇଅଛି, ସେଥିରୁ କେତେଗୋଟିରେ ଓଡ଼ିଶାର କରାମତ୍ ଜଣାପଡ଼ିବ; ତେବେ ଓଡ଼ିଆଙ୍କର ଗୋଟାଏ ବିଶେଷତ୍ୱ ଏହି କି, "ଆରେ ଧାଇଁପଡ଼ ହୋ । ବିଦେଶୀଲୁଚାକ ଆସି ଆମ ଅବାଦସ୍ତ ବୋହି ନେଇ ଗଲେ ହୋ !" ଏ ଡାକଟା ସବୁବେଳେ କାନରେ ପଡ଼ୁଅଛି । ଏ ଡାକଟା ଏତେ ସଂକ୍ରାମକ ହୋଇ ଯାଇଅଛି ଯେ, ଓଡ଼ିଆ ସମାଜର ନିମ୍ନସ୍ତରଠାରୁ ଉଚ୍ଚସ୍ତରବ୍ୟାପୀ, ଯାହା ଏ ସୀମା ଛାଡ଼ି ଓଡ଼ିଶାର ସ୍ଥାୟୀ ଓ ଅସ୍ଥାୟୀ, ଅସଲ ଓ ଦୋନସଲ ଅଧିବାସୀ, ଅନ୍ୟାନ୍ୟ ଜାତିମାନଙ୍କୁ ମଧ୍ୟ ସଂକ୍ରମଣ କରିଛି; ନିତାନ୍ତ କାହାରିକୁ ନ ପାଇଲେ ଆପଣାର ଘର ଭିତରେ, ଆପଣା ଗାଁରେ, ଆପଣା ସାଇରେ ବ୍ରାହ୍ମଣ-ଶୂଦ୍ର, କଟକୀ-ବାଲେଶ୍ୱରୀ, ମୋଗଲବନ୍ଦି-ଗଡ଼ଜାତି, କାରଣ-ଖଣ୍ଡାଏତ, ଜମିଦାର-ପ୍ରଜା, ବଡ଼ଭାଇ-ସାନଭାଇ, ମହାଜନ-ଖାତକ ଆପଣା ଆପଣା ଭିତରେ କାମୁଡ଼ାକାମୁଡ଼ି ହୋଇ ନିଜ ନିଜର ଲହୁ ଚଟାଚଟି ହେଉଥାଇଁ ଓ ବାହାଦୁରି ପାଇବା ଆଶାରେ ଦାନ୍ତ ନିକୁଟୁଥାଇଁ, ଆଉ ସମଗ୍ର ସଭ୍ୟଜଗତ୍ ଏହା ଦେଖି ଭକ୍ତିଗଦ୍‌ଗଦ ସ୍ୱରରେ କହୁଅଛି - "ଓଡ଼ିଶାମେ ଠାକୁର ଜଗନ୍ନାଥେ ଭଲେ ବିରାଜେ ହୋ !"

ଉ.ସା. - ୨୩ଶ ଭାଗ / ୧୨ଶ ସଂଖ୍ୟା / ଚୈତ୍ର / ୧୩୨୭ ସାଲ ।

## ।। ତିରିଶ ।।

ମୁଁ ବରାବର ଆଜିକୁ ୧୦।୧୫ ବର୍ଷ ହେଲା ରଡ଼ି ଛାଡ଼ିଅଛି ଯେ, ଭାଗବତଟୁଙ୍ଗି ଠାରୁ ଆରମ୍ଭ କରି ନନାଙ୍କ ବସ୍ତାନି, ବାଇ ମାହାନ୍ତି ପାଞ୍ଜି ଲଗାଏତ ଦୁନିଆର ଓ ଘରର ହାଲଚାଲ ପର୍ଯ୍ୟନ୍ତ ସବୁଠାରେ ତୁଛା ପହଳି (ପ୍ରହେଳିକା) ଗୁଡ଼ାଏ ଏ ନିଆଁଲଗା କପାଳକୁ ହାବୁଡ଼ି ଯାଉଅଛି । ଆଉ ସେ ପ୍ରହେଳିକାଗୁଡ଼ିକ ସନ୍ତୋଷଜନକ ରୂପେ ସାଧନା କରି ନ ପାରିବାରୁ ମୁଁ ବେଳେ ବେଳେ ନାକରେ ବନିଶୀ କଣ୍ଟା ଲାଗିଥିବା ମାଛଭଳିଆ ତହଳ ବିକଳ ହେଉଅଛି । ଏ ଦୁନିଆରେ କୌଣସି ଅଭିନୟରେ ମୁଁ ଦେଖଣାହାରିର ସ୍ଥାନ ଅଧିକାର କରିବାବେଳେ କେତେ ମନ୍ତବ୍ୟ, କେତେ ଉପଦେଶ, କେତେ ସମାଲୋଚନା, କେତେ ଅଭିଜ୍ଞତା ମୋ ପାଟିରୁ ଓ ମୋ କଲମ ମୁନରୁ ବାହାରୁଅଛି; କିନ୍ତୁ ବେଳ ପଡ଼ିଲେ ଅର୍ଥାତ୍ ଦେଖଣାହାରିଙ୍କ ମଞ୍ଚରୁ ଓହ୍ଲାଇ ଯାତ୍ରା ଜାଗାରେ ମୁଁ ନିଜେ ସୁଆଙ୍ଗ ସାଜି ଠିଆ ହେଲା ବେଳକୁ ଦେଖୁଅଛି ଯେ, ମୋ ମନ୍ତବ୍ୟ, ମୋ ଉପଦେଶ, ମୋ ସମାଲୋଚନା, ମୋ ଶାସ୍ତ୍ରଜ୍ଞାନ ଓ ମୋ ଧର୍ମଭୀରୁତା କେଉଁଆଡ଼େ ପାଣିଫୋଟକା ଭଳିଆ ଉଭେଇ ଯାଉଅଛି ! ଏହି ଜୀବନ ସମସ୍ୟାକୁ ସାଧନ କରି ଏହାର ଗୋଟିଏ ମନବୋଧିଆ କୈଫିୟତ୍

ଠିକଣା କରିବାକୁ 'କଳିଷଠାରୁ' ବାରପଣ ଖତମ ହୋଇ ସାରିଲାଣି; ମୁଣ୍ଡରେ, ପାଟିରେ, ଆଖିରେ ଦିହର ଚମଡ଼ାରେ ସରକାରୀ ଉଆରଣ୍ଟଜାରିର ମୋହର ବସି ସାରିଲାଣି, ତଥାପି ଦିନକୁ ଦିନ ସମସ୍ୟାଟା ବେଶି ଜଟିଳ ହେଉଅଛି । ମୁଁ ଦେଖୁଅଛି, ମୁଁ ନିଜେ ନିଜେ ପୂର୍ବ ଅପେକ୍ଷା ବେଶି ବେଶି ଅବୁଝା, ଅଝଟ, ଅକମଡ଼ିଆ, ଅଥୟ ଓ ଅସଜିଆ ବନି ଯାଉଅଛି । ଯେବେ ସଂସାରର ଅନୁଭବରୁ ଲବ୍ଧ ଅଭିଜ୍ଞତା ଦ୍ୱାରା ତୁମର ଆଧ୍ୟାତ୍ମିକ ଉନ୍ନତି ଓ ପ୍ରକୃତିଗତ ଉତ୍କର୍ଷ ନ ହେଲା, ତେବେ ଏପରି ଜୀବନକୁ ଧିକ୍ ! ଅନଭିଜ୍ଞ ବାଳକଠାରେ ତାହା କ୍ଷାନ୍ତବ୍ୟ ହୋଇ ନ ପାରେ । ଅଶିକ୍ଷିତା ଅବଳାଠାରେ ଯାହା ମାର୍ଜନୀୟ, ପ୍ରବୀଣ ପଣ୍ଡିତଙ୍କଠାରେ ସେହି ଦୋଷ କ୍ଷମାଯୋଗ୍ୟ ନୁହେଁ । ଅଥଚ ଫଳରେ ଦେଖାଯାଉଅଛି ଯେ, ବାଳକ ଦୋଷ କଲା ମାତ୍ରକେ ତାକୁ ମଚୁଆ ଶାଙ୍କୁଳି ଦେଇ ତା ନାକରୁ ପଳେ ଦୁଇ ପଳ ସିଙ୍ଘାଣି ଓ ତା ପିଠି ଓ ପିଚାରୁ ଛଟାକିଏ ଖଣ୍ଡେ ଲହୁ ବାହାରିବାର ବ୍ୟବସ୍ଥା ହେଉଅଛି, ଅଥଚ ଦଣ୍ଡଦାତା ଓ ଉପଦେଷ୍ଟାଙ୍କର ସେହି ଶ୍ରେଣୀର ଶତଗୁଣ ତ୍ରୁଟି ହେଲେ ସୁଦ୍ଧା ତାକୁ କେହି ସଜା ଦେବାକୁ ନାହିଁ । ସଂସାରରେ ଦେଖାଯାଉଅଛି ଯେ, ଆଜ୍ଞା, ଅଶିକ୍ଷିତା ପିଞ୍ଜରାବନ୍ଧା ସ୍ତ୍ରୀଲୋକର ଟିକିଏ ସ୍ଖଳନ ଦେଖିଲା ମାତ୍ରକେ ସମଗ୍ର ସମାଜ ରାଗରେ କମ୍ପମାନ ହୋଇ ସେ ନିରୀହ ପ୍ରାଣୀକୁ ତିନି ପାଞ୍ଜିରୁ ପୋଛିଦେବାକୁ କୁଣ୍ଠିତ ହେଉ ନାହିଁ; କିନ୍ତୁ ଅଭିଜ୍ଞ, ଶିକ୍ଷିତ, ସ୍ୱାଧୀନତାପ୍ରାପ୍ତ ସଭ୍ୟ ପଣ୍ଡିତମ୍ମନ୍ୟ ବ୍ୟକ୍ତିଙ୍କର ତଦପେକ୍ଷା ଗୁରୁତର ଅପରାଧମାନ ସମାଜ ଅମ୍ଳାନ ବଦନରେ ଘୋଡ଼ାଇ ପକାଉଅଛି ଓ ଅପରାଧୀକୁ ବେକସୁର ଖଲାସ ଦେଇ ତାକୁ ଖରଚା ସହିତ ଡିଗ୍ରୀ ଦେଉଅଛି ।

ଦୁନିଆର ଏ ଯେଉଁ ପ୍ରହେଳିକା ଦେଖି ମୁଁ ବୁଝି ପାରୁ ନ ଥିଲି, ଆମ ଘରେ ଆସି ପହଞ୍ଚି ମଧ୍ୟ ଦେଖିଲି ଯେ, ସେହି ପହଳିର ମାଡ଼ ଚାଲିଅଛି । ସାଆନ୍ତଙ୍କ ପାଇଁ ଏକ ନିଶାପ, ସାଆନ୍ତାଣୀଙ୍କ ବେଳକୁ ଭିନ୍ନେ ନିଶାପ; ଖାମିଦଙ୍କ ପାଇଁ ଆଇନଟା ଭାରି କଅଁଳିଆ, କିନ୍ତୁ ଚାକର ବାପୁଡ଼ାପାଇଁ ଆଇନଟା ଖୁବ୍ କଡ଼ାକଡ଼ି; ମୁରବିଙ୍କ ପାଇଁ ବ୍ୟାବହାରିକ, ସାମାଜିକ ଓ ନୈତିକ ନିୟମଗୁଡ଼ାକ ଖାଲି ଖୋଷଣିଫିଟା, କିନ୍ତୁ ଘରର ବାଲବଚ୍ଚାଙ୍କ ପାଇଁ ବିଧିବିଧାନଗୁଡ଼ାକ କମରକଷା । ସରଦାର ବିରାଦର, ଜମିଦାର ରଏତ, ରଜା ପ୍ରଜା, ମହାଜନ ଖାତକ, ଧଳା କଳା, ବୁଢ଼ା ପିଲା, ପୁରୁଷ ସ୍ତ୍ରୀ, ବ୍ରାହ୍ମଣ ଶୂଦ୍ର ସବୁ ଇଲାକାରେ ଫଳତଃ ଦୁଇଟା ଆଇନ ଚଳୁଅଛି । ବଡ଼ବଡୁଆଙ୍କ ପାଇଁ ବିଧିଗୁଡ଼ିକ ପୋଲାଫାଙ୍କିଆ, ଗରିବଗୁରୁବାଙ୍କ ପାଇଁ କାନୁନଗୁଡ଼ାକ ଖାଲି ହଂସାଉଡ଼ା ଓ ଠେଙ୍ଗୁହୁଣା । ମୁଁ ଯେଉଁଠାକୁ ଗଲି, ଯେଉଁ ଦେଶକୁ ଗଲି, ଯେଉଁ କ୍ଷେତ୍ରକୁ ଗଲି, ଯେଉଁ ମିସଲକୁ ଗଲି, ସେହିଠାରେ ଦେଖୁଛି ଏହି ବିଷମ ସମସ୍ୟା । ଏତିକି ମାତ୍ର ଆଶ୍ୱାସନା ଯେ, ଏହି ପ୍ରହେଳିକା ଓ ସମସ୍ୟାକୁ ସାଧନ କରିବା ନିମନ୍ତେ କେତେ କେତେ ଯୋଗୀ, ଋଷି, ପଣ୍ଡିତ, ମୂର୍ଖ, ବାଳକ, ବୃଦ୍ଧ ଘାଉଁରି ଖାଇ ଆବହମାନ କାଳରୁ ଏ ସମସ୍ୟା ଅସିଦ୍ଧ ଓ ଅଭେଦ୍ୟ ହୋଇ ରହିଅଛି, ଆଜି ମୁଁ ଏହାର ସନ୍ତୋଷଜନକ କୈଫିୟତ୍ ଦେଇ ନ ପାରିଲି ବୋଲି ଏହା

ମୋ ପକ୍ଷରେ ଏଡ଼େ ନାମୁଷ୍କି କଥାଟାଏ ନୁହେଁ ! ମୋର ପୂର୍ବପୁରୁଷମାନେ କୁହୁଡ଼ି ପହଁରୁଥିଲେ, ମୋ ଘଡ଼ିକ ମୁଁ କୁହୁଡ଼ି ପହଁରୁଅଛି, ମୋ ପରେ ମୋ ବଂଶଧରମାନେ ମଧ ମୋରି ଭଳି ଏ କୁହୁଡ଼ିରେ ଖଣ୍ଡିପହଁରା ପହଁରିବେ । ଏଥିରେ ଆଶ୍ଚର୍ଯ୍ୟର ବିଷୟ କିଛି ନାହିଁ । ଆଚ୍ଛା ଏ ତ ଗଲା ଗୋଟିଏ ଗୋଲକଧନ୍ଦା - ଗୋଲକଧନ୍ଦା ନମ୍ବର ଏକ । ଏହାଠାରୁ ବଳି ଆହୁରି ସଙ୍ଗିନ୍ ଗୋଲକଧନ୍ଦା ଅଛି । ମୋର ସେହି ଶିକ୍ଷା ଅଛି; ସେହି ବିବେକ, ସେହି ଅଭିଜ୍ଞତା, ସେହି ବିଦ୍ୟା, ସେହି ବୁଦ୍ଧି ଅଛି; କିନ୍ତୁ ଘଡ଼ିକେ ମୁଁ ସ୍ୱର୍ଗର ଦେବତା, ଆରଘଡ଼ିକୁ ମୁଁ ନରକର ପିଶାଚ ବନିଯାଉଅଛି କିମିତି ? ଆଜି ମତେ ସଂସାରଟି ଆଶାମୟ, ଆନନ୍ଦମୟ, ପ୍ରେମମୟ, ରସମୟ ଓ ନ୍ୟାୟପୂର୍ଣ୍ଣ, ଛାପଚିକଣିଆ ଦିଶୁଅଛି, କାଲିକି ଫେର ସେହି ସଂସାର ମୋ ଆଖିରେ ନୈରାଶ୍ୟପୂର୍ଣ୍ଣ, ନିରାନନ୍ଦମୟ, ଦ୍ୱେଷମୟ, ନୀରସ, ଅନ୍ୟାୟପୂର୍ଣ୍ଣ ଓ ଆବଡ଼ା-ଖାବଡ଼ା ଦେଖାଯାଉଅଛି କିମିତି ? ଏ ହେଲା ଧନ୍ଦା ନମ୍ବର ଦୁଇ । ଏହାଠାରୁ ବଳି ଆହୁରି ବଳିଆର ଗୋଲକଧନ୍ଦା ଅଛି - ମନୁଷ୍ୟ ଏକ ସମୟରେ, ଏକ ସ୍ଥାନରେ ଦୋରଙ୍ଗ ହେଉଅଛି । ଯେଉଁ ମୁହୂର୍ତ୍ତରେ ମୁଁ ଆନନ୍ଦରେ ମାତି ଆଶାର ଢେଉରେ ନାଚୁଅଛି, ସେହି ମୁହୂର୍ତ୍ତରେ ମନରେ ହଠାତ୍ ଆସି ନିରାଶାର ଚୋଟ, ନିରାନନ୍ଦର କର୍କଶ ସ୍ୱର ଲାଗି ଯାଉଅଛି କିମିତି ? ସାଂସାରିକ ସୁଖଭୋଗର ଅନୁଭୂତି ସଙ୍ଗେ ସଙ୍ଗେ ବିଷାଦ ଓ ନିରାଶାର ମେଘ ଖଣ୍ଡେ ଲେଖାଏଁ ଉଙ୍କି ଉଠୁଅଛି କିଆଁ ? ଅଥଚ ଯାହାର ଏହି ବିପରୀତାନୁଭୂତି ହେଉଅଛି, ଲୋକେ ତାହାକୁ କହୁଅଛନ୍ତି ପଣ୍ଡିତ ! ଆଚ୍ଛା ଆଉ ଗୋଟିଏ ପ୍ରହେଳିକା ଦେଖନ୍ତୁ - ସେହି ମନୁଷ୍ୟର ସାଧାରଣତଃ ବାହାରେ ଗୋଟିଏ ଚେହେରା, ଭିତରେ ଗୋଟିଏ ଚେହେରା ଦେଖା ଯାଉଅଛି । 'ହୃଦରେ ଖୁରଧାର, ମୁଖେ ଭାଷା ମଧୁର' - ଏଇଟା ନିତ୍ୟ ପ୍ରତ୍ୟକ୍ଷ ଘଟନା । ମତେ ଯେ କଚେରି ପୋଷାକରେ ମିସଲ ଉପରେ ଦେଖୁଅଛନ୍ତି, ସେ ଜାଣୁଅଛନ୍ତି, ମୁଁ ଜ୍ଞାନୀ, ମୁଁ ବିବେକୀ, ମୁଁ ବିଚାରବନ୍ତ, ନ୍ୟାୟପ୍ରବର୍ତ୍ତକ; କିନ୍ତୁ ସେହି ମୁହୂର୍ତ୍ତରେ ପୋଷାକ କାଢ଼ି ହିରଣ୍ୟକଶିପୁ ଭଳି ଛାତି ଚିରିଲା ବେଳକୁ ମୁଁ ଅଜ୍ଞାନ, ଅବିବେକୀ, ଅବିଚାରୀ ଓ ଅନ୍ୟାୟାଚାରୀ, ଏ କେଉଁ ପାଠ ?

ଆଉ ଗୋଟିଏ କଥା ଦେଖନ୍ତୁ - ମୁଁ ଗୋଟିଏ କଥା ସମର୍ଥନ କରୁଅଛି, ସେଥିପାଇଁ ଶାସ୍ତ୍ରର କେତେ ନଜିର, ଧର୍ମର କେତେ ଦୋହି ବାହାରୁଅଛି; କିନ୍ତୁ ସେହି କଥା ଅନ୍ୟ କେହି କଲାବେଳକୁ ସେହି ଶାସ୍ତ୍ର ତା'ପାଇଁ ବଦଳି ଯାଉଅଛି ଓ ସେହି ପାଠରେ ତା ବିରୋଧରେ ଅନେକ ନଜିର ବାହାରୁଅଛି । ଶାସ୍ତ୍ର ଲେଖିଲା - ଜୀବହିଂସା ମହାପାପ । ଫେର ସେହି ଶାସ୍ତ୍ର ଡାକିଲା - ଯଜ୍ଞାର୍ଥେ ପଶୁବଧ କର୍ତ୍ତବ୍ୟ । ସେହି ଶାସ୍ତ୍ର ଡାକିଲା - ମାଛଟିଏ ମାଇଲେ, ଛେଳିଟିଏ ମାଇଲେ, ମଇଁଷିଟିଏ ମାଇଲେ ଦୋଷ ନାହିଁ; କିନ୍ତୁ ଫେର ସେହି ଶାସ୍ତ୍ର ହାଙ୍କିଲା - ଗୋରୁଟିଏ ମାଇଲେ ମହାପାପ, ବ୍ରାହ୍ମଣଟିଏ ମାଇଲେ ବ୍ରହ୍ମହତ୍ୟା । ଗୋମାତା ହେଲେ ଈଶ୍ୱର ସୃଷ୍ଟ ମହାଜୀବ, ମାଛ ବା ଛେଳିଟି ହେଲା ନାଉଆରସି ମାଲ ! ଭୂମିଷ୍ଠ ହେବାର ୫।୭ ବର୍ଷ ପର୍ଯ୍ୟନ୍ତ ହସ କାନ୍ଦ, ଖେଳ କଉତୁକ ଓ ଗରହୁସିଆରିରେ ବାପ ମା ଭାଇବନ୍ଧୁ

କୁଟୁମ୍ବ ଓ ଅବଧାନ ପଣ୍ଡିତଙ୍କ ବାହୁଛାୟାରେ କଟିଗଲା । ତା ପରେ ମୁଣ୍ଡକୁ ହାତ ପାଇବା ଦିନଠାରୁ ଆସି ଦୁଇ କୋଡ଼ି ବର୍ଷ ବିତିଗଲାଣି, ସଂସାରର ପ୍ରହେଳିକାଗୁଡ଼ାକ ଦିନକୁ ଦିନ ବେଶି ବେଶି କୁହୁଡ଼ିମୟ ହୋଇ ସାରା ସଂସାରଟାଯାକ ବେଶି ବେଶି ଛାଲଛାଲୁଆ ଦିଶୁଅଛି ମାତ୍ର । ଏସବୁ ସାଧନ ନ କରି, ବିଛାମନ୍ତ୍ର ନ ଜାଣି ନାଗସାପ ଗାତରେ ହାତ ପୂରାଇବା ଭଳି ମୁଁ ସଂସାର ଭିତରେ ଗୋଳେଇ ଘାଣ୍ଟି ହେଉଅଛି ମାତ୍ର - ଅନ୍ଧାରକଣା ଭଳି ଚାହିଁ ଢଳକା ବନୁଅଛି ମାତ୍ର !

ମୁଁ ଘରର ମାଲିକ, ସଂସାରର କର୍ତ୍ତା; ଦିନ ପହର ନ ହେଲେ ମୋ ନିଦ ନ ଭାଙ୍ଗେରେ ବାପା ! କିନ୍ତୁ ମୋ ପହଡ଼ ଭାଙ୍ଗିଲା ବେଳକୁ ଯେବେ ଘରର ପିଲାମାନେ ପାଠ ପଢ଼ି ବସି ନାହାନ୍ତି କିମ୍ବା ଚାକରମାନେ ଘରଦ୍ୱାର ଓଳିଆଓଳି କରି ମୋ ପାଇଁ କାଠିଲାଗିର ଉପକରଣମାନ ସଜାଡ଼ି ରଖି ନାହାନ୍ତି କିମ୍ବା ଖନ୍ଦାଖାଇ ସାଆନ୍ତାଣୀ ପନିକି ପକାଇ ସାତ ତିଅଣ ଆଠ ଭଜା ପାଇଁ ପରିବା କାଟି ବସି ନାହାନ୍ତି, ତାହା ହେଲେ ସୃଷ୍ଟି ପ୍ରଳୟ ହେଲା ! ଏମାନେ ସମସ୍ତେ ଡେରି କରି ଉଠିଲେ କିଆଁ ? ଏଥିପାଇଁ ପିଲାଙ୍କୁ ଦଣ୍ଡବିଧାନ, ଚାକରଙ୍କର ଆଜି ଓଳିଟି ପଡ଼ିକାଟ, ସାଅନ୍ତାଣୀଙ୍କ ପ୍ରତି ଆମ୍ଳଚଟା ମୁଖଭଙ୍ଗୀ ଓ ବୈବାହିକ ଗାର୍ହସ୍ଥ୍ୟ କାନୁନ ମୁତାବକ ଶଯ୍ୟାନ୍ତର ଦଣ୍ଡବିଧି, ଇତ୍ୟାଦି ଇତ୍ୟାଦି । ସେତେବେଳେ ମୁଁ ବିଚାରିପାରୁ ନାହିଁ ଯେ, ମୋ ପାଇଁ ଦିନ ପହରକ ସରିକି ପହୁଡ଼ ତେଜିବାର ଯେଉଁ ଆଇନ, ସେ ଆଇନ ଏମାନଙ୍କ ପ୍ରତି ନ ଖଟିବାର କାରଣ କଣ ?

ପରର ସମ୍ପତ୍ତି ଆଣି ମୁଁ କିମିତି ଘର କରନ୍ତି, ପର ଘର ଭାଙ୍ଗି ମୋ ଘରଟିକୁ ମୁଁ ଧୂଳିଆ ଘର କରି ଦିଅନ୍ତି, ପରର ହିଡ଼ ହାଣି ମୋ ଜମିରେ ପୂରାଇ ଦିଅନ୍ତି, ପରପୁଅ ମାମଲା ମକଦମା କରି ଦାଣ୍ଡକୁ ବାହାରିଲେ ମୋ ଭଳିଆ କେତେ ଜଣ ତା ରକ୍ତ ଶୋଷି ପୋଷି ହୋଇ ଯାଆନ୍ତେଇ, ଅମୁକ ଲୋକର ମୁହଁ ଓ ପ୍ରତାପ ଭାଙ୍ଗିଦେଲେ ମୋ କରଣି ଭାରି କାଟୁ କରନ୍ତା - ଦିନ ରାତି ମୁଁ ଏହି ଚିନ୍ତାରେ ବ୍ୟସ୍ତ; କିନ୍ତୁ ଯେବେ ସଂସାରରେ ମୋ ଛଡ଼ା ଅନ୍ୟ କେହି ଏ କାର୍ଯ୍ୟ କରେ ବା ଭାବେ, ମୁଁ ତାକୁ ଘୋଷଣା କରିବି ରାକ୍ଷସ, ପାପୀ, ଇତ୍ୟାଦି ଇତ୍ୟାଦି ।

ଦେଖିଲା ବେଳକୁ ଖାଲି ଏମିତି କେତେଗୁଡ଼ିଏ ଅଖାଡୁଆ ପହଲି । ଆଚ୍ଛା ସମସ୍ତେ ଅଛ ବହୁତ ପଢୁଥାଇଁ, ଶୁଣୁଥାଇଁ, ଦେଖୁଥାଇଁ ଓ ଶିଖୁଥାଇଁ ଯେ, କାରଣ ନ ଥାଇ କାର୍ଯ୍ୟ ନାହିଁ, ବୀଜ ନ ଥାଇ ଗଛ ନାହିଁ; କିନ୍ତୁ କହନ୍ତୁ ଭଲା, ବେଳେ ବେଳେ କିଛି ଅନୁମେୟ କାରଣ ନ ଥାଇ ମନୁଷ୍ୟ ହଠାତ୍ ଦୁର୍ମନା ହୋଇ ଅମୋକ୍ଷ ପ୍ରେତ ଭଳିଆ, ଚିରଗୁଣୀ ଭଳିଆ, ଖରା ଦିନ ଦିପହରେ ତାହାଳ କୁରୀ ଭଳିଆ ବୁଲେ କାହିଁକି ? ସଂସାର ତାକୁ ଭଲ ଲାଗେ ନାହିଁ, ସବୁ କଥା ପିତା ଲାଗେ କାହିଁକି ? ଏ ସଂସାରଟା ନିଆଁ ଲାଗିଥାନ୍ତା, ଏପରି ଭାବନା ଉପୁଜେ କାହିଁକି ? ବିନା ମେଘରେ ବଜ୍ରପାତ ହୁଏ କିଆଁ ? ମନଟା ଅତି

ବାଇ ହୁଏ, କିନ୍ତୁ କେଉଁ କାରଣରୁ, କେଉଁ ଅଭାବରୁ, କେଉଁ ଅସୁବିଧାରୁ, କେଉଁ ଅପେକ୍ଷ କାମନାରୁ ଏପରି ହୁଏ, ତାହା କିଛି ଠିକଣା ତ୍ୟାଗ କରିପାରେ ନାହିଁ । ଏ କେଉଁ ପ୍ରହେଳିକା ? କେହି କେହି ପଣ୍ଡିତ କହିଅଛନ୍ତି ଏହାର ଜନ୍ମାନ୍ତରୀକରଣ ପ୍ରଚ୍ଛନ୍ନ ଭାବରେ ଥାଏ, ମନୁଷ୍ୟ ଏ ଜନ୍ମରେ ତାହା ବିସ୍ମୃତ ହୋଇଯାଏ କିନ୍ତୁ ଫଳଟା ତ ଲୁଚିବାର ପଦାର୍ଥ ନୁହେଁ; ଭୁଲୁ ନ ଭୁଲୁ, ଫଳ ନିଶ୍ଚେ ଭୋଗ କରେ । କେହି କେହି ପଣ୍ଡିତ ସିଦ୍ଧାନ୍ତ କରନ୍ତି ଯେ, ଏପରି ମନବ୍ୟସ୍ତର କାରଣ ଅନୁସନ୍ଧାନ କଲେ ଦେଖାଯିବ ଯେ, ଭବିଷ୍ୟତ୍ ଅମଙ୍ଗଳ, ଅନୁପସ୍ଥିତ ଓ ଦୂରସ୍ଥିତ ପ୍ରିୟଜନଙ୍କ ଉପରେ କୌଣସି ବିପଦ୍‌ପାତ ଘଟିବାର ଏହା ସୂଚନା ମାତ୍ର । କିନ୍ତୁ ଏ ଉତ୍ତରରେ ମନ ବୋଧ ହୁଏ ନାହିଁ । ଫଳତଃ ଦେଖାଯାଏ ଯେ, ଦଣ୍ଡେ ଘଡ଼ିଏ, ପହରେ, ଦିନେ, ପକ୍ଷେ ବାଦ ମନଟା ଆପେ ଆପେ ବଦଳିଯାଇ ଫେର ଶଗଡ଼ ସରିରେ ପଡ଼ି ଦୁନିଆ ସହିତ ଖାପ ଖାଇଯାଏ ।

ଆଉ ଗୋଟିଏ କଥା ଦେଖନ୍ତୁ - ମୁଁ ଆପଣଙ୍କର ଜଣେ ବିଶ୍ୱାସୀ ସୁହୃଦ୍, ଆପଣଙ୍କର ଅନ୍ତରଙ୍ଗ ବନ୍ଧୁ, ଆପଣଙ୍କ ଦ୍ୱାରା ଚିରୋପକୃତ ଓ ଆପଣଙ୍କଠାରେ ନାନାପ୍ରକାରେ ଆଗଣ୍ଠ ଋଣୀ - ଆପଣ ମତେ କିମ୍ୱା ମୁଁ ଆପଣଙ୍କୁ ଦଣ୍ଡେ ନ ଦେଖିଲେ ପାଣିପିଆପିଇ ହେଉ ନାହିଁ । ବର୍ତ୍ତମାନ 'ଜଡ଼ାତେଲ ମେଣ୍ଢାବାଳ' ହୋଇଥାଉଁ, ମୁଁ ଆପଣଙ୍କୁ ଓ ଆପଣ ମତେ ନ ଦେଖିବା ପର୍ଯ୍ୟନ୍ତ ମନ ଡହଳ ବିକଳ ହେଉଥାଏ । କିନ୍ତୁ ଫେର ଘଡ଼ିକ ବାଦ, ପ୍ରହରକ ବାଦ, ଦିନକ ବାଦ, ମାସକ ବାଦ, ପକ୍ଷକ ବାଦ, ବର୍ଷକ ବାଦ ଦେଖିଲା ବେଳକୁ ସେ ବନ୍ଧୁତା, ସେ ଆଦର, ସେ ସଙ୍ଗଲିପ୍‌ସା କେଉଁଆଡ଼େ ପୋଡ଼ି ଜଳି ନିଆଁ ପାଉଁଶ ହୋଇ ଗଲାଣି । ଆଜି ଆପଣଙ୍କର ମୋର 'କାଚଘଡ଼ି - ଶିଳପୁଆ' ସମ୍ପର୍କ । ଆପଣ ମୋ ଗୋଛି ଓ ମୁଁ ଆପଣଙ୍କ ଗୋଛି କାଟିବାରେ ବ୍ୟସ୍ତ ଓ ପରସ୍ପରର ସର୍ବନାଶରେ ଅନ୍ୟ ଜଣକ ସୁଖ ଅନୁଭବ କରେ । ଏ କେଉଁ ପ୍ରହେଳିକା ? ଲଘୁ ପାପକୁ ଗୁରୁଦଣ୍ଡର ବ୍ୟବସ୍ଥା କରି ସୁଦ୍ଧା ମନ ଥୟ ହୁଏ ନାହିଁ । ସେଥିପାଇଁ କହନ୍ତି, ସଂସାରରେ କିଛି ଚିର ନୁହେଁ । ଏହା କେଉଁ ସମସ୍ୟା ? ଅଳ୍ପବହୁତ ବାରଗଣ୍ଡା ବର୍ଷ ଏ ଦିହରେ ବିତିଲା, ତେବେ ତ ଏହି ସମସ୍ୟାଗୁଡ଼ିକ ସାଧନ କରିବା କଥା ଦୂରେ ଥାଉ, ଏଗୁଡ଼ିକର ଇୟତ୍ତା କରି ହେଲା ନାହିଁ ।

ଏ ଦୁନିଆରେ ଭଲ ଲୋକ କିଏ, ପାଜି କିଏ ? ଭଲ କଣ, ମନ୍ଦ କଣ ? ବନ୍ଧୁ କିଏ, ଶତ୍ରୁ କିଏ ? କୃତଜ୍ଞ କିଏ, କୃତଘ୍ନ କିଏ ? ଦେବତା କିଏ, ରାକ୍ଷସ କିଏ ? ମନୁଷ୍ୟ କିଏ, ପଶୁ କିଏ ? ପାପୀ କିଏ, ପୁଣ୍ୟବାନ୍ କିଏ ? ଏ ଜୀବର ହିତ କଣ, ଗରହିତ କଣ ? ପଥ୍ୟ କଣ, ଅପଥ୍ୟ କଣ ? କାର୍ଯ୍ୟ କଣ, ଅକାର୍ଯ୍ୟ କଣ ? ଏତିକି କଥା ତ ଠିକଣା ହୋଇପାରିଲା ନାହିଁ, ଆଉ କେବକୁ 'କରାଟରେ ପଶିବ ଓ ମହମହ ବାସିବ' ?

ସଂସାରରେ ଜନ୍ମ ହୋଇ ସଂସାରର କେତେଗୁଡ଼ିଏ ସ୍ୱୀକାର୍ଯ୍ୟ ଓ ସ୍ୱତଃସିଦ୍ଧ କଥା ତ ଆୟତ୍ତ, ଅଭ୍ୟସ୍ତ ହୋଇପାରିଲା ନାହିଁ । ସମ୍ପାଦ୍ୟ, ଉପପାଦ୍ୟ ଉପରକୁ ଉଠିବା ତ କାଠିକର ପାଠ । ଏହି ପ୍ରହେଳିକା ଓ ସମସ୍ୟାର ଢେଉରେ ମଣିଷ ଉବେଇ ଟୁବେଇ ହୋଇ ଦରମରା ହେଉଅଛି । ସବୁ ଦେଖି ଅନ୍ଧାରକଣା, ସବୁ ଶୁଣି ବହିରା, ସବୁ ଶିଖି ଘୁଙ୍ଗା ହୋଇ ବୁଲୁଅଛି, ଅଥଚ କେହି ପଚାରି ଦେଲେ ଉତ୍ତର - ଆମ୍ଭର ନାମ ଶ୍ରୀଯୁକ୍ତ ବାବୁ ଗୋପାଳ ଚନ୍ଦ୍ର ପ୍ରହରାଜ, ଜମିଦାର ଓ ହାଇକୋର୍ଟ ଓକିଲ, ଘର । ଜି- କଟକ । ପ୍ର- କୋଦିଣ୍ଡା । ମୌ- ଗୋପାଳପୁର । (ଯେଉଁ ପ୍ରଗନ୍ନାର କୋଦିଣ୍ଡା ନିଶାପ ଓ ଗୋପାଳପୁରିଆ ଭୁରୁଡ଼ ଓଡ଼ିଶା ପ୍ରସିଦ୍ଧ ।) ମୁଁ ଯେତିକି ଯେତିକି ଏଗୁଡ଼ାକ ଭାବୁଅଛି, ସେତିକି ସେତିକି ମୂକ, ସୁରଦାସ (ଅନ୍ଧ), ବହିରା ଓ ଜଳକା ବନି ଯାଉଅଛି । ଆଉ ଏ କଥାଗୁଡ଼ାକ ପ୍ରକାଶ କରି ମୋ ଅଯୋଗ୍ୟତା, ମୂର୍ଖତା ଦାଣ୍ଡରେ ଏକରାର କରିବାକୁ ମୁଁ ଏକାନ୍ତ ନାରାଜ ହୋଇ ପଡୁଅଛି । ଏତିକିରେ ଥାଉ ରେ ବାପା !

ଉ.ସା. - ୨୪ଶ ଭାଗ / ୩ୟ ସଂଖ୍ୟା /. ଆଷାଢ଼ / ୧୩୨୭ ସାଲ ।

## ।। ଏକତିରିଶ ।।

ସାହିତ୍ୟର ପାଠକମାନଙ୍କୁ ଆଗରୁ ଜଣାଅଛି ଯେ, ବର୍ତ୍ତମାନ ମୁଁ ପୂର୍ବପରି ଅମାୟିକ ସାଧାସିଧା ମଣିଷ ନୁହେଁ; ବର୍ତ୍ତମାନ ଥୋଡ଼ା ଦିନ ହେଲା ମୁଁ ପୂରା ସଂସାରୀ ବନିଅଛି ଗାଁରେ (ଅର୍ଥାତ୍ ଗେର୍ଦ୍ଦେ ଓଡ଼ିଶା, ଜିଲ୍ଲେ କଟକ, ପ୍ରଗନେ କୋଦିଣ୍ଡା) ଖଣ୍ଡେ କୁଡ଼ିଆ କରି କିଛି ଚଳିବା ମାଫିକ ଚାଷଦ ଏ କରି ସପରିବାର ନିପଟ ମଫସଲରେ ମୁଁ ବର୍ତ୍ତମାନ ଜଣେ ବାସିନ୍ଦା । ପୈତୃକ ଘରରେ ମୋର ଯାହା ଭ୍ରାତୃକ ହିଂସା ପଡ଼ିଲା, ସେଥିରେ ମୋର ଚଳାଚଳ ହେବାକୁ ନଅଣ୍ଟ ପଡ଼ିବାରୁ ମୁଁ ଆସି ଆମ ଗାଁର ପଶ୍ଚିମ ପାଖ ଗାଁ ମୁଣ୍ଡରେ (ମୁଁ ଗ୍ରାମର ଯେଉଁ ମୁଣ୍ଡ ନୂଆ ଘର କରିଅଛି, ତାକୁ ସମସ୍ତେ ଖଣ୍ଡିଆ ମୁଣ୍ଡ ବୋଲି ଡାକନ୍ତି) ଖଣ୍ଡେ ଘର କରି ବାସ କରୁଅଛି । ମୋର ଚରା ଭୂଇଁ ହେଲା ବିଦ୍ୱଜ୍ଜାର ସହରର କଚେରିରେ, ମୋର ଗୋଠ ହେଲା ନିପଟ ମଫସଲ ପଡ଼ାଗାଁ ପଥର କୁଡ଼ିଆରେ, ଅତଏବ 'ଗତାଗତ' ହୋଇ ପେସାଦାର କର୍ମ ଓ ଗୃହସ୍ଥ ଧର୍ମ ମତେ ସମ୍ଭାଳିବାକୁ ପଡୁଅଛି । ଏ ଦୋନାବୁଡ଼ିଆ ରୀତିରେ ଯାହା ଫଳ ପାଠ ଡାକୁଛି ମୋର ମଧ ସେହିତା ଫଳ ଘଟୁଅଛି - ଏଥିଯୋଗୁଁ ମୋର ବେଶି ସମୟ ହଲ-ଟହଲରେ ଯାଉଅଛି ଓ ଉଭୟତ୍ର ମୁଁ 'ଏକଘରିକିଆ' ହୋଇ ଚଳୁଅଛି । ପରିବାର-ପରିଜନ, ଜ୍ଞାତିକୁଟୁମ୍ବ, ବନ୍ଧୁ ପ୍ରତିବେଶୀ ଏମାନେ ସମସ୍ତେ ଜାଣନ୍ତି ଯେ, ମୁଁ ଉଡ଼ିଗଲା ଚଢ଼େଇ; ସେମାନଙ୍କର ଲୋଡ଼ା ପଡ଼ିଲା ବେଳେ ମୁଁ ଘରେ ନ ଥିବି । ଭକ୍ଷଭୋଜି, ମଡ଼ାସାଙ୍ଗିଆ, ନିମିତ୍ତ-ପର୍ବକାମରେ ମୁଁ ସେମାନଙ୍କ ସଙ୍ଗେ ନିୟମିତ ରୂପେ ଯୋଗ ଦେଇପାରିବି ନାହିଁ; ଏଥିପାଇଁ ସମାଜରେ ମତେ ଏକଘରିକିଆ କରିଅଛନ୍ତି । ସେମାନେ କହନ୍ତି, ମୋ ଭଳିଆ ଗାଉଁଲି-ଭାଇ ଦ୍ୱାରା ସମୟରେ

କଡ଼ାକର ଉପକାରର ଆଶା ନାହିଁ । ଏଣେ କାର୍ଯ୍ୟକ୍ଷେତ୍ରରେ ସମବ୍ୟବସାୟୀମାନଙ୍କ ମହଲରେ ମଧ୍ୟ ମୋର ଆଦର ନଦାରଦ । କାରଣ ସେମାନେ ସମସ୍ତେ ଜାଣନ୍ତି ଯେ, ମୁଁ 'ଗୋଠଖଣ୍ଡିଆ', ଅର୍ଥାତ୍ କେବଳ କଚେରି ଛଡ଼ା ଅନ୍ୟ କୌଣସି କାର୍ଯ୍ୟରେ ମୋର ଯୋଗ ନଦାରଦ । କଚେରିରୁ ଓ ବ୍ୟବସାୟ କର୍ମରୁ ଅବସର ପାଇବା ମାତ୍ରକେ ମୁଁ ଘରକୁ ଦଉଡ଼ିବାରେ ଲାଗିଥାଏଁ, ମୋର ମୋ ପେସା ପ୍ରତି ଭକ୍ତି ନାହିଁ, ସ୍ନେହ ନାହିଁ, ଆକର୍ଷଣ ନାହିଁ; କେବଳ ପେସା ନ କଲେ ପେଟ ପୋଷା ନ ହେବ ବୋଲି ଯେନତେନ ପ୍ରକାରେଣ ଦୁଇ ପଇସା ରୋଜଗାର କରି ବାଏଁ ବାଏଁ ଅର୍ଜନଯାକ ବାନ୍ଧିବୁନ୍ଧି ଗାଁକୁ ନେଇ ପଳାଇବି, ସେଥିରୁ କାଣିଏ କଉଡ଼ି ସହରରେ କିମ୍ବା କୌଣସି ଦେଶହିତକର ଅନୁଷ୍ଠାନରେ ଖରଚ କରିବି ନାହିଁ, ସହରର କୌଣସି ସଭାସମିତିରେ ଯୋଗ ନ ଦେଇ ହରଘଡ଼ି ଗାଁକୁ ଦଉଡ଼ିଥିବି, ଏସବୁ କାରଣରୁ ପେସାଦାର ଭାଇମାନେ ମଧ୍ୟ ମତେ 'ଏକ-ଚଉକିଆ' କରିଥାନ୍ତି । ବୁଝିଲା ବେଳକୁ ମୁଁ ନା ଗୃହସ୍ଥ, ନା ବ୍ୟବସାୟୀ - ଦୁଇ କଥାରୁ କେଉଁ ଆଡ଼କୁ ନୁହେଁ । ସବୁବେଳେ ଘରେ ରହି ନ ପାରିବା ଯୋଗୁଁ ଘର ପ୍ରତି ଦୃଷ୍ଟି ରଖିପାରେ ନାହିଁ - ଘରତକ ବେମରାମତ, ଘର ଦୁଆରେ ଅଳିଆ ଓ ଅରମା । ଅଳିଆ ଅରମା ଯୋଗୁଁ ଉଇ, ମଶା, ମୂଷା, ଲୟଜନ୍ତୁ, ଶଁବାଳୁଆ, ତେଲୁଣୀପୋକ, ଗଉଡୁଣୀପୋକ, ସାଧବଘର ବୋହୂ, କଙ୍କଡ଼ାବିଛା, ଚୁଚୁନ୍ଦ୍ରା, ଅସରପା, ବୁଢ଼ିଆଣୀ ସମସ୍ତଙ୍କର ମୋ କଳା କୁଡ଼ିଆ ଉପରେ ଅଧିକାର ଓ ରାଜତ୍ୱ । ଗୃହକର୍ତ୍ତାଙ୍କ ତତ୍ତ୍ୱାବଧାନର ଅଭାବରୁ ମୋ ହଳିଆ, ମୂଲିଆ, କୋଠିଆଣୀ କାମରେ ଢିଲମଢିଲା କରନ୍ତି, ମୋ ବିଲ ବାଡ଼ିତକ ଅବଛା ଓ ଅବେଉଷଣିଆ ହୁଏ, ମୋ ଧାନତକ ଅଣଉଡ଼ା ଓ ଅଣପାଛୁଡ଼ା ରହେ, ମୋ ଦାଣ୍ଡ ଘରଖଣ୍ଡି ଅଛୁଆଁ ରହେ, ମୋ ବଳଦତକ ଅମଣିଆ; ଏସବୁ ମୋର ଅମଣିଷପଣିଆର ଫଳ । ଏଣେ ମଧ୍ୟ ବ୍ୟବସାୟ କ୍ଷେତ୍ରରେ ଦେଖିଲା ବେଳକୁ ଓକିଲଙ୍କର ଘନ ଘନ ଅନୁପସ୍ଥିତି ଯୋଗୁଁ ମୋ ମହକିଲଯାକ ଥରେ ହାତରୁ ଛୁଟିଲେ ଅଣବାହୁଡ଼ା; ମୋ ସିରସ୍ତାରେ ବସ୍ତାନି ଅଫିଟା । ମୋ ଓକିଲ-ମୋହରିର ଅକାମିକା ଓ ଅଖିଆ ଅପିଆ, ମୋର ରୋଜଗାର, ଯୋଗ୍ୟତା ଓ କରାମତ ମଧ୍ୟ ତଥୈବଚ । ଅଥଚ ଏ ଦୁଇ କଥାରେ ମୁଁ ଏପରି ଅଖଞ୍ଜିଆ ରୂପରେ ଛନ୍ଦଣି ମନ୍ଦଣି ହୋଇଅଛି ଯେ, ଗୋଟିକରୁ ଖସି ଗୋଟିଏ ଇଲାକାରେ ମନ ମୁନ ଚଇତନ ଲଗାଇବାର ବର୍ତ୍ତମାନ ବଳ ନାହିଁ, ବୟସ ନାହିଁ କି ଇଚ୍ଛା ମଧ୍ୟ ନାହିଁ ।

ସବୁଥିରେ ଦୋଷଗୁଣର ମାତ୍ରା ପୂର୍ଣ୍ଣ ରହିଅଛି । ଗୃହସ୍ଥ ହୋଇ ମଫସଲରେ ବାସ କରିବାରେ ସୁବିଧା ଯେତେ, ଅସୁବିଧା ମଧ୍ୟ ତେତେ । କୌଣସି ପେସାରେ ପଶି ପେସା ଅନୁରୋଧରେ ସହରରେ ବାସ କରିବାରେ ମଧ୍ୟ ଅନେକ ସୁବିଧା ଓ ଅନେକ ଅସୁବିଧା ଅଛି । କିନ୍ତୁ ଯେ ଉଭୟତ୍ର ହାତ ଦେବାକୁ ବସେ, ତା କପାଳରେ ଉଭୟ ଅବସ୍ଥାରେ ଅସୁବିଧା ଗୁଡ଼ିଏ ବେଶି ପରିମାଣରେ ଘଟିଥାଏ । ମୋ ଭାଗ୍ୟରେ ମଧ୍ୟ ତାହା ଘଟିଅଛି ଓ ଘଟୁଅଛି ।

ଆଜି ମଫସଲର କେତେଗୁଡ଼ିଏ ଅସୁବିଧାର ଉଲ୍ଲେଖ କରିବି । ଆମ ଦେଶରେ କଣ, ଅନ୍ୟ ଦେଶରେ କଣ ଦେଖୁଥାଇଁ ଯେ, ଆଧୁନିକ ସଭ୍ୟତା ମଫସଲର ଘରମାନ ଭାଙ୍ଗି ସହରମାନ କୋଠାମୟ କରିବାରେ ବ୍ୟସ୍ତ । କାର୍ଯ୍ୟ ଉପଲକ୍ଷରେ ମଫସଲରୁ ଲୋକମାନେ ଚାଲିଆସି ସହରରେ ରୁଣ୍ଡ ହୁଅନ୍ତି । ମଫସଲର ବାସିନ୍ଦା ସଂଖ୍ୟା କମେ ଓ ସହରର ଲୋକସଂଖ୍ୟା ବଢ଼େ । ଦୋକାନଦାରି, ସରକାରୀ ଚାକିରି, ଓକିଲାତି, ବେପାର, କଳକାରଖାନାରେ ଚାକିରି ବା ମଜୁରିଦାରି, ସରକାରୀ ଓ ବେସରକାରୀ ଅଫିସରେ କାର୍ଯ୍ୟ, ମ୍ୟୁନିସିପାଲିଟିର କାର୍ଯ୍ୟ, ସହରର ସ୍କୁଲ କଲେଜରେ ଶିକ୍ଷା ଓ ଶିକ୍ଷକତ୍ୱ, ସହରରେ ବୃଦ୍ଧି ପାଉଥିବା ଲୋକସଂଖ୍ୟାକୁ ଚାହିଁ କୋଠାବାଡ଼ି, ଖାଦ୍ୟସାମଗ୍ରୀ ଯୋଗାଡ଼, ସହରର ନର୍ଦମା, ପାଇଖାନା ଓ ରାସ୍ତା ଆଦି ପରିଷ୍କାର କରିବା ଓ ରଖିବା ଆଦି କାର୍ଯ୍ୟ, ସହରର ଲୋକଙ୍କ ଚିକିତ୍ସା ପାଇଁ ଡାକ୍ତରଖାନା, ଔଷଧାଳୟ, ସହରବାସୀଙ୍କ ଆମୋଦ ପ୍ରମୋଦ ପାଇଁ ଭୋଜନାଗାର, ନାଟ୍ୟାଗାର ଅଧିକାଂଶ ମଫସଲିଆଙ୍କ ହାତରେ ଚଳେ । ଏ ସବୁ କାର୍ଯ୍ୟ ଯୋଗୁଁ ମଫସଲରୁ ଲୋକେ ଉଠିଆସି ପ୍ରଥମେ ପ୍ରଥମେ ସହରରେ ବସା କରି ରହନ୍ତି, ଦିନାକେତେ ବାଦ ସପରିବାର ବସା କରି ରହନ୍ତି, ଶେଷକୁ ସହରର ସ୍ଥାୟୀ ଅଧିବାସୀ ହୋଇ ବଂଶାନୁଗତ ସହରର ପକ୍କା-ବାସିନ୍ଦା (permanent resident) ପାଲଟି ଯାଆନ୍ତି । ଏହା ଆଧୁନିକ ସଭ୍ୟତାର ଗୋଟିଏ ପ୍ରଧାନ ଲକ୍ଷଣ ।

କାଲି ଯେଉଁ ସ୍ଥାନ ପଡ଼ିଆ ମରୁଭୂମି ଥିଲା, ଆଜି ତାହା ସମୃଦ୍ଧିଶାଳୀ ମହାନଗରୀରେ ପରିଣତ ହୋଇଅଛି; କେତେ ବର୍ଷ ତଳେ ଯେଉଁ ଗ୍ରାମ ଲୋକପୂର୍ଣ୍ଣ ଓ କୋଳାହଳ-ମଧୁର ହୋଇ ମୁଖରିତ ହେଉଥିଲା, ଆଜି ସେ ଗାଁରେ ଅଧିକାଂଶ ମେଲା ଡିହ ଓ କେତେ ଡିହରେ ବିଲୁଆ ଡେଉଁଅଛନ୍ତି ଓ କେତେ ଦୁଆରେ କଣ୍ଟା ଛଟା ହୋଇଅଛି, ଗ୍ରାମରେ କେବଳ ଗୁଡ଼ିଏ ନିକମା ମନୁଷ୍ୟ, ଲଙ୍ଗଳା ପିଲା ଓ ରାଣ୍ଡ ମାଇପେ ଆତଯାତ ହେଉଅଛନ୍ତି । ଆଗ କାଳର ଗ୍ରାମର ଭାଗବତ ଟୁଙ୍ଗି, ଆଖଡ଼ାଘର, ଜାଗାଘର, ସନ୍ଧ୍ୟାବେଳେ ଗ୍ରାମରେ ପାଞ୍ଚଜଣଙ୍କ ବୈଠକି, ଗ୍ରାମଦେବତାଙ୍କ ନିକଟରେ ପୁରାଣପାଠ, ଉତ୍ସବ ଆନନ୍ଦ ଏ ସବୁ ଆଉ ନାହିଁ । ଯେଉଁମାନେ ଏଥିରେ ସବୁ ଯୋଗ ଦେଉଥିଲେ, ସେମାନେ ଆଜି ଯାଇ ଦେଶ ବିଦେଶରେ କର୍ମକ୍ଷେତ୍ରରେ ସହରରେ ବାସ କରୁଅଛନ୍ତି ! ସଭ୍ୟତାର ଏ ସବୁ ଶୁଭ ଲକ୍ଷଣ, କି ଅଲକ୍ଷଣ, ତାହା ଭଗବାନ୍ ଜାଣନ୍ତି । ମୁଁ ନିଜେ ମୋ ପିଲାଦିନେ ଏପରି ଘରକରଣା-ପରିବାର ସ୍ୱଚକ୍ଷୁରେ ମଫସଲରେ ଦେଖିଅଛି ଯେ, ଲୁଣ ଛଡ଼ା ଗୃହବାସ୍ତୁର ସୀମା ମଧରେ ଗୃହସ୍ଥର ଦୈନିକ ଓ ସାମୟିକ ପ୍ରୟୋଜନୀୟ ଅନ୍ୟ ସମସ୍ତ ପଦାର୍ଥ (ଲୁଗାପଟା, ଜାଳିବା ଓ ଲଗାଇବା ତେଲ, ଦୈନିକ ଖାଦ୍ୟ ଓ ପିଷ୍ଟକାଦି, ବସିବା ଓ ଶୋଇବାର ଆସନ ଆଦି) ଉପକରଣମାନ (କପା, ସୋରିଷ, ରାଶି, ଗବ, ଧାନ, ମୁଗ, ବିରି, କୋଳଥ, ପୋଖରୀରୁ ମାଛ, ନଡ଼ିଆ, ଆଖୁ, ଗୁଆ, ନାଗପତ୍ର, ପନିପରିବା ଆଦି) ଫଳୁଥିଲା ଓ ମିଳୁଥିଲା । ଅଧିକାଂଶ ଗ୍ରାମରେ ବଢ଼େଇ, କମାର, କୁମ୍ଭାର, କେଉଟ, ତନ୍ତୀ,

ତୁଳାଭିଣା, ଗୁଡ଼ିଆ, ତେଲୀ, ଗଉଡ଼, ଭଣ୍ଡାରି ମିଳୁଥିଲେ । ଗ୍ରାମର ଦୈନନ୍ଦିନ ଅଭାବମୋଚନ ନିମନ୍ତେ ଗ୍ରାମ ସୀମାରୁ ପଦାକୁ ଗୋଡ଼ ବଢ଼ାଇବାକୁ ପଡୁ ନ ଥିଲା । କିନ୍ତୁ ଆଧୁନିକ ସଭ୍ୟତା ଆମ୍ଭମାନଙ୍କର ଅଭାବ, ଅସୁବିଧା ୨ ଅଭ୍ୟାସକୁ ଏତେ ମାତ୍ରାରେ ବଢ଼ାଇ ଦେଲାଣି ଯେ, ଯି କଥାରେ ଦାଣ୍ଡକୁ ନ ବାହାରିଲେ, ପରମୁଖାପେକ୍ଷୀ ନ ହେଲେ ଦଣ୍ଡେ ନ ଚଳେ । କ୍ଷେତରେ ଫଳୁଥିବା କପାକୁ ଭିଣାଇ ଓଜନ କରି ତନ୍ତୀବାପୁଡ଼ାକୁ ଦେଲେ ତନ୍ତୀବାପୁଡ଼ା ତାର କରମୂଲ ନେଇ ପିନ୍ଧା ପାଛୁଡ଼ା, ମାଠ ଚାଦର, ଦରି ଦସିଆ ଆଣି ଦୁଆର ମୁହଁରେ ଦେଇ ଯାଉଥିଲା । ବାଡ଼ିରେ ହେଉଥିବା ଗବ, ପୁଲାଙ୍ଗ, ସୋରିଷ, ରାଶି ନେଇ ତେଲୀପୁଅ ତାର ପାରିଶ୍ରମିକ ପାଇ ଗୃହସ୍ଥକୁ ତେଲ ଆଣି ଦେଇଯାଉଥିଲା, ବାଡ଼ିବଗାଏତରୁ ଜାଳେଣି କାଠ କାମ ଚଳୁଥିଲା, ବାଡ଼ିରୁ ବାଉଁଶ ବଗାଏତରୁ ଜାମୁ ପୁଲାଙ୍ଗ ଗଛ, ଅନାବାଦୀ ଜଙ୍ଗଲରୁ ବେତ ଆଣି, ବିଲରୁ ନଡ଼ା ବାଡ଼ିଆ ମାଟି ଆଣି ଗାଁ ବଢ଼େଇ ଗାଁ ମୂଲିଆଙ୍କ ଦ୍ୱାରା ବାସଗୃହ ତିଆରି ହେଉଥିଲା; କିନ୍ତୁ ଏଣିକି ମଫସଲରୁ ଏ ସବୁ ଲୋପ ପାଇଲା ଓ ପାଇବ ।

ଗ୍ରାମରେ କୌଣସି ବିବାଦ ଉପସ୍ଥିତ ହେଲେ, କୌଣସି ଅଡୁଆ ଲାଗିଲେ ଗ୍ରାମ ମହାଜନେ ବସି ଦିଅଁକ ଚକଡ଼ାରେ ସେସବୁ ଅଡୁଆକୁ ମୀମାଂସା କରି ଦେଉଥିଲେ ଓ ଗ୍ରାମର ଅବସ୍ଥାପନ୍ନ ବ୍ୟକ୍ତିମାନଙ୍କ ସାହାଯ୍ୟ, ବଦାନ୍ୟତା ଓ ସ୍ୱଚ୍ଛଳତା ଦ୍ୱାରା ଗ୍ରାମର ଦୁରବସ୍ଥାପନ୍ନ ପରିବାର ଓ ଗରିବଗୁରୁବାମାନେ ଚଳି ଯାଉଥିଲେ । ଜମିଦାରମାନେ ରୟତମାନଙ୍କର ଫଳତଃ 'ମା-ବାପ' ଥିଲେ; ତାଙ୍କ ଘର ସବୁବେଳେ ପ୍ରଜାମାନଙ୍କ ପାଇଁ ଅବାରିତ ଦ୍ୱାର ଥିଲା, ସେ ଯେପରି ଗରିବଠାରୁ ତଣ୍ଡିକରି ଜୋରିମାନା ଓ ବେଠି ନେଉଥିଲେ, ଅସମୟ ପଡ଼ିଲେ ନ'ଅଙ୍କରେ ଛତ୍ର ଦେଇ ଗରିବଙ୍କୁ ବଞ୍ଚାଉଥିଲେ, ଖାଇବାକୁ ନ ଥିଲେ ପରିବାରକୁ ପୋଷୁଥିଲେ, ପୁଣ୍ୟ ପର୍ବରେ ପିଠା ବାଣ୍ଟୁଥିଲେ, ବାଧିକି ପଡ଼ିଥିଲେ ଔଷଧ ପଥ୍ୟର ବ୍ୟବସ୍ଥା କରି ଦେଉଥିଲେ, ନିରୁପାୟ ପିତୃମାତୃଶୂନ୍ୟ ପିଲାମାନଙ୍କୁ ଭରଣପୋଷଣ କରୁଥିଲେ । ଏବେ ରାଜା-ପ୍ରଜାଙ୍କର ଅନେକ ସ୍ଥଳରେ ଚିହ୍ନା ପରିଚୟ ସୁଦ୍ଧା ନଦାରଦ । ଏବେ ଜମିଦାର ପ୍ରଜାଠାରୁ ଖଜଣା ଗଣ୍ଡାକ ନେଇ ମାଲଗୁଜାରି ପଏଠ କରି ଦେଇ ମାଲିକାନା - ଲଫାତକ ନେଇ ଆପଣା ଅୟସରେ ଖରଚ କରୁଅଛନ୍ତି ଓ ଜମିଦାର ପ୍ରଜାକୁ ପାଟି ଫିଟାଇଲେ ସେ ଯାଇ ଖଣ୍ଡେ ଦରଖାସ୍ତ ଧରି କଚେରିରେ ହାଜର । ଆଧୁନିକ ସଭ୍ୟତାର ଏ ଯେଉଁ ଗତି ହେଉଅଛି, ସେଇଟା ଭଲ ଆଡ଼କୁ କି ମନ୍ଦ ଆଡ଼କୁ, ତାହା ଭଗବାନ୍ ଜାଣନ୍ତି । ତା ପରେ ଆଧୁନିକ ସଭ୍ୟତା ଲୋକଙ୍କୁ ଶିଖାଇଅଛି - Division of labour ବା କାର୍ଯ୍ୟ ବିଭାଗ । ଏଥିର ଅର୍ଥ ଏହି କି, ସମସ୍ତେ ସବୁ କାର୍ଯ୍ୟ ନ କରି ଜଣେ ଜଣେ ଲୋକ ଏକ ଜାତିର କାମ କରିବେ । ଉଦାହରଣସ୍ୱରୂପ - ଯେ ସୂତା କାଟିବ, ସେ ଲୁଗା ବୁଣିବ ନାହିଁ; ଯେ ଲୁଗା ବୁଣିବ, ସେ ଦାଣ୍ଡରେ ଲୁଗା ବିକିବ ନାହିଁ । ଏଥିର ସୁବିଧା ଏହି କି, ଜଣେ ମନୁଷ୍ୟ ଗୋଟିଏ କାମରେ ଦିନରାତି ମନ ଦେଲେ ସେ

ବିଭାଗରେ ସେ ପାରଙ୍ଗମ ଓ ବିଚକ୍ଷଣ ଓ ଅନୁଭବୀ ହେବ ଓ ଫଳତଃ ସେ କାର୍ଯ୍ୟ ଅପେକ୍ଷାକୃତ କୌଶଳ ଓ କୃତିତ୍ୱଦ୍ୱାରା ସମ୍ପନ୍ନ ହେବ– ଏପରି ଗୋଟିଏ ଗୋଟିଏ କାର୍ଯ୍ୟରେ ଯେଉଁମାନେ କୃତିତ୍ୱ ଲାଭ କରନ୍ତି, ସେମାନଙ୍କୁ specialist ବା ଓସ୍ତାଦ୍ ବୋଲାଯାଏ । କିନ୍ତୁ ଏଥିରେ ମଧ ଅସୁବିଧାର ମାତ୍ରା କମ ନୁହେଁ । ଏ specialist (ଓସ୍ତାଦ୍) ତାଙ୍କ ଆଦରିଥିବା କର୍ମ ଛଡ଼ା ଅନ୍ୟ କର୍ମମାନ ଅନଭ୍ୟାସ ଯୋଗୁଁ ବିବାକ ପାସୋରି ପକାନ୍ତି । ଫଳତଃ କୌଣସି ଅନୁଷ୍ଠାନ ସାଙ୍ଗୋପାଙ୍ଗ କଲାବେଳକୁ ଓସ୍ତାଦ୍ ପଣେ ଖଣ୍ଡେ ଲୋଡ଼ା ହୁଅନ୍ତି । ଏଥିରେ ପରମୁଖାପେକ୍ଷିତା ଅତ୍ୟଧିକ ବଢ଼ିଯାଏ ।

ତା ପରେ ଆଉ ଗୋଟିଏ କଥା - ପୂର୍ବେ ଭାରତରେ ଯେଉଁ ଜାତି ବିଭାଗ ହୋଇଥିଲା, ତାହା ଗୁଣକର୍ମ ବିଭାଗ ଅନୁସାରେ ହୋଇଥିଲା - ଯେ ଯେଉଁ ବଂଶରେ ଜନ୍ମଗ୍ରହଣ କରୁଥିଲା, ସେ ବ୍ୟକ୍ତି ଆଜନ୍ମ ସେହି ବଂଶାନୁଗତ କାର୍ଯ୍ୟ କରୁଥିଲା ଓ ଫଳତଃ ବଂଶାନୁଗତ ଅନୁଧାବନ, ଅନୁଚିନ୍ତା ଓ ଅନୁଭବ ଦ୍ୱାରା କାର୍ଯ୍ୟ ରୀତି ଉନ୍ନତି ଲାଭ କରୁଥିଲା ଓ ସେ ବ୍ୟବସାୟର ଉନ୍ନତିର ଗୁପ୍ତ ରହସ୍ୟମାନ (Trade secret) ସେହି ବଂଶରେ ଲୋକମାନେ ଉତ୍ତମରୂପେ ସାଧାୟତ୍ତ କରି ପାରୁଥିଲେ । ଆଧୁନିକ ସଭ୍ୟତା ଏ ଜାତି ବିଭାଗକୁ ସମୂଳେ ଉତ୍ପାଟନ କରିଦେଇ 'ବାର ଜାତି ତେର ଗୋଲା'ଙ୍କୁ ଏକ ନୂଆ ପ୍ରକାର ଘାଣ୍ଟ ତିଅଣ କରିଦେଲା । ବର୍ତ୍ତମାନ କୌଣସି କାର୍ଯ୍ୟକ୍ଷେତ୍ରକୁ ଯାଅ (କଚେରି, କଳକାରଖାନା, ରେଳ, ବିଚାରାସନ, ବାରିକମିସ୍ତ୍ରି) ଦେଖିବ, ସେଥିରେ ବ୍ରାହ୍ମଣ ବୈଷ୍ଣବ, ତେଲୀ, ତାମିଳି, ତନ୍ତୀ ତୁଳାଭିଣା, କରଣ, ଖଣ୍ଡାଏତ, କେଉଟ, ଗୁଡ଼ିଆ, ବାଉରି, କଣ୍ଡରା, ଗଉଡ଼, ଭଣ୍ଡାରି, ବଢ଼େଇ, କମାର ସମସ୍ତଙ୍କର ଅବାଧ ଗତି ଓ ପ୍ରବେଶ । ତେଲୀ, ତା ଘଣାକୁ ଭୁଲି ସାରିଲାଣି, ତନ୍ତୀ ତା ତନ୍ତକୁ ପାସୋରି ଦେଲାଣି, ଗଉଡ଼ ଗାଈକୁ ଦୁହିଁ ପାରୁ ନାହିଁ, ଇତ୍ୟାଦି ଇତ୍ୟାଦି । ସମସ୍ତେ ଏହି 'ଚାହିକିଚିକା'ରେ ଲାଗି ଘର ଛାଡ଼ି, ଗାଁ ଛାଡ଼ି, ଆପଣା ସହଜ କର୍ମ ଓ ବଂଶଗତ ଏବଂ ଜାତିଗତ ବ୍ୟବସାୟ ଛାଡ଼ି ଧନ ଅର୍ଜିବା ପାଇଁ ସହରରେ ରୁଣ୍ଡ ହୋଇ ଏ ଅଢ଼େଇଦିନିଆ ହରିଲୁଟରେ, ଏ ମେଣ୍ଟା-ଲଢ଼େଇରେ ଲାଗିଅଛନ୍ତି । ଆଧୁନିକ ସଭ୍ୟତାର ଏ ଲକ୍ଷଣଟା ସୁଲକ୍ଷଣ କି କୁଲକ୍ଷଣ, ତାହା ସେହି ଭଗବାନ୍ଙ୍କୁ ଗୋଚର । କିନ୍ତୁ ମତେ ଏ ସବୁ ଅଦୁଆ ତଦୁଆ ଲାଗୁଅଛି ।

ଗତ ୫ ବର୍ଷର ମହାସମରଜନିତ ଓ ସମରାନ୍ତ ଅନୁଭବରୁ ମୁଁ ଏତିକି ଉପଲବ୍ଧି କରି ପାରିଅଛି ଯେ, ପାଶ୍ଚାତ୍ୟ ସଭ୍ୟତାର ଚାକଚକ୍ୟ ଅଚିରସ୍ଥାୟୀ ଓ ଟିକିଏ ସାମାନ୍ୟ ଦୈବୀ ଘଟଣା ବା ଅନିୟମ ବା କୋଡ଼ମାଡ଼ ହେଲା ମାତ୍ରକେ ଏ ସଭ୍ୟତାର ସ୍ୱର୍ଣ୍ଣମୟୀ ଲଙ୍କାରେ ଏକା ଘଡ଼ିକେ କଳାକନା ବୁଲିଯିବ । ବର୍ତ୍ତମାନ ଦେଖାଗଲା ଯେ, ପାଶ୍ଚାତ୍ୟ-ସଭ୍ୟତାଭିମାନୀ ଜାତିମାନେ ମନୁଷ୍ୟର ଆଦିମ ବନ୍ୟ ସ୍ୱଭାବ, ବର୍ବର ପ୍ରକୃତି, ପରଧନଲିପ୍ସା, ଲୋଭ, କାମୁକତା, ପରଶ୍ରୀକାତରତା ଆଦି କିଛି ଛାଡ଼ି ନାହାନ୍ତି; କେବଳ ଏ ସବୁକୁ ଗୋଟାଏ କାଚ ଢାଙ୍କୁଣୀରେ ଘୋଡ଼ାଇ ପକାଇ ଅଢ଼େଇ ଦିନ ସକାଶେ ଚାପି ରଖିଅଛନ୍ତି ମାତ୍ର । ଖଣ୍ଡିଏ

ଟେକା ବାଜିବା ମାତ୍ରକେ ସେ କାଚ ଘୋଡ଼ଣୀଟି ଶତଧା ଭାଙ୍ଗି ଯାଉଅଛି ଓ ସେହି ଆବରଣ ଭିତରୁ ହିଂସ୍ର, ଘାତୁକ, ଭୀଷଣ ଜୀବମାନେ ବାହାରି ଜଗତକୁ ରକ୍ତାକ୍ତ ଓ ବ୍ୟତିବ୍ୟସ୍ତ କରି ପକାଉଅଛନ୍ତି । ଏ ସଭ୍ୟତା ମତେ 'କଳଘଣ୍ଟା'ର ଆଦର ଶିଖାଇଲା, କଳଘଣ୍ଟା (clock, watch) ନ ହେଲେ ଏବେ ମୋର ଦଣ୍ଡେ ଚଳିବ ନାହିଁ । କିନ୍ତୁ କଳଘଣ୍ଟା କିପରି ତିଆରି ହେବ, ଦମ୍ ଦିଆଯିବ ଓ ମରାମତ ହେବ, ସେତକ ମୁଁ ଶିଖିପାରିଲି ନାହିଁ । ଯେଉଁ ସଭ୍ୟତା ମତେ ଅଭାବଗ୍ରସ୍ତ, ପରମୁଖାପେକ୍ଷୀ ଓ ସର୍ବଦା ଶାନ୍ତିବିରହିତ କରାଇଲା, ଅଥଚ ଏ ଅଭାବମାନ ପୂରଣ କରିବାକୁ ମତେ ଉପଯୁକ୍ତ ବା କୃତି କରାଇ ନ ପାରିଲା, ସେପରି ସଭ୍ୟତା ପ୍ରତି ମୋର ଆନ୍ତରିକ ଭକ୍ତି ନାହିଁ । ମଫସଲରେ ରହି ଚାଷବାସ କରି ଚିରଦିନ ମୁଠିଏ ଖାଇ ଖଣ୍ଡେ ପିନ୍ଧି ସୁସ୍ଥ ଶରୀରରେ କାଳ କାଟିବା ଭଲ କି ସହରକୁ ଆସି ଅଢ଼େଇ ଦିନ ବ୍ୟବସାୟରେ ମାତି କ୍ରୋଡ଼ପତି ହୋଇ 'କାକସ୍ନାନ, ଗଧଭୋଜନ, କୁକୁରଧାଉଡ଼ି' କରି ଦେହକୁ ବ୍ୟାଧି ଓ ଚିନ୍ତାର ମନ୍ଦିର କରି କାଲି ଦେବାଳିଆ ଉଠି ଭିକ୍ଷାଦେହି' କରିବା ଶ୍ରେୟସ୍କର, ତାହା ଚିନ୍ତା କରିବା ସମସ୍ତଙ୍କର ଉଚିତ ।

ଆଧୁନିକ ସଭ୍ୟତାର ଭକ୍ତମାନଙ୍କର କ୍ରମଶଃ ତହିଁରୁ ଭକ୍ତି କମି ଯାଉଅଛି । ଏ ଯେଉଁ ହଟଗୋଳ, ସଭାସମିତି, କାଗଜ କଲମରେ ଲେଖାଲେଖି, ଆନ୍ଦୋଳନ, ଆସ୍ଫାଳନ, ଆଲୋଡ଼ନ, ସଂସାରଯାକ ଲାଗିଅଛି, ଏଥିର ଫଳରେ ଯେବେ ମନୁଷ୍ୟ ଶାନ୍ତି ଭୋଗ ନ କଲା, ସୁଖ ଭୋଗ ନ କଲା, ମୁଠାଏ ପେଟ ପୂରାକରି ଖାଇବାକୁ ଓ ଖଣ୍ଡେ ପିଠି ଘୋଡ଼େଇ ପିନ୍ଧିବାକୁ ଓ ଘଡ଼ିଏ ନିଶ୍ଚିନ୍ତ ହୋଇ ବସିବାକୁ ନ ପାଇଲା, ଯେବେ ଦିନକୁ ଦିନ ଅଭାବ ଅସୁବିଧା ବଢ଼ିଲା, ତେବେ ଏପରି ସଭ୍ୟତାକୁ ମୋର ଦୂରରୁ ଜୁହାର । ବର୍ତ୍ତମାନ ଅଧିକାଂଶ ଜାଗାରେ ମୁଁ ଦେଖୁଅଛି ଯେ, ସମସ୍ତେ ହାତ-ସାଫିଆନା ଦେଖାଇବାରେ ବ୍ୟସ୍ତ, ଥାଟ ସଜାଡ଼ିବାରେ ବ୍ୟସ୍ତ, କାଗଜ କଲମ ଦୋରସ୍ତ ରଖିବାରେ ବ୍ୟସ୍ତ । ଭିତରେ ଯାହା ଇଚ୍ଛା ତାହା ଥାଉ, ଯେବେ ଶିଶିଟି ଛିଟକନାରେ ଗୁଡ଼ିଆ ହୋଇ ଚକଚକିଆ ଘୋଡ଼ଣୀ ଭିତରେ ରହି ଦୋକାନରେ ସଜାଇ ରଖାଯିବ, ତେବେ ଲୋକେ ସେହି ଛାପଚିକଣିଆ ଚେହେରା ଦେଖି ସେ ଶିଶିଟି ନେବେ, ଭିତରେ ବାସନା କେରାସିନି ତେଲ ଥାଉ ପଛକେ ଚିନ୍ତା ନାହିଁ । ଏହି ସବୁ ବାହାରର ଲୋକଭୁଲାଣିଆ ଢଙ୍ଗରେ ଯେଉଁ ସଭ୍ୟତାର ଛାଞ୍ଚ ଗଢ଼ା ହେଉଅଛି, ତାହାର କରାମତ ବେଶି ଦିନର ନୁହେଁ । ମୋର ବିଶ୍ୱାସ ଯେ, ବର୍ତ୍ତମାନ ସଭ୍ୟତା ବାହାରର ଚାକଚକ୍ୟ ଆଡ଼କୁ, କପଟାଚାରିତା ଆଡ଼କୁ, ପରମୁଖାପେକ୍ଷିତା ଆଡ଼କୁ ଗତି କରୁଅଛି । ଏ ସ୍ରୋତ ବନ୍ଦ ନ ହେବାଯାକେ ସଭ୍ୟଜଗତ୍‌ର ରକ୍ଷା ନାହିଁ । ଆମେ ସମସ୍ତେ ସେହି ସୁଅରେ ଭାସୁଥାଇଁ । ଏ ଅବସ୍ଥାର ପରିବର୍ତ୍ତନ ନ ହେବା ପର୍ଯ୍ୟନ୍ତ ଆମର ଥଳକୂଳ କିଛି ଠିକଣା ନାହିଁ, କି ନ ହେବ । ଆଜି ଥାଉ ।

ଉ.ସା. । ୨୪ଶ ଭାଗ । ୬ଷ୍ଠ ସଂଖ୍ୟା । ଆଶ୍ୱିନ । ୧୩୨୭ ସାଲ ।

# ବାଇନାନୀଙ୍କ ବୁକୁଲି

## ୧୯୨୧-୧୯୨୩

ବାଇନାନୀଙ୍କ ବୁକୁଲି 'ଉତ୍କଳ ସାହିତ୍ୟ'ର ୨୫ଶ ଭାଗ ପ୍ରଥମ ସଂଖ୍ୟା (୧୩୨୮ ସାଲ)ରୁ ଆରମ୍ଭ ହୋଇ ୨୬ ଭାଗ, ୧୧ଶ ସଂଖ୍ୟା (୧୩୩୦ ସାଲ)ରେ ଶେଷ ହୋଇଛି । ମାତ୍ର ପତ୍ରିକାର ୨୪ଶ ଭାଗ ୧୧ଶ ସଂଖ୍ୟା (୧୩୨୮ ସାଲ)ରେ ଆମ ଘରର ହାଲଚାଲ ଶୀର୍ଷକରେ 'ବାଇନାନୀଙ୍କ ବୁକୁଲି -୧' ପ୍ରସଙ୍ଗ ଉଲ୍ଲେଖ ରହିଛି । ତେଣୁ ଆମ ଘରର ହାଲଚାଲ ଶୀର୍ଷକରେ ପ୍ରକାଶ ପାଇଥିଲେ ସୁଦ୍ଧା ଏହି ଆଲୋଚନାକୁ 'ବାଇନାନୀଙ୍କ ବୁକୁଲି ପୁସ୍ତକ'ରେ ସ୍ଥାନିତ କରିବାର ପ୍ରାସଙ୍ଗିକତା ରହିଛି । 'ବୁକୁଲି'ର ଉପକ୍ରମଣିକା ଭାବରେ ଏହାକୁ ଗ୍ରହଣ କରାଯାଇପାରେ । ଉପକ୍ରମଣିକା ଓ ଏଗାରସଂଖ୍ୟକ ପୁଡ଼ାରେ ଶ୍ରୀଯୁକ୍ତ ପ୍ରହରାଜ 'ବାଇନାନୀ' ନାମକ ଜନୈକା ନାରୀଙ୍କ ତୁଣ୍ଡରେ ନାରୀକୈନ୍ଦ୍ରିକ ଆମ ସାମାଜିକ, ରାଜନୀତିକ, ଧର୍ମୀୟ ସମସ୍ୟା ସଂକ୍ରାନ୍ତରେ ଆଲୋକପାତ କରିଅଛନ୍ତି । ଆଲୋଚନାର ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ - ସମାଜର ସଚେତନ ମଣିଷ ଓ ଯୁବକଯୁବତୀମାନଙ୍କୁ ସୁପ୍ରଜନନ ବିଜ୍ଞାନ ବା Eugenics ଶିକ୍ଷାର ଆବଶ୍ୟକତା ସଂକ୍ରାନ୍ତରେ ଅବଗତ କରାଇବା । ପାଶ୍ଚାତ୍ୟ ଦେଶଗୁଡ଼ିକର ଯୌନ-ବିଜ୍ଞାନ ଶିକ୍ଷା ଉପରେ ଗୁରୁତ୍ୱ ଦିଆଯାଉଥିଲା; ମାତ୍ର ଭାରତବର୍ଷରେ ଏହା ଅଶ୍ଳୀଳତାମୂଳକ, ତେଣୁ ଅନାବଶ୍ୟକ ବୋଲି ବିବେଚନା କରାଯାଏ । ଭାରତୀୟମାନଙ୍କର ଅନୁରୂପ ବିଚାର ସମ୍ପୂର୍ଣ୍ଣ ଭ୍ରମାତ୍ମକ ଏବଂ ଏହି ଶିକ୍ଷା ଜାତି ଗଢ଼ଣରେ ଯେ ବିଶେଷ ସହାୟକ ହୋଇଥାଏ - ପ୍ରହରାଜ ଏହା ଅନୁଭବ କରିଛନ୍ତି । ପ୍ରହରାଜଙ୍କର ଏହି ଆଲୋଚନାକୁ ଆମେ ସ୍ୱତନ୍ତ୍ର ଓ ସାହସିକ ଇସ୍ତାହାର କହିପାରିବା । ଅନେକ ସମୟରେ ପାଠକମାନଙ୍କ ମନରେ ପ୍ରଶ୍ନ ଉଠେ- ଏହି ବାକ୍ଲୁତ ବିଧବା ବାଇନାନୀ ଜଣକ କିଏ ? ଯେ ଶ୍ରୀଯୁକ୍ତ ପ୍ରହରାଜଙ୍କ ଜୀବନ ସହିତ ସୂତ୍ରାୟିତ, ମଧୁର ସମ୍ପର୍କୀୟ ଶ୍ରୀମତୀ ପୀତାମ୍ବରୀ ଦେବୀ ନୁହନ୍ତି ତ ? ହଁ, ଆଲୋଚନାର ବିଭିନ୍ନ ପର୍ଯ୍ୟାୟରେ ଶ୍ରୀମତୀ ପୀତାମ୍ବରୀ ଦେବୀଙ୍କ ଜୀବନକୁ ଅବଶ୍ୟ ଅନୁଭବ କରିହୁଏ । ମାତ୍ର ଏହା ଆମେ ଅସ୍ୱୀକାର କରିପାରିବା ନାହିଁ ଯେ, ବାଇନାନୀଙ୍କ ବୁକୁଲି ଜଣେ ମାତ୍ର ପୀତାମ୍ବରୀଙ୍କର ନୁହେଁ, ଭାରତବର୍ଷରେ ବଞ୍ଚୁଥିବା ପୀତାମ୍ବରୀମାନଙ୍କର ଅଶେଷ ବଂଚନାର ବୁକୁଲି ।

ସମ୍ପାଦକ

## ଉପକ୍ରମଣିକା

ବାଲ-ବଚ୍ଚା, ପ୍ରିୟା-ପ୍ରୀତି, ସାଙ୍ଗ-ସୁଖ, ଚାକର-ବାକର, ଭାଇ-ବନ୍ଧୁ, ସାଇ-ପଡ଼ିଶା, କୋଠିଆ-ହଳିଆ, ପୁଅ-ଝିଅ, ନାତି-ଅଣନାତି, କକେଇ-ପୁତୁରା, ଭାଇ-ଭଗାରି ନେଇ ସମସ୍ତେ ଘର କରିଥାନ୍ତି । ଯେଝା କଳାକୁଡ଼ିଆଟି ଯେଝାକୁ ବଡ଼ ଦିଶେ । ଯେଝା ପୁଅଟି ଯେଝାକୁ ସୁନ୍ଦର ଦିଶେ, ଯେଝା ସମ୍ପତ୍ତି ଯେଝାକୁ ବଡ଼ ଦିଶେ । ସେହିପରି ମଧ ଯେଝା ବୁଦ୍ଧିଟା ଯେଝାକୁ ତାରିଫ ଦିଶେ । ମୁଁ ବିଚାରେ ଯେ, ମୋ ଠାରୁ ବଳି ବୁଦ୍ଧିଆ, ଚାଲାଖ, ମାମଲତକାର, ଇଜ୍ଜତଦାର, କାର୍ଯ୍ୟକ୍ଷମ ଆଉ କେହି ଏ ସଂସାରରେ ନାହିଁ, ମୋ ପୁଅଟି ଭଳି ସୁନ୍ଦର ଆଉ କାହାର ପୁଅ ନୁହେଁ, ମୋ ଚାକରକୁ ବଳି ନିମକ୍‌ସଚ୍ଚା ଆଉ କାହାରି ଚାକର ନୁହେଁ । ମୋ ଘରକରଣା ବୁଦ୍ଧିଠାରୁ ଆଉ କାହାରି ଘରକରଣା ହିସାବ ଓ ବୁଦ୍ଧି ବେଶି ତାରିଫ ନୁହେଁ । ମୋ ଦୋଷଟା ବେଲ ପରି ହେଲେ ସୁଦ୍ଧା ସାଇପଡ଼ିଶାଙ୍କର ସୋରିଷ ପ୍ରମାଣେ ଦୋଷ ମୋ ବେଲ ଅପେକ୍ଷା ମୋ ଆଖିରେ ବଡ଼ ଦିଶେ । ଏକ ଦିଗରେ ମୋ ଗୃହ ଛିଦ୍ରକୁ ଘୋଡ଼ାଇବାରେ ମୁଁ ଯେଭଳି ପରିମାଣରେ ବ୍ୟସ୍ତ, ଅନ୍ୟ ଦିଗରେ ସାଇପଡ଼ିଶାଙ୍କ ଗୃହ ଛିଦ୍ରକୁ ନେଇ ଦାଣ୍ଡରେ ହାଟରେ ବାଟରେ ଘାଟରେ ପକାଇ ନାଗରା ବଜାଇବାକୁ ମୁଁ ତହୁଁ ବେଶି ବ୍ୟସ୍ତ । ମନୁଷ୍ୟ ସମୟ ସମୟରେ ବିରାଡ଼ି ଆଖି ବୁଜି ଦୁଧ ପିଇଲା ପରି ଭାବେ ଯେ, ମୁଁ ଆଖି ବୁଜି ଦୁଧ ପିଉଛି, ମୋ ଭଳି ସଂସାର ଲୋକଙ୍କର ମଧ ମୋ ଦୁଧପିଆ ପ୍ରତି ଆଖି ବୁଜି ହୋଇ ଯାଇଅଛି । ମୁଁ ଶହ ଶହ ଟଙ୍କା ଚୋରି କରି ମୋ ଘର, ମୋ ସମ୍ପତ୍ତି, ମୋ ଧନ-ଦଉଲତ କରିବାକୁ କୁଣ୍ଠିତ ନୁହେଁ । ମୋ ଲୁହା ସିନ୍ଦୁକରେ ତୋଡ଼ା ତୋଡ଼ା ଟଙ୍କା ଗଚ୍ଛିତ ହୋଇ ରହିଥିଲେ ମଧ ପରର ପଇସାଟିଏ ଦେଖିଲାମାତ୍ରକେ ମୋ ପାଟିରୁ ନାଳ ବୋହିପଡ଼େ । ଅଥଚ ମୁଁ ଦାଣ୍ଡରେ, ସମାଜରେ, ଦରବାରରେ ଧୋବଧାଉଳିଆ ସତ୍ୟବନ୍ତ ପୁରୁଷ ହୋଇ ବିଚରଣ କରୁଥାଏଁ । କିନ୍ତୁ ଆମ ଗାଁର ଚିରାକନା ପିନ୍ଧି ମୂଳିଆ ପଞ୍ଚୁଆ ଭୋଇ ମୋ ବାଡ଼ିରୁ କଡ଼ାଏ ନଡ଼ିଆ ଚୋରି କରିବାର ଦେଖିଲାକ୍ଷଣି ମୋ ଦିହରେ ଚିଆଁମାଡ଼ି ହୋଇଯାଏ ଓ ଭୋଇ-ବାପୁଡ଼ାକୁ ବତିଶ ବଖୁରିଆ ମାମୁଘରକୁ ପଠାଇ ଘଣାପେଲା ଓ କତାବାଡ଼ିଆର ବ୍ୟବସ୍ଥା ନ କରିବା ପର୍ଯ୍ୟନ୍ତ ମୋ ମନ ମତଲପ ଥୟ ହୁଏ ନାହିଁ କି ମତେ ରାତିରେ ନିଦ ହୁଏ ନାହିଁ । ମୁଁ ନିଜେ ଚୋରି କରୁଛି, ମିଛ କହୁଛି, କପଟାଚରଣ କରୁଛି- ଏଥକୁ ମୋ ମନରେ ଦଣ୍ଡେ ହେଲେ ଅନୁତାପ ହେବାକୁ ନାହିଁ, କିନ୍ତୁ ମୋ ଚାକର ଚୋରି କଲେ, ମୋ ପୁଅ ମିଛ କହିଲେ, ମୋ ସ୍ତ୍ରୀ ବାଳକ କପଟାଚରଣ କଲେ, ମୁଁ ମୋ ନିଜର ଦୋଷ ଅପରାଧ ଭୁଲିଯାଇ ସେମାନଙ୍କୁ ଗାର୍ହସ୍ଥ୍ୟ ଦଣ୍ଡବିଧି ଆଇନ ଅନୁସାରେ ଜବତ କରେ, ଦଣ୍ଡ ଦିଏଁ, ଘରୁ ତଡ଼ିଦିଏଁ, ଓପାସ ରଖାଏଁ ଇତ୍ୟାଦି ଇତ୍ୟାଦି । ସେତେବେଳେ ସବୁ ନ୍ୟାୟ, ବିବେକ, ସବୁ ଧର୍ମବିଚାରଣା କେଉଁଆଡ଼େ ମୋର ଉଭେଇ ଯାଏ । ମୁଁ ଜାଣୁଛି

ଯେ, ଅମୁକ କାର୍ଯ୍ୟଟା ଗର୍ହିତ, ଜାଣୁଛି ଯେ ଅମୁକ ବିଷୟଟା ଅଧର୍ମ, ଅଥଚ ମୁଁ କାର୍ଯ୍ୟ କ୍ଷେତ୍ରରେ ସେଥିରୁ ବିରତ ବା ବିବୃତ୍ତ ହୁଏ ନାହିଁ, ଧର୍ମରେ ପ୍ରବୃତ୍ତ ହୁଏ ନାହିଁ । ମୁଁ ଜଳଜଳ କରି ଚାହିଁ ମୋ ଆଖିରେ ଦେଖୁଛି ଯେ, ଏ ପଦାର୍ଥଟା ନିଆଁ, ତଥାପି ମୁଁ ସେ ନିଆଁରେ ହାତ ଗୁଞ୍ଜିଦିଏଁ, ଚାଲିଲା ଶଗଡ଼ରେ ହାତ ପୂରାଇ ଦିଏ, କାଦୁଅ ପଙ୍କରେ ଘୋଷାରି ହୁଏଁ । ଅଥଚ ଯେବେ ଅନ୍ୟ କେହି ମୋ ଅଧୀନସ୍ଥ ନିରୀହ ପ୍ରାଣୀ ସେ ନିଆଁ ପାଖରେ କେବଳମାତ୍ର ଠିଆ ହୋଇଯିବାର ମୁଁ ଦେଖିପକାଏଁ କିମ୍ୱା ଚାଲିଲା ଶଗଡ଼ ପାଖରେ ଠିଆ ହୋଇଯାଏ କିମ୍ୱା ପଙ୍କ କାଦୁଅ ପାଖରେ ଠିଆ ହୋଇଯାଏ, ତେବେ ଏହା ଦେଖିଲାକ୍ଷଣି ମୋ ଛାତି ଫାଟିଯାଏ, ମୋ ଦିହରେ ଚାଉଁକିନା ନିଆଁ ଲାଗିଯାଏ । ମୁଁ ଦୁଃଖ କରି, ପାପ କରି, ଅନ୍ୟାୟ କରି, ଅଧର୍ମ କରି, ପର ଘର ଭାଙ୍ଗି, ପରସ୍ୱ ଚୋରି କରି, ପରର କୁଳ ବୁଡ଼ାଇ ଯେଉଁ ଧନ ଅର୍ଜନ କରେଁ, ଯେବେ କେହି ଲୋକ ଅନ୍ୟାୟ କରି, ଅଧର୍ମ କରି, ମୋ ଘର ଭାଙ୍ଗି, ମୋ ନିଜସ୍ୱ ଚୋରି କରି ସେ ଧନକୁ ଆତ୍ମସାତ୍ କରିବାକୁ ଚେଷ୍ଟା କରେ, ତେବେ ମୋ ହିଆ ଫାଟିଯାଏ । ଈଶ୍ୱର ବୋଲି ଗୋଟାଏ ସତ୍ତା ଅଛି ବୋଲି ମୁଁ ହୃଦୟରେ ମାନୁଥିଲେ ଧର୍ମବିରୁଦ୍ଧ କାର୍ଯ୍ୟ କରୁ ନ ଥା'ନ୍ତି । କିନ୍ତୁ ମୁଁ ଦେଖିପାରୁଛି ଯେ, ଈଶ୍ୱର ଡାକଟା ମୋର କେବଳ ଗୋଟାଏ କଚେରି ପୋଷାକ ମାତ୍ର । ପର ପୁଅକୁ ମୁଁ ଉପଦେଶ ଦିଏଁ- ଈଶ୍ୱର ବିଶ୍ୱାସ କର, ଧର୍ମରେ ମାତି ରୁହ, ଅଧର୍ମାଚରଣ, ପାପାଚରଣ କରନା । କିନ୍ତୁ ମୋ ବେଳକୁ ସରଜମିନରେ ଏ ଧର୍ମ ଡାକଗୁଡ଼ାକ ପାଣି ଫୋଟକା ଭଳି କେଉଁଆଡ଼େ ଉଭେଇ ଯାଏ ଓ ପାସୋରି ଯାଏ ।

ପ୍ରଶ୍ନ - 'ଏ କୋଠାଟି କିଏ କରିଛି ?' ଉତ୍ତର- 'ମୁଁ ।'

ପ୍ରଶ୍ନ - 'ଏ କୋଠାଟି ଭାଙ୍ଗିଲା କିଏ ରେ ?' ଉତ୍ତର- 'ଈଶ୍ୱର ।'

ଭଲ ବେଳେ, ହାତୀ ଘୋଡ଼ା ଝୁଲିଲା ବେଳେ ଈଶ୍ୱରଙ୍କ ସଙ୍ଗେ ଭେଟ ହେବାକୁ ଈଶ୍ୱରଙ୍କୁ ଡାକଟାଏ ମାରିବାକୁ ମତେ ଫୁରସତ୍ ମିଳେ ନାହିଁ; କିନ୍ତୁ ସଂସାରର ମାଲଭୂଇଁରେ କରଡ଼ାଏ ପାଇ ମୋ ରସ ନିକିଳିଲା ବେଳକୁ ମୁଁ ହୁଳର ଛାଡ଼େ- 'ହେ ପରାତ୍ପର ପରମେଶ୍ୱର ! ମୋ ଦିହ ଦରଜକୁ ଉଣା କରିଦିଅ, ମତେ ଦୁଃଖକଷ୍ଟରୁ, ପାପତାପରୁ ଉଦ୍ଧାର କର ।' ଭଗବଦ୍ ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନକୁ କହି ଅଛନ୍ତି- 'ଚତୁର୍ବିଧାଃ ଭଜନ୍ତେ ମାଂ ଜନାଃ ସୁକୃତିନୋଽର୍ଜନ । ଆର୍ତ୍ତୋଜିଜ୍ଞାସୁ ଅର୍ଥାର୍ଥୀ ଜ୍ଞାନୀ ଚ ଭରତର୍ଷଭ !' ଅର୍ଥାତ୍ ଚାରି ଜାତି ମନୁଷ୍ୟ ଈଶ୍ୱରଙ୍କୁ ଭଜନ କରନ୍ତି । ୧- ଅର୍ତ୍ତ ଅର୍ଥାତ୍ ବିପଦ୍‌ଗ୍ରସ୍ତ ବ୍ୟକ୍ତି, ୨- ଜ୍ଞାନ ଲାଭ କରିବାକୁ ଇଚ୍ଛୁକ ବ୍ୟକ୍ତି, ୩- ଅର୍ଥ ପାଇବା ନିମନ୍ତେ ଇଚ୍ଛୁକ ବ୍ୟକ୍ତି ଓ ୪- ଜ୍ଞାନୀ ଅର୍ଥାତ୍ ଜ୍ଞାନଲାଭ କରିଥିବା ବ୍ୟକ୍ତି । ସାଧାରଣତଃ ଦେଖାଯାଏ ଯେ, ବିପଦରେ ପଡ଼ିଥିବା ବ୍ୟକ୍ତି ଓ ଫଳ ବା ଅର୍ଥପ୍ରାର୍ଥୀ ବ୍ୟକ୍ତି ଈଶ୍ୱରଙ୍କୁ ଡାକ ପକାଏ ଏବଂ ବିପଦରୁ ଖଲାସ ପାଇବାର ପର ମୁହୂର୍ତ୍ତରେ ଓ ଫଳ ବା ଅର୍ଥ ମିଳିଯିବାର ପରକ୍ଷଣରେ ଈଶ୍ୱର

ଫେର ମନରୁ କେଉଁଆଡ଼େ ପାଣି ଫୋଟକା ଭଳି ଉଭେଇଯା'ନ୍ତି । ଯାହାର ଈଶ୍ୱରଭକ୍ତି ଓ ମହାପ୍ରଭୁ ଡାକ ଏହିଥିରେ ପର୍ଯ୍ୟବସିତ, ତାହାର ଗତି କାହିଁ ? ମୁକ୍ତି କାହିଁ ? ଶାନ୍ତି କାହିଁ ? ଆମ ଭିତରୁ ପନ୍ଦର ପଣ ଉଣେଇଶ ଗଣ୍ଡା ତିନି କଡ଼ା ଖାଲି ମୋ ଭଳିଆ ଏହି ଦୋନାବୁଡ଼ିଆ ଶ୍ରେଣୀର । ଏଥିପାଇଁ କହନ୍ତି - ''ମନରେ ନାହିଁ କି ମାଳିରେ ନାହିଁ, ଜପି ଜପି କରି ପାଇବୁଁ କାହିଁ ?'' ଆମରତ ମନର ଦୃଢ଼ତା ନାହିଁ, ଈଶ୍ୱରଙ୍କୁ ମୁହଁରେ ଡାକିଲେ ଅବା ଆମ ଗୁହାରି ଶୁଣୁଛି କିଏ ? ଶୁଣାଅଛି ଯେ, ଭଗବାନ୍ ଭକ୍ତର ବିକଳ ସହିପାରନ୍ତି ନାହିଁ । ପୋଥିରେ ପଢ଼ିଥାଇଁ ଯେ ଦୁଃଖୀ, ତାପୀ, ପାପୀ କ୍ଷୀଣ ଡାକଟାଏ ମାରିଲେ ମହାପ୍ରଭୁଙ୍କର ଯୋଗନିଦ୍ରା ଭାଙ୍ଗିଯାଏ ଓ ଭକ୍ତ ଦେହରେ ଟିକିଏ ଆଞ୍ଚ୍ ବାଜିଲେ ମହାପ୍ରଭୁଙ୍କ ଶ୍ରୀଅଙ୍ଗ ଖଣ୍ଡିଆ ହୋଇଯାଏ । ଏ ସବୁ ଶୁଣା କଥା, ଏ ସବୁ ପୋଥି ପାଠ । କିନ୍ତୁ ସରଜମିନରେ ଅନୁଭବ କରୁଅଛି ଯେ, ଭଗବାନ୍ ମୋ ଡାକ ଶୁଣୁ ନାହାନ୍ତି, ମୋ ହୃଦୟରେ ନିଶ୍ଚଳା ଭକ୍ତି, ଈଶ୍ୱର ନିଷ୍ଠା, ଧର୍ମଭୟ ଦେଉ ନାହାନ୍ତି କିଆଁ ? ମତେ ଜଣାପଡୁଛି ଯେ ମୁଁ ହୃଦୟର ଦୃଢ଼ତା ସହିତ ପ୍ରଭୁଙ୍କୁ ଡାକି ପାରୁ ନାହିଁ ବୋଲି ମୋ ଡାକ ମହାପ୍ରଭୁଙ୍କ କାନରେ ବାଜୁ ନାହିଁ । ମୋ ବିକଳ ଖାଲି ମୁହଁର ବିକଳ, ଅନ୍ତରାତ୍ମାର ବିକଳ ଡାକ ନୁହେଁ । ମୋର ବିରଳ ବିଶ୍ୱାସ ନାହିଁ ମୋ ହୃଦୟ ଭକ୍ତିପ୍ରବଣ ହୋଇ ପାରୁ ନାହିଁ, ମୋର ନିଷ୍ଠା ଆନ୍ତରିକ ନିଷ୍ଠା ନୁହେଁ । ଏଥିପାଇଁ କରୁଣାମୟଙ୍କର, କୃପାସିନ୍ଧୁଙ୍କର, ଦୟାସାଗରଙ୍କର ଦୟାର କଣିକା ମୋ ଠାରେ ଲାଗିପାରୁ ନାହିଁ । ମୋର ସାଂସାରିକ ଶିକ୍ଷା ଓ ଅନୁଭବ ତ ମତେ ଭକ୍ତି ଓ ଧର୍ମପଥ ଶିଖାଇପାରିଲା ନାହିଁ । ଏପରି ଶିକ୍ଷା ଦେବାବାଲା ବନ୍ଧୁ ବା ଗୁରୁଟିଏ ମଧ କେହି ଆଜ ଓବଧି ହାବୁଡ଼ରେ ପଡ଼ିଲେ ନାହିଁ । ତେବେ ଭକ୍ତି କାହୁଁ ପାଇବି ? ମୁଁ ତ ଜୀବନରେ ଜଣେ ଭକ୍ତଙ୍କୁ ଦେଖିପାରିଲି ନାହିଁ କି ଚିହ୍ନିପାରିଲି ନାହିଁ; ମୋ ଠାରେ ଭକ୍ତି ଆସିବ କାହୁଁ ? ଜଣେ ଭକ୍ତ ଅତି ନିରାଶ ହୋଇ ଦୁଃଖରେ କାତର ହୋଇ ଡାକ ମାରିଛନ୍ତି -

''ଭକ୍ତାନାମ ଭୟପ୍ରଦୋ ଯଦି ହରି !
ନୈତଦ୍ ବିଚିତ୍ରଂ ବିଭୋ !
କୀଟୋଽପି ସ୍ୱଜନସ୍ୟ ରକ୍ଷଣବିଧା
ବେକାନ୍ତାମୁଦବେଦିତଃ ।
ଯେ ଯୁଷ୍ମଚରଣାରବିନ୍ଦବିମୁଖାଃ
ସ୍ୱପ୍ନେଽପିବା ମାଦୃଶାଃ
ତେଷାମୁଦ୍ଧରଣକ୍ଷମୋ ଯଦି ଭବେ
କାରୁଣ୍ୟସିନ୍ଧୁ ସ୍ତଦା ।''

ଅର୍ଥାତ୍- ହେ ମହାପ୍ରଭୋ ! ତୁମ୍ଭେ ଭକ୍ତକୁ ଅଭୟ ପ୍ରଦାନ କର ବୋଲି ଯେ ଲୋକେ କହନ୍ତି, ଏଥିରେ ବିଚିତ୍ର କଥା କିଛି ନାହିଁ । ସାମାନ୍ୟ ପୋକଜୋକ ନିଜ ନିଜର ସ୍ୱଜନଙ୍କୁ ରକ୍ଷା କରିବା ଲାଗି ବ୍ୟସ୍ତ । କିନ୍ତୁ, ହେ ପ୍ରଭୋ ! ମୋ ଭଳି ଯେଉଁ ନରାଧମ ମୂଢ଼ ଅପରାଧୀ ପାପାଚାରୀ ସ୍ୱପ୍ନରେ ସୁଦ୍ଧା ତୁମ୍ଭ ଚରଣ ଧ୍ୟାନ ନ କରେ ଓ ତୁମ୍ଭ ଅଭୟ ଚରଣରେ ଶରଣ ପ୍ରାର୍ଥନା ନ କରେ, ସେପରି ନରାଧମକୁ ଯେବେ କରୁଣାବାରି ଦ୍ୱାରା ଉଦ୍ଧାର କରିବ, ତେବେ ସିନା, ହେ ପ୍ରଭୋ ! ତୁମ୍ଭର 'କରୁଣା ସିନ୍ଧୁ' ନାମ ସାର୍ଥକ ହେବ ।

ପୁଣ୍ୟବନ୍ତ ଲୋକ ସ୍ୱର୍ଗକୁ ଗଲା । ସେ ଆଉ କୁଆଡ଼େ ଯା'ନ୍ତା କି ? କିନ୍ତୁ ଯେବେ ପ୍ରଭୁ ! ତୁମ୍ଭ ମହିମାରେ ପାପୀ ସ୍ୱର୍ଗକୁ ଯିବ, ଶାନ୍ତି ଲାଭ କରିବ, ତେବେ ପ୍ରଭୁ ! ତୁମ୍ଭର ମହିମା ସିନା ଜାହେର ହେବ । ଏ ସବୁ ଭକ୍ତ ହୃଦୟର ଉଚ୍ଛ୍ୱାସ ମାତ୍ର । ଦେଖାଯାଏ ଯେ, କେତେ କେତେ ମହାପାପୀ ହୃଦୟର ଆବେଗରେ ପ୍ରଭୁଙ୍କୁ ଡାକି ଶାନ୍ତି ଲାଭ କରିଅଛନ୍ତି, କେତେ କୁପଥଗାମୀ, ସମାଜ କଳଙ୍କ ବ୍ୟକ୍ତି ଦୃଢ଼ ଭାବରେ ଭଗବାନ୍‌ଙ୍କୁ ଭଜନ କରି ସୁପଥ ପାଇ ପାରିଅଛନ୍ତି । ତେବେ ମୋ ଘଟନାରେ ସେ ଶାନ୍ତି ଆସୁ ନାହିଁ କାହିଁକି ? ଏ ସବୁ ସଂସାରର ମହା ବିଷମ ସମସ୍ୟା । ଏ ବିଷମ ସମସ୍ୟା ପୂରଣ ହେଉ ନାହିଁ କିଆଁ ? ମନୁଷ୍ୟ ଏହି କଥା ଭାବୁ ଭାବୁ ତା ଆଖି ଛଳ ଛଳ ହୋଇଯାଏ ଓ ହୃଦୟ ଭାର କେତେ ପରିମାଣରେ ଉଶ୍ୱାସ ହୋଇଯାଏ ।

ମୁଁ ମହାପାପୀ, ଘୋର ଅପରାଧୀ, ମୁଁ ଆଶା କରୁଛି ଓ ପ୍ରାର୍ଥନା କରୁଛି ଓ ଦମ୍ଭ ବାନ୍ଧୁଛି ଯେ, ଈଶ୍ୱର ମୋ ପାପଯାକ ଟିକକଠଉଁ ପୋଛି ପୋଛି ନିର୍ମଳ କରି ଦେଇ ମତେ କ୍ଷମା ଦେଇ ବେକସୁର ଖଲାସ ଦେବେ । କିନ୍ତୁ ମୋ ନିକଟରେ ଯେଉଁମାନେ ସାମାନ୍ୟ ଅପରାଧରେ ଅପରାଧୀ ହୁଅନ୍ତି, ସେମାନଙ୍କୁ ମୁଁ ଏହିପରି ନିର୍ମଳ ଭାବରେ କ୍ଷମା ଦେଇ ଥାଏଁ ଟି କି ? ମହାଜନ କହି ଯାଇଅଛନ୍ତି "Forgive as thou wouldst be forgiven" "Do unto others would others do unto you" ଅର୍ଥାତ୍ ତୁମେ ତୁମ ବେଳକୁ ଯେଉଁ କ୍ଷମା ବା ବ୍ୟବହାର ଅନ୍ୟଠାରୁ ଆଶା କର, ପରବେଳକୁ ମଧ୍ୟ ସେହି ନିୟମକୁ କାର୍ଯ୍ୟରେ ପରିଣତ କର ।

ଯେହେତୁ ଘରକଥା କହୁ କହୁ, ବାଲବଚ୍ଚାଙ୍କ କଥା ଆରମ୍ଭ କରୁ କରୁ ଆସି କେଉଁଠାରେ ଅଗ୍‌ନାଗ୍ନି ବନସ୍ତରେ ପଶିଗଲିଣି । ତେଣିକି ଆଉ ବାଟ ଦିଶିବାକୁ ନାହିଁ । ଖାଲି କୁହୁଡ଼ି ଗୁଡ଼ାଏ । ବୁଢ଼ିଆଣୀ ସୂତା ଗୁଡ଼ାଏ ।

ମୁଁ କହୁଥିଲି ଯେ, ଯେଝା ଘରକରଣାଟି ନିଜକୁ ବଡ଼ ଦିଶେ । ଅନ୍ୟ ଲୋକଙ୍କ ଘରକରଣାରେ ଯେପରି ହାଣ୍ଡିଟାଏ, କଣ୍ଢେଇଟାଏ, ହେଁସଟାଏ, ଝାଡୁଟାଏ, ମାଠିଆଟାଏ, ବେଲାଟାଏ, ଗାଈଟାଏ, ଦାମୁଡ଼ିଟାଏ, ପୁଅଟାଏ, ଝିଅଟାଏ, ପୋଇଲୀଟାଏ,

ପରିବାରୀଟାଏ ଇତ୍ୟାଦି ଯେପରି ସମ୍ବନ୍ଧ ମୋର ମଧ୍ୟ ଅଛି ବହୁତ ସେହିତା । କେଉଁଟା ଦଦରା, କେଉଁଟା ଭଙ୍ଗା, କେଉଁଟା ଚିରା, କେଉଁଟା ଖଣ୍ଡିଆ, କେଉଁଟା କଣା, କେଉଁଟା ଫଟା, କେଉଁଟା ବାଞ୍ଝ, କେଉଁଟା ଖଲିଆ, କେଉଁଟା ଘୋଡ଼ାମୁହାଁ, କେଉଁଟା ଅନ୍ତଶ୍ଚୁକୁଟୀ, କେଉଁଟା କାଣୀ, କେଉଁଟା ଚିରରୋଗିଣୀ ଏତିକି ହିଁ ଇତର ବିଶେଷ ମାତ୍ର ।

ଯେ ହେଉ, ଇତିମଧ୍ୟରେ ଘରଠାରେ ଉଦର କ୍ରିୟା ସମ୍ପାଦନର ସୌଷ୍ଠବ ନିମନ୍ତେ ଗୋଟିଏ ପାଚିକାଙ୍କୁ କେତେ ଦିନ ହେଲା ଆଶ୍ରୟ ଦେବାକୁ ହୋଇଅଛି । ଆମ ବ୍ରାହ୍ମଣ ସଂସାରରେ ଅକ୍ଷମ - ଦାରକ ଗୃହସ୍ଥର ପାକକ୍ରିୟା ସମ୍ପାଦନ ନିମନ୍ତେ ବେଶି କଷ୍ଟ ପାଇବାକୁ ହୁଏ ନାହିଁ । ପୂର୍ବରୁ ମୁନିଋଷିମାନେ ମୋ ଭଳିଆ ଗୃହସ୍ଥଙ୍କର ଅବସ୍ଥାକୁ ଜ୍ଞାନଚକ୍ଷୁରେ ଉପଲବ୍ଧି କରି ମାନ୍ଧାତାଙ୍କ ଅମଳରୁ ଗୁଡ଼ିଏ ସାମାଜିକ ବିଧି ପ୍ରଣୟନ କରି ଆମ ବ୍ରାହ୍ମଣ ସମାଜରେ ଗୁଡ଼ିଏ ନାଉଆରସି ଜୀବ ସୃଷ୍ଟି କରି ରଖି ଯାଇଅଛନ୍ତି । ବାଲ୍ୟ ବିବାହ, ବହୁ ବିବାହ ପ୍ରଚଳନ ଓ ବିଧବା ବିବାହ ନିଷେଧ ଯୋଗୁଁ ଆମ ସମାଜରେ ଅନେକ 'ଅବରା' ନିରାଶ୍ରୟା ବିଧବା ମୁକୁଳା ହୋଇ ବିଚରଣ କରୁଅଛନ୍ତି । ଖଞ୍ଜ ଖାଞ୍ଜ ଦେଖି ସେଥିରୁ ଗୋଟିଏ ଦିଓଟି ଗୋଟାଇ ଆଣିପାରିଲେ ଗୃହର ଗୃହସ୍ଥଙ୍କର ପାକ, ପରିପାକ, ବିପାକ, ଅପାକ, ଲଘୁପାକ, ସ୍ୱପାକ ଆଦି ଅନେକ କ୍ରିୟା, ପ୍ରକ୍ରିୟା, ବିକ୍ରିୟା, ଅନୁକ୍ରିୟା ସମାଧାନ ହୋଇଯାଏ । କିଛି ଜଡ଼ି ବୁଟି ଦେଇ, ଘଣ୍ଟି ଘାଗୁଡ଼ି ଦେଇ, ଖୋରାକ ପୋଷାକ ଦେଇ, ଏ ଜୀବଙ୍କୁ ପୋଷା ମନାଇ ପାରିଲେ ଏମାନେ ଆପୁଖିଆ ନେଉଳ ଭଳିଆ ତୁମ ଘରର ଗେରଦ ଛାଡ଼ି କେଉଁଆଡ଼େ ପଳେଇ ଯିବେ ନାହିଁ ।

ଯେହେତୁ ଆମ ଭାଗ୍ୟକୁ ମିଳିଥିବା ପାକଲକ୍ଷ୍ମୀଙ୍କ ନାମ 'ବାଇନାନୀ' । ଆମ ବାଇନାନୀ ବର୍ତ୍ତମାନ ପ୍ରୌଢ଼ା ଅର୍ଥାତ୍ ବିଗତ ତ୍ରିଂଶ ବୟସ୍କା । ସେ ଅବରା ଅର୍ଥାତ୍ ସ୍ୱାମୀ ପୁତ୍ରବିନା । ସମସ୍ତଙ୍କ ଭାଗ୍ୟକୁ ବାଇନାନୀ ହାବୁଡ଼ନ୍ତି ନାହିଁ । ମୋର ସିନା ଏକ ଘରକରଣାରେ ସଂସାର ଆରମ୍ଭ ଓ ସଂସାର ମଧ୍ୟ ଶେଷ ହେବ, କିନ୍ତୁ ବାଇନାନୀଙ୍କର ମୋ ଘରକରଣା ହେଲା ୪ର୍ଥ କି ୫ମ ସଂସାର । ସ୍ତ୍ରୀମାନଙ୍କୁ 'ପିତା ରକ୍ଷତି କୌମରେ ଭର୍ତ୍ତା ରକ୍ଷତି ଯୌବନେ । ପୁତ୍ରୋ ରକ୍ଷତି ବାର୍ଦ୍ଧକ୍ୟେ ନ ସ୍ତ୍ରୀ ସ୍ୱାତନ୍ତ୍ର୍ୟ ମର୍ହତି' । ଅର୍ଥାତ୍ ସ୍ତ୍ରୀମାନଙ୍କୁ ବାଲ୍ୟକାଳରେ ପିତା ରକ୍ଷା କରିବେ । ଯୌବନ ସମୟରେ ଭର୍ତ୍ତା ରକ୍ଷା କରିବେ ଓ ବୃଦ୍ଧାବସ୍ଥାରେ ପୁତ୍ର ରକ୍ଷା କରିବେ । ସ୍ତ୍ରୀମାନେ ସ୍ୱାଧୀନା ହୋଇ ରହିବାର ଉପଯୁକ୍ତା ନୁହନ୍ତି । ସେମାନେ ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ପୁରୁଷ ପୁଅ ବେକ ଘଣ୍ଟିମାଳ । ବାଇନାନୀକୁ ୭ ବର୍ଷ ନ ପୂରୁଣୁ ବାପା ନେଇ ତାକୁ ତୋଳାକନ୍ୟା କରି ଜଣକ ବେକରେ ବାନ୍ଧି ଦେଇ ଆସିଲେ । ଆମ ବାଇନାନୀଙ୍କୁ ବାଲ୍ୟ କାଳରେ ସ୍ୱାମୀ ପୋଷିଲେ । ଯୌବନ ସମୟରେ ସମାଜ ପୋଷିଲା, ବାର୍ଦ୍ଧକ୍ୟ ବେଳକୁ ଆମ ଭଳି ରୋଗିଣୀ-ଦାରକ ବୃଦ୍ଧ ଗୃହସ୍ଥ ପୋଷିଲେ ଓ ପୋଷିବେ । ଏପରି ସ୍ଥଳରେ ଗୃହର ପାକଶାଳା ଛଡ଼ା ଅନ୍ୟ ଶାଳାମାନଙ୍କରେ ବାଇନାନୀଙ୍କ service utilize କରାମତିକୁ ସଦ୍‌ବ୍ୟବହାର

କରିପାରିଲେ ସମାଜର ଅନେକ ପ୍ରକାରର ଉପକାର ସମ୍ଭବ, ଏହି କଥା ଭାବି ବାଇନାନୀଙ୍କ ସଙ୍ଗେ ଆମର ଅନେକ ଦୁଃଖ ପଡ଼ିଯାଏ ଓ ବାଇନାନୀଙ୍କର ବୟୋବୃଦ୍ଧି ସଙ୍ଗେ ସଙ୍ଗେ ଯେଉଁ ଶାରୀରିକ ଓ ମୌଖିକ କରାମତି କମି ଆସୁଥିବାର ବାଇନାନୀ ଅନୁଭବ କରୁଅଛନ୍ତି । ସେହି ଧାରଣା ଦ୍ୱାରା ସେ ବୁଝିପାରୁଅଛନ୍ତି ଯେ, ଭବିଷ୍ୟତ୍‌ରେ ସେ ପୂର୍ବପରି ଜଙ୍ଗମା ନ ହୋଇ ସ୍ଥାବରା ହେବାକୁ ବାଧ୍ୟ ହେବେ । ତାଙ୍କ ମନରେ ଏହି ଧାରଣା ହୋଇଥିବାରୁ ସେ ବର୍ତ୍ତମାନ ଆମ ଗୃହସ୍ଥଳୀରେ ଆମ ରୋଗିଣୀ ଓ ଶଯ୍ୟାବଲଗ୍ନା ଗୃହଣୀଙ୍କର ବିଜେ ପ୍ରତିମା ବନିଅଛନ୍ତି । ମନୁଷ୍ୟ ଅନୁଭବ ଦ୍ୱାରା ଯେଉଁ ଜ୍ଞାନଲାଭ କରେ, ସେ ଜ୍ଞାନ ହଜାରେ ଗୁରୁଶିକ୍ଷା, ଶାସ୍ତ୍ର ଶିକ୍ଷା ଦ୍ୱାରା ହୋଇପାରେ ନାହିଁ । ଅନୁଭବୀ ଲୋକଠାରୁ 'ବାଡ଼ି ବାଇଗଣ' ମିଳେ । ଶାସ୍ତ୍ର ଓ ଗୁରୁ ମୁଖରୁ 'ପୋଥି ବାଇଗଣ' ମିଳେ । ଏହି ସବୁ କାରଣରୁ ଗୃହସ୍ଥଳୀର ପାକ ବିପାକାଦି କ୍ରିୟାରୁ ଅବସର ମିଳିଲେ ବାଇନାନୀ ଆପଣା ଅନୁଭବ ଓ ଅନୁଭୂତିଗୁଡ଼ିକ ବଖାଣି ଯା'ନ୍ତି ଓ ଗୃହର ପିଲାମାନେ ସେଗୁଡ଼ିକ ଟିପାଟିପି କରି ପକାନ୍ତି । ଆମେ ସୁବିଧା ଓ ଫୁରସତ୍ ପାଇଲେ ସେ ଟିପାଟିପ୍‌ପଣୀ ଗୁଡ଼ିକୁ ଧାରାବାହିକ କରି ପୋଥିରେ ଲେଖି ପକାଉଁ । ବାଇନାନୀଙ୍କଠାରୁ ପ୍ରାପ୍ତ କଥାଗୁଡ଼ିକ ଆମେ ସାଧାରଣରେ ପ୍ରକାଶ କରିବୁଁ ଓ ସେଗୁଡ଼ିକ ବାଇନାନୀଙ୍କର ନିଜସ୍ୱ ଥିବାରୁ ଏଗୁଡ଼ିକୁ 'ବାଇନାନୀଙ୍କ ବୁଜୁଳି' ବୋଲି ନାମକରଣ କରି ତାହା କ୍ରମଶଃ ପାଠକମାନଙ୍କ ସମ୍ମୁଖରେ ଖୋଲି ଦେବାର ବାସନା କରିଅଛୁଁ । ପାଠକମାନେ କ୍ରମଶଃ ତହିଁର ନମୁନା ଦେଖିପାରିବେ ଯେ ! ଇତି ।

ଉତ୍କଳ ସାହିତ୍ୟ/୨୪ଶ ଭାଗ/୧୧ଶ ସଂଖ୍ୟା/୧୩୨୮ ସାଲ ।

## ।। ପ୍ରଥମ ପୁଡ଼ା ।।

ହଇରେ ଅଣ୍ଡିରିପୁଅମାନେ ! ଆଚ୍ଛା ତୁମ୍ଭେମାନେ ବର୍ତ୍ତମାନ ଦେଶୋଦ୍ଧାରରେ ଦିନରାତି ବ୍ୟସ୍ତ, କଥାଟା କ'ଣ ? ନା, ଆମ ଘର କଥା ଆମେ ବୁଝିବୁଁ, ଆମ ଦେଶ ଆମେ ଶାସନ କରିବୁଁ, ଆମର ନିର୍ବାଚିତ ପ୍ରତିନିଧିମାନେ ଆମ ପାଇଁ ଆଇନ୍ କାନୁନ୍ କରିବେ ଓ ଆମ ରାଜ୍ୟରେ କର ଧାର୍ଯ୍ୟ କରିବେ, ଏସବୁ କଥା ଦାଣ୍ଡଲୋକ, ବିଦେଶୀ ଲୋକ, ବିଜାତୀୟ ମନୁଷ୍ୟ ବୁଝିବେ ନାହିଁ । ଅର୍ଥାତ୍ ବର୍ତ୍ତମାନ ସ୍ୱାୟତ୍ତଶାସନ ପାଇଁ ଦୁନିଆଯାକ ଭାରି ଗୋଳ ଚହଳ ପଡ଼ିଛି, କିନ୍ତୁ ତୁମେ ଅଣ୍ଡିରିପୁଅଯାକ ଏ ଦିଲ୍ଲୀ ଲଡ୍ଡୁ ସ୍ୱାୟତ୍ତ ଶାସନ କେଉଁ ପାଇବ ନାହିଁ, ପାଇଲେ ମଧ୍ୟ ତହିଁର ସୁବିଧା କେଉଁ ଭୋଗ କରିପାରିବ ନାହିଁ, ଏ କଥା ଧ୍ରୁବସତ୍ୟ । ଆଚ୍ଛା ଭଲା, ମୁଁ ପଚାରେଁ, ତୁମେ ଆମ ମାଇପିଜାତିଙ୍କ ପାଇଁ ଯେଉଁ ଆଇନ୍‌କାନୁନ୍, ବିଧି ନିଷେଧ, ଦଣ୍ଡ ପ୍ରାୟଶ୍ଚିତ୍ତ ଆଦିର ବ୍ୟବସ୍ଥା ମାନ୍ଧାତାଙ୍କ ଅମଳରୁ ପ୍ରଣୟନ କରିକରିକା ଆସୁଛ,

ସେଥିପ୍ରତି ତୁମର ଏହି ନୀତି (Principle) ଖଟୁଛି କି ? ଧନ୍ୟ ତୁମ ମର୍ଦ୍ଦପୁଅଙ୍କର Principle (ନୀତି) ସେବା !

କନ୍ୟାମାନେ ସମ୍ପତ୍ତିରୁ ଅଂଶ ପାଇବେ ନାହିଁ, କନ୍ୟାମାନେ ଗୋଟିଏ ଘରେ ଜନ୍ମ ହୋଇ ତାଙ୍କ ପାଇଁ ଆଉ ଜଣକ ହାଣ୍ଡିରେ ଚାଉଳ ପଡ଼ିବ, ସେମାନେ ଭଲ କରି କଥାବାର୍ତ୍ତା କରି ନ ଜାଣୁଣୁ ତାକୁ ନେଇ ଗୋଟିଏ ଅଣ୍ଡିରିପୁଅ ସଙ୍ଗେ ଛନ୍ଦରା ଛନ୍ଦରି କରାଯିବ । ଦୈବୀ ଘଟଣାରୁ ଏପରି ଅଜ୍ଞାନ ଅବସ୍ଥାରେ ବିବାହିତ କନ୍ୟାର ପ୍ରଥମ ସ୍ୱାମୀ ଫଉତ୍ ହେଲେ ବାଳୁତ ବିଧବା ହାତରୁ, ଗୋଡ଼ରୁ, କାନରୁ, ନାକଟିକକଣ୍ଠଉଁ ଅଳଙ୍କାର କାଢ଼ିବ, ଭୁନି ଲୁଗା ପିନ୍ଧିବ, ଚବିଶ ଏକାଦଶୀ, ସତୁରି ଉପବାସ କରିବ, କାହା ମୁହଁକୁ ଚାହିଁ କଥା କହିବ ନାହିଁ, ଲାଣ୍ଡୀ ହେବ, କୌଣସି ମଙ୍ଗଳ ଅନୁଷ୍ଠାନର ସଧବାଙ୍କ ସଙ୍ଗେ ଯୋଗ ଦେଇପାରିବ ନାହିଁ । ଆପଣା ଘରେ ପର ଝିଅ ହୋଇ ଦିନ କାଟିବ । ଯେବେ ଅକସ୍ମାତ୍ ମୃତ ସ୍ୱାମୀଙ୍କର ଆଉ କେହି ନିକଟ ଉଆରସ (ଯଥା- ପୁଅ, ଭାଇ, ପୁତୁରା ଇତ୍ୟାଦି) ନ ଥା'ନ୍ତି, ତେବେ ବିଧବା ସ୍ୱାମୀର ସମ୍ପତ୍ତିରେ ଉଆରସ ହେଲେ ସୁଦ୍ଧା ସେ ସମ୍ପତ୍ତିର ଆୟ ମାତ୍ର ଭୋଗ କରିବ, ସମ୍ପତ୍ତି ଉଜାଡ଼ିପାରିବ ନାହିଁ, ବିକ୍ରି, ଖରିଦ, ବନ୍ଧକ ଆଦି କୌଣସି ପ୍ରକାରେ ହସ୍ତାନ୍ତର କରିପାରିବ ନାହିଁ । ସ୍ତ୍ରୀର ନିଜର ଯାହା 'ସ୍ୱାଧୀନ' ସେଥିରେ ମଧ୍ୟ ତାର ପୂର୍ଣ୍ଣ ଅଧିକାର ରହିବ ନାହିଁ । ସ୍ୱାମୀଙ୍କର ଆବଶ୍ୟକ ହେଲେ ସ୍ତ୍ରୀର ଉକ୍ତ ଖାସ୍-ସମ୍ପତ୍ତିରେ ସ୍ୱାମୀ ହାତ ଲଗେଇ ପାରିବେ, ଅର୍ଥାତ୍ ଖରଚ କରିପାରିବେ । ସ୍ତ୍ରୀମାନେ ପର ପୁରୁଷ ମୁହଁ ତ ଦୂର କଥା, ଗୋଡ଼ର ବୁଢ଼ାଆଙ୍ଗୁଠି ଅଗକୁ ସୁଦ୍ଧା କଣେଇ କରି ଚାହିଁପାରିବେ ନାହିଁ, ସ୍ତ୍ରୀମାନଙ୍କର କୌଣସି ରାଜକୀୟ ଶାସନ କାର୍ଯ୍ୟ ସମ୍ବନ୍ଧରେ ପଦେ କଥା କହିବାର (ଭୋଟ ଦେବାର) ଅଧିକାର ନାହିଁ । ସ୍ତ୍ରୀମାନଙ୍କର ଚରିତ୍ର ଦୋଷ ଘଟିଲା ମାତ୍ରକେ ସେମାନେ ପତିତ, ତ୍ୟକ୍ତ, ବିଡ଼ମ୍ବିତ, ଲାଞ୍ଛିତ ଓ କୁଳରୁ ଓ ବଂଶରୁ ବିତାଡ଼ିତ ହେବେ ଇତ୍ୟାଦି ଇତ୍ୟାଦି । ସ୍ତ୍ରୀମାନଙ୍କର ସ୍ୱାତନ୍ତ୍ର୍ୟ ନାହିଁ କି ରହିବା ଉଚିତ ନୁହେଁ । ତୁମ୍ଭମାନଙ୍କ ପକ୍ଷରେ ଯାହା 'ରସ' ସେମାନଙ୍କ ପକ୍ଷରେ ତାହା 'ବିଷ' । ତୁମ ପକ୍ଷରେ ଯାହା ମିଠା, ସେମାନଙ୍କ ପକ୍ଷରେ ତାହା ଅଠା । ଆଚ୍ଛା ଭଲା, ହେ ଭାଇ ଓ ବାପାମାନେ ! ମୁଁ ପଚାରୁଛି, ଆମ ମାଇପି ଜାତି ପାଇଁ ଏ ସବୁ ଆଇନ୍ କାନୁନ୍ ବ୍ୟବସ୍ଥା କିଏ କଲା ? ଏ ସବୁ ବ୍ୟବସ୍ଥାରେ ସ୍ତ୍ରୀମାନଙ୍କଠାରୁ କିମ୍ବା ସେମାନଙ୍କର କୌଣସି ପ୍ରତିନିଧିଙ୍କଠାରୁ ମତ ଓ ମଞ୍ଜୁର ନିଆଯାଇଥିଲା କି ? ଯେଉଁ ଜାତି ଆପଣା ସମାଜର ଆଠପଣିଆ ସରିକିଦାରଙ୍କ ପ୍ରତି ଏପରି ଅବିଚାର, ଅତ୍ୟାଚାର, ଅନାଚାର, ଆବହମାନ କାଳରୁ କରି ଆସୁଛନ୍ତି, ସେମାନେ ଫେର ହୁଲରା ପକାଉଛନ୍ତି ଯେ, ଆମ ପ୍ରତି ଯେଉଁ ଆଇନ୍ ହେବ ତାକୁ ଆମେ କିମ୍ବା ଆମ ପ୍ରତିନିଧିମାନେ ନ କଲେ ପ୍ରଣବ ଅଶୁଦ୍ଧ ହୋଇଯିବ । ଏ ବିଡ଼ମ୍ବନାକୁ ଉତ୍ତର ନାହିଁଲୋ ବାପା ।

ଆମ ଜାତିଟା ଅବଳା ଅର୍ଥାତ୍ ନିପାରିଲାର । ତୁମ ହାତରେ ଠେଙ୍ଗା ଦିହରେ ବଳ, ମୁହଁରେ ପାଟି, ପାଟିରେ ଗର୍ଜନ ଘାତ ଗଳା ଅଛି ଓ ଲହଲହକା ଜିଭଟିମାନ ଅଛି । ତୁମେ ଘରେ କବାଟ କିଳି ମାଇପଙ୍କ ଉପରେ ସବୁ ଅତ୍ୟାଚାର କରିଯାଉଛ, ଆମର କେହି ସାହା ଭରସା ନାହିଁ କି ହାରିଗୁହାରି ନାହିଁ । କିନ୍ତୁ ଆମର ତ ଦୀର୍ଘ ଉଷ୍ଣ ନିଃଶ୍ୱାସ ଅଛି, ତାକୁ ତୁମେ ଆମଠାରୁ ଛଡ଼ାଇ ନେଇପାରିବ ନାହିଁ । ସେହି ନିଃଶ୍ୱାସ ବା ଅଭିସମ୍ପାତ ଯୋଗୁଁ ଆଜି ତୁମ୍ଭମାନଙ୍କର ଏ ଅବନତି, ତୁମ୍ଭମାନଙ୍କ ମଧ୍ୟରେ ଏ ଝଙ୍କାଝଙ୍କି, ଟଣାଟଣି, ବାଡ଼ିଆ ବାଡ଼େଇ ଲାଗିଅଛି ଓ ଲାଗିଥିବ । ଯେତେବେଳଯାକେ ତୁମ୍ଭେମାନେ ସ୍ତ୍ରୀ ଜାତିକୁ ଜନ୍ମ ଠାରୁ ମରଣ ପର୍ଯ୍ୟନ୍ତ ନାବାଳକ କରି ରଖିଥିବ ଓ ପୁରୁଷ ଜାତି ତାଙ୍କର ବଳାତ୍‌କାରିଆ (self-constituted) ମହାଫିସ୍ (Guardian) ଓ ଆସନ୍ନ ବନ୍ଧୁ (Next-friend) ହେବାର ସନନ୍ଦ (Certificate) ନିଜ ହାତରେ ଲେଖି ମୋହର ମାରି ନିଜେ ସେ କ୍ଷମତା ପରିଚାଳନ କରୁଥିବ, ସେହି ସ୍ତ୍ରୀ ଜାତିର ଅଭିଶାପରୁ ସେତେ ଦିନ ପର୍ଯ୍ୟନ୍ତ ପୁରୁଷ ଜାତିର କଦାପି ମଙ୍ଗଳ ହେବ ନାହିଁ । ତୁମ ଆଇନ ତୁମେ କରୁଛ, କିନ୍ତୁ ସ୍ତ୍ରୀ ଜାତିଙ୍କ ପାଇଁ ଆଇନ କରିବାର ଅଧିକାର ତାଙ୍କ ହାତରେ ଦେଉ ନାହିଁ । ଫଳକଥା ଏହି ତାହା ହେଉଛି ଯେ, ତୁମ୍ଭେମାନେ ଯେଉଁ ସ୍ୱାୟତ୍ତ-ଶାସନ (Representative form of Government) ପାଇଁ ହୁରି ଛାଡୁଛ, ସେ ଡାକଟା ସଂକୀର୍ଣ୍ଣ ସ୍ୱାର୍ଥାନ୍ଧତା ଦ୍ୱାରା ପ୍ରଣୋଦିତ । ତୁମ୍ଭେମାନେ ଜାଣୁଛ ଯେ, ସେ କୁହାଟଟା କେବଳ ଦାଣ୍ଡ ଲୋକଙ୍କ ପାଇଁ, ସଭ୍ୟ ପୁରୁଷ ଜଗତ୍ ପାଇଁ ଗୋଟିଏ ଡରାଣ ମାତ୍ର । ତୁମେ (ଅର୍ଥାତ୍ ପୁରୁଷ ଜାତି) ଯେବେ ସମଗ୍ର ସ୍ତ୍ରୀ ଜାତିଙ୍କର (ଯାହାଙ୍କ ସଂଖ୍ୟା ତୁମ୍ଭମାନଙ୍କ ସଂଖ୍ୟାରୁ ନ୍ୟୂନ ନୁହେଁ ବରଂଚ ଅନେକ ବେଶି) ମନଗଢ଼ା ସାର୍ଟିଫିକେଟ୍ ପ୍ରାପ୍ତ ମହାଫିସ୍ ଓ ଆମ କ୍ଷମତାପନ୍ନ କାର୍‌ପଟ୍‌ଦାର୍ ନ ହେବେ କାହିଁକି ? ତୁମେ ଯେ ଆମ ଉପରେ ଏତେ କ୍ଷମତା ଜାହେର କରୁଛ ଏଥିରେ ଗୂଢ଼ କାରଣ ଏହି ଯେ, ତୁମର ବଳ ଅଛି, ଆମର ବଳ ନାହିଁ, ତୁମର କଳ ଅଛି, ଆମକୁ କଳ କଦର ଆସେ ନାହିଁ, ତୁମର ହାଉଁଆ ପାଟି ଅଛି, ଆମର ତା ନାହିଁ । ବଳ-କଳ-କୌଶଳ ବେଶି ଥିବା ଯୋଗୁଁ ଯେବେ ତୁମେ ପୁରୁଷ ଜାତି ଆମ ସ୍ତ୍ରୀ ଜାତିକୁ ପରିଚାରିକା, ପଦସେବିକା, କ୍ରୀଡ଼ା ପୁତ୍ତଳିକା, ସନ୍ତାନୋତ୍ପାଦିକା, ପାକଶାଳିକା, ଅନ୍ତଃକାଳିକା, ବହିର୍ଦ୍ୱାରିକା କରି ରଖିପାରିଛ, ତୁମର ସେହି ଉଧାର ମାଣକ ପାଞ୍ଚପା' କରି ଅନ୍ୟ ପାରିଲାର ପୁଅମାନେ କାହିଁକି ନ ଶୁଝିବେ ? ତୁମ ଜାତିଠାରୁ ଯେଉଁ ଜାତିର କଳ, ବଳ, କୌଶଳ ଓ କରାମତି ବେଶି, ସେ କାହିଁକି ତୁମକୁ ପରିଚାରିକା, ଚରଣମଞ୍ଜାଳିକା, ତୈଳମର୍ଦ୍ଦିକା, ଇନ୍ଧନକର୍ତ୍ତିକା, ଜଳୋତ୍ତୋଳିକା (Howers of wood and drawyers of water), ଭାରବାହିକା କରି ନ ରଖିବେ ? ରଖିବା ମଧ୍ୟ ଉଚିତ ଓ ଉପଯୁକ୍ତ । ଯେବେ ତୁମ ଉପରେ ପ୍ରଭୁତ୍ୱ କରୁଥିବା, ଅତ୍ୟାଚାର କରୁଥିବା, ଅଧିକାର ଚଳାଉଥିବା, ଜାତିମାନେ 'ପାଶବ ବଳ' ଛାଡ଼ିବେ ତେବେ ତୁମେମାନେ ମଧ୍ୟ ତୁମ ସ୍ତ୍ରୀ ଜାତିଙ୍କ ପ୍ରତି ସେହି 'ପାଶବ ବଳର' ପ୍ରୟୋଗ ଛାଡ଼ ।

ପାଶ୍ଚାତ୍ୟ ସଭ୍ୟତାଲୋକିତ ଶ୍ୱେତାଙ୍ଗ ଜାତିମାନେ ବର୍ତ୍ତମାନ ଏ ଯେଉଁ କାଳୀ କରାଳୀ, ଚଣ୍ଡୀ-ଚାମୁଣ୍ଡା, ଜଗତ୍-ସଂହାରିଣୀ ଓ ସୃଷ୍ଟି ପ୍ରଳୟକାରିଣୀ ବହୁମୁଖଧାରିଣୀ ଅଶାନ୍ତି - ଯୁଦ୍ଧର ଅଶାନ୍ତି, ମୂଲିଆ ମହାଜନଙ୍କ (Capital and Labour) ମଧ୍ୟରେ ଧର୍ମଘଟଜନିତ ଅଶାନ୍ତି, ରାଜ୍ୟମାନଙ୍କରେ ବିଦ୍ରୋହଜନିତ ଅଶାନ୍ତି ଇତ୍ୟାଦି ଯାହାକି ଗତ ଛଅବର୍ଷ ହେଲା ଏ ସଭ୍ୟ ଜଗତକୁ ଘୋଟିଅଛି, ଦାଉରେ ତ୍ରାହି ତ୍ରାହି ବୋଲି ବୋବାଳି ଛାଡ଼ିଛନ୍ତି । ଏ ସବୁ ଦଣ୍ଡଭୋଗ ଅବଶ୍ୟମ୍ଭାବୀ । ମୁହଁରେ କହିବା ଯେ, "All men are born equal and free'- ଜନ୍ମତଃ ସବୁ ମନୁଷ୍ୟ ସମାନ, ସ୍ୱାଧୀନ, ଅର୍ଥାତ୍ ସବୁ ମନୁଷ୍ୟଙ୍କର ସବୁଠାରେ ସବୁ କଥାରେ ସମାନ ଅଧିକାର ଓ ସ୍ୱାଧୀନତା ଅଛି । କିନ୍ତୁ ଫଳତଃ, କାର୍ଯ୍ୟତଃ ଓ ଆଇନତଃ ଗୋରା ଓ କଳା ମନୁଷ୍ୟଙ୍କ ମଧ୍ୟରେ ଇଉରୋପବାସୀ ବା ଏସିଆବାସୀ ଜାତିଙ୍କ ମଧ୍ୟରେ ସାହେବ ଓ ନିଗ୍ରୋଙ୍କ ମଧ୍ୟରେ, ବିଜେତା ଓ ବିଜିତ ଜାତି ମଧ୍ୟରେ, ଧନୀ ଓ ଗରିବ ମଧ୍ୟରେ ଜମିନ୍ ଆସ୍ମାନ୍ ତଫାତ୍ ରଖି ଚଳୁଥିବା । ଯେଉଁ ସଭ୍ୟତା ଏହି ରୀତିରେ ଆପଣାର ମହତ୍ତ୍ୱ ଟେକି ରଖିଛି, ସେ ବଡ଼ପଣିଆ ଅଢ଼େଇଦିନିଆ, ସେ ଉନ୍ନତି ପହରିକିଆ ତାରା ଭଳିଆ । ସେ ସଭ୍ୟତାର ପତନ ହେବା, ଲାଞ୍ଛନା ହେବା, ଅନାଦର ହେବା ଅପ୍ରୀତି କରଣୀୟ ଓ ଅବଶ୍ୟମ୍ଭାବୀ । ତୁମେ ସଭ୍ୟ, ତୁମେ ବିଜ୍ଞାନାଲୋକପ୍ରାପ୍ତ, ତୁମେ ଶିକ୍ଷାଗ୍ରସ୍ତ । ତୁମ ହାତରେ ଖଣ୍ଡା, ତରବାରି, ବନ୍ଧୁକ, ମେସିନ୍‌ଗନ୍, କମାଣ, ବିଷାକ୍ତ ଗ୍ୟାସ୍, ବ୍ୟୋମଯାନ, ହାଓଆ ଗାଡ଼ି ଅଛି । ଘଡ଼ିକ ମଧ୍ୟରେ ବିଚାରିଲେ ଅସଭ୍ୟ, ନିରୀହ, ଅସହାୟ କାଲାଆଦ୍‌ମିଙ୍କୁ ଶହ ଶହ କରି ପଟାଳି କରି ଶୁଆଇ ଦେଇପାରିବ । କିନ୍ତୁ ସେ କାଲାଆଦ୍‌ମି ବିଚରାର ଦିହରେ ସିନା ବଳ ନାହିଁ, ତାର ଉଷ୍ଣ ନିଃଶ୍ୱାସ ଅଛି, ତା'ର 'ହାଇ' ଅଛି । ସେ ହାଇଟା ଈଶ୍ୱରଙ୍କ ଛାମୁରେ ନିଶ୍ଚେ ଦିନେ ପେସ୍ ହେଉଛି ଓ ସେହି ଅଭିଶାପ ଫଳରେ ଆଜି ସଭ୍ୟଜଗତ୍ ଏ ଅନେକ ଅବସ୍ଥା ଭୋଗ କରି "ସାତ ଚକଟା ପୋଳୁହ ଘଣ୍ଟା, ବିଭୂତିଭୂଷଣ ବାଲିସକଟା" ହୋଇଛି ବା ହୀନସ୍ତା କହିଲେ ସରୁ ନାହିଁ । ଯେତେଆଡ଼େ ଦେଖିବ, ଏହିପରି କୋଦିଣ୍ଡା ନିଶାପ, ଏହିପରି ଆଣ୍ଠୁଆଡୁଆ ବୁଝାମଣା, ଏହିପରି ଗୋପାଳପୁରିଆ ନ୍ୟାୟ, ଏହିପରି ଘର ସାହାବି ମାମଲତ । ସେହି ଜାଗାରେ ଈଶ୍ୱର ଦିନେ ହେଲେ ଗାଧା ଚଡ଼କ ପକାନ୍ତି, ସେହି ଜାତିକୁ ମା ହିଙ୍ଗୁଳାରେ ଧୂଆଁ ବାଣରେ ପୋତନ୍ତି । ମା ଜାଗୁଲେଇ ସେହିଠାରେ ଆଣି 'ଚନ୍ଦ୍ରବାତି' ପହଞ୍ଚାଇ ତା ବଂଶକୁ ପଦା କରନ୍ତି ଓ ଗାଁ ମୁଣ୍ଡ ପଡ଼ିଆରେ ଜଳଜଳା ହାଣ୍ଡିର ସଂଖ୍ୟା ବଢ଼ାଇ ଦିଅନ୍ତି । ପାଶ୍ଚାତ୍ୟ ସଭ୍ୟତାଭିମାନୀ ଅବ୍ ତକ୍ ଅପରାଜିତ, ଆଧୁନିକ ଶିକ୍ଷା ବିଗଳିତ ସଭ୍ୟ ଉନ୍ନତ ଜାତିମାନେ ବୁଝିପାରିଲେଣି ଯେ, ଏ ଖମ୍ଭ ଆଳୁ ବୁଝାମଣା ନ ଛାଡ଼ିବା ଯାକେ ଜଗତରେ ଶାନ୍ତି ନାହିଁ କି ଆଧୁନିକ ସଭ୍ୟତା କପାଳରେ ଭଲ ଗତି ନାହିଁ । ଶ୍ୱେତ-କୃଷ୍ଣ ପ୍ରଭେଦ, ବ୍ରାହ୍ମଣ-ଶୂଦ୍ର ପ୍ରଭେଦ, ପୁରୁଷ-ସ୍ତ୍ରୀ ପ୍ରଭେଦ, ବଳୁଆ-ନିର୍ବଳୁଆ ପ୍ରଭେଦ, ଯୋଦ୍ଧା-ନିକମ୍ମା ପ୍ରଭେଦ, ସତ୍ୟ-ଭୁରୁଡୁ ପ୍ରଭେଦ ଉପରେ ଯେଉଁ

ସଭ୍ୟତାର ବିଧାନମାନ ପ୍ରତିଷ୍ଠିତ ସେ ସଭ୍ୟତା କାଚର ଘର, ତାର ମୂଳଦୁଆଟା ଯାକ ଖାଲି ମୂଷା ଗଳା ଓ କଙ୍କଡ଼ା ଗାଡ଼ମୟ । ସେ ସଭ୍ୟତାର ଚାହିଁ ଚିକିଣିଆ ବଲୋରି ନାଚଖାନା ଦଣ୍ଡକାଏ ମଧରେ ଅସରାଏ କୁଆପଥର ବର୍ଷା ମାଡ଼ରେ ଚୂରମାର ହୋଇଯିବ, ଏଥିରେ ସନ୍ଦେହ ନାହିଁ । ଆଜି ଭାରତର ଓ ହିନ୍ଦୁ ଜାତିର ଏ ଦୁର୍ଦ୍ଦଶା କିଆଁ ? ଯେ ଆପଣା ଘର ମନୁଷ୍ୟଙ୍କୁ, ଆପଣା ଗୃହର ଦୈବ-ବିଧାତ୍ରୀଙ୍କୁ, ଆପଣା କୁଳପାବିନୀଙ୍କୁ, ଆପଣା ମାତୃଜାତିକୁ ତାଙ୍କ ନ୍ୟାଯ୍ୟ ଅଧିକାରରୁ ବଞ୍ଚିତ କରି ଆସିଅଛି, ସେ ଜାତି ବହିର୍ଜଗତ ଠାରୁ ଲାଞ୍ଛନା, ଯାତନା, ତାଡ଼ନା, ଅବମାନନା ଭୋଗ କରିବା ଅବଶ୍ୟମ୍ଭାବୀ ଓ ଭଗବାନ୍‌ଙ୍କ ଚକ୍ଷୁରେ ନ୍ୟାୟାନୁମୋଦିତ ପରପଦଦଳିତ, ପରପଦପିଷ୍ଟ, ପରପଦ ଲାଞ୍ଛିତ ନ ହେଲେ ସେ ଜାତିର ଆଖି ଫିଟିବ ନାହିଁ । ସେ ଜାତିର ଚରାଭୂଇଁ ବିବାକ ପୋଡ଼ି ଜଳି ନ ଗଲେ ସେଠାରେ ନୂଆ ଘାସ ଗଜା କଅଁଳିବ ନାହିଁ ।

ତାହା ପରେ ଦେଖ ଯେ ସ୍ତ୍ରୀ ଜାତିଙ୍କ ପାଇଁ ଦିନକୁ ଦିନ ତୁମେ ମଣିଷଗୁଡ଼ାକ ଯେଉଁ ଆଇନ୍ ସବୁ କରୁଛ, ଯେଉଁ ବିଧି ସବୁ ବାନ୍ଧୁଛ, ତାହା ସବୁ ଭାବିଲେ ତୁମ ବୁଦ୍ଧିର ଦଉଡ଼ି ଦେଖି ଆମକୁ ହସ ମାଡ଼େ । ମନେ ମନେ ବିଚାରୁ- ଏଗୁଡ଼ାକୁ ବୁଦ୍ଧିଆ ବୋଲି ଗର୍ବରେ ଇଡ଼ି ହୋଇ ଯାଉଛନ୍ତି, କିନ୍ତୁ ଏଗୁଡ଼ାକ ତୁଚ୍ଛା ବାତୁଳ । ଖାଲି ନିର୍ବୁଦ୍ଧିଆ ନିପଟ ଅନ୍ଧଗୁଡ଼ାଏ । ଏଠାରେ ଗୋଟିଏ ଉଦାହରଣ ଦେଲେ ବୁଝାଯିବ-

ଯେବେ ତୁମ୍ଭମାନଙ୍କ ଆଖି କାନ ଥିବ ଓ ଯେବେ ତୁମ୍ଭେମାନେ ହିନ୍ଦୁ ଶାସ୍ତ୍ର ପଢୁଥିବ, ତେବେ ଦେଖିପାରୁଥିବ ଯେ, ବେଦ ଆଦି ହିନ୍ଦୁ-ଧର୍ମଶାସ୍ତ୍ର ଅନୁସାରେ ବିଧବାର ପୁନର୍ବିବାହ ବ୍ୟବସ୍ଥା ଥିଲା, କିନ୍ତୁ ତୁମ୍ଭେମାନେ ନିୟମ କରିଦେଲ ଯେ, ବିଧବା ବିବାହ ଆମ ସମାଜରେ ଚଳିବ ନାହିଁ । ଏହିପରି ଦିନାକେତେ ଗଲା ବାହାରି । ତୁମରି ଭିତରୁ ପଞ୍ଚାଏ ବାହାରି ବାଳୁତ ବିଧବାଙ୍କ ଦୁଃଖରେ କାତର ହୋଇ ଲାଟସାହେବଙ୍କୁ ଧରାଧରି କରି ଆଇନ୍ (୧୮୫୬ ସାଲରେ ୧୫ ଆଇନ୍) କଲ ଯେ, ବିଧବାମାନେ ପୁନର୍ବିବାହ କରିବେ, କିନ୍ତୁ ସେଥିରେ ମଧ କେଁ ରଖିଲ- ବିଧବା ପୁନର୍ବିବାହ କଲେ ମୃତ ସ୍ୱାମୀଙ୍କ ସମ୍ପତ୍ତିରେ ଉତ୍ତରାଧିକାରିଣୀ ହୋଇପାରିବ ନାହିଁ, ଅକସ୍ମାତ୍ ଯେବେ କୌଣସି ବିଧବା ତାର ମୃତ ସ୍ୱାମୀଙ୍କ ସମ୍ପତ୍ତିରେ ଉଆରସ୍ ସୂତ୍ରେ ଉତ୍ତରାଧିକାରିଣୀ ହୋଇ ଉକ୍ତ ସଂପତ୍ତି ଭୋଗ କରୁଥିବ, ତେବେ ପୁନର୍ବିବାହ କରିବା ମାତ୍ରକେ ସେ ଉକ୍ତ ସମ୍ପତ୍ତିରୁ ନିଃସ୍ୱତ୍ୱବତୀ ଓ ବେଇଲାକାଦାର ହୋଇଯିବ । ଏମନ୍ତ କି, ପୁନର୍ବିବାହିତା ବିଧବା ମୃତ ସ୍ୱାମୀଙ୍କ ସମ୍ପତ୍ତିରୁ ଖୋରାକ ପୋଷାକ ସୁଦ୍ଧା ପାଇବାର ହକ୍‌ଦାର ହେବ ନାହିଁ । ଏ'ତ ଆମ ପାଇଁ ଆଇନ୍, ତୁମ ପାଇଁ ପୃଥକ୍ ଆଇନ୍ । ତୁମେ ଯେ କେବଳ ଏକାଧିକ ପତ୍ନୀ ବିବାହ କରିପାରିବ ତାହା ନୁହେଁ, ମୃତଦାର ଓ ଜୀବିତଦାର ସ୍ୱାମୀ କେବଳ ଆପଣା ଜାତିରୁ ନୁହେଁ, ଭିନ୍ନ ଭିନ୍ନ ଜାତିରୁ ବାଛି ବାଛି ଏକାଧିକ କନ୍ୟା ବିବାହ କରିପାରିବେ । ଘୋଡ଼ାଚଢ଼ା ସଉକୀ ଲୋକ, ଯେପରି ଧଳା ଘୋଡ଼ା, କଳା ଘୋଡ଼ା, ନାଲି ଘୋଡ଼ା, ସବୁଜ ଘୋଡ଼ା, ପଞ୍ଚୁ

କଲ୍ୟାଣି ଘୋଡ଼ା ପାଳିପାରେ, ସେହିପରି ସଉକୀ ପୁରୁଷପୁଅମାନେ ଚାରି ଜାତିରୁ ଚାରି ଚଉ ଷୋହଳ କନ୍ୟା ବିବାହ କରିପାରିବେ । ହଉରେ ବାପା ! ତୁମ ହାତରେ ଲେଖନ, ତାଳପତ୍ର ଅଛି, କାଗଜ କଲମ ଅଛି, ଖଣ୍ଡା ତରବାରି ଅଛି, ଠେଙ୍ଗାବାଡ଼ି ଅଛି, ତୁମେ ଯାହା ବିଳିବିଳେଇବ ଆମର ସେହି ହେଲା ବେଦବାକ୍ୟ । କଣ କରିବୁଁ ? ଆମର ଚାରା ନାହିଁ । ତୁମ୍ଭେମାନେ, ସ୍ତ୍ରୀ ଜାତିଙ୍କ ପାଇଁ ଯେଉଁ ଆଇନ କରି ଯାଉଅଛ, ଆମେ ସେହି ମୁତାବକ ଚଳି ଆସୁଅଛୁଁ । ଆମେ ପରପୁରୁଷକୁ ଚାହିଁଦେବା ମାତ୍ରେ 'କୁଳଟା' ହୋଇଯିବୁ କିନ୍ତୁ ତୁମେ ମନଇଚ୍ଛା ମୁତାବକ ଦଶଥର ହାତରେ ବାଡୁଅସୂତା ବାନ୍ଧିଲେ ତୁମ୍ଭେମାନେ ହେବ କୁଳପାବକ ସୁପୁତ୍ର । ତୁମରି ଆଇନ୍ ଡାକିଲା ଯେ, ବିଧବାର ଚରିତ୍ର ଦୋଷ ଘଟିଲେ ଅର୍ଥାତ୍ ବିଧବା ଅସତୀ ହେଲେ ମୃତ ସ୍ୱାମୀଙ୍କ ସମ୍ପତ୍ତିରେ ଉତ୍ତରାଧିକାରିଣୀ ହୋଇପାରିବ ନାହିଁ କିମ୍ବା ଖୋରାକ ପୋଷାକ ପାଇପାରିବ ନାହିଁ, କିନ୍ତୁ ମୃତ ସ୍ୱାମୀଙ୍କ ସମ୍ପତ୍ତିର ଉତ୍ତରାଧିକାର ସୂତ୍ରରେ ଯେବେ ବିଧବା ଥରେ ମାଲିକ ଓ ଦଖଲଦାର ହୋଇସାରି ପରେ ତାହାର ଚରିତ୍ର ଦୋଷ ଘଟିବ, ତେବେ ବିଧବା ଉତ୍ତରାଧିକାର ସୂତ୍ରରେ ପାଇସାରିଥିବା ସମ୍ପତ୍ତିରୁ ନିଃସ୍ୱତ୍ୱବତୀ ହେବ ନାହିଁ । ଅର୍ଥାତ୍ ମୃତ ସ୍ୱାମୀଙ୍କ ସମ୍ପତ୍ତିରେ ମାଲିକ ହୋଇ ମୃତ ସ୍ୱାମୀଙ୍କ ଗାଦି ମାଡ଼ିବସିବା ପୂର୍ବରୁ ଯେଣୁ ଜଣାଯାଏ ଯେ, ବିଧବା ଅସତୀ, ତେବେ ତା ନାମ ତିନି ପାଞ୍ଜିରୁ ପୋଛା ହେବ । ସ୍ୱାମୀଙ୍କ ଗାଦିମାଡ଼ି ବସି ସାରିଲା ଉତ୍ତାରେ ସେ ପୁନର୍ବିବାହ କଲେ ସ୍ୱାମୀ ସମ୍ପତ୍ତିରୁ ବଞ୍ଚିତ ହେବ, କିନ୍ତୁ ସ୍ୱାମୀ ସମ୍ପତ୍ତିରେ ଥରେ ମାଲିକ ହୋଇସାରି ଯେବେ ବିଧବାର ଚରିତ୍ର ନଷ୍ଟ ହୁଏ, ତେବେ ସେ ପାଇଥିବା ସ୍ୱାମୀ ସମ୍ପତ୍ତି ପୂର୍ବ ପରି ଅବାଧରେ ଭୋଗ କରିବ । ଏ ବିଷୟରେ ଜଣେ ବିଚକ୍ଷଣ ବାରିଷ୍ଟର ଇଂରାଜୀରେ ଏହିପରି ମତ ଲେଖି ଦେଇ ଅଛନ୍ତି- 'An unchaste widow cannot inherit the property of her deceased husband but a widow inheriting the Estate of her deceased husband does not lose it by subsequent unchastity.' ଏ ସବୁ ମାଇପି-ସ୍ୱପନ ନୁହେଁ । ଏ ସବୁ ତୁମ ଆଇନ ଓ ଶାସ୍ତ୍ରଦର୍ଶୀ ବିଚାର ଅଦାଲତ । ଉଚ୍ଚତମ ଧର୍ମାଧିକରଣମାନ ଗାର କାଟି ନିଜର ବହିରେ ଲେଖି ପରପୁରୁଷଙ୍କ ଅବଗତି ନିମନ୍ତେ ସାଇତି ଦେଇ ଯାଉଅଛନ୍ତି । ଆଚ୍ଛା, ମୁଁ ଭଲା ପଚାରୁଅଛି, ଯାହାଙ୍କର ଆଖି ଥାଏ, ସେ ଏପରି ବ୍ୟବସ୍ଥା କରନ୍ତି ଟି ? ମନୁଷ୍ୟ ସମାଜରେ ବିବାହ ପ୍ରଥାଟା ଗୋଟିଏ ପ୍ରଧାନ ପାରମାର୍ଥିକ ଓ ସାମାଜିକ ବନ୍ଧନ । ବିବାହ ଆଦିମ ଉଚ୍ଛୃଙ୍ଖଳ ସାମ୍ରାଜ୍ୟକୁ ନିୟମାଧୀନ ଓ ସଂଯତ କରିବାକୁ ବହୁ ପରିମାଣରେ ସମର୍ଥ ହୋଇଅଛି । ବିବାହ-ବିରହିତ ସମାଜରେ ପରିଲକ୍ଷିତ ନାନାପ୍ରକାର ଅନିଷ୍ଟ ଓ ଦୁର୍ଗତି ଓ ବ୍ୟଭିଚାର ନିବାରଣ କରିବା ଉଦ୍ଦେଶ୍ୟରେ ବିବାହ ବିଧାନ ସଂସ୍କାରରେ ଓ ସମାଜରେ ପ୍ରବର୍ତ୍ତିତ ହୋଇଅଛି । ଯେଉଁମାନେ ବିଧବା ବିବାହ ବିଧି ବ୍ୟବସ୍ଥା କରିବେ ସେମାନେ ଦେଖିଲେ ଯେ, ବିଧବାମାନଙ୍କର ପୁନର୍ବିବାହ ନିଷେଧ ଥିବାରୁ ସମାଜରେ

ଅନେକ କଳଙ୍କ ଓ ଗୁପ୍ତପାପ ଘଟୁଅଛି । ସମାଜକୁ ଏଥିରୁ ରକ୍ଷା କରିବାକୁ ହେଲେ ବିଧବା ଓ ବିଶେଷତଃ ବାଲ୍ୟ ବିଧବାମାନଙ୍କ ନିମନ୍ତେ ପୁନର୍ବିବାହର ବ୍ୟବସ୍ଥା ହେବା ଆବଶ୍ୟକ । କିନ୍ତୁ ଏ (ହିନ୍ଦୁ ବିଧବା ପୁନର୍ବିବାହ) ଆଇନଟି କରିବା ଦ୍ୱାରା ବିଧବାମାନଙ୍କର ପୁନର୍ବିବାହର ପଥ ସୁଗମ କଲ କି ବ୍ୟଭିଚାରର ବାଟ ସଫା କଲ, ତାହା ଭଲା ଥରେ ତୁମେମାନେ ଭାବି ଦେଖ । ଏହାର ଫଳରେ ସାଧାରଣ ମନୁଷ୍ୟ ପ୍ରକୃତି ବିଧବାମାନଙ୍କୁ କେଉଁ ବାଟକୁ ଟାଣିବ, ତାହା ତୁମ୍ଭେ ପୁରୁଷମାନେ ଟିକିଏ ଚିନ୍ତାକଲେ ଠିକଣା କରିପାରନ୍ତ ଓ ଦେଖିପାରନ୍ତ ଯେ, ଆବହମାନ କାଳରୁ ସ୍ତ୍ରୀ ଜାତି ଉପରେ ତୁମ୍ଭେମାନେ ଯେଉଁ କୋଦିଣ୍ଡା ନିଶାପ ଜାହିର କରି କରି ଆପଣା ପ୍ରଭୁତ୍ୱ ଓ ପାଣ୍ଡିତ୍ୟ ବିସ୍ତାର କରି ଆସୁଅଛ, ସ୍ତ୍ରୀ ଜାତିର ସେହି ଉଷ୍ଣ ନିଃଶ୍ୱାସର କରାମତିରୁ ଆଜି ଆଖି ଥାଇ ତୁମ୍ଭେମାନେ ଅନ୍ଧ ବନି ଯାଉଅଛ । ପର ପାଇଁ ମୁରବି ବନିଲେ ଏହିଟା ହୁଏରେ ବାବା ।

ଉତ୍କଳ ସାହିତ୍ୟ/୨୫ଶ ଭାଗ/୧ମ ସଂଖ୍ୟା/ବୈଶାଖ/୧୩୨୮ ସାଲ ।

## ।। ଦ୍ୱିତୀୟ ପୁଡ଼ା ।।

ଭାଇ ଓ ବାପାମାନେ - ! ତୁମ ଶାସ୍ତ୍ର ଓ ପୋଥିରେ ଆମ ମାଇପି ଜାତିକୁ ଖୁବ୍ ଉଚ୍ଚ ଆସନ ଦେବାକୁ ତୁମ୍ଭେମାନେ କୁଣ୍ଠିତ ନୁହଁ, କିନ୍ତୁ ଫଳତଃ ଆମ ଜାତିଟାକୁ ତୁମେ ଅଇଁଠାଖିଆ କୁତୀଙ୍କ ଠାରୁ ଆହୁରି ବେହାଲ କରି ରଖିଛ ।

ଆମ ଜାତିଆ ଲକ୍ଷ୍ମୀ ଠାକୁରାଣୀଙ୍କୁ ଧନର ଅଧିଷ୍ଠାତ୍ରୀ ଦେବୀ, ସରସ୍ୱତୀଙ୍କୁ ବିଦ୍ୟାର ଅଧିଷ୍ଠାତ୍ରୀ ଦେବୀ, ଜଗଦ୍ଧାତ୍ରୀଙ୍କୁ ଖାଦ୍ୟର ଦେବୀ, ଦୁର୍ଗାଙ୍କୁ ଦୁଷ୍ଟ ସଂହାରିଣୀ, ଶକ୍ତିଙ୍କୁ ବଳର ଅଧିଷ୍ଠାତ୍ରୀ ଦେବୀ, କାଳୀଙ୍କୁ ପ୍ରଳୟର ଅଧିଷ୍ଠାତ୍ରୀ ଦେବୀ ରୂପେ ପୋଥିରେ ଲେଖିବାରେ ତୁମର କୁଣ୍ଠେଇ ନାହଁ, କିନ୍ତୁ ଫଳତଃ ତୁମ ସମାଜରେ ଆମ ଜାତିର ଆସନ କେଉଁଠାରେ ପାଇଅଛ, ଭଲା ଥରେ ଭାବିଲ ? ଏହି କପଟାଚାର ଯୋଗୁଁ ଆଜି ପୁରୁଷ ଜାତିର ଏ ଅବନତି ଘଟି ନାହିଁ କି ? ସଂସାରରୁ, ତୁମ ଘରକରଣାରୁ, ତୁମ ସ୍ୱର୍ଗରୁ ସ୍ତ୍ରୀ ଜାତିଙ୍କୁ ବାଦ ଦେଲେ ତୁମର ଆଉ ବାକି ରହିବ କ'ଣ ? ପୋଥିରେ ଆମକୁ କଲ ଜଗତର 'ସୃଷ୍ଟି ସ୍ଥିତି ପ୍ରଳୟକାରିଣୀ' (ସୃଷ୍ଟିରେ ଆଦ୍ୟଶକ୍ତି, ସ୍ଥିତିରେ ଜଗଦ୍ଧାତ୍ରୀ, ପ୍ରଳୟରେ କାଳୀ କରାଳୀ ଶକ୍ତି) କିନ୍ତୁ ଅଭିଧାନରେ ଲେଖିଲ ଆମ ଜାତିଟା 'ଅବଳା' । ଆମ ଜାତିକୁ 'ଅବଳା' କଲା କିଏ ? ମୂର୍ଖ କଲା କିଏ ? କଳିହୁଡ଼ୀ କଲା କିଏ ? ପରଦା ଭିତରେ ପୂରେଇଲା କିଏ ? କ୍ରୀଡ଼ା-ପୁତ୍ତଳିକା କଲା କିଏ ? ଆମକୁ ନିକମ୍ମା କରିସାରି ପଛକୁ ପାଠ ଲେଖିଲ - 'ସ୍ତ୍ରୀ ଜାତିକୁ ବିଶ୍ୱାସ ନାହିଁ, ଅବଳା ପ୍ରବଳା ହେଲେ ସଂସାର ବୁଡିଯିବ' ଇତ୍ୟାଦି, ଇତ୍ୟାଦି । ଏହି ସବୁ ବୁଝାମଣା ଦୋଷରୁ ଆମ ଜାତି ତୁମର କୁଳପାବିନୀ ନ ହୋଇ କୁଳକଳଙ୍କିନୀ ହେଲୁଁ । କିନ୍ତୁ ଦରକାର ପଡ଼ିଲାବେଳେ

ଅଣ୍ଡିରିପୁଅଯାକ ଆମରି ଗୋଡ଼କୁ ଆଉଁଶି ଘଷି ପକାଅ । ପୁରୁଷ ଜାତି ପାଇଁ ତୁମେମାନେ ଯେତେ ସୁବିଧା ଓ ସୁଯୋଗ ଓ ଅବସର କରି ଦେଇଛ, ଆମ ଜାତିକୁ ସେ ସବୁ କରିଦିଅ । ଆମ ଜାତିକୁ ପୁରୁଷ ଜାତିଙ୍କ ସମାନ ଶିକ୍ଷା, ଅଧିକାର, କ୍ଷମତା ଓ କାର୍ଯ୍ୟକ୍ଷେତ୍ର ଦିଅ । ଫଳତଃ ଯେବେ ଆମ୍ଭେ ତୁମ ସଙ୍ଗରେ ପାଦ ନ ପକାଇ ପାରିବୁଁ, ତେବେ ଆମ୍ଭମାନଙ୍କୁ ନିକମ୍ମା ବୋଲି ସାର୍ଟିଫିକେଟ୍ ଦିଅ, ସେଥିରେ ଆମର ଆପତ୍ତି ନାହିଁ ।

ପୁରୁଷ ହତ୍ୟା ଠାରୁ ସ୍ତ୍ରୀ ହତ୍ୟା ଗୁରୁତର ପାପ ବୋଲି ଶାସ୍ତ୍ରରେ ବଖାଣୁଛ, କିନ୍ତୁ ଫଳତଃ ସ୍ତ୍ରୀ ଜାତିକୁ ପୁରୁଷ ଜାତି ଅପେକ୍ଷା କେତେ ବେଶି ପରିମାଣରେ ନିର୍ଯାତନା ଦେଉଅଛ ତାହା ଅଳ୍ପ ବହୁତ ସମସ୍ତେ ଅନୁଭବରେ ଆଣୁଥିବ ।

ଯେବେ ସ୍ୱାଧୀନ ହେବାକୁ ଚାହଁ, ଯେବେ ସ୍ୱରାଜ ପାଇବାକୁ ଆକାଙ୍କ୍ଷା କର, ତେବେ ପହିଲେ ଆପଣା ଖଞ୍ଜାରେ ଭିତର ଅଗଣାଟିମାନ ଆପଣା ହାଣ୍ଡିଶାଳ କଣଟିମାନ, ଆପଣା ବାଡ଼ିଆଡ଼ ଝାଟୁଆ ଗଦାଟିମାନ ପରିଷ୍କାର କର । ଏହା ନ କରି ସ୍ୱାୟତ୍ତ ଶାସନ ପାଇବା ପାଇଁ ତୁମେ ଯୁଗଯୁଗାନ୍ତର ହୁରି ପକାଇଲେ ତୁମ ଡାକ କେହି ଶୁଣିବେ ନାହିଁ ଓ ଈଶ୍ୱର ତୁମମାନଙ୍କ ପ୍ରତି ପ୍ରସନ୍ନ ହେବେ ନାହିଁ ।

ତୁମ ପୁରୁଷ ଜାତି ବୀର ଜାତି ବୋଲି ଗର୍ବରେ ଫାଟି ପଡୁଥାଅ, କିନ୍ତୁ ଆମ ଜାତିର ଶତକଡ଼ା ୯୯ ଜଣ 'ଅବଳା' ତୁମମାନଙ୍କ କୁଳରକ୍ଷା ଉଦ୍ଦେଶ୍ୟରେ ଗର୍ଭଧାରଣ କଷ୍ଟ ଓ ପ୍ରସବ କଷ୍ଟକୁ ଯେଉଁ ବୀରତା ସହିତ ସହନ୍ତି, ତାହା ଯୁଦ୍ଧକ୍ଷେତ୍ରରେ ବୀରତା ଠାରୁ ଅନେକ ପରିମାଣରେ ମହତ୍ତର, ଥରେ ଦୃଢ଼ ଭାବରେ ଭାବିଲେ ତୁମେମାନେ ଏକଥା ଠଉରାଇ ପାରନ୍ତ । ତୁମମାନଙ୍କୁ ସୁଖ ଦେବା ଲାଗି, ତୁମମାନଙ୍କର କୁଳରକ୍ଷା କରିବା ଲାଗି ଆମେମାନେ ଦିବାନିଶି କେତେ ଧୈର୍ଯ୍ୟ, କେତେ ଶୌର୍ଯ୍ୟ, କେତେ ସ୍ୱାର୍ଥତ୍ୟାଗ, କେତେ ଦୁଃଖ ସହନଶୀଳତା ଦେଖାଉଁ, ତୁମ୍ଭେମାନେ ତହିଁରୁ ଜାଣିଚାଏ ମାତ୍ର କରନ୍ତ କି ? ତୁମମାନଙ୍କ ଲାଗି ଆମେ ଜୀବନକୁ ତୁଚ୍ଛ ମଣୁ । ମୃତ୍ୟୁକୁ ମହାପ୍ରେମରେ ଆଲିଙ୍ଗନ କରୁ, ମାନସିକ ଦୁଃଖ ଓ ଶାରୀରିକ କଷ୍ଟକୁ କଷ୍ଟ ବୋଲି ଜ୍ଞାନ କରୁ ନାହିଁ । ଏହି ସ୍ୱାର୍ଥ ତ୍ୟାଗକୁ ଯେବେ ତୁମେମାନେ କୃତଜ୍ଞ ହୃଦୟରେ ପ୍ରଣିଧାନ କରନ୍ତ, ତେବେ ଆମ୍ଭମାନଙ୍କ ଜୀବନକୁ କଷ୍ଟ, କଳଙ୍କ ଓ ଦୁଃଖରେ ଜର୍ଜରିତ ନ କରି ଆମମାନଙ୍କୁ ମନୁଷ୍ୟସ୍ୱରୂପ ଗଣନା କରି ଆମମାନଙ୍କର ନ୍ୟାଯ୍ୟ ପ୍ରାପ୍ୟରୁ ବଞ୍ଚିତ କରନ୍ତ ନାହିଁ । କିନ୍ତୁ ତୁମମାନଙ୍କର ବହୁ ପୁରୁଷାନୁଗତ, ରକ୍ତଗତ, ସମାଜଗତ, ଶିକ୍ଷାଗତ, ସ୍ତ୍ରୀ ଅବହେଳାର ରୂପମୋହ ଶତକଡ଼ା କେତେ ଜଣ ପୁରୁଷଙ୍କୁ ସ୍ପର୍ଶ କରି ନାହିଁ ? ତୁମମାନଙ୍କ ରକ୍ତରେ ଏହି ସ୍ତ୍ରୀ ଘୃଣାଭାବ ଏତେଦୂର ଜଡ଼ି ଯାଇଅଛି ଯେ, ଦୁଇ ଜଣ ପୁରୁଷ ଜାତୀୟ ଜୀବଙ୍କ ମଧ୍ୟରେ କୌଣସି କାରଣରୁ କଳିକଜିଆ ଲାଗିଲେ ସର୍ବାଦୌ ତୁମେ ପରସ୍ପରଙ୍କ ସମ୍ପର୍କୀୟା ସ୍ତ୍ରୀମାନଙ୍କ ନାମ (ମାତା, ଭଗିନୀ, ସ୍ତ୍ରୀ ଓ କନ୍ୟା) ଧରି ଗାଳି ଦିଆଦେଇ ହୁଅ । ଦୁଇ ଜଣ ପୁରୁଷ ତ ଦୋଷ କଲେ, ସେଥିରେ ବିରୋଧୀ ପକ୍ଷମାନଙ୍କର ନିରୀହ ମାତା, ଭଗିନୀ, ସ୍ତ୍ରୀ,

କନ୍ୟାମାନଙ୍କୁ ଶ୍ରାଦ୍ଧ କରାଗଲା କାହିଁକି ? ଧନ୍ୟ ତୁମମାନଙ୍କର ବିଚାରତା, ଧନ୍ୟ ତୁମମାନଙ୍କର ବିବେଚନା ।

ଉଭୟ ପକ୍ଷ ଲକ୍ଷ ଲକ୍ଷ ପାପାଚାର, କପଟାଚାର କରିଅଛ । ତୁମ ଦିହରେ ଲୋମ ଯେତେ, ଜଣ ଜଣକର ପାପ ସେତେ । ସେଗୁଡ଼ିକ କେହି ଉଘା ଉଘି ହେବ ନାହିଁ । କିଛି କଳିକଜିଆ ଲାଗିଲେ ଉଭୟଙ୍କ ସ୍ତ୍ରୀ ମହଲ ପ୍ରତି ଝୁଙ୍କ ଉଠେ । କଳି ଲାଗିଲା ତୁମ ଦୁହିଁଙ୍କ ଭିତରେ, କିନ୍ତୁ ଇଜ୍ଜତ ନେଲ ଆମ ଜାତିର ନିରୀହ ପ୍ରାଣୀଙ୍କର । ଆମ ତରଫରେ କେହି ପଦେ କହିବାକୁ ନାହିଁ ବୋଲି ତୁମ ମୁହଁରେ ସିନା ବାଡ଼ବତା ରହିବାକୁ ନାହିଁ । ତୁମମାନଙ୍କ ଘରଯାକ ବୁଲି ଦେଖିଲା ବେଳକୁ ସହସ୍ର ସହସ୍ର ଜଳା ଖାଲି ଆଖିକୁ ଦିଶୁଛି, କିନ୍ତୁ ସେ ସହସ୍ର ଜଳା ଆଡ଼କୁ ତୁମ ଆଖି କିମ୍ବା ପାଟି ଯାଏ ନାହିଁ । ଘର କଣରେ, ସ୍ତ୍ରୀ ମହଲରେ ଅନ୍ତଃପୁରରେ ଏତେ ଟିକିଏ ଛିଦ୍ର ହେଲେ ତାକୁ ଉଖୁରେଇ କରି ବଡ଼ ବଡ଼ କରିବାକୁ ତୁମମାନଙ୍କୁ ଲାଜ ମାଡ଼େ ନାହିଁ । ଆମେ ଢଗ ବୋଲୁଁ ଯେ, ''ଲୁହା ଲାଗି ଅଗ୍ନି ଦେବତା ମାଡ଼ ଖା'ନ୍ତି''- ତୁମ ସମାଜରେ ଆମ ସ୍ତ୍ରୀ ଜାତିଙ୍କ ଘଟଣା ସେହିତା- ଦୋଷ କରିବ ମରଦ ପୁଏ, ମାଡ଼ ଗାଳି ଖାଇବେ ମାଇକିନିଆ ଝିଅ । ଏ ଆଣ୍ଟୁଆଡୁଆ ବୁଝାମଣା ନୁହେଁ ଆଉ କ'ଣ ? ତୁମ ଭିତରୁ ଯେଉଁ ଲୁଚାକ ସମାଜ ସଂସ୍କାରକ ଓ ରାଜ୍ୟ ସଂସ୍କାରକ ବାହାରି ପଡୁଛ, ସେମାନେ ହୁରି ପକାଉଛ ଯେ, ଛୁଆଁ ଅଛୁଆଁ ଜାତି ପ୍ରଭେଦ ଉଠିଯାଉ, ଶ୍ୱେତାଙ୍ଗ କୃଷ୍ଣାଙ୍ଗ ପ୍ରଭେଦ ଉଠିଯାଉ, ଉଚ୍ଚ ନୀଚ ପ୍ରଭେଦ ଉଠିଯାଉ, ଧନୀ ଓ ମୂଲିଆ ପ୍ରଭେଦ ଉଠିଯାଉ । କିନ୍ତୁ ଏ ଯେଉଁ ପୁଂଲିଙ୍ଗ ସ୍ତ୍ରୀଲିଙ୍ଗ ପ୍ରଭେଦ ଆବହମାନ କାଳରୁ ତୁମରି ମଜ୍ଜାଗତ ହୋଇଆସିଛି, ତାକୁ କେତେ ଜଣ ଉଠାଇବା ସକାଶେ ରଡ଼ି ଛାଡୁଛ ଓ ଅଣ୍ଟା ଭିଡୁଛ ? ଯେତେ ଜଣ ଏ ସମ୍ବନ୍ଧରେ ବକ୍ତୃତା ଲେଖା ଦ୍ୱାରା ବୋବାଳି ପକାଉଛ, ତହିଁ ମଧ୍ୟରୁ କେତେ ଜଣ କହିବା କଥା ଅନୁସାରେ କାର୍ଯ୍ୟ କରୁଛ ? ବର୍ତ୍ତମାନ ସ୍ତ୍ରୀ ଜାତି ପୁରୁଷ ଜାତିଙ୍କର ଉନ୍ନତିରେ ଶାନ୍ତିରେ ଯେ ଅନ୍ତରାୟ ହୋଇଅଛନ୍ତି , କାହା ଦୋଷ ? ସଂସାରରେ ଯେବେ ଧର୍ମର ରାଜ୍ୟ ପ୍ରତିଷ୍ଠା କରିବାକୁ ଆନ୍ତରିକ ଇଚ୍ଛା କରୁଛ, ତେବେ ପ୍ରଥମେ ଆପଣା ଘରେ, ଆପଣା ସମାଜରେ, ଆପଣା ରାଜ୍ୟରେ ଆବହମାନ କାଳରୁ ପୁରୁଷ ପଦ ଦଳିତା, ପୁରୁଷ କର ପ୍ରପୀଡ଼ିତା, ପୁରୁଷାଧିକାର ଦ୍ୱାରା ନିଷ୍ପେଷିତା, ପୁରୁଷ ଦଣ୍ଡ ଲାଞ୍ଛିତା, ସ୍ତ୍ରୀ ଜାତିକୁ ପୁରୁଷ ସଙ୍ଗେ ନ୍ୟାୟାନୁମତ ସମାନ ଅଧିକାର ଦିଅ ଓ ସମାନ ମର୍ଯ୍ୟାଦା ଦେଖାଅ, ସମାନ ଶିକ୍ଷା ଦୀକ୍ଷା ଦିଅ, ତେବେ ଯାଇଁ ତୁମେମାନେ ବହିଃଶତ୍ରୁକୁ ଜବଦ୍ କରି ସ୍ୱରାଜ୍ୟ ସ୍ଥାପନ କରିବାକୁ ସମର୍ଥ ହେବ ।

ତୁମର ସ୍ୱାୟତ୍ତ-ଶାସନ, ସ୍ୱରାଜ୍ୟପ୍ରାପ୍ତି, ସ୍ୱାଧିକାର ପ୍ରତିଷ୍ଠା ଢୁଆ ଓ ବୋଲିଗୁଡ଼ାକ ଶୁଣିଲା ବେଳେ ଆମେ ମାଇପେଯାକ ମନେ ମନେ ହସୁଁ ଓ କହୁଁ ଯେ, ''ବୁଦ୍ଧି ନ ଆସେ

ଘରକୁ, ବଟେଇ ଦିଏ ପରକୁ । ଆମେ ଖଟ, ପଲଙ୍କ, ଦୁଗ୍ଧଫେନନିଭ ଶଯ୍ୟା, ଫୁଲରି ତେଲ, ଢାକାଇ ଶାଢ଼ି, ଜରି ବୁଟାଦାର ବନାରସୀ ଓଢ଼ଣା, ପତଳା ସିଲ୍‌କର ସେମିଜ, ସୁନା, ରୁପା ଜଡ଼ଉ ଅଳଙ୍କାର, ଏସେନ୍‌ସ, ସାବୁନ୍, ଚିରୁଣୀ, ଆରାମ୍ ଚଉକି, ଗଦି ଏ ସବୁ ସବୁଦିନିଆ ଚିଜ ଲୋଡୁ ନାହୁଁ । ଆମେ ଚାହୁଁଛୁ ଯେ ତୁମରି ଭଳି ମୋଟା ପିନ୍ଧିବୁ ଓ ମୋଟା ଖାଇବୁ ଓ ମୁଣ୍ଡଝୋଳ ଗୋଡ଼ରେ ମାରିବୁ । କିନ୍ତୁ ତୁମରି ଭଳି ଆମକୁ ପୂରା ଅଧିକାର ଓ ମର୍ଯ୍ୟାଦା, ଶିକ୍ଷା ଓ ସୁଯୋଗ ଦିଅ । ଆମର ବୋଝକୁ ତୁମେ ମୁଣ୍ଡାଇବାର ଦରକାର ନାହିଁ କି ଆମକୁ ଟାଟିକିଲା ମାଡ଼ ଦରକାର ନାହିଁ । ତୁମ ନ୍ୟାଯ୍ୟ ପରିଶ୍ରମ ତୁମେ କର, ଆମ ନ୍ୟାଯ୍ୟ ମେହନତ ଆମେ କରୁଁ । କାମ ଦେଖି ମଜୁରି ଦିଅ, କାମ ପରୀକ୍ଷା କରି ତୁମେ ବେଶି କାମ କଲେ ଦୁଇଅଣା ମୂଲ ନିଅ, ଆମର କାମ ଅଳ୍ପ ହେଲେ ଆମକୁ ଅଣାଏ ଦିଅ । ଆମେ ଉଁ ଚୁଁ ହେବୁ ନାହିଁ । ଆମର ଅଣ୍ଟା ପିଠିରେ ବଳ ହେଲେ ଆମେ ତୁମର ସାଙ୍ଗସରିସା ହେବୁ । ନଇଲେ ବଳେ ବଳେ ଆମେ ହଟି କରି ରହିବୁଁ । ଏହା ନ କରି ଆମକୁ ପାଣି ଭିତରକୁ ନ ନେଇ ପୋଖରୀ ହୁଡ଼ାରେ ଠିଆ ହୋଇ ଆମର ମୁରବି ବନୁଅଛ ଯେ, ''ଏ ମାଇପି ଜନ୍ତୁଲୁଚାକ ପହଁରି ଜାଣନ୍ତି ନାହିଁ । ୟାଙ୍କୁ ପାଣିରେ ଛାଡ଼ିଦେଲେ ଏ ପଞ୍ଝାକ ବୁଡ଼ି ମରିବେ ହୋ । ଅତଏବ ୟାଙ୍କୁ ପାଣିକୁ ଛାଡ଼ନା,'' ସାହେବମାନେ ତୁମ୍ଭମାନଙ୍କୁ ଲକ୍ଷ୍ୟ କରି କହନ୍ତି ଯେ, ''ଭାରତବାସୀମାନେ ସ୍ୱାୟତ୍ତ-ଶାସନ ପାଇବାର ଉପଯୁକ୍ତ ହୋଇ ନାହାନ୍ତି, ଅତଏବ ଏମାନଙ୍କୁ ସ୍ୱାୟତ୍ତ-ଶାସନ କ୍ଷମତା ଦେଲେ ଏମାନେ ବୁଡ଼ି ମରିବେ,'' ଏଥିର ଉତ୍ତରରେ ତୁମେମାନେ କହୁଛ, ''ଆରେ ! ଆମକୁ ତ ନେଇ ପାଣିରେ ଛାଡ଼ିଲେ ନାହିଁ, ଆମେ ପହଁରି ପାରିବୁଁ କି ବୁଡ଼ି ମରିବୁଁ ଏହା ତୁମେ ସାହେବଗୁଡ଼ାକ କେଉଁ ଦିବ୍ୟଚକ୍ଷୁରେ ଦେଖିପାରୁଛ ? ଆମକୁ ପୋଖରୀକୁ ନେଇ ପାଣିରେ ଛାଡ଼ିଦିଅ । ଆମେ ପହଁରିପାରିଲେ ପାରି ହୋଇଯିବୁ, ପହଁରି ନ ଆସିଲେ ବୁଡ଼ି ମରିବୁ ।'' ଯେଉଁମାନେ କହୁଛ ଯେ, ''ପୁରୁଷ ସାଙ୍ଗେ ସ୍ତ୍ରୀମାନଙ୍କୁ ସମାନ ଅଧିକାର ଦେଲେ ସେଗୁଡ଼ାକ ପାଣିରେ ଉବେଇ ଟୁବେଇ ହୋଇ ଛନ୍ଦଣୀ ମନ୍ଦଣୀ ହୋଇ ମରିଯିବେ,'' ଏ କଥା କହିଲା ବେଳକୁ ତୁମ ନିଜର ପୂର୍ବୋକ୍ତ ଯୁକ୍ତି ତୁମ ମନେ ପଡୁ ନାହିଁ । ଆପଣା ଘର ପାଇଁ ଜାତିଏ ଯୁକ୍ତି, ଜାତିଏ ବୁଝାମଣା, ଜାତିଏ ତର୍କ, ଦାଣ୍ଡ ପାଇଁ ଆଉ ଜାତିଏ । ଏହାକୁ ହିଁ କହନ୍ତି ଘର ସାହାବୀ ନିଶାପ, କୋଦିଣ୍ଡା ନ୍ୟାୟ, ଆଣ୍ଟୁଆତୁଆ ବୁଝାମଣା । ହଉରେ ବାପାମାନେ, ତୁମେ ଆମ ପ୍ରତି ଛାଟ ଖଣ୍ଡିଏ ସଜିଲ କରି ରଖିଛ । ବେଳକୁ ସେହି ଛାଟ ଖଣ୍ଡିଏ ବୁକୁଫଟା ଠେଙ୍ଗାଟିଏ ପାଲଟି ତୁମ ପିଠିରେ ପଡୁଛି ଓ ପଡ଼ିବ । ଈଶ୍ୱରଙ୍କ ରାଇଜରେ ସବୁଠାରେ ଉଧାର ମାଣକ ପାଞ୍ଚପା । ତୁମେ ପୁରୁଷ ପୁଅଯାକ ଦୁନିଆରୁ ବାହାର ନୁହଁରେ ବାପା !

ଉତ୍କଳ ସାହିତ୍ୟ/୨୫ଶ ଭାଗ/୩ୟ ସଂଖ୍ୟା ଆଷାଢ଼/୧୩୨୮ ସାଲ ।

## ।। ତୃତୀୟ ପୁଡ଼ା ।।

ଆରେ ପୁଏ ! ସ୍ତ୍ରୀମାନଙ୍କର ଆଦର୍ଶକୁ ନେଇ ତୁମ୍ଭମାନଙ୍କ ମତଲବ ଅନୁସାରେ ପ୍ରତିଷ୍ଠା କରୁଅଛ । ତୁମ୍ଭମାନଙ୍କ ମଧରେ ଆଦର୍ଶ ପୁରୁଷ କିଏ ? ଯେ ସଭ୍ୟତାନୁମୋଦିତ ଡକାଇତି କରି ଅନେକ ମଣିଷଙ୍କୁ ହାଣକାଟ କରି, ପରର ରାଜ୍ୟ ଦଖଲ କଲା, ସେ ହେଲା ଆଦର୍ଶ ବୀର ପୁରୁଷ, ଯଥା ମହାବୀର ସେକନ୍ଦର ପାଦସା (Alexander), ମହାବୀର ଆକବର ପାଦସା, ନେପୋଲିଅନ୍ ଇତ୍ୟାଦି । ଆମ ସ୍ତ୍ରୀ ଜାତି ମଧରେ ଆଦର୍ଶ କିଏ ? ଯେଉଁ ସ୍ତ୍ରୀ ରାତି ଜାଙ୍ଗୁଲୁ ଜାଙ୍ଗୁଲୁରୁ ଉଠି କାକରରେ, ଖରାରେ, ନିଆଁରେ ସନ୍ତୁଳି ହୋଇ ମୁଣ୍ଡଝାଳ ଗୋଡ଼ରେ ମାରି ରାତି ଦଶ ଘଡ଼ି ପର୍ଯ୍ୟନ୍ତ ଆପଣା ମୁହଁରେ ତିରଣ ନ ଦେଇ, ଆପଣାର ଶରୀର ଓ ଶାରୀରିକ ସୁଖକୁ ନ ଚାହିଁ ପୁରୁଷମାନଙ୍କ ପାଇଁ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ତିଆରି କରିପାରିଲା, ସଂସାରର ଅର୍ଦ୍ଧୋଳି, ପୁରୁଷ ଜାତିଙ୍କ ବେତବାଡ଼ି, ସ୍ୱାମୀଙ୍କର ଓ ପୁଅଙ୍କର ତାଟି କିଳା ମାଡ଼ ସହିପାରିଲା, ଗୋଟାଏ ଗାଲରେ ଚାପୁଡ଼ା ବାଜିଲା କ୍ଷଣି ଆର ଗାଲଟି ଦେଖାଇ ଦେଲା, ପୁରୁଷ ଜାତିଙ୍କ ପ୍ରଦତ୍ତ ସମସ୍ତ ଅପବାଦକୁ ଅମ୍ଳାନ ବଦନରେ ସହିଲା, ସେ ହେଲା ନାରୀ ଜାତିର ଶିରୋମଣି । ଅଥଚ ଏତେ କଥା କରି, ପୁରୁଷ ଜାତିଙ୍କର କ୍ରୀତଦାସୀ ହୋଇ କ୍ରୀଡ଼ା ପୁତୁଳି ହୋଇ, ତୋଠ ପଥର ହୋଇ ସୁଦ୍ଧା ଶେଷକୁ ପୁରୁଷଙ୍କ ଠାରୁ ଆମ ଜାତିକୁ ସାର୍ଟିଫିକେଟ୍ ମିଳିଲା ଅଙ୍କସ୍ଥିତାପି ଯୁବତୀ ପରିଶଙ୍କନୀୟ 'ସ୍ତ୍ରୀ ବୁଦ୍ଧି ପ୍ରଳୟଙ୍କରୀ ।' 'କାମିନୀ କାଞ୍ଚନ ଏ ସଂସାରରେ ସବୁ ଅନର୍ଥ ସବୁ ପାପର ମୂଳ ।' ଏତିକିରେ କ୍ଷାନ୍ତ ନ ହୋଇ ତୁମ ଶାସ୍ତ୍ର, ପୁରାଣରେ ଗୋଟିଏ ଲେଖାଏଁ ସ୍ତ୍ରୀଙ୍କୁ କେନ୍ଦ୍ର ସ୍ଥଳରେ ଠିଆ କରାଇ ଦେଇ ପୁରୁଷ ଜାତିର କଳ୍ପନାଶକ୍ତିରେ ସେହି ନିରୀହ ସ୍ତ୍ରୀକୁ ସବୁ ଅନର୍ଥର କେନ୍ଦ୍ରସ୍ଥଳ ରୂପେ ଚିତ୍ରଣ କରିଦେଲ । ଅଚ୍ଛା, ଇଲିଅଡ଼, ଓଡ଼େଶି, ରାମାୟଣ, ମହାଭାରତ ଇତ୍ୟାଦିରେ ସବୁ ଅନର୍ଥର କେନ୍ଦ୍ରସ୍ଥଳରେ ଠିଆ କରାଇବାକୁ ତୁମମାନଙ୍କ ଆଖିରେ କ'ଣ ପୁରୁଷ ପୁଅ ହାବୁଡ଼ରେ ପଡ଼ିଲେ ନାହିଁ । ଆମରି ଜାତିର ନିରୀହ ଜୀବଙ୍କୁ ନେଇ ଏତେ ହଲାପଟା କଲ କିଆଁରେ ? ସୀତାଙ୍କୁ ନେଇ ରାମଚନ୍ଦ୍ର ଜଙ୍ଗଲରେ ବୁଲିଲେ, ତାଙ୍କୁ ରାବଣ ଜବରଦସ୍ତି ନେଇଗଲା, ସେ ଅଶୋକବନରେ ବିରହ ଓ ଶୋକରେ ମଲାପରି ପଡ଼ି ରହିଲେ, ରାବଣର ପ୍ରଲୋଭନରେ ବିଚଳିତ ହେଲେ ନାହିଁ । ରାମଚନ୍ଦ୍ର ଯାଇ ରାବଣକୁ ମାରି ରାକ୍ଷସ ବଳ ନାଶ କରି ଲଙ୍କାପୁରୀକୁ ଭସ୍ମ କରି ସୀତାଙ୍କୁ ଉଦ୍ଧାର କଲେ । ସୀତାଙ୍କର ଚରିତ୍ର ଦୂଷିତ ହୋଇ ନ ଥିବା ପ୍ରମାଣସ୍ୱରୂପ ତାଙ୍କୁ ଶପଥ କରାଇଲେ । ଅଗ୍ନି ପରୀକ୍ଷା କଲେ । ପ୍ରମାଣ ନେଲେ ଓ ବିଷମ ପରୀକ୍ଷାରେ ସୀତା ଉତ୍ତୀର୍ଣ୍ଣ ହେବାରୁ ତାଙ୍କୁ ଅଯୋଧ୍ୟାକୁ ଆଣିଲେ । ଏତିକିରେ ସ୍ତ୍ରୀ ଚରିତ୍ରର ବିଶୁଦ୍ଧତାରୁ କଳଙ୍କ ଛାଡ଼ିଲା ନାହିଁ । ଅଯୋଧ୍ୟାରେ ସୀତା ଗର୍ଭବତୀ ହେବା ଅବସ୍ଥାରେ ଲୋକାପବାଦକୁ ଡରି ନିରାଶ୍ରୟା ଓ ଆଶ୍ରୟାର୍ହା ସୀତାଙ୍କୁ ନେଇ

ଅସହାୟା କରି ଜଙ୍ଗଲରେ ଛାଡ଼ିଦେଇ ଆସିଲେ । ସୀତା ସେହି ଜଙ୍ଗଲରେ ଥାଇ ଲବକୁଶ କୁମାରଦ୍ୱୟଙ୍କୁ ଜନ୍ମ କଲେ ଓ ଏତେ ଅବିଚାର ସହି ସୁଦ୍ଧା ଦିନେ ହେଲେ ସ୍ୱାମୀଙ୍କୁ ଦୋଷ ଦେଇ ନାହାନ୍ତି । ସମସ୍ତ ଅପବାଦ, ସମସ୍ତ ନିର୍ଯାତନା ନତମସ୍ତକରେ ସହିଅଛନ୍ତି । ଏତେ ଦଣ୍ଡ ଭୋଗ କରି ସୁଦ୍ଧା ନିର୍ଯାତନାକାରୀ ସ୍ୱାମୀଙ୍କ ପ୍ରତି ତାଙ୍କର ଭକ୍ତି ଅଚଳ ଓ ଅଟଳ ରହିଲା ବୋଲି ସେ ହେଲେ ଆଦର୍ଶ ନାରୀ । ଯେବେ ସୀତା ଏ କୋଦିଣ୍ଡା ବୁଝାମଣା ବିରୋଧରେ ଟିକିଏମାତ୍ର ପ୍ରତିବାଦ କରିଥାନ୍ତେ, ତାହା ହେଲେ ସୀତାଙ୍କୁ ତୁମ୍ଭେମାନେ ନେଇ ନରକ କୁଣ୍ଡରେ ପକାଇଥାନ୍ତ । ତୁମ ଜାତିର ପୁରାଣ, ଉପନ୍ୟାସ, ନାଟକ, ଶାସ୍ତ୍ର ଯାହା ଦେଖିବ, ସେଥିରେ ଦେଖିପାରିବ ଯେ, ଆବହମାନ କାଳରୁ ମାଇପି ଜାତିଟା ତୁମ ହାତସୁଖ କରିବାର ଲୁତୁପୁତୁଆ ମାଟିପିଣ୍ଡୁଳା ମାତ୍ର । ଏ ସବୁ ଭାବିଲେ ଆମେ ବୁଝିପାରୁ ଯେ, ତୁମ୍ଭେମାନେ ସ୍ତ୍ରୀ ଜାତିକୁ ଶିକ୍ଷା ଦେବାକୁ କିଆଁ ଏଡ଼େ କୁଣ୍ଠିତ ? ସ୍ତ୍ରୀମାନେ ଶିକ୍ଷା ପାଇଲେ, ପାଠ ପଢ଼ିଲେ, ଇତିହାସ ପଢ଼ିଲେ, ସେମାନଙ୍କର ଆଖି ଫିଟିଲେ ତୁମ୍ଭେମାନେ ଆବହମାନ କାଳରୁ ସେମାନଙ୍କ ଉପରେ ଯେଉଁ ଜୁଲମ କରି ଆସୁଛ, ତାହା ସେମାନେ ଜାଣିପାରିବେ ଓ ତୁମ୍ଭମାନଙ୍କୁ ଘୃଣା କରିବେ ଓ ସ୍ତ୍ରୀ ଜାତିର ଆଖି ଫିଟିବା ସଙ୍ଗେ ସଙ୍ଗେ ସେମାନଙ୍କର ପାଟି ଓ ହାତଗୋଡ଼ ଫିଟିଯିବ । ଏହି ଭୟରେ ତୁମ୍ଭେମାନେ ସ୍ତ୍ରୀ ଜାତିଙ୍କୁ ପୂର୍ବପରି ବେଡ଼ିକୋରଡ଼ା ଦେଇ ବନ୍ଦିଶାଳାରେ ପୂରାଇ ରଖିବା ପାଇଁ ଦିନରାତି ବ୍ୟସ୍ତ । ତୁମ ଜାତିର ଏକପତ୍ନୀବ୍ରତ ପାଳନ କରିବାର ଲୋଡ଼ା ନାହିଁ, କିନ୍ତୁ ସ୍ତ୍ରୀ ମାତ୍ରକେ ଆଜନ୍ମ ଏକପତିବ୍ରତ ଧାରଣ କରିବେ ଓ ସ୍ୱାମୀଙ୍କର ଘଟାନ୍ତର ହେଲାରୁ ପ୍ରସନ୍ନ ବଦନରେ ସ୍ୱାମୀଙ୍କର ପ୍ରଜ୍ୱଳିତ ଚିତାଗ୍ନି ଭିତରେ ପଶିଯିବେ । ଯେଉଁ ସ୍ତ୍ରୀ ଏହା କଲା, ସେ ହେଲା ସତୀ, ଆଦର୍ଶ ନାରୀ । ଏହିପରି ସଂସାରରେ, ସମାଜରେ, ଇତିହାସରେ, ପୁରାଣରେ ସ୍ତ୍ରୀ ଜାତି ପ୍ରତି ପୁରୁଷ ଜାତିଙ୍କର ଅତ୍ୟାଚାର ଓ ଅବିଚାରର କୋଟି କୋଟି ଉଦାହରଣ ମିଳିବ ।

ଆବହମାନ କାଳରୁ ପୁରୁଷଯାକ ଆମ ଜାତି ସମ୍ବନ୍ଧରେ ଯେଉଁ କେତେଗୁଡ଼ିଏ ତୁହା ଓ ବୋଲି ଧରିଛନ୍ତି (ଯଥା : ସ୍ତ୍ରୀ ଜାତି ବୁଦ୍ଧିରେ ପୁରୁଷ ଜାତିର ସମକକ୍ଷ ନୁହେଁ, ସ୍ତ୍ରୀ ଜାତି ଆତ୍ମରକ୍ଷା କରିବାରେ ଅସମର୍ଥା, ସ୍ତ୍ରୀ ଜାତି ବଳରେ ପୁରୁଷ ଠାରୁ ହୀନ, ସ୍ତ୍ରୀ ଚରିତ୍ର ପୁରୁଷ ଜାତିଙ୍କର କଡ଼ା ପହରା ବ୍ୟତିରେକେ ନିର୍ମଳ ରହି ନ ପାରେ, ସ୍ତ୍ରୀ ଜାତିକୁ କଦାପି ବିଶ୍ୱାସ କରିବାର ନୁହେଁ ।) ସେ ବୋଲିଗୁଡ଼ିକ ଫଳତଃ ଅମୂଳକ ଓ ଅସାର ବୋଲି ତୁମ୍ଭେମାନେ ମନେ ମନେ ଅବଶ୍ୟ ଠଉରାଇ ପାରିଅଛ ଓ ଯେତେବେଳେ ପରୀକ୍ଷାର ସମୟ ଉପସ୍ଥିତ ହୋଇଅଛି, ସେତେବେଳେ ଦେଖିପାରିଛ ଯେ, ଉପଯୁକ୍ତ ଶିକ୍ଷା ଓ ସାଧନା ବଳରେ ସ୍ତ୍ରୀମାନେ କି ବିଦ୍ୟାରେ, କି ବୁଦ୍ଧିରେ, କି ବଳରେ, କି ଚରିତ୍ରରେ, କେଉଁଥିରେ ତୁମ୍ଭମାନଙ୍କଠାରୁ ହୀନ ନୁହନ୍ତି । ତୁମ୍ଭମାନଙ୍କର ଏ ଚିଆଁ ପହଡ଼, ଏ ସିଆଣିଆ ପାଗଳପଣିଆ ଛାଡ଼ । ଯେବେ ସର୍ବାଙ୍ଗୀଣ ଉନ୍ନତି କରିବାକୁ ଇଚ୍ଛା କର,

ତେବେ ସମାଜର ସବୁ ଅଙ୍ଗପ୍ରତ୍ୟଙ୍ଗକୁ ତାଜା, ବଳିଷ୍ଠ ଓ କର୍ମଠ କର । ସମାଜର ଓ ଆପଣାର ଅର୍ଦ୍ଧାଙ୍ଗକୁ, ଆପଣାର ଆଠପଣିଆ ସରିକଦାରଙ୍କୁ ବେଡ଼ି ଶାଙ୍କୋଳି ପକାଇ ରଖିଲେ ତୁମ୍ଭେମାନେ ଏକଫାଳିଆ ହୋଇ କଦାପି ଉନ୍ନତି କରିପାରିବ ନାହିଁରେ ବାବା, ଯେବେ ଦେଶକୁ, ସମାଜକୁ, ପରିବାରକୁ ଉନ୍ନତ ଆଦର୍ଶ ମାର୍ଗରେ ଉପରକୁ ଉଠାଇବାକୁ ଚାହଁ, ତେବେ ଏ ସବୁ ଆଣ୍ଟୁଆତୁଆ ବୁଝାମଣାକୁ ତୁମ ଆଇନ୍ କାନୁନରୁ ବାଦ ଦିଅ- ସମସ୍ତଙ୍କ ପାଇଁ ଏକ ଆଇନ୍, ଏକ ଆଦର୍ଶ, ଏକ ବିଧି, ଏକ ନିଷେଧ, ଏକ ଦଣ୍ଡ, ଏକ ପୁରସ୍କାରର ବ୍ୟବସ୍ଥା କର । ତୁମ୍ଭମାନଙ୍କ ପରି ଆମ୍ଭମାନଙ୍କ ପାଇଁ ମଧ ତୀକ୍ଷ୍ଣ ଅଗ୍ନିପରୀକ୍ଷା ନିର୍ଦ୍ଦେଶ କର- ସେଥିରୁ ଟପିପାରିଲେ ଆମେ ତୁମ ସରିସା ହୋଇ ଠିଆ ହେବୁଁ- ନଇଲେ ହଟି କରି ବଳେ ବଳେ ଆମ ମୁହଁ ତଳକୁ ହୋଇଯିବ ।

ଉତ୍କଳ ସାହିତ୍ୟ/୨୫ଶ ଭାଗ/୪ର୍ଥ ସଂଖ୍ୟା ଶ୍ରାବଣ/୧୩୨୮ ସାଲ ।

## ।। ଚତୁର୍ଥ ପୁଡ଼ା ।।

ହଇରେ ବାପାମାନେ ! ଏବେ ତୁମ୍ଭେମାନେ ଯେଉଁ 'ନାନକ ପ୍ରସନ୍ନ' ବା 'ନନାଙ୍କ ପସନ୍ଦ' (Non-Co-Operation) ହପ୍‌ପା ଉଠାଇ ଅଛ, ଆମେ ତିରିଲା ଯାକ ତ କବାଟ କଣରେ ରହିଲୁଁ, ଆମେ ବା ସେ ହପ୍‌ପାର ସବୁ ଓର ଆର ଜାଣିବୁ କାହୁଁ ? ଅଣ୍ଡିରିପୁଏ, ତୁମର ଫୁରୁସତ ବେଳେ କାର୍ଯ୍ୟ ପ୍ରସଙ୍ଗରେ (ଯଥା- ପଞ୍ଚୁଗ୍ରାସୀ କଲାବେଳେ, ଶୋଇଲାବେଳେ, ଗୋଡ଼ ଆଉଁଶାଇ ହେଲାବେଳେ) ଆମ ମହଲକୁ ଆସିଲେ ତୁମ ମୁହଁରୁ ଏ ସମ୍ବନ୍ଧରେ ଯାହା ବାହାରିପଡ଼େ, ସେହି କଥାରୁ ଆମେ ଯାହା ଏ ହସ୍ତାର ଢଙ୍ଗ ଠଉରାଇଥାଉଁ, ସେତିକି କଥା ଆମେ ଜାଣୁ- ଆଉ ସବୁ ଅସଲ ଭିତିରିଆ କଥାଗୁଡ଼ାକ ଆମର ଜାଣିବାର ବା ବୁଝିବାର ସୁଯୋଗ ନାହିଁ ।

ଏଥିପୂର୍ବେ ଦେଶରେ ପାଶ୍ଚାତ୍ୟ ସଭ୍ୟତାର ଯେଉଁ ଢେଉରେ ସବୁ ଭାସୁଥିଲ, ସେହି ଢେଉ ମରହଟିଆ କଥାଯାକ ସବୁ ଭସାଇ ନେଇଥା'ନ୍ତା, କେବଳ ଆମ ମାଇପିଜାତିଙ୍କ ରକ୍ଷଣଶୀଳତା ଯୋଗୁଁ କେତେକ ଓଡ଼ିଶୀ ମତ ସଂସାରରୁ ବୁଡି ଯାଇ ନ ଥିଲା । ସେହି ବିଲାତୀ ସଭ୍ୟତାର ଦାଉରୁ ଦେଶରୁ ତନ୍ତୀକୁଳ ଉଚ୍ଛନ୍ନ ହୋଇ ଯାଇଥିଲେ । ଭାଗବତ ଘରମାନ ଭାଙ୍ଗିଥିଲା, ଗ୍ରାମ ପଞ୍ଚାଏତଯାକ ଲୋପ ପାଇଥିଲା, ଗ୍ରାମର ଚଉପାଢ଼ୀ, ଗ୍ରାମର ଦେବାଦେବୀ, ଉଆଁସ ପୂନିଅଁ ସବୁ ଲୋପ ପାଇଥିଲା । ଦେଶୀ ଖଦି, ତାଳପତ୍ର ଛତା, ମରହଟୀ ଜୋତା ବୁଡ଼ିଥିଲା । ତୁମମାନଙ୍କ ସବୁ ପୁରୁଣାକାଳିଆ କଥା ଗନ୍ଧାଉଥିଲା । ଫେର୍ ଏବକୁ ତୁମର ଆଖି ଫିଟିଛି ଓ ଫେର୍ ସେହି ଘୃଣ୍ୟ ମରହଟୀ ଚାଲିଚଳଣ ଆଡ଼କୁ ତୁମେମାନେ ହାଉଳେ ହାଉଳେ ଲେଉଟିବାକୁ ବସିଲଣି । ହଉରେ ବାପା, ଭଲ କଥା । କିନ୍ତୁ ଆମ ଜାତିଫଳ ନ ଦେଖିବାଯାକେ, ଆମ ମନ ନ ମାନିବା ଯାକେ ଆମେ କଦାପି

ତୁମ ହପ୍‌ପାରେ ଭାସିଯିବୁ ନାହିଁ । ବର୍ତ୍ତମାନ ''ନନାଙ୍କ ପ୍ରସନ୍ନ ଆନ୍ଦୋଳନରେ ପଞ୍ଚାଏ ମାତିଛ । ଆହୁରି ଦଳେ ସେଥିରୁ କରଛଡ଼ା ଦେଉଛ । ଫେର ଦଳେ ହାକିମହୁକୁମାଙ୍କ ପାଖରେ ଅନୁସରଣ କରି ହାଁ ଜୀ, ହାଁ ଜୀ ହୋଇ ଖଇ ଉଖୁଡ଼ା ଖାଇବାରେ ଲାଗିଛ । ଏ ସବୁ ରହସ୍ୟ ଆମେ ମାଇପି ଜାତି ଠଉରାଇପାରୁ ନାହୁଁ'' ।

ଏ ହପ୍‌ପାରେ ସାଧାରଣ ଲୋକେ ଯେଉଁପରି ଉପାୟରେ ଓ ଯେଉଁ ଆଶାରେ ମାତିଛନ୍ତି, ତାହା ଦେଖିଲେ ବେଳେବେଳେ ହସ ମାଡୁଛି । ଫଳ ନ ମିଳୁ ପଛକେ, ଫଳ ମିଳିବ ବୋଲି ଆଶା ଦେଖିଲେ ବା ଶୁଣିଲେ ସାଧାରଣ ଲୋକେ ଗୋଟିଏ ହପ୍‌ପାରେ ମାତିଯାନ୍ତି । ଯେବେ 'ନନାଙ୍କୁ ପ୍ରସନ୍ନ' କଲେ ଆମ ଦେଶ ଓ ଆମ ଜାତି ମୋକ୍ଷ ଗତି ଲଭିବ, ତେବେ ଅଧିକାଂଶ ଶିକ୍ଷିତ ଓ ପଦସ୍ଥ ଲୋକେ ଏ ହପ୍‌ପାରେ ଯୋଗ ଦେବାକୁ ଏଡ଼େ କୁଣ୍ଠିତ ହେଉଛନ୍ତି କିଆଁ ? ତୁମେମାନେ କହୁଛ ଯେ, ଶିକ୍ଷିତ ଲୋକେ ଅଂରେଜୀ ପାଠ ପଢ଼ି, ଅନେକ ଦିନରୁ ବିଦେଶୀଙ୍କ ଗୋଡ଼ ଘଷି ଘଷି, ଅଇଁଠା ଚାଟି ଚାଟି, ବିଦେଶୀଙ୍କ କୁହୁକରେ, ବିଦେଶୀଙ୍କ ବିଦ୍ୟାରେ ମୋହ ହୋଇ ସେମାନଙ୍କର Slave mentality (ଦାସତ୍ୱପରତାବୃତ୍ତି) ହୋଇ ଯାଇଅଛି । ଆମର ସାଧାରଣମାନେ ପାଶ୍ଚାତ୍ୟ ଶିକ୍ଷା ସଂସ୍ରବରେ ଆସି ନ ଥିଲେ ବୋଲି ସେମାନଙ୍କ ମନ ବିଶୁଦ୍ଧ ଥିବାରୁ ସେମାନେ ଝଟ୍ ଏ ଆନ୍ଦୋଳନ ମାଧୁରୀ ଉପଲବ୍ଧି କରି ଏ ହପ୍ପାରେ ଯୋଗ ଦେଇଅଛନ୍ତି । ଭାରତରେ ଶିକ୍ଷିତଙ୍କର ସଂଖ୍ୟାକୁ ଚାହିଁବାକୁ ଗଲେ ସେମାନଙ୍କ ମଧ୍ୟରୁ ହଜାରକେ କେତେ ଜଣ ନନ୍-କୋ- ଅପରେସନ୍ ହପ୍‌ପାରେ ଯୋଗ ଦେଇଅଛନ୍ତି ? ଦେଖାଯାଉଅଛି ଯେ, ସାଧାରଣ ଚଷା ଭୂଷା ମୂଲିଆଟୋକା, ନିଷ୍କର୍ମା, ଅଣପାଠୁଆମାନେ ଏ ଆନ୍ଦୋଳନରେ ବେଶି ମାତିଅଛନ୍ତି । କିନ୍ତୁ ମୁଖିଆ ମୁଖିଆ ଲୋକମାନଙ୍କ ମଧ୍ୟରୁ ଅଧିକାଂଶ ଏ ଆନ୍ଦୋଳନରେ ଯୋଗ ଦେଉ ନାହାନ୍ତି । ମୁଁ ପଚାରୁଛି - କାକର ଧରି କେଉଁ ଯୁଗରେ କେହି ଭଲା ଘଡ଼ି ଭରତି କରିଛି ? ଆବହମାନ କାଳରୁ ଏ ନନ୍-କୋ-ଅପରେସନ୍ ନୀତିଟା ଆମ ମାଇପି ଜାତିଙ୍କର ଏକଚେଟିଆ ଥିଲା । ଚିରକାଳ ପୁରୁଷ ଜାତି ଆମ ଉପରେ ଆପଣା ହୁକୁମ ଜାରି କରି, ଆପଣାର ପରାକ୍ରମ ବିସ୍ତାର କରି ଆସୁଥିଲେ ଓ ଆମେ ଅବଳା ଓ ସୁକୁମାରିଆ ଥିବାରୁ ଆମ ଜିଦି ରଖିବାର ଏକମାତ୍ର ଉପାୟ ଆମ ହାତରେ ଥିଲା ଅଭିମାନ ବା ରୁଷାରୁଷି ବା ମାଠିଆ ମୁହଁ । ତୁମ ସାଙ୍ଗରେ, ବଳରେ, ପାଟିରେ, ଆମେ ପାରୁ ନାହିଁ, ଏଥିପାଇଁ 'ବାଳାନଂ ରୋଦନଂ ବଳଂ' ଭଳି ଆମେ ଅଭିମାନ କରି, ଆଡ଼-ରୁଷାରୁଷି ଆମ କାମ ତୁମମାନଙ୍କ ଠାରୁ ହାସଲ କରି ନେଉଁ ।

ତୁମେମାନେ ଦେଖୁଛ ଯେ, ପ୍ରବଳ ପରାକ୍ରମୀ, ବଳଶାଳୀ, ସେନାଶାଳୀ ସରକାରଙ୍କୁ ଭାରତୀୟମାନେ ବଳରେ ପାରିବା ନାହିଁ, ଯୁଦ୍ଧ କରି ପାରିବା ନାହିଁ । ଏଥିପାଇଁ ନିର୍ବଳଙ୍କ ଠାରେ ଥିବା ଏକମାତ୍ର ଔଷଧ 'ନନ୍-କୋ-ଅପରେସନ୍' ପ୍ରୟୋଗ ନ କଲେ ଭାରତବାସୀ ସ୍ୱାଧୀନ ହେବାର ଅନ୍ୟ ଉପାୟ ନାହିଁ; କିନ୍ତୁ ଏହି ଉପାୟରେ ଯେ ଭାରତବର୍ଷ କାଲି

ସକାଳେ ସ୍ୱାଧୀନ ହୋଇଯିବ, ଏ କଥାରେ ମୋ ମନ ମାନୁ ନାହିଁ । ତୁମେମାନେ ବେଳେବେଳେ ଯେଉଁ ଆଜ୍ଞାପତ୍ରିକା ଜାରି କରି ଦେଉଛ, ତାହା ଆମେ ସମୁଝି ପାରୁ ନାହୁଁ । ଏପରି ଆଜ୍ଞାପତ୍ରିକା ଜାରି କରି କେବେଁ ତୁମ ଜାତି ସ୍ୱର୍ଗ ଲାଭ କରିବ ନାହିଁ- ତୁମ୍ଭେମାନେ 'ସ୍ୱରାଜ' ପାଇବାକୁ ଅନେକ ବିଳମ୍ବ ଅଛି । ତୁମେ ଯେଉଁ ସ୍ୱରାଜ ଖୋଜୁଛ ଓ ଇସ୍ତାହାର ଜାରି କରୁଛ, ଏ ସ୍ୱରାଜ ଆତ୍ମାରାଜ୍ୟର ସ୍ୱରାଜ, କଳ୍ପନା ଜଗତର ସ୍ୱରାଜ, ସ୍ୱପ୍ନର ସ୍ୱରାଜ, ଆକାଶ କୁସୁମର ସ୍ୱରାଜ, ଏହା ବାସ୍ତବ ଜଗତର ସ୍ୱରାଜ ନୁହେଁ, ଇତିହାସର ସ୍ୱରାଜ ନୁହେଁ ।

ପାଶବ ବଳ, ସୈନ୍ୟ ବଳ, ଅସ୍ତ୍ରଶସ୍ତ୍ରର ବଳ, ପଇସାର ବଳ ଓ ବଳଗୁଡ଼ାକ ତୁମେମାନେ ବାଏଁ ବାଏଁ ଉଡ଼ାଇ ଦେଇ କେବଳ ମନୋବଳ (soul force) ଉପରେ ଯେଉଁ ରାଜ୍ୟ ପ୍ରତିଷ୍ଠା କରିବାକୁ ବସିଛ, ଏହା କେଉଁ ଯୁଗରେ, କେଉଁ ରାଇଜରେ ହୋଇ ନ ଥିଲା, କି ନ ହେବ । ଭାରତର ପୁରାତନ ସଭ୍ୟତା କେବଳ ଏହି ମାନସିକ ବଳ ଉପରେ ପ୍ରତିଷ୍ଠିତ ହୋଇ ନ ଥିଲା । ସତ୍ୟ, ତ୍ରେତା, ଦ୍ୱାପର ଯୁଗରେ ପାଶବ ବଳକୁ ପରାଭୂତ କରିବା ନିମନ୍ତେ, ରାକ୍ଷସୀ ଶକ୍ତିକୁ ଜବତ କରିବା ନିମନ୍ତେ ବାସ୍ତବ ରାଜ୍ୟର ବଳ ଲୋଡ଼ା ହେଉଥିଲା, ବର୍ତ୍ତମାନ ଯୁଗରେ ମଧ ହେବ । ପୁରାତନ ଯୋଗୀ, ଋଷି ଓ ସିଦ୍ଧପୁରୁଷମାନଙ୍କର ଯେଉଁ ଆତ୍ମବଳ (soul force) ଥିଲା, ତାହା ତୁମ୍ଭମାନଙ୍କର ନାହିଁ, ଏ କଥା ତୁମ୍ଭେମାନେ ଅସ୍ୱୀକାର କରିପାରିବ ନାହିଁ । ତଥାପି ଯୁଗେ ଯୁଗେ ଅସୁର ବଳକୁ, ପାଶବ ଶକ୍ତିକୁ ହଟାଇବା ପାଇଁ ବାସ୍ତବ ବଳର, ଅସ୍ତ୍ରଶସ୍ତ୍ରର, ଅକ୍ଷୌହିଣୀ ସେନାର ସାହାଯ୍ୟ ଲୋଡ଼ା ହେଉଥିଲା ଓ ବଳର ପରକ୍ରାନ୍ତ ବନ୍ଦୀକୁ ଜବଦ୍ କରିବା ନିମନ୍ତେ ପ୍ରବଳତର ବଳ ଓ ଆୟୋଜନର ଆବଶ୍ୟକତା ହେଉଥିଲା । ଯେଉଁ ରାମଚନ୍ଦ୍ର ଈଶ୍ୱରଙ୍କ ଅବତାର ଥିଲେ ସେ ରାବଣକୁ ପରାଭୂତ କରିବା ପାଇଁ କପି ସେନା ଓ ଅସ୍ତ୍ରଶସ୍ତ୍ରର ଶରଣାପନ୍ନ ହେଲେ କିଆଁ ? ସେ ତ ଏକା ହୁକୁମରେ, ଖଣ୍ଡେ ଆଜ୍ଞାପତ୍ରିକାରେ ରାବଣକୁ ସଦଳବଳ ଲୋପ କରି ପାରିଥାନ୍ତେ ? ନୃସିଂହ ଅବତାରରେ ମହାପ୍ରଭୁ ମୁରାସୁରକୁ ମାରିବାକୁ କେତେ ସୈନ୍ୟ ଓ ଶସ୍ତ୍ର ବଳ ପ୍ରୟୋଗ କଲେ । କେବଳ ମାନସିକ ବଳ ଦ୍ୱାରା ବାସ୍ତବ ବଳ ପରାସ୍ତ ହୋଇପାରିବ ନାହିଁ । ରାମାୟଣ, ଭାଗବତ, ମହାଭାରତ, ପୁରାଣ ଆଦି ସବୁଥିରେ ଏଥିର ଜୀବନ୍ତ ପ୍ରମାଣ ବିଦ୍ୟମାନ ଅଛି । ଗାନ୍ଧି ମହାରାଜ ଖାଲି ମନୋବଳରେ, ମନ୍ତ୍ର ବଳରେ ପାଶ୍ଚାତ୍ୟ ଜଗତର ଫଉଜକୁ ପଟାଳି ଭଳିଆ ଶୁଆଇ ଦେଇଯିବେ ବୋଲି ଯେଉଁ ଆଜ୍ଞାପତ୍ରିକା ଜାରି କରୁଛନ୍ତି, ସେଥିରେ ଆମ ମାଇପି ଜାତିଙ୍କର ତ ମନ ମାନୁ ନାହିଁ ।

ଏ ପରେ ଆମେ ସମସ୍ତେ ରକତ ମାଉଁସର ଦିହ ଘେନି ଥାଉଁ ତ, ଆମ ଦିହରୁ ଏତେ ଚଞ୍ଚଳ ମଇଳାଯାକ ଟିକକଠଉଁ ପୋଛିପାଛି ହୋଇଯିବ ବୋଲି ଯେ ଗାନ୍ଧି ମହାରାଜ ବିଚାରିଛନ୍ତି, ଏହା ତୁଚ୍ଛା ସ୍ୱପ୍ନ କଥା ପରି ଲାଗୁଛି । Non-violent, Non-Co-

Operation, Non-hatred ଏସବୁ କେବଳ 'ସୁନାର ପଥର ବାଟି' ଭଳିଆ । ଯାହା ସଙ୍ଗେ ଅଦଉତି କରିବ, ଯାହାକୁ ଜବତ କରିବାକୁ ବସିବ, ତାକୁ ଘୃଣା କରିବ ନାହିଁ, ତାକୁ ଗାଳି ଦେବ ନାହିଁ, ଏ ଉପଦେଶ ଅପାଳନୀୟ ଉପଦେଶ ଅଟେ । ଗାନ୍ଧି ମହାରାଜା ଓ ତାଙ୍କପରି ମର୍ତ୍ତ୍ୟର ଦେବତାମାନଙ୍କର ଏଭଳି ମନ ହୋଇପାରେ, କିନ୍ତୁ ଭାରତର ଅମାପ ଜନସାଧାରଣ ଏ ଉପଦେଶକୁ ପାଳି ମନ ଥୟ କରିବେ ବୋଲି ବିଚାରିବା ବାତୁଳତା ମାତ୍ର । ମୁହଁରେ ଯେଉଁ Non-violence କଥା ଘୋଷଣା କରାଯାଉଛି, ଫଳରେ ଜାଗା ବାରଜାଗା ମାଡ଼ପିଟ୍, କଜିଆ ତକରାଳ, ହାଣକାଟ ହେଉଛି । ମନୁଷ୍ୟ ପ୍ରକୃତିଟା ଏକା ଘଣ୍ଟାକେ, ଏକା ଦିନକେ, ଏକା ମାସକେ, ଏକା ବରଷକେ, ଏକ ଆଜ୍ଞାପତ୍ରିକାରେ ଏପରି ବଦଳିଯିବା ଅସମ୍ଭବ । ମନୁଷ୍ୟ ପ୍ରକୃତିକୁ 'ଯେତେ ମାଠୁଥିବ ମାଠ, ମୁଁ ସେହି ଦରପୋଡ଼ା କାଠ' ।

ତା'ପରେ ହିନ୍ଦୁ ମୁସଲମାନ ମିଳନ କଥା ମଧ ଗୋଟାଏ ପୋଥିବାଇଗଣ । ବାଘ ବକିରି ଏକା ତୋଠରେ ପାଣି ପିଇବା ନ୍ୟାୟ । ଯାହାଙ୍କ ଭିତରେ ଖାଦ୍ୟ ଖାଦକ ସମ୍ବନ୍ଧ, ତାଙ୍କୁ ବେକାଇଦା କରିବା ମାତ୍ରକେ ନିଶ୍ଚେ ଖୁଆଖୋଇ ହେବେ । ଆବହମାନ କାଳରୁ ମୁସଲମାନ ଭାଇ ଓ ହିନ୍ଦୁ ଭାଇଙ୍କ ମଧରେ ସବୁ ଓଲଟା । ହିନ୍ଦୁଭାଇଙ୍କର ଲୁଗାପିନ୍ଧା, କାନି ଖୋଷା, ମୁସଲମାନମାନଙ୍କର କାନି ଖୋଲା, ଆମର କଦଳୀପତ୍ର ପେଟ ବାଗରେ ଭାତଖିଆ, ତାଙ୍କର ପିଠି ବାଗରେ । ଆମର ଶ୍ମଶ୍ରୁ ଛେଦନ, ତାଙ୍କର ଶ୍ମଶ୍ରୁ ରକ୍ଷଣ । ଆମର ଜୀବକୁ ବେକ ପାଖରୁ ଜବ, ତାଙ୍କର ତଣ୍ଟି ପାଖରେ ହଲାଲ । ପରିସ୍ରା କରି ଆମର ପାଣି ଘେନିବା । ତାଙ୍କର ଟେକା ଘେନିବା, ଆମର ତେତିଶ କୋଟି ଦେବା ଦେବୀ, ତାଙ୍କର ଏକା ଖୋଦା ମାଲିକ । ଆମର ଲେଖା ବାଁରୁ ଡାହାଣ, ତାଙ୍କର ଲେଖା ଡାହାଣରୁ ବାଁ ଆଡ଼କୁ । ଆମର ମାସ ଗଣନା ସୌରମାସ ଓ ସଂକ୍ରାନ୍ତି ସକାଳଠାରୁ, ତାଙ୍କର ଚାନ୍ଦମାସ ଓ ପ୍ରତୀପଦ ଠାରୁ । ଆମର ଉପବାସ ପାରଣା ଦିନରେ, ତାଙ୍କର ରାତି ଅଧରେ । ଆମର ବର୍ଷ ଗଣନା, ତାଙ୍କର ବର୍ଷ ଗଣନାଠାରୁ ପୃଥକ୍ । ଆମର ବାରଜାତି ତେର ଗୋଲା, ତାଙ୍କର ବଇଷମ ହେଲେ ସବୁ ଗଲା । ଆମର ଶବ ଦାହ, ତାଙ୍କର ଶବ ପୋତା । ଆମର ଦୟାଧିକାର ଶାସ୍ତ୍ର, ତାଙ୍କର ସାରା ପ୍ରଭେଦ । ଆମର ମୃତ ବ୍ୟକ୍ତିର ସମ୍ପତ୍ତିରେ କନ୍ୟାର ଅଧିକାର ନାହିଁ, ତାଙ୍କର ପୁତ୍ରକନ୍ୟାଙ୍କର ସମାନ ଅଧିକାର । ଆମର ଧର୍ମ ବିବାହ । ତାଙ୍କର ଚୁକ୍ତି ବିବାହ, ଆମର ବିବାହ ବନ୍ଧନ ଅଚ୍ଛେଦ୍ୟ, ତାଙ୍କର କଥା କଥାକେ ତଲାକ । ଆମ ମୁଣ୍ଡରେ ଗୋଛାଏ କେଶ, ତାଙ୍କର ଲଣ୍ଡା । ଆମର ଘରେ ଘରେ ଜାତି ଭେଦ, ତାଙ୍କର ସମସ୍ତେ ଏକ ଜାତି । ଆମ ଧର୍ମଦେବତା ପୂର୍ବରେ, ତାଙ୍କର ପଶ୍ଚିମରେ, ଆମର ପୂର୍ବ ମୁଖ ଉପାସନା, ତାଙ୍କର ପଶ୍ଚିମ ମୁଖ । ଆମର ନୈବେଦ୍ୟ ତୁଳସୀପତ୍ରରେ ତାଙ୍କର ଫାତିଆ ଦୁର୍ଲଭା ପତ୍ରରେ । ଆମ ଭୋଜନ ଶୁଦ୍ଧ ଭୂମିରେ, ତାଙ୍କ ଭୋଜନ ବିଛଣା ଉପରେ । ତା'ପରେ ଭାରତବର୍ଷ ଛଡ଼ା ଆମ

ଅନ୍ୟ କୌଣସି ମୁଲକ ହିନ୍ଦୁ ରାଜ୍ୟ ନାହିଁ । ଆମର ହଜିଲେ ଖୋଜିବାକୁ କେହି ନାହିଁ, କି ଛିଣ୍ଡିଗଲେ ଗଇଣ୍ଠେଇବାକୁ ନାହିଁ । ଭାରତବର୍ଷ ଛଡ଼ା ତାଙ୍କର ତୁରସ୍କ, ଆରବ, ପାରସ୍ୟ, ଇଜିପ୍ଟ ଆଦି ଅନେକ ମୁସଲମାନ ରାଜ୍ୟ ଓ ରାଜା ଅଛନ୍ତି । ଏପରି ସ୍ଥଳରେ ଏ ଦୁଇ ଜାତି ଏକ ମନ ଏକ ମୁନ ହୋଇ ସୁରୁଖୁରୁରେ ଚଳିବେ ଓ ଇଂରେଜ ସରକାରଙ୍କର କଟକଣା ଓ ଭୟ ଉଠିଗଲେ ତାଙ୍କର ଆମର ଭବିଷ୍ୟତ୍‌ରେ କୌଣସି ରାଜନୀତିକ ବିଷୟ ଘେନି ବିବାଦ ଉପସ୍ଥିତ ହେଲେ ମୁସଲମାନଭାଇମାନେ ଭାରତର ସୀମା ବାହାରେ ଥିବା ଧର୍ମରକ୍ଷକ ରାଜାଙ୍କୁ ବିବାଦ ନିଷ୍ପତ୍ତି ସକାଶେ ଆହ୍ୱାନ ନ କରିବେ, ଏ କଥା ଭାବିବାର କୌଣସି କାରଣ ନାହିଁ । ଏ ସବୁ ଘଟଣା ଭାବିଲା ବେଳକୁ ଗାନ୍ଧି ମହାରାଜାଙ୍କର କଳ୍ପିତ ହିନ୍ଦୁ ମୁସଲମାନ ମିଳନ କେବଳ 'ଆକାଶ କୟାଁ ତିଳିକା ମାଛ' ଭଳିଆ ଜଣାଯାଏ । ସରକାର ଅମଳ ଉଠିଗଲେ ମୁସଲମାନମାନେ ହିନ୍ଦୁମାନଙ୍କୁ ସୋଦର ନିର୍ବିଶେଷରେ ସ୍ନେହ କରିବେ ବୋଲି ଆମ ମାଇପି ଜାତିର କେବେ ମନ ମାନୁ ନାହିଁ । ଏବେ ଅଳ୍ପ ଦିନ ହେଲା ଦକ୍ଷିଣ କାଲିକଟଠାରେ 'ମୋପଲା' ଜାତି ମାତି ଉଠି ସ୍ୱରାଜ ଓ ଘୋଷଣାକାରୀ ହିନ୍ଦୁଭାଇଙ୍କ ସଙ୍ଗେ ଘରଆଡ଼ର ଭାଇ ସମ୍ପର୍କ ବସାଇ ଦେଇ ଏକ ହାତକେ କୋରାନ୍, ଏକ ହାତକେ ଖଣ୍ଡା ଧରି ଯେଉଁ ନାଟଟି ଲଗାଇ ଦେଲେ, ଏହା ଦେଖି ଗାନ୍ଧି ମହାରାଜାଙ୍କର ଅବଶ୍ୟ ଆଖି ଟିକିଏ ଫିଟିଥିବ ପରା । କିନ୍ତୁ ଯେବେ ନନ୍-କୋ-ଅପରେସନ ଦଳ 'ଟିଆଁ-ପହଡ଼' କରିଥିବେ, ତାଙ୍କ ଆଖି ଫିଟେଇବ କିଏ ଲୋ ବାବା ।

ତା'ପରେ ଗାନ୍ଧି ମହାରାଜା ସ୍ୱରାଜ ମିଳିବାର ଯେଉଁ ମନଗଢ଼ା ମିଆଦ ସବୁ ଆଞ୍ଚା ପତ୍ରିକାରେ ଇସ୍ତାହାର ଦେଉଛନ୍ତି, ଏହା ଦେଖିଲେ ହସ ମାଡ଼େ । ଇମିତି କେତେଟା ମିଆଦ ଘୁଞ୍ଚିଗଲାଣି, ଆହୁରି ମଧ କେତେଟା ମିଆଦ ଗଡ଼ିଯିବ, କାହିଁ ସ୍ୱରାଜ ତ ମିଳିଲା ନାହିଁ । ସ୍ୱରାଜଟା କି ଜିନିଷ, ତାହା ମଧ ଅବଧି ଠିକଣା ହେଲା ନାହିଁ । କିଏ କହୁଛି, ସରକାର ଉଠିଯାଇ ଘରେ ଘରେ ଠାକୁରପୂଜା ଓ ପଙ୍ଗତ ଲାଗିବ, ନାଲି ପଗଡ଼ିଆ ଯାକ ପଳେଇଯିବେ । କିଏ କହୁଛି, ଆମର ଆତ୍ମା ରାଜ୍ୟରେ ସ୍ୱରାଜ ମିଳିବ, ବାହାରର ବାସ୍ତବ ଜଗତର କିଛି ପରିବର୍ତ୍ତନ ହେବ ନାହିଁ, ଭିତରେ ଭିତରେ ସ୍ୱପ୍ନ ରାଜ୍ୟରେ ସ୍ୱରାଜ ମିଳିବ । ଫେର କେହି କେହି କହୁଛନ୍ତି ଯେ ଆମକୁ ସ୍ୱରାଜ ମିଳିସାରିଲାଣି, ଆମ କାମ ଫତେ ହୋଇଗଲାଣି, କେବଳ ଖାଲି ଶାଢ଼ିବନ୍ଧା ଓ ଶିରିଣି ବାକି ଅଛି । ଆମ ମନ ଯେବେ ଆମର ହେବ ତେବେ ସେହିତ ହେଲା ସ୍ୱରାଜ "ତେରା ମେରା ରାଜି, କ୍ୟା କରେଗା କାଜି" ।

ଯା ହେଉ ନନ୍-କୋ-ଅପରେଟର୍‌ମାନେ ସ୍ୱଦେଶୀ ଜିନିଷ ବ୍ୟବହାର କରିବାକୁ, ମକଦ୍ଦମା ମାମଲା ନ କରିବାକୁ, ମାଦକଦ୍ରବ୍ୟ ତ୍ୟାଗ କରିବାକୁ ଯେଉଁ ଚେଷ୍ଟା କରୁଅଛନ୍ତି, ତାହା ସର୍ବଥା ପ୍ରଶଂସ୍ୟ ଓ ଅନୁସରଣୀୟ, କିନ୍ତୁ ତା ସଙ୍ଗେ ସଙ୍ଗେ ଯେଉଁ ଉପସର୍ଗ (ଯଥା : ଭିକମଗା ଜୋର୍ ଜୁଲମ, picketting ପଟୁଆର ଆଦି) ଓ ତୁହାଗୁଡ଼ିକ

ହପ୍‌ପାଭଳି ଉଠୁଛି (କୋଟିଏ ଟଙ୍କା, କୋଡ଼ିଏ ଲକ୍ଷ ଅରଟ ଓ କୋଟିଏ କଂଗ୍ରେସ ମେମ୍ବର ହେଲାକ୍ଷଣି ସାଙ୍ଗେ ସାଙ୍ଗେ ସ୍ୱରାଜ ମିଶିବ, ଜନତା ସାଧାରଣ ଅରଟରେ ସୂତା କାଟନ୍ତୁ, ପିଲାମାନେ ସ୍କୁଲ କଲେଜ ଛାଡ଼ନ୍ତୁ, ସମସ୍ତେ ସରକାରୀ ଚାକିରି ଓ ଉପାଧି ଛାଡ଼ନ୍ତୁ, ଭଲଲୋକଯାକ ଅରଟ ସୂତାର ବୁଣା ଖଦି ଲୁଗା ଓ ଗରିବଯାକ ଭାରତର କଳରେ ତିଆରି ଲୁଗା ପିନ୍ଧନ୍ତୁ । ୧୯୨୧ ସେପ୍ଟେମ୍ବର ମାସ ୩୦ ତାରିଖ ମଧ୍ୟରେ ସମସ୍ତେ ବିଦେଶୀ ଲୁଗାଯାକ ସବୁ ପୋତନ୍ତୁ, ଆମ ଦେଶର ଲୋକେ ଯେଉଁ ବିଦେଶୀ ଲୁଗାଯାକ ଛାଡ଼ିବେ, ତାକୁ ତୁରସ୍କର ନିର୍ବସ୍ତ୍ର ଗରିବଙ୍କ ପାଇଁ ପଠାଯାଉ, ଏ ଦେଶର ନିର୍ବସ୍ତ୍ର ଗରିବମାନେ ସେ ଲୁଗା ନ ପିନ୍ଧନ୍ତୁ, ରାଜକର୍ମଚାରୀମାନେ ଗସ୍ତକୁ ଆସିଲେ ସମସ୍ତେ ଦୋକାନପତ୍ର ବନ୍ଦ କରନ୍ତୁ । ଓକିଲ ମୁକ୍ତାରମାନେ କଚେରିକୁ ନ ଯାଆନ୍ତୁ । ପଞ୍ଚାୟତମାନେ ହୁଣ୍ଡା ନିଶାପ କରି ସବୁ ବିବାଦକୁ ଫଏସଲ କରନ୍ତୁ ଇତ୍ୟାଦି ।) ସେଗୁଡ଼ିକ କାର୍ଯ୍ୟରେ ପରିଣତ ହୋଇପାରିବ ନାହିଁ - ଏହା ଆମେ ମାଇପେ ବୁଝିପାରିଛୁଁ । ଅଥଚ ଅଣ୍ଡିରିପୁଅଗୁଡ଼ାକ ଏକଥା ବୁଝିପାରୁ ନାହଁ ।

ବର୍ତ୍ତମାନ ଗାନ୍ଧି ମହାରାଜାଙ୍କ ଅମଳରେ ଫି ଜିଲ୍ଲାରେ, ଫି ପରଗନାରେ, ଫି ମଉଜାରେ, ଫି ଘରେ ଯେଉଁ ଯେଉଁ ଗାନ୍ଧି ଅବତାର ଓ ଚଳନ୍ତି ପ୍ରତିମାମାନ ବାହାରୁ ଅଛନ୍ତି, ତାଙ୍କୁ ସବୁ ଦେଖି ଆମ ପେଳେହି ଚମକୁଛି । ସମସ୍ତେ ତ ଯୋଗୀ ହେବେ, ଭିକ ଦେବ କିଏରେ ବାପା ? ଯାହାଙ୍କ ଦାଣ୍ଡଦୁଆରଠାରୁ ବାଡ଼ିଦୁଆର ପର୍ଯ୍ୟନ୍ତ ତୁଚ୍ଛା ନର୍ଦ୍ଦମା, ଅଳିଆ ଅସନା, ସେ ଦାଣ୍ଡକୁ ବାହାରି ପଡ଼ି ‘ଗୋଟିକ ଯାକ ତୁଳସୀ’ ହେଉଛନ୍ତି । ଯେଉଁ ଲୋକେ ପ୍ରଶ୍ନ ପଚାରିବେ ବା ଜବାବ ମାଗିବେ, ତାଙ୍କ ପାଖ ମାଡ଼ିବାକୁ ନାହିଁ, ଅଥଚ ଯେଉଁ ପାମର ସାଧାରଣ ଓ ଟୋକାଟାକିଳିଆ ଖାଲି ‘ହୋ’ରେ ମାତି ହରିବୋଲ ହୁଳହୁଳୀ ଦେବେ, ପଟୁଆର କରିବେ, ତାଙ୍କରି ପାଖରେ ଆସ୍ଫାଳନ, ମସ୍ତକ ତାଡ଼ନ, ଗର୍ଜନ ଓ କ୍ରନ୍ଦନ ଚାଲୁଛି । ଏହି କୁହୁକରେ ଦେଶବାସୀ କେତେ ଦିନଯାଏ ଭୁଲିବେ ? ଏହି କୁହୁକରେ ସରକାର କେତେ ଦିନେ ରାଇଜ ଛାଡ଼ି ପଳେଇବେ ? ଲାଭ ମଧ୍ୟରେ ଏତିକି ଯେ, କେତେ ସହସ୍ର ଲୋକଙ୍କର ଦାନାପାଣି ଯିବ ଓ ସେମାନେ ବେରୋଜଗାର ହେଲେ ଦେଶରେ ଅଶାନ୍ତି ବଢ଼ିବ । ଦେଶରେ ଦେଶୀ ଲୁଗା ଚଳୁ, ଲୋକେ ନିଶା ଛାଡ଼ନ୍ତୁ, ମାମଲା ମକଦ୍ଦମାରେ ସର୍ବସ୍ୱାନ୍ତ ନ ହୁଅନ୍ତୁ, ଏ ସବୁ ତ ଭଲ କଥା କିନ୍ତୁ ଦେଶୀ ଲୁଗା ସେପ୍ଟେମ୍ବର ୩୦ ତାରିଖ ମଧ୍ୟରେ ଚଳିଲେ ଓ ଘରେ ଘରେ ଅରଟରେ ସୂତା କଟା ହେଲେ ସ୍ୱରାଜ କିପରି ମିଳିଯିବ, ତାହା ଆମେ ମାଇପେଗୁଡ଼ାକ ସମଝିପାରୁ ନାହୁଁ । ସମସ୍ତେ ତ ଅରଟ ଚଳେଇବେ, ସ୍ୱରାଜ ଚଳେଇବ କିଏରେ ବାପା ? ବେଳେବେଳେ ମଧ୍ୟ ସରକାରଙ୍କ ରୀତିନୀତି କୋ-ଅପରେଟରଙ୍କର ରୀତିନୀତି ଠଉରାଇ ହେଉ ନାହିଁ । ବର୍ତ୍ତମାନ ରାମ ରାଜା ହୋଇ ନାହିଁ କି ଗାନ୍ଧି ମହାରାଜଙ୍କ ଅମଳରେ ରାମ ରାଜ୍ୟ ହେବ ନାହିଁ । ଏ କଥା ନିଶ୍ଚିତ । ସରକାରୀ ହାକିମଙ୍କର ଏ

ସରକାରଙ୍କର କାର୍ଯ୍ୟକଳାପ ଦେଖି ବେଳେବେଳେ ମନରେ ନୈରାଶ୍ୟ ଓ ରାଗ ଓ ଅଭିମାନ ଘୋଟିଯାଏ । ସରକାରଙ୍କର ଓ ବିଶେଷତଃ ଗ୍ରାମଦେବତାଙ୍କର ବେଳେବେଳେ ଯେଉଁ କରାମତ ଜାହେର ହୋଇଉଠେ, ସେଥିରୁ ତ୍ରାହି ତ୍ରାହି ଡାକ ପକାଇ ରାଇଜ ଛାଡ଼ି ପଳାଇ ଯିବାକୁ ମନ ହୁଏ; କିନ୍ତୁ ଆମେ ମାଇପି ଜାତି "କୁମ୍ଭାର ଘର ବୋହୂ, ଝାଟିକି ନ ଗଲେ ମାଟିକୁ ଯାଉ; ଯିବୁଁ କୁଆଡ଼େ ? ତୁମେ ଅଣ୍ଡିରିପୁଅ ଲୁଚାକ ତ ଆମକୁ କରଛଡ଼ା କରିବ ନାହିଁ" ଆମେ ନ ହେଲେ ତୁମର ସଂସାର ଘଡ଼ିଏ ସୁଦ୍ଧା ଚଳିବ ନାହିଁ, ଅଥଚ ଏକଥା ତୁମେ ମୁହଁରେ ନ ମାନି ଆମକୁ ଜବତ କରି ଆମରି ହାତରେ ଅଳିଆଗଦା ସଫା କରାଉଛ ଓ କରାଇବ । ଅଥଚ ମୁହଁରେ କହିବ 'ସ୍ତ୍ରୀ ବୁଦ୍ଧି ପ୍ରଳୟଙ୍କରୀ' । ଆମେ କହୁଁ 'ସମସ୍ତେ ପ୍ରଳୟଙ୍କରୀ' । ତୁମର ପାଟିରେ ବାଡ଼ବତା ନାହିଁ କିନ୍ତୁ ଆମ ତିରିଲାମାନଙ୍କ ମୁହଁଟିମାନ ସିଲେଇ କରି ଦେଇଛ । ଯେବେ ତୁମେମାନେ ଚାହୁଁଛ ଯେ, ସରକାର ତୁମ ମୁହଁରୁ ସିଲେଇ ଫିଟେଇ ଦିଅନ୍ତୁ, ତେବେ ତୁମେ ଆମ ଜାତିଙ୍କଠାରେ ଆବହମାନ କାଳରୁ ପକାଇଦେବ ଘଟାଟୋପ । ଅନ୍ଧପୋଟଳିମାନ ଫିଟାଇଦିଅ, ଏକାଥରକେ ନଟ ଛିଣ୍ଡିଯାଉ । 'ନନାଙ୍କୁ ପ୍ରସନ୍ନ' କରିବା ସଙ୍ଗେ ସଙ୍ଗେ 'ନାନୀଙ୍କୁ ପ୍ରସନ୍ନ' କରିଦିଅ ଯେ, ସମସ୍ତେ ଗଙ୍ଗାସ୍ନାନ ଫଳ ପାଇବ ।

ଉତ୍କଳ ସାହିତ୍ୟ/୨୫ଶ ଭାଗ/୫ମ ସଂଖ୍ୟା ଭାଦ୍ର/୧୩୨୯ ସାଲ ।

## ।। ପଞ୍ଚମ ପୁଡ଼ା ।।

ଆରେ ବାପାମାନେ !

ବର୍ତ୍ତମାନ ଭାରତର ଅବଳା ଜାତି ବଳୁଆ ମନୁଷ୍ୟ ଜାତିଙ୍କ ସଙ୍ଗେ ରାଜନୀତିକ କ୍ଷେତ୍ର ଓ ରାଜକୀୟ କ୍ଷେତ୍ରରେ ସମାନ ଅଧିକାର ପାଇବେ ବୋଲି ତମାମ ଭାରତରେ ଚହଳ ପଡ଼ି ଯାଇଅଛି । କୁମାରୀ ସୋରାବଜୀ ଓକିଲାତି ପାସ୍ କରି କୋଟ୍ ଅଫ୍ ଉଆର୍ଡ଼ସ ଇଲାକାର ପରଦାନସିନ ସ୍ତ୍ରୀଲୋକମାନଙ୍କର ପରାମର୍ଶଦାତ୍ରୀ ରୂପେ ସରକାରଙ୍କଠାରୁ ଦରମା ପାଇ ଆଉ କଚେରିରେ ଓକିଲାତି କଲେ ନାହିଁ । ଏବେ ସେ କାର୍ଯ୍ୟରୁ ଅବସର ନେଇ ଓକିଲାତି ପରୀକ୍ଷାରେ ପୂର୍ବରୁ ପାସ୍ କରିଥିବାରୁ କଚେରିରେ ଓକିଲାତି କରିବା ପାଇଁ କଲିକତା ହାଇକୋର୍ଟକୁ ଛାଡ଼ପତ୍ର (ଲାଇସେନ୍‌ସ) ମାଗିଲେ । କିନ୍ତୁ କଲିକତା ହାଇକୋର୍ଟର ନାରୀ ଭାଗ୍ୟ ବିଧାତାମାନେ ତାଙ୍କ ପ୍ରାର୍ଥନା ନାମଞ୍ଜୁର କରି ତାଙ୍କୁ କଚେରିରେ ଓକିଲାତି କରିବା ନିମନ୍ତେ ସନନ୍ଦ ଦେଲେ ନାହିଁ । କିନ୍ତୁ ସେ ଏଥିରେ ନ ହଟି ଆଲାହାବାଦ ହାଇକୋର୍ଟଙ୍କ ଅଧୀନରେ ଓକିଲାତି କରିବେ ବୋଲି ଆଲାହାବାଦ ହାଇକୋର୍ଟକୁ ଛାଡ଼ପତ୍ର ପାଇବା ସକାଶେ ପ୍ରାର୍ଥନା କଲେ ଓ ଭାଗ୍ୟକ୍ରମେ ଆଲାହାବାଦ ହାଇକୋର୍ଟର ପୁରୁଷ ବିଚାରପତିମାନେ ତାଙ୍କୁ ଆଲାହାବାଦ ଇଲାକାର

ଅଦାଲତମାନଙ୍କରେ ଓକିଲାତି କରିବାକୁ ସନନ୍ଦ ଦେଇଅଛନ୍ତି । ଏଣେ କିନ୍ତୁ ଆମ ଦେଶବାସୀ ଓ ସରକାରଙ୍କ ମନ୍ତ୍ରୀ ମଧୁ ବାରିଷ୍ଟରଙ୍କ ପୋଷିଆ ଝିଅଙ୍କ ସାନଭଉଣୀ ଶ୍ରୀମତୀ କୁମାରୀ ସୁଧାଂଶୁବାଳା ହାଜରା ଓକିଲାତି ପାସ୍ କରି ଓକିଲାତି କରିବାର ସନନ୍ଦ ପାଇବା ସକାଶେ ପାଟଣା ହାଇକୋର୍ଟରେ ପ୍ରାର୍ଥନା କରି ବିଫଳ ମନୋରଥ ହୋଇ ଅଛନ୍ତି । ବଙ୍ଗଦେଶରେ, ବୋମ୍ବେରେ, ପାଟଣାରେ ଶିକ୍ଷିତା ସ୍ତ୍ରୀଲୋକମାନେ ପୁରୁଷମାନଙ୍କ ସଙ୍ଗେ ସମାନ ଅଧିକାର ରାଜନୀତିକ କ୍ଷେତ୍ରରେ ପାଇବା ଲାଗି ତୁମୁଳ ଆନ୍ଦୋଳନ ଲଗାଇଅଛନ୍ତି । ଏହା ଆମ ତିରିଲା ଜାତିଙ୍କ ପକ୍ଷରେ ଶୁଭ କି ଅଶୁଭ ତାହା ଭଗବାନ୍‌ଙ୍କୁ ଜଣା, କିନ୍ତୁ ଅଣ୍ଡିରିପୁଅମାନେ ଆମକୁ ଏ ଅଧିକାର ଦେବା ଲାଗି ଏତେ ଇତସ୍ତତଃ କରୁଅଛନ୍ତି କିଆଁ ? ତୁମ୍ଭମାନଙ୍କର ପ୍ରଥମ ଭୟ ଯେ, ଆମ୍ଭେମାନେ ସମାନ ଅଧିକାର ପାଇଲେ ତୁମ୍ଭମାନଙ୍କର ହାତସୁଖ, ପାଟିସୁଖ, ମୁହଁସୁଖ, ଦିହସୁଖ ଆଦି କେତେଗୁଡ଼ିଏ ସୁଖରେ ଧୂଳି ପଡ଼ିଯିବ । 'କଲମତରାସ' ଛୁରିକୁ କଲମ କଟାରେ ବ୍ୟବହାର ନ କରି ସେଥିରେ ଦାନ୍ତକାଠି କାଟିବାକୁ ବସିଲେ ସେହି ସୁକୁମାର ଛୁରିର ଦାଢ଼ ଯେଉଁପରି ଖରାପ ହୋଇଯିବ ବୋଲି ଛୁରିର ଅଧିକାରୀ ଚିତ୍କାର କରିଉଠନ୍ତି ଓ ସେ ଛୁରିରେ ଦାନ୍ତକାଠି କାଟିବାକୁ ନ ଦିଅନ୍ତି, ସେହିପରି ତୁମ ପୁରୁଷପୁଅଙ୍କ ସୁକୁମାରିଆ କାମରେ (ଗୃହଧନ୍ଦା, ତୁମ ଗୋଠବୁଦ୍ଧି, ତୁମ ପାକଶାଳାର ଅଳଙ୍କରଣ, ତୁମ ରାଜତ୍ୱରେ ଚିରସ୍ଥାୟୀ ସ୍ୱତ୍ୱରୂପ ନିଗୂଢ଼ ଦଖଲୀ ସ୍ୱତ୍ୱ, ତୁମ ଅଇଁଠା ଉଠା, ତୁମ ସନ୍ତାନ ପରିଚର୍ଯ୍ୟା ଇତ୍ୟାଦି) ଆବହମାନକାଳରୁ ଆଜିପର୍ଯ୍ୟନ୍ତ ବ୍ୟବହୃତ ଆମ ଜାତି ଦ୍ୱାରା ଯେବେ ଦାଣ୍ଡ ମାମଲତ ରୂପ ଅଖାଡୁଆ କାର୍ଯ୍ୟ କରାଯିବ, ତେବେ ତୁମ କଲମକଟା ପାଇଁ ଆବଶ୍ୟକ ଆମର କୋମଳ ଦାଢ଼ତକ ଦନ୍ତଡ଼ା ହୋଇଯିବ ବୋଲି ଆମର ସୁକୁମାର ଅଙ୍ଗକୁ ତୁମ୍ଭେମାନେ ଜଗିବାରେ ବ୍ୟସ୍ତ ହୋଇ ଆମକୁ ଦାଣ୍ଡକୁ ବାହାର କରିଦେଉ ନାହଁ । ତୁମର ଯୁକ୍ତିକୁ ତନ୍ନ ତନ୍ନ ଉଆରିଜା କଲେ ଦେଖାଯାଏ ଯେ, ତୁମ୍ଭେମାନେ ଆମ ଜାତିର ମଙ୍ଗଳ ପାଇଁ ଆମ ସୁକୁମାରିଆ ଅଙ୍ଗକୁ କଅଁଳିଆ ରଖିବା ପାଇଁ, ଆମକୁ ଖରାବର୍ଷାରୁ ଆଢୁଆଳରେ ରଖିବାପାଇଁ, ଘଣ୍ଟ ଘୋଡ଼ାଇ ଆମ ଆଗଗୋଡ଼ରେ କଣ୍ଟା ନ ଭୁକାଇବା ପାଇଁ ଆମକୁ ଦାଣ୍ଡକୁ ବାହାରିବାକୁ ହେବାକୁ ନାରାଜ ହେଉଅଛ । ତୁମର ସବୁବେଳେ ଭୟ ଯେ, କାଳେ ଆମେ ମାଇପେଗୁଡ଼ାକ 'ଅଣ୍ଡିରୀଚଣ୍ଡୀ' ହୋଇଯିବୁଁ, ଅମାନିଆ ହୋଇଯିବୁଁ, ଅଣମାଇପିଆ ହୋଇଯିବୁଁ । କିନ୍ତୁ ତୁମ୍ଭମାନଙ୍କ ଯୁକ୍ତିଗୁଡ଼ାକ ବିଶ୍ଳେଷଣ କଲେ (ଫଡ଼ାଫଡ଼ି) ଦେଖାଯିବ ଯେ, ଆମ ଜାତିଟା ସିଆଣିଆ ହୋଇଗଲେ, ଆମଠେଇଁ ଖରା ବର୍ଷା ଓ ଦାଣ୍ଡହାଉଆ ବାଜିଗଲେ, ଆମର କରାମତ ଜାହେର ହୋଇଗଲେ, ତୁମ୍ଭେମାନେ ଆମ୍ଭମାନଙ୍କ ସଙ୍ଗେ ପ୍ରକାଶ୍ୟ ପ୍ରତିଦ୍ୱନ୍ଦ୍ୱିତାରେ କାଳେ ହଟିଯିବ, ଏହି ଭୟରେ ତୁମକୁ ଦିନରାତି ନିଦ ନାହିଁ । ତୁମ୍ଭମାନଙ୍କର ଆମ୍ଭମାନଙ୍କ ପ୍ରତି ଏତେ ନୀଚ ଅବିଶ୍ୱାସ ଯେ, ତୁମ୍ଭେମାନେ ବିଚାରୁଛ ଯେ, ଆମେ ସାମଲା (wig) ଓ ଘାଗରା (Gown) ପିନ୍ଧି ହାକିମଙ୍କ

ଆଗରେ ଆମ ମୁହଁ ଦେଖାଇଲା ମାତ୍ରକେ ହାକିମଙ୍କ କଲିଜା ମଧ୍ୟସ୍ଥ ଲହୁଣିତକ ପିଚିକିଯିବ ଓ ହାକିମଗୁଡ଼ାକ ଆମ ମୁହଁକୁ, ଆମ ଚେହେରାକୁ, ଆମ ସୁନ୍ଥାକୁ, ଆମ ଭୂଲତାକୁ ଓ ଆମ ମାଙ୍ଗକୁ ଦେଖି ଆମ ମକ୍କେଲଙ୍କ ମକଦ୍ଦମାକୁ ଠୋ ଠୋ ଡିଗ୍ରୀ କରିଦେବ । ଆମକୁ ମିସଲରେ ଦେଖିଲା ମାତ୍ରକେ ଧର୍ମାବତାରମାନେ ବିବେକ, ନ୍ୟାୟ, ଧର୍ମ, ବିଦ୍ୟା, ବୁଦ୍ଧି ସବୁ ଭୁଲିଯାଇ ଆମରି ଆଡ଼କୁ କଦଳୀଗଛ ଭଳି ଲଟକିନି ନଇଁ ପଡ଼ିବେ । ଯେଉଁ ଜାତିର ସ୍ୱାର୍ଥତ୍ୟାଗ, ଆତ୍ମନିରୋଧ (Self-denial) ଦୁଃଖ ସହିଷ୍ଣୁତା ଓ ଧୈର୍ଯ୍ୟ ଯୋଗୁଁ ତୁମ୍ଭେମାନେ ଜନ୍ମ ହୋଇଅଛ ଓ ବଂଶରକ୍ଷା କରିବାକୁ ସମର୍ଥ ହୋଇଅଛ ଓ ଜନ୍ମଠାରୁ ମରଣ ପର୍ଯ୍ୟନ୍ତ ମାତାରୂପେ, ଭଗ୍ନୀରୂପେ, ଭାର୍ଯ୍ୟାରୂପେ, କନ୍ୟାରୂପେ ଯେଉଁମାନଙ୍କ କୋମଳ ଅଙ୍ଗ ଓ କୋମଳତର ସ୍ନେହ ନ ଥିଲେ ତୁମ୍ଭେମାନେ ଏ ପୃଥିବୀରେ ବଞ୍ଚିଥାନ୍ତ କି ନାହିଁ ସନ୍ଦେହ, ସେ ଜାତି ପ୍ରତି ଏତେ ନୀଚ ଅବିଶ୍ୱାସ କରିବା ଦ୍ୱାରା ତୁମ୍ଭେମାନେ କି ନିମକହାରାମ ଅପରାଧ କରୁଅଛ, ତାହା ତୁମ୍ଭେମାନେ ହୃଦୟଙ୍ଗମ କରିପାରୁଥିଲେ ସ୍ତ୍ରୀ ଜାତିକୁ ସମାନ ଅଧିକାର ଦେବାକୁ କଦାପି କୁଣ୍ଠିତ ହୁଅନ୍ତ ନାହିଁ । କିନ୍ତୁ ତୁମ୍ଭେମାନେ ଘୋର ସ୍ୱାର୍ଥାନ୍ଧ ଓ ଆତ୍ମମ୍ଭରୀ । ଆମ ଯୋଗୁଁ ତୁମର ସଂସାର, ଆମ ଯୋଗୁଁ ତୁମର ବଂଶ, ଆମ ଲାଗି ତୁମର ସୁଖ, ଆମ ଲାଗି ତୁମର ଶାନ୍ତି ଓ ଆମ ଲାଗି ତୁମେ ଦେବଋଣ, ପିତୃଋଣ ଓ ମନୁଷ୍ୟଋଣରୁ ମୁକ୍ତ ହେଉଅଛ । କିନ୍ତୁ ତୁମ୍ଭେମାନେ ଚାହୁଁଅଛ ଯେ ଆମେ ଶାଳ ଧରି ମଶାଲ ତଳ ଅନ୍ଧାରରେ ଚିରକାଳ ଜଳକା ବନିଥିବୁଁ ଓ ତୁମ୍ଭେମାନେ ଆମ୍ଭମାନଙ୍କ ଧୃତ ମଶାଲର ଆଲୁଅରେ ଜଗଦ୍‌ଜୟ କରି ବାନା ଉଡ଼ାଇ ବାହାଦୁରି ନେଉଥିବ ଓ ଆମ୍ଭମାନଙ୍କୁ ସବୁକାଳେ ତୁମରି ହାତତଳିଆ, ପଡ଼ିଖିଆ, ଅଙ୍ଗଲଗା ସେବାଦାସୀ କରି ରଖିବ । ହଉରେ ବାପା ଭାଇମାନେ, ଆମ୍ଭେମାନେ ଆପଣା ମନକୁ ବୁଝାଉ ଯେ,-

''ରହିଯାରେ ମନ ରହିଯା' ଖଣ୍ଡିଆ ପଥୁରି, ତାଟିକିଲା ମାଡ଼ ସହିଯିବୁ କେତେ ସହିଯା ।''

ଆମ୍ଭେମାନେ ଦାଣ୍ଡକୁ ବାହାରିଲେ, ଆମ ଆଖିରୁ ଅନ୍ଧ ପୋଟଳିମାନ ଫିଟିଗଲେ, ଆମ ଗୋଡ଼ରୁ ତୁମ କୁହୁକ-ଶିକୁଳି ହୁଗୁଳିଗଲେ, ଆଜିଯାକେ ତୁମ୍ଭେମାନେ ଦାଣ୍ଡକୁ ବାହାରି ଯେଉଁ ସବୁ ବୀଭତ୍ସ ତାଣ୍ଡବମାନ ଲଗାଇଅଛ, ଧର୍ମର, ସତ୍ୟର, ସଭ୍ୟତାର, ନ୍ୟାୟର ଦୋହି ଦେଇ ତୁମ ଜାତି ଯେତେ ଯେତେ ଅନୀତିମାନ କରି ଆସୁଅଛ, ତାହା ଆମ ଆଖିରୁ ଆଉ ଲୁଚି ରହିବ ନାହିଁ ଓ ସେସବୁ ଦେଖି ଆମ୍ଭେମାନେ ତୁମ୍ଭ ଜାତିକୁ ଘୃଣା କରିବୁଁ । ବର୍ତ୍ତମାନ ତୁମ୍ଭେମାନେ ଦାଣ୍ଡରେ ହଲାପଟା ହୋଇ କୋରଡ଼ା ମାଡ଼ ଖାଇ ଏଣେ ଆମକୁ ଆସି ଘର କଣରେ ତୁମ କରାମତିର ଯେଉଁ ସବୁ ତାଲିକା ଦେଉଅଛ ଓ ଯେଉଁସବୁ ବୀରତ୍ୱର ଆସ୍ଫାଳନ କରୁଅଛ, ସେସବୁ ମିଛ ବାଲିଙ୍ଗି ଆଉ ରହିବ ନାହିଁ । ଏହି ଭୟ ତୁମ୍ଭମାନଙ୍କ ମନରେ ଦିନରାତି ନାଚୁଅଛି ଓ ତୁମ ଜାତିକୁ ନଚାଉଛି । ଏଥିପାଇଁ ରାଜନୀତି, ସମାଜ, ରାଜଦ୍ୱାର, ବ୍ୟବସାୟ, ଭୋଟ, ମେମ୍ବର, ସଭାସମିତି, ସାହିତ୍ୟ, ବିଜ୍ଞାନ, କର୍ମ, ଧର୍ମ ସବୁ କ୍ଷେତ୍ରରେ ଆମ ପାଇଁ ବନବନା କଣ୍ଟାବାଡ଼ ବୁଜୁଅଛ । ତୁମେ ସେହି

ବାଟରେ ଗଲାବେଳେ ସେ ବାଟଟିମାନ ଖୋଲା, କିନ୍ତୁ ଆମେ ସେ ବାଟରେ ଯିବାକୁ ମନ କଲାମାତ୍ରକେ ସେ ବାଟରେ ନାଗଫେଣିଆ ଓ କାନକୋଳି କଣ୍ଟା ବାଡ଼ ବୁଜା ଯାଉଅଛି । ଦେଖିବରେ ବାପାମାନେ । ସେହି ବାଡ଼ରେ ତୁମ୍ଭେମାନେ ଆମ ପାଇଁ ଯେଉଁ କଣ୍ଟା ବୁଜୁଅଛ, ତୁମ ପାଇଁ ସେ ବାଡ଼ ମେଲା କଲାବେଳେ ସେହି କଣ୍ଟା ଦିଓଟି ପୁଞ୍ଜିଏ ତୁମ ଅଜ୍ଞାତରେ ଓ ଅଦେଖାନ୍ତରେ ବାଟରେ ଖସିପଡ଼ି ତୁମେ ସେହି ବାଟେ ଗଲାବେଳେ ତୁମ ଗୋଡ଼ରେ ନିଶ୍ଚେ ଭୁସିହୋଇ ତୁମ୍ଭମାନଙ୍କୁ ଖଣ୍ଡିଆଖାବରା କରି ପକାଇବ । ତୁମର ଏ ଟହ ଟହ ହସ କେଉଁଆଡ଼େ ଉଭେଇଯିବ । ଯେବେ ସୁବୁଦ୍ଧି ଅଛି, ତେବେ ଆମର ପାର୍ଥିବ ଅଧିକାରରୁ ଆମକୁ ବଞ୍ଚିତ କର ନାହିଁ । ଆମେ ଯେଉଁ କାର୍ଯ୍ୟ ପାଇଁ ଅକ୍ଷମ ବୋଲି ସରଜମିନରେ ପ୍ରମାଣିତ ହେବୁଁ, ବଳେ ବଳେ ଆମେ ଆମର ବଳ ଠଉରାଇଲେ ଆମେ ଯେଉଁ କାର୍ଯ୍ୟକୁ ନ ପାରିବୁଁ, ସେ କାର୍ଯ୍ୟରୁ ବାହାର ହୋଇଯିବୁଁ ଓ ସେହି କାର୍ଯ୍ୟ କରିବାକୁ ତୁମ୍ଭମାନଙ୍କୁ ଆଦର କରି, ଅଭ୍ୟର୍ଥନା କରି, ନିମନ୍ତ୍ରଣ କରି ତୁମ୍ଭମାନଙ୍କ ମୁଣ୍ଡରେ ବଳେ ଶିରୋପା ବାନ୍ଧିଦେବୁଁ ।

ଏ କଥା ନ କରିବା ପର୍ଯ୍ୟନ୍ତ, ଏ ବାଟରେ ନ ଯିବା ପର୍ଯ୍ୟନ୍ତ ଯୁଗ ଯୁଗାନ୍ତରେ ତୁମ୍ଭେମାନେ ସ୍ୱରାଜ୍ୟ ସ୍ୱରାଜ୍ୟ ବୋଲି ଦଶଦିଗ ଫଟାଇଲେ ଈଶ୍ୱର କଦାପି ତୁମ ଡାକ ଶୁଣିବେ ନାହିଁ- ଈଶ୍ୱର ତୁମ ହାତରେ ବର୍ତ୍ତମାନ ଯେଉଁ ପ୍ରାଣୀ, ଯେଉଁ ଅଧିକାରମାନଙ୍କୁ ସମର୍ପି ଅଛନ୍ତି, ତାଙ୍କ ପ୍ରତି ଆଗେ ନ୍ୟାୟ ବୁଝାମଣା କର, ତେବେ ଯାଇଁ ତୁମକୁ ବେଶି ଅଧିକାର ମିଳିବ । ନଇଲେ କାନ୍ଦି କାନ୍ଦି ଲୋତରା କୋତରା ହୋଇଯିବ । ତୁମର ପ୍ରାର୍ଥନା କଦାପି ଭଗବାନ୍‌ଙ୍କର ଶଙ୍ଖନାଭି ମଣ୍ଡଳ ପର୍ଯ୍ୟନ୍ତ ପହଞ୍ଚିବ ନାହିଁ । ଆଜି ଏତିକି ଥାଉରେ ବାପା ।

ଉତ୍କଳ ସାହିତ୍ୟ/୨୫ଶ ଭାଗ/୭ମ ସଂଖ୍ୟା କାର୍ତ୍ତିକ/୧୩୨୯ ସାଲ ।

## ।। ଷଷ୍ଠ ପୁଡ଼ା ।।

ହେ ପୁରୁଷପୁଙ୍ଗବମାନେ, ତୁମ୍ଭେମାନେ ଆବହମାନ କାଳରୁ ଆମ୍ଭମାନଙ୍କ ପାଇଁ ଯେଉଁ ବିଧି ବିଧାନ, ଆଇନ୍ କାନୁନ୍, କାଇଦା କଟକଣା, ବାଡ଼ ବତା ସାମାଜିକ ନିଷେଧ ପ୍ରତିଷେଧମାନ ଗଢ଼ି ଆସୁଅଛ, ସେଥିରେ ଅଧିକାଂଶ ସ୍ଥଳରେ ଆମେ ମାଇପିଜାତି ଖଣ୍ଡିଆ, ଖାବରା, ଛୋଟୀ, କେମ୍ପୀ ହେଉଅଛୁଁ- ଏ ବିଷୟ ମୁଁ ପୂର୍ବରୁ ତୁମ୍ଭମାନଙ୍କୁ କହିଅଛି । କିନ୍ତୁ ଆଉ ଗୋଟିଏ ବିଧି ନିର୍ବନ୍ଧ ଦେଖି ଆମକୁ ହସ ମାଡୁଅଛି । ତୁମ୍ଭେମାନେ ତୁମ୍ଭରିମାନଙ୍କ ପାଇଁ ସମାଜରେ ଯେଉଁ ନିୟମମାନ ବାନ୍ଧିଅଛ, ସେହି ନିୟମମାନଙ୍କ ଯୋଗୁଁ ଅନେକ ସମୟରେ ତୁମ୍ଭେମାନେ ନିଜେ ଖଣ୍ଡିଆ ଖାବରା ହେଉଅଛ । ତଥାପି ତୁମ୍ଭେମାନେ ଚେତୁ ନାହଁ । ଆଜି ସେହିପରି କେତେଗୁଡ଼ିଏ ହଂସାଉଡ଼ା ନିୟମକଥା ଏଠାରେ କହିବି । ଏ ସବୁ ଆମ ଦେଶ ଓ ସମାଜରେ ଚଳୁଅଛି । ମୁଁ ଅନ୍ୟ ସମାଜ ବା

ଅନ୍ୟ ଦେଶ ବା ଅନ୍ୟ ଜାତି କଥା କହୁ ନାହିଁ । ''ସୁଖ କହିବି କି ଦୁଃଖ କହିବି, ଯାହା ଅଙ୍ଗେ ନିଭେଇଛି ତାହା କହିବି ?''

ଦେଖ ଯେ - ବିବାହ, ଉପନୟନ ଆଦି 'ନିମିତ୍ୟ' ଉପଲକ୍ଷରେ ଅଯଥା ବ୍ୟୟ କରି କେତେ ଭଦ୍ର ପରିବାର ସର୍ବସ୍ୱାନ୍ତ ହେଲେଣି । ମାନ୍ଧାତାଙ୍କ ଅମଳର ବିଧି ରକ୍ଷା କରିବାକୁ ଯାଇ, ଆଡ଼ମ୍ବର କରିବାକୁ ଯାଇ, ବରକନ୍ୟାଙ୍କ ପାଇଁ ଜରସମନ (ପଣ ବା ଯୌତୁକ) ଦେଇ କେତେ ବ୍ୟକ୍ତି ଋଣଗ୍ରସ୍ତ ହେଉଅଛି । ଆପଣା ଘରଡିହ ଓ ଅବାସ୍ତବ ଆୟ ଅଳଙ୍କାର ବନ୍ଧକ ଦେଉଅଛ ଓ ଶେଷକୁ ସେଇ ଋଣ ଜାଲରେ ଦାଣ୍ଡର ଭିକାରି ହେଉଅଛ, ଅଥଚ ଆପଣା ଓଜନକୁ ବିଚାରି ବ୍ୟୟସଙ୍କୋଚର ବ୍ୟବସ୍ଥା କରିବାକୁ ତୁମ୍ଭମାନଙ୍କୁ ବୁଦ୍ଧି ଆସୁ ନାହିଁ । ତୁମ୍ଭର କନ୍ୟାଟିଏ ଅଛି । ସେ କନ୍ୟା ଦାୟରୁ ରକ୍ଷା ପାଇବାକୁ, କନ୍ୟା ଦାନର ଫଳ ପରଲୋକରେ ଭୋଗ କରିବାକୁ ତୁମ୍ଭେ ତୁମ୍ଭର ଓ ତୁମ୍ଭ ବଂଶଧରଙ୍କର ଐହିକ ସୁଖ ଓ ସ୍ୱଚ୍ଛଳତାରେ ଜଳାଞ୍ଜଳି ଦେଇ ଆପଣା ଶକ୍ତିରୁ ବଳି ଗୁଡ଼ିଏ ବ୍ୟୟ କରିବାକୁ ଯାଇ ସେ ବ୍ୟୟ ସଂସ୍ଥାନର ଅନ୍ୟ ଉପାୟ ନ ଥିବାରୁ ମହାଜନଙ୍କ ଦ୍ୱାରସ୍ଥ ହୋଇ ଘରବାଡ଼ି ପର୍ଯ୍ୟନ୍ତ ବନ୍ଧକ ଦେଇ ଦିନେ ଦୁଇଦିନ ବିବାହର ଆୟୋଜନ, ବାଣ, ନିଶାଣ, ଫୁଲ, ଫାନୁସ୍‌, ସାଆନ୍ତ ନିମନ୍ତ୍ରଣ ଓ ମର୍ଯ୍ୟାଦା, ବରଯାତ୍ରୀ ବିଦାକି, ଭାଇ ବେଭାର, ନାଚଗାଉଣା ଆଦି ଆଡ଼ମ୍ବରରେ ମାତି ସାତମଙ୍ଗଳା ବାସି ଠାରୁ ଲଗାଏତ କୋକେଇ ବନ୍ଧା ହେବା ପର୍ଯ୍ୟନ୍ତ ଅର୍ଥାତ୍‌ ମାତୃ ଶଯ୍ୟାଠାରୁ ମୃତ୍ୟୁ ଶଯ୍ୟା ପର୍ଯ୍ୟନ୍ତ, ମୁଣ୍ଡଝାଳ ଗୋଡ଼ରେ ମାରି, କୁକୁର ଧାଉଡ଼ି, ଗଧ ଭୋଜନ, ଉପାୟ ଅପାୟ କରି କରି ସେଂ ଋଣରୁ ମୁକ୍ତ ହୋଇପାରିବ ନାହିଁ । ଅଥଚ ଯେ ପଚାରୁଛି - ''କିହୋ ଆପଣେ ! ଏତେ ସଟାଟୋପ ନ କରି ସଂକ୍ଷେପରେ କରି ଦେଉ ନାହଁ ?'' ତାକୁ ଉତ୍ତର ଦେଉଅଛ - ''ମୋ ବଂଶ ଗୌରବ ଲୋପ ହୋଇଯିବ, ମତେ ଲୋକେ ଦି' କଡ଼ାର କରିଦେବେ । ମୁଁ ଦାଣ୍ଡରେ ମୁଣ୍ଡ ଟେକି ଚାଲିପାରିବି ନାହିଁ ।'' ଆଚ୍ଛା, ଯେତେବେଳେ ପାଟି ସୁଖ ପେଟସୁଖର ଅଢ଼େଇଦିନ ବିତିଯାଇ ପିଠି ଦୁଃଖର ଅଢ଼େଇ ବର୍ଷ ସମୟ ଆସି ପହଞ୍ଚେ, ଅର୍ଥାତ୍‌ ବିବାହ ଉତ୍ସବରେ ତୁମ ଦିହୁଡ଼ିରେ ଡେମ୍ଫ ନାଗରା ଓ ଡମ୍ବରୁ ବାଜା ଓ ନହବତ ଯେଉଁଠାରେ ବାଜୁଥିଲା, କାଲି ମହାଜନ ନାଲିସ୍‌ ଡିଗ୍ରୀ, ଡିଗ୍ରୀ ଜାରି ଓଗ୍ର କରି ସେହି ଦୁଆରେ ନିଲାମ ଇସ୍ତାହାର ଜାରି କରିବାକୁ ନାଗରା (ମାନାଦି) ବଜାଏ, ସେତେବେଳେ ତୁମ ବଂଶର ଟେକ ବଢ଼େନା କମେ, ଏ କଥା ଭଲା ଟିକିଏ ଭାବିବାକୁ ତୁମ୍ଭମାନଙ୍କୁ ସମୟ ହେଉ ନାହିଁ । ଆମ ସମାଜରେ ଉତ୍ସବାଦିର ଆଡ଼ମ୍ବର ବାଜା, ବାଣ, ନାଚ, ପଞ୍ଚଲାଇଟ୍‌, ରୋଶନାଇରେ ଯେତେ ବୃଥା ବ୍ୟୟ ହେଉଅଛି ସେହିଲାଗି କେତେ ଘରୁଆ ଖାନଦାନ ପରିବାର ସର୍ବସ୍ୱାନ୍ତ ହେଉଅଛନ୍ତି, ତାହା ଥରେ ଭାବିଲେ ହୃଦୟ କାନ୍ଦିଉଠେ ।

ତାପରେ ଆଧୁନିକ ଶିକ୍ଷିତ ସହରବାସୀମାନଙ୍କର ବିବାହ ଆଦି ଉତ୍ସବରେ ଯେଉଁ ନିମନ୍ତ୍ରଣ ଓ ବରଯାତ୍ରୀ ବିଧିମାନ ତୁମ୍ଭେମାନେ ସୃଷ୍ଟି କରୁଅଛ, ତାହା ବାହାରର ଲୋକ

ଦେଖିଲେ ଆଚମ୍ଭିତ ହେବେ । ତୁମେ ମଫସଲବାସୀ, ବୀର୍ଯ୍ୟବନ୍ଧନରେ ସହରରେ ସପରିବାର ବାସ କରୁଅଛ । ତୁମର କୌଣସି ପାରିବାରିକ ଉତ୍ସବ ଅନୁଷ୍ଠିତ ହେଲେ ଯେଉଁ ନିମନ୍ତ୍ରଣପତ୍ରର ହିଡ଼ିକ ଉଠେ, ତାହା ଗୋଟିଏ ହାସ୍ୟାସ୍ପଦ ଓ କୌତୁକମୟ ବ୍ୟାପାର । ତୁମେ ଜାତିରେ କରଣ, ଅଥଚ ତୁମ ବରଯାତ୍ରୀ ଦଳ ମଧ୍ୟରେ ତେଲୀ, ତନ୍ତୀ, ତୁଳାଭିଣା, ବ୍ରାହ୍ମଣ, ବଙ୍ଗାଳୀ, କାୟସ୍ଥ, ଓକିଲ, ମୁକ୍ତାର ଅମଲା ଆଦି ସମସ୍ତେ ଯାଇ କନ୍ୟାଦ୍ୱାରରେ ହାଜର ହେଲେ । ତୁମର କୌଣସି ପାରିବାରିକ ଅନୁଷ୍ଠାନ (ପୁତ୍ରକନ୍ୟାଙ୍କର ବିବାହ, ଉପନୟନ, କାନଫୋଡ଼ା) ହେଲା - ସେଥିଲାଗି ସହରରେ ନିମନ୍ତ୍ରଣ ହେଲା କାହାକୁ ? ତୁମର ଜାତିଭାଇ ହେଲା କିଏ ? ସେଖ୍ ଗୋଲାମ୍ ସକ୍‌ର, ଯଦୁ ବେହେରା, ରାମ ଘୋଷ ପାନରା, ହରିଚାନ୍ଦ ମାଡୁଆଳି, ରାମଲାଲ ଭଗତ, ଅବକାରୀ ପଟ୍ଟାଦାର, ବାରଜାତି ତେର ଗୋଲାର ଅମଲା, ମୁକ୍ତାର, ଓକିଲ, ଟରଣୀ, ଦୋକାନୀ, କବିରାଜ, ଡାକ୍ତର ଇତ୍ୟାଦି ଇତ୍ୟାଦି । ଏତେ ଲୋକଙ୍କୁ ଡାକି ଏତେ ଧୁମ୍‌ଧାମ୍ କରିବାର ଅର୍ଥ କ'ଣ ? ତୁମେ ଗୋଟାଏ ଖୁବ୍ ପେଟଫଟା ଭୋଜି ଦେଲ ବୋଲି ସହରଯାକ ହୁରି ପଡ଼ିଯିବ । ନିମନ୍ତ୍ରଣପତ୍ରରେ ସମୟ ଲେଖାହେଲା, ସଂଧ୍ୟା ୯ ଘଣ୍ଟା । କିନ୍ତୁ ନିମନ୍ତ୍ରିତ ଭଦ୍ରଲୋକମାନେ ପଞ୍ଚଗ୍ରାସୀ ଆରମ୍ଭ କଲାବେଳକୁ ଦୁଇଟା ବାଜିଲା - ତୁମ୍ଭମାନଙ୍କର ଏ ସବୁ ରୀତିନୀତି ଦେଖି ଆମକୁ ହସ ମାଡ଼େ । କାମରେ ତୁମ ଜାତି ଭାଇଙ୍କି ନିମନ୍ତ୍ରଣ କର, ଅଭ୍ୟର୍ଥନା କର, ଆପ୍ୟାୟିତ କର, ଏଥିରେ ଆନନ୍ଦ ହେବ । କିନ୍ତୁ ଏ ସବୁ ଅଭିଆଣରେ ଭିଆଣ ବ୍ୟବସ୍ଥାର ଅର୍ଥ କ'ଣ ? ଆଜିକାଲିର ନିମନ୍ତ୍ରଣ ରକ୍ଷା କରିବା ବିଧି ଆମ ସମାଜରେ ଶୋଭାଯାତ୍ରାର ଅଙ୍ଗବିଶେଷ ହୋଇଅଛି । ଏ କ୍ଷେତ୍ରରେ ରାଜାରାଜୋଡ଼ାଙ୍କ ନିମନ୍ତ୍ରଣ ବିଧି ମଧ୍ୟ ସବୁକୁ ବଳିଲାଣି । ଦକ୍ଷିଣରେ କୌଣସି ରାଜାଙ୍କର ବିଭାଘର ହେବ । ସେଥିପାଇଁ ନିମନ୍ତ୍ରିତ ହେଲେ କଟକରୁ ୩ ଜଣ ଓକିଲ, ୨ ଜଣ ମୁକ୍ତାର, ପୁରୀରୁ ୨ ଜଣ ଓକିଲ, ୩ ଜଣ ମହାଜନ, ବାଲେଶ୍ୱରରୁ ୨ ଜଣ ମୁକ୍ତାର, ୩ ଜଣ ଲେଖକ, ଓଡ଼ିଶାରୁ ୩ ଜଣ ସଂପାଦକ, ୫ ଜଣ ଗ୍ରନ୍ଥକାର ଇତ୍ୟାଦି । ରାଜାଙ୍କ ଶୋଭାଯାତ୍ରାରେ ଯେଉଁପରି ୭ ଘର ହାତୀ, ୧୭ ଘର ଘୋଡ଼ା, ୧୦ ଗଛ ବମ୍‌ବାଜି, ୫ ଗଛ ଘଡ଼ାବାଜି, ୨୦ଟି ପଞ୍ଚଲାଇଟ୍, ୧୦୦ଟି ଗ୍ୟାସ୍‌ବତି, ୩ ପଞ୍ଝା ନାଚବାଲୀ, ୧୦ ଜଣ ଉପାଧିଧାରୀ ଓ ଉପାଧିଶୂନ୍ୟ ପଣ୍ଡିତ ବ୍ରାହ୍ମଣ ଦରକାର । ସେହିପରି ୧୦/୨୦ଟି ବାବୁ ଦରକାର । ଏମାନଙ୍କ ଯିବାଆସିବା ରେଳ ଖରଚ, ବାଟ ଖରଚ, ବିଦାକି, ପାଟଜଥା ଶାଲ୍ ଯୋଡ଼ା ଏ ସମସ୍ତ ଖରଚ ରାଜକୋଷରୁ ଦିଆଯିବ । ଅଥଚ ଯେଉଁମାନେ ନିମନ୍ତ୍ରଣ ପାଇ ରାଜ-ଉତ୍ସବରେ ଯୋଗ ଦିଅନ୍ତି, ସେମାନଙ୍କର କୌଣସି ପାରିବାରିକ ଉତ୍ସବରେ ଏ ରାଜାମାନଙ୍କର ଉପସ୍ଥିତି ସ୍ୱପ୍ନରେ ସୁଦ୍ଧା ଅଚିନ୍ତ୍ୟ ଅଟେ । ନିମନ୍ତ୍ରଣ, ଆମନ୍ତ୍ରଣ ବିଶେଷତଃ ସାମାଜିକ ଉତ୍ସବ ସମ୍ପର୍କୀୟ ନିମନ୍ତ୍ରଣ ଆମନ୍ତ୍ରଣରେ ଏହି ନିୟମ ହେବା ଉଚିତ ଯେ, ମୁଁ ଯାହାଙ୍କୁ ମୋ ଉତ୍ସବରେ ନିମନ୍ତ୍ରଣ କଲି ସେ ମୋ ନିମନ୍ତ୍ରଣ ରକ୍ଷା କରି ମୋ ପର୍ଣ୍ଣକୁଟୀରରେ ପାଦଧୂଳି

ଦେବେ, ମୁଁ ତାଙ୍କ ନିମନ୍ତ୍ରଣ ରକ୍ଷା କରିବାକୁ ବାଧ; କିନ୍ତୁ ତାହା ନ ହୋଇ ଯେଉଁଠାରେ ଏ ସାମାନ୍ୟ ନିୟମ ଖଟିବ ନାହିଁ, ସେ ସ୍ଥଳରେ ନିମନ୍ତ୍ରଣ ରକ୍ଷା କରିବାର ଅର୍ଥ ଅପମାନକୁ ଆହ୍ୱାନ କରିବା । ବଡ଼ ଦୁଃଖର ବିଷୟ ଯେ, ଏଥିପ୍ରତି ଓଡ଼ିଶୀ ଅଣ୍ଡିରିପୁଅମାନଙ୍କର ଚେତା ହେଉ ନାହିଁ । ସମାଜ ସଂସ୍କାର, ସମାଜ ସଂସ୍କାର ବୋଲି ମିଣିପେଗୁଡ଼ାକ ଦେଶ କମ୍ପାଉଅଛ, କିନ୍ତୁ ଫଳତଃ ସାମାଜିକ ବିଧିର ଓ ଚକ୍ଷୁଲଜ୍ଜାର ଓ ଆଦବକାଇଦାର ଗୋଲାମି କରୁ କରୁ ଦିନ ସରୁ ନାହିଁ । କଥାକଥାକେ 'ସମାଜ ସଂସ୍କାର' 'ସମାଜ ସଂସ୍କାର' ବୋଲି ଦୁଆ ଧରିବା ଆଜିକାଲି ଗୋଟାଏ ଫେସନ ହୋଇ ପଡ଼ିଅଛି, କିନ୍ତୁ ପ୍ରକୃତ ସମାଜ ପ୍ରତି ଦୃଷ୍ଟି ବେଶି ଲୋକଙ୍କର ଅଛି ବୋଲି ତ ମନେହୁଏ ନାହିଁ । କାଳ ପ୍ରଭାବରେ କେତେଗୁଡ଼ିଏ ପରିବର୍ତ୍ତନ ଘଟି ଯାଉଅଛି, ଆଉ ଲେଖାପଢ଼ା ଜାଣିବା ଲୋକେ ଗଡ୍‌ଡ଼ାଳିକାପଲ ପରି ସେହି ବାଟ ମାଡ଼ି ଚାଲିଯାଉଅଛନ୍ତି - ଏଥିରେ ମଧ ଭଲମନ୍ଦ ବିଚାରର ସ୍ଥାନ ନାହିଁ । ବର୍ଜନ ଓ ଗ୍ରହଣର ସ୍ୱାଭାବିକ କ୍ରିୟାର ନାମ ସମାଜ ସଂସ୍କାର - ସେ ନୂତନ ହେଉ ବା ପୁରାତନ ହେଉ । ଆମ ଓଡ଼ିଶାରେ ତାହାର ଲକ୍ଷଣ କୌଣସିଠାରେ ଦେଖାଯାଉଅଛି କି ? ସେହି ସ୍ୱାଭାବିକ କ୍ରିୟା ଅନୁସରଣ କରିବା ଭଳି ସାହସ କେତେଜଣଙ୍କର ଅଛି ? ସର୍ବତ୍ର କାପୁରୁଷୋଚିତ ସଙ୍କୋଚ ।

ସହରବାସୀଙ୍କ ମଧରେ ନାନା ଜାତିର ନିମନ୍ତ୍ରଣଟା ଅବଶ୍ୟ ଗୋଟାଏ ଶୁଭଲକ୍ଷଣ - ସହର କାହିଁକି, ମଫସଲରେ ମଧ ଏହାର ପ୍ରସାର ବଢୁଅଛି । ଏହି ଭେଦ ବୁଦ୍ଧି ପ୍ରପୀଡ଼ିତ ଦେଶ ପକ୍ଷରେ ଏ ପ୍ରକାର ମିଳନ ଖୁବ୍ ଆଶା ଓ ଆନନ୍ଦର କଥା, ସର୍ବ ପ୍ରକାର ନିମନ୍ତ୍ରଣରେ ଆତ୍ମୀୟତା ଓ ଆନ୍ତରିକତା ପ୍ରଥମ ଓ ପ୍ରଧାନ କଥା । ଅଯଥା ବାହ୍ୟାଡ଼ମ୍ବର ସର୍ବଥା ପରିତ୍ୟାଜ୍ୟ । ଆଜି ଏତିକିରେ ଥାଉ ।

ଉତ୍କଳ ସାହିତ୍ୟ/୨୫ଶ ଭାଗ/୧୨ଶ ସଂଖ୍ୟା ଚୈତ୍ର/୧୩୨୯ ସାଲ ।

## ।। ସପ୍ତମ ପୁଡ଼ା ।।

ସଭ୍ୟ ଜଗତରୁ କ୍ରମେ କ୍ରମେ ଦାସତ୍ୱ ପ୍ରଥା ଉଠାଇବା ପାଇଁ ସଭ୍ୟ ଜାତିମାନେ କେତେ ବିଧି, କେତେ ବ୍ୟବସ୍ଥା, କେତେ ଆଇନ କରୁଅଛନ୍ତି ଓ ସଭ୍ୟତମ ଜାତିମାନେ ଗରିମା କରି ଘୋଷଣା କରୁଅଛନ୍ତି ଯେ, ଆମ ଯୋଗୁଁ ପୃଥିବୀର ଦାସତ୍ୱ ପ୍ରଥା ଲୋପ ପାଇଲାଣି ବା ପାଇବାକୁ ବସିଲାଣି । କିନ୍ତୁ ସମାଜରେ ବର୍ତ୍ତମାନ ପ୍ରଚଳିତ ବିବାହ ବନ୍ଧନଟା ଯେ ଗୋଟାଏ କଠିନତମ ଦାସତ୍ୱପ୍ରଥା; ଏ କଥା ଥରେ ଭଲା କେହି ଭାବିଥାନ୍ତି ? ସାମାଜିକ ଜ୍ୟାମିତିରେ ଏହା ସ୍ୱତଃସିଦ୍ଧ ଯେ ୧- ସ୍ତ୍ରୀ ଜାତି ଅବଳା, ୨- ସ୍ତ୍ରୀ ଜାତି ଆପଣାକୁ ରକ୍ଷା କରିବାକୁ ଅକ୍ଷମ, ୩- ସ୍ତ୍ରୀ ଜାତିଙ୍କର ଭଲମନ୍ଦ ବାରିବାର ଶକ୍ତି ନାହିଁ ଓ ୪- ମାହୁନ୍ତ ବା ରକ୍ଷକ ନ ଥିଲେ ସେମାନେ ଖାଲି ଅବାଟକୁ ମୁହିଁବେ ଓ ଓଦା ଖାଇବେ ।

ଏହି ସାମାଜିକ ସ୍ୱତଃସିଦ୍ଧରୁ ଯାହାହେଉ ସ୍ତ୍ରୀ କାର୍ଯ୍ୟମାନ (Postulates) ବାହାରିବାର ତାହା ଏହି ୧- ବିନାଶ୍ରୟେ ବର୍ତ୍ତନ୍ତେ କବିତା, ବନିତା ଲତା ଅର୍ଥାତ୍ ବିନା ଆଶ୍ରୟରେ ସ୍ତ୍ରୀ ଜାତି ବଞ୍ଚି ନ ପାରେ, ୨- ପ୍ରତ୍ୟେକ ସ୍ତ୍ରୀ ଜାନୁଆର୍‌ଙ୍କ ପାଇଁ ମାହୁନ୍ତ ଲୋଡ଼ା, ୩- ତାଙ୍କ ପାଇଁ ଭଲମନ୍ଦ ବାଛିବା ନିମନ୍ତେ ସମାଜ ଯାହାଙ୍କୁ ମାରଫତଦାର କରିବ, ସେ ହେବେ ସେ ଜୀବଙ୍କର ଗୁରୁଦେବ- ସାକ୍ଷାତ୍ ଦେବତା । ୪- ଅଙ୍କେ ସ୍ଥିତାପି ଯୁବତୀ ପରିଶଙ୍କନୀୟା- ଏ ଜୀବଗୁଡ଼ାକୁ କେବେହେଁ ବିଶ୍ୱାସ କରିବ ନାହିଁ ।

ଅର୍ଥାତ୍ ସ୍ତ୍ରୀ ଜାତି ସମାଜର ଆଇନ ଅନୁସାରେ କେବଳ ଯେ ଦିହର ବଳ ହରାଉ ଅଛନ୍ତି ତାହା ନୁହେଁ, ସେମାନଙ୍କର ଚରିତ୍ରର ବଳ, ମନର ବଳ, ବୁଦ୍ଧିର ବଳ କିଛି ନାହିଁ ।

ଅତଏବ ଇହଲୋକରେ ସେ ଜାତିଟା ଶିକ୍ଷା ଓ ସାଧନାର ଫଳରେ କେତେ ଯେ ଦିହର ବଳ ହରାଇ ଅଛନ୍ତି ଏବଂ ଏ ବଳଗୁଡ଼ିକ ପାଇପାରିବ, ଏ କଥା ଅସମ୍ଭବ ।

ଅସଂଭବ୍ୟଂ ନ ବକ୍ତବ୍ୟଂ- ଅର୍ଥାତ୍ ଯେଉଁ କଥା ହେବ ନାହିଁ କି ହେବାର ନୁହେଁ, ସେ କଥା ପାଇଁ ଚେଷ୍ଟା ମଧ କରିବାର ଉଚିତ ନୁହେଁ । ଅତଏବ ସେ ଜାତିଟା ଯେମିତି ଅନ୍ଧାରୁଆରେ କୋଡ଼ମେଇ ଭିତରେ ପଡ଼ି ରହି ଅଛି, ସେମିତି ପଡ଼ିଥାଉ ।

ଅତଏବ ଯେ ଏପରି ଚେଷ୍ଟା କରିବ ବା ଏପରି ପ୍ରସ୍ତାବ ଯେ କରିବ, ସେ ଈଶ୍ୱରଙ୍କଠାରେ ଓ ସମାଜ ନିକଟରେ ଦ୍ରୋହୀ ହେବ ।

ସାମାଜିକ ଜ୍ୟାମିତିର ଏହି ଅଙ୍କନ ଚକ୍ର ମଧରେ ପକାଇ ସମାଜ ସ୍ତ୍ରୀ ଜାତିକୁ ଯେଉଁ ଚୁକ୍ତିଗତ ଦାସତ୍ୱ-ଶୃଙ୍ଖଳରେ (Indentured slavery) ବାନ୍ଧେ, ତାହା ଆଧୁନିକ ସଭ୍ୟ ଜଗତ ଦ୍ୱାରା ଘୃଣିତ ଦାସତ୍ୱ (Slavery) ପ୍ରଥାଠାରୁ କେଡ଼େ କଠିନ ଓ ଜଟିଳ ଓ ଘୃଣ୍ୟ, ତାହା ଥରେ ପୁରୁଷମାନଙ୍କ ମଧରୁ କେହି ଦୃଢ଼ ଭାବରେ ଭାବନ୍ତି କି ? ଏ ଚକିପେଷାଟା ଜେଲଖାନାର ଚକିପେଷା ଠାରୁ କେଡ଼େ କଷ୍ଟକର, ତାହା ଥରେ କେହି ପୁରୁଷ ପୁଅ ଭାବନ୍ତି କି ?

ଏହି ଦାସତ୍ୱ ପ୍ରଥାରେ ଆମ ଜାତିକୁ ଦୃଢ଼ ଶୃଙ୍ଖଳାବଦ୍ଧ କରିବାକୁ ପୁରୁଷ ଜାତି କଳ, ବଳ, କୌଶଳ ସବୁ ପ୍ରୟୋଗ କରିଥାନ୍ତି ଓ ସେଥିରେ ମାଇପି ଜାତିକୁ ତର୍କରେ କାଇଲ୍, ମନାଇ ନ ପାରିଲେ କହନ୍ତି- ଏଇଟା ପ୍ରଜାପତି ସମ୍ବନ୍ଧ, 'ବିଧି ବିଧାନ', 'ଧର୍ମ ବନ୍ଧନ', ଅକାଟ୍ୟ, ଅଚ୍ଛେଦ୍ୟ, ଅଭେଦ୍ୟ, ଅଦାହ୍ୟ, ଅକ୍ଲେଦ୍ୟ, ଅଶୋଷ୍ୟ, ଅଶୋଚ୍ୟ ଶୃଙ୍ଖଳ । ଏହାକୁ ଯେଉଁ ପାମର ଛିଣ୍ଡାଇବାକୁ ବସିବ, ତାହାକୁ ଜବତ କରିବା ସଙ୍ଗ ସକାଶେ ସବୁ ପ୍ରକାରର ଦଣ୍ଡାସ୍ତ୍ରମାନ ସଜ୍ଜିତ ଓ ଉଦ୍ୟତ ।

ସ୍ୱାମୀ ଦେବତା, ସ୍ୱାମୀଙ୍କ ଆଜ୍ଞା ଅଲଙ୍ଘନୀୟ । ସ୍ୱାମୀଙ୍କ ଶରୀରକୁ ଶତ ସହସ୍ର ପାପ ମଧ ଅସ୍ପୃଶ୍ୟ କରିଦେଇ ନ ପାରେ । ସ୍ୱାମୀଙ୍କ ପଦସେବା ଦ୍ୱାରା ହିଁ ସ୍ତ୍ରୀର ଗତି ମୁକ୍ତି । ସ୍ୱାମୀଙ୍କ ଇହକାଳର ଦେହାବସାନ ହେବା ସଙ୍ଗେ ସଙ୍ଗେ ସ୍ତ୍ରୀର କର୍ତ୍ତବ୍ୟ ଶେଷ

ହେଲା ନାହିଁ- ସ୍ୱାମୀଙ୍କ ସଙ୍ଗେ ସହମୃତା ହେବା ସ୍ତ୍ରୀର ଲକ୍ଷଣ । ଏହି ସହମରଣ ବିଧିକୁ ସରକାର ଆଇନ କାନୁନ୍‌ରେ ବନ୍ଦ କଲେ ସୁଦ୍ଧା ସ୍ୱାମୀଙ୍କ ଅନ୍ତେ ସ୍ତ୍ରୀ ବିଧବା ହୋଇ ଆମରଣ ଜୀବନ୍ମୃତ ଅବସ୍ଥାରେ କାଳଯାପନ କରିବ । କାରଣ ସ୍ତ୍ରୀର ପୂର୍ବାର୍ଜିତ କିମ୍ବା ଇହଜନ୍ମାର୍ଜିତ ଦୁଷ୍କୃତି ଫଳରୁ ସ୍ୱାମୀଙ୍କର ମୃତ୍ୟୁ ହେଲା । ଅତଏବ ସ୍ୱାମୀଙ୍କ ମରଣ ପାଇଁ ସ୍ତ୍ରୀ ଦାୟୀ ଅର୍ଥାତ୍ ଅପରାଧୀ । ଏ ଅପରାଧର ପ୍ରାୟଶ୍ଚିତ୍ତ ବା ଦଣ୍ଡ କ'ଣ ? ହୁଏତ ସ୍ୱାମୀର ମୃତ ଦେହ ସଙ୍ଗେ ସ୍ତ୍ରୀର ଜୀବନ୍ତ ଦେହର ବିନାଶ କିମ୍ବା ଆଇନ ତାହା କରାଇ ନ ଦେଲେ ସ୍ୱାମୀଙ୍କ ମୃତ୍ୟୁ ପରେ ବିଧବାର ସାଂସାରିକ ସମସ୍ତ ସୁଖର ଲୋପ । ଆଉ ଯେତେ କାଳ ଏ ହତଭାଗିନୀ ବଞ୍ଚିଥିବ, ସେତେ କାଳ ସମାଜର ବିଧିବଦ୍ଧ ତାଚ୍ଛଲ୍ୟ, ଉପବାସ, ମୁଣ୍ଡନ, ବସ୍ତ୍ରାଭରଣ ତ୍ୟାଗ, ଶୁଭ କାର୍ଯ୍ୟରେ ଯୋଗ ଦେବାର ଅକ୍ଷମତା, ଗୃହିଣୀର ସମସ୍ତ ଅଧିକାରରୁ ତାଡ଼ନ ଇତ୍ୟାଦି କଠୋର ଶାସନ ଦ୍ୱାରା ବିଧବାର ଜୀବନ ଯେପରି ମରଣ ଅପେକ୍ଷା ଆହୁରି ହେୟ ଓ କଷ୍ଟକର ହେବ, ତାହାର କଟକଣା ।

ଅବଶ୍ୟ ପୁରୁଷ ଜାତି ମଧ୍ୟରେ ଏପରି ମହାନୁଭବ ବ୍ୟକ୍ତି ଅଛନ୍ତି, ଯେଉଁମାନେ ସ୍ତ୍ରୀ ଜାତି ପ୍ରତି ଆବହମାନ କାଳରୁ ପ୍ରଚଳିତ ଏ କଠୋର ସାମାଜିକ ଦଣ୍ଡନୀତିକୁ ଅନୁମୋଦନ କରନ୍ତି ନାହିଁ । କିନ୍ତୁ ସେମାନଙ୍କ ସଂଖ୍ୟା ଏତେ କମ୍ ଯେ, ସେମାନଙ୍କ ପ୍ରତିକୂଳ ମତ ଯୋଗୁଁ ସମାଜରେ କିଛି ଯାଏଆସେ ନାହିଁ । କେହି କ୍ୱଚିତ୍ ଆପଣାର ବ୍ୟକ୍ତିଗତ ବଳ ଦ୍ୱାରା ସେ ବିଧିକୁ ଟିକିଏ ଶିଥିଳ କରି ଦିଅନ୍ତି, କିନ୍ତୁ ସ୍ତ୍ରୀ ଜାତି ପ୍ରତି ଘୋର ଅବିଚାର ଓ ଅତ୍ୟାଚାରର ଯୁଗ ଅବଧି ଶେଷ ହୋଇ ନାହିଁ ।

ପୃଥିବୀ ସୃଷ୍ଟିକାଳରେ ପରମେଶ୍ୱରଙ୍କର ଆଦିମ ମନୁଷ୍ୟକୁ ପ୍ରଥମ ଆଶୀର୍ବାଦ ଏହି 'Unite and multiply'- ନରନାରୀ ସମ୍ମିଳିତ ହୁଅ ଏବଂ ବଂଶ ବୃଦ୍ଧି କର । ଜୀବମାତ୍ରର ଜୀବନ ଚିରସ୍ଥାୟୀ ନୁହେଁ, ଯେଉଁଠାରେ ମରଣ ଅବଶ୍ୟମ୍ଭାବୀ, ଏପରି ସ୍ଥଳରେ ବଂଶ ବୃଦ୍ଧି ବ୍ୟତିରେକେ ଏ ପୃଥିବୀ ମରୁଭୂମିରେ ପରିଣତ ହୁଅନ୍ତା । ବୁଝିବାକୁ ଗଲେ 'ବଂଶ ବୃଦ୍ଧି' ରୂପ ଘଟଣା ଯୋଗୁଁ ଏ ସୃଷ୍ଟି ଆଜିଯାଏ ରହିଅଛି । ସଂସାରରେ ସନ୍ତାନ ଉତ୍ପାଦନ ପ୍ରକ୍ରିୟା ନ ଥିଲେ ସୃଷ୍ଟ ଜୀବଙ୍କର ବଂଶ ଲୋପ ହେବା ସ୍ୱାଭାବିକ । ସୃଷ୍ଟିରେ 'ବଂଶ ବୃଦ୍ଧି' ବା 'ସନ୍ତାନ ଉତ୍ପାଦନ' ପରି ଅତ୍ୟାବଶ୍ୟକ ଓ ଅତି ପବିତ୍ର ବିଷୟ ଅନ୍ୟ କିଛି ନୁହେଁ- ପୁରୁଷ ଓ ସ୍ତ୍ରୀ ଏକତ୍ର ସମ୍ମିଳିତ ନ ହେଲେ ସନ୍ତାନ ଉତ୍ପାଦନ ହେବା ଅସମ୍ଭବ । ଏହି କାର୍ଯ୍ୟ ନିମନ୍ତେ ପୁରୁଷ ଯେତେ ପରିମାଣରେ ଲୋଡ଼ା, ସ୍ତ୍ରୀ ମଧ୍ୟ ସେତିକି ଲୋଡ଼ା । ଗୋଟିଏ ଯନ୍ତ୍ରର ଏ ଦୁହେଁ ଦିଓଟି ଅତ୍ୟାବଶ୍ୟକ ବିଶିଷ୍ଟ ଅଙ୍ଗ- ଏକର ଅଭାବରେ ଅନ୍ୟଟି ଅଚଳ, ଏକର ତିରୋଭାବରେ ଅନ୍ୟର ବିନାଶ । ଏପରି ସ୍ଥଳରେ ସୃଷ୍ଟିର ଦିଓଟି ଉପାଦାନ ମଧ୍ୟରୁ ଗୋଟିକୁ ଉଚ୍ଚସ୍ଥାନ ଦେବା ଓ ଅନ୍ୟଟିକୁ ତାଚ୍ଛଲ୍ୟ କରିବା 'କୋଦିଣ୍ଡା ନିଶାପ' ଛଡ଼ା ଅନ୍ୟ କିଛି ନୁହେଁ । ସାଧାରଣତଃ ଦେଖାଯାଏ ଯେ, ଆବହମାନ କାଳରୁ ପୁରୁଷ ଜାତି ସନ୍ତାନ ସୃଷ୍ଟି କ୍ରିୟାରେ ଆପଣା ଜାତିକୁ 'କର୍ତ୍ତା' ସ୍ଥାନରେ ବସାଇ ସ୍ତ୍ରୀ ଜାତିକୁ

'କ୍ଷେତ୍ର' ରୂପେ ନୀଚ ସ୍ଥାନକୁ ଘଉଡ଼ି ଦେଇଅଛି । ବିନା ବୀଜରେ ଯେପରି ଶସ୍ୟୋତ୍ପାଦନ ଅସମ୍ଭବ, ସେହିପରି ବିନା କ୍ଷେତ୍ରରେ ମଧ୍ୟ ଶସ୍ୟୋତ୍ପାଦନ କରିବାର ଆଶା ଦୁରାଶା ମାତ୍ର । ଏପରି ପରସ୍ପର ସଙ୍ଗେ ଅବିଚ୍ଛେଦ୍ୟ ସମ୍ପର୍କ ଯୁକ୍ତ ସମାଜର ଦିଓଟି ଉପାଦାନକୁ ଯେଉଁ ଆପେକ୍ଷିକ ଗୌରବ ବା ମର୍ଯ୍ୟାଦା ନ ଦେଇ ଗୋଟିକୁ ସ୍ୱର୍ଗରେ ଓ ଗୋଟିକୁ ନରକରେ ବସାଇଦେବାଦ୍ୱାରା ସମାଜର କି କ୍ଷତି ହେଉଅଛି, ତାହା ଯଦି ଅଣ୍ଡିରିପୁଅମାନେ ଭାବି ପାରୁଥାନ୍ତେ, ତାହାହେଲେ ଆମ ସ୍ତ୍ରୀ ଜାତିକୁ ବହୁକାଳ ପୂର୍ବରୁ ସେ ଦାସତ୍ୱ ପଦରୁ ନିଶ୍ଚୟ ଉପରକୁ ଟେକି ନେଇଥାନ୍ତେ ।

ଏ କଥାଟା ଆହୁରି ସାଫ୍ କରି ଟିକିଏ ବୁଝାଇ ଦେବା ଦରକାର । ସଂସାରରେ ଯେତେଗୁଡ଼ିଏ କ୍ରିୟା ଅଛି, ତହିଁ ମଧ୍ୟରୁ ବଂଶ ବୃଦ୍ଧି ବା ଜୀବଜନନ କ୍ରିୟା ପବିତ୍ରତମ - ଏହା ସମସ୍ତେ ହୃଦୟଙ୍ଗମ କରିବେ । କିନ୍ତୁ ସେ କ୍ରିୟାକୁ ତୁମ୍ଭେମାନେ ଗୋଟିଏ ଘୃଣ୍ୟକ୍ରିୟା ମଧ୍ୟରେ ସୁମାରି କରି ଆସିଅଛ । ସେ କ୍ରିୟାର ପବିତ୍ରତା ରକ୍ଷା ନ ହେଲେ ତୁମ୍ଭମାନଙ୍କର ବଂଶ ବୃଦ୍ଧି ଆକାଙ୍କ୍ଷା ଓ ଭାବୀ ବଂଶଧରମାନଙ୍କ ସମୃଦ୍ଧିର ଆଶା ଦୁରାଶା ମାତ୍ର । ସେଥି ନିମନ୍ତେ ତୁମ୍ଭେମାନେ ସମାଜରେ ଯେଉଁ ବିବାହ ପ୍ରଥା ଚଳାଇଅଛ, ସେଥିରେ ଗୋଟାଏ ଅଙ୍ଗକୁ ସର୍ବମୟ କର୍ତ୍ତା ଓ ଅନ୍ୟ ଅଙ୍ଗଟିକୁ ସେବାଦାସୀ କରି ରଖିଅଛ । ଫଳ ଏହି ହେଉଅଛି ଯେ, ଏହି ପବିତ୍ରତମ କ୍ରିୟା ବୈଜ୍ଞାନିକ ଚକ୍ଷୁରେ ଅନୁଶୀଳନ କରାଯାଉ ନାହିଁ ଓ ପବିତ୍ରତମ ସ୍ତ୍ରୀ ପୁରୁଷ ସମ୍ବନ୍ଧକୁ ପ୍ରଚଳିତ ଅଭେଦ୍ୟ ବିବାହ ବନ୍ଧନର କଦର୍ଯ୍ୟ ଶୃଙ୍ଖଳ ଦ୍ୱାରା ଆବଦ୍ଧ କରିଅଛ । ବିବାହର ପ୍ରଧାନ ଉଦ୍ଦେଶ୍ୟ ସନ୍ତାନୋତ୍ପାଦନ । କିନ୍ତୁ ସନ୍ତାନୋତ୍ପାଦନ ଯେଉଁ ସ୍ତ୍ରୀ-ପୁରୁଷ ସମାଗମର ଅବଶ୍ୟମ୍ଭାବୀ ଫଳ, ସେହି ସଙ୍ଗମକୁ ଗୋଟିଏ ନୀଚ, ଘୃଣ୍ୟ, ଅପ୍ରକାଶ୍ୟ ଓ ଅଶ୍ଳୀଳ ଭାବରେ ସର୍ବାଙ୍ଗ ଆବୃତ କରିବାରୁ ଫଳ ଏହି ହେଉଅଛି ଯେ, ସେ ସମ୍ବନ୍ଧରେ ବୈଜ୍ଞାନିକ ଅନୁସନ୍ଧାନ ନ ହେବାରୁ ପୃଥିବୀରେ ନାମମାତ୍ର ବଂଶରକ୍ଷା ହେଉଅଛି, ମାତ୍ର ସନ୍ତାନସନ୍ତତି ଜନ୍ମତଃ ହୀନବଳ, ଅପୁଷ୍ଟ, ଅପୂର୍ଣ୍ଣାଙ୍ଗ, ରୋଗୀ ଓ ହୀନାୟୁଃ ହୋଇ ସଂସାରରେ ଗୁଡ଼ିଏ ଅକର୍ମଣ୍ୟ, ପର ଗଳଗ୍ରହ ଜୀବଙ୍କ ସଂଖ୍ୟା ବୃଦ୍ଧି ପାଉଅଛି । ଅନୁସନ୍ଧାନ ବା ଗବେଷଣା ହେବ କିମିତି ? ସୃଷ୍ଟି ପ୍ରକ୍ରିୟାର ଗୋଟିଏ ଅଙ୍ଗ- ପ୍ରଜନନ ଯନ୍ତ୍ରର ଦିଓଟି ଅଂଶ ମଧ୍ୟରୁ ଗୋଟିଏ ଅଂଶ ନିର୍ବାକ୍ ଓ ନିଷ୍ଫଳ । ଏପରି ସ୍ଥଳରେ ଏ ପବିତ୍ରତମ କ୍ରିୟାର ଅବଶ୍ୟ ଜ୍ଞେୟ ଗୂଢ଼ ରହସ୍ୟଯାକ କେବଳ ଏକତରଫା ବିଚାର ଯୋଗୁଁ ଉଦ୍‌ଘାଟିତ ହୋଇପାରୁ ନାହିଁ । ଯେଉଁ ପ୍ରକ୍ରିୟାର ଉତ୍କୃଷ୍ଟତା ଓ ଉନ୍ନତି ଉପରେ ସମାଜର ଭାବୀ ବଂଶଧରମାନଙ୍କର ତଥା ସମାଜର ଭବିଷ୍ୟତ ମଙ୍ଗଳ ଓ ଆଶା ନିର୍ଭର କରେ, ତାକୁ ସମାଜ ଅଶ୍ଳୀଳ ବୋଲି ଘୋଷଣା କରୁଅଛି ଓ ବୈଜ୍ଞାନିକ ଅନୁଶୀଳନର ଅଭାବରୁ ଉପଯୁକ୍ତ ଶିକ୍ଷାଦାନ ଓ ଶିକ୍ଷକ ଅଭାବରୁ ଏ ପ୍ରକ୍ରିୟା ସମାଜରେ ଉପଯୁକ୍ତ ରୂପେ ଅନୁଶୀଳିତ ଓ ପ୍ରକୃଷ୍ଟ ରୂପେ ପରିପାଳିତ ହେଉ ନାହିଁ । ଦେଖନ୍ତୁ ଯେ, ଆମ ଦେଶରେ ବାଳକ ଓ ବାଳିକା ବାଲ୍ୟାବସ୍ଥା ଅତିକ୍ରମ ନ

କରୁଣୁ ଓ ସଂସାରର ଗୁରୁତ୍ୱ ଅନୁଭବ ନ କରୁଣୁ ଓ ବିବାହର ପବିତ୍ରତମ ଉଦ୍ଦେଶ୍ୟ (ସନ୍ତାନୋତ୍ପାଦନ ଓ ବଂଶରକ୍ଷା- Preservation of Spices) କ'ଣ, ତାହା ଉପଲବ୍ଧି ନ କରୁଣୁ ସମାଜ ସେ ଦୁହିଁଙ୍କୁ ବେଦି ଉପରେ ନିଆଁପାଣି ସାକ୍ଷୀ ରଖି, ହାତଗଣ୍ଠି ପକାଇ ଦେଇ ସଂସାରର ଲୀଳା କରିବାକୁ ରଙ୍ଗଭୂମିକୁ ଛାଡ଼ି ଦେଉଅଛି । ଏ' ତ ଗଲା ଆମ ଅନୁଭବ ସମାଜର ହାଲଚାଲ । ଆଧୁନିକ ସଭ୍ୟତମ ସମାଜରେ କ'ଣ ହେଉଛି ? ସ୍ତ୍ରୀ-ପୁରୁଷ ବୟଃପ୍ରାପ୍ତ ହୋଇ, ମନ ମନାମନି ହୋଇ ବିବାହ କରୁଅଛନ୍ତି ସତ୍ୟ, କିନ୍ତୁ ତାଙ୍କ ମଧ୍ୟରୁ ଶତକଡ଼ା କେତେଜଣ ବେଦିରେ ବସିବା ପୂର୍ବରୁ ପବିତ୍ରତମ ଉଦ୍ଦେଶ୍ୟକୁ ହୃଦୟଙ୍ଗମ କରି ତହିଁର କଠୋରତା ଓ ପବିତ୍ରତା ଉପଲବ୍ଧି କରିଥାନ୍ତି ? ଫଳତଃ ନବଦମ୍ପତି ବଂଶରକ୍ଷା ଓ ବଂଶବୃଦ୍ଧିର ରହସ୍ୟର 'ର' ଅକ୍ଷର ନ ଜାଣୁଣୁ ସମାଜରେ ପିତାମାତା ରୂପେ ଠିଆ ହୋଇ ପଡ଼ନ୍ତି- ବିଛା ମନ୍ତ୍ର ନ ଜାଣି, ନାଗସାପ ଗାତରେ ହାତ ପୂରାଇ ଦିଅନ୍ତି । ଫଳତଃ ଏହା ଘଟେ ଯେ, ବିବାହ-ବନ୍ଧନ ସୁଖ-ଶାନ୍ତିମୟ ନ ହୋଇ ଏବଂ ବଂଶରକ୍ଷା ଓ ବଂଶ ବୃଦ୍ଧି ସମାଜର ମଙ୍ଗଳ ନିଦାନ ନ ହୋଇ ଦମ୍ପତିଙ୍କର ତଥା ସମାଜର, ତଥା ସନ୍ତାନସନ୍ତତିଙ୍କର ଜୀବନରେ ଶୋକ, ଦୁଃଖ, ଭୋଗ, ଅଶାନ୍ତି ଓ ଅମଙ୍ଗଳର କାରଣ ହୁଏ । ପୁରୁଷମାନେ ସିନା ପୁରୁଷମାନଙ୍କ ଅନୁଭବକୁ ଉପଲବ୍ଧି କରିବେ- ସେମାନେ ସ୍ତ୍ରୀ ଜାତିର ଅନୁଭବକୁ ଉପଲବ୍ଧି କରିପାରିବେ ନାହିଁ । ଏ କ୍ଷେତ୍ରରେ ସ୍ତ୍ରୀ ଜାତିର ମୁହଁ 'ଅଶ୍ଳୀଳତା', 'ଇତରତା' ଓ 'ଲଜ୍ଜା' ଇତ୍ୟାଦି ବାଆଁରା ଯୋଗୁଁ ବନ୍ଦ ।

ଈଶ୍ୱର ପ୍ରତ୍ୟେକ ଜୀବଠାରେ Instinct (ପ୍ରକୃତିଦତ୍ତ ସହଜ ପ୍ରକୃତି) ରୋପଣ କରି ଅଛନ୍ତି । ସେହି ପ୍ରକୃତି ବଳରେ ନବଜାତ ଶିଶୁ ମାତୃସ୍ତନ୍ୟ ଚୁଚୁମିପାରେ ଓ ମାତୃସ୍ତନ୍ୟ ଢୋକିପାରେ । ଏହି ନୈସର୍ଗିକ ପ୍ରକୃତିର ପ୍ରଭାବରେ ପୁରୁଷ ଯୁବା ହେଲେ ଯୁବତୀ ସ୍ତ୍ରୀ ଆଡ଼କୁ ଆକୃଷ୍ଟ ହୁଏ, ଇତ୍ୟାଦି । କିନ୍ତୁ ଏହା ମଧ୍ୟ ଦେଖାଯାଏ ଯେ, ଜୀବ ସୋପାନରେ ଯେଉଁ ଶ୍ରେଣୀର ଜନ୍ତୁ ଆଦିମ ଅବସ୍ଥାରୁ ଯେତିକି ଉପରକୁ ଉଠେ, ତାହାଠାରୁ Instinct (ସହଜାତ ପ୍ରକୃତି) ସେତିକି କମିଯାଏ । ଅନୁନ୍ନତ ଜୀବ ଜନ୍ମହେଲା ମାତ୍ରେ ସହଜ ସ୍ୱଭାବ ଦ୍ୱାରା (Instinct) ଯେଉଁ ଯେଉଁ କାର୍ଯ୍ୟ ପ୍ରଥମେ କରିଥାଏ, ମନୁଷ୍ୟକୁ ସେହି ସେହି କାର୍ଯ୍ୟ କରିବାକୁ ଢେର ସମୟ, ଶିକ୍ଷା, ସାହାଯ୍ୟ ଓ ସାଧନା ଆବଶ୍ୟକ ହୁଏ ।

ସ୍ତ୍ରୀ-ପୁରୁଷର ସଙ୍ଗମ-ଲିପ୍ସା ମଧ୍ୟ ଗୋଟିଏ Instinct (ସହଜ ସ୍ୱଭାବ) । ଏ ସ୍ୱଭାବକୁ ଈଶ୍ୱର ଜୀବ ପ୍ରାଣରେ ସ୍ୱତଃ ରୋପଣ କରି ନ ଥିଲେ ସଂସାରରେ ଜୀବଜଗତରେ ବଂଶ ବୃଦ୍ଧି ହେବା ଦୁଷ୍କର ହୋଇଉଠନ୍ତା । ଶିଶୁ ଜନ୍ମ ହେବା ମାତ୍ରକେ ଯଦି ମାତାର ସ୍ତନ୍ୟ ଶୋଷଣ କରି ପାରୁ ନ ଥାନ୍ତା କିମ୍ବା ଦୁଧ ପାଟିରେ ଦିଆ ହେଲେ ଢୋକୁ ନ ଥାନ୍ତା, ତେବେ ଶତକରା କେତୋଟି ଶିଶୁ ବଞ୍ଚିଥାନ୍ତେ ? ଏହି Instinct-(ଈଶ୍ୱରଦତ୍ତ ପ୍ରକୃତି) ନିମ୍ନ ଜାତୀୟ ଜୀବଙ୍କ ଠାରେ (ପଶୁପକ୍ଷୀ ଆଦି) ଯେତେ ପରିମାଣରେ ପରିଲକ୍ଷିତ ହୁଏ, ମନୁଷ୍ୟଠାରେ ତେତେ ନୁହେଁ । ମନୁଷ୍ୟର ଓ ପଶୁର

ପ୍ରଭେଦ ଏତିକି ଯେ, ପଶୁମାନେ Instinct ଦ୍ୱାରା ପରିଚାଳିତ ହୋଇ ଆତ୍ମରକ୍ଷା, ବଂଶବୃଦ୍ଧି, ବାସ ନିର୍ମାଣ ଆଦି କରିଥାନ୍ତି । ସେ ପ୍ରକୃତିକୁ ପଶୁମାନେ ବିଚାରଶକ୍ତି ଦ୍ୱାରା ମାର୍ଜିତ ବା ସଂସ୍କୃତ କରିପାରନ୍ତି ନାହିଁ । କିନ୍ତୁ ମନୁଷ୍ୟର ବିଶେଷତ୍ୱ ଏହିକି, ମନୁଷ୍ୟ ବିଚାର ଶକ୍ତିଦ୍ୱାରା Instinct କୁ ସଂଯତ, ମାର୍ଜିତ ଓ ଉନ୍ନତ କରିପାରେ । ଏହି ବଂଶରକ୍ଷା ଓ ବଂଶବୃଦ୍ଧି ପ୍ରବୃତ୍ତିକୁ ସଂଯତ କରି ସମାଜରେ ଶାନ୍ତି ଓ ସୁଖ ସ୍ଥାପନ କରିବା ଲାଗି ମନୁଷ୍ୟ କାଳକ୍ରମେ ନିଜ ବୁଦ୍ଧିରେ ସମାଜର ପ୍ରୟୋଜନ (Necessity) ଉପଲବ୍ଧି କରି ବିବାହ ପ୍ରଥା ସୃଷ୍ଟି କରିଅଛି । ତାହା ନ ହେଲେ ସମାଜ ଉଚ୍ଛୃଙ୍ଖଳ ଓ ଛେଳି ଗୋତ୍ରିଆ ହୋଇଯା'ନ୍ତା । ଏହିପରି ଦେଖାଯିବ ଯେ, ମନୁଷ୍ୟ ଜୀବନରେ ଓ ବିଶେଷତଃ ମନୁଷ୍ୟର ସାମାଜିକ ଜୀବନରେ ବିବେକ ଓ ବିଚାରର ଆସନ Nature ର (ସହଜ ପ୍ରକୃତି) ଆସନ ଅପେକ୍ଷା ଉଚ୍ଚ ଏବଂ ଜୀବଜଗତରେ ହର୍ତ୍ତା କର୍ତ୍ତା ବିଧାତା ହୋଇ ଅନ୍ୟ ସବୁ ପ୍ରାଣୀଙ୍କର ଶୀର୍ଷସ୍ଥାନ ଅଧିକାର କରି ତାହାର ଚତୁଃପାର୍ଶ୍ୱସ୍ଥ ଜୀବଜଗତକୁ ଓ ପ୍ରକୃତିକୁ କରାୟତ୍ତ କରିଅଛି ଓ କରୁଅଛି ଏବଂ ସେମାନଙ୍କୁ ଆପଣାର କାମରେ ଲଗାଇଅଛି । କେବଳ Instinct ବଳରେ ସଭ୍ୟ ମନୁଷ୍ୟ ଏତେ ଉନ୍ନତି କରିପାରି ନ ଥାନ୍ତା ଏବଂ ଏତେ ସୁଖ ଶାନ୍ତିରେ ରହି ପାରି ନ ଥାନ୍ତା । ଏହି ବିଚାର ବଳରେ ମନୁଷ୍ୟ ଜୀବଜଗତକୁ ଓ ପ୍ରକୃତିକୁ ପର୍ଯ୍ୟବେକ୍ଷଣ, ପର୍ଯ୍ୟାଲୋଚନା ଓ ସମାଲୋଚନା, ଗବେଷଣା କରି ଅନେକ ନୂତନ ଜ୍ଞାନ ଲାଭ କରୁଅଛି ଓ ସୁଖଶାନ୍ତିରେ ନିରାପଦରେ ରହିବାର ଅନେକ ନୂତନ ପନ୍ଥା ଆବିଷ୍କାର କରୁଅଛି, ଅନେକ ନୂତନ ତଥ୍ୟରେ ଉପନୀତ ହେଉଅଛି, ଅନେକ ବୈଜ୍ଞାନିକ ସତ୍ୟ ଉଦ୍‌ଘାଟନ କରୁଅଛି ଓ ଏହି 'ବିଜ୍ଞାନ' ବଳରେ ମନୁଷ୍ୟ ଅସତ୍ୟରୁ ସତ୍ୟ, ଅସୁଖରୁ ସୁଖ, ଅସୁବିଧାରୁ ସୁବିଧା, ଅନିୟମରୁ ନିୟମ, ଅଶାନ୍ତିରୁ ଶାନ୍ତି ବାହାର କରି ପ୍ରକୃତିକୁ ଓ ପ୍ରାକୃତିକ ଶକ୍ତିମାନଙ୍କୁ (Natural Force) ଆପଣାର ଆଜ୍ଞାକାରିଣୀ ସେବାଦାସୀ କରି ପାରିଅଛି । ଉଦାହରଣସ୍ୱରୂପ ଗୋଟିଏ ଫୁଲ ଦେଖିବାକୁ ଅତି ସୁନ୍ଦର ଓ କଣ୍ଟାହୀନ, ଅଥଚ ତାହାର ସୁବାସ ନାହିଁ, ଆଉ ଗୋଟିଏ ଫୁଲ ଭାରି ସୁବାସ, କିନ୍ତୁ ତାହା ଅସୁନ୍ଦର ଓ କଣ୍ଟାଯୁକ୍ତ । ମନୁଷ୍ୟ ଉଦ୍ଭିଦତତ୍ତ୍ୱ (Botany) ଆଲୋଚନା କରି, ବୈଜ୍ଞାନିକ ପ୍ରକ୍ରିୟା ଉଦ୍ଭାବନ କରି, କୃଷିତତ୍ତ୍ୱ ଗବେଷଣା କରି, କୃତ୍ରିମ ଉପାୟ ଦ୍ୱାରା ପ୍ରଥମ ଫୁଲର ସୌନ୍ଦର୍ଯ୍ୟ ସଙ୍ଗେ ଦ୍ୱିତୀୟ ଫୁଲର ସୁବାସକୁ ସମ୍ମିଳିତ କରି ଗୋଟିଏ ନୂତନ ସର୍ବାଙ୍ଗ ସୁନ୍ଦର ଓ ସୁବାସ ଫୁଲ ସୃଷ୍ଟି କରୁଅଛି । ଏକ ଦେଶର ଏକ ଜାତୀୟ ଘୋଡ଼ା ଦେଖିବାକୁ ସୁନ୍ଦର ଅଥଚ କର୍ମପଟୁ ନୁହେଁ, ଅନ୍ୟ ଦେଶର ଏକ ଜାତୀୟ ଘୋଡ଼ା ଦେଖିବାକୁ ଅସୁନ୍ଦର; କିନ୍ତୁ ଭାରି କର୍ମପଟୁ । ବିଜ୍ଞାନ ବଳରେ ମନୁଷ୍ୟ ଏକ ଦେଶର ଘୋଡ଼ାକୁ ଅନ୍ୟ ଦେଶର ଘୋଡ଼ୀ ସଙ୍ଗେ ମେଳ କରାଇ ଏମନ୍ତ ଏକ ଘୋଡ଼ା ସଂସାରରେ ପଇଦା କରାଇ ଦେଉଅଛି ଯେ, ସେ ଘୋଡ଼ା ପ୍ରଥମ ଘୋଡ଼ା ପରି ସୁନ୍ଦର ଓ ଦ୍ୱିତୀୟ ଘୋଡ଼ା ପରି କର୍ମପଟୁ ହେଉଅଛି । ଏହିପରି ବିଜ୍ଞାନ ବଳରେ ଗୋରୁ, ଛେଳି, ମେଣ୍ଢା,

କୁକୁଡ଼ା, ବୃକ୍ଷ, ଫୁଲ, ଫଳ ଇତ୍ୟାଦିକୁ ମନୁଷ୍ୟ ଦିନକୁ ଦିନ ଉନ୍ନତ କରି ଆପଣାର ସୁଖସ୍ୱାଚ୍ଛନ୍ଦ୍ୟ ବୃଦ୍ଧି କରୁଅଛି ।

ମନୁଷ୍ୟର ପରୋପଦେଶେ ଏତେ ପାଣ୍ଡିତ୍ୟ କିନ୍ତୁ ନିଜ ଘର ପାଇଁ ନିଜର ଭାବୀ-ବଂଶଧରମାନଙ୍କ ପାଇଁ ନିଶ୍ଚେଷ୍ଟ ଓ ଚକ୍ଷୁହୀନ, ଏହାଠାରୁ ବଳି ପରିତାପର ବିଷୟ କ'ଣ ହୋଇପାରେ । ଅନ୍ୟ କ୍ଷେତ୍ରମାନଙ୍କରେ ମନୁଷ୍ୟ ବିଜ୍ଞାନ ଚର୍ଚ୍ଚା ବଳରେ ପ୍ରତିନିୟତ ଯେତେ ଉନ୍ନତି କରୁଅଛି, ଏମନ୍ତ କି ମନୁଷ୍ୟ ଆପଣା ଜାତିକୁ ମାରିବାକୁ ଦିନକୁ ଦିନ ଯେଉଁସବୁ ଉତ୍କୃଷ୍ଟତର ଓ ଉତ୍କୃଷ୍ଟତମ ବୈଜ୍ଞାନିକ ଯନ୍ତ୍ର, ଶତଘ୍ନା, ସହସ୍ରଘ୍ନା, ଲକ୍ଷଘ୍ନା ଆବିଷ୍କାର କରିପାରୁଅଛି, ସେହି କୁଶାଗ୍ରୀୟା ବୁଦ୍ଧିର କାଣିଚାଏ ଯେବେ ପ୍ରଜନନ ବିଦ୍ୟା (The Science of Eugenics- ଯେଉଁ ବିଦ୍ୟାବଳରେ ମନୁଷ୍ୟ ଜାତିର ଭବିଷ୍ୟତ ବଂଶଧର ଉନ୍ନତ ହେବେ) ପ୍ରତି ଖଟନ୍ତା, ତାହାହେଲେ ମାନବ ସମାଜରୁ ଓ ମାନବ ବଂଶଧରମାନଙ୍କ ଠାରୁ ଅସ୍ୱାସ୍ଥ୍ୟ, ଦୁଃଖ, ଶୋକ, ଅଶାନ୍ତି କେତେ କମିଯାଆନ୍ତା ଓ ସମାଜ କେତେ ସୁଖୀ ହୁଅନ୍ତା । ଦେଖନ୍ତୁ ବଢ଼ିଲା ଝିଅଟି ବିଭା ହୋଇ ଶାଶୂଘରକୁ ଗଲାବେଳେ କିମ୍ବା ପିଲା କନ୍ୟା ବାପ ଘରେ ଜ୍ଞାନ ପାଇ ରହି ପାଳିଗଲା ବେଳେ କନ୍ୟାର ମା, ପିଉସୀ, ମାଉସୀ, ସହୀ, ସଙ୍ଗାତ, ଅଭଡ଼ା, ଚାନ୍ଦ, ବଉଳ, ଗୋଦାବରୀ, ଗଙ୍ଗାଜଳମାନେ କେତେ ମୂଲ୍ୟବାନ୍ ଗାର୍ହସ୍ଥ୍ୟ ଉପଦେଶ ଦେଇ ଝିଅକୁ ଆପ୍ୟାୟିତ କରି ପକାନ୍ତି । ଉପଦେଶରେ ପୋତି ପକାନ୍ତି । ଶାଶୂ, ଆଇଶାଶୂଙ୍କର କେମିତି ଗୋଡ଼ ଘଷିବୁ, କେମିତି ଓଢ଼ଣା ପକେଇବୁ, କେମିତି ଦିନରାତି କବାଟ କଣରେ ପଶିଥିବୁ, କିମିତି ନଅ ତିଅଣ ଛ' ଭଜା କରି ମୁରୁଜରେ ଠାଆ କରି ପତର ଚକି କାଟି ଶଶୁର ଶାଶୂଙ୍କୁ ଖାଇବାକୁ ବାଢ଼ିଦବୁ, କିମିତି ସରୁ ଚକୁଳି, ଛୁଞ୍ଚିପତର, ନକ୍ଷତ୍ରମଣ୍ଡା, ପୁର ଏଣ୍ଡୁରି ତିଆରି କରିବୁ, କିମିତି ଚିଉଉ ଅମାବାସ୍ୟାକୁ ଚିଉଉ ତିଆରି କରିବୁ, କେମିତି ଲେଉଟ ଚକୁଳି କରିବୁ, କିମିତି ଗୁରୁବାର ଦିନ ରାତି ପହରେ ଥାଇ ଉଠି ଘରଦ୍ୱାର ଲିପାପୋଛା କରି ଝୋଟି ଦେଇ ମହାଲକ୍ଷ୍ମୀ ପାଦଚିତା ଲେଖି ବାସି ପାଇଟି ସାରିବୁ । କିମିତି ଦକ୍ଷିଣା ସଂକ୍ରାନ୍ତି ଓ ରେଖା ପଞ୍ଚମୀକୁ କବାଟରେ ଚିତା ଲେଖିବୁ, କେମିତି ଚୁଁ ଚୁଁ କରି ଠାର ଦେଖାଇ ନିଜ ମନର କଥା ଶାଶୂ, ଖୁଡ଼ୀଶାଶୂ, ନଣନ୍ଦ ଆଦିର ଆଗରେ ବ୍ୟକ୍ତ କରିବୁ, କିମିତି ରାତି ପହରେ ଥାଇ ଉଠି ପୋଖରୀ ତୁଠକୁ କେହି ନ ଯାଉଣୁ ଯାଇ ଲଣ୍ଡଭଣ୍ଡ ହୋଇ ଗାଧୋଇ ପଡ଼ି ଚାଲିଆସିବୁ, କିମିତି ଚୁଲିରେ କୁହୁଳା ପକାଇବୁ, ଇତ୍ୟାଦି ଇତ୍ୟାଦି ଉପଦେଶାମୃତରେ ଅପରିଚିତ ସ୍ଥାନକୁ ଯାଇ ସେଠାରେ କାହା ମୁହଁକୁ ଚାହିଁ କିପରି ଚଳିବ- ଏହି ଭାବନାରେ କିଂକର୍ତ୍ତବ୍ୟବିମୂଢ଼ା କନ୍ୟାର ମନକୁ ସାଇଠାରୁ ପଡ଼ିଶା ପର୍ଯ୍ୟନ୍ତ, ଶାଶୂଠାରୁ ଭାଉଜ ପର୍ଯ୍ୟନ୍ତ ସମସ୍ତେ ଭାବୀ ନୂଆବୋହୂକୁ କାଲୁବାଲୁ କରି ପକାନ୍ତି ଓ ବାହୁନା, କାନ୍ଦଣା କାନ୍ଦୁଥିବା ମୁହଁକୁ ଉତ୍‌ଫୁଲ୍ଲ କରି ଦିଅନ୍ତି । କିନ୍ତୁ ଭଲା ଥରେ କେହି କ'ଣ ଭାବନ୍ତି ଯେ, ନୂଆବୋହୂଟି ଈଶ୍ୱର ନ୍ୟସ୍ତ ଯେଉଁ ପବିତ୍ରତମ କର୍ତ୍ତବ୍ୟ (ସନ୍ତାନୋତ୍ପାଦନ) ପାଳନ କରିବା ଲାଗି, ଯେଉଁ ବିବାହ

ବିଧାନକୁ ସଫଳ ଓ ସାଙ୍ଗୋପାଙ୍ଗ କରିବା ଲାଗି ବାଲ୍ୟକାଳର ସମସ୍ତ ବନ୍ଧନ, ସଙ୍ଗୀ, ସଙ୍ଗିନୀ, ପ୍ରାକୃତିକ ଦୃଶ୍ୟକୁ ଛାଡ଼ି ଏକ ଅପରିଚିତ ସ୍ଥାନକୁ ଯାଉଅଛି, ସେ ସମ୍ବନ୍ଧରେ ତାକୁ କିଛି ଉପଦେଶ ଦେବା ଦରକାର ।

ଫଳତଃ ଦେଖାଯାଏ, ନବ ସଂଯୋଜିତ ଦମ୍ପତି ଏ ସମ୍ବନ୍ଧରେ ଆପଣା ଆପଣାର କର୍ତ୍ତବ୍ୟର ପବିତ୍ରତା ଓ କଠୋରତା ଉପଲବ୍ଧି ନ କରୁଣୁ ତାଙ୍କ ବେକରେ ସନ୍ତାନୋତ୍ପାଦନରୂପୀ ଜୁଆଳିଟି ପଡ଼ିଯାଏ ଓ ଏ ସମ୍ବନ୍ଧରେ ଧୀର ଭାବରେ ଭାବିବାକୁ ଉଭୟଙ୍କୁ ଅବସର ଓ ସୁଯୋଗ ନ ମିଳୁଣୁ ପୁଅଝିଅଙ୍କର ଭାବୀ ବାପା ମା ରୂପେ ସୁମାରି ହୋଇଯା'ନ୍ତି । ପ୍ରକୃତ ପକ୍ଷରେ animal instinct (ଈଶ୍ୱରଦତ୍ତ ଜୀବ ପ୍ରକୃତି) ଦମ୍ପତିଙ୍କୁ ଯେତିକି ଜ୍ଞାନ ଦେଇଥାଏ, ସେହି ଜ୍ଞାନକୁ ସମ୍ବଳ କରି ସ୍ୱାମୀ, ସ୍ତ୍ରୀ ଘର କରି ବସନ୍ତି । ଅର୍ଥାତ୍ ଦୁହିଁକୁ ଦୁହେଁ ଅନ୍ଧାର ଘରେ ପଶି ଦରାଣ୍ଡୁ ଦରାଣ୍ଡୁ ଯେବେ ଯେନତେନ ପ୍ରକାରେଣ ଗାର୍ହସ୍ଥ୍ୟ ଓ ଶାରୀରିକ ସୁଖଶାନ୍ତିର କିଛି କଦର ପାଇଯା'ନ୍ତି, ତେବେ ଉତ୍ତମ, ନଚେତ୍ ନାହିଁ । ବେଳେବେଳେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ହୁଏ ଯେ, ଏପରି 'ଅଣଗୁରୁଆ' ଅବସ୍ଥାରେ ସଂସାରରେ ଏତେ ଅଳ୍ପସଂଖ୍ୟକ ଦମ୍ପତିଙ୍କ ମଧ୍ୟରେ ଅସୁଖ ଓ ଅଶାନ୍ତି ବହ୍ନି ଜଳେ । ଅଧିକାଂଶ ଦମ୍ପତି ଏହି ଆଖିବୁଜା ଅବସ୍ଥାରେ ଏହି ନାବାଳଗି ଦଶାରେ 'ଦୁଃଖେ ସୁଖେ' ଜୀବନଟା କାଟି ନିଅନ୍ତି । ଆଉ ଘର ଛୁଆଣିକୁ ଘର ଛୁଆଣି ବଂଶବୃଦ୍ଧିର କଳକୁ କାମରେ ଲଗାଇ ଲଗାଇ ଗୁଡ଼ିଏ ଅନ୍ତଃସାରଶୂନ୍ୟ, ଅଳ୍ପାୟୁଷ, ଦୁଷ୍ଟ, ଅସୁସ୍ଥ ସନ୍ତାନସନ୍ତତିଙ୍କ ସଂଖ୍ୟା ସଂସାରରେ ବଢ଼ାଇ ଆପଣା ଘରର ହେଁସକାନି ପୂର୍ଣ୍ଣ କରି ଦିଅନ୍ତି । ଏଥିରେ ଫେର୍ ଯେଉଁ ଦମ୍ପତି ଅଠର ନଳା ସାଙ୍ଗେ ସଙ୍ଗାତ ବସନ୍ତି, ସେ ସଂସାରରେ ଶାଢ଼ି ବାନ୍ଧନ୍ତି ଓ ଢେଙ୍କେକାର ପା'ନ୍ତି । ଆବହମାନ କାଳରୁ ମନୁଷ୍ୟ ଓ ସଂସାରରେ ପବିତ୍ରତମ କାର୍ଯ୍ୟକୁ ଅଶ୍ଳୀଳତମ, ଗୁହ୍ୟତମ ଓ ଅଶିକ୍ଷଣୀୟ କାର୍ଯ୍ୟରେ ସୁମାରି କରି ଆସୁଅଛି ଓ ଏଥିପାଇଁ କେତେ ଯନ୍ତ୍ରଣା, ହଟହଟା, ମନସ୍ତାପ ଭୋଗ କରୁଅଛି ଓ କେତେ ସୁନା ସଂସାର ଚୂନା ହେଉଅଛି । ଅଥଚ ଆପଣାର ଅନୁଭବକୁ ବିଶ୍ଳେଷଣ କରି ତହିଁର କାରଣ ଓ ରହସ୍ୟ ଉଦ୍‌ଘାଟନ କରି ଆପେ ଯାହା ଅସୁବିଧା ଓ ଯେଉଁ ଅଶାନ୍ତି ଭୋଗ କରି ଆପଣା ଜୀବନକୁ ଓ ଭାବୀ ବଂଶଧରଙ୍କ ଜୀବନକୁ କଣ୍ଟକମୟ କରିଅଛି, ସେ ଅନୁଭବକୁ ପର୍ଯ୍ୟାଲୋଚନା କରି ଆପେ ଜୀବନରେ ଯାହା ଶିକ୍ଷାଲାଭ କଲା, ନିଜର ଉପକାରାର୍ଥେ ତହିଁର ପ୍ରତିକାର ଲୋଡ଼େ ନାହିଁ; କିମ୍ବା ଅନ୍ୟମାନଙ୍କ ଉପକାରାର୍ଥେ ତାହା ମନୁଷ୍ୟ ବାହାରରେ ପ୍ରକାଶ କରେ ନାହିଁ । ଆଉ ନାରୀ ପ୍ରକାଶ କରିବାକୁ ସୁବିଧା ପାଏ ନାହିଁ । କିମାଶ୍ଚର୍ଯ୍ୟ ମତଃପରଂ । ମୁଁ କର୍ମକ୍ଷେତ୍ରରେ ଘୋର ନିର୍ଯାତନା ଭୋଗ କରୁଅଛି ଓ ଯାହା ଯାହା ପ୍ରତିକାର କରିଥିଲେ ଏ ଦୁଃଖକୁ କିୟଦଂଶରେ ଲଘୁ କରିପାରିଥାନ୍ତି, ମୋର ଏହି ଶିକ୍ଷା ଓ ଅନୁଭବର କାହାଣୀ ଦ୍ୱାରା ଅନ୍ୟ କେହି ଜଣେ ସୁଦ୍ଧା ଉପକୃତ ଓ ସତର୍କ ହୋଇ ନିଜ ପଥକୁ ସୁନିୟମାଧୀନ କରିବ, ଏହା ଭାବି ଯେବେ ପ୍ରତ୍ୟେକ ଲୋକ ଏ ସମ୍ବନ୍ଧରେ ଆପଣା ଅନୁଭବ ଓ

ଅସୁବିଧାକୁ ସାଧାରଣରେ ପ୍ରକାଶ କରୁଥାନ୍ତେ ଓ ବିଜ୍ଞଲୋକଙ୍କଠାରୁ ଉପଦେଶ ଲୋଡୁଥାନ୍ତେ, ତାହାହେଲେ ସଂସାର ଓ ସମାଜ କେତେ ସୁଖମୟ ଓ ମଧୁର ହେଉଥାନ୍ତା ।

ଏ'ତ ଗଲା ପୁରୁଷପୁଅଙ୍କ କଥା- ଯେଉଁମାନଙ୍କୁ ଏ କ୍ଷେତ୍ରରେ ସାତ ଖୁଣି ମାଫ୍ ସେମାନେ (ଅର୍ଥାତ୍ ପୁରୁଷମାନେ) ଯେତେବେଳେ ଏ ପ୍ରସଙ୍ଗକୁ ଅଶ୍ଳୀଳ ବୋଲି ଗାର କାଟି ଦେଇଅଛନ୍ତି, ସେତେବେଳେ ସ୍ତ୍ରୀମାନଙ୍କ ମୁହଁରୁ ଏ କଥା ବାହାରିବା ଅସମ୍ଭବ । ଅସମ୍ଭବ କାହିଁକି, ଅଚିନ୍ତନୀୟ । ବରଂ‍ଚ ଏପରି ଯେବେ କେହି ସ୍ତ୍ରୀ ଏ ସମ୍ବନ୍ଧରେ କିଛି କହିବାକୁ ବାହାରେ, ତେବେ ସମାଜ ତା ମୁଣ୍ଡରେ 'ଅଣ୍ଡିରାଚଣ୍ଡୀ' ଛପା ମାରିଦେବ ।

ଏଥିର ତାତ୍ପର୍ଯ୍ୟ ଓ ମର୍ମ ଏହିକି - ଆମ ସମାଜ ବୈବାହିକ ଅନୁଷ୍ଠାନର ଅବଶ୍ୟମ୍ଭାବୀ ଉଦ୍ୟାପନ (Consumation) ପ୍ରକ୍ରିୟାକୁ ଗୋଟାଏ ଅପ୍ରକାଶ୍ୟ ଘୃଣ୍ୟ କାର୍ଯ୍ୟ ମଧ୍ୟରେ ଗଣ୍ୟ କରି ଆସିଅଛି ଓ ସେ ପ୍ରକ୍ରିୟା ନିମନ୍ତେ ଆବଶ୍ୟକ ଦିଓଟି ଅଙ୍ଗ (ସ୍ତ୍ରୀ ପୁରୁଷ) ମଧ୍ୟରୁ ଗୋଟିଏ ଅଙ୍ଗକୁ (ପୁରୁଷ) ଅନ୍ୟ ଅଙ୍ଗର ନିୟାମକ ଶାସକ ଓ ଆଦେଶ କର୍ତ୍ତାର ଆସନ ଦେଇଅଛି । ଏମନ୍ତ କି, ସ୍ତ୍ରୀର ଶାରୀରିକ ଓ ମାନସିକ ଅସୁବିଧା, ଅକ୍ଷମତା ପ୍ରତି ଆସ୍ଥା ବା ଭ୍ରୁକ୍ଷେପ ନ କରି ପୁରୁଷ ଆପଣାର ପାଶବ ପ୍ରବୃତ୍ତିର ଆହ୍ୱାନ ଓ ପ୍ରେରଣା ଅନୁସାରେ ନିଜର ଅଭିଳାଷ ପୂରଣ କରିବାକୁ ଅଗ୍ରସର ହୋଇଥାଏ । ଏହି ଯଥେଚ୍ଛାଚାରିତାର ଫଳରେ ସମାଜରେ ବିକଳାଙ୍ଗ, ଅବାଧ, ଅପୁଷ୍ଟ, ଅଯୋଗ୍ୟ ଓ ବିକୃତ ବୁଦ୍ଧି ସନ୍ତାନସନ୍ତତି ସଂଖ୍ୟା ଦିନକୁ ଦିନ ବଢୁଅଛି । ଦେଖନ୍ତୁ ଯେ, ଯେଉଁ ମହାପ୍ରାଣୀ ଏତେ ଜୁଲମ ସହି ଶେଷରେ ସମାଜର ବଂଶରକ୍ଷାର ଭାର ଆପଣା ଶରୀରରେ ବୋହୁଥାଏ ଓ ତାହାର ଗର୍ଭ ଧାରଣର ଶାରୀରିକ ପରିବର୍ତ୍ତନ ଯାହା ଘଟେ, ସେଥିପାଇଁ ସେ ନଅ ଦଶ ଗୋଟି ମାସ ନିଜର ଅବସ୍ଥାକୁ ସମାଜ ଚକ୍ଷୁରୁ ଯଥାସାଧ ଘୋଡ଼ାଇ ଘୋଡ଼ାଇ ଲଜ୍ଜାରେ ମ୍ରିୟମାଣ ହେଉଥାଏ । ଯେଉଁଦିନ ସମାଜ ନିଜ ବଂଶରକ୍ଷା ଓ ବଂଶବୃଦ୍ଧିର ଆଧାରରୂପୀ ସେହି ଗର୍ଭଧାରିଣୀକୁ ସମ୍ମାନ ଚକ୍ଷୁରେ ଓ ପବିତ୍ରତର ଓ ଉଚ୍ଚତର ଆସନ ଦେବ, ଯେଉଁଦିନ ସମାଜରେ ଏ ବିକାରଗ୍ରସ୍ତ ଅଜ୍ଞାନତା ଦୂର ହେବ, ସେଦିନ ସମାଜ ପକ୍ଷରେ ତାହା ଗୋଟିଏ ଚିର ସ୍ମରଣୀୟ ଦିନ ହେବ ।

ବିବାହ ବନ୍ଧନ ଓ ବିବାହର ଉଦ୍ୟାପନ କ୍ରିୟାର ପବିତ୍ରତା ଓ କଠୋରତା ଉପଲବ୍ଧି କରିବାର ସାମର୍ଥ୍ୟ ଓ ଜ୍ଞାନ ନ ହେବା ପର୍ଯ୍ୟନ୍ତ, କି ସ୍ତ୍ରୀ କି ପୁରୁଷ କେହି ବିବାହ କରିପାରିବେ ନାହିଁ, ଏପରି ଗୋଟିଏ ଦୃଢ଼ ସାମାଜିକ ବିଧି ପ୍ରଣୀତ ହେବ । ଏ ବିଷୟକୁ ସମୁଚିତ ସମାଲୋଚନା କରିବାକୁ ହେଲେ ଏହାକୁ ପୁଙ୍ଖାନୁପୁଙ୍ଖ ରୂପେ ବିଜ୍ଞାନ ସାହାଯ୍ୟରେ ଚର୍ଚ୍ଚା କରିବାକୁ ହେବ, ଅନେକ ତଥ୍ୟ ଓ ଅନୁଭୂତି ସଂଗ୍ରହ କରିବାକୁ ହେବ, ଅତଏବ ଅନୁସନ୍ଧାନ କରିବାକୁ ହେବ, ଶତ ଶତ ସ୍ତ୍ରୀ ପୁରୁଷଙ୍କ ଅନୁଭୂତିକୁ ଧାରାବାହିକ ରୂପେ ଅନୁସନ୍ଧାନ କରି ତହିଁ ପ୍ରତି ବୈଜ୍ଞାନିକ ନିୟମମାନ ଖଟାଇବାକୁ ହେବ । କି କି ଉପାୟ ଅବଲମ୍ବନ କଲେ ଦମ୍ପତି ସୁଖରେ, ଶାନ୍ତିରେ, ସ୍ୱାସ୍ଥ୍ୟରେ ବୈବାହିକ ଧର୍ମ ପାଳନ କରି

କର୍ମଯାପନ କରିବେ, କି କି ଉପାୟ ଦ୍ୱାରା ସୁସ୍ଥ, ସବଳ ଓ ପୁଷ୍ଟାଙ୍ଗ ସନ୍ତତି ସଂଖ୍ୟା ବୃଦ୍ଧି ହେବ, କି କି ଉପାୟରେ ଅସୁସ୍ଥ, ବିକଳାଙ୍ଗ, ସନ୍ତାନସନ୍ତତିଙ୍କ ସଂଖ୍ୟା କମିଯିବ, ଏସବୁ ଉପାୟ ଉଦ୍ଭାବନ କରିବାକୁ ହେବ । ଏଥିପାଇଁ ପୁରୁଷ ଓ ସ୍ତ୍ରୀ ଉଭୟଙ୍କର ଅନୁଭୂତି ପ୍ରକାଶିତ ହେବା ଦରକାର । ପୁରୁଷମାନଙ୍କୁ ତ ବାଡ଼ବତା ନାହିଁ, କିନ୍ତୁ ସ୍ତ୍ରୀମାନଙ୍କ ମୁହଁରେ ସମାଜ ଯେଉଁ 'ବାଆଁରା' ବାନ୍ଧିଅଛି, ସେ ବାଆଁରାଟି ଫିଟା ନ ହେବା ପର୍ଯ୍ୟନ୍ତ, ସ୍ତ୍ରୀ ଜାତିକୁ ସ୍ୱାଧୀନତା ଓ ସମାଧିକାର ନ ଦେବାଯାକେ ଏ ବିଜ୍ଞାନର ଉନ୍ନତି ଅସମ୍ଭବ ।

ଏତେଗୁଡ଼ିଏ କଥା ଘୋଷିବାର ଉଦ୍ଦେଶ୍ୟ ଏହିକି, ଏହା ପ୍ରତି ଶିକ୍ଷିତ ସମାଜର ଦୃଷ୍ଟି ଆକର୍ଷିତ ହେଉ ଓ ଏ ସମ୍ବନ୍ଧରେ ବୈଜ୍ଞାନିକ ଅନୁଶୀଳନ ଓ ଗବେଷଣା ଆରମ୍ଭ କରାଯାଉ । ଯେବେ ବାଇନାନୀଙ୍କ ବୁଢ଼ୁଳି ଯୋଗୁଁ ଏ ଆଳିମାଳିକାରୁ ଆଧୁନିକ ଶିକ୍ଷିତ ବ୍ୟକ୍ତିମାନଙ୍କ ଦୃଷ୍ଟି ଏ ବିଷୟ ପ୍ରତି ଆକର୍ଷିତ ହୁଏ, ତେବେ ବାଇନାନୀଙ୍କ ଜନ୍ମ ସାର୍ଥକ ।

ଲେଖକଙ୍କ ନୋଟ୍- 'ପ୍ରଜନନ' ବିଦ୍ୟାର ବୈଜ୍ଞାନିକ ଚର୍ଚ୍ଚା କରାଗଲେ ବହୁ ସହସ୍ର ଦମ୍ପତି ସୁଖ, ଶାନ୍ତି ଓ ଆରାମ ଭୋଗ କରନ୍ତେ ଏବଂ ଭାବୀ-ବଂଶଧରମାନେ ବର୍ତ୍ତମାନ ଅପେକ୍ଷା ବଳିଷ୍ଠତର, ସୁସ୍ଥତର, ଅଧିକ ସୁଖୀ ଓ ଦୀର୍ଘାୟୁଃ ହୁଅନ୍ତେ । ପାଶ୍ଚାତ୍ୟ ଦେଶମାନଙ୍କରେ ଏହା ପ୍ରତି ଅଳ୍ପଦିନ ହେଲା ପଣ୍ଡିତମାନଙ୍କର ଦୃଷ୍ଟି ଆକର୍ଷିତ ହୋଇଅଛି ଓ କେତେକ ବୈଜ୍ଞାନିକପ୍ରବର ଏ ବିଷୟରେ ବୈଜ୍ଞାନିକ ଅନୁସନ୍ଧାନରେ ପ୍ରବୃତ୍ତ ହୋଇଅଛନ୍ତି । ବିଲାତର ଜଣେ ବିଦୁଷୀ ମହିଳା Doctor Marry Stopes ଏ ସମ୍ବନ୍ଧରେ ଆପଣାର ଅନୁଭବ ଓ ଅନ୍ୟ ସ୍ତ୍ରୀଲୋକଙ୍କ ଅନୁଭୂତିରୁ ସଂଗୃହୀତ ବିଷୟମାନ ଧାରାବାହିକ ରୂପେ ଆଲୋଚନା କରି 'Married Love' (ବୈବାହିକ ପ୍ରେମ) ନାମରେ ଖଣ୍ଡିଏ ମୂଲ୍ୟବାନ୍ ପୁସ୍ତକ ରଚନା କରିଅଛନ୍ତି । ସେ ପୁସ୍ତକ ପାଠ କଲେ ଦେଖାଯିବ ଯେ - ସ୍ତ୍ରୀ ପ୍ରକୃତି ଓ ସ୍ତ୍ରୀ ଅନୁଭବ ସମ୍ବନ୍ଧରେ ସ୍ତ୍ରୀମାନେ ପ୍ରକୃତ ତଥ୍ୟ କହିବାର ଅଧିକାରିଣୀ ଅଟନ୍ତି । ପୁରୁଷମାନେ କେବଳ ଅନୁମାନ ଉପରେ ନିର୍ଭର କରି ସ୍ତ୍ରୀଜାତିର କ୍ଷମତାପ୍ରାପ୍ତ ଏଜେଣ୍ଟ ସ୍ୱରୂପ କେତେଗୁଡ଼ିଏ ଅନ୍ଦାଜି ପ୍ରତିଜ୍ଞା ଉଲ୍ଲେଖ କରିବେ, ମାତ୍ର ତହିଁର ବୈଜ୍ଞାନିକ ମୂଲ୍ୟ ଅତି କମ୍ । ସ୍ତ୍ରୀମାନେ ଆପଣା ମନୋଗତ ଭାବ ଓ ଶାରୀରିକ ଅନୁଭୂତିକୁ ସ୍ପଷ୍ଟ ରୂପେ ସ୍ୱାଧୀନ ଅଥଚ ସଂଯତ ଭାବରେ ପ୍ରକାଶ କରିବା ନିମନ୍ତେ ଯେତେଦିନ ସୁବିଧା, ଶିକ୍ଷା ଓ ସ୍ୱାଧୀନତା ନ ପାଇବେ ସେତେଦିନ ପର୍ଯ୍ୟନ୍ତ ଏ ବିଦ୍ୟାର ବୈଜ୍ଞାନିକ ଚର୍ଚ୍ଚା ଅସମ୍ଭବ । Doctor Marry Stopes ତାଙ୍କ ଗ୍ରନ୍ଥରେ ଲେଖିଅଛନ୍ତି ଯେ, ସେ ତାଙ୍କର ପ୍ରଥମ ବିବାହରେ ସୁଖ ଓ ଶାନ୍ତି ପାଇ ନ ଥିଲେ ଓ ସେ ନିଜେ ଅନୁଭବ ଓ ଅନୁସନ୍ଧାନ ଦ୍ୱାରା ଏହି ସୁଖ ଓ ଅଶାନ୍ତିର କାରଣ ଯାହା ସ୍ଥିର କଲେ, ତାହାକୁ ଧୀର ଭାବରେ ବୈଜ୍ଞାନିକ ଦୃଷ୍ଟିରେ ବିଶ୍ଳେଷଣ କରି କି କି ଉପାୟ ଅବଲମ୍ବନ କଲେ ଦମ୍ପତିଙ୍କର ଅଶାନ୍ତି ଓ ଅସୁଖ କମିବ ଏବଂ ସମାଜରେ ସୁସ୍ଥକାୟ, ସବଳ ଓ ଦୀର୍ଘଜୀବୀ ସନ୍ତାନସନ୍ତତିଙ୍କ ସଂଖ୍ୟା ବଢ଼ିବ, ତାହା ସମାଲୋଚନା ଓ ବିଚାରାର୍ଥ । ଜନସାଧାରଣରେ ପ୍ରକାଶ କରିବା ଦ୍ୱାରା

ଯେବେ ଜଣେ କାହାରି ସୁଦ୍ଧା ଦୃଷ୍ଟି ବିବାହ ପ୍ରଥାର ତଥା ପ୍ରଜନନ କ୍ରିୟାର ପବିତ୍ରତା ଓ ଗୁରୁତ୍ୱ ପ୍ରତି ଆକର୍ଷିତ ହୁଏ, ତେବେ ଲେଖିକା ତାଙ୍କ ପରିଶ୍ରମକୁ ସାର୍ଥକ ମଣିବେ । ପ୍ରଜନନ ବିଜ୍ଞାନ (Science of Eugenics) ଯେପରି ବ୍ୟାବହାରିକ ବିଜ୍ଞାନ (Practical Science) ମଧ୍ୟରେ ଉଚ୍ଚସ୍ଥାନ ଲାଭ କରିବ, ସେଥିପ୍ରତି ସମାଜର ମଙ୍ଗଳକାମୀ ପ୍ରତ୍ୟେକ ବ୍ୟକ୍ତିଙ୍କର ଦୃଷ୍ଟି ଆକର୍ଷିତ ହେଲେ ସଂସାର ସୁଖମୟ ଓ ଶାନ୍ତିମୟ ହେବ । ଏଥିପାଇଁ Psycho (ମନୋବିଜ୍ଞାନ), Hygiene (ସ୍ୱାସ୍ଥ୍ୟ ବିଜ୍ଞାନ), Botany (ଉଦ୍ଭିଦ ବିଜ୍ଞାନ), Physiology (ଶରୀର ବିଜ୍ଞାନ), Anatomy (ଶରୀର ଗଠନ ବିଜ୍ଞାନ) ଇତ୍ୟାଦିର ତଥ୍ୟମାନଙ୍କୁ ଏ ବିଷୟ ପ୍ରତି ପ୍ରୟୋଗ କରି ତାହା ସବୁ ବ୍ୟକ୍ତିଗତ ଅନୁଭୂତି ଦ୍ୱାରା ବିଶ୍ଳେଷଣ କରିବାକୁ ହେବ । ବାଇନାନୀ ବାଳୁତ ବିଧବା, ଏଥିପାଇଁ ତାଙ୍କର ଏ କ୍ଷେତ୍ରରେ (ଅର୍ଥାତ୍ ଦମ୍ପତି ଅନୁଭୂତି ଓ ବୈବାହିକ ଯଜ୍ଞାନୁଷ୍ଠାନ ବିଷୟରେ) କିଛି ଅଧିକାର ନାହିଁ ବୋଲି କେହି କେହି ବାଇନାନୀଙ୍କ କଥାକୁ ହସରେ ଉଡ଼େଇ ଦେଇପାରନ୍ତି । କିନ୍ତୁ ବାଇନାନୀ ବାଲ୍ୟକାଳରୁ ଜୀବନର ଭାବୀ-ସଙ୍ଗୀ ଓ ସରିକଦାରଙ୍କୁ ଏବଂ ରକ୍ଷକ ଓ ଭକ୍ଷକମାନଙ୍କୁ ହରାଇ ସମାଜରେ ନାଉଆରିସ ମାଲ ହୋଇ ବିଚରଣ କରିପାରୁଥିବା ଯୋଗୁଁ ସ୍ୱାଧୀନ ଭାବରେ ଅନ୍ୟ ବିବାହିତା ସ୍ତ୍ରୀମାନଙ୍କ ସାଙ୍ଗରେ ମିଳିମିଶି ସେମାନଙ୍କର ମନର ଭାବ ସଂଗ୍ରହ କରିବାକୁ ଈଶ୍ୱର ଯେତେ ସୁବିଧା ଦେଇ ଅଛନ୍ତି, ତାହା କ୍ୱଚିତ୍ ଅନ୍ୟ ଅହ୍ୟ ସୁଲକ୍ଷଣୀମାନଙ୍କ ଭାଗ୍ୟରେ ଘଟିଥାଏ । ଏଥିପାଇଁ ବାଇନାନୀଙ୍କ ମୁହଁରୁ ଏ ପ୍ରସ୍ତାବଟା ଶୁଣିଲେ ବୋଲି ଯେ ଏ କଥାଟାକୁ ବାଏଁ ବାଏଁ ଉଡ଼ାଇ ଦେବେ ଏହା ଅନୁଚିତ । ନାଟକରେ ମହା ମହା ବିଚକ୍ଷଣ ଓସ୍ତାଦ, ଅଭିନେତା ଓ ଅଭିନେତ୍ରୀମାନେ ରଙ୍ଗଭୂମିରେ ଆପଣାର ବିଦ୍ୟା ଓ କରାମତି ଜାହେର କରନ୍ତି । କିନ୍ତୁ ପ୍ରଥମେ ନଟନଟୀ ଆସି ସଭାଜନଙ୍କୁ ଖିଅ ନ ଧରାଇଦେଲେ ନାଟକ ଅଭିନୟ ଆରମ୍ଭ ନ ହୁଏରେ ବାବା । ବାଇନାନୀ ନଟୀ ଓ ବାଇନାନୀଙ୍କ ବୁଢୁଲି ବନ୍ଧା ବୋକଚାବୁହା ସୂତ୍ରଧର ମାତ୍ର । ଏ ସମ୍ବନ୍ଧରେ ଅନେକ କଥା କହିବାକୁ ବାକି ଅଛି । କିନ୍ତୁ ଏଣେ ଆଇନ୍ ଅଦାଲତଙ୍କ ପିଙ୍ଗଳ କୋର୍ଡ଼ର ଉଷୁମ ପ୍ରତି ଷୋଳପଣ ଡର । ଦେଖାଯାଉ । ଆଜି ଯାଉ ।

ଉତ୍କଳ ସାହିତ୍ୟ/୨୬ଶ ଭାଗ/୪ର୍ଥ ସଂଖ୍ୟା ଶ୍ରାବଣ/୧୩୨୯ ସାଲ ।

## ।। ଅଷ୍ଟମ ପୁଡ଼ା ।।

ବାଇନାନୀ ଗତଥର ସୁ ପ୍ରଜନନ ବିଦ୍ୟା (Eugenics) ପ୍ରତି ଶିକ୍ଷିତ ବ୍ୟକ୍ତିମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ସାର ଫ୍ରାନସିସ୍ ଗାଲ୍‌ଟନ୍ (Sir Francis Galton) ନାମକ ଜଣେ ଇଂଲଣ୍ଡୀୟ ମହାପୁରୁଷ ଏ ବିଷୟ ପ୍ରତି ସର୍ବପ୍ରଥମେ ସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ଏହା ଆଜକୁ ୧୭/୧୮ ବର୍ଷର ତଳର କଥା । ଏହି ୧୭/୧୮ ବର୍ଷ ମଧ୍ୟରେ ପାଶ୍ଚାତ୍ୟ ସମାଜରେ ଏ ବିଦ୍ୟାର ଚର୍ଚ୍ଚା ଚାଲିଅଛି ଓ ସମାଜରେ ସୁଖ ଓ ଶାନ୍ତି ବଢ଼ିବା

ନିମନ୍ତେ ସମାଜରେ ଉତ୍ତମ ସନ୍ତାନସନ୍ତତି ଜନ୍ମ ହେବା ଓ ତହିଁର ଉପାୟ ନିର୍ଦ୍ଧାରିତ ହେବା ଆବଶ୍ୟକ ବୋଲି ସମସ୍ତେ ସ୍ୱୀକାର କରୁଅଛନ୍ତି । କି କି ଉପାୟ ଅନୁଧାବନ କଲେ ସମାଜରେ ଉତ୍ତମ ସନ୍ତାନସନ୍ତତିଙ୍କ ଜନ୍ମ ବୃଦ୍ଧି ହେବ ଏବଂ ଅଧମ ସନ୍ତାନସନ୍ତତିଙ୍କ ସଂଖ୍ୟା କମିବ, ସୁପ୍ରଜନନ ବିଜ୍ଞାନର ଏହାହିଁ ଚରମ ଉଦ୍ଦେଶ୍ୟ ଅଟେ । ଏ ବିଜ୍ଞାନର ଚର୍ଚ୍ଚା ଏହି କେତେ ବର୍ଷ ମଧ୍ୟରେ କି ପ୍ରକାର ଉନ୍ନତି କରିଅଛି, ତାହା ଜଣେ ଇଂରେଜ ପଣ୍ଡିତ ସେଲିବାଇ (C.W.Salleby) ତାଙ୍କ Progress of Eugenics (ସୁପ୍ରଜନନ ବିଜ୍ଞାନର ଗତି) ନାମକ ପୁସ୍ତକରେ ଲିପିବଦ୍ଧ କରିଅଛନ୍ତି । ବାଇନାନୀ ଯାହା ଯାହା ନିଜର କ୍ଷୁଦ୍ର ସୀମାର ଅନୁଭବରୁ ଉପଲବ୍ଧି କରିଅଛନ୍ତି, ବିଜ୍ଞାନବେତ୍ତାମାନେ ଆପଣା ଆପଣାର ଅନୁଭବକୁ (Experience) ଅନ୍ୟ ବ୍ୟକ୍ତିମାନଙ୍କ ଅନୁଭୂତି ସଙ୍ଗେ ମିଳାଇ ଓ ତୁଳନା କରି ଅନୁସନ୍ଧାନ (investigation), ପର୍ଯ୍ୟବେକ୍ଷଣ (observation) ଓ ଶ୍ରେଣୀବନ୍ଧନ (Classification) ଆଦି ପ୍ରକ୍ରିୟା ଦ୍ୱାରା ଏ ବିଜ୍ଞାନର ଉନ୍ନତି ସାଧନ କରୁଅଛନ୍ତି ।

ଯେଉଁ ଉପାୟ ଓ ପ୍ରଣାଳୀମାନ ଅନୁଧାବନ କଲେ ଜନ୍ମିତ ଓ ଭାବୀ-ସନ୍ତାନସନ୍ତତିମାନେ ସମାଜର, ଜାତିର ଓ ପରିବାରର ମଙ୍ଗଳର ନିଦାନ ହେବେ, ସେହି ଉପାୟମାନ ଧାରାବାହିକ ରୂପେ ଅନୁଶୀଳନ କରିବା ଏ ସୁପ୍ରଜନନ ବିଜ୍ଞାନର ଉଦ୍ଦେଶ୍ୟ ଅଟେ ବୋଲି ଗାଲ୍‌ଟନ୍ ସାହେବ ଏ ବିଜ୍ଞାନର ସଂଜ୍ଞା ନିରୂପଣ କରିଅଛନ୍ତି । ଯେଉଁ ବିଦ୍ୟା ଦ୍ୱାରା ପରିବାରର, ସମାଜର ଓ ଜାତିର ମଙ୍ଗଳ ଓ ସୁଖ ବଢ଼ିବ ଏବଂ ସମାଜରେ ଶାନ୍ତି ଓ ସନ୍ତୋଷ ବଢ଼ିବ, ସେହି ବିଦ୍ୟାଠାରୁ ବଳି ଉପକାରୀ ଓ ମୂଲ୍ୟବାନ୍ ବିଦ୍ୟା ସଂସାରରେ ନାହିଁ, ଏକଥା କେହି ଅସ୍ୱୀକାର କରିବେ ନାହିଁ ।

ସନ୍ତାନସନ୍ତତିମାନେ ସମାଜର ଭାବୀ ମଙ୍ଗଳ, ଉନ୍ନତି ଓ ଶାନ୍ତିର ଉପାଦାନ ଅଟନ୍ତି । ଆଜି ଯେଉଁମାନେ 'ଦୁଧଖିଆ' ପିଲା କାଲି ସେହିମାନେ ସମାଜର ହର୍ତ୍ତାକର୍ତ୍ତା ବିଧାତା ରୂପରେ ସଂସାରରେ 'ଘରକରଣା' କରି ଯନ୍ତ୍ରୀ ଓ ତନ୍ତ୍ରୀ ରୂପେ ଠିଆ ହେବେ । ଏପରି ସ୍ଥଳରେ ଏ କ୍ଷେତ୍ରରେ ଦିଓଟି କଥା ଆବଶ୍ୟକ । (୧) କିପରି ଭଲ (ଶାନ୍ତ, ଶିଷ୍ଟ, ସବଳ, ସୁଗୁଣ) ପିଲା ଜନ୍ମ ହେବେ ଓ (୨) କିପରି ପିଲାମାନେ ଭଲ ରୂପେ ବଢ଼ିବେ । ପ୍ରତ୍ୟେକ ମନୁଷ୍ୟର ଜୀବନ ଓ ପ୍ରକୃତି ବାଲ୍ୟକାଳରେ ଦିଓଟି ବିଷୟ ଦ୍ୱାରା ନିୟନ୍ତ୍ରିତ ହୋଇଥାଏ ।

ସୁ-ପିତା ସୁ-ମାତାଙ୍କଠାରୁ ସୁ-ସନ୍ତାନ ଜନ୍ମ ହୁଅନ୍ତି- ଅତଏବ ପିତାମାତାଙ୍କର, ପୂର୍ବ ପୁରୁଷଙ୍କର ପ୍ରକୃତି ଓ ଆଚରଣ ଦ୍ୱାରା ଭାବୀ-ବଂଶଧରମାନଙ୍କର ପ୍ରକୃତି ଓ ଆଚରଣ ଗଠିତ ହୋଇଥାଏ । ଏହାକୁ ବୈଜ୍ଞାନିକ ଭାଷାରେ Heredity (ବଂଶାନୁକ୍ରମ) ବୋଲାଯାଏ । ଦ୍ୱିତୀୟତଃ ଶିଶୁର ଭବିଷ୍ୟତ ଜୀବନର ଗତି ତାହାର ଗର୍ଭାଧାନର ଓ ବାଲ୍ୟକାଳର ଲାଳନ ପାଳନର ପ୍ରଣାଳୀର ଉତ୍କୃଷ୍ଟତା ଓ ନିକୃଷ୍ଟତା ଉପରେ ଅନେକ

ପରିମାଣରେ ନିର୍ଭର କରେ । ଆମ୍ଭମାନଙ୍କର ପୁରାତନ ଶାସ୍ତ୍ରକାରମାନେ ସ୍ୱାମୀ ସ୍ତ୍ରୀଙ୍କ ସହବାସ ଓ ବିବାହ ସମ୍ବନ୍ଧରେ କେତେଗୁଡ଼ିଏ ବିଧିନିଷେଧ ପ୍ରଣୟନ କରି ଯାଇଛନ୍ତି । ଆଧୁନିକ ପାଶ୍ଚାତ୍ୟ ବିଜ୍ଞାନ ସେସବୁ ବିଧି ନିଷେଧକୁ ଅନେକ ପରିମାଣରେ ଅନୁମୋଦନ କରୁଅଛି । ପିତାମାତା ଉଭୟ କିମ୍ବା ଜଣେ କେହି କୌଣସି ଦୁରାରୋଗ୍ୟ ବ୍ୟାଧି ଦ୍ୱାରା ପୀଡ଼ିତ ଥିଲେ ବା ଦୁର୍ବଳ ଥିଲେ ସେମାନଙ୍କଠାରୁ ଉତ୍ପନ୍ନ ସନ୍ତାନ ସନ୍ତତିମାନେ ପୀଡ଼ାଗ୍ରସ୍ତ ଓ ଦୁର୍ବଳ ହେବେ । ପିତା, ମାତା ଉନ୍ମତ୍ତାବସ୍ଥାରେ, ଭୟାତୁରାବସ୍ଥାରେ ସହବାସ କଲେ ଜନ୍ମିତ ସନ୍ତାନ ଉନ୍ମତ ବା ବିକଳାଙ୍ଗ ହୁଏ । ଏହିପରି ବିବାହ ଓ ଗର୍ଭଧାନ ସମ୍ବନ୍ଧରେ କେତେଗୁଡ଼ିଏ ବିଧିନିଷେଧ ଅଛି । ପିତାମାତାଙ୍କର ରଜବୀର୍ଯ୍ୟ ଗର୍ଭାଶୟରେ ମିଳିତ ହୋଇ ଜୀବନ ସତ୍ତା ପ୍ରାପ୍ତ ହେଲେ ସେଠାରେ ୯/୧୦ ମାସ ରହି ବର୍ଦ୍ଧିତ ଓ ପରିପୁଷ୍ଟ ହୁଏ । ଏହି ସମୟରେ ମାତାର ଶାରୀରିକ ଓ ମାନସିକ ଅବସ୍ଥା ଦ୍ୱାରା ଗର୍ଭସ୍ଥ ଭ୍ରୂଣ ମୃତ ବା ଅକାଳ ନିଃସୃତ ହୋଇଯାଏ । ଏଥିପାଇଁ ଶିଶୁ ଗର୍ଭରେ ଥିବା ଅବସ୍ଥାରେ ତାକୁ ସଜୀବ ଓ ସୁସ୍ଥ କରିବା ନିମିତ୍ତ କେତେଗୁଡ଼ିଏ ନିୟମ ପାଳନ କରିବା ଆବଶ୍ୟକ । ତାପରେ ପିଲା ଜନ୍ମ ହୋଇ 'ମନୁଷ୍ୟ' ହେବା ପର୍ଯ୍ୟନ୍ତ ସେ ସୁପାଳନରେ ରହିଲେ ଭବିଷ୍ୟତରେ ସୁପୁତ୍ର ବା ସୁପୁତ୍ରୀ ହୁଏ । ସୁପାଳିତ ନ ହେଲେ ଭବିଷ୍ୟତରେ ସମାଜର ଗଳଗ୍ରହ ହୁଏ ଓ ସମାଜର ଅମଙ୍ଗଳ ଘଟାଏ । ସୁ-ସନ୍ତାନଙ୍କ ସମଷ୍ଟିରେ ସମାଜ ସୁ-ସମାଜରେ ପରିଣତ ହୁଏ, କୁ-ସନ୍ତାନଙ୍କ ସମଷ୍ଟିରେ ସମାଜ ଅଧୋଗତି ଲାଭକରେ । ପିଲାଦିନେ ପିଲାର ଆଖିରେ ଓ ମନରେ ଯେଉଁ କଥାମାନ ଲାଖି ରହିଯାଏ, ମାଟିହାଣ୍ଡି ପୋଡ଼ା ହେବା ପୂର୍ବରୁ କଞ୍ଚା ବେଳେ ହାଣ୍ଡି ଦେହରେ ରହିଥିବା ଦାଗଭଳି ପିଲାର ଭବିଷ୍ୟତ ଜୀବନରୁ ସେ ଦାଗ ନିଭେ ନାହିଁ ।

ଏ ସବୁରୁ ଦେଖିପାରୁଥାଇଁ ଯେ, ପ୍ରତ୍ୟେକ ମନୁଷ୍ୟର ଜୀବନ (୧) Heredity (ବଂଶାନୁଗତି ଗୁଣ ବା ତେଖମ୍) (୨) Nurture (ଲାଳନ ପାଳନ ବା ମୋହବତ୍) ଦ୍ୱାରା ପରିଚାଳିତ ଓ ନିୟନ୍ତ୍ରିତ ହୁଏ ।

ସମାଜରେ ସୁପୁତ୍ର ଓ ସୁକନ୍ୟା ସଂଖ୍ୟା ବୃଦ୍ଧି କରିବା ନିମନ୍ତେ ସୁପିତା ଓ ସୁମାତାଙ୍କ ସଂଖ୍ୟା ବଢ଼ିବା ଆବଶ୍ୟକ । ଶୁକ୍ରାଚାର୍ଯ୍ୟ କହିଅଛନ୍ତି, 'ଅଜାତମୃତ ମୂର୍ଖାଣାଂ ବରମାଦ୍ୟୌ ନ ଚାନ୍ତିମଃ' । ସନ୍ତାନ ଜନ୍ମ ନ ହେବା, ଜନ୍ମ ହୋଇ ମରିବା ଓ ମୂର୍ଖ ହେବା, ଏ ତିନିକଥା ମଧ୍ୟରୁ ଆଗ ଦିଓଟି କଥା (ପିଲା ଆଦୌ ଜନ୍ମ ନ ହେବା ଓ ପିଲା ଜନ୍ମ ହୋଇ ମରିବା) ଶ୍ରେୟସ୍କର, କିନ୍ତୁ ଶେଷକଥା (ପିଲା ମୂର୍ଖ ହେବା) ବାଞ୍ଛନୀୟ ନୁହେଁ । ଅଧମ ପିଲା ଭବିଷ୍ୟତ ଜୀବନରେ ସମାଜର ଅମଙ୍ଗଳକର ଓ ଗଳଗ୍ରହ ହେବା ଅପେକ୍ଷା ବାପା ମା ଅପୁତ୍ରକ ହେବା (ଆଣ୍ଟୁକୁଡ଼ା) ଭଲ କିମ୍ବା ଶିଶୁ ଅବସ୍ଥାରେ ପିଲା ମରିଯିବା ଶ୍ରେୟସ୍କର ।

ଭ୍ରୂଣଟି ଗର୍ଭ ନିହିତ ହେବାଠାରୁ ସେ ବଢ଼ି 'ମଣିଷ' ହେବା ପର୍ଯ୍ୟନ୍ତ ତାହାର ଲାଳନ ପାଳନ ଭାର ପିତାମାତାଙ୍କ ଉପରେ ନ୍ୟସ୍ତ ଥାଏ । ପିଲାମାନେ ସୁ-ଲାଳନ ଫଳରେ

ସୁ-ସନ୍ତାନ ଓ କୁ-ଲାଳନ ଫଳରେ କୁ-ସନ୍ତାନ ପାଲଟି ଯା'ନ୍ତି । ସମାଜର ମଙ୍ଗଳ ନିମନ୍ତେ ସୁସ୍ଥ ନରନାରୀ ଆବଶ୍ୟକ । ସୁସ୍ଥ ନରନାରୀ ହେବା ନିମନ୍ତେ ସୁସ୍ଥ ସନ୍ତାନସନ୍ତତି ଆବଶ୍ୟକ- ସୁସ୍ଥ ସନ୍ତାନସନ୍ତତି ହେବା ନିମନ୍ତେ ସୁସ୍ଥ ପିତାମାତା ଆବଶ୍ୟକ । ସନ୍ତାନସନ୍ତତି ହେବାର ଏକମାତ୍ର ଅପରିହାର୍ଯ୍ୟ ଯନ୍ତ୍ର ପିତାମାତା । ଦୁହିଁଙ୍କ ରଜବୀର୍ଯ୍ୟ ସମ୍ମିଳନରେ ଭ୍ରୂଣ ଜୀବନ ପାଏ ଓ ମାତାର ଗର୍ଭ ସେହି ଜୀବନପ୍ରାପ୍ତ ଭ୍ରୂଣକୁ ଆଧାର ରୂପେ ରକ୍ଷା କରେ ଓ ନିଜର ରକ୍ତ ଦ୍ୱାରା ସେହି ଭ୍ରୂଣକୁ ବଢ଼ାଏ । ଶିଶୁ ଗର୍ଭରେ ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇ ୯/୧୦ ମାସ ପରେ ଭୂମିଷ୍ଠ ହେଲେ ମାତା ସ୍ତନ୍ୟ ଦାନ କରି ତାକୁ ଜୀବିତ ରଖେ ଓ ଶିଶୁ ନିଜେ ଖାଇ ପାରିବା ପର୍ଯ୍ୟନ୍ତ ମାତା ତାହାର ଏକମାତ୍ର ରକ୍ଷାକର୍ତ୍ତା ହୋଇଥାଏ ।

ଅତଏବ ସମାଜରେ 'ମାତା'ର ଆସନ କେତେ ଉଚ୍ଚ ଓ କେଡ଼େ ପବିତ୍ର ଓ କେଡ଼େ କଠୋର, ତାହା ଉପଲବ୍ଧି କରିବା ହିଁ ପ୍ରତ୍ୟେକ ସମାଜ ପକ୍ଷରେ, ବ୍ୟକ୍ତି ପକ୍ଷରେ, ଜାତି ପକ୍ଷରେ, ପରିବାର ପକ୍ଷରେ ମଙ୍ଗଳମୟ । ଅତଏବ ଏ ଦୃଷ୍ଟିରେ ସ୍ତ୍ରୀ ଜାତିକୁ ତିନି ଶ୍ରେଣୀରେ ବିଭାଗ କରାଯାଇପାରେ । (୧) ମାତା, ଯେଉଁମାନେ ମାତା ହୋଇଛନ୍ତି, ଅର୍ଥାତ୍ ସନ୍ତାନସନ୍ତତିଙ୍କୁ ଜନ୍ମ କରି ସାରିଛନ୍ତି । (୨) ଆଶୁ ମାତା, ଯେଉଁମାନେ ଶୀଘ୍ର ମାତା ହେବେ ଅର୍ଥାତ୍ ଗର୍ଭବତୀ ହୋଇ ଭାବୀ ବଂଶଧରଙ୍କୁ ଗର୍ଭରେ ଧାରଣ କରିଛନ୍ତି । (୩) ଭାବୀମାତା, ଯେଉଁମାନେ ମାତା ହେବାର ଉପଯୁକ୍ତା, ଅର୍ଥାତ୍ ବିବାହଯୋଗ୍ୟା ଓ ଗର୍ଭ ଧାରଣ କରିବାକୁ ସମର୍ଥା । ଏହି ତିନି ଶ୍ରେଣୀର ସ୍ତ୍ରୀମାନଙ୍କ ବିଷୟ ସୁପ୍ରଜନନ ବିଜ୍ଞାନ (Eugenics)ର ଆଲୋଚ୍ୟ ବିଷୟ ଅଟେ ।

**୧ମ ଶ୍ରେଣୀ, ମାତାଙ୍କ ସମ୍ବନ୍ଧରେ-** ମାତା କିପରି ଶିଶୁର ଲାଳନ ପାଳନ କରି ସମାଜକୁ ସୁଯୋଗ୍ୟ, ସୁସ୍ଥ, ସବଳ, ସୁ-ପ୍ରକୃତିକ ଶିଶୁ ଉପହାର ଦେବେ - ଏହାହିଁ ଆଲୋଚିତ ହେବା ଆବଶ୍ୟକ ।

**୨ୟ ଶ୍ରେଣୀ, ଆଶୁ ମାତାଙ୍କ ସମ୍ବନ୍ଧରେ-** ଗର୍ଭିଣୀମାନେ କିପରି ଗର୍ଭସ୍ଥ ଭ୍ରୂଣର ଯତ୍ନ ନେବେ ଓ ଗର୍ଭାବସ୍ଥାରେ ଭ୍ରୂଣ କିପରି ସୁସ୍ଥ ସବଳ ଓ ସଜୀବ ହେବେ, ଏହାହିଁ ଆଲୋଚିତ ହେବା ଆବଶ୍ୟକ ।

**୩ୟ ଶ୍ରେଣୀ, ଭାବୀମାତାଙ୍କ ସମ୍ବନ୍ଧରେ-** କେଉଁ କେଉଁ ବାଳିକା ବା ଯୁବତୀମାନେ ସନ୍ତାନ ଜନ୍ମ କରିପାରିବେ, କେଉଁମାନେ ସୁମାତା ହୋଇ ସନ୍ତାନଙ୍କ ସଂଖ୍ୟା ବୃଦ୍ଧି କରିବେ, କେଉଁମାନେ ଶାରୀରିକ ବା ମାନସିକ ଦୁର୍ଗୁଣରୁ ସୁମାତା ହେବାର ଉପଯୁକ୍ତ ନୁହନ୍ତି, ଭବିଷ୍ୟତରେ ମାତା ହେଲେ ସେ ଦାୟିତ୍ୱକୁ ତୁଲାଇବା ପାଇଁ ଏମାନଙ୍କର କି କି ଗୁଣ ଆବଶ୍ୟକ, କେଉଁ ବୟସରେ ବିବାହ କରିବା ଆବଶ୍ୟକ, କେଉଁ ବୟସରେ, କେଉଁ ସମୟରେ ଓ କେଉଁ ସମୟରେ ପୁରୁଷ ସହବାସ କର୍ତ୍ତବ୍ୟ- ଏହିପରି ନିୟମମାନ ଆଲୋଚିତ ହେବା ଆବଶ୍ୟକ । ଏହି ତିନି ଶ୍ରେଣୀର ମାତାମାନଙ୍କର

କର୍ତ୍ତବ୍ୟ କ'ଣ ? ଏହାର ଆଲୋଚନା ହେବା ସଙ୍ଗେ ସଙ୍ଗେ ପୁରୁଷ ଜାତିର ଓ ସମାଜର ଏମାନଙ୍କ ପ୍ରତି କି କି କର୍ତ୍ତବ୍ୟ ତାହା ମଧ୍ୟ ଆଲୋଚିତ ହେବା ଆବଶ୍ୟକ । ଯେଉଁଠାରେ Right (ସ୍ୱତ୍ୱ ବା ଦାବି) ଥାଏ, ସେଠାରେ Liability (ଦାୟିତ୍ୱ) ଥାଏ । ଭଗବାନ୍ ମାତାମାନଙ୍କ ଉପରେ ଯେଉଁପରି ସନ୍ତାନସନ୍ତତିଙ୍କ ପ୍ରତି କର୍ତ୍ତବ୍ୟର ଗୁରୁଦାୟିତ୍ୱ ଅର୍ପଣ କରିଅଛନ୍ତି- ମାତାମାନଙ୍କ ପ୍ରତି ମଧ୍ୟ କ'ଣ କର୍ତ୍ତବ୍ୟ, ଏପରି ଗୁରୁଦାୟିତ୍ୱ ପୁରୁଷ ଜାତି ଉପରେ, ସମାଜ ଉପରେ ମଧ୍ୟ ନ୍ୟସ୍ତ କରିଅଛନ୍ତି । ସଂସାରରେ, ସମାଜରେ ଓ ବିଶ୍ୱ ବ୍ରହ୍ମାଣ୍ଡରେ Rights (ମୋର ଅନ୍ୟ ଉପରେ ଥିବା ଦାବି) ସଙ୍ଗେ ସଙ୍ଗେ Liabilities (ଅନ୍ୟର ମୋ ଉପରେ ଥିବା ଦାବି) ଛନ୍ଦଣି ମନ୍ଦଣି ହୋଇ ଜଡ଼ିତ ରହିଅଛି । ମାତା ଯେଉଁ ପରି ସୁଶିଶୁ ନିମନ୍ତେ ସମାଜ ନିକଟରେ ଦାୟୀ, ମାତାକୁ ସୁଶିଶୁ ପ୍ରସବ କରିବାର ସମସ୍ତ ସୁବିଧା କରିଦେବା ନିମନ୍ତେ ସମାଜ ମଧ୍ୟ ସେହିପରି ମାତୃଜାତି ନିକଟରେ ଦାୟୀ ଅଟେ ।

ବୈଜ୍ଞାନିକମାନେ ଏହି ବିଜ୍ଞାନକୁ (Eugenics) ଦୁଇ ଭାଗରେ ବିଭକ୍ତ କରିଅଛନ୍ତି ।

**Positive Eugenics** - ଯେଉଁ ଯେଉଁ ଉପାୟ ଅନୁଧାବନ କଲେ ବାଳିକାମାନେ ସୁମାତା ହୋଇପାରିବେ, ଅର୍ଥାତ୍ ସୁସନ୍ତାନ ଜନ୍ମ କରିପାରିବେ ଏବଂ ସମାଜରେ ସୁମାତାଙ୍କ ସଂଖ୍ୟା ତଥା ସୁସନ୍ତାନଙ୍କ ସଂଖ୍ୟା ବୃଦ୍ଧି ହେବ ଓ ସୁମାତା ହେବା ନିମନ୍ତେ ଉତ୍ସାହ ଓ ସୁବିଧା ଦିଆଯିବ ।

**Negative Eugenics** - ଯେଉଁ ବାଳିକାମାନଙ୍କର ସୁମାତା ହୋଇପାରିବାର ଆଶା ନାହିଁ, ସେମାନଙ୍କୁ ମାତା ହେବା ଯୋଗରୁ କି କି ଉପାୟ ଦ୍ୱାରା ନିବୃତ୍ତ ଓ ସମାଜରେ କୁମାତାଙ୍କ ସଂଖ୍ୟା ତଥା କୁ-ସନ୍ତାନଙ୍କ ସଂଖ୍ୟା କମିଯିବ । ଯେଉଁ ସନ୍ତାନମାନେ ପରିବାରର, ସମାଜର, ଜାତିର ଓ ଜଗତର ଅମଙ୍ଗଳପ୍ରଦ, ସେପରି ସନ୍ତାନ ଆଦୌ ଭୂମିଷ୍ଠ ନ ହେବାର କଟକଣା କରାଯିବା ଉଚିତ । ଉଦାହରଣସ୍ୱରୂପ ଦେଖନ୍ତୁ ଜଣେ ଉନ୍ମାଦ ରୋଗଗ୍ରସ୍ତା ସ୍ତ୍ରୀର ଗର୍ଭରୁ ଉନ୍ମାଦ ରୋଗଗ୍ରସ୍ତ ସନ୍ତାନ ଜନ୍ମ ହେବ । ଏପରି-ସ୍ଥଳରେ ଉକ୍ତ ସ୍ତ୍ରୀ କିପରି ପ୍ରସବକ୍ରିୟାରୁ ସ୍ଥଗିତ ରହିବ, ତହିଁର ଉପାୟ କରାଯିବା ଉଚିତ । ତାହା ନ କଲେ ସମାଜରେ ଉନ୍ମାଦ ରୋଗୀଙ୍କ ସଂଖ୍ୟା ବଢ଼ିବ । ଏହିପରି କେତେଗୁଡ଼ିଏ ଦୁଃଖ ଓ ବ୍ୟାଧି ଅଛି । ଏ କ୍ଷେତ୍ରରେ ପିତାମାତା ଉଭୟଙ୍କର ଉଭୟଙ୍କ ପ୍ରତି ଓ ସମାଜ ପ୍ରତି ପବିତ୍ର ଦାୟିତ୍ୱ ଓ ଅତି କଠୋର କର୍ତ୍ତବ୍ୟ ଅଛି ।

କେତେ ପୁରୁଷ ବା କେତେ ସ୍ତ୍ରୀ ଭାବୀ ବଂଶଧରଙ୍କର ଆଧାର ରୂପେ ଠିଆ ହେବା ପୂର୍ବରୁ (ଅର୍ଥାତ୍ ବିବାହ ବନ୍ଧନରେ ଜଡ଼ିତ ହେବାପୂର୍ବରୁ) ଏ କଠୋର ଦାୟିତ୍ୱର ପବିତ୍ରତା ଉପଲବ୍ଧି କରିଥା'ନ୍ତି ?

ଯୌବନର ପ୍ରାରମ୍ଭରେ ଇନ୍ଦ୍ରିୟ ଚରିତାର୍ଥ କରିବାର ଆକାଙ୍କ୍ଷା ବଳବତୀ ହେବା ସଙ୍ଗେ ସଙ୍ଗେ ଓ ଆମ୍ଭମାନଙ୍କ ସମାଜରେ ଯୌବନର ପାଖ ଆଖ ନ ମାଡୁଣୁ

ବରକନ୍ୟାଙ୍କର 'ହାତଗଣ୍ଠି' ପଡ଼ିଯାଏ; କିନ୍ତୁ କେତେଜଣଙ୍କୁ ଏ ଗୁରୁଭାର ବହନ କରିବାକୁ ସମାଜ ଉପଯୁକ୍ତ ରୂପେ ଶିକ୍ଷିତ ଓ ତାଲିମ କରି କ୍ରୀଡ଼ାଭୂମିକୁ ଛାଡ଼ିଦିଏ ? ନବଗ୍ରଥିତ ବରକନ୍ୟାଙ୍କର ନିଜ ନିଜ ପ୍ରତି ଯେଉଁପରି କଠୋର କର୍ତ୍ତବ୍ୟ ଅଛି, ସେମାନଙ୍କ ପିତାମାତା, ଗୁରୁଜନ, ଶିକ୍ଷକମାନଙ୍କର ମଧ ସେମାନଙ୍କୁ ଏ କଠୋର ଦାୟିତ୍ୱ ସମ୍ବନ୍ଧରେ ଶିକ୍ଷା ଦେବାର ଗୁରୁଦାୟିତ୍ୱ ଅଛି । ଏହା ସାଧାରଣତଃ ବରକନ୍ୟା କିମ୍ୱା ବରକନ୍ୟାଙ୍କ ପିତାମାତାମାନେ ଉପଲବ୍ଧି ନ କରି ଅଜ୍ଞାତ ଅପରିଚିତ କ୍ଷେତ୍ରରେ ବିଚରଣ କରିବା ନିମନ୍ତେ ଆପଣା ପିଲାପିଲିଙ୍କୁ ଘର କରିବାକୁ ଛାଡ଼ି ଦିଅନ୍ତି । ଫଳତଃ ବିବାହର 'ମଧୁଶଯ୍ୟା' 'ହଳାହଳଶଯ୍ୟା'ରେ ପରିଣତ ହୁଏ । ବର-କନ୍ୟାଙ୍କ ଜୀବନ ତ ବିଷମ ଓ ବିଷମୟ ହୋଇଯାଏ, ଅଧିକନ୍ତୁ ଉକ୍ତ ସମ୍ମିଳନୀରୁ ଯେଉଁ ଫଳ (ସନ୍ତାନସନ୍ତତି) ବାହାରେ, ସେ ମଧ ବିଷମ ଓ ବିଷମୟ ହୁଏ । ଆଜି ଏତିକି ।

ଉତ୍କଳ ସାହିତ୍ୟ/୨୬ଶ ଭାଗ/୫ମ ସଂଖ୍ୟା (ଭାଦ୍ର)/୧୩୩୦ ସାଲ ।

## ।। ନବମ ପୁଡ଼ା ।।

ଗତଥର ପଚାରୁଥିଲି ଯେ କେତେଜଣଙ୍କ ହାତକୁ ସମାଜ ବା ପିତାମାତା ଭାବୀ ବଂଶଧରଙ୍କ ପିତାମାତା ହେବା ଅଧିକାରର ଚାବି ବଢ଼ାଇ ଦେବା ଆଗରୁ ଏ ଗୁରୁଦାୟିତ୍ୱ ବହନ କରିବା ନିମନ୍ତେ ଉପଯୁକ୍ତ ରୂପେ ତାଲିମ କରି କାର୍ଯ୍ୟ କ୍ଷେତ୍ରକୁ ଛାଡ଼ି ଦିଅନ୍ତି ? ବରକନ୍ୟାମାନେ ଅଜ୍ଞାତ ଅପରିଚିତ କ୍ଷେତ୍ରରେ ବିଚରଣ କରିବାକୁ ବାହାରିବା ଆଗରେ ବାଟ ଖରଚ ସୁଦ୍ଧା କାନିରେ ନ ବାନ୍ଧି 'ଦିଲ୍କା ଲଡୁ' ଚାଖିବାକୁ 'ଦୂର୍ବାବଦରାକ୍ଷତପୁଷ୍ପାଣି ବସଟ୍' କରି ଅନୁକୂଳ କରନ୍ତି । ଫଳତଃ ଦେଖାଯାଏ ଯେ, ଅଧିକାଂଶ ପ୍ରାଣୀ 'ଆୟୁର୍ବିତ୍ତଂ ଗୃହଛିଦ୍ରଂ' ଶାସ୍ତ୍ରର ଦ୍ୱାହି ଦେଇ ଘରେ ଘରେ ଘର ନିଆଁକୁ ଅଣ୍ଟିରେ ପୂରାଇବାର ବିଫଳ ଚେଷ୍ଟାରେ ମାତନ୍ତି । କେତେ ଲୋକ ଏ ବନ୍ଧନର ତୋଡ଼ ସମ୍ଭାଳି ନ ପାରି ହାଣ୍ଡି କୁଣ୍ଡେଇ ଭଙ୍ଗାଭଙ୍ଗି କରି ଦେଇ କଉପୁନୀ ମାରନ୍ତି ବା ଭେକ ଧରନ୍ତି; ଆଉ ଶେଷକୁ ସମସ୍ତେ କଂସକଚଡ଼ାଟି ମାନ ଖାଇ ଆଖି, କାନ, ନାକ ମଳିମଳିକା ମଶାଣି ପଦା ରୂପ ପୀଠ ଆଡ଼କୁ ମନ୍ଥର ଗତି କରନ୍ତି । ଏ ବ୍ୟକ୍ତିଗତ ସୁଖ ଦୁଃଖ ସଂଗେ ସୁ-ପ୍ରଜନନ ବିଦ୍ୟାର ପ୍ରତ୍ୟକ୍ଷ ସମ୍ବନ୍ଧ ନ ଥିଲେହେଁ ଏହି ବିଦ୍ୟାର ଅନୁଶୀଳନ ଅଭାବରେ କେତେ ସୁନାର ସଂସାର ଚୂନା ହେଉଅଛି, କେତେ ସୁନା ଫୁଟି ଅଗାଡ଼ି ହେଉଅଛି, କେତେ ଜନାକାରୀ, ଖୁଣୀ, ଜଳଡୁବି ଆଦି ପିଙ୍ଗଳକୋର୍ଟ୍‌ର ମକଦ୍ଦମା ଚାଲୁଅଛି । ଏ ସବୁ ମକଦ୍ଦମାକୁ ଓକିଲ, ବାରିଷ୍ଟର, ମୁନ୍‌ସି, ଦାରୋଗା ଆଦି ତଦାରଖ କରି, ଚାଲାଣ କରି ଫଏସଲା କରୁଥାନ୍ତି । ଆମର ଉପସ୍ଥିତ ଚର୍ଚ୍ଚାଟିରେ ସେଥିରେ ବେଶି ଯାଏଆସେ ନାହିଁ ।

ଆଶୁମାତା (Expectant Mothers) ଓ ଶିଶୁ ମାତାଙ୍କ (Nursing Mothers) ଲାଳନପାଳନ ନିମନ୍ତେ ସମାଜ ଦାୟୀ । ଯେବେ ଜାତିକୁ ଉନ୍ନତ କରିବାକୁ ହେବ,

ତେବେ ଏମାନଙ୍କୁ ସୁପାଳନ କରିବାକୁ ହେବ । ଗର୍ଭଧାରିଣୀ ସମାଜର ଭାବୀ-ବଂଶଧରମାନଙ୍କର ଆଧାର ରୂପା ।

ବାଳିକା ଜନ୍ମ ହୋଇ ପିତାମାତାଙ୍କ ମାରଫତରେ ନାବାଳକ ଅବସ୍ଥା କଟାଇ ଦିଏ । ତାପରେ ସାବାଳକ ହେବା ପୂର୍ବରୁ ଆମ ମରହଟିଆ ଶାସ୍ତ୍ରକାରମାନେ 'ଭର୍ତ୍ତା ରକ୍ଷିତ ଯୌବନ' ବଚନର ଦ୍ୱାହି ଦେଇ ନାଗନାଡ଼ି ନରରାକ୍ଷସ, ଷଡ଼ଷ୍ଟକି, ରାଜଯୋଟକ ଆଦି ଦଶମେଳକ ବୁଝାସୁଝା କରି 'ଯଥା ରାମସ୍ୟ ସୀତା, ତଥା ନଳସ୍ୟ ଦମୟନ୍ତୀ' କରିଦେଇ ଖଲାସ ପାଉଥିଲେ । କିନ୍ତୁ ବର୍ତ୍ତମାନ ପାଶ୍ଚାତ୍ୟ ସଭ୍ୟତା ଓ ଆଇନର ଯୁଗରେ ବାଳକ ବାଳିକା ସାବାଳକ ହେଲା ମାତ୍ରକେ ତାଙ୍କ ମନ ଉପରେ ବାପା ମା ରଜା ନୁହନ୍ତି କି ତାଙ୍କୁ କିଛି ବାଡ଼ ବତା ନ ଥାଏ । ଫଳତଃ ନିଜ ଶିଙ୍ଗରେ ମାଟି ଖୋଳିବାକୁ, ନିଜ ମୁଣ୍ଡଝାଳ ତୁଣ୍ଡରେ ମାରିବାକୁ ସଂସାର କ୍ଷେତ୍ରକୁ ଯୁବା, ବାଳକ, ବାଳିକା ବାହାରି ପଡ଼ି ଆପଣା ମରଜି ମୁତାବକ ବାଛି ବାଛି, ଖୋଜି ଖୋଜି, ଦରାଣ୍ଡି ଦରାଣ୍ଡି ଗୋଟିଏ ବୈଧ ବା ଅବୈଧ ଜୀବନ ସଙ୍ଗୀ ଯୋଗାଡ଼ କରି ନିଅନ୍ତି । ଫଳତଃ ଦେଖାଯାଏ ଯେ, ସଂସାରର ଗତିରେ ଅନଭିଜ୍ଞମାନଙ୍କର ଅନ୍ୟ ସମସ୍ତ କାର୍ଯ୍ୟ ଭଳି ଏସଙ୍ଗ-କ୍ରୀଡ଼ା ପ୍ରେତଲୀଳାରେ ପରିଣତ ହୁଏ । 'ମଧୁଶଯ୍ୟା' 'ହଳାହଳ'ରେ ପରିଣତ ହୁଏ । ('କେହି କେହି ପଚାରିବେ, ଏ କଥାଗୁଡ଼ାକ ବାଇନାନୀ ଏତେ ମାଠି ହେଉଛନ୍ତି କିଆଁ ? ଏତେ ନିକୁଟେଇ ହୋଇ ଥରକୁଥର ତୁହାକୁ ତୁହା ଘୋଷି ହେଉଛନ୍ତି କିଆଁ ? ଏଥିର ଉତ୍ତରରେ ବାଇନାନୀଙ୍କ ଓକିଲ ଏତିକି କହିପାରନ୍ତି ଯେ, ଯେମିତି କାଲି ବହିରାଙ୍କୁ ତୁନି ତୁନି କରି କହିଲେ, କିମ୍ବା ଥରେ ଦି'ଥର, ଗୋଟାଏ କଥା କହିଦେଲେ ଶୁଭେ ନାହିଁ, ସେହିପରି ସମାଜଟା ଗୋଟାଏ କାଲ ଜଡ଼ା ଜୀବ । ତାକୁ ଚେତାଇବା ପାଇଁ, ତାକୁ ଚିଆଁ ପହଡ଼ରୁ ଉଠାଇବା ପାଇଁ ଦରକାରୀ କଥାଟାମାନ ଟିକିଏ ଆଛାକରି ମାଠିବା ଦରକାର । ଏମନ୍ତ କି ସମୟ ସମୟରେ ଏକାଧିକ ଥର କେଞ୍ଚାକେଞ୍ଚି ନ କଲେ ସମାଜର କଡ଼ ଲେଉଟେ ନାହିଁ କି ନିଦ ଭାଙ୍ଗେ ନାହିଁ ।)

ଫଳତଃ ଦେଖାଯାଏ ଯେ, ପାଶ୍ଚାତ୍ୟ ସଭ୍ୟତାରେ ଅନୁପ୍ରାଣିତ ସମାଜରେ ଅନେକ ଗର୍ଭଧାରିଣୀ (ଆଶୁମାତା Expectant Mother ଏବଂ ଶିଶୁ ମାତାମାନେ- Nursing Mother) ନିରାଶ୍ରୟ ଓ ବେଉଆରସ ହୋଇ ପଡ଼ନ୍ତି ଓ ସମାଜ-ସୁଅରେ କେତେଗୁଡ଼ିଏ ଗଳଗ୍ରହ 'ଜାଆଁଳ' ଆଣି ପହଁରାନ୍ତି । ଦେଶ ଯେତିକି ପାଶ୍ଚାତ୍ୟ ସଭ୍ୟତାରେ ଅଗ୍ରସର ହେଉଅଛି, ସେତିକି ଏ ଗଳଗ୍ରହ ଜାଆଁଳ ସଂଖ୍ୟା ବଢୁଅଛି । ଭାରତରେ ପୂର୍ବେ କ'ଣ ଥିଲା, ଏବେ କ'ଣ ହେଲାଣି । ବର୍ତ୍ତମାନ ଇଂଲଣ୍ଡ, ଆମେରିକା, ଜର୍ମାନୀ ଆଦି ପାଶ୍ଚାତ୍ୟ ସଭ୍ୟଦେଶରେ ଅପାଳିତ ଭର୍ତ୍ତୃକା ସ୍ତ୍ରୀ ଓ ଅପାଳିତ ପିତୃକ ଶିଶୁମାନଙ୍କ ସଂଖ୍ୟା ଦିନକୁ ଦିନ ବଢୁଅଛି ବୋଲି ଅନୁସନ୍ଧାନକାରୀ ପଣ୍ଡିତମାନେ ଗବେଷଣା ବା ସରଜମିନ ତଦାରଖ ଦ୍ୱାରା ସ୍ଥିର କରି ସାରିଲେଣି । ଅଥଚ ଘରଛୁଆଣିକୁ ଘର ଛୁଆଣି ଅଣ୍ଡାବଚ୍ଚା

ପଇଦା ହେବାର କୁଡେଇ ନାହିଁ । ଏଥିପାଇଁ ସୁପ୍ରଜନନ ବିଜ୍ଞାନର ବ୍ୟାବହାରିକ ପ୍ରୟୋଗ (Practical application) ଲୋଡ଼ା । ସମାଜ ଯେଉଁ ପର୍ଯ୍ୟନ୍ତ ଏମାନଙ୍କ ଖବର ନ ବୁଝିବ, ଏମାନଙ୍କ ତତ୍ତ୍ୱ ନ ନେବ, ଏମାନଙ୍କ କଟକଣା ନ କରିବ, ସେ ପର୍ଯ୍ୟନ୍ତ ସମାଜର ନୈତିକ, ଦୈହିକ ଓ ଜାତୀୟ ଅବନତି ଘଟୁଥିବ ଏବଂ ପକ୍ଷାନ୍ତରରେ ଅନାଥ ଆଶ୍ରମମାନଙ୍କ ସଂଖ୍ୟା ଓ ମା'ଛେଉଣ୍ଡ ବାପଛେଉଣ୍ଡ ପିଲାଙ୍କ ସଂଖ୍ୟା ବୃଦ୍ଧି କ୍ଷିପ୍ର ଗତିରେ ଚାଲୁଥିବ । ଏ ବୋଝ ଶେଷକୁ ସେହି ସମାଜ ମୁଣ୍ଡରେ ଲଦା ହେଉଅଛି ଓ ହେବ । ଏପରି ସ୍ଥଳରେ ଏ ଦମ୍‌ଫଟା ବୋଝ ମୁଣ୍ଡାଇବା ଆଗରୁ ଯେବେ ସମାଜ ଏମାନଙ୍କ ସଂଖ୍ୟାକୁ ସଂଯତ ଓ ସୁପରିବର୍ତ୍ତିତ କରିବାକୁ ଚେଷ୍ଟା କରେ, ତାହାହେଲେ ସମାଜର ଲାଭ ଛଡ଼ା କ୍ଷତି ନାହିଁ ।

ଦେଖିବାକୁ ଗଲେ ଆଶୁମାତା ଓ ଶିଶୁମାତାମାନଙ୍କ ରକ୍ଷଣାବେକ୍ଷଣ ଓ ସୁପାଳନର କଟକଣା କରିବାକୁ ସମାଜ ବାଧ୍ୟ । ଗର୍ଭିଣୀ (ଆଶୁମାତା) ସମାଜର ଆଶୁ-ବଂଶବୃଦ୍ଧି ରୂପ ମଙ୍ଗଳମୟ ଓ ପବିତ୍ରତମ କାର୍ଯ୍ୟରେ ଲାଗି ଅଛନ୍ତି, ଏଥିପାଇଁ ତାଙ୍କୁ ରକ୍ଷଣାବେକ୍ଷଣ କରିବା ସମାଜର ପ୍ରଥମ କର୍ତ୍ତବ୍ୟ । ଯେଉଁମାନେ ସନ୍ତାନସନ୍ତତି ପ୍ରସବ କରି ସମାଜର ଅଙ୍ଗପୁଷ୍ଟ କରିଅଛନ୍ତି, ସେମାନଙ୍କର ମଧ୍ୟ ସମାଜ ମହାଫିସ୍ ହେବା ଉଚିତ । ପଣ୍ଡିତମାନେ ବୈଜ୍ଞାନିକ ପରୀକ୍ଷାଦ୍ୱାରା ସ୍ଥିର କରିଅଛନ୍ତି ଯେ, ଗୋଟିଏ ନବଜାତ ଶିଶୁକୁ ଛ'ମାସ ନିମନ୍ତେ ସ୍ତନ୍ୟଦାନ ଦ୍ୱାରା ବଞ୍ଚାଇବା ପାଇଁ ଯେଉଁ ସ୍ତନ୍ୟ (Mother's milk) ଆବଶ୍ୟକ, ସେତିକି ସ୍ତନ୍ୟ ଜାତ କରିବା ନିମନ୍ତେ ଶିଶୁର ଜନନୀର ଯେତେ ବଳ ବା ଶକ୍ତି ବ୍ୟୟ ହୁଏ, ସେହି ବଳର ପରିମାଣ ଏତେ ଯେ, ସେହି ବଳ ପ୍ରୟୋଗ କଲେ ଏକ ଟନ୍ (୧୭ ମହଣ) ବୋଝ ୭୫୦ ହାତ ଉଚ୍ଚକୁ ଉଠନ୍ତା । ଏହି ଉଦାହରଣରୁ ଅନୁମାନ ହେବ ଯେ, ଶିଶୁପାଳନ ନିମନ୍ତେ ଶିଶୁ ଜନ୍ମ ହେବାଠାରୁ ଶିଶୁର ମୁଣ୍ଡକୁ ହାତ ପାଇବା ପର୍ଯ୍ୟନ୍ତ ଶିଶୁ ପିଛା ଜନନୀ କେତେ ଶକ୍ତି ବ୍ୟୟ କରେ । ଗୋଟିଏ ପିଲାକୁ ୧୦ ମାସ ଗର୍ଭରେ ଧରିବାଠାରୁ ଆରମ୍ଭ କରି 'ମଣିଷ' କରିବା ପର୍ଯ୍ୟନ୍ତ ପ୍ରତ୍ୟେକ ମାତାଙ୍କର କେତେ ଶକ୍ତି ବା ବଳ ବ୍ୟୟିତ ହୁଏ, ଏହା ଏହି ଅନୁପାତରୁ ଅନୁମାନ କରାଯାଇପାରେ । ଏ ଶକ୍ତି ଖରଚ କରିବାକୁ ସବୁ ଆଶୁମାତାଙ୍କର ସାମର୍ଥ୍ୟ ଥାଏ କି ନାହିଁ, ଏହା ଦେଖିବା ସମାଜର କର୍ତ୍ତବ୍ୟ ।

ପୂର୍ବରୁ ବୋଲାଯାଇଅଛି, ନାରୀ ଜୀବନର ପବିତ୍ରତମ କର୍ତ୍ତବ୍ୟ ଓ କାର୍ଯ୍ୟ ବଂଶବୃଦ୍ଧି (Motherhood) ଏବଂ ନର ଜନ୍ମର ପବିତ୍ରତମ କାର୍ଯ୍ୟ ସେହିତା (Fatherhood) । ଏ ଦୁଇ କାର୍ଯ୍ୟ ଓ କର୍ତ୍ତବ୍ୟ ସୁସମାହିତ ନ ହେଲେ ସମାଜର ମଙ୍ଗଳର ନିଦାନ ଭାବୀ ବଂଶଧରମାନଙ୍କ ଭବିଷ୍ୟତ ସମ୍ବନ୍ଧରେ ଆଶା ଦୁରାଶାରେ ପରିଣତ ହେବା ସ୍ୱାଭାବିକ ଅଟେ ।

ଏଥିର କଟକଣା ଆଗରୁ ନ କରିବାରୁ ଆଧୁନିକ ସମାଜକୁ ଗୁଡ଼ିଏ ନାଉଆରିସ୍ ଶିଶୁ ଓ ପରିତ୍ୟକ୍ତା ଶିଶୁମାତାଙ୍କ ବୋଝ ବୋହିବାକୁ ପଡୁଅଛି । ଏଥିର କଟକଣା ହେବ କେମିତି ? ଏହାହିଁ ସୁପ୍ରଜନନ ବିଜ୍ଞାନର ଗୋଟିଏ ମୁଖ୍ୟ ଉଦ୍ଦେଶ୍ୟ ।

ଆଗ ଦେଖାଯାଉ ଯେ, ବିବାହ ପ୍ରଥାଟି କ'ଣ ? ଆଲୋଚନା କଲେ ଦେଖାଯିବ ଯେ, ନାରୀର ଏହି ପବିତ୍ରତମ କର୍ତ୍ତବ୍ୟକୁ- ସୁସମାହିତ କରିବା ଓ ନାଉଆରସ୍ ଶିଶୁମାନଙ୍କ ପାଳନ ଭାର ରୂପ ଦାୟିତ୍ୱକୁ ଉପଯୁକ୍ତ ଓ ଦାୟଯୁକ୍ତ (Responsible) ବ୍ୟକ୍ତି ଉପରେ ସୁନ୍ୟସ୍ତ କରିବା ନିମନ୍ତେ ସମାଜରେ ବିବାହ ପ୍ରଥାର ସୃଷ୍ଟି ହୋଇଅଛି । ନାରୀ ଯେଉଁ ପୁରୁଷ ଯୋଗରୁ ନିଜର କୁମାରୀତ୍ୱ ମୂଳରେ କୁଠାରାଘାତ ହେବାକୁ ଅନୁମତି ଦିଏ ଓ ସମାଜର ଗୋଟଏ ପବିତ୍ରତମ ବୋଝ ପେଟରେ ଓ ମୁଣ୍ଡରେ ମୁଣ୍ଡାଏ, ସେହି ପୁରୁଷ ଉକ୍ତ ନାରୀର ଗର୍ଭଧାରଣଜନିତ ନିରାଶ୍ରୟତା ସମୟରେ ଏବଂ ଶିଶୁର ଅସହାୟତା ସମୟରେ ଉକ୍ତ ନାରୀର ଓ ଉକ୍ତ ଶିଶୁର ପାଳନର ଭାର ଗ୍ରହଣ କରିବା ସର୍ବତୋ ଭାବେ ଉଚିତ । ଏହି ଦାୟିତ୍ୱକୁ ଆଗରୁ ସ୍ଥିର କରିବା ଓ ବ୍ୟକ୍ତିବିଶେଷ ଉପରେ ନିର୍ଦ୍ଦେଶ କରିଦେବା ହିଁ ବିବାହ ଅନୁଷ୍ଠାନର ମୌଳିକ ଉଦ୍ଦେଶ୍ୟ । ବାଳିକାର ଅବସ୍ଥା ପରିବର୍ତ୍ତନ ଘଟିବା ଓ ବାଳିକାର ଅବସ୍ଥା ପରିବର୍ତ୍ତନ (ଗର୍ଭାଧାନ ଓ ପ୍ରସବ) ଯୋଗୁଁ 'କାବୁ' ଓ 'ଅଚଳ' ହୋଇ ରହିବା ଯାକେ ଗର୍ଭସ୍ଥ ଭ୍ରୂଣ ଓ ନବଜାତ ଶିଶୁକୁ ସୁପାଳନ କରିବା ନିମନ୍ତେ ଦାୟୀ କିଏ, ଏହାହିଁ ଆଗରୁ ମାର୍କାମାରି ଦେବାର ନାମ ସାମାଜିକ ଅଭିଧାନରେ 'ବିବାହ-ବନ୍ଧନ' । ସମାଜ ତେବେ ଏତିକି ମାର୍କା ମାରିଦେଇ ନିଶ୍ଚିନ୍ତ ହୋଇ ବସିଲେ ଚଳିବ ନାହିଁ । ଗର୍ଭଧାରିଣୀର ସ୍ୱାମୀ ଓ ଶିଶୁର ପିତା ତାଙ୍କ କର୍ତ୍ତବ୍ୟ ଓ କାର୍ଯ୍ୟ କଲେ କି ନାହିଁ, ଏହା ଦେଖିବ କିଏ ? ସମାଜ ତା ସ୍ୱାମୀ ବା ପିତାର ସ୍ଥାନ ଅଧିକାର କରିବ ନାହିଁ, କିନ୍ତୁ ସ୍ୱାମୀ ଓ ପିତା ନିଜ ନିଜର କର୍ତ୍ତବ୍ୟ ସୁସମ୍ପନ୍ନ କରିବା ନିମନ୍ତେ ଯଥେଷ୍ଟ କଟକଣା ବା ବିଧି ସମାଜ କରିଛି । ସମାଜ ଦେଖିବ ଯେ, ଭାବୀମାତା (Prospective Mother ଅର୍ଥାତ୍ ଗର୍ଭଧାରିଣୀମାନେ) ଓ ଶିଶୁ ମାତାମାନଙ୍କୁ (Nursing Mother ଅର୍ଥାତ୍ ଯେଉଁମାନେ ଶିଶୁ ପ୍ରସବ କରି ଅସହାୟ ହୋଇ ପଡ଼ିଛନ୍ତି) ପୋଷିବା ପାଳିବା ଲାଗି ଯେଉଁମାନଙ୍କ ଉପରେ ଧର୍ମ ପ୍ରମାଣେ ଦାୟିତ୍ୱ ନ୍ୟସ୍ତ ଅଛି, ସେମାନେ ସେ ଦାୟିତ୍ୱକୁ ଯଥାର୍ଥରେ ସୁସମାହିତ କରୁଅଛନ୍ତି କି ନାହିଁ ? ଏକ ଦେଶରେ ଆଧୁନିକ ସଭ୍ୟତା ସ୍ରୋତ ସଙ୍ଗେ ସଙ୍ଗେ ଅନେକ ସମାଜର ସୃଷ୍ଟି ହେଉଅଛି । ଏକ ସମାଜର ଏକ ବିଧି, ଏକ ମୁନିଙ୍କର ଏକ ମତ । ଏପରି ସ୍ଥଳରେ କେଉଁ ସମାଜ ଓ କେଉଁ ବିଧିର ବ୍ୟବସ୍ଥା କରିବ । ଏ କ୍ଷେତ୍ରରେ ଯାହାଙ୍କ ଉପରେ ଦେଶ ବା ରାଜ୍ୟ ଶାସନର ଭାର ଅର୍ଥାତ୍ ଯାହାଙ୍କୁ ଇଂରାଜୀ ଭାଷାରେ State ବା ସରକାର Government ବୋଲାଯାଏ ସେହି ଷ୍ଟେଟ୍ ବା ସରକାରଙ୍କ ଆଡୁ ଏ ସମ୍ବନ୍ଧରେ ବିଧିବିଧାନମାନ ପ୍ରଣୟନ ଜାରି ହେବା ଦରକାର । ଦେଶ ବା ରାଜ୍ୟ ମଧ୍ୟସ୍ଥ ପ୍ରତ୍ୟେକ ସମାଜ ତତ୍ତ୍ୱ ସମାଜର ଭର୍ତ୍ତୃତ୍ୱ, ପିତୃତ୍ୱ, ମାତୃତ୍ୱର ନିଦର୍ଶନ ଓ ସାର୍ଟିଫିକେଟ୍‌ର ମାର୍କା ମାରିବାରେ ଓ ଶଙ୍ଖ ଫୁଙ୍କି ହୁଳହୁଳୀ ଦେବାରେ ଲାଗିଥାନ୍ତୁ । State ବା ଦେଶ ଶାସନାଧ୍ୟକ୍ଷ (ରାଜା

ହୁଅନ୍ତୁ, ପାର୍ଲିଆମେଣ୍ଟ ହୁଅନ୍ତୁ, ପ୍ରେସିଡେଣ୍ଟ ହୁଅନ୍ତୁ) ଦେଶବାସୀଙ୍କ କର୍ତ୍ତବ୍ୟ ଓ ଦାୟିତ୍ୱ ସୁସମାହିତ ହେବା ବିଷୟରେ ଦୃଢ଼ ନିୟମ ଓ ଅଲଙ୍ଘ୍ୟ ବିଧି ବିଧାନ କରିବା କର୍ତ୍ତବ୍ୟ ।

ପାଶ୍ଚାତ୍ୟ ଦେଶର ପଣ୍ଡିତମାନେ କୌଣସି ବ୍ୟାଧି ଦେଖିଲେ ତହିଁ ନିମନ୍ତେ ଆଶୁ ପ୍ରଶମନ ଦବେଇ କିମ୍ବା ମଲମର ବ୍ୟବସ୍ଥା କରି ତୁନି ହୋଇ ରହିବା ଜନ୍ତୁ ନୁହନ୍ତି । ସେମାନେ ସେ ବ୍ୟାଧିର 'ଜଡ଼' ନିରୂପଣ କରି 'ଜଡ଼'ରୁ ମାରି ଦେବାର ଚେଷ୍ଟା କରନ୍ତି । ଉଦାହରଣସ୍ୱରୂପ ଦେଖାଯାଇଅଛି ଯେ, ବିଲାତରେ ୧୫ ବର୍ଷ ତଳେ ଜନ୍ମିତ ଶିଶୁମାନଙ୍କ ମଧ୍ୟରୁ ହଜାରକ ୧୫୦ ଶିଶୁ, ଶିଶୁ ଅବସ୍ଥା ନ ଟପୁଣୁଁ ମୃତ୍ୟୁମୁଖରେ ପତିତ ହେଉଥିଲେ, କିନ୍ତୁ ଇଂଲଣ୍ଡର ସମ୍ରାଟ୍ ଓ ସାମ୍ରାଜ୍ଞୀଙ୍କ ଅଭିଭାବକତ୍ୱରେ (Patronage) ଶିଶୁ ମୃତ୍ୟୁ ସଂଖ୍ୟା କମାଇବା ସକାଶେ ଗୋଟିଏ ଜାତୀୟ ଅନୁଷ୍ଠାନ ଓ ଆନ୍ଦୋଳନର (National Association for Prevention of Infant- mortality and chief-welfare) ସୂତ୍ରପାତ ହେଲା । ବୈଜ୍ଞାନିକ ଗବେଷଣା ଫଳରେ ଶିଶୁମାନଙ୍କର ଅକାଳ ମୃତ୍ୟୁର ମୌଳିକ କାରଣ ଓ ତଥ୍ୟମାନ ଅନୁସନ୍ଧାନ ଓ ଅନୁଧାବନ କରି ତହିଁର ପ୍ରତିକାର ଓ କଟକଣା ଏବଂ ଆଇନ ବ୍ୟବସ୍ଥା କରିବା ଦ୍ୱାରା ୧୫ ବର୍ଷ ମଧ୍ୟରେ ଶିଶୁ ମୃତ୍ୟୁ ୧୫୦ରୁ ଖସି ଆସି ୯୫ରେ ରହିଲାଣି । ଏହାହିଁ ସୁ-ପ୍ରଜନନ ବିଦ୍ୟା ଚର୍ଚ୍ଚାର ପ୍ରଥମ ମଙ୍ଗଳମୟ ଫଳ ଅଟେ । କି କି ଉପାୟରେ ସମାଜ ସୁ-ପ୍ରଜନନ ବିଜ୍ଞାନ ଚର୍ଚ୍ଚାର ସୁଫଳ ଭୋଗ କରିବ, ତାହା ପରେ ଆଲୋଚନା କରିବା । ଆଜି ଥାଉ ।

ଉତ୍କଳ ସାହିତ୍ୟ/୨୬ଶ ଭାଗ/୭ମ ସଂଖ୍ୟା କାର୍ତ୍ତିକ/୧୩୩୦ ସାଲ ।

## ।। ଦଶମ ପୁଡ଼ା ।।

ପୂର୍ବରେ ବୋଲାଯାଇଅଛି ଯେ, ସମାଜର ମଙ୍ଗଳ ନିମନ୍ତେ ଅର୍ଥାତ୍ ସୁସ୍ଥ ସମାଜ ନିମନ୍ତେ, ସୁସ୍ଥ ସାମାଜିକ ଜୀବ ଆବଶ୍ୟକ । ଅର୍ଥାତ୍ ସୁସ୍ଥ ପୁରୁଷ ଓ ସ୍ତ୍ରୀଙ୍କ ସଂଖ୍ୟା ବୃଦ୍ଧି ନ ହେଲେ ସମାଜ ସୁସ୍ଥ ହୋଇ ରହିପାରିବ ନାହିଁ । ଏଥି ନିମନ୍ତେ ଶିଶୁ ମୃତ୍ୟୁ ସଂଖ୍ୟା କମାଇବା କର୍ତ୍ତବ୍ୟ । ଯେଉଁ ଶିଶୁମାନେ ମାତୃକ୍ରୋଡ଼ରୁ ମରୁଅଛନ୍ତି, ସେଗୁଡ଼ିକ ବଞ୍ଚି ହୃଷ୍ଟପୁଷ୍ଟ ହୋଇ ବଢୁଥିଲେ ଭାବୀ ସମାଜ କେଡ଼େ ବଳଶାଳୀ ହୁଅନ୍ତା । ସାଧାରଣତଃ ଏପରି ଦେଖାଯାଏ ଯେ, ଯେଉଁ ପିଲାମାନେ ପିଲାଦିନରୁ ମୃତ୍ୟୁମୁଖରେ ପଡ଼ନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ମାତାପିତାଙ୍କ ଗଳଗ୍ରହ ହେବାକୁ ଆସିଥାନ୍ତି । ମା ବାପାଙ୍କୁ ଦହଗଞ୍ଜ କରି ସେମାନଙ୍କର 'ଆୟେ କ୍ଷତି ପ୍ରାଣେ ପୀଡ଼ା' କରି ଶେଷକୁ ସେମାନଙ୍କୁ ଆଣ୍ଠୁକୁଡ଼ା କରି ଅନ୍ତେଇଷ ହୁଅନ୍ତି । ଏପରି ଶିଶୁ ଜନ୍ମ ବା ଗର୍ଭରେ ଆବିର୍ଭୂତ ହୋଇ ନ ଥିଲେ ମାତା ପିତାଙ୍କର କେତେ ଧନ, କେତେ ବଳ, କେତେ ଯୌବନ ରହି ସମାଜରେ ଅନ୍ୟ ମଙ୍ଗଳକର କାମରେ ଲାଗିପାରିଥାନ୍ତା । ନିର୍ବଳୁଆ, ବାତୁଳା, ବାତୁଆ, ନିଶାଖୋର, କୁଷ୍ଠରୋଗୀ,

କ୍ଷୟରୋଗୀ, ଉପଦଂଶନ ରୋଗୀ ଆଦିଙ୍କଠାରୁ ଯେଉଁ ଶିଶୁ ଜନ୍ମନ୍ତି, ସେମାନେ ମାତା ପିତାଙ୍କର ତଥା ସମାଜର ଗଳଗ୍ରହ ମାତ୍ର । ଏପରି ସ୍ଥଳରେ ସମାଜରେ ଦୃଢ଼ ନିୟମ ହେବା ଉଚିତ ଯେ, ଏପରି ପିତାମାତାଙ୍କଠାରୁ ପିତାମାତା ହେବାର କ୍ଷମତା କାଢ଼ି ନିଆଯାଉ । ଏ କ୍ଷମତାପତ୍ର ରଦ୍ଦ କରିବାର ଦିଓଟି ଉପାୟ ଅଛି । ପ୍ରଥମ ଉପାୟ ବିବାହ ବିଧି ବନ୍ଦ । ଅର୍ଥାତ୍ ଏପରି ଧାତୁର ଯୁବକ ଯୁବତୀମାନେ ଅଭିଆଡ଼ୀ ରହନ୍ତୁ । ଚିନ୍ତା କଲେ ଦେଖାଯିବ ଯେ, ଏ ଉପାୟଟି ଅନୁଧାବନ କଲେ ଏହାର ଫଳ ବିଷମୟ ହୋଇଉଠିବ । କାରଣ ଯେଉଁମାନେ ବାଇ, ବାତୁଳ, ନିଶାବାଜ, ରୁଗ୍‌ଣ ସେମାନଙ୍କର ଇନ୍ଦ୍ରିୟ ଉପରେ ସେମାନଙ୍କର ଅଧିକାର ନ ଥାଏ । ଏପରି ସ୍ଥଳରେ ସମାଜ ବିବାହରୂପ ସଦର ଦରଜା ବନ୍ଦ କରିଦେଲେ ସେମାନେ ବାଡ଼ି ଦୁଆର ମେଲା କରିବେ ଓ ସମାଜରେ ଗୁଡ଼ିଏ ବର୍ଣ୍ଣଶଙ୍କର, ଅନିର୍ଦ୍ଦିଷ୍ଟ ପିତୃଜ, ନାଉଆରସ୍ ଶିଶୁ ବଢ଼ିବେ ମାତ୍ର । ଅତଏବ ଏ ଉପାୟରେ ଚଳିବ ନାହିଁ । ଏ ଉପାୟ ବିଧିବଦ୍ଧ କଲେ ମଙ୍ଗଳ ଆଶା ଅପେକ୍ଷା ଅମଙ୍ଗଳକର ଭୟ ବେଶି । ଏ ସମ୍ବନ୍ଧରେ କାଇଦା କଟକଣା, ଟିକସ, ଆଇନ ଆଦି କରାଗଲେ ଅନେକ ଉପକାର ହେବ, ଏହାହିଁ ମଧ ପୂର୍ବେ ଆମ ବ୍ୟବସ୍ଥାକାରମାନେ ଅବଲମ୍ବନ କରିଥିଲେ ଓ ଆଜିକାଲି ଯୁଗରେ 'ତେରା ମେରା ରାଜି, କ୍ୟା କରେଗା କାଜି' ରୀତି ସେତେବେଳେ ସାଧାରଣତଃ ପ୍ରଚଳିତ ନ ଥିଲା । ସ୍ୱୟଂବର ପ୍ରଥା କେବଳ ଥିଲା କ୍ଷତ୍ରିୟ ରାଜାମାନଙ୍କ ମଧରେ, ବାକି ଅନ୍ୟ ସମସ୍ତ ବିବାହ ନିମନ୍ତେ ଅନେକ କଡ଼ା ନିୟମ ଓ ବିଧି ପ୍ରତିପାଳିତ ହେଉଥିଲା ।

ଏ ଉପାୟ ଛଡ଼ା ଏ ସମ୍ବନ୍ଧରେ ଗୋଟିଏ ଉତ୍କୃଷ୍ଟତର ଉପାୟ ଅଛି, ତାହା ଏହି- 'ମୂଳୁ ମାଇଲେ ଯାଉ ସରି, ଦେବଙ୍କ ସଙ୍ଗେ କିପାଁ କଳି' । (୧) ଭାବୀମାତା ଅର୍ଥାତ୍ ବାଳିକା ଓ ଯୁବତୀମାନଙ୍କୁ ଜଗିପାରିଲେ ସଂସାରକୁ ଗୁଡ଼ିଏ ଗଳଗ୍ରହ ଶିଶୁ ଆମଦାନୀ ହେବାର ବାଟ ବନ୍ଦ ହେବ ଓ ହୃଷ୍ଟପୁଷ୍ଟ ଶିଶୁ ଜନ୍ମ ହେବାର ପଥ ସୁଗମ ହେବ । (୨) ଏ ପରୀକ୍ଷାରେ ଯେଉଁମାନେ ଉତ୍ତୀର୍ଣ୍ଣ ହୋଇ ଆଶୁମାତା ହେବେ, ସେମାନଙ୍କର ଓ ସେମାନେ ଗର୍ଭରେ ଧାରଣ କରିଥିବା ଜୀବଙ୍କର ରକ୍ଷାର ପଥ ଅବଲମ୍ବନ କରିବାକୁ ହେବ । (୩) ଗର୍ଭସ୍ଥ ସନ୍ତାନ ଭୂମିଷ୍ଠ ହେଲେ ତେଣିକି ଜନ୍ମତଃ ସୁସ୍ଥ ଶିଶୁ କିପରି ସ୍ୱାସ୍ଥ୍ୟକର ପରିସ୍ଥିତି ମଧରେ ଓ ସ୍ତନ୍ୟଦାତ୍ରୀର କ୍ରୋଡ଼ରେ ବର୍ଦ୍ଧିତ ହୋଇ ଫଳତଃ ସମାଜର ଭାବୀ ମଙ୍ଗଳର ଆଧାର ହେବ, ତହିଁର କଟକଣା କରାଯିବ । (୪) ତତ୍‌ପରେ ଶିଶୁ ମାତୃସ୍ତନ୍ୟ ଓ ମାତୃକ୍ରୋଡ଼ ଛାଡ଼ି ତା ମୁଣ୍ଡକୁ ହାତ ପାଇବା ପର୍ଯ୍ୟନ୍ତ ତାକୁ ସୁସ୍ଥ, ସବଳ ଓ କର୍ମଦକ୍ଷ କରିବା ନିମନ୍ତେ ଯାହା କଟକଣା ଦରକାର, ତାହା କରିବାକୁ ହେବ ।

ଏ ଚାରୋଟି ପାହାଚ ଟପିଲେ ତେବେ ଯାଇ ସମାଜ ସୁପ୍ରଜନନ ବିଦ୍ୟାଚର୍ଚ୍ଚାର ସୁଫଳ ଭୋଗ କରିବ ।

ଏହି ଚାରୋଟି ବିଷୟ ମଧରୁ ଗୋଟିଏ ଗୋଟିଏ କଥା ବର୍ତ୍ତମାନ ଧରାଯାଉ ।

୧- ସମାଜର ଓ ଜାତିର ଭାବୀମାତା ଅର୍ଥାତ୍ ବାଳିକା ଯୁବତୀମାନଙ୍କୁ ଜଗିବା-

ମାତୃତ୍ୱ ପୃଥିବୀର ସର୍ବୋଚ୍ଚ ଓ ପବିତ୍ରତମ କର୍ତ୍ତବ୍ୟ । ଏହି ପବିତ୍ରତମ କର୍ତ୍ତବ୍ୟ ପାଳନ ଯାହାଙ୍କ ଉପରେ ପଡ଼ିବ, ସେମାନଙ୍କୁ ତ ଯୋଗ୍ୟ କରିବାକୁ ହେବ । ଅର୍ଥାତ୍ ବାଳିକାମାନଙ୍କୁ ଏପରି ଶିକ୍ଷା, ସୁବିଧା, ସୁଯୋଗ ଓ ସାଧନା ମଧ୍ୟ ଦେଇ ତାଲିମ କରିବାକୁ ହେବ ଯେ, ସେମାନେ ଭବିଷ୍ୟତରେ ଆପଣାର ମଙ୍ଗଳକର, ସମାଜର ମଙ୍ଗଳକର, ରାଜ୍ୟର ମଙ୍ଗଳକର, ସାମ୍ରାଜ୍ୟର ମଙ୍ଗଳକର, ଭାବୀ ଶିଶୁଙ୍କର ମଙ୍ଗଳକର ସମସ୍ୟାମାନଙ୍କର ପାରଦର୍ଶୀ ହୋଇପାରିବେ । ଏଥିପାଇଁ ବାଲ୍ୟକାଳରୁ ବାଳିକାମାନଙ୍କୁ ଏପରି ଶିକ୍ଷା ଦେବାକୁ ହେବ ଓ ଏପରି ବତାଇବାକୁ ହେବ ଯେ, ସେମାନେ ଯୁବତୀ ଓ ଆଶୁମାତା ହେବାର ଉପଯୁକ୍ତା ହେଲାବେଳକୁ ସମାଜର ମଙ୍ଗଳ ନିମନ୍ତେ ଯାହା ଅବଶ୍ୟ କର୍ତ୍ତବ୍ୟ, ତାହା ବୁଝି ପାରିବେ ଓ କରିପାରିବେ । ବର୍ତ୍ତମାନ ବାଳିକା ଶିକ୍ଷାର ନିର୍ଘଣ୍ଟରେ ପ୍ରତ୍ୟେକ ବାଳିକା ଉପରେ ଭବିଷ୍ୟତରେ ନ୍ୟସ୍ତ ହେବା 'ମାତୃତ୍ୱ' ସମ୍ବନ୍ଧରେ କିଛି ଶିକ୍ଷା ଦେବାର ବ୍ୟବସ୍ଥା ନାହିଁ । ଆଜିପର୍ଯ୍ୟନ୍ତ ଯେଉଁମାନଙ୍କ ଉପରେ ସ୍ତ୍ରୀ ଶିକ୍ଷାର ଭାର ଥିଲା, ସେମାନେ ବାଳିକାମାନଙ୍କୁ ଘରକାମ, ରୋଷେଇ, ସିଲେଇ, ଚିତ୍ରବିଦ୍ୟା, ସଙ୍ଗୀତବିଦ୍ୟା ଶିଖାଇ ଦେଇ ଆପଣା କର୍ତ୍ତବ୍ୟ ସାଙ୍ଗ କରୁଥିଲେ ଓ ପ୍ରଜନନ ବିଦ୍ୟା ଚର୍ଚ୍ଚା ପ୍ରତି ଆଦୌ ଲକ୍ଷ୍ୟ ରଖୁ ନ ଥିଲେ । ଏମନ୍ତ କି ଏଥିରୁ ବଳିଲେ ବିଜ୍ଞାନ, ଦର୍ଶନ, ଗଣିତ, ରସାୟନରେ ବି.ଏ., ଏମ୍.ଏ. ପାସ୍ ସାର୍ଟିଫିକେଟ୍‌ମାନ ଦେଇ ଅନ୍ଧାରୁଆ ମୁଲକକୁ ବାଳିକାମାନଙ୍କୁ ଠେଲି ଦେଉଥିଲେ । ଏହାଛଡ଼ା ଈଶ୍ୱରାଭିପ୍ରେତ ବାଳିକା ଜନ୍ମର ପବିତ୍ରତା ଓ ସାର ଉଦ୍ଦେଶ୍ୟ 'ମାତୃତ୍ୱ' ସମ୍ବନ୍ଧରେ ଶିକ୍ଷାଦାତା ନୀରବ ରହୁଥିଲେ ଏମନ୍ତ କି, ସେ ସମ୍ବନ୍ଧରେ ଆଲୋଚନା ଦୂରେ ଥାଉ, ସେଥିର ସୂଚନା ମଧ୍ୟ 'ଅଶ୍ଳୀଳ' ରୂପେ ବର୍ଜିତ ହେଉଥିଲା । ଏଣିକି କ୍ରମଶଃ ଏବଂ ଭୂତ ଶିକ୍ଷାର ବିଷମୟ ଫଳ ପାଶ୍ଚାତ୍ୟ ସଭ୍ୟସମାଜ ଅନୁଭବ କରିବାରୁ ଶିକ୍ଷା ସମସ୍ୟାର ସାଧନା ଯେଉଁମାନଙ୍କ ହାତରେ ପଡୁଅଛି, ସେମାନଙ୍କ ଦୃଷ୍ଟି ଏଥିପ୍ରତି ଆକୃଷ୍ଟ ହେବାର ଆରମ୍ଭ ହୋଇଅଛି । ଏହା ବୋଲି ସ୍ତ୍ରୀମାନେ ଯେ ସମାଜର ଅନ୍ୟ କିଛି ଧାର ଧାରିବେ ନାହିଁ, ଏ କଥା କହିବା ମୋର ଉଦ୍ଦେଶ୍ୟ ନୁହେଁ; କିନ୍ତୁ ଯେଉଁ କାର୍ଯ୍ୟ ପୁରୁଷମାନଙ୍କ ଦେଇ ସାଧିତ ହେବା ଅସମ୍ଭବ, ସେ ବିଷୟ ପ୍ରତି ଆଦୌ ଦୃଷ୍ଟି ନ ରଖି ପୁରୁଷ ଓ ବାଳକମାନଙ୍କ ଦ୍ୱାରା ସାଧ କ୍ରିୟମାଣ କାର୍ଯ୍ୟ ଓ ଶିକ୍ଷାରେ କେବଳମାତ୍ର ବାଳିକାଙ୍କୁ ନିୟୋଜିତ ରଖି ଅନନ୍ୟସାଧ ଓ ଅତ୍ୟାବଶ୍ୟକ ସମସ୍ୟାମାନଙ୍କ ସମ୍ବନ୍ଧରେ ବାଳିକାଙ୍କୁ ଆଞ୍ଜାକରି ଦାଣ୍ଡକୁ ଛାଡ଼ିଦେବା ସମୀଚୀନ ନୁହେଁ ବୋଲି ମୋର କହିବାର ତାତ୍ପର୍ଯ୍ୟ ।

ବାଳିକା ଜୀବନର ଉପଯୋଗୀ ଓ ଯାହା ଉପରେ ବଂଶର, ସମାଜର, ଦେଶର, ରାଜ୍ୟର, ସାମ୍ରାଜ୍ୟର ମଙ୍ଗଳ ନିର୍ଭର କରେ, ଏପରି ଶିକ୍ଷା ଓ ଦୀକ୍ଷା ବାଳିକାମାନଙ୍କୁ ଦେଇ

ତା ଉପରେ କଳାବିଦ୍ୟା, ଧନ୍ଦାବିଦ୍ୟା ଆଦି ଆଉ ଯେତେ ବିଦ୍ୟା ଅଛି, ତାହା ଶିକ୍ଷା ଦିଆଯାଉ, ମନା ନାହିଁ । କିନ୍ତୁ କଳାବିଦ୍ୟା, ସାହିତ୍ୟ, ଗଣିତ, ବିଜ୍ଞାନ ଓ ଅର୍ଥନୀତିରେ ତାଲିମ କରିବାକୁ ଯାଇ ଅସଲ ବିଦ୍ୟାରେ ମୂର୍ଖ କରି ରଖିବାହିଁ ଦୋଷାବହ ବୋଲି ଦେଖାଇଦେବା ଏ ମନ୍ତବ୍ୟର ତାତ୍ପର୍ଯ୍ୟ ଅଟେ । ଏହି ପବିତ୍ରତମ ଉଦ୍ଦେଶ୍ୟ ପ୍ରତି ଦୃଷ୍ଟି ରଖି ବାଳିକା ଶିକ୍ଷା ସମ୍ବନ୍ଧରେ କଟକଣା କରିବାକୁ ହେବ । ଏ ପ୍ରଥମ ପାହାଚ - ଯେଉଁ ବାଳିକାମାନେ ଟପି ପ୍ରଥମ ବଛାବଛି (Test Examination) ପରୀକ୍ଷାରେ ଯୋଗ୍ୟତା ସାର୍ଟିଫିକେଟ ପାଇବେ । ସେମାନଙ୍କୁ ଆଶୁମାତାର କର୍ତ୍ତବ୍ୟ ଓ ଶିକ୍ଷା ଶ୍ରେଣୀରେ ନାମ ଲେଖାଇବାକୁ ହେବ । ଅର୍ଥାତ୍ ଦ୍ୱିତୀୟ ପାହାଚକୁ ଉଠିବାକୁ ଦିଆଯିବ ।

ପ୍ରତ୍ୟେକ ଶିଶୁଙ୍କଠାରେ ଯେଉଁପରି ସ୍ୱର୍ଗୀୟ ଭାବ ପ୍ରଚ୍ଛନ୍ନ ରହିଥାଏ, ପ୍ରତ୍ୟେକ ଆଶୁମାତାଠାରେ ମଧ୍ୟ ସେହିପରି ମାତୃତ୍ୱର ପବିତ୍ରତାର ଜୀବ ନିହିତ ଥାଏ । ଏହି ପବିତ୍ର କର୍ତ୍ତବ୍ୟ ପାଳନ ନିମନ୍ତେ ଯାହା ଯାହା ଶିକ୍ଷା ଓ ଜ୍ଞାନ ତାଲିମ ଓ ଉପଦେଶ, ବିଦ୍ୟା ଓ ସାଧନା ଆବଶ୍ୟକ, ତହିଁର ସୁବିଧା ଭାବୀ ମାତାଙ୍କୁ ଦେବାକୁ ହେବ । ବାଳିକା 'ଜ୍ଞାନ' ପାଇବା ସମୟରୁ ଆଶୁ ମାତା ହେବା ପର୍ଯ୍ୟନ୍ତ ସମୟ (adolescence) ବାଳିକା ଜୀବନର ଅତି ମୂଲ୍ୟବାନ୍ ସମୟ ଏବଂ ଏହି ମୂଲ୍ୟବାନ୍ ସମୟ ଆଶୁ ମାତା ଓ ମାତାର ଜୀବନର ଉପାଦେୟ ଉପାଦାନଗୁଡ଼ିକ ସଂଗ୍ରହ କରି ରଖିବାର ପ୍ରଧାନ ସମୟ ଅଟେ । ଏହି ବୟସରେ ପ୍ରତ୍ୟେକ କୁମାରୀ କିପରି ତାହା ଉପରେ ଭବିଷ୍ୟତରେ ପଡ଼ିବା ପବିତ୍ରତମ କର୍ତ୍ତବ୍ୟକୁ ସାମାଜିକ ଓ ଜାତୀୟ ମଙ୍ଗଳାର୍ଥ ସମାଧାନ କରିପାରିବ, ଏହାହିଁ କୁମାରୀ ଜୀବନର ଚରମ ଲକ୍ଷ୍ୟ ଓ ସାଧନାର ବିଷୟ ହେବା ଆବଶ୍ୟକ ।

ଏଥିପାଇଁ ଗ୍ରନ୍ଥକାର ଆଚାର୍ଯ୍ୟ (Saleeby) ତାଙ୍କର (Progress of Eugenics) ଗ୍ରନ୍ଥରେ ଯୁବକ ଯୁବତୀ ଉଭୟଙ୍କ ଶିକ୍ଷାର ଆଧୁନିକ ପ୍ରଣାଳୀ ପ୍ରତି ଆକ୍ଷେପ କରି କହିଅଛନ୍ତି-

Adolescence is the time for training for activity, for variety, for self-control and is the time for preparation for parent-hood; but modern education does not pay attention to educating adults in the mystries and importance of the truths of wise and radiant parent-hood. He tries to turn all boys to classical and commercial scholars and athlets, and all girls to higher mathematics, cooking and hockey or tennis. ବିଷୟଟା ଗୁରୁତର । ଅଥଚ ସାଧାରଣ ଲୋକେ ଏ ଦୃଷ୍ଟିରେ ଏ ସମସ୍ୟାଟାକୁ ନ ଦେଖୁଥିବାରୁ ବାଇନାନୀଙ୍କ ତୁଣ୍ଡରୁ ଏପରି ଗୋଟିଏ ପ୍ରସ୍ତାବ ଶୁଣିଲେ ତାକୁ ମରଦପୁଏ ହସରେ ଉଡ଼ାଇ ଦେବେ ବୋଲି ବାଇନାନୀଙ୍କୁ ଇଂରାଜୀ ଗ୍ରନ୍ଥକାରଙ୍କ ନିକ (authority)

ସାଉଁଟିବାକୁ ପଡ଼ିଲା । ସୁନାମୁଦିଆ ହାତରୁ ଟକରାଟା ସାଧାରଣଙ୍କୁ ସୁଆଦିଆ ଲାଗେ । ଏଥିପାଇଁ ବାଇନାନୀଙ୍କ କଥାକୁ 'ବୋକଚାବୁହା' ଲେଖକ ଆଧୁନିକ କାଇଦା ଅନୁସାରେ ନିଜର ଲଗା (armed with authority) କରି ପାଠକମାନଙ୍କ ନିକଟରେ ପ୍ରକାଶ କରିଅଛି ମାତ୍ର । ସୁପ୍ରଜନନ ବିଦ୍ୟାର ଭକ୍ତମାନେ ଯୁବକ ଯୁବତୀମାନଙ୍କ ଶିକ୍ଷାର ଆଧୁନିକ ପ୍ରଚଳିତ ନିର୍ଘଣ୍ଟ (curriculum) ମଧ୍ୟରେ ଉପଯୁକ୍ତ ପିତୃତ୍ୱ ଓ ମାତୃତ୍ୱ ସମ୍ବନ୍ଧରେ ଶିକ୍ଷାକୁ ଅନ୍ତର୍ଭୁକ୍ତ କରିବା ନିମନ୍ତେ ପ୍ରାଣପଣେ ଚେଷ୍ଟା କରିବା ଉଚିତ । ସମାଜ ରକ୍ଷା ନିମନ୍ତେ ଉପଯୁକ୍ତ ଜନକ ଅବଶ୍ୟ ପ୍ରୟୋଜନ; କିନ୍ତୁ ଉପଯୁକ୍ତା ଜନନୀ ତହୁଁ ଅଧିକ ପ୍ରୟୋଜନ । ଏଥିପାଇଁ ଉପଯୁକ୍ତ ଜନକ, ଜନନୀ ଗଢ଼ିବା ସମାଜର ଓ ଜାତିର ପ୍ରଧାନ ଓ ପବିତ୍ରତମ କର୍ତ୍ତବ୍ୟ ମଧ୍ୟରେ ସୁମାରି କରିବାକୁ ଶିକ୍ଷା ଓ ଶାସନର କର୍ତ୍ତୃପକ୍ଷମାନଙ୍କୁ ଅର୍ଥାତ୍ ସରକାରଙ୍କୁ ବାଧ୍ୟ କରିବା ଆବଶ୍ୟକ । ପ୍ରତ୍ୟେକ ଯୁବକ ଯୁବତୀଙ୍କୁ ଏପରି ଶିକ୍ଷା ଦିଆଯାଉ ଓ ଏପରି ତାଲିମ କରାଯାଉ ଯେ, ସେମାନେ ସମାଜକୁ ଓ ଜାତିକୁ ଉପଯୁକ୍ତ ସନ୍ତାନସନ୍ତତି ଉପହାର ଦେଇପାରିବେ । ସବୁ ଯୁବକ ଓ ଯୁବତୀ ନିଶ୍ଚୟ ଜନକ ଜନନୀ ହେବେ, ଏଥିରୁ ଏ ଅର୍ଥ କେହି ବୁଝିବେ ନାହିଁ । ସମସ୍ତଙ୍କ ଏହି ପବିତ୍ରତମ ଉଦ୍ଦେଶ୍ୟ ସମ୍ମୁଖରେ ରଖି ଶିକ୍ଷା ଦିଆଯାଉ । ଯେ ଈଶ୍ୱରଙ୍କ କୃପାରୁ ଜନକ ଜନନୀ ହେବେ, ବାକି ଯେ ନ ହେବେ, ସେମାନେ Foster Parents (ପାଳକ ପିତା ଓ ପାଳକ ମାତା) ରୂପେ ପରର ଜନ୍ମିତ ଶିଶୁ ସନ୍ତାନଙ୍କୁ ଲାଳନ ପାଳନ ଓ ବର୍ଦ୍ଧନ କରିପାରିବେ । ଏହାଦ୍ୱାରା ସମାଜର ମଙ୍ଗଳ ଛଡ଼ା ଅମଙ୍ଗଳ ନାହିଁ । ପ୍ରଥମ ପାହାଚରେ ଥିବାବେଳେ (ବାଳକ ବାଳିକାମାନଙ୍କ ମଧ୍ୟରୁ) ନିକମା ଓ ରୁଗ୍ଣମାନଙ୍କୁ ବାଛି ଅନ୍ୟ ଇଲାକାକୁ ପଠାଇବାକୁ ହେବ । ସେ ବଛାବଛି ପରୀକ୍ଷାରେ ଯେ ପାସ୍ କରିବେ, ସେ ଦ୍ୱିତୀୟ ପାହାଚକୁ ଉଠିବେ । ଦ୍ୱିତୀୟ ପାହାଚରେ ଥିବାବେଳେ (ଯୁବକ ଯୁବତୀମାନଙ୍କ ମଧ୍ୟରୁ) ନିକମା, ରୋଗିଣା ଓ ଦୁଷ୍ଟ ଓ କୁଅଭ୍ୟାସୀମାନଙ୍କୁ ବାଛି ଅନ୍ୟ ଇଲାକାକୁ ପଠାଇ ଦେବାକୁ ହେବ । ସେଥିରୁ ଯେ ଜନକ ଜନନୀ ହେବାର ଉପଯୁକ୍ତ ବିବେଚିତ ଓ ପରୀକ୍ଷିତ ହେବେ, ଉପର କ୍ଳାସ ଅର୍ଥାତ୍ ତୃତୀୟ ପାହାଚକୁ (ଆଶୁ ପିତାମାତା- expectant parent-hood) ପ୍ରମୋସନ ପାଇବେ । ତଳ ଶ୍ରେଣୀର ପାସ୍ ନ କରିବା ଛାତ୍ରଛାତ୍ରୀମାନଙ୍କ ଜୀବନ ମଧ୍ୟ ଦିଆଯାଇଥିବା ଶିକ୍ଷା ପ୍ରଭାବରୁ (foster parents or guardians) ଶିଶୁପାଳକ ଓ ଶିଶୁବର୍ଦ୍ଧକ ବା ମହାଫିସ୍ କାର୍ଯ୍ୟରେ ଲାଗିପାରିବେ । ନଚେତ୍ ତାଙ୍କ ଲାଗି ସମାଜର ଓ ବିଦ୍ୟାର ଅନ୍ୟାନ୍ୟ ଅନେକ ଦୁଆର ମୁକୁଳା ଅଛି ।

ଆହୁରି ମଧ୍ୟ ଦେଖାଯିବ ଯେ, ଯୁବକ ଯୁବତୀମାନଙ୍କୁ ଯେଉଁ ଶିକ୍ଷା ଦିଆଯିବ ତଦ୍ୱାରା ସେମାନେ ଆଶୁଜନକ ଜନନୀ ହେବାର ଯୋଗ୍ୟତା ଲାଭ କରିପାରିବେ ଏବଂ ସେମାନେ ସଂସାର ଧର୍ମରେ ପଶିଲେ ତାଙ୍କ 'ଘରକରଣା'ର ସୁଫଳ କି କୁଫଳ ଘଟିବ, ତାହା ସେମାନେ ହୃଦୟଙ୍ଗମ କରି ସମାଜ ପ୍ରତି ତାଙ୍କର ପବିତ୍ର କର୍ତ୍ତବ୍ୟ ଉପଲବ୍ଧି କରିପାରିବେ ।

ଯେଉଁମାନେ ଶାରୀରିକ ବା ମାନସିକ ଅଭାବ (defect) ବା ଅଶୁଦ୍ଧି (taint) ଯୋଗୁଁ ପିତୃତ୍ୱ ଓ ମାତୃତ୍ୱ ରୂପ ପବିତ୍ରଭାର ବହନ କରିବାକୁ ଅଯୋଗ୍ୟ ବୋଲି ଉପଲବ୍ଧି କରିବେ, ସେମାନେ ତୃତୀୟ ପାହାଚକୁ ଅର୍ଥାତ୍ ଦାମ୍ପତ୍ୟ ଜୀବନ ବା ଗୃହସ୍ଥାଶ୍ରମ ଉଠିବାକୁ ସ୍ୱତଃ ପଶ୍ଚାଦ୍‌ପଦ ହୋଇ ଆପଣାର ଅବଶିଷ୍ଟ ଜୀବନକୁ ସମାଜର ଅନ୍ୟାନ୍ୟ ହିତକର ବିଭାଗ ଓ କାର୍ଯ୍ୟ ସାଧନରେ ଉତ୍ସର୍ଗ କରିବେ (ଯଥା - ଶିଶୁପାଳନ, ଦରିଦ୍ର ଓ ଆତୁରଙ୍କ ସେବା, ଧର୍ମ ଓ ନୀତି ସମ୍ବନ୍ଧରେ ଶିକ୍ଷକତା, ବିଜ୍ଞାନାନୁଶୀଳନ, ଧର୍ମଚର୍ଚ୍ଚା ଆଦି) । ସମାଜର ଭାବୀ ବଂଶର ଉପାଦାନ ଦୁଇଗୋଟି- ପୁରୁଷ ଓ ସ୍ତ୍ରୀ- କିନ୍ତୁ ସନ୍ତାନର ଆଧାର ଓ ପାଳୟିତ୍ରୀରୂପା ଜନନୀର ସ୍ଥାନ ଜନକର ସ୍ଥାନ ଅପେକ୍ଷା ଉଚ୍ଚତର ଓ ଗୁରୁତର, ଏଥିରେ ଭାବୁକ ଓ ପଣ୍ଡିତମାନେ ଏକମତ ହେବାର ଦେଖାଯାଏ । ଏଥିପାଇଁ ପ୍ରଜନନ ବିଜ୍ଞାନ ବାଳିକା, ଭାବୀମାତା, ଆଶୁମାତା ଓ ମାତାମାନଙ୍କ ପ୍ରତି ବେଶି ନଜର ରଖେ । ଏଥିପୂର୍ବେ ବାଳିକା ଭାବୀମାତା, ଆଶୁମାତା ଓ ମାତାଙ୍କୁ ଲକ୍ଷ୍ୟକରି ଯେଉଁ ବିଷୟମାନ ବୋଲା ଯାଇଅଛି, ତାହା ଅଳ୍ପ ବହୁତ ବାଳକ, ଭାବୀ ପିତା, ଆଶୁ ପିତା ଓ ପିତାମାନଙ୍କ ଠାରେ ମଧ୍ୟ ପ୍ରଯୁଜ୍ୟ ।

ସମାଜର ଭାବୀ ପିତାମାତା ଓ ଯୁବକ ଯୁବତୀମାନେ ଆଶୁପିତା ଓ ଆଶୁମାତା ଶ୍ରେଣୀକୁ ପ୍ରମୋସନ ପାଇବା ପୂର୍ବରୁ ଅର୍ଥାତ୍ ଯୁବକ ଯୁବତୀମାନେ ଗୃହସ୍ଥାଶ୍ରମ ରୂପ ପବିତ୍ର ବ୍ରତ ଧାରଣ କରିବା ପୂର୍ବରୁ ସେମାନଙ୍କୁ କି କି ବିଷୟ ଶିକ୍ଷା ଦିଆଯିବ, ପାଶ୍ଚାତ୍ୟ ପଣ୍ଡିତମାନେ ସେ ସମ୍ବନ୍ଧରେ ବିଶେଷ ଚିନ୍ତା ଓ ଗବେଷଣା କରୁଅଛନ୍ତି । ଏ କଥା ମଧ୍ୟ ପ୍ରାଚୀନ ଭାରତରେ ଅଜଣା ନ ଥିଲା; କିନ୍ତୁ ବେଶି ଦୃଷ୍ଟି ଥିଲା ପୁରୁଷମାନଙ୍କ ଉପରେ ଓ ବିଶେଷତଃ ଦ୍ୱିଜାତିଙ୍କଠାରେ । ''ବ୍ରାହ୍ମଣ ଶିଶୁ ଭୂମିଷ୍ଠ ହୋଇ ୫ ବର୍ଷ ବୟସ ପର୍ଯ୍ୟନ୍ତ ମାତୃକ୍ରୋଡ଼ରେ ଲାଳିତ ପାଳିତ ହେବ- ୫ ବର୍ଷ ଠାରୁ ୧୦ ବର୍ଷ ପର୍ଯ୍ୟନ୍ତ ପିତାମାତାଙ୍କ ପାଖରେ ରହି ତାଡ଼ିତ ହେବ । ୧୦ ବର୍ଷରେ ସଂସ୍କାର ଲାଭକରି (ବ୍ରତ ହୋଇ) ସେହିଦିନ ଠାରୁ ୨୫ ବର୍ଷ ପର୍ଯ୍ୟନ୍ତ ବିଦ୍ୟାଶିକ୍ଷା ଉଦ୍ଦେଶ୍ୟରେ ଗୁରୁଗୃହରେ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିବ । ବିଦ୍ୟା ସାଙ୍ଗକରି ଗୁରୁଙ୍କଠାରୁ ଅନୁମତି ନେଇ ଗୃହସ୍ଥାଶ୍ରମରେ ପ୍ରବେଶ କରିବ ।'' ଏହାହିଁ ପ୍ରାଚୀନ ଆର୍ଯ୍ୟରୀତି ଥିଲା ।

ଫଳତଃ ଧର୍ମନିଷ୍ଠ, ଜିତେନ୍ଦ୍ରିୟ, ଗୁରୁଭକ୍ତ, ଶାସ୍ତ୍ରଜ୍ଞ, ଶୁଦ୍ଧ ଚରିତ୍ର ଓ ଗୁରୁଙ୍କ ଦ୍ୱାରା ଅନୁଜ୍ଞାତ ଯୁବକ ଆଶୁପିତା ହେବାର ଅଧିକାରୀ ଥିଲେ ।

ଆଧୁନିକ ସଭ୍ୟତା ଏ ରୀତିକୁ ପୋଡ଼ିପାଡ଼ି ଅନିୟମ ମଧ୍ୟ ଦେଇ ଗତି କରି ଆସୁଥିଲା । ସଂପ୍ରତି ଏଥିପ୍ରତି ଆଧୁନିକ ବିଦ୍ୱଜ୍ଜନମଣ୍ଡଳୀଙ୍କ ଦୃଷ୍ଟି ଆକୃଷ୍ଟ ହୋଇଅଛି । ଏ ସମ୍ବନ୍ଧରେ ବାରାନ୍ତରରେ । ଇତି ।

ଉତ୍କଳ ସାହିତ୍ୟ/୨୬ଶ ଭାଗ/୮ମ ସଂଖ୍ୟା ମାର୍ଗଶିର/୧୩୩୦ ସାଲ ।

## ।। ଏକାଦଶ ପୁଡ଼ା ।।

ଯୁବକ ଯୁବତୀମାନଙ୍କୁ Sex Hygiene (ଯୌନ ସ୍ୱାସ୍ଥ୍ୟ) ସମ୍ବନ୍ଧରେ ଉପଯୁକ୍ତ ଶିକ୍ଷା ଦେବା ପ୍ରଜନନ-ବିଜ୍ଞାନ-ଶିକ୍ଷାର ଗୋଟିଏ ପ୍ରଧାନ ଆନୁପୂର୍ବିକ ଅଙ୍ଗ । ପିତାମାତା, ବିଦ୍ୟାଗୁରୁ, ଚିକିତ୍ସକ ବା ବୈଦ୍ୟ ଓ ଧର୍ମଗୁରୁମାନେ ଯୁବକ ଯୁବତୀଙ୍କୁ ଯୌନ-ସ୍ୱାସ୍ଥ୍ୟ ସମ୍ବନ୍ଧରେ ଉପଯୁକ୍ତ ଶିକ୍ଷା ଦେବା ନିମନ୍ତେ ସମାଜ ନିକଟରେ ଦାୟୀ ଅଟନ୍ତି । ବିବାହ ହେବା ଦ୍ୱାରା ଯୁବକ ଯୁବତୀ କି କଠୋର ଓ ପବିତ୍ର ଦାୟିତ୍ୱ ଗ୍ରହଣ କରିବେ ଏବଂ 'ସନ୍ତାନୋତ୍ପାଦନ' ରୂପ କର୍ତ୍ତବ୍ୟ କେଡ଼େ ଉଚ୍ଚ ଓ ପବିତ୍ର, ତାହା ପୁତ୍ରକନ୍ୟାମାନେ ଗାର୍ହସ୍ଥ୍ୟ ଧର୍ମରେ ପ୍ରବେଶ କରିବା ପୂର୍ବରୁ ଯେପରି ହୃଦୟଙ୍ଗମ କରିପାରିବେ, ଏଥିପ୍ରତି ପିତାମାତାମାନଙ୍କର ସର୍ବଦା ଯତ୍ନ କରିବା ଉଚିତ । ଯୁବାବସ୍ଥାରେ ପଦାର୍ପଣ କରିବା ପୂର୍ବରୁ ଯୌବନର ଅବଶ୍ୟମ୍ଭାବୀ ଘଟଣା ଓ ଦାୟିତ୍ୱ ଯୁବକର ଶାରୀରିକ ଓ ମାନସିକ ପରିବର୍ତ୍ତନ, ଯୌବନରେ ଯୁବକ ଓ ଯୁବତୀଙ୍କର କର୍ତ୍ତବ୍ୟ ଆତ୍ମସଂଯମ ସମ୍ବନ୍ଧରେ ପିତାମାତା ପୁତ୍ରକନ୍ୟାମାନଙ୍କୁ କାର୍ଯ୍ୟ ଦ୍ୱାରା ଓ ବାକ୍ୟ ଦ୍ୱାରା ଉପଦେଶ ଦେବେ ।

ବିଦ୍ୟାଗୁରୁମାନେ ମଧ୍ୟ ସୃଷ୍ଟିର ପବିତ୍ରତମ କର୍ତ୍ତବ୍ୟ ଓ ଉଦ୍ଦେଶ୍ୟକୁ ବୈଜ୍ଞାନିକ ଶିକ୍ଷା ଦ୍ୱାରା ଛାତ୍ରଛାତ୍ରୀମାନଙ୍କୁ ଦୃଢ଼ ଭାବରେ ହୃଦୟଙ୍ଗମ କରାଇବା ନିମନ୍ତେ ଯତ୍ନଶୀଳ ହେବେ । ପାରିବାରିକ କର୍ମକ୍ଷେତ୍ର ଓ ବିଦ୍ୟାଳୟରେ ସମାଜର ଭାବୀ ପିତାମାତାମାନେ (ଅର୍ଥାତ୍ ଛାତ୍ରଛାତ୍ରୀ) ସେମାନଙ୍କର ଭବିଷ୍ୟତ କର୍ତ୍ତବ୍ୟ ସମ୍ବନ୍ଧରେ ଉପଯୁକ୍ତ ଜ୍ଞାନ ପାଇ ଭବିଷ୍ୟତରେ ଗାର୍ହସ୍ଥ୍ୟ ମଞ୍ଚରେ ନିଜ ନିଜର ପବିତ୍ର ଓ କଠୋର ଦାୟିତ୍ୱ ସମାଧାନ କରିପାରିବେ, ପଦପଦକେ ଏହି ଉଦ୍ଦେଶ୍ୟ ପ୍ରତି ବିଦ୍ୟାଗୁରୁ ଓ ପିତାମାତା ଲକ୍ଷ୍ୟ ରଖିବେ ।

ପାରିବାରିକ ଚିକିତ୍ସକ ବା ବୈଦ୍ୟମାନେ ସୁବିଧା ପାଇବା ମାତ୍ରକେ ଯୁବକ ଯୁବତୀଙ୍କୁ ଏ ସମ୍ବନ୍ଧରେ ପରାମର୍ଶ ଓ ଉପଦେଶ ଦେବେ । ଧର୍ମଯାଜକ, ପୁରୋହିତ ଓ ଦୀକ୍ଷା ଗୁରୁମାନେ ମଧ୍ୟ ଆପଣା ଆପଣା ଯଜମାନ ପରିବାରସ୍ଥ ଯୁବକ ଯୁବତୀଙ୍କ ମନରେ ଯୌବନର ପବିତ୍ରତମ ଲକ୍ଷ୍ୟ ପ୍ରତିଫଳିତ କରିବାକୁ ସତତ ଯତ୍ନ କରିବେ ।

ସମାଜର ବୟସ୍କ ଓ ବୟସ୍କାମାନେ ସମାଜରେ ନିଜ ନିଜର କ୍ରିୟା ଓ ଉପଦେଶ ଦ୍ୱାରା ଏପରି ଆଦର୍ଶ ଓ ଉଦାହରଣମାନ ଯୁବକ ଓ ଯୁବତୀମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିବେ, ଯାହା ଦ୍ୱାରା ସମାଜରେ ଗୁଡ଼ିଏ ଉଚ୍ଛୃଙ୍ଖଳ ଯୁବକ ଯୁବତୀଙ୍କର ଆବିର୍ଭାବ ନ ହୋଇ ସମାଜ ଗୁଡ଼ିଏ ନିୟମବଦ୍ଧ, ସୁଶୃଙ୍ଖଳ, ସଂଯତ, ଯୌନସମ୍ବନ୍ଧ ଶିକ୍ଷିତ ଭାବୀ ପିତାମାତାମାନଙ୍କର ପବିତ୍ର କ୍ରୀଡ଼ା କ୍ଷେତ୍ରରେ ପରିଣତ ହେବ ଏବଂ ଯେଉଁ ପ୍ରକାରରେ ଯଥୋପଯୁକ୍ତ ଯୁବତୀ ନିଜ ନିଜକୁ ପବିତ୍ର ଗାର୍ହସ୍ଥ୍ୟ କର୍ତ୍ତବ୍ୟ ସମ୍ପାଦନ କରିବା ନିମନ୍ତେ ନିର୍ବାଚନ କରିପାରିବା ଭଳି ଶିକ୍ଷା, ସାମର୍ଥ୍ୟ ଓ ସୁବିଧା ଲାଭ କରିପାରିବେ, ତହିଁ ପ୍ରତି ସମାଜର ପରିଚାଳକ ଓ ନେତାମାନେ (ପିତାମାତା, ଶିକ୍ଷାଗୁରୁ, ଦୀକ୍ଷାଗୁରୁ, ପୁରୋହିତ, ବୈଦ୍ୟ) ସର୍ବଦା ଦୃଷ୍ଟି ରଖିବେ ।

ଯେଉଁ ଦମ୍ପତି ମିଳନ ଦ୍ୱାରା ସବଳ ସୁସ୍ଥ ସନ୍ତାନସନ୍ତତି ଉତ୍ପାଦିତ ହେବେ, ସେହିପରି ଯୋଗ୍ୟ ବରକନ୍ୟାଙ୍କ ମଧ୍ୟରେ ବିବାହ କିପରି ସମାଧିତ ହେବ, ତହିଁ ପ୍ରତି ବୟସ୍କ ବୟସ୍କାମାନେ ସର୍ବଦା ଯତ୍ନଶୀଳ ହେବେ । କାରଣ ସବଳ, ସୁସ୍ଥ, ଚରିତ୍ରବାନ୍ ମନୁଷ୍ୟମାନେ ସମାଜର ସ୍ଥାୟୀ ଧନ ସ୍ୱରୂପ- ଏପରି ସ୍ଥଳରେ ସେମାନଙ୍କ ସଂଖ୍ୟା ଯେଉଁ ପ୍ରଣାଳୀ ଶିକ୍ଷା ଓ ସାଧନା ଦ୍ୱାରା ବୃଦ୍ଧିପ୍ରାପ୍ତ ହେବ, ତାହା ସମାଜର ପ୍ରତ୍ୟେକ ମଙ୍ଗଳକାମୀଙ୍କର ପ୍ରଧାନ ଲକ୍ଷ୍ୟ ହେବା ଉଚିତ ।

ବ୍ୟକ୍ତିଗତ ପାଶବିକ ସୁଖଭୋଗରହିତ ଏବଂ ପ୍ରଣୟ କୌତୁକବିହୀନ ଦମ୍ପତି ଜୀବନ ବୃଥା ଅଟେ । ତଥାପି ସନ୍ତାନୋତ୍ପାଦନ ରୂପ କର୍ତ୍ତବ୍ୟ - ସାଧନହୀନ ଦମ୍ପତି ମିଳନ ଏହାଠାରୁ ଆହୁରି ହେୟ । ଏପରି ସ୍ଥଳରେ ବିବାହ ବନ୍ଧନ ଦ୍ୱାରା ଦମ୍ପତି ନିଜ ନିଜର ବ୍ୟକ୍ତିଗତ ସୁଖଲାଳସା ଓ ପ୍ରଣୟ ତୃଷ୍ଣା ଚରିତାର୍ଥ କରିବା ଛଡ଼ା ସମାଜର ଭାବୀ ମଙ୍ଗଳକର ନିଦାନ ସ୍ୱରୂପ ଗୁଡ଼ିଏ ଶିଶୁ ସମାଜକୁ ଉପହାର ଦେଇ ସମାଜର ଋଣ ପରିଶୋଧ କରିବା ନିମନ୍ତେ ଦୃଢ଼ପରିକର ହେବା ସର୍ବତୋଭାବରେ ବିଧେୟ । ଏଥିଲାଗି ବିବାହ ପ୍ରଥାକୁ ଆର୍ଯ୍ୟ ଋଷିମାନେ ଧର୍ମର ଅଙ୍ଗ ବୋଲି ଗଣନା କରୁଥିଲେ ଓ ଯେତେବେଳଯାକେ ମନୁଷ୍ୟ ସନ୍ତାନ ଉତ୍ପାଦନ କରି ନାହିଁ, ସେ ପର୍ଯ୍ୟନ୍ତ ସେ ପିତୃ ଋଣରୁ ମୁକ୍ତ ହୋଇ ନାହିଁ ବୋଲି ଆର୍ଯ୍ୟମାନେ ନିର୍ଦ୍ଦେଶ କରି ଯାଇଅଛନ୍ତି । ଏମନ୍ତ କି, ଭାବୀଦମ୍ପତି ଯଥାଯୋଗ୍ୟ ବରକନ୍ୟା ନିର୍ବାଚନ କରିବାର କ୍ଷମତା ଓ ଅଭିଜ୍ଞତା ଲାଭ କରିବା ପୂର୍ବରୁ ଅଭିଭାବକମାନେ ସ୍ୱ ସ୍ୱ ପୁତ୍ରକନ୍ୟାଙ୍କ ପାଇଁ ସୁପ୍ରଜନନ ଅନୁକୂଳ କନ୍ୟା ଓ ବର ନିର୍ବାଚନ କରୁଥିଲେ ।

ପାଶ୍ଚାତ୍ୟ ସମାଜରେ ପୁତ୍ରକନ୍ୟା ବୟଃପ୍ରାପ୍ତ ହୋଇ ନିଜ ନିଜର ଭାବୀ ଜୀବନ ସଙ୍ଗୀମାନଙ୍କୁ ନିର୍ବାଚନ କରିବାକୁ ଅଧିକାର ପାଇଅଛନ୍ତି; କିନ୍ତୁ ଅପକ୍ୱ ବୟସ୍କ ବ୍ୟକ୍ତିମାନଙ୍କର ସାଂସାରିକ ବିଷୟରେ ଅଭିଜ୍ଞତା ଲାଭ ହୋଇ ନ ଥିବାରୁ ଅଧିକାଂଶ ସମୟରେ ସୌନ୍ଦର୍ଯ୍ୟ ଓ ଲାଳସା ପ୍ରଣୋଦିତ ନିର୍ବାଚନର ଫଳ ବିଷମୟ ହୋଇ ଉଠୁଅଛି ଓ ପାଶ୍ଚାତ୍ୟ ଜଗତରେ ବିବାହ-ବନ୍ଧନ-ଛେଦନ ପ୍ରଥା ବଢୁଅଛି । କିନ୍ତୁ ନିର୍ବାଚନ ପ୍ରଥାକୁ ଅନୁଭବୀ, ଜ୍ଞାନପକ୍ୱ ଓ ପ୍ରବୀଣ ପିତାମାତାଙ୍କ ହାତରେ ରଖିବା ଦ୍ୱାରା ଆର୍ଯ୍ୟ ସମାଜରେ ସୁପ୍ରଜନନ-ସମସ୍ୟାମାନ ସମାଧାନ ହେବାର ପଥକୁ ପ୍ରଶସ୍ତତର କରିଥିଲେ । ଅବଶ୍ୟ କାଳକ୍ରମେ ସମାଜରେ ପୂର୍ବ ପ୍ରବର୍ତ୍ତିତ ବାଲ୍ୟବିବାହ ପ୍ରଥାର ଅପବ୍ୟବହାର ହୋଇ ଆଜି ବାଲ୍ୟବିବାହ ଆମ ସମାଜର ଗୋଟିଏ ବ୍ୟାଧି, ଅଭିଶାପରେ ପରିଣତ ହୋଇଅଛି ଏବଂ ଏଥିପାଇଁ ପୂର୍ବ ପ୍ରଚଳିତ ବାଲ୍ୟବିବାହ ପ୍ରଥାକୁ ଆଧୁନିକ ସୁଶିକ୍ଷିତ ବ୍ୟକ୍ତିମାନେ ସମୂଳରେ ନାଶ କରିବାକୁ ଚେଷ୍ଟା କରିଅଛନ୍ତି । ଯାହାହେଉ, ସମାଜର ଉନ୍ନତି ଓ କାଳର ଗତି ଅନୁସାରେ ଅନେକ ନିୟମ ଓ ପ୍ରଥା (ଯାହାକି ପୂର୍ବେ ସମାଜର ମଙ୍ଗଳକର ଥିଲା ଓ ବର୍ତ୍ତମାନ ଅମଙ୍ଗଳକର ହୋଇ ପଡ଼ିଅଛି) ପରିବର୍ତ୍ତନ ଓ ସଂଶୋଧନ ହେବା ଅବଶ୍ୟ ଆବଶ୍ୟକ ଓ ତାହା ନ

ହେଲେ ସମାଜର ଓ ଜାତିର ଅଧୋଗତି ଅବଶ୍ୟମ୍ଭାବୀ । କିନ୍ତୁ ଉକ୍ତ ସଂସ୍କାର ପ୍ରବର୍ତ୍ତନ କରିବା ପୂର୍ବରୁ କେବଳ ବ୍ୟକ୍ତିଗତ ସୁଖ ବା ପ୍ରଣୟ ବା ଆନନ୍ଦ ପ୍ରତି ଦୃଷ୍ଟି ନ ରଖି ସମାଜର ଓ ଜାତିର ଭାବୀ ମଙ୍ଗଳ ପ୍ରତି ଖର ଦୃଷ୍ଟି ରଖିବା ଆବଶ୍ୟକ ।

ସୁପ୍ରଜନନ ବିଜ୍ଞାନ ସମ୍ବନ୍ଧୀୟ ସମସ୍ୟାମାନ ସମାଧାନ କରିବା ପାଇଁ ଅନ୍ୟାନ୍ୟ କେତେଗୁଡ଼ିଏ ବ୍ୟାବହାରିକ ବିଜ୍ଞାନର ଅନୁଶୀଳନ ଏକାନ୍ତ ଆବଶ୍ୟକ ବୋଲି ପୂର୍ବରୁ ବୋଲାଯାଇଅଛି । ଆଧୁନିକ ସଭ୍ୟତାର ଢେଉରେ ଗ୍ରାମବାସୀମାନେ କ୍ରମଶଃ ସହରରେ ବାଧ ହୋଇ ରୁଣ୍ଡ ହେଉ ଅଛନ୍ତି ଓ ଅନେକ ବ୍ୟକ୍ତି ନିଜ ନିଜର ପାରମ୍ପରିକ ବଂଶାନୁଗତ ବୃତ୍ତି ଓ ଜୀବିକାମାନ ତ୍ୟାଗକରି ନୂତନ ନୂତନ କାର୍ଯ୍ୟମାନ ଅବଲମ୍ବନ କରୁଅଛନ୍ତି ଓ ସ୍ତ୍ରୀମାନେ ଆଜିଯାକେ ପୁରୁଷମାନଙ୍କର ଏକଚେଟିୟା ହୋଇ ରହିଥିବା କାର୍ଯ୍ୟମାନଙ୍କରେ ପ୍ରବେଶ କରୁଅଛନ୍ତି । ଏହା ଫଳରେ 'ସୁପ୍ରଜନନ' କ୍ରିୟାରେ ବ୍ୟାଘାତ ଘଟିବା ସ୍ୱାଭାବିକ । ସଭ୍ୟ ଜଗତର ପ୍ରଧାନ ପ୍ରଧାନ ନଗରମାନଙ୍କର କଳକାରଖାନା, କାର୍ଯ୍ୟାଳୟ, ରଙ୍ଗାଳୟ, ଦୀନ ପଲ୍ଲୀମାନ (Slemus) ଯେଉଁମାନେ ତନ୍ନ ତନ୍ନ କରି ପରୀକ୍ଷା କରିଅଛନ୍ତି, ସେମାନେ ପାଶ୍ଚାତ୍ୟ ସଭ୍ୟତାର ନଗର ଆଡ଼କୁ ଆକର୍ଷଣୀୟ ଶକ୍ତିର ବିଷମୟ ଫଳ ଦେଖି ଭୀତ ଓ ତ୍ରସ୍ତ ହେଉଛନ୍ତି । ଏତଦ୍ୱାରା ସଭ୍ୟଜଗତରେ କି ପରିମାଣରେ ନିଶା, ନିର୍ଲଜ୍ଜତା, ଚରିତ୍ରହୀନତା ଓ ସାମାଜିକ ଦୁର୍ବଳତା ବଢୁଅଛି, ତାହା ଯେଉଁମାନେ ହୃଦୟଙ୍ଗମ କରୁଅଛନ୍ତି ସେମାନେ ଏଥିର ପ୍ରତିକାର ବିଧାନ କରିବା ନିମନ୍ତେ ବ୍ୟସ୍ତ ହୋଇ ଉଠୁଛନ୍ତି ଏବଂ କେହି କେହି ପଣ୍ଡିତ ସଭ୍ୟତାର ଏ ଲକ୍ଷଣଗୁଡ଼ିକ କୁଲକ୍ଷଣ ବୋଲି ଘୋଷଣା କରୁଅଛନ୍ତି । କେହି କେହି ମଧ ଏ ସଭ୍ୟତା ଓ ଉନ୍ନତିରୁ ଦୂରରେ ରହିବା ନିମନ୍ତେ ସମାଜକୁ ଉପଦେଶ ଦେଉଅଛନ୍ତି ଓ ପୁନର୍ବାର ସାବକ ପଲ୍ଲୀ ଜୀବନକୁ ଫେରିବା ନିମନ୍ତେ ସମସ୍ତଙ୍କୁ ପରାମର୍ଶ ଦେଉଅଛନ୍ତି । ଆମ ଆଖିକୁ ଦିନାକେତେ ପାଶ୍ଚାତ୍ୟ ସଭ୍ୟତାର ଝଲକ ଝଲସାଇ ଦେଇଥିଲା ଓ ତହିଁ ପ୍ରତି ସମସ୍ତେ ଧାବମାନ ହେଉଥିଲୁଁ । ବର୍ତ୍ତମାନ ସେ ହବା ଫେରିଅଛି ଓ ପାଶ୍ଚାତ୍ୟ ସଭ୍ୟତାର ଦୋଷଗୁଡ଼ିକ ପ୍ରତି ଆମ୍ଭ ଦେଶବାସୀଙ୍କର ଆଖି ଫିଟିଅଛି । ଏଥିପାଇଁ ସୁପ୍ରଜନନ ବିଦ୍ୟାଚର୍ଚ୍ଚାର ଆବଶ୍ୟକତା ପ୍ରତି ଶିକ୍ଷିତମାନଙ୍କର ଦୃଷ୍ଟି ଆକର୍ଷିତ ହେବା ଉଦ୍ଦେଶ୍ୟରେ ବାଇନାନୀ ପାଠକ-ପାଠିକାଙ୍କର ଗୁଡ଼ିଏ ମୂଲ୍ୟବାନ୍ ସମୟ ନଷ୍ଟ କରି ଅଛନ୍ତି । ଏ ସମ୍ବନ୍ଧେ ଆଉ ଅଧିକ କହିବା ନିଷ୍ପ୍ରୟୋଜନ । ଏଗୁଡ଼ାକ ମଧ ବାଇନାନୀଙ୍କ ଇଲାକା ନୁହେଁ । ଆଜି ଏତିକି ।

ଉତ୍କଳ ସାହିତ୍ୟ/୨୬ଶ ଭାଗ/୧୧ଶ ସଂଖ୍ୟା (ଫାଲ୍‌ଗୁନ)/୧୩୩୦ ସାଲ ।

# ସ୍ୱପ୍ନରେ ରାଜଯୋଗ

## ୧୯୩୩ - ୩୪

'ସ୍ୱପ୍ନରେ ରାଜଯୋଗ' ପଣ୍ଡିତ ନୀଳକଣ୍ଠ ଦାସଙ୍କ ଦ୍ୱାରା ସଂପାଦିତ ନବଭାରତ ପତ୍ରିକାର ପ୍ରଥମ ବର୍ଷ ତୃତୀୟ ସଂଖ୍ୟାଠାରୁ ଆରମ୍ଭ ହୋଇ ଦ୍ୱିତୀୟ ବର୍ଷ ୫ମ ସଂଖ୍ୟା ମଧ୍ୟରେ ସାତଗୋଟି ଭାଗରେ ପ୍ରକାଶିତ । ପତ୍ରିକାର ରଙ୍ଗ-ବ୍ୟଙ୍ଗ ବିଭାଗରେ ଏହା ସଂଯୋଜିତ ହୋଇଛି । ଧୂର୍ମୂଷ ଧର୍ମ୍ମା ଛଦ୍ମନାମରେ ଲେଖାଗୁଡ଼ିକ ପ୍ରକାଶ କରିଛନ୍ତି । ଲେଖକ ଭାଷାକୋଷ ପ୍ରକାଶନ ପାଇଁ ଅର୍ଥ ସଂଗ୍ରହ କାଳରେ ଢେଙ୍କାନାଳ ଓ ଅନ୍ୟ କେତେକ ଗଡ଼ଜାତ ରାଜାଙ୍କ ଦ୍ୱାରା ଯେଉଁ ବ୍ୟବହାର ପାଇଥିଲେ, ଏହି ଆଲୋଚନା ତାହାର କଳାତ୍ମକ ପ୍ରତିକ୍ରିୟା 'ଭାଷାକୋଷ ପାଇଁ ସଫର' ଶୀର୍ଷକ ଆଲୋଚନାରେ ମଧ୍ୟ ଆମେ ଏହି ଭାବ ଲକ୍ଷ୍ୟ କରିଥାଉ । ସ୍ୱପ୍ନରେ ରାଜଯୋଗ ପ୍ରକାଶିତ ହେଉଥିବା କାଳରେ ଏବଂ ପରେ ପ୍ରହରାଜଙ୍କର କେତେକ ରାଜାଙ୍କ ସହିତ ଏକପ୍ରକାର କଟି ପଡ଼ି ଯାଇଥିଲା ।

ସମକାଳୀନ ଓଡ଼ିଶାର ଅନ୍ଧାରି ମୂଲକ କୁହାଯାଉଥିବା ଗଡ଼ଜାତି ଶାସନର ବାସ୍ତବ ଚିତ୍ର ଭାବରେ ମଧ୍ୟ ଏହାକୁ ଗ୍ରହଣ କରାଯାଇପାରେ ।

ସଂପାଦକ

### ॥ ଏକ ॥

ସମ୍ପାଦକ ମହାଶୟ -

ଆପଣମାନେ ଲେଖକ ବିଚରାମାନଙ୍କ ଉପରେ ଯେଉଁ ବୋଝ ଲଦି ଦିଅନ୍ତି, ସେ ବୋଝ ସେମାନେ ଖେଞ୍ଚି ପାରିବେ କି ନାହିଁ, ଏକଥା ଆପଣମାନେ ଥରେହେଲେ ଭାବନ୍ତି କି ? ଏହା ଯେବେ ଭାବୁ ଥାଆନ୍ତେ, ତେବେ ଅଖଣ୍ଡିଆ, ଅଖାଡୁଆ ଫରମାସ୍‌ଗୁଡ଼ାକ ଦେଉ ନ ଥାନ୍ତେ । ଆପଣ ପତ୍ରିକାର ଗ୍ରାହକମାନଙ୍କଠାରୁ ଧନ ଅର୍ଜନ କରି ଆପଣଙ୍କ ପିଲା-କବିଲାଙ୍କୁ ପୋଷିବେ, ଆପଣ ଆପଣଙ୍କ ପତ୍ରିକାକୁ ଚାହିକି-ଚିକଣିଆ କରିବାକୁ ଲୋଡ଼ିବେ ଅସଲ ଚିକଣିଆ ମାଲ୍ । ତୁଚ୍ଛା ପେଟରେ ଓଦା-କନା ଓ ପିଠିରେ ଚିରାକନା

ପକାଇଥିବା ଲେଖକ ବିଚାରାର ହୃଦୟରୁ ରସରସିଆ କଥା କାହୁଁ ବାହାରିବ ? "ଅନ୍ନ ଚିନ୍ତା ଚମତ୍କାରା ଆତୁରେ ଭାବନାକୁତଃ" ? ଆପଣଙ୍କ ପତ୍ରିକାକୁ ଆଦରଣୀୟ କରିବା ପାଇଁ ଆପଣ ଫରମାସି କରୁଛନ୍ତି ଯେ ସବୁଶ୍ରେଣୀର, ସବୁ ରୁଚିର, ସବୁ ବିଦ୍ୟାର, ସବୁ ଧାତୁର ପାଠକ-ପାଠିକା, ଗ୍ରାହକ-ଗ୍ରାହିକାଙ୍କ ମନକୁ ରଞ୍ଜାଇଲା ଭଳି ନାନା କିସମର ମାଲ ଆପଣଙ୍କ ପତ୍ରିକାରେ ରହିବ । ଲେଖକ ବାଛିବାର ଭାର ଆପଣଙ୍କଠାରେ, ଫରମାସି ମାଲ ବାଛିବାର ଭାର ମଧ୍ୟ ଆପଣଙ୍କଠାରେ । ପାଠକମାନଙ୍କ ମନକୁ ରଞ୍ଜାଇଲା ଭଳି ସନ୍ଦର୍ଭ ଲେଖିବାର ଭାର ବିଚରା ଲେଖକ ଉପରେ । ଏଥିକି ଭଲା ବହିଣା ରୂପେ ହେଉ, ମୁହଁଚୁହାଁ ରୂପେ ହେଉ, ଜରସମନ ରୂପେ ହେଉ, ପାଟିସୁଆଦିଆ ରୂପେ ହେଉ, କାଳି ବାସି ରୂପେ ହେଉ, ଉଧାର ଧାର ରୂପେ ହେଉ ବା ନଣନ୍ଦ ପୋଟଳୀ ରୂପେ ହେଉ ଲେଖକକୁ କିଛି ମିଳୁଥାଆନ୍ତା ବା ମିଳିବାର ଆଶା ଥାଆନ୍ତା କି, ତାହାହେଲେ ଲେଖକ ବିଚରା ତା ମୁଣ୍ଡଝାଳ ତୁଣ୍ଡରେ ମାରି କୁକୁର ଧାଉଡ଼ିରେ ଲାଗନ୍ତା । ଯାହା ପ୍ରଶଂସା ଓ ଧନ ମିଳିବ ତାହା ଆପଣଙ୍କର ଷୋଳପଣ, ଯାହା ନିନ୍ଦା ଓ ଖେସରା ମକଦମା ହେବ ତାହାର ଝଙ୍କି ଲେଖକର ଷୋଳପଣ, ଏପରି ସ୍ଥଳେ ଲେଖକ-ରେଜିଷ୍ଟରୀରେ ନାମ ଲେଖାଇ ପଛକୁ ଓହୋରିବା ତା ଭାଗ୍ୟରେ ନାହିଁ । ସାଧାରଣତଃ ଦେଖାଯାଏ, ପାଠକ ସାଧାରଣଙ୍କ ମନ ରଞ୍ଜାଇବା ଉପକରଣ ପ୍ରଧାନତଃ ଦୁଇ ପ୍ରକାର - (୧) ଆଦିରସ-ଯୁକ୍ତ ଲେଖା, (୨) ପରନିନ୍ଦା ବା ପରୋପହାସଯୁକ୍ତ ବ୍ୟଙ୍ଗ ଲେଖା । ଏ ଦୁଇ ଚିଜ ଲେଖିବାକୁ ଯିବାର ଅର୍ଥ, ଖଣ୍ଡା ଦାଢ଼ରେ ଚାଲିବା । କବି ଗାଇଛନ୍ତି, 'ପୀରତି ପଥ ଖସଡ଼ା, ନ ଜାଣି ତହିଁକି ପାଦ ବଢ଼ାଇଲେ ପଦ ପଦକେ କଚଡ଼ାରେ ।' ଏ ପନ୍ଥାର ପଥିକୀଙ୍କ ମଧ୍ୟରୁ ଅଧିକାଂଶଙ୍କ ଭାଗ୍ୟରେ ମାଙ୍କଡ଼ଚିତ୍ । ତେଣେ ପୁଣି ଭାରତୀୟ ଦଣ୍ଡବିଧି ଆଇନର ୨୯୨ ଦଫା ଆଁ କରି ବସିଛି, ଟାକୁକିନି ଲେଖକକୁ ଗିଳିଦେବ । ଆଜିକାଲି ନବ୍ୟ ରୁଚିଆଙ୍କର ହୱା ଉଠିଛି ଯେ, ଆଦିରସକୁ ନେଇ ଅତଳ ଦରିଆରେ ମାଡ଼ିଦେବେ, ଏମନ୍ତ କି ଅଭିଧାନରେ ମଧ୍ୟ ଆଦିରସାତ୍ମକ ଶବ୍ଦ ରହିଲେ ସେ ଅଭିଧାନ ହେୟ । ଏଥିଲାଗି ଉପେନ୍ଦ୍ରଭଞ୍ଜ ଆଦି ଆଦିରସିଆଙ୍କୁ ନିର୍ବାସନ-ଦଣ୍ଡର ବ୍ୟବସ୍ଥା ଦିନାକେତେ ପୂର୍ବେ ସାହିତ୍ୟିକ ଧର୍ମାଧିକରଣରେ କରାଯିବାର ଉଦ୍ୟମ ଲାଗିଥିଲା । ଛାଡ଼ ସେ କଥା, ଆମର ଆଦିରସରେ ପଶିବାର ଦରକାର ନାହିଁ, କି ଗୋଡ଼ ଧୋଇବାର ଦରକାର ନାହିଁ । ଅତଏବ ଲେଖକ ବିଚରା ପକ୍ଷରେ ଗୋଟିଏ ମାତ୍ର ବାଟ ଉଦୁଆଁ ଅଛି । ସେହିଟି ହେଲା ପରନିନ୍ଦାତ୍ମକ ବ୍ୟଙ୍ଗ । ସେଥିପାଇଁ ମଧ୍ୟ ଆଇନର ପିଙ୍ଗଳ କୋର୍ଡ଼ ଭାରତୀୟ ଦଣ୍ଡବିଧି ଆଇନ ବା Indian Penal Codeର ୫୦୦ ଦଫା ଲେଖକକୁ ଟାକୁକିନି ଗଳାଧଃକରଣ କରିବାକୁ ଟାକି ବସିଛି । ମୋଗଲବନ୍ଦିଆଙ୍କୁ ଉପହାସ କରିବା ପାଇଁ ଦଣ୍ଡବିଧି ଆଇନ୍ ଓ ଗଡ଼ଜାତିଆଙ୍କୁ ଉପହାସ କରିବା ପାଇଁ ରାଜନ୍ୟବର୍ଗ - ସଂରକ୍ଷା ଆଇନ Princes Protection Act ଅସ୍ତ୍ର ଶସ୍ତ୍ର ପଜା ହେଇ ସରକାରଙ୍କ ଭାଗବତଗାଦିରେ ଥୁଆ ହୋଇଛି ।

ଏହି ଉଭୟ ସଂକଟରେ ପଡ଼ି ଲେଖକ ଆପଣଙ୍କ ଫରମାସୀ ମୁତାବକ ମାଲ ଯୋଗାଇବାକୁ ଅକ୍ଷମ । ଏ କୈଫିୟତ୍ ଦେଲେ ମଧ୍ୟ ଆପଣଙ୍କ ତମ୍ବିରୁ ରକ୍ଷା ପାଇବାର ଜୁ' ନାହିଁ । ଅତଏବ ''ଦୁଃଖ କହିବି କି ସୁଖ କହିବି ? ଯାହା ଅଙ୍ଗେ ନିଭେଇଛି, ତାହା କହିବି'' ନୀତି ଅନୁସରଣ କରି ଲେଖକ ଆପଣା ଅନୁଭବରୁ ଦୁଆଏ ଗାଇ ଆପଣଙ୍କ ଲଦା ବୋଝରୁ ଖଲାସ ପାଇବ ବୋଲି ସ୍ଥିର କରିଛି । ଅତଏବ ଶୁଣିବାକୁ ସାବଧାନ ମଣିମା ! ଏ ଅନେକ ଦିନ ପୂର୍ବର ଘଟଣା । କଥାଗୁଡ଼ାକ ବରଷ କୋଡ଼ିରେ ଜାଲଜାଲୁଆ ହୋଇ ଗଲାଣି । ତଥାପି ପୂର୍ବ ସ୍ମୃତିକୁ ଯୋଡ଼ବିଯୋଡ଼, ହରିଗୁଣ ଫେଡ଼ାମିଶା କରି ଯାହା ମନେପଡ଼ିଲା ତାହା ଲେଖିଲି, ଏହାକୁ ଶୁଦ୍ଧ ଅଶୁଦ୍ଧ ପୂରାଇ ଗାଇବାକୁ ହେବ । ଲେଖନକାର ଦୋଷ ନ ଧରିବ ।

ସେଦିନ ଆମ ଗାଁରେ ଗ୍ରାମ ଠାକୁରାଣୀଙ୍କ 'ଜନ୍ତାଳ' (ଭୋଜି)ର ବ୍ୟବସ୍ଥା ହୋଇଥାଏ, ଗ୍ରାମର ଅଘରଦ୍ୱାରୀ ଭେଦା ପଞ୍ଚା ଅସୁଲ ଚାଲିଥାଏ । ନଗଦ ଧନଠାରୁ ଆରମ୍ଭ କରି ଚାଉଳ ଓ ଚୁଡ଼ା ପାଇଁ ଧାନ, ଗୁଡ଼, ନଡ଼ିଆ, ଘିଅ, ଦୁଧ, ପରିବାପତ୍ର, ଗ୍ରାମର କୋଠ ଗାଡ଼ିଆରୁ ମାଛ, ଗ୍ରାମୋପକଣ୍ଠସ୍ଥ ମିଆଁ ସାହିରୁ ବୋଦା ଆଦି ସଂଗ୍ରହ କରିବାରେ ଆମେ ଯୁବକମାନେ ଲାଗିଥାଉଁ । ଏସବୁ ଗୃହସ୍ୱାମୀମାନଙ୍କ ଜ୍ଞାତସାରରେ ସଂଗ୍ରହ କରାଯିବା ସରଞ୍ଜାମ ଛଡ଼ା ପ୍ରଦୋଷରେ କାହା ବାଡ଼ିରୁ କଦଳୀ କାନ୍ଧିଏ, କାହା ନଡ଼ିଆ ଗଛରୁ ନଡ଼ିଆ ପୁଞ୍ଜାଏ, କାହା ଖଳାରୁ ଧାନ କଲେଇ ବୋଡ଼ିଏ ଏହିପରି ସଂଗ୍ରହ ତତ୍ତଦ୍ ଦ୍ରବ୍ୟସ୍ୱାମୀଙ୍କ ଅଜ୍ଞାତରେ କରାଯିବାର ଯୁବକମାନଙ୍କର ଭିତିରିଆ ବୈଠକରେ ସ୍ଥିର ହେଲା । ଦିନ ମଧ୍ୟରେ ସଂଗୃହୀତ ଉପକରଣମାନଙ୍କର କୁଟାକଣ୍ଡା, କଟାବଛା, ବଟାରଗଡ଼ା, ଧୁଆପୋଛା ଆଦିର ଭାର ଭିନ୍ନ ଭିନ୍ନ ବେଠିଆଙ୍କ ଉପରେ ଦିଆଯାଇ ଆମେ ଯୁବକମାନେ ଟିକିଏ ଜଞ୍ଜାଳରୁ ମୁକ୍ତ ହେଲୁଁ ଓ ସାନ୍ଧ୍ୟ ସମ୍ମିଳନର ପ୍ରେୟ ପାଚକ ପାଣିର ବ୍ୟବସ୍ଥା କଲୁ । ପାଚକ ପାଣିର ବ୍ୟବହାର ପୁରିଆଙ୍କ ମଧ୍ୟରେ ଭାରି ଆଦୃତ । କଟକିଆ ବ୍ରାହ୍ମଣମାନଙ୍କ ମଧ୍ୟରୁ ଯେଉଁମାନଙ୍କ ପୂର୍ବପୁରୁଷମାନେ ବହୁକାଳ ପୂର୍ବେ ପୁରୀର ରାହଙ୍ଗ ଶାସନମାନଙ୍କରୁ ଆସି କଟକର 'ଶାସନ' - ମାନଙ୍କରେ ବସତି କରିଥିଲେ ସେମାନଙ୍କ ମଧ୍ୟରେ ଏ ଦ୍ରବ୍ୟର ଆଦର ଓ ଏ ଶବ୍ଦର ବ୍ୟବହାର ଅଛି । କିନ୍ତୁ ଅନ୍ୟମାନଙ୍କ ପାଇଁ ଏ ଶବ୍ଦର ଅର୍ଥ ବୁଝାଇ ଦେବା ଦରକାର । ପାଚକ ପାଣିର ଉପାଦାନ ପତି ବା ଗଞ୍ଜାଇ, ମରିଚ, ଓ ଭାଙ୍ଗ ମସଲା (ଗୁଜୁରାତି, ପୁସ୍ତକଦାନା, ଜାଇଫଳ, ନାଗେଶ୍ୱର, କବାବଚିନି, ଜୁଆଣୀ, ପାନମହୁରି) । ଏ ସବୁର ତାବ ବା ଯଥୋପଯୁକ୍ତ ଆପେକ୍ଷିକ ପରିମାଣ ଅଛି । ଏ ସବୁକୁ ଜଳଯୋଗେ କୁଣ୍ଡିରେ ବାଡ଼ି ଦ୍ୱାରା ଘୋଟି ବା ଶିଳରେ ଶିଳପୁଆ ଦ୍ୱାରା ବାଟି ଗୁଳା କରିବାକୁ ହୁଏ । ସେ ଗୁଳାକୁ 'ନିଗୁଦି' ବୋଲାଯାଏ ଓ ତହିଁରେ ପାଣି ମିଶାଇ ତାକୁ ପାନୀୟ କଲେ ତାକୁ ଭାଙ୍ଗ ବା ପାଚକ ପାଣି ବୋଲାଯାଏ । କେହି କେହି ନିଶା ସମ୍ବନ୍ଧେ ବିଶେଷଜ୍ଞ ଏଥିସଙ୍ଗେ ଧାତୁରା ମଞ୍ଜି, ବା କଦମ୍ବ ଡାଳର ଅଗ

କଳି, ବା ମୁଥାମୂଳ ମିଶାଇ ବାଟନ୍ତି ଓ ଏଥିରେ ବେଶି ଜୁମକ୍ ନିଶା ହୁଏ । ଏମନ୍ତ କି, ଧାତୁରା ମଞ୍ଜିର ମାତ୍ରାଧିକ୍ୟ ଯୋଗୁଁ ଏହା ପାନକରିଥିବା କେହି କେହି ବ୍ୟକ୍ତି ଦିନେ ଦୁଇଦିନ ପର୍ଯ୍ୟନ୍ତ ନିଶାରେ ବେହୋସ ହୋଇ ପଡ଼ି ରହିବାର ଓ ପ୍ରାଣ ହରାଇବାର ଘଟଣା ମଧ ଘଟିଥାଏ । ଏ ପାନୀୟର ଜୀର୍ଣ୍ଣକର ଶକ୍ତି ଥିବାରୁ ଏହାର ନାମ ପାଚକ ପାଣି ହୋଇଅଛି । ପୁରୀର ମପସଲରେ ବିଶେଷତଃ ବ୍ରାହ୍ମଣ ଶାସନମାନଙ୍କରେ ଓ ପୁରୀ ସହରରେ ଯୁବକ ଦଳଙ୍କର ଅପରାହ୍ନରେ ପାଚକପାଣି-ସେବା ଓ ତଦନ୍ତେ ପୋଖରୀପାଣି* କର୍ମ ନିତ୍ୟକର୍ମ ମଧରେ ଗଣ୍ୟ । ଜନ୍ତାଳରେ ପେଟଫଟା ଭୋଜନ ହେବ ଓ ଖାଇଲାବେଳକୁ ରାତି ଅଧରୁ ଅବଶ୍ୟ ଗଡ଼ିଯିବ । ଏହି ଲିହାଜରେ ସେ ଦିନ ପାଚକପାଣିର ତାବଟା ଖୁବ୍ ଚଉରସ ହୋଇଥିଲା । ଆମ୍ଭେମାନେ ପାଚକ ପାଣି ଅଧଡାଳେ ଲେଖାଏଁ ଉଦରସାତ୍ କରି ବହିର୍ଦେଶ ଯାଇ ତେଣୁ ଫେରି ଗ୍ରାମମୁଣ୍ଡ ପୁଷ୍କରିଣୀରେ 'ଅଣ୍ଠାପାଣି' କଲାବେଳକୁ ଦେଉଳରେ ସନ୍ଧ୍ୟାଘଣ୍ଟା ବାଜିଲାଣି । ତତ୍‌ପରେ ବୃକ୍ଷସ୍ୱାମୀମାନଙ୍କ ବାଡ଼ିଆଡ଼କୁ ଯାଇ ପେଣ୍ଡା ଦୁଇ ତିନି ବନ୍ତଳ କଦଳୀ, ପୁଞ୍ଜା ପାଞ୍ଚ ନଡ଼ିଆ ତୋଳି ଆଣି ଜନ୍ତାଳ ସ୍ଥାନରେ କାର୍ଯ୍ୟଗ୍ରାହୀଙ୍କ ପାଖେ ଜମା କରି ଦେଲୁ ଓ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟାଦି ପ୍ରସ୍ତୁତ କରିବା ଓ କରାଇବା ଭାର ଯେଉଁ ବର୍ଷୀୟାନ୍‌ମାନଙ୍କ ଠାରେ ଥିଲା ସେମାନଙ୍କଠାରେ ମାଲ ମସଲା ସବୁ ସଜାଡ଼ି କରି ରଖିଦେଇ ଆମ୍ଭେମାନେ ଯେଝା ଘରକୁ ଗଲୁଁ ଓ କହିଗଲୁଁ ଯେ, ଠାକୁରାଣୀଙ୍କୁ ନୈବେଦ୍ୟ ଦିଆ ସରି ସଙ୍ଖୁଡ଼ି ସଭା ହେଲାବେଳକୁ ପତ୍ରପାଣି** ହେଲେ ଆମକୁ ଡାକିବାକୁ ସେବକ ଯିବ ।

ମୁଁ ଆମଘରେ ଯାଇ ପହଞ୍ଚିଲା ବେଳକୁ ନିଶାଦେବୀ ନିଦ୍ରାଦେବୀଙ୍କୁ ଗହଣରେ ଧରି ମୋ ଉପରେ ସବାର ହେଲେଣି । ମୁଁ ଏକବାରିଗ୍ ଯାଇ ମସିଣା ଓ ମାଣ୍ଡିର ଆଶ୍ରୟ ନେଲି । ମସିଣାରେ ପଡ଼ିବା ସଙ୍ଗେ ସଙ୍ଗେ ନିଦ୍ରାଦେବୀ ବିଜେ କଲେ । ଏତେବେଳକୁ ରାତ୍ରି ପ୍ରାୟ ପହରେ । ଅର୍ଥାତ୍ ଶୂନ୍‌ଘଡ଼ିରେ ୯ଟା ବାଜିବା ବେଳ ହୋଇଥିଲା । ରାତି ଦଶ ଘଡ଼ି ଅର୍ଥାତ୍ ରାତି ଦେଢ଼ଟା ବେଳକୁ ଗ୍ରାମଦାଣ୍ଡରେ ଗ୍ରାମସେବକର ଡାକ ଶୁଣାଗଲା । ମୋ ବୋଉ (ମାତା) ଆସି ମୋତେ ଉଠାଇ ଦେଲେ; ନିଦ ସିନା ଭାଙ୍ଗିଗଲା, ନିଶା ଭୋଳ, ନିଦର ଜୋର୍ ଓ ସ୍ୱପ୍ନର ଘୋର ଭାଙ୍ଗି ନ ଥାଏ । ମୁଁ ଉଠି ବସିଲି ଓ ମସିଣା ଉପରେ ଦରାଣ୍ଡିଲି । ବୋଉ ପଚାରିଲେ ''କଅଣ ଦରାଣ୍ଡୁଛୁ ?'' ମୁଁ ଉତ୍ତର ଦେଲି 'ସଣ୍ଢଆଶିଟା କୁଆଡ଼େ ଗଲା ?' ବୋଉ ଏହା ଶୁଣି ଠୋ ଠୋ ହୋଇ ହସିଲେ, କହିଲେ 'କିରେ ! ମସିଣା ଉପରେ ସଣ୍ଢଆଶି କଅଣ ଖୋଜୁଛୁ ରେ ? ଆଜି ତୁ ଶୋଇଲା ବେଳୁ ଖାଲି ବିଳିବିଳଉଛୁ । ତୋର ତ ଏପରି ବିଳିବିଳା କଥା କେବେ ଆମେ ଶୁଣି ନ ଥିଲୁ; ଆଜି ଇମିତି କିଆଁ ହେଲୁ ? ପୁଣି ମସିଣାରେ ସଣ୍ଢଆଶିଟା କଅଣ ଦରାଣ୍ଡୁଛୁ ?'' ତେବେ

---

* ଝାଡ଼ା ଯିବା ** ଖାଇବାପାଇଁ ପତ୍ରପଡ଼ିବା

ସୁଦ୍ଧା ମୋ ନିଦମିଶା ନିଶା ମୋତେ ଛାଡ଼ି ନ ଥାଏ ଓ ନିଦବେଳେ ମୁଁ ଦେଖିଥିବା ମଧୁର ସ୍ୱପ୍ନର ମୋହ ପୂର୍ଣ୍ଣ ରୂପେ ଅପସାରିତ ହୋଇ ନ ଥାଏ । ମୁଁ କହିଲି, ''ବୋଉ ! ସେ ଛୁଆଳସିଂହ ମୁଛକୁ ମୁଁ ଯେଉଁ ସଣ୍ଢୁଆଶିରେ ଗୋଟି ଗୋଟି କରି ଓପାଡୁଥିଲି, ବାଆଁପଟ ନିଶଯାକ ଗୋଟିପୋଛ କରି ଓପଡ଼ା ସରିଥିଲା । ଡାହାଣ ପାଖ ନିଶପଟା ପାଇଁ ସଣ୍ଢୁଆଶି ଆଣିଲାବେଳକୁ ତୁ ମୋତେ ଡାକିଦେଲୁ । ମୁଁ ପଛକେ ଜନ୍ତାଳରେ ଖାଇବାକୁ ଯାଇ ନ ଥାନ୍ତି; ତୁ ମୋର କେଡ଼େ ସୁଖର ସ୍ୱପ୍ନକୁ ଅକାରଣେ ମାଟି କରିଦେଲୁ ?'' ଏହା ଶୁଣି ବୋଉ ଟିକିଏ ହସିଦେଇ କହିଲେ, ''ଠାକୁରାଣୀଙ୍କ ମଣ୍ଡପରେ ଗାଆଁବାଲାଯାକ ପତ୍ର ପକାଇ ତୋତେ ଚାହିଁ ବସିଅଛନ୍ତି, ତୁ ବେଇଗି ଯା'' । ମୁଁ ବୋଉଙ୍କ କଥାର ଉତ୍ତର ନ ଦେଇ ଆଖି ମଳି ମଳି ଠାକୁରାଣୀଙ୍କ ମଣ୍ଡପଆଡ଼କୁ ଗଲି । ରାତିରେ ଭୋଜନ ସାରି ଘରକୁ ଫେରିଲାବେଳକୁ ରାତି ତିନି ବାଜିଲାଣି । ଘରେ ଆସି ବିଛଣା ଧଇଲି । ଶୋଇଲାବେଳେ ଠାକୁରାଣୀଙ୍କୁ ପ୍ରାର୍ଥନା କରି ଶୋଇଲି ଯେ, ମୋ ସ୍ୱପ୍ନର ଯେଉଁ ଅଂଶଠେଇଁ ମୋ ନିଦ ବୋଉ ଭଙ୍ଗାଇଦେଲେ ସେହିଠାରୁ ପୁଣି ଆରମ୍ଭ କରି ମୁଁ ସ୍ୱପ୍ନ ଦେଖେଁ କିନ୍ତୁ ଯା କି ହୁଏ ? ସେ ସ୍ୱପ୍ନର ଆଉ ଆବୃତ୍ତି ହେଲା ନାହିଁ । ତାପରେ ଏଣୁତେଣୁ ଗୁଡ଼ାଏ ସ୍ୱପ୍ନ ଦେଖିଲି । ସେ ରାତିରେ ମନର ଓରମାନ ଆଁଉ ମେଣ୍ଟିଲା ନାହିଁ । କଥାଟା କଅଣ କି, ଅଣ୍ଡିରିପୁଅର ଜାତକରେ ଗ୍ରହବଳ ଥିଲେ ସେ ରଜା ହୁଏ ଓ ମାଇକିନିଆ ଝିଅର ଗ୍ରହବଳ ଥିଲେ ସେ ବେଶ୍ୟା ହୁଏ, ଏ କଥା ପିଲାଦିନେ ଆମ ଗାଆଁ ଜଉତିଷ ନାହାକ ଠାରୁ ମୁଁ ଶୁଣିଥିଲି । ତାପରେ କ୍ରମଶଃ ବୟସ ବୃଦ୍ଧି ହେବା ସଙ୍ଗେ ରଜାମାନଙ୍କ ଅୟସ, ରଜାମାନଙ୍କ ମଉଜ, ରଜାମାନଙ୍କ କରାମତି ଅନ୍ୟମାନଙ୍କ ଠାରୁ ଶୁଣିଲି ଓ ନିଜେ ମଧ କେତେ ରଜାରାଜୁଡ଼ାଙ୍କ ଛାମୁକୁ ଯାଇ ସ୍ୱ-ଚକ୍ଷୁରେ ଦେଖିଲି । ଏ ସବୁ ଶୁଣି ଓ ଦେଖି ହୃଦୟର କେଉଁ ନିଭୃତ କୋଣରେ ବାସ୍ତବ ଓ ଅବାସ୍ତବ ମିଶାମିଶି, କଳ୍ପନା ଓ ସତ୍ୟ ଘଟଣାର ଗୋଳିଆଗୋଳି, ଲାଳସା ଓ କାମନାର ଘଣ୍ଟାଘଣ୍ଟି ଗୋଟାଏ ଜାଲଜାଲୁଆ ଆକ୍ଷେପର ଉଦ୍ରେକ ହୋଇଥାଏ ଯେ, ମତେ ପ୍ରଭୁ ରଜାଟାଏ କରି ଜନ୍ମ ନ ଦେଲେ କାହିଁକି ? ମୁଁ ରଜା ହୋଇଥିଲେ କେତେ ଅୟସ କରିଥାଆନ୍ତି, କେତେ ମଉଜ ମଜଲିସ କରି ଥାଆନ୍ତି, କେତେ ଲୋକଙ୍କୁ ଦଣ୍ଡ ଦେଇଥାଆନ୍ତି, କେତେ ରାଣୀ, ମହାଦେଈ, ଫୁଲବେହୀ, ଚଉକିବେହୀ, ମାଳବେହୀ କରିଥାଆନ୍ତି । କେତେ ମଣିଷଙ୍କୁ ଘୋଡ଼ା, ବଳଦ, ମଇଁଷି, ଘୁଷୁରି କରିଥାଆନ୍ତି, କେତେ ଲୁହା ସିନ୍ଦୁକରେ ତୋଡ଼ାମାନ ସାଇତି ଥାଆନ୍ତି ।

ଏପରି ଗୋଟାଏ ମନୋଭାବ ପ୍ରଚ୍ଛନ୍ନ ଥିଲା ବୋଲି ମୋତେ ଆଗରୁ ମାଲୁମ ନ ଥିଲା । ଜନ୍ତାଳ ରାତିର ସ୍ୱପ୍ନରୁ ଏ ମନୋଭାବର ଅବସ୍ଥିତିକୁ ମୁଁ ଠଉରାଇଲି । କାରଣ ଭାଗବତକାର ଲେଖି ଯାଇ ଅଛନ୍ତି, 'ଏ ମନ ଭାବୁଥାଇ ଯାହା, କାଳେ ପ୍ରାପତ ହୁଏ ତାହା' । ମନରେ ଯାହା ପାଞ୍ଚୁ ନ ଥିବ, ଆଖିରେ ଯାହା ଦେଖି ନ ଥିବ, କାନରେ ଯାହା ଶୁଣି ନ ଥିବ, ତାହା କଦାପି ସ୍ୱପ୍ନରେ ଦେଖିବ ନାହିଁ ବୋଲି ସ୍ୱପ୍ନ ବିଷୟରେ ବିଶେଷଜ୍ଞ

ପଣ୍ଡିତମାନେ ମତ ଦେଇ ଅଛନ୍ତି ଓ ସ୍ୱପ୍ନ ରାଜ୍ୟର ଦୃଶ୍ୟ ବାସ୍ତବ ରାଜ୍ୟର ଭିନ୍ନ ଭିନ୍ନ ଅନୁଭବ ଓ ଦୃଶ୍ୟର ଓଡ଼ାଙ୍କ ଓ ଫେଡ଼ାଙ୍କ ବୋଲି ବିଶେଷଜ୍ଞମାନେ କହିଯାଇଅଛନ୍ତି । ଅତଏବ ମୁଁ ଯେବେ ରଜା ହେବାକୁ ପାଞ୍ଚୁ ନ ଥା'ନ୍ତି ତେବେ ଏପରି ରଜା ହେବା ସ୍ୱପ୍ନ ଦେଖି ନ ଥାନ୍ତି । ପାଠକମାନେ ସ୍ୱପ୍ନର ବିବରଣଟା ଶୁଣିଲେ ଉପରୋକ୍ତ 'ସ୍ୱପ୍ନବାଦ'ର ସତ୍ୟତା ଉପଲବ୍ଧି କରିପାରିବେ । ମୁଁ ମସିଣାରେ ପଡ଼ିବା ମାତ୍ରେ ମୋ ଆଖି ନିଶାରେ ଓ ନିଦରେ ଲାଗିଗଲା; ସେଥିରୁ ସ୍ୱପ୍ନ ରାଜ୍ୟର ସାମାନାରେ ମୁଁ ବିଚରଣ କଲି । ଦେଖିଲି ଯେ-

ମୁଁ ଏକ ରାଇଜରେ ରଜା ହୋଇଛି । ଗୋଟାଏ ବଡ଼ ହୟାନ୍ତ ଉଆସରେ ଗୋଟାଏ ଖୁବ ବଡ଼ ମେଲା ଘରେ ଚଉକି, ଟେବୁଲ, କାଉଚ, ସୋଫା ସଜା ହୋଇଛି, କାନ୍ଥଯାକ ଦାମୀ ତସବୀର୍ ସବୁ ଟଙ୍ଗା ହୋଇଛି, ମୋ ପଛରେ ଜରେସ୍‌ପିନ୍ଧା ବନ୍ଧୁକଧରା ସିପେଇ ଖଡ଼ାପହରା ଦେଉଛନ୍ତି । ସେ ମେଲାରେ ମୋର ଦରବାର ଲାଗିଛି । କଚିରି ଖୁବ୍ ଜମିଛି । ମୋ ବାଆଁ ପାଖେ ମେଲାର ଗୋଟାଏ କଣାରେ ବାଉଁଶ ଜାଲିରେ ଘେରା ପରଦାଟଙ୍ଗା ଜାଗାରେ ମୋ ରାଣୀ ତାଙ୍କ ଘରଝିଅମାନଙ୍କଦ୍ୱାରା ପରିବେଷ୍ଟିତା ହୋଇ ବିଜେ କରିଛନ୍ତି । ମୋ ଚଉକି ପଛପଟରୁ ରାଣୀଙ୍କ ଅଲଗଡ଼ା ପର୍ଯ୍ୟନ୍ତ ଟେରାବାଡ଼ ପଡ଼ିଛି । କେତେ କେତେବେଳେ ରାଣୀସାହେବା ମୋ ବିଚାରରେ ସନ୍ତୁଷ୍ଟା ହୋଇ ମୋ ପଛ ଆଡ଼କୁ ସେହି ଟେରାବାଡ଼ ବାଟେ ଆସି ମୋ କାନରେ ସାବାସ୍ ସାବସ୍ କହୁଛନ୍ତି ଓ ଯେଉଁ ବିଚାରରେ ତାଙ୍କର ମନ ମାନୁ ନାହିଁ ସେ ବିଚାରରେ ନିଜର ଅନନୁମୋଦକ 'ଛି ! ଛି !' ମୋ କାନରେ ଫୋଡ଼ିଦେଉଅଛନ୍ତି ଓ ଯେଉଁ ଆସାମୀ ଉପରେ ଦଣ୍ଡର ମାତ୍ରା ଯଥେଷ୍ଟ ହେଉ ନାହିଁ ତାକୁ ଆହୁରି କଡ଼ା ଦଣ୍ଡ ଦେବାପାଇଁ ସୂଚେଇଦେଉ ଅଛନ୍ତି ।

ମୋ ମିସଲର ଡାହାଣ ପାଖେ ମୋ ସାନଭାଇ ମନ୍ତ୍ରୀସାହେବ ବସିଛନ୍ତି । ସବୁବେଳେ ତାଙ୍କ ମୁହଁରେ ଗୋଟାଏ ପାଲବିଣ୍ଡା ମାରିଛି । ସେ ପାଲବିଣ୍ଡାରେ ଏପରି ସ୍ପ୍ରିଙ୍ଗ୍‌କଳ ଲାଗିଛି ଓ ଉକ୍ତ ସ୍ପ୍ରିଙ୍ଗର ଡୋରି ମୋ ହାତରେ ଏପରି ଅଛି ଯେ, ମୋର କୌଣସି ବିଷୟରେ ମନ୍ତ୍ରୀଙ୍କ ଠାରୁ ଉପଦେଶ ଲୋଡ଼ା ହେଲେ ମୁଁ ଠାରଠୁରରେ ତାଙ୍କୁ ପ୍ରଶ୍ନ କରୁଛି, ଡୋରିକୁ ଟାଣି ଦେଉଛି । ସଙ୍ଗେ ସଙ୍ଗେ ମନ୍ତ୍ରୀଙ୍କ ମୁହଁରୁ ପାଲ ଠିପିଟା ବାହାରି ପଡୁଛି, ସେ ଝଟ୍‌କିନି ପଦେ କଥା କହିଦେବା ମାତ୍ରକେ ସ୍ପ୍ରିଙ୍ଗ୍ ବଳରେ ପୁଣି ସେ ପାଲଚୁଣ୍ଡାଟା ତାଙ୍କ ମୁହଁରେ ପଶି ଯାଉଛି । ମନ୍ତ୍ରୀଙ୍କ ପେଟରେ କୋଡ଼ମେଇଏ* ବୁଦ୍ଧି ଅଛି, ସବୁବେଳେ ତାଙ୍କ ମୁହଁଟା ନିଶାଦଳଭରା ବୋତଲ (Smelling Salt bottle) ଭଳି ଅବୁଜା ରହିଲେ ତାଙ୍କ ପେଟ ଭିତରର ବୁଦ୍ଧିଯାକ କପୂର ଭଳି ଉଡ଼ିଯିବ, ଏଥିପାଇଁ ଏ ସ୍ପ୍ରିଙ୍ଗ୍ ଦିଆ ପାଲଚୁଣ୍ଡା ବିଲାତରୁ ବରାଦ ଦିଆହୋଇ ତିଆର ହୋଇ ଆସିଛି । ମୋର ଆଉ ଏକ ଭାଇ ମୋ ମିସଲ ଓ ମନ୍ତ୍ରୀଙ୍କ ମିସଲ ମଝିରେ ଫୁଲ୍‌ଡ୍ରେସ୍‌ପିନ୍ଧା କଟୁଆଳ (ପୁଲିସ୍ ସାହେବ) ରୂପେ

---

* ଅମପା

ଆଟେନ୍‌ସନ ହୋଇ ଦୁଇ ପାଦକୁ ସୂକ୍ଷ୍ମକୋଣ କରି ଠିଆ ହୋଇଛନ୍ତି ଓ ସବୁବେଳେ ହାତରେ ଗୋଟିଏ ଦୂର୍ବୀନ* ଲଗାଇ ମୋ ଆଖିକୁ ଚାହିଁ ରହିଛନ୍ତି; ମୋ ଆଖିର ଇସାରା ମାତ୍ରେ ସେ ଗୋଟାକୁ ଗୋଟା ଆସାମୀ ଆଣି ମୋ ସାମନାରେ ପଛବୁହାବନ୍ଧା କରି ମନ୍ତ୍ରୀଦ୍ୱୟ ପରିବୃତପାର୍ଶ୍ୱ କରି ଠିଆ କରାଇ ଦେଉଅଛନ୍ତି । ମୋର ଆଉ ଗୋଟିଏ ଭାଇ ଓକିଲ ବେଶ (ଚୋଗା ଚପକନ ଓ ପଗଡ଼ି) ପିନ୍ଧି ମୋ ମିସଲ ଆଗରେ ଗୋଟାଏ ମାଞ୍ଚିଆରେ ବସି ଅଛନ୍ତି । ମୋର ଆଉ ଏକ ଭାଇ ତୋଡ଼ାଗୁଡ଼ିଏ ପାଖରେ ଥୋଇ ମୋ ସାମନାରେ ମେଲାର ଗୋଟିଏ କଣରେ ଗୋଟିଏ ଖଟ ଉପରେ ବସିଛନ୍ତି । ଆସାମୀଙ୍କୁ ମୁଁ ଅର୍ଥଦଣ୍ଡରେ ଦଣ୍ଡିତ କରିବାମାତ୍ରେ ଆସାମୀମାନେ ମୋ ସାହୁକାର-ଭାଇଙ୍କ ପାଖକୁ ଯାଉଅଛନ୍ତି ଓ ସେଠାରେ ସାହୁକାରଙ୍କୁ ମାସିକ ଶତକଡ଼ା ୭୫ ଟଙ୍କା ସୁଧରେ ଗୋଜା ଲେଖିଦେବା ମାତ୍ରେ ସାହୁକାର ଭାଇ ଟଙ୍କା ଗଣି ଦେଉଛନ୍ତି ଓ ଟଙ୍କାତକ ଖଡ଼େଦମ୍ ଆସି ମୋ ଟେବୁଲ ତଳେ ଥିବା ଲୁହା ସିନ୍ଦୁକରେ ଭରୋଟ ହେଉଅଛି । ଏଠାରେ କହି ରଖିବା ଉଚିତ ଯେ, ମୋ ରାଜ୍ୟରେ ଜେଲଖାନା ନାହିଁ; ଜେଲଖାନାରେ ଆସାମୀଙ୍କୁ ପୋଷିବା ମୋ ଧାତୁରେ ଯାଏ ନାହିଁ । ଗୁରୁତର ଅପରାଧୀ ପୁରୁଷ ଆସାମୀଙ୍କ ପ୍ରତି ମଇଁଷି ବା ବଳଦଙ୍କ ପରିବର୍ତ୍ତରେ ହଳ ଓ ଶଗଡ଼ବୁହା ଦଣ୍ଡ, ଘୋଡ଼ାଙ୍କ ପରିବର୍ତ୍ତରେ ବଗି ଟଣା ଦଣ୍ଡ, ମୃଦଙ୍ଗ ଘରେ ମୋ ପୋଷା ପାର୍ଶ୍ୱଚରଙ୍କ କରତାଡ଼ନ ସଂକୀର୍ତ୍ତନ ରସାସ୍ୱାଦନ ଦଣ୍ଡ, ଲଙ୍କାମରିଚ ଧୂଆଁ ଦଣ୍ଡ, ଘୋଡ଼ା ଲାଞ୍ଜରେ ବନ୍ଧା ହୋଇ ଘୋଷରା ହେବା ଦଣ୍ଡ, ଡାହାଳ କୁକୁରଙ୍କ ଦ୍ୱାରା ଶିକାର ହେବା ଦଣ୍ଡ, ଏହିପରି କେତେଗୁଡ଼ିଏ ଦଣ୍ଡ-ବିଧାନ ଓ ଏହି ଶ୍ରେଣୀର ସ୍ତ୍ରୀଲୋକ ଅପରାଧୀମାନଙ୍କ ପ୍ରତି ସ୍ୱାମୀଙ୍କ ଉପସ୍ଥିତିରେ ମୋ ପୋଷା କୁକୁରଙ୍କ ଦ୍ୱାରା ନିର୍ଯାତନ ବା ଧର୍ଷଣ ଦଣ୍ଡ ବିଧାନ ଅଛି ।

ଯେଉଁମାନେ ମୋର ବା ଆମ ଉଆସର ବା ମୋ ମନ୍ତ୍ରୀଭାଇ, କଟୁଆଳଭାଇ, ସାଧବଭାଇ, ଓକିଲଭାଇଙ୍କ ନାମରେ - ମୁହଁରେ ହେଉ, ମୁଖଭଙ୍ଗୀରେ ହେଉ, ହାତରେ ହେଉ, ଗୋଡ଼ରେ ହେଉ, ମନରେ ହେଉ, ସ୍ୱପ୍ନରେ ହେଉ ରାଜ୍ୟରେ କଳଙ୍କ ରଟନା କରିବେ ବା ରଟନା କରିବାର ଚୁଗୁଲି ଆମ ପଞ୍ଚପାଣ୍ଡବ ଭାଇଙ୍କ କର୍ଣ୍ଣଗୋଚର, ମନୋଗୋଚର, ସ୍ୱପ୍ନଗୋଚର ବା ଗୁହଗୋଚର ହେବ ସେମାନଙ୍କୁ ଗୁରୁତର ଅପରାଧୀ ବୋଲି ଧରାଯାଏ । ଅନ୍ୟ ଅପରାଧୀମାନଙ୍କୁ ଅର୍ଥଦଣ୍ଡରେ ଖଲାସ ଦିଆଯାଏ । ଅର୍ଥଦଣ୍ଡ ତ ସାଧବଭାଇଙ୍କ ତହବିଲରୁ ନଗଦ ମୋ ମିସଲରେ ଦିଆଯାଏ ଓ ସେ ମାସେ ମିଆଦରେ ଟଙ୍କା ପାଏ, ସୁଧ ନ ପାଇଲେ ଖାତକର ଯାନାସ୍ଥାନ, ଜମିବାଡ଼ି, ଗୋରୁଢୋରୁ ଦଖଲ ନେଇ ଆଦାୟ କରିବା ପାଇଁ ସାର୍ଟିଫିକଟ କ୍ଷମତା ରାଜ୍ୟ ସରକାରରୁ ପାଇ ଅଛନ୍ତି । ମିସଲରେ କେବଳ ଏହି ୫ ଜଣଙ୍କ ପାଇଁ ପୂର୍ବୋକ୍ତ ରୂପେ ଆସନ ନିର୍ଦ୍ଦିଷ୍ଟ ଅଛି (ଯଥା

---

*ଦୂରବୀକ୍ଷଣ ଯନ୍ତ୍ର

- ଖୋଦ ମୁଁ, ରାଣୀସାହେବା, ମନ୍ତ୍ରୀସାହେବ, ସାଧବସାହେବ, ଓକିଲସାହେବ) ବାକି ସମସ୍ତେ ରାଜଦରବାରରେ ଠିଆ ହୁଅନ୍ତି ।

ପ୍ରଥମ ମକଦମା ପଡ଼ିଲା, ଜଣେ ବାହ୍ମଣର । ସେ ନିପଟୀ ଗାଉଁଲି ଥିବାରୁ ରାଜଦରବାରର ଆଦବ କାଇଦା ତାକୁ ଜଣା ନ ଥିଲା ଓ ସେ କଳରେ ଅର୍ଦ୍ଧଚର୍ବିତ ପାନ ଜାକି ଆସି ଠିଆହେଲା । ତା ବିପକ୍ଷରେ ପୂର୍ବରୁ ଏହି ଅଭିଯୋଗ ହୋଇଥିଲା ଯେ, ରାଜସରକାରରୁ ଲୁଣ ବିକିବାକୁ ଯେଉଁ ବ୍ୟକ୍ତିଙ୍କୁ ଏକଚେଟିଆ ଅଧିକାର (ଲାଇସେନ୍ସ) ଦିଆ ଯାଇଅଛି ତା'ଠାରୁ ଛାଡ଼ ଚିଠି ନ ନେଇ ଓ ତାକୁ ସଲାମୀ ନ ଦେଇ ବାହ୍ମଣ ଗୋସେଇଁ ଏକାଥରକେ ସେରେ ଲୁଣ କିଣିନେଲା ଓ ଦିନେ ତା ପଡ଼ିଶା ଘରେ ଲୁଣ ନ ଥିବାରୁ ତାକୁ ଗିନାଏ ଲୁଣ ଉଧାର ଦେଇଥିଲା । ଯେବେ ଏପରି ସମସ୍ତେ ଅଘରଦ୍ୱାରୀ ସାଇପଡ଼ିଶାଙ୍କୁ ଲୁଣ ଦେବେ, ତାହା ହେଲେ ଲୁଣ ଲାଇସେନ୍ସବାଲା ରାଜଦରବାରକୁ ଦେଇଥିବା ବାର୍ଷିକ ସଲାମି ଚାରିହଜାର ଟଙ୍କା କାହୁଁ ଉଠାଇବ ? ଏଥିପାଇଁ ଲାଇସେନ୍ସବାଲା ପ୍ରତି ଗ୍ରାମରେ ଗୁଇନ୍ଦା ରଖିଛି । ସେମାନେ ଆସି ସବୁ ଖବର ତାକୁ ଦେଉଛନ୍ତି । ଅପରାଧୀଠାରୁ ଯାହା ଅର୍ଥଦଣ୍ଡ ଆଦାୟ ହୁଏ ସେଥିରୁ ଟଙ୍କାକେ ଅଣାଏ ଲାଇସେନ୍ସବାଲା ନିଏ, ଦୁଇଅଣା ରାଣୀ ସାହେବାଙ୍କର, ଅଣାଏ ମନ୍ତ୍ରୀ ସାହେବାଙ୍କର, ଅଣାଏ ମନ୍ତ୍ରିଆଣୀ ସାହେବାଙ୍କର, ଅଣାଏ କଟୁଆଳ ସାହେବଙ୍କର, ଅଣାଏ ସାଧବ ସାହେବଙ୍କର, ଅଣାଏ ସପୁଲିସ୍ ପେସ୍କାରଙ୍କର, ବାକି ଆଠଅଣା ରାଜ ତେରଜୁଡ଼ି* ତହବିଲର । ଏହିପରି ମୋ ରାଜ୍ୟରେ ଧାନ, ଚାଉଳ, ବିରି, କୋଳଥ, ବାସନା ଓ ଗନ୍ଧିଆ ତେଲ, ପାନ, ଗୁଆ, ଗୁଣ୍ଡି, ଖଇର, ଭିନ୍ନ ଭିନ୍ନ ପନିପରିବା, ଜାଳଣି କାଠ, ଚୂନ, ଖଲିପତ୍ର, ଲୁଗା, ସବୁ ବ୍ୟବହାର୍ଯ୍ୟ ବସ୍ତୁର ଏକଚେଟିଆ ଲାଇସେନ୍ସ ଅଛି ଓ ଏହି ଲାଇସେନସରୁ ମୋର ଲକ୍ଷ ଲକ୍ଷ ଟଙ୍କା ଆମଦାନୀ ହୁଏ ଓ ଏ ଲାଇସେନସ ଭଙ୍ଗଜନିତ ଅପରାଧରୁ ମଧ ବହୁ ଲକ୍ଷ ଟଙ୍କା ଆମଦାନୀ ହୁଏ ।

ଏ ସବୁ ଲାଇସେନ୍ସ ମୁହେଁ ମୁହେଁ ଦିଆନିଆ ହୁଏ ଓ ଲାଇସେନ୍ସଭଙ୍ଗ ସମ୍ବନ୍ଧୀୟ ମକଦମାମାନ ମଧ ମୁହେଁ ମୁହେଁ ଫଏସଲ ଓ ଅର୍ଥଦଣ୍ଡ ଆଦାୟ ହୁଏ । ପ୍ରତିଦିନ କଚେରି ଭାଙ୍ଗିଲା ବେଳକୁ ଭାଗୁଆଳୀଙ୍କ ଭାଗ ନଗଦ ରୋକ୍‌ଠୋକ୍ ବଣ୍ଟାହୋଇ ଭାଗ ଛିଣ୍ଡିଯାଏ । ଏ ବ୍ରାହ୍ମଣର ଲୁଣ ଲାଇସେନ୍ ଭଙ୍ଗ ଅପରାଧ ଯୋଗୁଁ ତାକୁ ଶହେଟଙ୍କା ଜୋରିମାନା ହେଲା ଓ ସେ ସାଧବ-ସାହେବଙ୍କ ଠାରୁ ଆଣି ଛାମୁରେ ଦାଖଲ କରିଦେଲା । ତାପରେ ପେଶ୍ ହେଲା ତା ବିରୋଧରେ ଦ୍ୱିତୀୟ ନମ୍ବର ଅଭିନବ ମକଦମା - ସେ କିଆଁ କଳରେ ପାନ ଜାକି ରାଜ ଦରବାରକୁ ଅଇଲା ? ତାର ପାନ ଖାଇବାର ସଉକୀର ପୁରସ୍କାର ସ୍ୱରୂପ ମୋ ଇସାରା ଓ ରାଣୀସାହେବାଙ୍କ ଆଦେଶକ୍ରମେ ଘରଝିଅ ଦୁଇଜଣ ଉଆସକୁ

---

* ଟ୍ରେଜେରି ବା ଅର୍ଥାଗାରର

ଯାଇ ତେଣୁ ଗୋଟାଏ ରେକାବୀରେ ଛ'ଆଙ୍ଗୁଳ ଲେଖାଏଁ ଲମ୍ବ କାହାଳିଆ ପାନଖିଲ ଦୁଇପୁଞ୍ଜା ଆଣି ମୋ ମିସଲ ଉପରେ ଥୋଇଦେଲେ । ସେ ପାନଖିଲର ଉପକରଣ ଏଠାରେ ପ୍ରକାଶ କରାଗଲା ନାହିଁ, କାରଣ ତାହା ଚୋବାଇବା ବେଳେ ବ୍ରାହ୍ମଣର ମୁହଁ, ପାଟି, ଆଖି, ନାକ ସମସ୍ତେ ସେ ଉପକରଣମାନଙ୍କ କରାମତ ପ୍ରକାଶ କରିବେ । ବାହ୍ମଣକୁ ପଛବୁହାକରି କଟୁଆଳ ସାହେବ ଆଣି ମୋ ଛାମୁରେ ଠିଆ କରାଇଲେ । ତା ପଛରେ ଦୁଇଜଣ ବେତ୍ରଧାରୀ ମନ୍ତ୍ରୀ ଠିଆ ହୋଇଗଲେ । ଗୋସେଇଁକୁ ମୁଁ ଆଜ୍ଞା କଲି, ''ଗୋସେଇଁ, ତୁମର ତ ପାନ ଖାଇବାର ଭାରି ସଉକୀ ଅଛି, ଆମ ରାଣୀସାହେବା ତୁମ ଉପରେ ପ୍ରସନ୍ନା ହୋଇ ଏ ପାନଖିଲ ୮ଟି ତୁମପାଇଁ ଉପହାର ଦେଇଛନ୍ତି । ଏତକ ଏ ଦରବାରରେ ସାରିବାକୁ ହେବ ।''

'ଗାଉଁଲି ବାହ୍ମଣ ପ୍ରଥମ ପାନଖିଲକ ପାଟିରେ ପୂରାଇ ଦୁଇଥର ରଗଡ଼ିଛି, ତା ମୁହଁକୁ ବିଚକାଟିଆ କରି ଦେଲା ଓ ପାଟିରୁ ପାନ କାଢ଼ିପକାଇବାକୁ ବେକକୁ କଇଁଛ ଭଳି ବାହାରକୁ କାଢ଼ିଛି, ଏହି ସମୟରେ ପଛଆଡ଼େ ଠିଆହୋଇଥିବା ମନ୍ତ୍ରୀଙ୍କ ହାତରୁ ବାଜିଲା ପଶ୍ଚାର୍ଦ୍ଧାଙ୍ଗରେ* ସପାସପ୍ ଦୁଇ ବେତ । ଆମ ମନ୍ତ୍ରୀଙ୍କ ମୁହଁରୁ ପାଳଚୁଣ୍ଡା ସ୍ପ୍ରିଙ୍ଗଟା ଖୋଲିଗଲା । ମନ୍ତ୍ରୀ ଆଜ୍ଞା କଲେ - ''ହୁସିଆର୍ ଗୋସେଇଁ ! ଏଠାରେ ମହାରଜାଙ୍କ ଛାମୁରେ ଯେବେ ପିକ କାଢ଼ିବ ବା ପାନସିଠାଟକ ନ ଢୋକିବ ତେବେ ତୁମକୁ ସଙ୍ଗେ ସଙ୍ଗେ ମୃଦଙ୍ଗ ଘରକୁ ପଠାଇ ଦିଆଯିବ । ଏ କଥାର ସଙ୍ଗେ ସଙ୍ଗେ ତା ପିଚାରେ ସପାସପ୍ ବେତ୍ର ବୃଷ୍ଟି ଚାଲିଥାଏ । ବାହ୍ମଣ ସେ ଖଣ୍ଡକ ଯେନକେନ ପ୍ରକାରେ ଚୋବାଇଲା, ତାପରେ ଦ୍ୱିତୀୟ ଖଣ୍ଡ ଚୋବାଇବାକୁ ହୁକୁମ ହେଲା ଓ ପୁଣି ପୂର୍ବୋକ୍ତ ବିଧିବିଧାନ ଓ ବଚନିକାମାନ ଅନୁସୃତ ହେଲା । ଏଣେ ବାହ୍ମଣର ଆପାଦମସ୍ତକ ଝାଳ ବୋହି ଯାଉଥାଏ, ଆଖିରୁ ପାଣି, ନାକରୁ ସିଂଘାଣି ଧାର ଚାଲିଥାଏ ଓ ପାଟିରୁ ଲଙ୍କାମରିଚ ମଞ୍ଜିମିଶ୍ରିତ ପାନଛେପ ଓଠବାଟେ ବୋହି ବାହ୍ମଣର ଛାତି, ପେଟ, ଲୁଗା, ଦୋସଡ଼ା ସବୁକୁ ରଞ୍ଜିତ କରୁଥାଏ । ତଥାପି ତାକୁ ଛାଡ଼ ହେଲା ନାହିଁ; ସେ ୪ର୍ଥ ଖିଲ ଶେଷ କଲାବେଳକୁ ବେତ୍ରାଘାତ ଓ ଲଙ୍କାମରିଚ ଦାଉରେ ଚିତିପଟାଙ୍ଗ ହୋଇ ପଡ଼ିଗଲା । ଏହା ଦେଖି ଆମ ରାଣୀଙ୍କ ପାଖେ ଖରଡ଼ରେ** ବିଜେ କରିଥିବା ଆମ ଫୁଲବେହୀ*** ଇସାରା କଲେ, ''ଏତିକି ହେଉ, ନଇଲେ ଛାମୁଙ୍କର ବ୍ରହ୍ମହତ୍ୟା ପାତକ ଲାଗିବ ।'' ସେଥିରୁ ମୋ ମନରେ ଟିକିଏ କରୁଣ ରସର ଉଦ୍ରେକ ହେଲା ଓ ମନ୍ତ୍ରୀମାନେ ସେହି ବେହୋସ ବାହ୍ମଣକୁ ଦିହୁଡ଼ିଠାକୁ ଉଠାଇ ନେଇଗଲେ । ଉଠାଇ ନେଲାବେଳେ ଦେଖାଗଲା ଯେ, ବ୍ରାହ୍ମଣର ଲୁଗାଫେରରୁ ହଳଦିଆ ବର୍ଣ୍ଣର ଜଳୀୟବସ୍ତୁ ଓ କଛାକାନିରୁ ହଳଦିଆ ବର୍ଣ୍ଣର ଘନ-ତରଳିଆ ବସ୍ତୁର ସ୍ରୋତ ବହି ବହିକା ଯାଉଥାଏ । ସଙ୍ଗେ ସଙ୍ଗେ ଗୁଡ଼ିଏ କୁକୁରଜାତୀୟ ଜୀବଙ୍କୁ ମିସଲରେ ଛାଡ଼ି ଦିଆଗଲା ଏବଂ ସେମାନେ ପାଆଘଣ୍ଟା**** ମଧ୍ୟରେ ମିସଲର ମେଜିଆକୁ ଚାଟିଚୁଟି ସଫା କରିଦେଲେ ।

* ପିଠି, ପିଚା ** ଗାଲିଚା *** ରକ୍ଷିତା * ପନ୍ଦରମିନିଟ୍

ତତ୍‌ପରେ ଡାକରା ହେଲା ଦ୍ୱିତୀୟ ଆସାମୀ ରାମ ଛୁଆଳସିଂହ । ସେ ରାଜବଂଶର ୩ ଅନ୍ତର ଓ ୬ ପ୍ରତ୍ୟନ୍ତର ଓ ୯ ଭାତାନ୍ତର ସମ୍ପର୍କରେ ବିରାଦର ଭାଇସାଆନ୍ତ । ତାର ଅପରାଧ ଏହି ଯେ, ସେ ଆମ ମଣିମାଙ୍କ ଆଦେଶ ଅନୁସାରେ ତାର ଅଭିଆଡ଼ୀ ଝିଅକୁ ଆମ ଉଆସରେ ଘରଝିଅ ହେବାକୁ ଦେଲା ନାହିଁ । ତା ମକଦମା ବିଚାର ହେଲାବେଳେ ସେ ଥରେ ଅକସ୍ମାତ୍ ତା ମୁଛରେ ହାତ ବୁଲାଇଦେଲା । ସେ କଥା ଓକିଲ ସାହେବଙ୍କ ଆଖିରେ ପଡ଼ିବାରୁ ଓକିଲ ସାହେବ ମନ୍ତ୍ରୀଭାଇଙ୍କୁ ଠାରିଦେଲେ । ଆଗେ ତାର ଅସଲ ମକଦମା ବିଚାର ଶେଷ ହେଲା; ହୁକୁମ ହେଲା ଯେ, ରାଣୀଙ୍କ ଆଦେଶ ଅମାନ୍ୟ କରିଥିବା ଯୋଗୁଁ ତାର ଷୋଳ ବରଷୀ ଅଭିଆଡ଼ୀଝିଅ ଓ ସ୍ତ୍ରୀ ମଏ ଅଭିଆଡ଼ୀ ଝିଅ ଆଜିଠାରୁ ଉଆସରେ ଆସି ଯଥାକ୍ରମେ ରାଣୀସାହେବା, ମନ୍ତ୍ରୀଆଣୀସାହେବା ଓ ଫୁଲବେହୀ ସାହେବାଙ୍କ ପାଖେ ପୋଇଲୀ ହୋଇ ରହିବେ । ସଙ୍ଗେ ସଙ୍ଗେ ମନ୍ତ୍ରୀ ଯାଇ ଏ ୩ ଜଣଙ୍କୁ ତା ଘରୁ ଓଟାରି ଆଣି ଉଆସ ଆଡ଼କୁ ଘୋଷାରି ଘୋଷାରିକା ନେଇଗଲେ । ଛୁଆଳସିଂହ ବିଚରା ଏହା ଦେଖି କାକୁସ୍ଥ ହୋଇ ଠିଆ ହୋଇଥାଏ । ତାପରେ ତାକୁ ମନ୍ତ୍ରୀସାହେବ ମୁହଁରୁ ପାଳଚୁଣ୍ଡା ଓଟାରି ପକାଇ ପଚାରି ଆଜ୍ଞାହେଲେ, "ଛୁଆଳସିଂହ, ତୁମେ ଆମ ଛାମୁଙ୍କ ମିସଲରେ ଠିଆହୋଇ ମୁଛରେ ତାଉ ଦଉଥିଲେ ? ରାଜଦରବାରର କାଇଦା ତୁମକୁ କଅଣ ଜଣା ନାହିଁ ? ଏହା କହିବାମାତ୍ରେ ମିସଲ ଉପରକୁ ରାଣୀସାହେବାଙ୍କ ଛାମୁରୁ ଗୋଟିଏ ସଣ୍ଡୁଆଶି ପଠାହେଲା ଓ ଦୁଇଜଣ ମନ୍ତ୍ରୀ ଛୁଆଳସିଂହକୁ ପଛବୁହା କରି ଆଣି ଆମ ଛାମୁରେ ଠିଆ କରାଇଲେ ଓ ଆମେ ତା ମୁଛରୁ ସଣ୍ଡୁଆଶି ସାହାଯ୍ୟରେ ଗୋଟିଏ ଗୋଟିଏ କେଶ ଓପାଡ଼ିବାକୁ ସୁରୁ କଲୁଁ । ନିଶ ଓପାଡ଼ିଲା ବେଳେ ମତେ ଭାରି ସୁଖ ଲାଗିଲା । ଏହା ଦେଖି ମନ୍ତ୍ରୀସାହେବ ତାର ୨ଟା, କଟୁଆଳ ସାହେବ ୨ଟା, ଓକିଲ ସାହେବ ୨ଟା, ଲେଖାଏଁ ଓପାଡ଼ିଲେ । ପଛକୁ ରାଣୀ ସାହେବା ପରଦାରୁ ବାହାରି ଆସି ପୁଞ୍ଜାଏ, ଫୁଲବେହୀ ୨ଟା ଓ ଚଉକୀବେହୀ ଗୋଟାଏ ବାଳ ଓପାଡ଼ିଲେ । ସେତେବେଳକୁ ଛୁଆଳସିଂହର ବାଆଁପାଖ ନିଶବାଳଯାକ ନିର୍ମୂଳ ହେଲାଣି, ତା ବାଆଁ ପାଖ ଓଠ ଓ ମୁହଁ ଚିତଉପିଠା ଭଳି ଫୁଲି ଗଲାଣି, ସେ ବେହୋସ ହୋଇ ପଡ଼ିଲାଣି ଓ ତା ପାଟିରୁ ଗରଳ ବୋହିଲାଣି । ଏହିପରି ଅବସ୍ଥାରେ ମୁଁ ଡାହାଣପଟ ମୁଛ ଓପାଡ଼ିବାର ମମତା ଏଡ଼ି ନ ପାରି ଡାହାଣ ପଟ ମୁଛ ଓପାଡ଼ିବାକୁ ଚଉକୀବେହୀଙ୍କ ହାତରୁ ସଣ୍ଡୁଆଶି ଆଣିବାକୁ ହାତ ବଢ଼ାଉଛି, ଏହି ସମୟରେ ବୋଉ ମୋତେ ଡାକି ଦେଇ ମୋର କେଡ଼େ ରାଜଯୋଗଟାଏ ବିବାକ୍ ମାଟି କରିଦେଲେ । ଆହା ! ଜନ୍ମଦାତ୍ରୀ ମାଆ ତ, ଆଉ ତାଙ୍କୁ କଅଣ କହିବା ? ଏହିପରି ସ୍ୱପ୍ନରାଇଜରେ ମୁଁ ଅନେକ କଥା ଦେଖେ । ମଝିରେ ମଝିରେ ସମ୍ପାଦକଙ୍କୁ ଉପହାର ଦେବି ଯେ !

(ନବଭାରତ - ତୃତୀୟ ସଂଖ୍ୟା : କନ୍ୟା : ୧୩୪୧ ସାଲ)

## ।। ଦୁଇ ।।

ସ୍ୱପ୍ନଦେବୀଙ୍କୁ ଓ ମାଆ ସରସ୍ୱତୀଙ୍କୁ କେତେ ସାଧ ସାଧନା କଲି, କିପରି ପ୍ରଥମ ଦୃଷ୍ଟ ସ୍ୱପ୍ନର ପରବର୍ତ୍ତୀ ଦୃଶ୍ୟମାନ ପ୍ରତିଫଳିତ ହେବ । ଏଥିପାଇଁ ବିଜୟା, ଅହିଫେନ, ଧାନୁଆ, ମହୁଆ - ଆଦିଙ୍କ ଜଳୀୟାବତାର, ଘନାବତାର, ଧୂମାବତାର, କାଚପାତ୍ର ମଧ୍ୟସ୍ଥ ଜତୁମୁଦ୍ରିତ ଅବତାରଙ୍କ ଶରଣାପନ୍ନ ହେଲି; କିନ୍ତୁ ଚୋରାବସନ୍ତ ବୋହିଲା ନାହିଁ । ଶେଷକୁ ମୁଁ ନିରାଶ ହୋଇ କପାଳକୁ ଠୁଙ୍କିଲି । ଦୈବଯୋଗକୁ ଜଣେ ମହନୀୟ ଚରିତ, ଉତ୍କଳ-ବିଶ୍ରୁତ-କୀର୍ତ୍ତି ରାଜବନ୍ଧୁଙ୍କ ଜନ୍ମୋତ୍ସବକୁ ନିମନ୍ତ୍ରଣ କାର୍ଡ଼ ଖଣ୍ଡିଏ ପାଇଲି ଓ ତାଙ୍କ ନବରରେ ଯାଇ ଉପସ୍ଥିତ ହେଲି । ଦିନଯାକ ନାନା ପ୍ରକାର ଆମୋଦରେ ମତ୍ତ ହୋଇ ରାତିକୁ ରାଜଭୋଜି (Banquet)ରେ ଯୋଗଦେଲି । ସେହି ଭୋଜି ପୁରୁଣା ମରହଟିଆ ଧରଣର 'ଗଡୁ ପିଢ଼ା'-ସଜ୍ଜିତ ଭୋଜି ନୁହେଁ, ତାହା ଆଧୁନିକ ପାଶ୍ଚାତ୍ୟ ସଭ୍ୟତାନୁମୋଦିତ ଖାନା । ସେଥିରେ ପତର, ପାଣି, ଅନ୍ନ, ଡାଲି, ପାଞ୍ଚ ତିଅଣ, ସାତ ଭଜା, ମହୁର, ବେସର, ମଧୁରୁଚି, ଖିରି ପିଠାର ନାମ ନ ଥିଲା । ସେଥିରେ ସୁପ୍, କଟ୍‌ଲେଟ୍, ଚପ୍, କରୀ, ଓମଲେଟ୍, ମମ୍‌ଲେଟ୍, ଡେଭିଲ, ସାଣ୍ଡଉଇଚ, ଟୋଷ୍ଟ, କେକ୍, ରୋଷ୍ଟ, କୋର୍ମା, କପ୍ତା, ଦୋର୍ମା ଆଦିର ପରିବେଷଣ ଟେବୁଲ ଉପରେ ପୋଷାକ ଓ ପଗଡ଼ିଧାରୀ - ଖାନସମାମାନଙ୍କଦ୍ୱାରା ହେଲା ଓ ଶେଷରେ ପ୍ରତ୍ୟେକ ଅତିଥିଙ୍କ ସମ୍ମୁଖରେ ଗୋଟିଏ ଲେଖାଏଁ ପେଗ୍ (କାଚର ପାନପାତ୍ର) ଓ ଗୋଟିଏ ଲେଖାଏଁ ବୋତଲ ଉପସ୍ଥାପିତ ହେଲା । ଭୋଜନାନ୍ତେ ଅତିଥିମାନେ ବୋତଲରେ ଥିବା ଜଳୀୟ ବସ୍ତୁର ସଦ୍‌ବ୍ୟବହାର କଲେ । ରାଜବନ୍ଧୁ ମଧ ସେ ଦିନ ଖାନା ଟେବୁଲରେ ଅଗ୍ରାସନ ଗ୍ରହଣ କରି ଆମ ସମସ୍ତଙ୍କୁ ଆପ୍ୟାୟିତ କଲେ ଓ ଆମ୍ଭେମାନେ ସେହିଠାରେ ତାଙ୍କ 'ସ୍ୱାସ୍ଥ୍ୟ'କୁ ପାନ କଲୁଁ । (We drank to the health of our host) ତାଙ୍କ ସ୍ୱାସ୍ଥ୍ୟକୁ ପାନକରି ସାରିଲା ପରେ ତାଙ୍କର ସ୍ୱାସ୍ଥ୍ୟ ଆଉ କେତେ ବାକି ରହିଛି ତାହା ବୁଝିବା ଅବସର ଅବଶ୍ୟ ମୋତେ ମିଳି ନାହିଁ । ରାଜବନ୍ଧୁଙ୍କ ଆଗରେ ରଖାଯାଇଥିବା ବୋତଲର ବର୍ଣ୍ଣ, ଆକାର, ଛାପା, ସୀଲମୋହର, ଭିତରି ମାଲର ବର୍ଣ୍ଣ ସଙ୍ଗେ ଆମ୍ଭମାନଙ୍କ ପ୍ରତ୍ୟେକଙ୍କ ଆଗରେ ରଖା ଯାଇଥିବା ବୋତଲମାନଙ୍କର ପୂର୍ଣ୍ଣ ସାଦୃଶ୍ୟ ଥିବାର ଦେଖି ଭାବିଲୁଁ ଯେ, ଏପରି ବଢ଼ିଆ ଓ ଦାମୀ ମାଲ ଆମ ଭଳି ମୂଲିଆ ମୁଣ୍ଡଙ୍କ ଭାଗ୍ୟରେ ଜୁଟେ ନାହିଁ । ରାଜବନ୍ଧୁ ନିଜ ବୋତଲରୁ ଅଜାଡ଼ି ପ୍ରଥମ, ଦ୍ୱିତୀୟ ଓ ତୃତୀୟ ପେଗ୍ ପର୍ଯ୍ୟନ୍ତ ଉଦରସାତ୍ କଲେ ଓ ତାଙ୍କ ଅନୁରୋଧକ୍ରମେ ତାଙ୍କ ଦେଖାଦେଖି ଆମେ ନିମନ୍ତ୍ରିତ ଅତିଥି ଯାକ ମଧ ସେହିତା କଲୁଁ । ସଙ୍ଗେ ସଙ୍ଗେ ଅତିଥିମାନଙ୍କ ମଧ୍ୟରୁ କେତେକ ଗର୍ଭସ୍ଥ ବସ୍ତୁମାନଙ୍କର ଊର୍ଦ୍ଧ୍ୱଦ୍ୱାର ଓ ବହିର୍ଦ୍ୱାର ବା ନିମ୍ନଦ୍ୱାର ବାଟେ ଉଦ୍ଧାର କ୍ରିୟାରେ* ହେବା ଲାଗିଲେ; କେତେକ ସେହିଠାରେ

---

* ବାନ୍ତି

ଭୂମିରେ ଲୁଣ୍ଠନ କ୍ରିୟାରେ ଲାଗିଲେ ଓ ଦୁଇଜଣ ମୂର୍ଚ୍ଛିତ ହେଲେ । ତତ୍‌କ୍ଷଣାତ୍ ରାଜବନ୍ଧୁ ରାଜ-ଡାକ୍ତରଙ୍କୁ ଅଣାଇ ମୂର୍ଚ୍ଛିତ ବନ୍ଧୁଦ୍ୱୟଙ୍କୁ ପରୀକ୍ଷା କରିବାରେ ଦେଖାଗଲା ଯେ ସେ ଦୁହିଁଙ୍କର ନାଡ଼ୀ ସ୍ପନ୍ଦନ ବନ୍ଦ ଓ ଶୀଘ୍ର ହୃତ୍‌ପିଣ୍ଡର ସ୍ପନ୍ଦନ ମଧ୍ୟ ବନ୍ଦ ହୋଇ ଯିବାର ଆଶଙ୍କା ହେଲା ।

ଭାଗ୍ୟକୁ ମୁଁ ତିନି ପେଗ୍ ପିଇବାର ବାହାନା କରି ଏକ ପେଗ୍ ମାତ୍ର ପାଟିରେ ଢାଳିଥିଲି ଓ ଦୁଇ ପେଗ୍ ପାଟିପାଖକୁ ଉଠାଇ କମିଜରେ ଥିବା କଣ୍ଠପାଖ ଛିଦ୍ରରେ ଢାଳି ଦେଇଥିଲି । ତଥାପି ମୋର ମୁଣ୍ଡ ବୁଲାଉଥାଏ ଓ ଖାନା କାମେରାଟି ଚକ୍ରବତ୍ ପରିଭ୍ରମଣ କଲାପରି ମୋତେ ଲାଗୁଥାଏ । ଦେଖିଲି ଯେ ଶୀଘ୍ର ମୋତେ ମଧ୍ୟ ବନ୍ଧୁମାନଙ୍କ ପରି ଧରାଶାୟୀ ଓ ଉଦ୍ଗାରୀ ହେବାକୁ ହେବ । ଏହା ଅନୁଭବ କରି ମୋ ପଛରେ ଥିବା ରାଜ-ସେବକଙ୍କ ହାତ ଧରି ଧରି ଉକ୍ତ କୋଠରିର ପାର୍ଶ୍ୱବର୍ତ୍ତୀ ଗୋଟିଏ ପର୍ଯ୍ୟଙ୍କ-ଶୋଭିତ, ଦୁଗ୍ଧଫେନନିଭ-ସୁ-କୋମଳ-ଶଯ୍ୟା-ପାତିତ କୋଠରିକୁ ଗଲି ଓ ସେହିଠାରେ ପଲଙ୍କକୁ ଉଠିବାକୁ ଚେଷ୍ଟା କରୁ କରୁ ପଲଙ୍କ ପାର୍ଶ୍ୱରେ ଭୂପୃଷ୍ଠରେ ଧଡ଼୍‌ଦସ୍ ପଡ଼ିଲି । ତାପରେ ମୋର ଆଉ ସଂଜ୍ଞା ନାହିଁ । ତହିଁ ପରଦିନ ବେଳା ୧୧ଟା ଠାରେ ଅଧାକପାଳୀ ବଥା ଯୋଗୁଁ ମୋର ନିଦ୍ରା ଭଙ୍ଗ ହେଲା । ନିଦ୍ରିତାବସ୍ଥାରେ ଯେଉଁ ସ୍ୱପ୍ନ ଦେଖିଥିଲି ସେ ସ୍ୱପ୍ନରେ ମୋର ଯେଉଁ ରାଜଯୋଗ ଘଟିଥିଲା, ସେ ମନୋଭାବ ଦୂରୀଭୂତ ନ ହେଉଣୁ ମୋ ନିଦ ଭାଙ୍ଗିଯିବା ପରେ ମୁଁ ରାଜଶୟନାଗାରରେ ଥିବା ଦେଖି ଭାବିଲି, ସତରେ ତେବେ ମୁଁ ବର୍ତ୍ତମାନ ରଜା । କିନ୍ତୁ ପରକ୍ଷଣରେ ମୁଣ୍ଡ ଭାରି ବଥେଇଲା ଓ ରାଜବନ୍ଧୁ ଈଷଦ୍ ହାସ୍ୟ କରି ସେ କୋଠରିରେ ପ୍ରବେଶ କଲେ । ସଙ୍ଗେ ସଙ୍ଗେ ହସ୍ତ ଦ୍ୱାରା ଅନୁଭବ କଲି ଯେ, ମୋ ଦେହ ଓ ପରିଧେୟ ବସ୍ତ୍ରଯାକ ଗତ ରାତ୍ରିରେ ଉଦ୍‌ଗାର ଓ ପୁରୀଷ ଦ୍ୱାରା ଚିତ୍ରିତ ଓ ନଶୁଷନାର୍ଦ୍ର ଅବସ୍ଥାପନ୍ନ ହୋଇଅଛି । ଏହା ଦେଖି ଓ ଅନୁଭବ କରି ଉପଲବ୍ଧି କଲି ଯେ, ମୁଁ ରଜା ନୁହେଁ, ମୁଁ ରାଜବନ୍ଧୁଙ୍କର ଗତ ରାତ୍ରିର ଧାତୁରା ଫଳ ମିଶ୍ରିତ, ମେଢେଣ୍ଡର ରଞ୍ଜିତ, ପିପରମେଣ୍ଟ ବାସିତ ଅରଖି ସେବକ ଅତିଥି । ରାଜବନ୍ଧୁ ମତେ ତାଙ୍କ ଉଆସ ସଂଲଗ୍ନ ଗୋଟିଏ ବାହାର କୋଠରିରେ ପୂର୍ବରୁ ବସା ଦେଇଥିଲେ । ରାଜବନ୍ଧୁ କହିଲେ - କାଲି ରାତିରେ ତୁମକୁ ବସାଠାକୁ ଉଠାଇ ନେବାକୁ ବହୁତ ଚେଷ୍ଟା କରାଯାଇଥିଲା । କିନ୍ତୁ ତୁମ୍ଭେ 'ଘୋଡ଼ା ଚଢ଼ିବି, ଘୋଡ଼ା ଚଢ଼ିବି' ବୋଲି ଗର୍ଜନ ରଡ଼ି ଛାଡ଼ିବାରୁ ଆମ ପାଖ ଲୋକେ ତୁମକୁ ଉଠାଇ ନେବାକୁ ଡରିଲେ ।

ମୁଁ ନିଜର ଅଙ୍ଗ ଓ ପରିଧେୟକୁ ଚାହିଁ ରାଜବନ୍ଧୁଙ୍କ ସମ୍ମୁଖରେ ଟିକିଏ ଅପ୍ରତିଭ ହେଲି ଓ ତାଙ୍କୁ କିଛି ନ କହି ମୋ ପାଇଁ ବ୍ୟବସ୍ଥିତ ବସାକୁ ଆସିଲି । ଏଣେ ମୋର ଅଧାକପାଳୀ ଭାରି ବଥାଉଥାଏ ଓ ଖଇରି ହାକୁଟି ହେଉଥାଏ । ବସାକୁ ଆସି ସ୍ନାନ ଓ ଅଙ୍ଗାଦିରୁ ମଳାଦି ନିଃସାରଣାନ୍ତେ ରାଜଡାକ୍ତରଙ୍କୁ ଡକାଇଲି ଓ ତାଙ୍କଠାରୁ ପାନେ

ପିପରମେଣ୍ଟ ଘଟିତ ସରବତ୍ ପିଇ ଟିକିଏ ପ୍ରକୃତିସ୍ଥ ହେଲି । ରାଜଡାକ୍ତର ମୋର ବାଲ୍ୟବନ୍ଧୁ, ତାଙ୍କୁ କାଲି ରାତିର 'ସ୍ୱପ୍ନରେ ରାଜଯୋଗ' ବିଷୟ ବର୍ଣ୍ଣନା କଲି । କାଳେ ପାଠକପାଠିକାମାନେ ବିଚାରିବେ ଯେ, ସେ ରାଜଯୋଗର ଆସ୍ୱାଦନରୁ ଏ କିଆଁ ଆମକୁ ବଞ୍ଚିତ କଲା ? ଅତଏବ ଶୁଣିବାକୁ ସାବଧାନ ମଣିମା !

ଗତ 'ନବଭାରତ'ରେ ସ୍ୱପ୍ନଟି ଯେଉଁଠାରେ ଛିଣ୍ଡିଥିଲା, ବଡ଼ ଆଶ୍ଚର୍ଯ୍ୟର ବିଷୟ ଯେ, ରାଜବାଟୀରେ ରାଜବନ୍ଧୁଙ୍କ ଅତିଥି ରୂପେ, ରାଜଭୋଜିରେ ଖାଦକ ରୂପେ, ରାଜଶୟନ ପ୍ରକୋଷ୍ଠରେ ଶାୟିତ ରୂପେ, ସେହିଠାରୁ ଧାରାବାହିକ ପୁଣି ଏ ସ୍ୱପ୍ନ ଦେଖିଲି । ସ୍ୱପ୍ନତତ୍ତ୍ୱବେତ୍ତାମାନେ ଏ ସ୍ୱପ୍ନକୁ ଅନୁଧ୍ୟାନ କରି ସ୍ୱପ୍ନ ସମ୍ବନ୍ଧେ ତତ୍ତ୍ୱମାନ ଆବିଷ୍କାର କରନ୍ତୁ ।

ସେଇଠୁଁ କିସ ହେଲା କି, ଫୁଲବେହୀଙ୍କ ହାତରୁ ସଣ୍ଡୁଆଶି ଆଣି ମୁଁ ଡାହାଣ ପଟର ମୁଞ୍ଛରୁ ବାଳ ପ୍ରାୟ ଦୁଇପୁଞ୍ଜା ଓପାଡ଼ିଲିଣି । ଏହି ସମୟରେ ଦେଖାଗଲା ଯେ, ଛୁଆଳ ସିଂହ ତାଠାରୁ ପୂର୍ବେ ବାଳ ଓପଡ଼ା ଯିବାବେଳେ ଯେଉଁ ହଲଚଲ ହେଉଥିଲା ତାହା ଆଉ ହେବାକୁ ନାହିଁ । ଏହା ଦେଖି ରାଣୀସାହେବା ବୋବେଇ ଉଠି ଆଜ୍ଞା ହେଲେ "ଛୁଆଳ ସିଂହ ମରିଗଲାଣି, ଡାହାଣ ପାଖରେ ବାକିଥିବା ନିଶତକର ଅଧିକାରୀ ହେବା ସୁଖରୁ ଶବକୁ ବଞ୍ଚିତ କର ନା" । ସତକୁ ସତ ମୁଁ ମୁଛ ଓପଡ଼ା କାମ ବନ୍ଦ କରିବାକୁ ବାଧ୍ୟ ହେଲି ଓ ରାଜଡାକ୍ତରଙ୍କୁ ଡକାଇଲି । ସେ ଆସି ଛୁଆଳସିଂହ ଦେହର ଭିନ୍ନ ଭିନ୍ନ ଅଂଶରେ ତାଙ୍କ ମୁହଁ, ନାକ, କାନ, ଷ୍ଟେଥେସ୍କୋପ୍ ଯନ୍ତ୍ର ଲଗାଇ ଦେଖିଲେ ଯେ, ଛୁଆଳ ସିଂହଙ୍କ ଅମର ଆତ୍ମା ତାଙ୍କ ମର ଦେହଠାରୁ ବିଦାୟ ଗ୍ରହଣ କରି ପାଆ ଘଣ୍ଟା ହେଲା ଆଧ୍ୟାତ୍ମିକ ଏଜେଣ୍ଟ ସାହେବଙ୍କ ଦରବାରକୁ ଯାତ୍ରା କରିସାରିଲାଣି । ସଙ୍ଗେ ସଙ୍ଗେ ଡାକ୍ତରଖାନାରୁ ରେଜିଷ୍ଟରୀମାନ କଚେରିକୁ ଅଣାହେଲା ଓ ସେଥିରେ ପୂରଣ କରାଗଲା ଯେ ଛୁଆଳ ସିଂହ ନାମକ ଆମ୍ଭର ଜଣେ ଖୁବ୍ ଘନିଷ୍ଠ ବିରାଦର ଆଜକୁ ତିନିଦିନ ହେଲା ହାତିଶୁଣ୍ଢା ରୋଗରେ ପୀଡ଼ିତ ହୋଇ ଡାକ୍ତରଖାନାକୁ ଆସି ସେଠାରେ ଅପରେସନ କରାଇଥିଲା । ଅପରେସନ ପରେ ତାହାର ସାଧାରଣ ସ୍ୱାସ୍ଥ୍ୟ ଭଲ ଥିଲା, କିନ୍ତୁ ଆଜି ହଠାତ୍ ହାର୍ଟଫେଲ୍ (ହୃତ୍‌ପିଣ୍ଡର କ୍ରିୟା ବନ୍ଦ) ହୋଇ ସେ ମରିଗଲା । ସଙ୍ଗେ ସଙ୍ଗେ ଏଥିପୂର୍ବରୁ ଉଆସକୁ ଅଣାଯାଇଥିବା ତା'ର କନ୍ୟାମାନଙ୍କୁ ଓ ତା ଘରୁ ତା' ସ୍ତ୍ରୀକୁ ଡାକରା ହୋଇ ସେମାନଙ୍କଠାରୁ ଟିପଚିହ୍ନ ନିଆଗଲା ଯେ, ହାର୍ଟଫେଲ୍ ହେତୁରୁ ଛୁଆଳ ସିଂହ ମରିଗଲା । ସଙ୍ଗେ ସଙ୍ଗେ ତାର ଶବ ଶ୍ମଶାନକୁ ପ୍ରେରିତ ହୋଇ କେରାସିନି ସାହାଯ୍ୟରେ ତହିଁର ଦାହ କ୍ରିୟା ସମ୍ପନ୍ନ ହେଲା ।

ଏହି ଘଟନାଟା ଯୋଗୁଁ ଦରବାର ସେ ଦିନ ଭାଙ୍ଗିଲା ଓ ଦରବାରୀମାନେ ଯେଝା ସ୍ଥାନକୁ ଗଲେ । ସନ୍ଧ୍ୟା ବେଳକୁ ପୁଣି ମୋ ବଇଠକଖାନାରେ ସାନ୍ଧ୍ୟବୈଠକ ଜମିଲା ।

ଆମର ସଦର ଡିଭିଜନର ମେଜେଷ୍ଟର ଏ ବୈଠକକୁ ପ୍ରତିଦିନ ଆସନ୍ତି; ସେ ଦିନ ମଧ୍ଯ ଆସିଲେ । ମନ୍ତ୍ରୀ ସାହେବ ମୁହଁରେ ପାଳବିଣ୍ଡା ମାରି ମଧ୍ଯ ଯୋଗ ଦେଲେ । ମେଜେଷ୍ଟର ମନ୍ତ୍ରୀସାହେବଙ୍କ କାନପାଖେ କଅଣ ଫୁସ୍‌ଫୁସ୍ ହେଲେ । ମନ୍ତ୍ରୀଭାଇ ମୁହଁରୁ ପାଳଚୁଣ୍ଡାଟା କାଢ଼ିଦେଇ ବଡ଼ପାଟି କରି ମତେ ଶୁଣାଇ କରି କହିଲେ, ''ମେଜେଷ୍ଟର ପଚାରୁଛି ଛୁଆଳ ସିଂହର ହଠାତ୍ କିପରି ମୃତ୍ୟୁ ହେଲା ?'' ମୋ କାନରେ ଏକଥା ବାଜିବା ମାତ୍ରକେ ମୁଁ କହି ଆଞ୍ଚାହେଲି 'ହଇରେ ! ତୁ ପରା ମୋ ରାଜ୍ୟରେ ମେଜେଷ୍ଟର ହୋଇଛୁ, ତତେ କଅଣ ଏତକ ଜଣା ନାହିଁ ଯେ, ରାଜବାଟୀରେ ଓ ରାଜଦରବାରରେ ଯେତେ ଲୋକଙ୍କର ହଠାତ୍ ମୃତ୍ୟୁ ହୁଏ, ତାହା ସବୁ ହାର୍ଟଫେଲ୍ ହେତୁରୁ ହୁଏ । ଆଚ୍ଛା ! ଦିନ ଦି'ପହରେ ତତେ ଏଠାରେ ମାରି ପକାଇଲେ ଆମର ଭଲା କେହି କେଶାଗ୍ର ସ୍ପର୍ଶ କରିପାରିବ ? ଏକଥା ତୁ ବହୁବାର ଅଙ୍ଗେ ନିଭେଇ ପୁଣି ଏ ପ୍ରଶ୍ନ କରୁଛୁ ? ଦେଖୁଛି, ତୋର ଟିକିଏ ହେଲେ ବୁଦ୍ଧି ନାହିଁ ? ଆରେ ! କିଏ ଅଛରେ ! ଆମ ପାଟଘୋଡ଼ାର ଜିନ୍ ଲଗାମ ହେରିକା ଆଣିବଟି ।' ମୋ ପାଟିରୁ ଏହା ବାହାରିବା ମାତ୍ରେ ୨ ଜଣ ପହରାବାଲା ଅସ୍ତାବଲ*କୁ ଦଉଡ଼ିଲେ ଓ ସେଠାରୁ ଘୋଡ଼ାର ସାଜସଜ୍ଜା ଆଣି ଉପସ୍ଥିତ ହେଲେ । ମେଜେଷ୍ଟରକୁ ମୁଁ ହୁକୁମ କଲି 'ତୁ ଘୋଡ଼ା ପରି ଦୁଇ ଆଣ୍ଠୁରେ ଓ ଦୁଇ ପଦୀକୃତ ହାତରେ ହାମୁଡ଼ା ।' ମେଜେଷ୍ଟର ହାମୁଡ଼େଇଲା, ତା ପିଠି ଉପରେ ଘୋଡ଼ାର ଜିନ୍ କସାହେଲା, ତା ମୁହଁରେ ଘୋଡ଼ାର କଡେଇ ଓ ଲଗାମ ଦିଆହେଲା । ଉଆସକୁ ଖବର ଗଲା, ଆମ ରାଣୀସାହେବା ଆସିଲେ, ମୋ ହୁକୁମ ଅନୁସାରେ ରାଣୀସାହେବା ମେଜେଷ୍ଟର ପିଠିରେ ଜିନ୍ ଉପରେ ବସି ତା ମୁହଁରେ ଲାଗିଥିବା ଲଗାମକୁ ଧଇଲେ । ମନ୍ତ୍ରିଆଣୀ (ସମାଜ ଚକ୍ଷୁରେ ଆମ ଭାଇବୋହୂ, କିନ୍ତୁ ଆମ ଚକ୍ଷୁରେ ନରଦେବୀ)ଙ୍କୁ ତଲବ ହେବାରୁ ସେ ଆସିଲେ । ମୋ ଆଦେଶ ଓ ମୋ ପାଳଚୁଣ୍ଡା ମନ୍ତ୍ରୀ ଭାଇଙ୍କ ଇଙ୍ଗିତକ୍ରମେ ମନ୍ତ୍ରିଆଣୀ ହଣ୍ଟର ଚାବୁକ୍ ଦ୍ୱାରା ମେଜେଷ୍ଟରର ପଛଭାଗ (ପିଚା)ର ସମ୍ବର୍ଦ୍ଧନା କଲେ ଓ ଘୋଡ଼ା ବଇଠକଖାନାର ଚତୁଃଷୋଣ ଥରେ ବୁଲି ଆସିବା ପରେ ରାଣୀ ସାହେବା ଓହ୍ଲାଇଲେ; ଫୁଲବେହୀ ତଲବ ହୋଇ ଆସିଲେ, ସେ ଚଢ଼ିଲେ; ତାଙ୍କୁ ପୃଷ୍ଠରେ ଧାରଣ କରି ମେଜେଷ୍ଟର ବଇଠକଖାନାରେ ଦୁଇଭେରା ବୁଲିଲେ । ତାପରେ ମାଲବେହୀ, ଚଉକୀବେହୀ, ଟଭାବେହୀ, ଟାହିଆବେହୀ, କୁକୁରବେହୀ, ଚଢ଼େଇବେହୀ, ମାଙ୍କଡ଼ବେହୀ, ଆମ ଉଆସରେ ଯେତକଯାକ ବେହୀ ଓ ଅବେହୀ ଥିଲେ ସମସ୍ତେ ଆସି ମେଜେଷ୍ଟର ପୃଷ୍ଠାରୋହିଣୀ ହେବା ପରେ ତା ପିଠିରୁ ଜିନ୍ କଢ଼ା ହେଲା ଓ ତାକୁ ମନ୍ତ୍ରୀ ଭାଇ ନିଜ ମୁହଁରୁ ପାଳବିଣ୍ଡା କାଢ଼ି ପଚାରିଲେ, ''କିରେ ମେଜେଷ୍ଟର ! ଛୁଆଳ ସିଂହ କିପରି ମଲା

* ଘୋଡ଼ାଶାଳ

ବୁଝିଲୁ ?'' ମେଜେଷ୍ଟର କହିଲେ, ''ଆଚ୍ଛା ! ମଣିମା ! ଉଆସକୁ ଆସୁ ଆସୁ ବାଟରେ ନରୁ ମର୍ଦ୍ଦଗାଜୀଠାରୁ ଛୁଆଳ ସିଂହର ରାଜବାଟୀରେ ହଠାତ୍ ମରିବା କଥା ଶୁଣିଲି ବୋଲି ମନ୍ତ୍ରୀ ସାହେବଙ୍କୁ ପଚାରିଲି । ବର୍ତ୍ତମାନ ଆଚ୍ଛା କରି ବୁଝିଲି ଯେ, ସେ ନୈସର୍ଗିକ କାରଣରୁ ମରିଛି ।'' ଏହାଶୁଣି ମନ୍ତ୍ରୀସାହେବ ପୁଣି ମୁହଁରୁ କୁଚା ପୁଳାକ ଓଟାରି ପକେଇ ହୁକୁମ ଦେଲେ ''ଆରେ ! କିଏ ଅଛରେ ! ଧରି ଆଣ ସେ ନରୁ ମର୍ଦ୍ଦଗାଜୀକୁ ।'' ପାଆଘଣ୍ଟାରେ ମର୍ଦ୍ଦଗାଜୀ ଧରାହୋଇ ଆସିଲା । ତାକୁ ପ୍ରଥମେ ପହରାବାଲାଙ୍କ ଦ୍ୱାରା ୨/୩ ବେତ୍ରାଘାତରେ ସମ୍ବର୍ଦ୍ଧନା ହେବା ପରେ ମୁଁ ତାକୁ ପଚାରିଲି, ''କିରେ ମର୍ଦ୍ଦଗାଜି ! ଛୁଆଳ ସିଂହ ରାଜବାଟୀରେ ହଠାତ୍ ମଲା ବୋଲି ତୁ କିପରି କହୁଥିଲୁ ?'' ସେ କହିଲା, ''ମୁଁ ଆଜି ହାଟରୁ ଆସିଲାବେଳେ ବାଟରେ ଶଙ୍କରା ଭଣ୍ଡାରିଠାରୁ ଏକଥା ଶୁଣି ସେ ଏପରି ମିଥ୍ୟା ରଚନା କରୁଥିବାରୁ ତା ନାମରେ ଫୌରାଦ ହେବାକୁ ମେଜେଷ୍ଟରଙ୍କ ହଜୁରକୁ ଆସୁଥିଲି । ବାଟରେ ପାଇକରାୟଙ୍କ ଦେଖା ହେବାରୁ ତାଙ୍କୁ କହିଲି, ଶଙ୍କରାର ଜିଭରେ ହାଡ଼, ଲେଡ଼ିରେ ବାଳ ହେଲାଣି, ସେ ଆମ ଉଆସ ନାଆଁରେ ଏଡ଼େ ବଡ଼ କଥାଟାଏ କହୁଛି । ତୁମେ ଜଣେ ସାକ୍ଷୀ ହେବ, ମୁଁ ଏ କଥା ମେଜେଷ୍ଟରଙ୍କୁ ଦରଖାସ୍ତ କରିବି ।'' ଏହା ଶୁଣି ମୁଁ ଶଙ୍କରା ଭଣ୍ଡାରିକୁ ଡକାଇଲି, ଶଙ୍କରା ଆସି ପହଞ୍ଚିବା ମାତ୍ରେ ତା ମକଦମାର ନଥି ଜବାନବନ୍ଦି ସବୁ ଘଡ଼ିକ ମଧ୍ୟରେ ଠିକ୍ ହୋଇଗଲା - ପାଳବିଣ୍ଡା ମନ୍ତ୍ରୀ ହୁକୁମ ଦେଲେ ଶଙ୍କରା ଭଣ୍ଡାରିକୁ ୬ ମାସ ଜେଲ୍ । ସଙ୍ଗେ ସଙ୍ଗେ ପହରାବାଲା ଦୁଇଜଣ ଆସି ତାକୁ ଜେଲକୁ ନେଲେ । ପହରାବାଲାଙ୍କ ହାତରେ ଜେଲ୍‌ର ଦାରୋଗା ପାଖକୁ ବାଚନି ଗଲା ଯେ, ପ୍ରତିଦିନ ସକାଳୁ ମେହେନ୍ତରମାନେ ହାଣ୍ଡିଏ ବିଷ୍ଠା ଆଣି ଜେଲରବାବୁଙ୍କୁ ଦେବେ ଓ ଜେଲରବାବୁଙ୍କ ଉପସ୍ଥିତିରେ ଶଙ୍କରା ସ୍ୱୟଂ ହଳଦୀ ଲଗାଇଲା ପରି ସେଗୁଡ଼ିକ ନିଜ ଦେହରେ ବୋଳିହେବ ଓ ସେ ଲେପ ଦେହରୁ ଶୁଖିବା ପର୍ଯ୍ୟନ୍ତ ସେ ଖଣ୍ଡିଏ ବିଞ୍ଚଣାରେ ବିଞ୍ଚିହେବ । ସେ ଲେପ ଶୁଖିଗଲେ ହଳଦୀ ମଳଖୁଟି ଛଡ଼ାହେବା ଭଳି ତାହାକୁ ନିଜେ ଦେହରୁ ଛଡ଼ାଇବ ଓ ପୁଣି ଥରେ ଦେହରେ ଲଗାଇବ । ଏହିପରି ସକାଳ ୬ଟାଠାରୁ ସନ୍ଧ୍ୟା ୬ଟା ପର୍ଯ୍ୟନ୍ତ ଶଙ୍କରା ୪ଥର ଦେହରେ ପୁରୀଷ-ଲେପନ ବିଦ୍ ୧ ସପ୍ତାହ ପାଇଁ ପାଳନ କରିବ । ଏ ଗଲା ଶଙ୍କରା ଭଣ୍ଡାରିର ମକଦମା ଫଏସେଲ୍ । ତା ପରେ ନରୁ ମର୍ଦ୍ଦଗାଜୀର ବିଚାର । ହୁକୁମ ହେଲା ଯେ, ଆମ୍ଭର ଦୁଇଜଣ କୁଚା ଶ୍ରେଣୀର ପାଖଲୋକ ତା ଘରର ପିଣ୍ଡାକୁ ଯାଇ ତା ଚାଳବାଟେ ଭରିଏ ଅଫିମ ତା ଘର ଭିତରକୁ ଫିଙ୍ଗିଦେଇ ଆସିବେ ଓ ସଙ୍ଗେ ସଙ୍ଗେ ପୁଲିସ ଯାଇ ତା ଘରୁ ଅଫିମ ବରାମଦ କରି ତାକୁ ଅବକାରୀ ଆଇନ ମୁତାବକ ଚଲାଣ ଦେବେ ଓ ତାକୁ ୨ ମାସ ଘଣାପେଲା କାମରେ ଲଗାଯିବ ।'' ସ୍ୱପ୍ନର ଅବଶିଷ୍ଟ ଦୃଶ୍ୟ ବାରାନ୍ତରେ ।

ନବଭାରତ - ୫ମ ସଂଖ୍ୟା : ତୁଳ-୧୩୪୧ ସାଲ ।

## ।। ତିନି ।।

ସେଇଥିରୁ କ'ଣ ହେଲା କି,

ମୁଁ ଓ ମୋ ସମକର୍ମୀ, ସମଧର୍ମୀ ଭାଇମାନେ ଓ ଆମ ଉଆସ ଆଡ଼େ ସମସ୍ତେ ଗୋଟାଏ ବଇଠକୀ କଲୁଁ । ପୂର୍ବରୁ କହି ରଖିଛି ଯେ, ରକ୍ଷଣଶୀଳ ହିନ୍ଦୁ ସମାଜରେ ଆମେ ଥାଇ ସୁଦ୍ଧା ସାମାଜିକ ବନ୍ଧା ନିୟମମାନଙ୍କୁ ବେଳେ ବେଳେ ଟିକିଏ କଷିକାଷି ଦେଉଁ, ବେଳେ ବେଳେ ଟିକିଏ ଢୁଗୁଳା କରିଦେଉଁ । ଉଦାହରଣସ୍ୱରୂପ, ଆମ ରାଜବାଟୀର ହତାରେ ରାଜପୂଜ୍ୟଦେବ ଦେବୀଙ୍କ ପାଖେ ହୋମ, ସ୍ୱସ୍ତ୍ୟୟନ, ପୂଜା, ବ୍ରାହ୍ମଣ ବରଣ, ପାଞ୍ଚ ଧୂପ, ସାତ ଅବକାଶ ପୂର୍ବ ବିଧି ମତେ ଚାଲିଛି । ସତ୍ୟନାରାୟଣ ପୂଜା, ଠିଆ ପାଲା, ହରିଲୁଟ, ଅଷ୍ଟପ୍ରହରୀ, ଚବିଶ ପହରୀ, ଅଠଚାଳିଶ ପହରୀ କୀର୍ତ୍ତନ ଲାଗିଛି । ଏଣେ ଆମ ରାଜବାଟୀରେ ଅନ୍ଦର ମହଲରେ ବିଷ୍ଣୁଙ୍କ କତିପୟ ଅବତାରଙ୍କ ଶ୍ରୀଅଙ୍ଗର ଚପ୍, କଟ୍‌ଲେଟ୍, କାରି, ସାଣ୍ଡଉଇଚ୍ ଓ ହ୍ୱିସ୍କି, ଓଲ୍ଡଟମ୍, ବର୍ଗଣ୍ଡୀ ଆଦି ଆଧୁନିକ ସଭ୍ୟତା, ଭବ୍ୟତା, ନବ୍ୟତା, ଆତିଥେୟତାର ଉପାଦାନମାନଙ୍କ ଶ୍ରାଦ୍ଧ ଲାଗିଛି । ଏଣେ ଦେବ ମନ୍ଦିରରେ ରାଜଗୁରୁ ମହାଶୟଙ୍କର ଚଣ୍ଡୀ ସହସ୍ର ନାମ ପାଠ ଚାଲିଛି, ତେଣେ ମାନବ ମନ୍ଦିରରେ ୟାକୁବ୍ ଖାଁ, କରାମତ୍ ବେଗ୍, ଇସାୟା ପ୍ରହରାଜ, ଏଡ଼ିସନ୍ ସାହେବ, ସାଣ୍ଡେଲ ସାହେବ ଓ ବିବି ଏବଂ ମେମମାନଙ୍କ ସଙ୍ଗେ ଡିନାର୍, ସପର୍, ବ୍ରେକ୍‌ଫାଷ୍ଟ ଓ ବଲ୍ ନାଚ ଚାଲିଛି । ରାଜଗୁରୁ ମହାଶୟ ଦେବକର୍ମ ସମାପନାନ୍ତେ ଆମ ମୁଣ୍ଡ ଉପରେ ଆଶୀର୍ବାଦ ଚାଉଳ ପକାଇଲାବେଳେ ଆମର ପରିଧାନ ପଟ୍ଟକୌଷେୟ ବସ୍ତ୍ର, ବେକରେ ରୁଦ୍ରାକ୍ଷମାଳା, କପାଳରେ ତିଳକ ଓ ପର ମୁହୂର୍ତ୍ତରେ ଖାନାକାମରାରେ* ଆମର ପରିଧାନ କୋଟ, ପେଣ୍ଟ, ୱେଷ୍ଟକୋଟ୍, ବେକରେ ନେକ୍‌ଟାଇ, କପାଳରେ ଟେରୀ ଓ ନାସିକାର ଉପାନ୍ତ ପ୍ରଦେଶରେ ପମେଟମମଡ଼ା ଶୃଙ୍ଗଦ୍ୱୟୋପମ କରଡ଼ା ଓ ଯତ୍ନବଳା ମୁଛପଟାଦ୍ୱୟ । ଏତେ କଥା ବୁଝାଇବାର ଉଦ୍ଦେଶ୍ୟ ଏହି ଯେ, ପାଠକମାନେ ବୁଝିପାରିବେ ଯେ ଆମ ରକ୍ଷଣଶୀଳ ହିନ୍ଦୁସମାଜରେ ଥାଇ ମଧ୍ୟ, ଚିତା ପଇତା ଲଗାଇ ମଧ୍ୟ, କିପରି ସର୍ବ ଧର୍ମ ସମନ୍ୱୟ, ସର୍ବ ଖାଦ୍ୟ ସମନ୍ୱୟ, ସର୍ବ ପେୟ ସମନ୍ୱୟ, ସର୍ବ ପରିଧେୟ ସମନ୍ୱୟ କରି ହିନ୍ଦୁଧର୍ମର ଓ ହିନ୍ଦୁସମାଜର ରକ୍ଷଣଶୀଳତାରେ ଉଦାର ନୈତିକତା ପୂରାଇବା ପାଇଁ କସରତ୍ କରୁଅଛୁଁ । ହିନ୍ଦୁର ସାମାଜିକ ପ୍ରଥାରେ ଦେଢ଼ଶୁର ଭାଇବୋହୂଙ୍କର ଦେଖାସାକ୍ଷାତ୍ ଓ ବାକ୍ୟାଳାପ ନିଷିଦ୍ଧ, କିନ୍ତୁ ଯେଉଁ ସମାଜରେ ଏହି ଅନ୍ଧ କଟକଣାମାନ ନାହିଁ ସେହି ସେହି ସମାଜର ପୋଷାକ ପିନ୍ଧି ତଉତ୍ ସାମାଜିକ କର୍ମମାନ ଆଚରଣ କଲାବେଳେ ମୋର ଓ ମୋ ଭାଇବୋହୂଙ୍କ ମଧ୍ୟରେ କରମର୍ଦ୍ଦନ, ଘରମର୍ଦ୍ଦନ, ପରମର୍ଦ୍ଦନ, ଚରମର୍ଦ୍ଦନ, ଧରମର୍ଦ୍ଦନରେ ଆଇନ ଅନୁସାରେ ବାଧା ନ ଥାଏ । ପାଠକମାନେ ଟିକିଏ ସିଆଣିଆ ନ ହେଲେ ଚଳିବ

* ଡାଇନିଂ ହଲ୍

କିଆଁ ? ଏଇ, ଦେଖିବା ହୁଅନ୍ତୁ ମୁଁ ଓ ମୋ ଭାଇମାନେ ଓ ଆମ ପାଟମହାଦେଈ, ଫୁଲବେହୀ, ଫଳବେହୀ, ପତରବେହୀ, ଡାଳବେହୀ, ଲତାବେହୀଙ୍କ ସଙ୍ଗେ ମୋ ଭାଇବୋହୂ ଅର୍ଥାତ୍ ମାଇପିମାନେ ଓ ଆମେ ମର୍ଦ୍ଦମାନେ ଏକ ସ୍ଥାନରେ ଗୋଟାଏ ବଇଠକୀ କଲୁଁ । ଏହି କଥାଟାର ବ୍ୟାଖ୍ୟା କରିବାକୁ ମୋତେ ଓ ମୋ ପ୍ରସ୍ରବଣୀ ଲେଖନୀକୁ ଏତେ ଗୁଡ଼ାଏ ବ୍ୟାଖ୍ୟା ଓ ଉଦାହରଣ ଲେଖି ମିହନ୍ତ କରିବାକୁ ପଡ଼ିଲା ଓ ଢାଙ୍କା କଥା କହୁ କହୁ ଯାଇ ଢେଙ୍କିଶାଳରେ ଉଠିବାକୁ ହେଲା । ସେହି ବୈଠକୀରେ ଉପସ୍ଥିତ ଓ ଉପସ୍ଥିତା, ବିବାହିତ ବିବାହିତା, ଅବିବାହିତ ଅବିବାହିତା, ଧରା ଓ ଅଧରା, ସଭ୍ୟ ଓ ସଭ୍ୟା, ଅସଭ୍ୟ ଓ ଅସଭ୍ୟା ସମସ୍ତଙ୍କ ସମ୍ମତିମତେ ଆମ ରାଜବିଣ୍ଡାମନ୍ତ୍ରୀଙ୍କ ମୁହଁରୁ ମୁଁ ସ୍ପ୍ରିଙ୍ଗ ଲଗା ପାଳବିଣ୍ଡାକୁ ଟିକିଏ ହୁଗୁଳା କରିଦେଲି ଓ ତାଙ୍କ ମୁହଁଙ୍କଳାରୁ ଅନେକ ସୁଆଦିଆ ଉପଦେଶ, ନିଦେଶ, ବ୍ୟପଦେଶ ଓ ବହିର୍ଦେଶ ଝର ଭଳିଆ ବାହାରିଲା ଓ ସେସବୁ ଆମକୁ ଏଡ଼େ ମିଠା ଲାଗିଲା ଯେ, ଆମେ ସାଙ୍ଗେ ସାଙ୍ଗେ ସେ କଥାମାନ ଗ୍ରହଣ କଲୁଁ । ଏମନ୍ତ କି ଆମର ଭିତରେ କେତେଜଣଙ୍କଠାରେ ସେସବୁ କଥାରୁ କେତୋଟା କାର୍ଯ୍ୟରେ ମଧ୍ୟ ପରିଣତ କରିବାର ସ୍ଥିର କଲୁଁ । ଆମର ସେହି ଫୁଲ୍-ବେଞ୍ଚରେ ନିମ୍ନଲିଖିତ ପ୍ରସ୍ତାବମାନ ନିର୍ଦ୍ଧାରିତ ହେଲା ।

୧. ଆମ ରାଜବାଟୀକୁ ଅନ୍ୟ ଦେଶର ଯେତେ ଭଦ୍ରଲୋକ ଓ ବିଶେଷତଃ ଦେଶର ମାନ୍ୟଗଣ୍ୟ ଓ ସମ୍ମାନିତ ଉଚ୍ଚଉପାଧିଧାରୀ ବ୍ୟକ୍ତିମାନେ ଆସିବେ, ସେ ସମସ୍ତଙ୍କ ପଛ ପଟରେ ତାଙ୍କ ଅଜାଣତରେ ହେଉ ଓ ଅଜାଣତରେ ହୋଇ ନ ପାରିଲେ ଜାଣତରେ ହେଉ ଗୋଟିଏ ଦିଓଟି ଲେଖାଏଁ ଚିଆଁ ଦାଗ ମାରି ଦେବାକୁ ହେବ, ଯେପରି କି ସେମାନେ ଏଠାରୁ ଫେରିଯାଇ ଆମରଣ ଆମର ଅଖା ଧୋଉଥିବେ ଓ ଗୁଣ ଗାଉଥିବେ ଓ ଚିଆଁ ଦାଗକୁ ଆଉଁଶୁଥିବେ ।

୨. ଆମ ରାଜ୍ୟରେ ଯେତେ ବିଦେଶୀ ଲୋକ ଚାକିରି କରିବାକୁ ଆସିବେ ତାଙ୍କୁ କଅଁଳେଇ ସଅଁଳେଇ ଆଶା ଭରସା ଦେଇ, ଦମ୍ ଦିଲାସା ଦେଇ ତାଙ୍କଠାରୁ ଆଟେନ୍‌ସନ୍, ଡବଲମାର୍ଚ୍ଚ ଆଦିର ସହାୟତାରେ ଷୋଳପଣ କାମ ନେବା ଓ ତାଙ୍କ ଦରମା ବାକି ରଖିବା, ଶେଷକୁ ତାଙ୍କୁ ଗୋଟିଏ ଲେଖାଏଁ ଫଉଜ୍‌ଦାରି ମକଦମାରେ ମୁଦାଲା କରି ତାଙ୍କ ପୈତୃକ ଓ ଅନ୍ୟତ୍ର ସ୍ୱୋପାର୍ଜିତ ସମ୍ପତ୍ତିରୁ କିଛି ଆମ କୋଷକୁ ଆଦାୟ କରିସାରି ତାଙ୍କଠାରେ ଗୋଟାଏ ଲେଖାଏଁ ଦାଗ ମାରି ଛାଡ଼ିଦେବା ।

୩. ମନୁଷ୍ୟକୁ ଯେତେ ପ୍ରକାର ଶାରୀରିକ କଷ୍ଟ, ଲାଞ୍ଛନା, ଅପମାନ ଦିଆଯାଇପାରେ ତାହାର ଗୋଟିଏ ତାଲିକା ମନ୍ତ୍ରୀସାହେବ ଦେଲେ ଓ ସ୍ଥିର ହେଲା ଯେ, ମନୁଷ୍ୟକୁ ଶାରୀରିକ କଷ୍ଟ ଦେଲାବେଳେ ତାର ମୁହଁ,ଦେହ, ଗୋଡ଼ ଓ ହାତର କି କି ଭଙ୍ଗୀ ହେଉଥିବ ତହିଁର ଫଟୋ ନିଆଯିବ ଓ ତାର ଏ ସବୁ ଭଙ୍ଗୀ ଦେଖି ଆମର ମୁଖରେ କିପରି କେତେ କିସମ୍‌ର ହାସ୍ୟ ଫୁଟି ଉଠୁଥିବ ତହିଁର ଫଟୋ ନିଆଯିବ ଓ ତାହା ରାଜଦରବାରର ଆଲ୍‌ବମ୍‌ରେ

ଦର୍ଶନୀୟ ପଦାର୍ଥ ରୂପେ ରହିବ । ଗୋଟିଏ ଗୋଟିଏ ପ୍ରକାର ନିର୍ଯାତନ ପାଇଁ ଗୋଟିଏ ଗୋଟିଏ ଦିନ ପୂର୍ବରୁ ଧାର୍ଯ୍ୟ ହେବ । ଏଥିର କେତୋଟିର ନମୁନା ଏଠାରେ ଦିଆଗଲା ।

(କ) ମନୁଷ୍ୟ ଦେହରେ ଫୁଟିଲା ପାଣି ଗୁଡ଼ାଏ ହଠାତ୍ ଅଜାଡ଼ି ଦେବାର ହେବ ।

(ଖ) ଦାଢ଼ି ଓ ମୁଛ ଥିବା ବ୍ୟକ୍ତିଙ୍କର ପାଖେ ଦାଢ଼ି ଓ ପାଖେ ମୁଛ (ଓଡ଼ାଙ୍କ ମେଲାଙ୍କ ହିସାବରେ ୮ଟି ପ୍ରକାରରେ ପଟେ ଦାଢ଼ି ଓ ପଟେ ମୁଛକୁ ସଜା ଯାଇପାରେ)କୁ ଖିଅର କରି ଆର ପାଖର କେବଳ ଦାଢ଼ି, ବା କେବଳ ମୁଛ ବା ଉଭୟ ମୁଛ ଦାଢ଼ିକୁ ଖିଅର ନ କରି ସେ ଏଦ୍ଧମୁଛିତ ବ୍ୟକ୍ତିଙ୍କୁ ସାଧାରଣରେ ଛାଡ଼ି ଦେବାକୁ ହେବ ।

(ଗ) ମନୁଷ୍ୟକୁ ସଫା ଝାଡ଼ା ଫେରାଇ ଓ ପରିସ୍ରା କରାଇ ଆଣିବା ପରେ ତାର ବହିର୍ଦ୍ୱାରମାନ ବୁଜି ଦେଇ ପୁଣି ଝାଡ଼ା ଫେରାଇବାକୁ ଓ ପ୍ରସ୍ରାବ କରିବାକୁ ଚେଷ୍ଟା କରିବା ପାଇଁ ତାକୁ ଆଦେଶ ଦିଆଯିବ ଓ ସେ, ଚେଷ୍ଟା ଅର୍ଥାତ୍ ଉପଯୁକ୍ତ ରୂପେ କୁନ୍ଥନ ନ କଲେ ବେତ୍ରଧାରୀ ସିପେଇଙ୍କ ଦ୍ୱାରା ତା ପିଠିରେ ଓ ପଛଆଡ଼ର ନିମ୍ନସ୍ଥ ମାଂସଳ ଦେଶରେ ସପାସପ୍ ବେତ ଚାଲୁଥିବ । ତା ଆଖିରୁ କାନରୁ ରକ୍ତ ବହିବା ପର୍ଯ୍ୟନ୍ତ ବା ସେ ମୂର୍ଚ୍ଛିତ ହୋଇ ପଡ଼ିଯିବା ପର୍ଯ୍ୟନ୍ତ ବେତ୍ରାଘାତ ପ୍ରକ୍ରିୟା ଚାଲିଥିବ ।

(ଘ) ପଞ୍ଚାଏ ଲୋକଙ୍କୁ ଧରିଆଣି ସେମାନଙ୍କୁ ପଛବୁହା କରି ବାନ୍ଧି ସେମାନଙ୍କର ସ୍ଥାନ ଅସ୍ଥାନକୁ ଖୁବ୍ ଜୋର୍ କରି ମଳିବା ଓ ଦଳିବା ପାଇଁ ସିପାହିମାନଙ୍କୁ ଆଦେଶ ଦିଆଯିବ ଓ ସେ ପ୍ରମୃଷ୍ଟ ବ୍ୟକ୍ତିମାନେ ବେହୋସ୍ ହେବା ପର୍ଯ୍ୟନ୍ତ ଏ ଦଳନ ମଳନ କ୍ରିୟା ଚାଲିଥିବ । ଯେବେ କୌଣସି ନିମକ୍ ହରାମ୍ ସିପାହି ଏ କ୍ରିୟା ସମ୍ପାଦନରେ ବିମୁଖ ବା ଅପଟୁ ଦେଖାଯିବ ତେବେ ଉକ୍ତ କ୍ରିୟା 'ଶ୍ରୀହସ୍ତେନ ସମ୍ପାଦୟେତ୍' କରାଯିବ ।

(ଙ) ଏକାଥରକେ ପାଞ୍ଚ ସାତଟି ବିବାହିତ ଦମ୍ପତିଙ୍କୁ ଆଣି ଚଷା ଓ ଶଗଡ଼ିଆମାନେ ହଳର ଓ ଶଗଡ଼ର ଯୋଡ଼ି ବଳଦଙ୍କୁ ଅଦଳ ବଦଳ କଲାପରି, ଜଣକର ସ୍ତ୍ରୀକୁ ଆଉ ଜଣକ ପୁରୁଷ ସଙ୍ଗେ ଯୋଡ଼, ବିଯୋଡ଼, ଫେଡ଼ାଣ, ମିଶାଣ, ହରଣ, ଗୁଣନ, ସୋଧି, ଓଡ଼ାଙ୍କ, ମେଲାଙ୍କ, ବଳଦିଆ ହିସାବ, ସମୀକରଣ ଆଦି ଗାଣିତିକ ଓ ବୀଜଗାଣିତିକ ପ୍ରକ୍ରିୟା ଦ୍ୱାରା ସେମାନଙ୍କୁ ଛନ୍ଦିବାକୁ ହେବ ।

(ଚ) ବେଦୀ ଉପରେ ବିଭା ହେବାକୁ ବସିଥିବା ଓ ହାତଗଣ୍ଠି ପଡ଼ିଥିବା କନ୍ୟାଙ୍କୁ ଓ ପୁହାଣୀ ଘର ପାଇଁ ଯାଉଥିବା ବଧୂକୁ ଯଥାକ୍ରମେ ବେଦୀ ଉପରୁ ଓ ବାଟରୁ ଛଡ଼ାଇ ଆଣି ଉଅସ ସାମିଲ କରିବାକୁ ହେବ ।

(ଛ) ଲୋକଙ୍କ ଉପରକୁ କୁକୁର ଲଗାଇବା, ଲୋକଙ୍କ ଉପରକୁ ନାଗ ସାପ ଛାଡ଼ିବା, ନାଟୁଆ ଘୋଡ଼ାର ଲାଞ୍ଜରେ ଲୋକଙ୍କୁ ବାନ୍ଧିଦେବା ଓ ହାତୀ ଗୋଡ଼ ତଳେ ଲୋକଙ୍କୁ ମଡ଼ାଇବାକୁ ହେବ ।

(ଢ) ଘୋଡ଼ାର ଅଣ୍ଟାରେ ଗୋଟାଏ ଦଉଡ଼ି ବାନ୍ଧି ସେ ଦଉଡ଼ିରେ ଖଣ୍ଡଦୂର ଛଡ଼ାରେ ଜଣେ ଲୋକକୁ ବାନ୍ଧିବାକୁ ହେବ ଓ ଘୋଡ଼ା ଉପରେ ସବାରକୁ ଚଢ଼ାଇ ଘୋଡ଼ାକୁ ଚାବୁକ ମାରି ଦଉଡ଼ାଇବାକୁ ହେବ । ଘୋଡ଼ା ସାଙ୍ଗେ ବନ୍ଧାଥିବା ମନୁଷ୍ୟ କେତେଦୂର ଦଉଡ଼ି ଦଉଡ଼ି ଯିବ ଓ କେଉଁ ଦୂରତ୍ୱରୁ ସେ ଘୋଷାରି ଘୋଷାରି ହୋଇଯିବ ତହିଁର ହିସାବ ରଖିବାକୁ ହେବ ଓ ତା ମୁଖଭଙ୍ଗୀ ଓ ଅଙ୍ଗଭଙ୍ଗୀମାନଙ୍କ ଫଟୋ ନିଆଯିବ ।

(ଝ) ପୂର୍ଣ୍ଣଗର୍ଭା ଓ ଆସନ୍ନପ୍ରସବା ସ୍ତ୍ରୀର ପ୍ରସବଦ୍ୱାର କଷିକରି ବାନ୍ଧି ତା ଗର୍ଭ ଉପରେ ପଟା ପକାଇ ୨/୩ ଜଣ ମନୁଷ୍ୟଙ୍କୁ ସେ ପଟା ଉପରେ କୁଦିବାକୁ ହୁକୁମ ଦିଆଯିବ । ଲୋକଙ୍କ ଦେହର ଭିନ୍ନ ଭିନ୍ନ ସ୍ଥାନ ଓ ଅସ୍ଥାନରୁ କେଶ ଓ ଲୋମ ଉତ୍ପାଟନ କଲାବେଳେ ସେମାନଙ୍କର ଉତ୍ପାଟିତ କେଶ ଓ ଲୋମର ସଂଖ୍ୟାବୃଦ୍ଧି ସଙ୍ଗେ କ୍ରମଶଃ ସେମାନଙ୍କ ମୁଖଭଙ୍ଗୀ ଓ ଅଙ୍ଗଭଙ୍ଗୀ କିପରି ହେଉଥିବ ତହିଁର ହିସାବ ଓ ଫଟୋ ରଖିବାକୁ ହେବ ।

(ଞ) ଇଉରୋପ ଓ ଆମେରିକାରେ ନ୍ୟୁଡିଷ୍ଟ (Nudist) ଦୁଖୋବାର (Dukhobar) ସଂଜ୍ଞାଧାରୀ ସ୍ତ୍ରୀ ପୁରୁଷମାନେ ସମସ୍ତେ ନଗ୍ନ ହୋଇ ଚଳାଚଳ ହେବାର ଯେଉଁ ସମ୍ବାଦ ଖବରକାଗଜରେ ବାହାରୁଛି, ତହିଁର ବାସ୍ତବ ଅନୁଭୂତି ଲାଭ କରିବା ପାଇଁ ଆମ ରାଜବାଟୀର ରାଣୀମହଲ ନିକଟରେ ଗୋଟିଏ ଆମ୍ଫି ଥିଏଟର (ରଙ୍ଗମଞ୍ଚ) ସ୍ୱତନ୍ତ୍ର ନିର୍ମାଣ କରାଯିବ । ସେଠାରେ ଗୁଡ଼ିଏ ନଗ୍ନ ସ୍ତ୍ରୀ-ପୁରୁଷଙ୍କୁ ଏକତ୍ର ଛାଡ଼ି ଦେବାକୁ ହେବ ଓ ଜଣେ କୋରଡ଼ାଧାରୀ ସିପାହି ତାଙ୍କ ମଧ୍ୟରେ ପଶି ସର୍କସରେ ସର୍କସ୍ ମାଷ୍ଟର ଯେଉଁପରି ବାଘ, ସିଂହ ଓ ଘୋଡ଼ାମାନଙ୍କୁ କୋରଡ଼ା ବ୍ୟବହାର ଓ ଫଟକାର ଦ୍ୱାରା ଏ ପାଖରୁ ସେ ପାଖକୁ, ସେ ପାଖରୁ ଏ ପାଖକୁ ହୁରୁଡ଼ାଏ ସେହିପରି କରିବାକୁ ହେବ ଓ ଏହି ଅଭିନୟ ମଧ୍ୟରେ ଦେଢ଼ଶୁର-ଭାଇବୋହୂ, ପିତା-କନ୍ୟା, ଭ୍ରାତୃ-ଭଗିନୀ ଏ କୋରଡ଼ା ପ୍ରସାଦରୁ ପରସ୍ପର ମୁଖାମୁଖୀ ଓ ଅଙ୍ଗାଅଙ୍ଗୀ ହୋଇ ହାବୁଡ଼ିଲା ବେଳେ ସେମାନଙ୍କ ମୁଖଭଙ୍ଗୀ ଓ ଅଙ୍ଗଭଙ୍ଗୀର ନୋଟ୍ ଓ ଫଟୋ କରିବାକୁ ହେବ ।

(ଟ) ଅନ୍ଧାର ରାତିରେ ଆଗନ୍ତୁକ ବନ୍ଧୁବାନ୍ଧବଙ୍କୁ ସଙ୍ଗରେ ନେଇ ମଟରଗାଡ଼ିରେ ଶିକାର କରିବା ବାହାନାରେ ବା ହାଉଆ ଖାଇବା ବାହାନାରେ ବହୁ ଦୂରବର୍ତ୍ତୀ ନିବିଡ଼ ଜଙ୍ଗଲ ମଧ୍ୟକୁ ଯାଇ ସେଠାରେ ଗାଡ଼ିକୁ ଅଟକାଇ ପ୍ରସ୍ରାବ କରିବା ବାହାନାରେ ଓହ୍ଲାଇ ଓ ବନ୍ଧୁଙ୍କୁ ଗାଡ଼ିରୁ ଓହ୍ଲାଇଦେଇ, ସେଠାରେ ତାଙ୍କୁ ଛାଡ଼ିଦେଇ ଚାଲି ଆସିବାକୁ ହେବ । ତହିଁଆରଦିନ ତାଙ୍କ ଗ୍ରହବଳରୁ ଯେବେ ବନ୍ଧୁ ଫେରିଆସନ୍ତି ତେବେ ଗତ ରାତ୍ରିରେ ଭିନ୍ନ ଭିନ୍ନ ପହରମାନଙ୍କରେ ତାଙ୍କ ମନୋଭାବ ଓ ନିରାଶ୍ରୟ ଅବସ୍ଥା କଅଣ ହୋଇଥିଲା ତାହା ତାଙ୍କଠାରୁ ବୁଝି ନୋଟ୍ କରିବାକୁ ହେବ ।

ଏ ଏଗାରଟା ପ୍ରସ୍ତାବ ମନ୍ତ୍ରୀଙ୍କ ମୁଣ୍ଡ ଜଳାରୁ ବାହାରିବା ପରେ ମୋ ମୁହଁରୁ ଗୋଟିକେତେ ମୋ ପ୍ରସ୍ତାବର ବହିର୍ଦ୍ଦେଶ ହେଲା ।

## ।। ଚାରି ।।

ମୁଁ କହି ଆଜ୍ଞା ହେଲି ।

(୦) ଆମ ରାଜବଂଶରେ, ମାନ୍ଧାଣଙ୍କ ଅମଳରୁ ଯେଉଁ ଅନ୍ତର, ଭାତାନ୍ତର, ପ୍ରତ୍ୟନ୍ତର, ଜାତ୍ୟନ୍ତର, ପାକାନ୍ତର, ବାସାନ୍ତର ରସାନ୍ତର ଆଦି 'ଅନ୍ତର ପୁଅ' ପ୍ରଥା ଅଛି ଓ ଯହିଁ ଫଳରେ ଅନ୍ତରାନ୍ତ ଓ ବରାଦର ଓ ସାଆନ୍ତ ପଦବୀଧାରୀ ଗୁଡ଼ିଏ ପୁରୁଷ ଓ ପୁରୁଷ ନାମଧାରୀ ସ୍ତ୍ରୀ ନଅରରେ ଜନ୍ମ ହୋଇ ଭାବୀ ରାଜ-ବଂଶଧରମାନଙ୍କର ଓ ରାଜ୍ୟର ଗଳଗ୍ରହ ହେଉଅଛନ୍ତି ସେ ଉପଦ୍ରବକୁ ସମୂଳ ଓପାଡ଼ି ପକେଇବାକୁ ହେବ । ଏଥିପାଇଁ ଆମର ଫୁଲବେହୀ ଆଦି ଆମ ପ୍ରସାଦରୁ ବା ଆମ ଅନୁଚର, ସହଚର, ପାର୍ଶ୍ୱଚର, ସ୍ଥଳଚର, ଜଳଚର, ବିଲଚର ଆଦିଙ୍କ କମଜୋରରୁ ଗରୁଘର ହେଲେ ତାଙ୍କୁ ଦୁଇପ୍ରକାରେ ଖତମ୍ କରାଯିବ । ପ୍ରଥମ ଉପାୟ ହେଉଛି -ଉକ୍ତ ବେହୀଙ୍କ ମଧମାଙ୍ଗର ସ୍ଫୀତି ଦର୍ଶନୀୟ ହେବାମାତ୍ରେ ତାଙ୍କୁ ଆମର କୌଣସି ବିରାଦର ବା ଅନ୍ତର ପ୍ରତ୍ୟନ୍ତର, ସାଆନ୍ତ, କର୍ମଚାରୀ, ଅନୁଚର ବା ଦେହରକ୍ଷୀଙ୍କ ସଙ୍ଗେ ପ୍ରଜାପତ୍ୟ ବନ୍ଧନରେ ଛନ୍ଦି ଦେବାକୁ ହେବ ଓ ଏ ସବସ୍ଥାଧେନୁଗ୍ରାହୀ ବ୍ୟକ୍ତି ଆମ ଫୁଲବେହୀଙ୍କୁ ନିଜର ଆଇନସଙ୍ଗତ ଓ ଶାସ୍ତ୍ରସିଦ୍ଧ ଅର୍ଦ୍ଧାଙ୍ଗିନୀ ରୂପେ ପ୍ରକାଶ୍ୟରେ ଗ୍ରହଣ କରିବେ ଏବଂ ଫଳତଃ ଉକ୍ତ ଗର୍ଭୋତ୍ପନ୍ନ କ୍ଷେତ୍ରଜ ସନ୍ତାନ ଉପରୋକ୍ତ ଉପଯନ୍ତାଙ୍କ ସନ୍ତାନ ରୂପେ ମାର୍କା ଧାରଣ କରିବେ । ଏ ଉପାୟ ଅବଶ୍ୟ ସହଜ ଓ ଯେବେ ପ୍ରସ୍ତାବିତ ଆଶୁ-ସ୍ୱାମୀ ବୁଦ୍ଧିଆ ହୋଇଥିବେ ତେବେ ରାଜ ଅନୁଗ୍ରହ ଲାଭ କରିବାପାଇଁ ସେ ଏ ପ୍ରସ୍ତାବକୁ ଖପ୍‌କିନି ମାଡ଼ିବସିବେ । କିନ୍ତୁ ଏ ରାସ୍ତାରେ ଗୋଟିଏ ବିଶିଷ୍ଟ ଅସୁବିଧା ଅଛି । ଆମ ରାଜ୍ୟରେ ସିନା ଆମ ଡରରେ ରାଜ୍ୟବାସୀଙ୍କ ମୁହଁରେ ନିବୁଜ୍ ହୋଇ କାମଡ଼ା ଭିଡ଼ା ଯିବ, କିନ୍ତୁ ଖୋଦ୍ ଫୁଲବେହୀ ତ ସାଇପଡ଼ିଶାଙ୍କ ପାଖରେ, ହାକିମ ହୁକୁମାଙ୍କ ହଜୁରରେ ଓ ପରରାଇଜର ଲୋକଙ୍କ ଆଗରେ ଗର୍ଭସ୍ଥ ଭ୍ରୂଣର ଜନକତ୍ୱ ଗାଇ ବୁଲିବେ । ଆମର ସିନା କେହି କିଛି କରିପାରିବେ ନାହିଁ, କିନ୍ତୁ ଏଥିର ଫଳରେ ଆମ ରାଇଜର ହାଉଆରେ ଯେଉଁ ବଦ୍‌ବୋଇଟା ଉଠିବ, ତାକୁ ଉଡ଼ାଇ ଦେବା ଆମ ପକ୍ଷରେ କଷ୍ଟକର ହେବ । ଏଥିପାଇଁ ଗୋଟାଏ ଦ୍ୱିତୀୟ ଉପାୟ ଆମ ମଗଜରେ ଖେଳୁଅଛି । ଉଆସରେ କୌଣସି ବାତୁଅ ପୋଇଲୀ ବା ବେହୀଙ୍କର ପ୍ରସବ କାଳ ଆସନ୍ନ ହେବାକ୍ଷଣି ତାଙ୍କୁ ଏକଦମ୍ ସାତ ସମୁଦ୍ର ଲଙ୍କା ପାରିକରି ଦିଆଯିବ । ଆମର ଖାସ୍ ବିଶ୍ୱାସଘରା ଓ ଅନୁଗୃହିଆ ଦେହରକ୍ଷୀଙ୍କ ମାରଫତରେ ଉକ୍ତ ଗର୍ଭଧାରିଣୀଙ୍କୁ ତୀର୍ଥ କରାଇନେବା ପାଇଁ ଫୁସୁଲାଇ ନିକଟବର୍ତ୍ତୀ ରେଳଷ୍ଟେସନରୁ ଲମ୍ବା ଟିକଟ କରାଇ ମାରଫତଦାରଙ୍କ ସହିତ ତାଙ୍କୁ କାଶୀ, ବୃନ୍ଦାବନ, ଦ୍ୱାରକା, ରାମେଶ୍ୱର, କାଉଁରୀ କାମଚଣ୍ଡୀ ଆଦି ସ୍ଥାନକୁ ପଠାଯିବ । ମାରଫଦ୍‌ଦାର ସେଠାରେ ପହଞ୍ଚି ଉକ୍ତ ଅଜ୍ଞାତ ସ୍ଥାନର ମାତୃମଙ୍ଗଳ କେନ୍ଦ୍ରରେ ବା ଅନାଥାଶ୍ରମରେ ବା ଅବୈଧ ଗର୍ଭଜନନ କେନ୍ଦ୍ରର କର୍ତ୍ତୃପକ୍ଷଙ୍କୁ ଆମ ମାର୍କାମରା ଚିଠି ଦେଖାଇ ସେଠାରେ ସୁପ୍ରଜନନର ସୁବ୍ୟବସ୍ଥା କରିବେ ଓ ଆପ୍ରସବ ସେଠାରେ ରହି ଶିଶୁର ଅବତାରର କିଛିଦିନ ପରେ ମାତୃକ୍ରୋଡ଼କୁ ଶିଶୁକୁ ନେଇ ଅନ୍ୟ ସ୍ଥାନର ଅନାଥାଶ୍ରମରେ

ଛାଡ଼ିଦେବେ ଓ ମାତାଙ୍କୁ ଆଉ ଗୋଟିଏ ଅଞ୍ଚଳକୁ ନେଇ ସେଠାରେ କୌଣସି ନାରୀକାମୀ ପୁରୁଷଙ୍କ ମୁଣ୍ଡରେ ଲଗାଇଦେଇ ଆସିବେ । ଆମ ଦେଶରେ ସିନା ମାଇପିଗୁଡ଼ାକ ସାଲୁ ସାଲୁ, କିନ୍ତୁ ଏହି ଭାରତ ଖଣ୍ଡରେ ଏପରି ଅଞ୍ଚଳ ଅଛି ଯେ ସେଠା ଅଣ୍ଡିରିପୁଅ ଯାକ ଟିରିଲାଟିଏ ପାଇବାକୁ ଭାରି ଅମୁରୁଛୁକ ହେଉଅଛନ୍ତି । ସେଠାରେ ଏ ମୁକ୍ତଗର୍ଭାଙ୍କୁ ନେଇ ପହଞ୍ଚିବା ମାତ୍ରେ ଲୋକେ ନିଲାମ ବଢ଼ି ତାଙ୍କୁ ନେଇଯିବେ ଓ ଯେବେ ମାରଫଦ୍‌ଦାର ବୁଦ୍ଧିଆ ହେବେ ତେବେ ଆମ ତହବିଲରୁ ଦିଆଯିବା ବାଟଖରଚ, ତାଟ ଖରଚ, ଫାଟ ଖରଚ, କାଟ ଖରଚ, ଘାଟ ଖରଚ ଉପରେ ସେ ଦୁଇ ପଇସାର ଫିକର ମଧ କରିପାରିବେ । ଏ ଉପାୟଟା ଅବଶ୍ୟ ସମୟ ଓ ବ୍ୟୟସାପେକ୍ଷ, କିନ୍ତୁ କାମଟା ଖୁବ୍ ସଫାସୁତୁରା । ଆମେ ରହିବା ଏକ ଦେଶରେ, ଆମ ଅଙ୍ଗସେବକୀ ରହିବେ ଏକ ଦେଶରେ ଓ ଶିଶୁ ରହିବ ଅନ୍ୟ ଦେଶରେ । ଭବିଷ୍ୟତ୍‌ରେ କେହି କାହାକୁ ପଗଡ଼ିବାର ବା କେହି କାହାରିଠାରେ ଦାବି କରିବାର ବାଟ ଏକଦମ୍ କଣ୍ଟାଛଟା ହୋଇ ବନ୍ଦ ହୋଇଯିବ ।

ମୋର ଏ ପ୍ରସ୍ତାବଟା ସମସ୍ତଙ୍କ ମନକୁ ଭାରି ମାନିଗଲା, କେବଳ ଆମ ମାଲବେହୀ କିଆଁ ଟିକିଏ ମୁହଁ ବିଚକାଟିଆ କଲା ପରି ମାଲୁମ ହେଲା । ଜଣାଗଲା ଯେପରି କି ତାଙ୍କ ସୌଭାଗ୍ୟରେ ତୀର୍ଥଯାତ୍ରାଟା ପହିଲେ ପଡ଼ିବ ବୋଲି ଭାବି ତାଙ୍କ ମୁହଁ ଦୋଅଣି ହଜାଇଲା ପରି ହେଲା ।

(ଡ) ଆଜିକାଲି ପାଶ୍ଚାତ୍ୟ ସଭ୍ୟତା ଅନୁମୋଦିତ ଗୋଟିଏ ନୂଆ ବିବାହ ରୀତି ଚଳିଲାଣି । ଏହାକୁ Companionate marriage ବା ସଙ୍ଗିସଙ୍ଗିନୀ ମଙ୍ଗଳକୃତ୍ୟ ବୋଲାଯାଏ । ଏପରି ବିବାହ ପାଶ୍ଚାତ୍ୟ ସଭ୍ୟ ଦେଶରେ ହେଲାଣି ଓ ଏବେ ଶୁଣୁଥାଇଁ ଏ ହାଉଆ ଆମ ମୂଲକରେ କେତେ ଥାନରେ ବୋହିଲାଣି । ଏ ବିବାହଟା ଗୋଟାଏ ଉଭୟ ପକ୍ଷ ମନମିଳାମିଳି ପଶାଖେଳ ଭଳି ।

''ତୁ ଦଉଥିବୁ ମୁଁ ଖାଉଥିବି,
ତୋର ସୁନ୍ଦର ବଦନ ଚାହୁଁଥେବି,
ତୁ ନ ଦବୁ, କି, ମୁଁ ନ ଖାଇବି
ତୋ ଫଲଫଲା ମୁହଁ ନ ଚାହିଁବି ।
ତୋର ମୋର ରାଜି,
କିସ କରିବେ କାଜି ।''

ସ୍ତ୍ରୀ ପୁରୁଷ ଉଭୟପକ୍ଷ ନିର୍ଦ୍ଦିଷ୍ଟ ମିଆଦ୍ ପାଇଁ ଚୁକ୍ତି କରନ୍ତି ଯେ ଦୁହେଁ ମିଆଦ୍ ମଧରେ ଘର ଦୁଆର କରିବେ, ଖେଳ ମଉଜ କରିବେ, ପିଲା ପିଚିକା କରିବେ, ମିଆଦ ପୂରିଗଲାରୁ ଯେଝା ବାଟ ଯେ ଧରିବେ । ଏ ବିବାହ ସଂଭୂତ ଶିଶୁମାନଙ୍କ ଲାଳନ ପାଳନ ପାଇଁ ମଧ ଶୀଘ୍ର ସରକାରଙ୍କ ପକ୍ଷରୁ କଟକଣା ହୋଇଯିବ । ଆମ ରାଜ୍ୟରେ ଗୋଟାଏ କିଛି ନୂତନତ୍ୱ ମିଶାଇ ଏହି 'ସଙ୍ଗିସଙ୍ଗିନୀ ବିବାହ' ଚଳାଇବା ବୋଲି ବିଚାରୁ ଥାଇଁ । କୌଣସି ସ୍ତ୍ରୀଙ୍କୁ ଦେଖିଲା ମାତ୍ରେ ସହଜରେ ଠଉରାଇ ହେବ ଯେ ସେ ଲଳିତ ଯୌବନା,

କି ପଳିତ ଯୌବନା, କି ସ୍ଖଳିତ ଯୌବନା, କି ଲୁଳିତ ଯୌବନା, କି ତୁଳିତ ଯୌବନା, କି ଟଳିତ ଯୌବନା, କି ଚଳିତ ଯୌବନା, କି ଦଳିତ ଯୌବନା, କି ମଳିତ ଯୌବନା । ଅତଏବ ପ୍ରତ୍ୟେକ ସ୍ତ୍ରୀ ପକ୍ଷରେ ତାର ଯୌବନ କେତେକାଳ ସୁଖଭୋଗ୍ୟ, ଦୁଃଖଭୋଗ୍ୟ, ମୁଖଭୋଗ୍ୟ, ଥୁକଭୋଗ୍ୟ, ବୁକ ଭୋଗ୍ୟ, ବୃକ୍କ ଭୋଗ୍ୟ, ଦୁକ ଭୋଗ୍ୟ ହୋଇପାରେ ଏହା ସହଜରେ ଆଗରୁ ସ୍ଥିର କରାଯାଇପାରେ । ସେହି ଭୋଗ୍ୟକାଳର ପରିମାଣକୁ ୭/୮/୯/୧୦ ଭାଗ କରି ସେତେ ଜଣ ପୁରୁଷଙ୍କ ସଙ୍ଗେ ଉକ୍ତ ସ୍ତ୍ରୀଙ୍କର ସେତିକି ଲେଖାଏଁ ସମୟ ପାଇଁ ସଙ୍ଗିସଙ୍ଗିନୀ ବିବାହର ଚୁକ୍ତି କରାଇ ଦିଆଯିବ । ଅର୍ଥାତ୍ ଥରେ ବିବାହ ଉତ୍ସବର ସମସ୍ତ ଆୟୋଜନ କରି ଏକା ମାଡ଼େକେ ଏ ୭/୮/୯/୧୦ ବିବାହର ଲଟରା ଛିଣ୍ଡାଇ ଦିଆଯିବ । ଉକ୍ତ 'କନ୍ୟା'କୁ ଆଣି ବେଦିରେ ବସାଇ ଯେଉଁ ବରଙ୍କ ପାଳି ପହିଲେ ପଡ଼ିବ ତାଙ୍କ ସଙ୍ଗେ ହାତଗଣ୍ଠି ବିଧି କରିସାରିବା ପରେ ତତ୍ପରେ ପାଳିକ୍ରମେ ଅନ୍ୟବରମାନଙ୍କ ସଙ୍ଗେ ସେ ବିଧି କରାଇ ନିଆଯିବ ଓ କେଉଁ ସ୍ୱାମୀଙ୍କ ପାଳି କେବେ ପଡ଼ିବ ଓ ସ୍ୱାମିତ୍ୱର ମିଆଦ୍ କେତେ ହେବ ତତ୍‌ସମ୍ବନ୍ଧେ ଆମେ ରଜା, ମନ୍ତ୍ରୀ, ସାଧବ, କଟୁଆଳ ଭାଇମାନଙ୍କ ସାକ୍ଷାତ୍‌ରେ ଏଗ୍ରିମେଣ୍ଟ ଲେଖାପଢ଼ି ହୋଇଯିବ । ଏ ଏକପ୍ରକାର ସଙ୍ଗି-ସଙ୍ଗିନୀ ବିବାହ । ଆଉ ଏଥିରେ ଗୋଟିଏ କିସମ୍ ଆମ ପାଳବିଣ୍ଡା ମନ୍ତ୍ରୀଙ୍କ ଉର୍ବର ମଗଜରେ ପଶିଛି । ଏକାଧିକ ବରଙ୍କ ସଙ୍ଗେ ଏକ କନ୍ୟାର ଓ ଓଲଟ ରୀତିରେ ଏକାଧିକ କନ୍ୟାଙ୍କ ସଙ୍ଗେ ଏକ ବରର ବିବାହ କରାଇ ବିବାହ ବେଦୀରେ ସମସ୍ତଙ୍କ ସଙ୍ଗେ, ଯଥା, ରାବଣସ୍ୟ ମନ୍ଦୋଦରୀ, ଯଥା ଇନ୍ଦ୍ରସ୍ୟ ଶଚୀ, ଯଥା ସୁଗ୍ରୀବସ୍ୟ ତାରା' ବାକ୍ୟ ଓ କୁଶବିଟାଳ ଓ ହାତଗଣ୍ଠି ଆଦି ବେଦୋକ୍ତ ବିଧିମାନ ନିର୍ବାହ ହେବା ପରେ ଆଳିପଣା ଆରମ୍ଭ ହେଲାବେଳେ ଗୁଳା ପଡ଼ିବ । ଯେଉଁ ସ୍ୱାମୀ ବା ସ୍ତ୍ରୀଙ୍କ ନାମରେ ଗୁଳା ଉଠିବ ସେ ଚୁକ୍ତିର ମିଆଦ୍ ସମୟ ତାଙ୍କୁ ନେଇ ଘର କରିବେ ଓ ତାଙ୍କ ଭୋଗ କାଳ ଶେଷ ହେଲାରୁ ବାକି ରହିଯିବା ବ୍ୟକ୍ତିମାନଙ୍କ ମଧରେ ପୁଣି ଗୁଳା ପଡ଼ିବ । ଏହିପରି ଗୁଳା ପଡ଼ି ପଡ଼ି ସବାଶେଷକୁ ଯେଉଁ ବ୍ୟକ୍ତି ରହିଯିବେ, ସେ ଉକ୍ତ ଅର୍ଦ୍ଧାଙ୍ଗୀଙ୍କୁ ବା ଅର୍ଦ୍ଧାଙ୍ଗିନୀଙ୍କ ନିର୍ବିରୋଧ, ବିନା କାହାରି ଦାମୀ ମୁଜାହୋମିରେ ଭୋଗବାନ୍ ଦଖଲକାର୍ ଓ ମାଲଗୁଜାଦାର୍ ହେବେ ।

(ଢ) ନବାବ ସିରାଜୁଦ୍ଦୌଲା ଗୋପାଳ ଭାଣ୍ଡଙ୍କୁ ତାଙ୍କ ବଂଶ ପାଇଁ ଗୋଟିଏ ଖାସ୍ ମହାଭାରତ ଗ୍ରନ୍ଥ ଫରମାସ କରିଥିବା କଥା ଅଜ୍ଞ ବହୁତ ଆମ ସମସ୍ତଙ୍କୁ ଜଣା । ସେହିପରି ଆମ ପାଇଁ ଗୋଟିଏ ଖାସ୍ 'ଭାରତ' ପୁରାଣ ରଚନା କରିବା ନିମନ୍ତେ ବଢ଼ିଆ ପୁରସ୍କାର ଘୋଷଣା କରିବାକୁ ହେବ ଓ ରଚକ ବାଛିବାର ଭାର କୌଣସି ମାର୍କାମରା ସାହିତ୍ୟ ସଙ୍ଘ ଉପରେ ଦିଆଯିବ । ଉକ୍ତ ମହାଭାରତରେ ଅସଲ ମହାଭାରତ ଭଳି ପଞ୍ଚପାଣ୍ଡବ, ଶତ କୌରବ, ଶ୍ରୀକୃଷ୍ଣ, କୁନ୍ତୀ, ଦ୍ରୌପଦୀ, ଶକୁନି, ସୁଭଦ୍ରା, ଉତ୍ତରା, ଉଷା, ହିଡ଼ିମ୍ବା, ଉଲୁପୀ, ଘଟୋତ୍କଚ, ଭୀଷ୍ମ, ଦ୍ରୋଣ, ଜୟଦ୍ରଥ, କର୍ଣ୍ଣ, ଅଭିମନ୍ୟୁ, ଶଲ୍ୟ, ଧୃତରାଷ୍ଟ୍ର, ପଣ୍ଡୁ ଆଦି ସ୍ତ୍ରୀ ପୁରୁଷ, ନପୁଂସକ ଓ ଅଣ୍ଡିରାଚଣ୍ଡୀ ଆଦିଙ୍କ ଚରିତ ଛାଞ୍ଚରେ ଆମର ଭାଇ ବିରାଦର, ମନ୍ତ୍ରୀ ସନ୍ତ୍ରୀ, ରାଣୀ, ପାଟରାଣୀ, ମହାରାଣୀ, ସାଧବ,

କଟୁଆଳମାନଙ୍କ ଚରିତମାନ ସାକ୍ଷ୍ୟଲକ୍ଷ୍ୟ ପ୍ରତ୍ୟକ୍ଷ କରି ନବାକ୍ଷରୀ ବା ଚତୁର୍ଦ୍ଦଶାକ୍ଷରୀ ଅମିତ୍ର ମିତ୍ରାକ୍ଷରୀ ପ୍ରକାରରେ ଲେଖାଯିବ । ମହାଭାରତର ବୀର ଓ ବୀରାମାନଙ୍କର ଯେଉଁ ଯେଉଁ ଚରିତକୁ ରଚକ ଆମଠାରେ ନ ପାଇବାର ଦେଖିବେ, ତାହା ଆମ ଛାମୁକୁ ରେଜିଷ୍ଟରୀ ନୋଟିସ ଦ୍ୱାରା ଦୁଇ ହପ୍ତା ମିଆଦରେ ଜଣାଇଲେ ତତ୍ତତ୍ ଚରିତମାନଙ୍କ ଲାଖି କ୍ରିୟାକଳାପ ଆମର ଓ ଆମ ଉଆସ ଆଡ଼ର କରଣୀୟ ହେଲା ପରେ ସେମାନେ ଉକ୍ତ 'ଭାରତ'ରେ ଲିପିବଦ୍ଧ ହେବ ।

(ଣ) ତତ୍ତତ୍ ନାମଧାରୀ ଜନ୍ତୁଙ୍କ ଆକାର, ସ୍ୱଭାବ, ଆଚରଣ ଓ କରାମତବିଶିଷ୍ଟ ଗୁଡ଼ିଏ ପାର୍ଶ୍ୱଚର (ପାଖଲୋକ) ଓ ପାର୍ଶ୍ୱଚରୀ (ପାଖଲୋକୀ) ରାଜବାଟୀରେ ପାଳିବାକୁ ହେବ- ଯଥା, ସାପୁଆ, ବାଘୁଆ, ଭାଲୁଆ, କୁକୁରିଆ, ଗୋଧିଆ, ଶିଆଳିଆ, ମାକଡ଼ିଆ ।

ଯେଉଁ ଆଗନ୍ତୁକ ଭଦ୍ରଲୋକମାନଙ୍କୁ ଅପମାନ ବା ଲାଞ୍ଛନା ଦେବାକୁ ଆମର ବା ଆମ ପଞ୍ଚୁବିରାଦରଙ୍କର ବାୟୁ ଉଠିବ, ଅଥଚ ଭଦ୍ରତା ଖାତିରରେ ବା ରାଜ୍ୟ ବାହାରର ଲୋକମତକୁ ଡରି ଆମେ ତାଙ୍କୁ ସ୍ୱୟଂ ଲାଞ୍ଛନା ଦେଇ ନ ପାରିବା, ଏହି ମାକଡ଼ିଆ ବାଘୁଆଙ୍କୁ ପୂର୍ବରୁ ଏପରି ତାଲିମ ଓ rehearsal (ଆଖଡ଼ା ଆବୃତ୍ତି) କରାଇବାକୁ ହେବ ଯେ, ଉକ୍ତ ଭଦ୍ରବ୍ୟକ୍ତିମାନଙ୍କୁ ପାର୍ଶ୍ୱଚରମାନେ ଆମ ଅନୁପସ୍ଥିତିରେ ମୌଖିକ, ଆଙ୍ଗିକ, କାୟିକ, ଅପମାନ, ନିର୍ଯାତନ ଓ ଲାଞ୍ଛନା ଦେବେ । ଭଦ୍ରବ୍ୟକ୍ତିମାନେ ଲାଞ୍ଛିତ ହେବା ପରେ ଆମେ ସେଠାରେ ଉପସ୍ଥିତ ହୋଇ ପୂର୍ବରୁ କିଛି ନ ଜାଣିଲା ପରି ଅଭିନୟ କରି ଉକ୍ତ ଧର୍ଷିତ ବ୍ୟକ୍ତିମାନଙ୍କ ଠାରେ ପାର୍ଶ୍ୱଚରକୃତ ନିର୍ଯାତନ ପାଇଁ କ୍ଷମା ଭିକ୍ଷା ମାଗିବା ଓ ପାର୍ଶ୍ୱଚରମାନଙ୍କୁ ଧର୍ଷିତ ବ୍ୟକ୍ତିଙ୍କ ସାକ୍ଷାତ୍‌ରେ ଦଣ୍ଡବିଧାନ ଓ ଜେଲ୍ ବିଧାନ କରାଯିବ । ଏ ଉପାୟରେ ଦୁଇ ଆଡ଼ରୁ ମନବୋଧ, ଆମର ମନ ଓରମାନ ମେଣ୍ଟିବ ଓ ଧର୍ଷିତ ବ୍ୟକ୍ତିମାନେ ଆମର ସାଧୁପଣ ଦେଖି ମାଡ଼ ଖାଇ ସୁଦ୍ଧା ଆମ ନ୍ୟାୟ ବିଚାରକୁ ରାଜ୍ୟର ବାହାରେ ଘୋଷି ହେବେ ।

ଏ ସବୁ ପ୍ରସ୍ତାବମାନ ଆମ ବଇଠକୀରେ ସର୍ବସମ୍ମତି (କେବଳ ମାଲବେହୀଙ୍କ ବିଚିକିଟିଆ ମୁଖଭଙ୍ଗୀ ସୂଚିତ ଆମ୍ଳ ଚଟା) କ୍ରମେ ପାସ୍ ହୋଇଗଲା । ମାଲବେହୀଙ୍କର ଏହି ମୁଖଭଙ୍ଗୀ ଆମ ଓକିଲଭାଇଙ୍କ ଦୃଷ୍ଟିରେ ପଡ଼ିବାରୁ ସେ ମନ୍ତ୍ରୀ ଭାଇଙ୍କି ଇସାରା କଲେ ଓ ମୁଁ ପାଲଚୁଣ୍ଡାରେ ଷ୍ଟ୍ରିଙ୍ଗଟା ଟାଣିଦେଲି । ଆମ ମନ୍ତ୍ରୀ ପଟାହାରିଆ ମହାବଳ ଭଳି ତାଙ୍କ ମୁଛ ଦି'ପଟାକୁ ଫୁଲେଇ ଦେଇ ହୁକୁମ ଦେଲେ ଯେ, ଦୁଇଜଣ ପହରାବାଲା ମାଲବେହୀଙ୍କୁ ନେଇ ଖାସ୍ କାମୁଡ଼ା (କାମରା)କୁ ଯାଆନ୍ତୁ ଓ ସେଠାକୁ ଆମ ଡାକ୍ତର ସାହେବଙ୍କୁ ଡକାନ୍ତୁ ଆମେ ପଛେ ବିଜେ କରୁଛୁଁ ।

ଏଥିପରେ ଆମ ସଭା ଭାଙ୍ଗିଲା । ଭାଙ୍ଗିଲାବେଳକୁ ଆମ ପାଟମଣିଆ ଭାଖିଲେ-

(ଚାଲୁଥାଇ)

ନବଭାରତ/୧ମ ବର୍ଷ/ ୭ମ ସଂଖ୍ୟା/ ଧନୁ/ ୧୩୪୧ ସାଲ ।

## ।। ପାଞ୍ଚ ।।

ଆମ ରାଣୀସାହେବା ଭାଖି ଆଜ୍ଞା ହେଲେ -

୧. ଛାମୁଙ୍କ କଡ଼ା ରାମରାଜ୍ୟ ଶାସନର କରାମତିରେ ମୋଗଲବନ୍ଦିରେ ରାଜତ୍ୱ କରୁଥିବା ଆନ୍ଦୋଳନମାନ ଆମ ଅନ୍ଧାର ମୁଲକକୁ ପଶି ପାରୁ ନାହିଁ । କିନ୍ତୁ ମୋଗଲବନ୍ଦିଆଙ୍କ ଭିତରୁ ଯେଉଁ ଗୋଟି କେତେ ସିଆଣା ଅଛନ୍ତି ସେମାନଙ୍କ ପେଚ ପାଚରେ ମୋଗଲବନ୍ଦିରେ, ସରକାରଙ୍କ ଖାସ୍ ହସ୍ତମୁଦି ମାହାଲରେ ସରକାରୀ ବଡ଼ ହାକିମହୁକୁମାଙ୍କ ଆଖି ଆଗରେ ଯେଉଁ ସବୁ କାରସାଦି ହୋଇ ଯାଉଛି ଓ ତହିଁ ଫଳରେ ସେ ଆଲୁଅପ୍ରାପ୍ତ ମୁଲକରେ ଯେତେ ଯେତେ ଅତ୍ୟାଚାର, ଅବିଚାର, ଅନ୍ୟାଚାର, ବଦାଚାର, କଦାଚାର, ଆମାଚାର, ଆମ୍ବାଚାର, କାଗେଜି ଆଚାର ହୋଇ ଯାଉଛି, ତହିଁରୁ କାଣିଚାଏ ତ ଛାମୁଙ୍କ ଅନ୍ଧାରି ମୁଲକରେ ଦେଖିବାକୁ ନାହିଁ । ତେବେ ଆମ ଅନ୍ଧାରି ଓ ତାଙ୍କ ଉଜ୍ଜୁଳି ରାଇଜ ମଧରେ ପ୍ରଭେଦ ଏତିକି ଯେ, ଏଠାରେ ଯାହା କରିବ ସେଥି ଉପରେ ରାଜାଙ୍କ ଶ୍ରୀମାର୍କା ମାରିଦିଅ, ତୁମକୁ ସାତଖୁଣୀ ମାଫ୍; କିନ୍ତୁ ମୋଗଲବନ୍ଦିରେ ତୁମ ଉଦ୍ଦେଶ୍ୟ ସାଧିବାକୁ, ଦାଉ ସାଧିବାକୁ, ପେଟ ପୋଷିବାକୁ, ବାଲବଚାଙ୍କ ତୋଷିବାକୁ, ଦେଶ ଧନ ଶୋଷିବାକୁ ଯେତେ କିଛି କରିବାକୁ ଚାହଁ, ସେଥିରେ ଗୋଟାଏ ଲୋକଭୁଲାଣିଆ ମାର୍କା ମାରିଦିଅ ଓ ଗୋଟାଏ ସଭା, କି ସମିତି, କି ସମ୍ମିଳନୀ, କି ସଂଘ, କି ସମାଜ, କି ହରେମୋହୁର ସେ କାମ ଉପରେ ମାରିଦେଇ ଦାଣ୍ଡରେ ହାଟରେ ଗାଇ ବଜେଇ, ଡାକି ପୁକାରି, ହସି ଖେଳି ତୁମ ମନ ମୁତାବକ ନିର୍ଦ୍ଧାରଣମାନ ପାସ୍ କରି ନିଅ । ଦେଶର ଲୋକେ ଏହି ମାର୍କା ଦେଖି ସେ ନିର୍ଦ୍ଧାରଣମାନଙ୍କୁ ନତ ମସ୍ତକରେ ଗ୍ରହଣ କରିବେ । ସଭାରେ ୩ ଜଣ ଲୋକ ଉପସ୍ଥିତ ଥାଆନ୍ତୁ, ସମିତିର ବୈଠକରେ ତୁମେ ଓ ତୁମର ସଳିତାତେଜା ଦୁଇ ଚାରିଟି ଉପସ୍ଥିତ ଥାଆନ୍ତୁ, ଅଧିବେଶନରେ ପ୍ରସ୍ତାବକ, ସମର୍ଥକ ଓ ଅନୁମୋଦକଙ୍କ ଛଡ଼ା ଆଉ କେହି ନ ଥା'ନ୍ତୁ ପଛକେ, ସଭା ନାମରେ ନିର୍ଦ୍ଧାରଣ ଖବରକାଗଜମାନଙ୍କୁ ଓ ସରକାରଙ୍କ ଠାକୁ ଚାଲିଯିବ ଓ ସେଥିରେ ଖବରକାଗଜ-ବାଲାମାନେ ସଚାମାଲ ମାର୍କା ମାରି ଦେବେ ଓ ତାକୁ ସଚାମାଲ ବୋଲି ସରକାର ଗ୍ରହଣ ନ କଲେ ସରକାରଙ୍କୁ ଲାଟସଭା, ଚାଟସଭା, ବାଟସଭା, ନାଟସଭା, କାଟସଭାରେ ନିନ୍ଦାବାଦ କରାଯିବ । ଏହି (ତୁଳନାକରି ପଞ୍ଚଗବ୍ୟ) ସେବନ ଆଦିର ଅନୁଭବ ଓ ଆସ୍ୱାଦନ ଦେଇ ଦାଗୀ କରି ଛାଡ଼ି ଦିଆଯାଉ । ତାହାହେଲେ ଭବିଷ୍ୟତ୍ ପାଇଁ ସେମାନଙ୍କ ବିଷଦାନ୍ତ ଭାଙ୍ଗିଯିବ । ଯେଉଁ ଆଗନ୍ତୁକଗୁଡ଼ାକ ଦୁଷ୍ଟ ଅଥଚ ବୁଦ୍ଧିଆ ସେମାନଙ୍କୁ ଘାଟ ବା ଷ୍ଟେସନ ପାଖରୁ ଖୁବ୍ ଆଦର ଅଭ୍ୟର୍ଥନା କରି ନିମନ୍ତ୍ରଣ କରି ସ୍ୱଯାନ ଓ ସଯାନ ଉଆସକୁ ଆଣି ଅନ୍ଦର ମହଲରେ ଛାଡ଼ି ଆମ ପରଷାର ସୁଆଦ

ତାଙ୍କ ପାଟିରେ ଲଗାଇ ଦିଅ ଓ ବେଳ କାଳ ଉଣ୍ଡି ଢୋରିମାନା ଟେରଢୁଡ଼ିରୁ ତାଙ୍କ ଅଣ୍ଟାରେ କିଛି ଗୁଞ୍ଜିଦିଅ ଓ ତାଙ୍କର ଉଆସରେ ଅବସ୍ଥାନ କାଳରେ ତାଙ୍କୁ ଗୋଟାକେତେ ପୋଷା ସ୍ତାବକ ତୁମର ଓ ଆମର ଗୁଣ ଗାଥା ଶୁଣାନ୍ତୁ । ଏପରି କଲେ ଦେଖିବ ଯେ ସେମାନେ ଉଆସ ବାହୁଡ଼ା ବେଳକୁ କାହାଣୀରେ ମାଲ୍ୟାଣୀ ନାଲିଫୁଲ ଶୁଂଘେଇ ମଣିଷକୁ ଗାରଡ଼ ବନାଇଲା ଭଳି, ସେଗୁଡ଼ାକ ଗାରଡ଼ ପାଲଟିଯିବେ ଓ ସେମାନେ ତୁମରି ନିମକର କରାମତରୁ ଯାଇ ପରଦେଶରେ ଲୋକସଭାରେ, ଖବରକାଗଜରେ ଓ ରାଜଦ୍ୱାରରେ ତୁଚ୍ଛା ତୁମର ଗୁଣଗାନ କରି ବୁଲିବେ । ଏହି ଦୁଇ ଉପାୟରେ ଅଧିକାଂଶ ଖଳ ବା ବିଦେଶିଆଙ୍କ ମୁହଁ ବାନ୍ଧି ହୋଇଯିବ । ଈଶ୍ୱର ନ କରନ୍ତୁ, ଯଦି ସ୍ୟାଦ୍ କେହି ଏ ଦୁଇ ପ୍ରୟୋଗରୁ ବଳାଇ ଯାଏ (କାରଣ ଚାଣକ୍ୟ କହିଛନ୍ତି, 'ସର୍ପଃ କ୍ରୂରଃ ଖଳଃ କ୍ରୂରଃ, ସର୍ପାଦ୍ କ୍ରୂରତରଃ ଖଳଃ । ମନ୍ତ୍ରୌଷଧିବଶଃ ସର୍ପଃ, ଖଳଃ କେନନିବାର୍ଯ୍ୟତେ') ତେବେ ସନ୍ନିପାତ ମଲ୍ଲ ପାଇଁ ଅକାଟ୍ୟ ହରିତାଳ ଭସ୍ମର ପ୍ରୟୋଗ ଭଳି ଉଆସର ଜୀବଜଗତ୍‌ରେ ସେ ଶିକାର ଉଦ୍ୟମ କରୁଥିବା ଅଭିଯୋଗରେ ତାଙ୍କ ନାମରେ ଆମରି ଅଦାଲତରେ ମକଦମା ଦାଏର କରାଯିବ । ଯେତେବେଳେ ଆମ୍ଭେମାନେ ସାକ୍ଷୀ ଦେବୁଁ ଯେ ଅମୁକ ଲୋକ ଆମ ଶ୍ରୀଅଙ୍ଗରେ ଘାଉଡ଼ ଲଗାଉଥିଲା, ତେତେବେଳେ ଫଳ ଯାହା ହେବ ତାହା ଆଉ କହିବା ଦରକାର ନାହିଁ, କାରଣ ପାଠ ଡାକୁଛି 'ଆତତାୟିନମାୟାନ୍ତଂ ହନ୍ୟାଦେବାବିଚାରୟନ୍' ।

୨. ବର୍ତ୍ତମାନ ଦେଶ ତମାମ ଯେଉଁ ସ୍ତ୍ରୀ ଶିକ୍ଷାର ହପା ଉଠିଛି (ମର୍ଦ୍ଦଗୁଡ଼ାକ ତ ଆବହମାନ କାଳରୁ ଓଲୁ) ସେଥିରେ ତୁଚ୍ଛା ବାଳିକାଙ୍କୁ ଶିକ୍ଷା ଦିଆଯାଉ ଅଛି । କିନ୍ତୁ ଦେଶର ଅସଲ ମେରୁଦଣ୍ଡ ଯେଉଁ ବିବାହିତା କୁଳବଧୂଯାକ ଅଛନ୍ତି ତାଙ୍କର ଶିକ୍ଷା ପାଇଁ କିଛି ବିଶିଷ୍ଟ ଉଦ୍ୟମ କରାଯାଉ ନାହିଁ । ଯେଉଁମାନେ ବର୍ତ୍ତମାନ ସରଜମିନରେ ସନ୍ତାନୋତ୍ପାଦନ କର୍ମରେ ପାଏବନ୍ଦ ଅଛନ୍ତି ତାଙ୍କୁ କେହି ପଚାରିବାକୁ ନାହିଁ; ଯେଉଁମାନେ ଭବିଷ୍ୟତ୍‌ରେ ଜାତି ପାଇଁ ମାଲମସଲା ଗଢ଼ିବେ (ଅର୍ଥାଦ୍ ମଜଭୁତିଆ ବାଲବଚ୍ଚା କରିବେ) ସେମାନଙ୍କ ଶିକ୍ଷା ପ୍ରତି ଏଡ଼େ ଅନୁରାଗ ଉଠିଛି କିଆଁ ? ସେଥିରୁ ଗୁଡ଼ାଏ ରହିବେ ଆଜୀବନ ବା ଦରବୁଢ଼ୀ ହେବା ପର୍ଯ୍ୟନ୍ତ ମିସୀ ବାବା (ଅଭଡ଼ା), ଗୁଡ଼ାଏ ହେବେ ବାଞ୍ଝୀ, ଗୁଡ଼ାଏ ହେବେ କାକବାଞ୍ଝୀ, ଆଉ ଯେଉଁ କ୍ଷୁଦ୍ର ଭଗ୍ନାଂଶ ଜାତିର ଭବିଷ୍ୟତ୍ ବଂଶଧରଙ୍କର ଜନୟିତ୍ରୀ ହେବେ, ସେହି ଭଗ୍ନାଂଶଙ୍କ ପାଇଁ ପୂର୍ଣ୍ଣାଙ୍ଗଙ୍କୁ ପିଲାଦିନୁ ନିକମା କରାଇବା ଓଲୁପଣିଆଁ ଛଡ଼ା ଆଉ କଅଣ ହୋଇପାରେ ? ଆମ୍ଭମାନଙ୍କର (ଅର୍ଥାଦ୍ ଆମ୍ଭେ ଖୋଦ ପାଟରାଣୀଙ୍କର ଏବଂ ଆମ୍ଭ ଅନ୍ତଃପୁରସ୍ଥା ବେହୀମାନଙ୍କର) ସ୍ୱାଧୀନଭର୍ତ୍ତୃକା ମତ (ଅର୍ଥାଦ୍ ଯେଉଁ ମତ ଆମ୍ଭମାନଙ୍କ ଭର୍ତ୍ତୃମାନଙ୍କ ମତଠାରୁ ସ୍ୱାଧୀନ ଅଟେ) ଏହି କି ଯେଉଁମାନେ ବର୍ତ୍ତମାନ ସରଜମିନରେ ସାକ୍ଷଲକ୍ଷପ୍ରତ୍ୟକ୍ଷରେ ପ୍ରଜନନ କାମରେ ଲାଗି ଅଛନ୍ତି ସେହିମାନଙ୍କୁ

ସୁପ୍ରଜନନ କଳାରେ ଶିକ୍ଷା ଦେବାକୁ ହେବ ଓ ଏଥିପାଇଁ ଶିକ୍ଷାଳୟମାନ ସ୍ଥାପନ କରିବାକୁ ହେବ । ଉଦାହରଣସ୍ୱରୂପ, ମର୍ଦ୍ଦମାନେ ଏତିକି କଥା ବୁଝିପାରୁ ନାହାନ୍ତି, ଯେ ପାଣିରେ ନ ପଶିଛି ବା ନ ପଶୁଛି ତାକୁ ପହଁରା (ସନ୍ତରଣ) ବିଦ୍ୟା ଶିଖାଇବା ଯେଉଁପରି ଅସମ୍ଭବ, ସେହିପରି ଯେ ପ୍ରଜନନ କାର୍ଯ୍ୟରେ ଲାଗି ନାହାନ୍ତି, ତାଙ୍କୁ ସୁପ୍ରଜନନ ବିଦ୍ୟା ବିଷୟରେ ଶିକ୍ଷା ଓ ବକ୍ତୃତା ଦେବା ବିଡ଼ମ୍ବନା ମାତ୍ର । ମିଣିପେ ଯେବେ ଏତିକି ବୁଝନ୍ତେ ତେବେ ସ୍ତ୍ରୀ ଶିକ୍ଷା ଯେଉଁ ଅଜସ୍ର ଅର୍ଥବ୍ୟୟ ଦେଶରେ ଚାଲିଛି ତାହା କେତେ କମି ଯାଆନ୍ତା ଓ ଯେଉଁ ନିରୀହା ବାଳିକାମାନଙ୍କୁ ଶିକ୍ଷା ଦେବା ପାଇଁ ବୃଥାରେ ଝିଙ୍କାଓଟରା ଲାଗିଛି ତାହା ଅନ୍ୟାନ୍ୟ ଲାଭଜନକ ବ୍ୟବସାୟରେ ଲାଗନ୍ତେ ।

ଅତଏବ ଆମ୍ଭର ଖାସ୍ ପ୍ରସ୍ତାବ ଏହିକି, ଯେଉଁ ସ୍ତ୍ରୀମାନେ ସନ୍ତାନ ପ୍ରସବ ବିଷୟରେ ଫଳ ଦେଖାଇ ସାରିଲେଣି (ଅର୍ଥାତ୍ ଯେଉଁମାନେ ଆଜନ୍ମ ବନ୍ଧ୍ୟା, କାକ ବନ୍ଧ୍ୟା, ମୃତବତ୍ସା ଓ ମୂଢ଼ଗର୍ଭା ଅଟନ୍ତି ସେମାନଙ୍କୁ ବାଦ ଦେଇ ବାକି ତକ ବଛାବଛି କରି ପରଖା ପରଖି କରି, ଟାଙ୍କି, ଟିପି, ବଢେଇ ନେଇ) ସେମାନଙ୍କୁ ସୁପ୍ରଜନନ, ଗର୍ଭିଣୀଚର୍ଯ୍ୟା, ସୁପ୍ରସବ, ପ୍ରସୂତିଚର୍ଯ୍ୟା, ଶିଶୁପାଳନ, ଶିଶୁଶିକ୍ଷା ବିଷୟରେ ଶିକ୍ଷା ଦେବା ପାଇଁ ସ୍ୱତନ୍ତ୍ର ବିଦ୍ୟାଳୟମାନ ଖୋଲା ଯିବ । ଯେଉଁମାନଙ୍କଠାରୁ ସନ୍ତାନୋତ୍ପାଦନର ସମ୍ଭାବନା ନାହିଁ, ତାଙ୍କୁ ଅମଣିଆ ଦାମୁଡ଼ିଙ୍କୁ ହଡ଼ା ବଳଦ ସଙ୍ଗେ ଯୋଚିଲା ଭଳି ନ କରି ତାଙ୍କ ପାଇଁ ସ୍ୱତନ୍ତ୍ର ବିଦ୍ୟାଳୟ କରାଯିବ ଓ ସେମାନଙ୍କୁ ବାତ୍ସାୟନ ଆଦି ଗ୍ରନ୍ଥମାନଙ୍କ ବିଷୟରେ ଓ ପ୍ରେମ ବିଷୟରେ, ଦେଶସେବା, ପୁରୁଷସେବା, ରୋଗୀସେବା, ସାଧୁ ଓ ବାବାଜିସେବା, ଅତିଥିସେବା ଆଦି ଶିଖାଇବା ପାଇଁ ସ୍ୱତନ୍ତ୍ର ବିଦ୍ୟାଳୟମାନ ଖୋଲାଯିବ । ଯେଉଁମାନେ ଛାନ ପାଇ ନାହାନ୍ତି, ସେମାନଙ୍କୁ ବାଳକ ବିଦ୍ୟାଳୟରେ Co-Education (ସହଶିକ୍ଷା) ଦିଆଯିବ । ଏପରି ବ୍ୟବସ୍ଥା କଲେ ଦେଖାଯିବ ଯେ, ରାଜ୍ୟରେ କେତେ ଧନ ରହିଯିବ । କିନ୍ତୁ ଆମ ଦେଶବାସୀଗୁଡ଼ାକ ଏଡ଼େ ଗମ୍ବାର ଯେ, ସେମାନଙ୍କୁ ଫଳରେ ଦେଖାଇ ନ ଦେଲେ, ତାଙ୍କ ଆଖିରେ ଆଙ୍ଗୁଠି ଗୁଞ୍ଜି ନ ଦେଲେ ସେମାନେ ମଡ଼ାବାଟରୁ ସୂତାଏ ହେଲେ ଟଳିବେ ନାହିଁ । ଅତଏବ ପ୍ରଥମେ ଆମ ରାଇଜରେ ଏ ନୂଆ ପଦ୍ଧତି ଆରମ୍ଭ କରି ଦେଶବାସୀଙ୍କୁ ଦେଖାଇ ଦେବା ପରେ ଏହି ଶିକ୍ଷା ଦେଶ ତମାମ ହୁ ହୁ ହୋଇ ମାଡ଼ିଯିବ । ଅତଏବ ଆମ ଉଆସ ଆଡୁ ମୁଁ ଏ ବଇଠକୀରେ ପ୍ରସ୍ତାବ କରୁଛି ଯେ, ପ୍ରଥମେ ଉଆସରେ 'ଜାତିଗଢ଼ା ଆଦର୍ଶ ଚାହାଳି' ଖୋଲାଯାଉ । ଏଥିରେ ରାଜ୍ୟର ଭଲ ଭଲ ଜାତିରୁ ବଛା ହୋଇ କୁଳବୁଆସୁଣୀଙ୍କ ନାମ ଲେଖାଯାଉ । ସେମାନଙ୍କୁ ସୁପ୍ରଜନନ ବିଦ୍ୟା ଓ ତଦାନୁପୂର୍ବିକ, ତଦାନୁସଙ୍ଗିକ, ଆନୁପରିକ (?) କସରତ, କାର୍ଯ୍ୟ, ଚାଲ୍ ଆଦି ଦିଆଯାଉ । ଏଥିରେ ଗୋଟିଏ ଲାବରେଟରୀ (ପରୀକ୍ଷାଗାର) ରହୁ । କ୍ଲାସରେ ଯେଉଁ ଯେଉଁ ବିଷୟର

ବକ୍ତୃତା ଦିଆ ଯାଉଥିବ, ତତତ୍ ବିଷୟର ପରୀକ୍ଷାମୂଳକ ଉଦାହରଣ ବିଜ୍ଞାନାଗାରରେ ପ୍ରଦର୍ଶିତ ହେଉଥିବ । ଛାତ୍ରୀମାନେ ଗର୍ଭଧାରଣ କରିବା ମାତ୍ରେ ଅର୍ଥାତ୍ ଗର୍ଭାଧାନର ଦୃଶ୍ୟମାନ ଲକ୍ଷଣମାନ ଅଙ୍ଗତଃ, ଶରୀରତଃ, ମୁଖତଃ, ଉଦରତଃ, କରତଃ, ଗତିତଃ, ବମନତଃ ପ୍ରକାଶ କରିବାକ୍ଷଣି ତାଙ୍କୁ ପ୍ରଥମେ ବିଦ୍ୟାଳୟ ସଂଲଗ୍ନ ଡାକ୍ତରଖାନାର Observation Ward (ପର୍ଯ୍ୟବେକ୍ଷଣ କୁଟୀର)ରେ, ପରେ ଅର୍ଦ୍ଧଗର୍ଭା ୱାର୍ଡ଼ରେ, ତତ୍‌ପରେ ପୂର୍ଣ୍ଣଗର୍ଭା ୱାର୍ଡ଼, ଏହିପରି ଯଥାକ୍ରମେ ଆସନ୍ନପ୍ରସବା ୱାର୍ଡ଼, ଶୂଳଖିଆ ୱାର୍ଡ଼, ପୋଖତା ୱାର୍ଡ଼, ଷଠୀ ୱାର୍ଡ଼, ଉଠିଆରି ୱାର୍ଡ଼, ବାରରାତ୍ର ୱାର୍ଡ଼, ପୁତ୍ରବତୀଙ୍କ ପକ୍ଷେ ଏକୋଇଶିଆ ୱାର୍ଡ଼ ଓ ପୁତ୍ରୀବତୀଙ୍କ ପକ୍ଷେ ମାସିକିଆ ୱାର୍ଡ଼, ଖିରିଚଟା ୱାର୍ଡ଼, ବର୍ଷିକିଆ ୱାର୍ଡ଼, ମାତୃସ୍ତନ୍ୟ ତ୍ୟାଗ ୱାର୍ଡ଼, ଏହିପରି ଗୋଟିଏ ଗୋଟିଏ କ୍ରମୋଚ୍ଚ ଅବସ୍ଥାସୂଚକ ୱାର୍ଡ଼ରେ ରଖାଇ ଶେଷରେ ସ୍ତନ୍ୟତ୍ୟାଗୀ ସନ୍ତାନମାନଙ୍କୁ ରାଜବାଟୀରେ ରଖି ଜନୟିତ୍ରୀମାନଙ୍କୁ ପାସ୍ ସାର୍ଟିଫିକଟ ଖଣ୍ଡିଏ ଲେଖାଏଁ ଦେଇ ବିଶ୍ରାମ ନିମନ୍ତେ ଦଶ ମାସ ଛାଡ଼ି ଦିଆଯାଉଥିବ । ଏହି ସୁପ୍ରଜନନ ନୀତିରେ ବିଦ୍ୟାଳୟରେ ଯେଉଁ ସନ୍ତାନସନ୍ତତି ପଇଦା ହେବେ ସେମାନେ ହେବେ ଆମ ରାଜ ସରକାରଙ୍କ ସାଧାରଣ ସମ୍ପତ୍ତି (କୋଠ ପିଲା) ଓ ସେହି ଅଣ୍ଡିରିପୁଅମାନେ ଆମର ସରକାରୀ ସୈନ୍ୟ ଓ ପୁଲିସ ଓ ଶ୍ରୀଅଙ୍ଗ ସେବା ବିଭାଗରେ ବିନା ଦରମାରେ ଓ ସଖୋରାକ ପୋଷାକରେ ଚାକିରି କରିବେ ଏବଂ ମାଈକିନିଆ ଝିଅମାନେ ରାଜସରକାରଙ୍କ ସୁପ୍ରଜନନ ଇସ୍କୁଲରେ ଭରତି ହୋଇ ରାଜସରକାରଙ୍କର ଓ ଦେଶର ସେବା ପାଇଁ ସୈନିକ, ପୁଲିସ ଫଉଜ ଓ କର୍ମୀ, ଭୃତ୍ୟ ଓ ବେଠିଆ ଦଳର ସୃଷ୍ଟି କରିବା କଳ ହେବେ ।

ପାଟ ମହାଦେବୀଙ୍କର ଏ କଥାଟା ଗୋଟାଏ ନୂଆ ପ୍ରସ୍ତାବ ହେବାରୁ ଆମ ଶ୍ରୀଛାମୁଙ୍କ ମଗଜ ହଠାତ୍ ଏ କଥାଟାର ମଗମ ଓ କାର୍ଯ୍ୟକାରିତାକୁ ଚୁମ୍ବିପାରିଲା ନାହିଁ, ଏହା ଦେଖି ରାଣୀସାହେବା କହି ଆଜ୍ଞା ହେଲେ ଯେ, ପାଳଚୁଣ୍ଡା ମନ୍ତ୍ରୀଭାଇଙ୍କ ମୁହୁଁଣ୍ଡାରୁ ଅଧଘଣ୍ଟାଏ ପାଳଚୁଣ୍ଡାର ସ୍ୱିଙ୍ଗଟା ହୁଗାଳି ଦିଆଯାଉ ଓ ସେ ଏବଂ ଆମ୍ଭେ (ରାଣୀସାହେବା) ନିର୍ଜନ ମନ୍ଦିରରେ ଘଡ଼ିଏ ମୁହାଁ ମୁହିଁ ହେବା ପରେ ଆମେ ଏ ପ୍ରସ୍ତାବର ଗୋଟିଏ Scheme (ଅଗ୍ରନିର୍ଘଣ୍ଟ ବା ଖସଡ଼ା) ଆଣି ଛାମୁରେ ପେଶ୍ କରିବୁ । ଏହା କହିବାରୁ ଆମେ ଅଗତ୍ୟା ରାଣୀସାହେବାଙ୍କୁ ମନ୍ତ୍ରୀଭାଇଙ୍କ ସଙ୍ଗେ ନିର୍ଜନ କୋଠରିକୁ ଛାଡ଼ିଦେଲୁଁ (କିନ୍ତୁ କୋଠରିର ଜଳା ବାଟେ ସେ ଦୁହିଁଙ୍କର ଆଙ୍ଗିକ, ମୌଖିକ, ମାସ୍ତକିକ, ଗାର୍ଭିକ, ଚାରଣିକ, ହାସ୍ତିକ ଭଙ୍ଗୀକୁ ନିରୀକ୍ଷଣ କରିବା ପାଇଁ ପୁଲିସ ସାହେବ ଭାଇଙ୍କୁ ମୁତଏନ୍ କଲୁଁ) ଓ ରାଣୀସାହେବାଙ୍କ ଦୁଆରପାଳି ବିଜେକୁ ଟାକି ବସିଲୁ । ରାଣୀସାହେବାଙ୍କ ଅଗ୍ରସୂଚୀ ବାରାନ୍ତରେ ।

ନବଭାରତ/ ପ୍ରଥମ ବର୍ଷ/ : କୁମ୍ଭ, ୧୩୪୧ ସାଲ ।

## ।। ଛଅ ।।

ଆମ ପାଟମଣିମା କହି ଆଜ୍ଞା ହେଲେ -

ତୁମେ ମିଣିପେ ଲୁଚାକ ଆମକୁ ସବୁ କଥାରେ ପଛକୁ ପକାଇ ଦେଇ ଆମକୁ ନ ପଚାରି ଆମର କ୍ଷମତାପନ୍ନ ତଥାକଥିତ ମୁରବି ବନି ସବୁ କାମ ସବୁ ମାମଲତ କରି ନେଉଥାଅ, କିନ୍ତୁ ଯେତେବେଳେ ବେକାବୁରେ ପଡ଼ିବ ସେତେବେଳେ ଆମ ପଣତଗୁଡ଼ିକ ନ ଧରିଲେ ତୁମର ନ ଚଳେ। ତୁମକୁ ସବୁ ଏତେ ଫିକର ଆସେ, ଆମ ଠାରୁ ଭଲା ଗୋଟା କେତେ ଖଞ୍ଜାସୂତ୍ରର ଶୁଣ, ଦେଖିବ ଯେ, ଆମ ବୁଦ୍ଧି ଠାରୁ ତୁମ ବୁଦ୍ଧି କେତେ ପଣ କେତେ ଗଣ୍ଡା କେତେ କଡ଼ାରେ ନୀରସ ! ରାଜ୍ୟ ଶାସନ କରିବାର ଗୋଟିକେତେ କଳ କଦର ଶୁଣ :

୧. ରାଜ୍ୟର ପ୍ରଜାଗୁଡ଼ିକ ତ ନିରୀହ । ସେମାନେ ଏଡ଼େ ଶାନ୍ତ ଓ ସୁଶୀଳ ଯେ, ସେମାନଙ୍କ ଉପରେ ଗୋଇଠା ବସିଲେ ସେମାନେ ବିକଳ ହୋଇ ତାଙ୍କ ପିଠି ଓ ଦିହ ଆଉଁଶିବେ କଅଣ, ସେମାନେ ଗୋଇଠା ମାରୁଥିବା ଶ୍ରୀଚରଣକୁ ଗୋଇଠା ମାରିବା ଶ୍ରମ ଯୋଗୁଁ କେଡ଼େ ବାଧିଗଲା ବୋଲି କହି ଉକ୍ତ ଶ୍ରୀଚରଣକୁ ଘଷି ଆଉଁଷି ପକାନ୍ତି । ବାହାର ରାଇଜରୁ ଓ ବିଶେଷତଃ ସରକାରୀ ମୁଲକରୁ ଦୁଷ୍ଟ ଖଳଗୁଡ଼ାଏ ଆମ ରାଇଜକୁ ଆସି ଆମ ପ୍ରଜାଙ୍କୁ ଶିଖାଇ ମତାଇ ସିନା ସବୁ ଅନର୍ଥ ଜାତ କରିବେ ଓ କରିବାର ସମ୍ଭାବନା, ଅତଏବ ସେ ବାଟଟି ବନ୍ଦ କରି ଦେଲେ ତ ଯିବ । ବେଗର ରାଇଜରୁ ଆମ ରାଇଜକୁ ଆସିବାର ଯେତେଗୁଡ଼ିଏ ଘାଟ, ଘାଟି, ରେଳ, ଷ୍ଟିମାର ଓ ଡଙ୍ଗା ଷ୍ଟେସନ ଅଛି ସବୁଠାରେ ପାଳିକରି ଛାମୁ ଓ ଛାମୁଙ୍କ ବାଘୁଆ, ବାରିହିଆ, ଘୁଷୁରିଆ, କୁକୁରିଆ ଭାଇ ଜଗନ୍ତୁ ଓ ବେଗର ରାଇଜର କିଏ ଆମ ରାଇଜର ସରହଦକୁ ପଶୁଛି, ତାହା ଉଣ୍ଡି ସେହିଠାରେ ତାଙ୍କୁ ଦେଖିଲା କାମ କରାଯାଉ । ଯେଉଁଗୁଡ଼ାକ ସାଧାରଣ ଭାବରେ ଦୁଷ୍ଟ (ଅର୍ଥାତ୍ ଦୁଷ୍ଟ ଅଥଚ ଓଲୁ) ସେମାନଙ୍କୁ ରାଜ୍ୟ ଭିତରକୁ ଆଣି ସେମାନଙ୍କ ନାମରେ ଗୋଟିଏ ଲେଖାଏଁ ଜନାକାରୀ ମକଦମା ଦାଏର କରି ତାଙ୍କୁ ଦିନାକେତେ ଘଣା ପେଲା, କଟାବାଡ଼ିଆ, ମନୁଷ୍ୟମୟ (ତୁଳନା କର ଗୋମୟ) ଲେପନ ଓ ପଞ୍ଚମାନୁଷ୍ୟ ପରି ଖଣ୍ଡେ ଖଣ୍ଡେ ଖବରକାଗଜ ବାହାର କରି ଯେଉଁ ଲୋକେ ସବୁ ସମ୍ପାଦକ ସାଜି 'ଦେଶ ଦେଶ' 'ଆମ୍ଭେମାନେ ଆମ୍ଭେମାନେ' ହୁରି ଛାଡୁଛନ୍ତି ଓ ଅନ୍ୟ ଅଭଦ୍ର ଭାଷାରେ ଯାହାକୁ ତାକୁ ମୋଗଲବନ୍ଦିରେ ଶୋଧୁଛନ୍ତି, ଏସବୁ ଆମ ଅନ୍ଧାରି ମୁଲକରେ ନାହିଁ । ସ୍ୱାଧୀନତା ଓ ସ୍ତ୍ରୀ ଶିକ୍ଷା ବିସ୍ତାର ଓ ସ୍ତ୍ରୀ ସଂସ୍କାର ଓ ସ୍ତ୍ରୀ ଅଧିକାର ଦାବି ନାମରେ ମୋଗଲବନ୍ଦିରେ ଯେଉଁ ସଭାସମିତି ସବୁ ବସୁଛି, ସେଥି ଭିତରେ ସବୁ କି ରଙ୍ଗ, କି ତାମସା, କି ତାଣ୍ଡବ ଲାଗୁଛି ତା ସବୁ ମୋଗଲବନ୍ଦିଆ ବନ୍ଦିଆଣୀମାନେ ବିରାଡ଼ି ଆଖି ବୁଜି ଦୁଧ ପିଇବା ନ୍ୟାୟ, ଆମେ ଅନ୍ଧାର ମୁଲକିଆ ଓ ମୁଲକିଆଣୀମାନେ କିଛି ଜାଣୁ ନାହୁଁ ବୋଲି ଯାହା

ବିତାରୁଛନ୍ତି ତାହା ନୁହେଁ । ଆମ କାନରେ ସବୁ ବାଜୁଛି । ମୋଗଲବନ୍ଦିରେ ଯାହାର ବେଙ୍ଗପାଟିଆ ଗଳା ଓ ଆସ୍ଫାଳନ ଅଛି, ତାର ଜୟ । ଅନ୍ଧାରି ମୁଲକରେ ଜୋର୍ ଯାର ମୁଲକ ତାର । ଏ ନୀତିର ସେ ନୀତିର ତଫାଦ୍ କମ୍ । ଆମେ ତ ମାଇପି ଜାତି, ଢିଙ୍କି ଭଳି ସ୍ୱର୍ଗକୁ ଗଲେ ବି ଧାନ କୁଟିବୁ ହିଁ କୁଟିବୁଁ । ଛୋଟ ଲୋକଙ୍କ ମାଇପଙ୍କର ଉଦୁଖଳ ମୂଷଳ, ତହିଁର ମୂଷଳଟିମାନ ଛୋଟ । ବଡ଼ଲୋକଙ୍କ ମାଇପେ ହେଲେ ଢିଙ୍କି । ତହିଁର ପାହାରଟିମାନ ନିର୍ଦ୍ଧୁମା ଓ ସମାଲଗା । ପ୍ରଭେଦ ଏତିକି, ନଇଲେ ଏକା ଧାନକୁଟା ସବୁ ଆଡ଼େ । ମୋଗଲବନ୍ଦିଆଙ୍କୁ ଆମ ଗୋଇ ଖୋଲି ଆସେ, ଆମକୁ ଥାଉ ତାଙ୍କ ଗୋଇ ଖୋଲି ଆସିବ ନାହିଁ ? ସ୍ତ୍ରୀ ମହଲରେ ଯେଉଁସବୁ କନ୍‌ଫରେନସ୍, ସମ୍ମିଳନୀ ଆଦି ହେଉଛି, ସେଥିରେ ଜଣେ ଦୁଇ ଜଣ ମୁଖିଆଣୀ ସୂତାଖିଅକୁ ଯୁଆଡ଼େ ଝିଙ୍କୁଛନ୍ତି ସଭାଟା ତମାମ ସେହି ଆଡ଼କୁ ଝିଙ୍କିହଉଛି । ବିଲାତୀ ଗୋରା ସାହାବାଣୀମାନଙ୍କଠାରୁ ଦେଶୀ କଳା ସାହାବାଣୀଙ୍କ କରାମତି ଆହୁରି ହଂସାଉଡ଼ା । ମିଣିପଙ୍କ ରାଇଜ ଥିଲା ବେଳେ ମକଦମା ନିଷ୍ପତ୍ତି ହେଉଥିଲା ପ୍ରମାଣ ଉପରେ କଚିରିରେ; ଏବେ ମକଦମା ଡିଗିରି ଡିସିମିସ ହଉଛି ଚୁଗୁଲିରେ, ପରଦା ପଛ ଆଡ଼େ । ଏଥିପାଇଁ ଆମେ ପ୍ରସ୍ତାବ କରୁଛୁଁ ଯେ, ଆମ ଏ ଉଆସରେ ଆମ ସଭାପତିତ୍ୱରେ ଗୋଟିଏ ନାରୀ ସମିତିର ପ୍ରତିଷ୍ଠା ହେଉ ଓ ରାଜ୍ୟର ସମସ୍ତ ଶିକ୍ଷିତ ବ୍ୟକ୍ତିଙ୍କ ଜନାନାମାନେ (ଶିକ୍ଷିତ ସ୍ୱାମୀମାନଙ୍କ ହାଉଆ ବାଜି ଯେଉଁମାନଙ୍କଠାରେ ଶିକ୍ଷାବୀଜର ଇଞ୍ଜେକ୍‌ସନ୍ ଭରା ହୋଇଥିବାର ସ୍ୱାଭାବିକ, ସେମାନେ) ଏଥିରେ ସଭ୍ୟ ତାଲିକାଭୁକ୍ତା ହୁଅନ୍ତୁ । ରଜା ନିଜେ କିଛି ହୁକୁମ ଦଉଛନ୍ତି ବୋଲି ମୋଗଲବନ୍ଦିଆଯାକ ଗଗନ ଫଟାଉଛନ୍ତି, କିନ୍ତୁ ରଜା ଯେବେ ଗୋଟାଏ ଜନ ପ୍ରତିନିଧି ସମିତି ବସାଇ ତାଙ୍କରି ଦ୍ୱାହି ଦେଇ ରାଜ୍ୟ ଶାସନ କରିବେ, ତେବେ ତାଙ୍କର ବାହାଦୁରି ହେବ ଓ ଦୁର୍ନାମଯାକ ପ୍ରତିନିଧି ସଭ୍ୟଙ୍କ ବେକମୁଣ୍ଡାରେ ଲଦା ହେବ ବୋଲି ଆମେ ଛାମୁଙ୍କଠାରେ ପୂର୍ବେ ପ୍ରସ୍ତାବ ବାଢ଼ିଥିଲୁଁ । ସେ କଥାକୁ ଛାମୁ କର୍ଣ୍ଣପାତ କଲେ ନାହିଁ । କିନ୍ତୁ ଆମକୁ ଅନ୍ଦର ମହଲ ତାନ୍ତ୍ରିକ ସଭା କରିବାକୁ ଅନୁମତି ଦିଆଯାଉ । ଆମେ ସେଥିରେ ରାଜ୍ୟର ମନ୍ତ୍ରିଆଣୀ, ସାଧବାଣୀ, କଟୁଆଳିଆଣୀ, ସାଆନ୍ତାଣୀ, ଭାୟାଣୀ, ବିରାଦରିଆଣୀ, କର୍ମଚାରିଆଣୀ, ପେଷ୍କାରିଆଣୀ, ସେକ୍ରେଟେରିଆଣୀ ଆଦିଙ୍କୁ ସଭ୍ୟା କରିବୁ ଓ ସେଥିର ପାଟରାଣୀ ବା ମହାରାଣୀ ହେବ Ex-officio ସଭାପତ୍ନୀ । ଦେଖିବ, ଆମେ ତୁମ ରାଜ୍ୟ ଶାସନକୁ କେଡ଼େ ସୁନ୍ଦର, ସୁଗମ, ସୁଦୃଶ୍ୟ, ସୁଶ୍ରାବ୍ୟ, ସୁପେୟ, ସୁଗେୟ କରି ଦେବୁଁ । ତୁମର କାହାକୁ ଦଣ୍ଡିବାକୁ ମନ ହେବ, କାହାକୁ ତଣ୍ଡିବାକୁ, କାହାକୁ ଭଣ୍ଡିବାକୁ, କାହାକୁ ମଣ୍ଡିବାକୁ ମନ ହେବ, ସେ କଥା ବେତାର ସମ୍ବାଦ ଦ୍ୱାରା ଆମ ନାରୀ ତାନ୍ତ୍ରିକ ସଭାକୁ ଜଣାଇ ଦେଲାକ୍ଷଣି ଆମ ସଭାରେ ଏପରି ବ୍ୟବସ୍ଥା ହୋଇଯିବ ଯେ, ସଙ୍ଗେ ସଙ୍ଗେ କାମ ହାସଲ ଅଥଚ ଦୁର୍ନାମ ନଦାରଦ୍ ।

ଏହିପରି ସଭା ସଂପୃକ୍ତ ବିଦ୍ୟାଳୟ, କାର୍ଯ୍ୟାଳୟ, ଦୀକ୍ଷାଳୟ, ଭଜନାଳୟ, ଭୋଜନାଳୟ, ବପନାଳୟ ଏହିପରି ନାନା ଶାଖା ରହିବ ଓ ସେ ଶାଖାରେ ସବୁ ଆମର ତନ୍ତ୍ରୀ (ଓଃ ରାମ ତନ୍ତ୍ରିଣୀ)ମାନେ ତାଲିମ ହେବେ । ଦେଖିବ ଯେ, ଦିନ କେତୋଟାରେ ଆମ ଅନ୍ଧାରି ମୁଲକ ଉଜ୍ଜ୍ୱଳି ମୁଲକ ଅପେକ୍ଷା ଦାଉଦାଉ ଜଳିବ । ଅଣ୍ଡିରିପୁଅ ହାକିମ-ହୁକୁମାଙ୍କଠାରୁ ଲଗାଏତ ଆମଲା ପ୍ରଜା ପର୍ଯ୍ୟନ୍ତ ତୁମେ ସମ୍ଭାଳିବ । ମାଇକିନିଆଝିଅ ହାକିମାଣୀ, ହୁକୁମାଣୀ, ଆମଲାଣୀ, ପ୍ରଜାଣୀଙ୍କୁ ଆମେ ସମ୍ଭାଳିବୁ । ତୁମେ ଅଣ୍ଡିରିପୁଅଙ୍କୁ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ଦ୍ୱାରା ବଶ କର, ଆମେ ଆମ ମାଇକିନିଆ ଝିଅଙ୍କୁ ଚର୍ବଣ, ଚୋଷଣ, ଲେହନ, ପାନ କର୍ମରେ ଆପ୍ୟାୟିତ କରିବୁଁ । ଶଗଡ଼ର ଅଖର ଗୋଟିଏ ପାଖରେ କାଳି ଦେଲେ, ଅନ୍ୟ ପାଖରେ କାଳି ନ ଦେଲେ ଶଗଡ଼ ଯେପରି ବାଆଁପଡ଼ିଆ, ପହିମୋଡ଼ିଆ, କମରତୋଡ଼ିଆ ହୁଏ, ବର୍ତ୍ତମାନ କି ମୋଗଲବନ୍ଦି କି ଗଡ଼ଜାତ ସବୁଠାରେ ରାଜନୀତି ଶଗଡ଼ ଚାଲିଛି - କେଏଁ କଟର । କିନ୍ତୁ ଅଖର ଦୁଇ ମୁଣ୍ଡରେ କାଳି ଦିଅ, ଦେଖିବ କିପରି ରାଜନୀତିକ ''ରଥ ଚାଲେ ଧୀରେ ଧୀରେ ଖରା ମଉଜ ବେଳେ ।''

ଆଜି ଆମେ ଦେଖିଲୁଁ ଯେ, ରାଣୀସାହେବା ଭାରି ସରଗରମ୍ । ଏ ବକ୍ତୃତାର ବେଗ ବନ୍ଦ ନ କଲେ ରାତିତମାମ ବଇଠକୀ (Whole Night sitting) କରିବାକୁ ପଡ଼ିବ । ଏଥିପାଇଁ ଆମ୍ଭର ଇସାରା ଓ ସ୍ପ୍ରିଙ୍ଗ୍‌ମୋଡ଼ା କ୍ରମେ ଆମ ପାଳଚୁଣ୍ଡା ମନ୍ତ୍ରୀଭାଇଙ୍କ ମୁହଁରୁ ପାଳଚୁଣ୍ଡାଟା ଯାଇ ରାଣୀସାହେବାଙ୍କ ମୁହଁରେ ଚଟକିନି ଲାଗିଗଲା । ପ୍ରଥମେ ଟିକିଏ ଗାଉଁ ଗାଉଁ ଶବ୍ଦ ଶୁଣାଗଲା - ତାପରେ ନୀରବ । ଅବଶିଷ୍ଟ ସ୍ୱପ୍ନାନୁଭୂତି ବାରାନ୍ତରରେ ।

ନବଭାରତ ପ୍ରଥମ ବର୍ଷ, ୧୦ମ ସଂଖ୍ୟା, ମୀନ, ୧୩୪୧ ସାଲ ।

## ।। ସାତ ।।

ଯେତେ ହେଲେ ଅର୍ଦ୍ଧାଙ୍ଗ ପରା ! ଅର୍ଦ୍ଧାଙ୍ଗ କହ, ଅର୍ଦ୍ଧାଙ୍ଗୀ କହ, ଅର୍ଦ୍ଧାଙ୍ଗିନୀ କହ... ଏକା କଥା । ଇଂରାଜୀରେ କହନ୍ତି ଉତ୍ତମତରାଙ୍ଗ (Better half) । ରାଣୀସାହେବାଙ୍କ ମୁହଁରେ ପାଳଚୁଣ୍ଡାଟା ତ ଅଗତ୍ୟା ବସାଇ ଦେଲୁଁ, କିନ୍ତୁ ମନଟା ସେତିକି ବେଳୁଁ ସ୍ୱପ୍ନରେ ଖରାପ ଲାଗୁଥାଏ । ଆମ ରାଣୀସାହେବା ମୋଗଲବନ୍ଦିରେ ଓ ସରକାରଙ୍କ ଖାସମାହାଲମାନଙ୍କରେ ଆଧୁନିକ ନାରୀ ପ୍ରଗତିର ଯେଉଁ ଯେଉଁ ବର୍ଣ୍ଣନାମାନ ଦେଲେ, ସେ ବର୍ଣ୍ଣନା ଅନୁସାରେ କି ପ୍ରାଚ୍ୟ କି ପାଶ୍ଚାତ୍ୟ ଜଗତରେ, କି ବିଲାତରେ, କି ଇଉରୋପରେ, କି କଲିକତାରେ, କି କଟକରେ ଶିକ୍ଷିତା, ଆଧୁନିକ ସଭ୍ୟତାଲୋକରେ ଆଲୋକିତା ସଭାନେତ୍ରୀ, ସିନେମା ନେତ୍ରୀ, ଥିଏଟର ନେତ୍ରୀ, ବାୟସ୍କୋପ ନେତ୍ରୀ, କଂଗ୍ରେସ ନେତ୍ରୀ, ହରିଜନ ନେତ୍ରୀମାନଙ୍କର ଯେଉଁ ରୂପ ଓ ତସବୀରମାନ ପରଦା ଉପରେ ଓ ବିଚ ବଜାରରେ ଆମ ଆଖି ଆଗରେ, ଆମ

ପିଲାପିଲିଙ୍କ ଆଖି ଆଗରେ, ଆମ ବାଲବଚ୍ଚାଙ୍କ ସାମନାରେ ନାଚିଲାଣି, ସେଥିରୁ ଆମେ ଅନ୍ଧାରି ମୁଲକିଆ ଯାକ ଜାଣିଥାଇଁ ଯେ, ପ୍ରଭୁ ଆମକୁ ଓ ଆମର ଉଆସ ଆଡ଼ର ଜୀବମାନଙ୍କୁ ଏ ନାରୀ ପ୍ରଗତିର ଯେତିକି ଦୂରରେ ରଖନ୍ତି, ଆମର ଓ ଆମ ରାଜ୍ୟର ସେତିକି ମଙ୍ଗଳ ।

ଏହି କଥା ଭାବୁ ଭାବୁ ସ୍ୱପ୍ନରାଜ୍ୟରେ ସତକୁ ସତ ଏକ ଦେଶନେତ୍ରୀ ଆସି ଆମ ଦରବାରରେ ଠିଆ ହୋଇଗଲେ । ତାଙ୍କର ପରିଧାନ ଜାଲଜାଲୁଆ ବୁଢ଼ିଆଣୀ ସୂତା ବୁଣା ପୋଷାକ, ତାହା ସର୍ବାଙ୍ଗକୁ ଘୋଡ଼ାଇ ନାହିଁ, ବରଞ୍ଚ ସର୍ବାଙ୍ଗକୁ ଫୁଟାଇ କରି ଦର୍ଶକଙ୍କ ଆଖିରେ କାଠି ଗୁଞ୍ଜି କହୁଛି - ଏ ସୁନ୍ଦର ସର୍ବାଙ୍ଗକୁ ଦେଖି ନିଜେ ପବିତ୍ର ହୁଅ ଓ ଈଶ୍ୱରଙ୍କ ସୃଷ୍ଟିପାଟବକୁ ଶତମୁଖରେ ପ୍ରଶଂସା କର । ସରଳା ଅବଳା ବୋଲି ଯେତିକି ଦିନ ଆମ ଜାତିକୁ ଡାକୁଥିଲ ସେତିକି, ଏଣିକି ଆମକୁ ଅବଳା, ଅବୀରା ଆଦି ନାମରେ ଡାକିବ ନାହିଁ । ତୁମେ ପୁରୁଷ ଜାତି ଆବହମାନ କାଳରୁ ଆଜି ପର୍ଯ୍ୟନ୍ତ ଅର୍ଥାତ୍ ସତ୍ୟଯୁଗରେ ୧୭ ଲକ୍ଷ ୨୮ ହଜାର ବରଷ, ତ୍ରେତାଯୁଗର ୧୨ ଲକ୍ଷ ୯୬ ହଜାର ବରଷ, ଦ୍ୱାପରର ୮ ଲକ୍ଷ ୬୪ ହଜାର ବରଷ ଓ କଳିଯୁଗର ପ୍ରଥମ ପାଞ୍ଚ ହଜାର ବର୍ଷ କାଳ ଆମ ନାରୀ ଜାତିକୁ ବେଡ଼ିଶାଙ୍କୁଳି ଦେଇ, ଆମ ମୁହଁରେ ବାଆଁରା ବାନ୍ଧି, ଆମ ଉପରେ ଢାଙ୍କୁଣୀ ଲଗାଇ, ଆମ ଆଖିରେ ଅନ୍ଧପୋଟଳୀ ବାନ୍ଧି, ଆମ ଆଗରେ ପରଦା ଟାଙ୍ଗି ଆମକୁ ତୁମର ଖେଳନା ସାମଗ୍ରୀ, ତୁମର ଛୁଆ ତିଆର କଳ ବନାଇଥିଲ । ଏହି ଏତେ ଲକ୍ଷ ବରଷର ଓରମାନ କଳିଯୁଗର ବାକି ଥିବା ୪ ଲକ୍ଷ ୨୭ ହଜାର ବରଷରେ ଆମେ ଶୁଝିଦେବୁଁ ।

ଆଜି ପର୍ଯ୍ୟନ୍ତ ତୁମ ଜାତିକୁ ଥିଲା ସବୁ କଥା ଛାଡ଼, ଆମ ଜାତିକୁ ଥିଲା ସବୁ କଥା ରୋକ୍; ବର୍ତ୍ତମାନ ପୁରୁଷଯାକ ପରୀକ୍ଷାସ୍ୱରୂପ ଆମକୁ ଶିକ୍ଷା ଓ ସଭ୍ୟତାର ଯେଉଁ ଚଟକ ଦେଖାଇ ଦେଇ ସାରିଲଣି, ବୁଆଖିଆର ଯେଉଁ ସୁଖ ଆମ ଜିଭରେ ଲଗାଇ ଦେଇ ସାରିଲଣି, ସ୍ୱାଧୀନତାର ଯେଉଁ ମିଠା ଆମକୁ ଚଖାଇଲଣି, ସେଥିର ଫଳରେ ସଭାରେ, ସମିତିରେ, ଥିଏଟରରେ, ସିନେମାରେ, ସ୍କୁଲରେ, କଲେଜରେ, ଜେଲଖାନାରେ, ଡାକ୍ତରଖାନାରେ, ନାଚଖାନାରେ, ହୋଟେଲରେ, ଅଦାଲତରେ, କିଲଟରିରେ ଆମେ ଯେଉଁ ସବୁ ଅଭିନୟ କରିବୁଁ, ତାହା ଦେଖି ତୁମ ପୂର୍ବପୁରୁଷମାନେ ମଶାଣି ଭୂଇଁ ଛାଡ଼ି, ସ୍ୱର୍ଗ ଛାଡ଼ି, ନରକ ଛାଡ଼ି ପୁଣି ସଂସାରରେ ଦୁର୍ଲଭ ନାରୀ ଜନ୍ମ ଲଭିବାକୁ ଯାଇ ବ୍ରହ୍ମାଙ୍କଠାରେ ଅଧା ପଡ଼ିବେ । ଘରଛୁଆଣିକୁ ଘରଛୁଆଣି ତୁମେ ଖାଲି ଲୋକସଂଖ୍ୟା ବୃଦ୍ଧି କାମରେ ଆମକୁ ଲଗାଇ ଆମକୁ ଦିନରାତି ଖଟାଇ ଆମ ନାକରେ ଲଙ୍କାମରିଚ ପାଣି ଡେଣ୍ଡଉଥିଲ - ଏସବୁ ଚକ୍ରବୃଦ୍ଧି ସୁଧରେ ଆମେ ଶୁଝିବୁଁ । ବର୍ତ୍ତମାନ ଟିଉବ୍ (ନଳ)ରେ ସନ୍ତାନ ଜନନର ପରୀକ୍ଷା (Experiment) କୃତକାର୍ଯ୍ୟ ହୋଇ ସାରିବାପରେ ତୁମ୍ଭମାନଙ୍କୁ ସୁପ୍ରଜନନ କର୍ମରେ ଲଗାଇବୁଁ, ତୁମ୍ଭେମାନେ ରୋଷେଇ

କରିବ, ଆମର ବର୍ତ୍ତନ ମଳିବ , ଆମ ପାଲଟାଲୁଗା ଧୋଇବ, ଆମେ ସବୁ ହେବୁ ଗୃହର ମାଲିକ, ତୁମ୍ଭେମାନେ ହେବ ଗୃହର ଝାଡୁବରଦାର, ଆଶାବରଦାର, ସୋଟାବରଦାର, ଚିରାଖବରଦାର ଓ ଆମର କୋଠ ବରଦାର ।

ବ୍ୟବସ୍ଥାପକ ସଭାରେ ବସି ତୁମେ ଆମ ପାଇଁ ଆଇନ ଗଢୁଥିଲ, ଆମେ ତୁମରି ପାଇଁ ଯେଉଁ ଆଇନ୍ ଗଢ଼ିବୁଁ ସେଥିରେ ଆମ ଜାତିକୁ ତୁମେ ଯେତେ ପ୍ରକାରେ ହଲାପଟା କରିଛ ତାହାର ତେପନ ଗୁଣ ହଲାପଟା ତୁମକୁ କରିବୁଁ । ତୁମେ ଆମକୁ ସାଢ଼େ ୩ ଯୁଗ ହେଲା ନଚାଉ ଥିଲ । ଆମେ ଅଧ ଯୁଗରେ ତୁମକୁ ଡାଳିମାଙ୍କଡ଼ ବନାଇ ଦେବୁଁ ।

ଦେଶନେତ୍ରୀଙ୍କ ଦେହରେ ଏପରି ପତଳା ପୋଷାକ ଥିଲା ଯେ, ମତେ ପ୍ରଥମେ ଜଣାଗଲା, ଯେପରି ସେ ପ୍ରକୃତିମାତାଙ୍କ ଗର୍ଭରୁ ବର୍ତ୍ତମାନ ଏତଦ୍ରୂପରେ ବାହାରି ଖଡ଼େଦମ୍ ଆମ ରାଜବାଟୀକୁ ଆସିଛନ୍ତି । କିନ୍ତୁ ଆମ ପାଟଭାଇ ଆମର ଚାଳିଶା ଦୋଷ ଘଟିଥିବା କଥା ଆମକୁ ଚେତାଇ ଦେବାରୁ ଆମେ ଆଖିରେ ପ୍ରଚକ୍ଷୁ ଲଗାଇ ଦେଖିଲୁଁ ଯେ ସେ ବସ୍ତ୍ର ପରିହିତା । ତାଙ୍କର ଏ ଦିବ୍ୟ ରୂପ, ଜ୍ୟୋତି ଓ ବକ୍ତୃତାର ତେଜ ଅନୁଭବ କରି ରାଜସଭାରେ ଉପସ୍ଥିତ ସମସ୍ତେ ପ୍ରଥମେ ଟିକିଏ ଥମକିଗଲୁଁ । ପରେ ଟିକିଏ ପ୍ରକୃତିସ୍ଥ ହୋଇ ତାଙ୍କୁ ପାଦ୍ୟ ଓ ଅର୍ଘ୍ୟ ଦେଲୁଁ ଏବଂ ଭାଇସାହେବଙ୍କ ଅନ୍ଦର ମହଲକୁ ପଠାଇ ରାଣୀସାହେବାଙ୍କ ମୁହଁରୁ ବିଣ୍ଡାଟା କାଢ଼ି ରାଣୀସାହେବାଙ୍କୁ ସମାଗତା ଅତିଥିନୀଙ୍କ ଚର୍ଯ୍ୟାରେ ଲାଗିବାକୁ ବାଚନିକ ସମ୍ବାଦ ଦେଲୁଁ ।

ଏହି ସମୟରେ ଅନ୍ଦର ମହଲରୁ ଏକ ନାରୀକଣ୍ଠୋତ୍ଥିତ ଗୀତ ଶୁଣାଗଲା - ''ମେଘ ବରଷିଲା ଟପର ଟପର କେଶୁର ମାଇଲା ଗଜା, କେଉଁ ରାଇଜକୁ ଯିବେଟି ମୋ ରଜା ତେଲିଙ୍ଗି ବାଇଦ ବଜା ।'' ଏ ଗୀତର ମର୍ମ ପ୍ରଥମେ ଆମେ କିଛି ବୁଝି ପାରିଲୁଁ ନାହିଁ । ଆଗନ୍ତୁକାଙ୍କର ପରିଚର୍ଯ୍ୟା କର୍ମ ଶେଷ ହେବା ପରେ ରାଣୀସାହେବା ଆସି ଆମକୁ ଜଣାଇଲେ ଯେ ଆମ୍ଭଙ୍କୁ ସପରିବାର 'କଳାପାଣି' (ନିର୍ବାସନ ଦଣ୍ଡ) ହୁକୁମ ହୋଇଅଛି ଓ ସେହି ଆଜ୍ଞାପତ୍ରିକା ଘେନି ଦେଶନେତ୍ରୀ ଆମ ରାଜ୍ୟକୁ ବିଜେ କରି ଅଛନ୍ତି । ଏଡ଼େ ବଡ଼ ରାଜ୍ୟସୁଖ ଛାଡ଼ି କୁଆଡ଼େ ସାତ ସମୁଦ୍ର ଲଙ୍କା ପାରି ହୋଇ ଯିବାକୁ ହେବ । 'ହା ମୋ ରାଇଜ ! ହା ମୋ ନିଶ ଓପଡ଼ା ! ହା ମୋ ପରୀକ୍ଷିତ ଦାସଙ୍କ ଘୋଡ଼ା ! ହା ମୋ ଜଣେ ଚଢ଼ା, ଜଣେ ଡଢ଼ା, ଜଣେ ତଡ଼ା, ଜଣେ ବାଡ଼ା, ଜଣେ କୋରଡ଼ା ଘେନି ଗୋଡ଼ା । ହା ମୋ ଅକଣ୍ଟକ ରଜା ମଉଜ !' ଏହି କଥା କହୁ କହୁ ମୁଁ ଭୋ' କିନି ରଡ଼ି ଉଠିଲି । ଏ ରଡ଼ିରେ ମୋ ନିଦ ଭାଙ୍ଗିଗଲା - ଚାହିଁ ଦେଖିଲି ଯେ ଆମର ଅଳୁଆ, ଚନ୍ଦ୍ରକଣା ଚାଳଘରେ ଖଣ୍ଡିଏ କତରା ମସିଣା ଉପରେ ମୁଁ ଶାୟିତ; ନିଦ ଭାଙ୍ଗିଗଲା - ଆମ ରାଜଭୋଗ ମଧ୍ୟ ଏତିକିରେ ସରିଲା ।

ନବଭାରତ / ୨ୟ ବର୍ଷ/ ୫ମ ସଂଖ୍ୟା/ ମାଘ/ ୧୩୪୨ ସାଲ ।

# ସ୍ୱପ୍ନରେ ରାଜଧାନୀ ଯୋଗ

## ୧୯୩୫

‘ସ୍ୱପ୍ନରେ ରାଜଯୋଗ’ର ପରବର୍ତ୍ତୀ ରଚନା ସ୍ୱପ୍ନରେ ‘ରାଜଧାନୀ ଯୋଗ’ । ନବଭାରତ ପତ୍ରିକାର ତୃତୀୟ ବର୍ଷ, ୨ୟ ସଂଖ୍ୟା ୧୩୪୩ ସାଲରେ ଏହା ପ୍ରକାଶିତ । ଲେଖକଙ୍କ ଛଦ୍ମ ନାମ ଧୂର୍ମୁଷ ଧର୍ମା । କୌଣସି କାରଣରୁ ଏହି ଆଲୋଚନା ଅପୂର୍ଣ୍ଣ ରହିଛି । ଏଥିରେ ରାଜନୀତିକ ବ୍ୟଙ୍ଗ ଅବଶ୍ୟ ରହିଛି । ମାତ୍ର ଏହାକୁ ଆମେ ଓଡ଼ିଆ ଜାତୀୟବାଦୀ ଆନ୍ଦୋଳନ କୈନ୍ଦ୍ରିକ ଏକ ବିଶେଷ ଆଲୋଚନା ରୂପରେ ଗ୍ରହଣ କରିପାରିବା ।

ସଂପାଦକ

ସେଇଠଉଁ କଅଣ ହେଲା କି :-

କୋଉଠଉ କଅଣ ହେଲା ?

ଶ୍ରଦ୍ଧାସ୍ପଦ ସମ୍ପାଦକ ମହାଶୟ ଓ ପରମ ସ୍ନେହାସ୍ପଦ ‘ନବଭାରତ’ର ଦିଆ ଅଦିଆ, ସୁଧାରକ୍ଷେଣା ପାଠକ, ଉପପାଠକ, ପ୍ରପାଠକ, ଅନୁପାଠକ, ସୁପାଠକ, ଦୁଷ୍ପାଠକଗଣ ଓ ଆପଣମାନଙ୍କ ସ୍ତ୍ରୀ ଲିଙ୍ଗ, ବିପରୀତ ଲିଙ୍ଗ ଓ ନପୁଂସକ ଲିଙ୍ଗ ବାଚକ ଅବତାରମାନେ ! ଶୁଣିବାକୁ ସାବଧାନ ମଣିମା !

ସପନରେ ସାତ ସମୁଦ୍ର ଲଙ୍କା ପାରିକୁ ଯାଇ ସେଠାରେ ଯୁଗେକାଳ ଶୋଇପଡ଼ିଲି । Rip Van Winkle (ରିପ୍ ଭାନ୍ ଉଇଙ୍କଲ୍) ପରି ଉଠି ଦେଖିଲା ବେଳକୁ ଓଡ଼ିଶା ମାତାଙ୍କ ଭେକ, ଓଡ଼ିଶା ମାନଚିତ୍ରର ଆକାର, ଓଡ଼ିଶାପୁଅଙ୍କ ରୂପ ସବୁ ଲେଉଟ ଚକୁଳି ଭଳିଆ ବଦଳି ଗଲାଣି । ଆପଣମାନେ ଜାଣନ୍ତି, ଗାଢ଼ ନିଦ୍ରାରେ ସ୍ୱପ୍ନ ନବାରଦ୍ । ଖାଲି ନିଦ୍ରା କିଆଁ, ଯେତେ କଥା, ସେତେ ବସ୍ତୁ, ଯେତେ କସରତ୍ ଗାଢ଼ ବା ଗାଢ଼ା, ସେଥିରେ ବାସ୍ତବ ଦୋଷ ବା ସ୍ୱପ୍ନ ଦୋଷ ନାସ୍ତି । ଏଥିର ଫଳରେ ଧୂର୍ମୁଷ ଧର୍ମାଙ୍କ ଝର କଲମର, ଝର ସ୍ରବଣର ପ୍ରଗତି ବନ୍ଦ ହୋଇ ଯାଇଥିଲା । ଦରିଆ ପାରିରେ ନିଦୁଟା ଏଡ଼େ ଘମାଘୋଟିଆ ହୋଇଥିଲା ଯେ ମୋ ନିଦ ଭାଙ୍ଗିଲା ବେଳକୁ କିଛି ସମୟ ମୁଁ ପରଦେଶକୁ ଆସିଛି ଓ ସେଠାକୁ ଅନୁକୂଳ କରିବା ଆଗରୁ ମୋ ପାଇଁ ଜୋଡ଼ା ଶଙ୍ଖ, ଡବଲ (double)

ପେଏଁକାଳି, ତେବଲ୍ (triple) ନାଗେଶ୍ୱରୀ; ପୂର୍ବ ବର୍ଣ୍ଣନ ଓ ଉପାଧି ବିଶିଷ୍ଟ ପାଠକ ପାଠିକାଗଣ ଓ ଆମ ଭାଷାର ଅଭିଧାନକାର ମହାପ୍ରଭୁମାନେ ! ଇଂରାଜୀ Double (ଡବ୍ଲ) ଶବ୍ଦକୁ ଓଡ଼ିଆ ଡବଲ ରୂପ ଦେଲା ଭଳି Triple (ଟ୍ରିପ୍ଲ) ଶବ୍ଦକୁ ତେବଲ ରୂପ ଦେଇ ଆମ ମାତୃଭାଷାରେ ପୂରାଇବା ପାଇଁ ଆପଣମାନେ ଶବ୍ଦକୋଷରେ ଜାଗା ଛାଡ଼ନ୍ତୁ । ନଚେତ୍ ପଛରେ ପୁଣି Supplementary Volume (ପରିଶିଷ୍ଟ ଖଣ୍ଡ) ଛାପିବାକୁ ପଡ଼ିବ । ଆଜିକାଲିର ପଛିମା ହାଉଆର ତୋଡ଼ରେ ଇଂରାଜୀ ଓ ବିଦେଶୀ ଶବ୍ଦମାନ ଯେଉଁପରି ବେଗରେ ଭାସି ଆସି ଓଡ଼ିଶୀ ସାରସ୍ୱତ ବନ୍ଦରମାନଙ୍କରେ ମେଞ୍ଚାକୁ ମେଞ୍ଚା ଲାଗିବାର 'ସୁରୁ' ହେଲାଣି, ସେଥିକି ନଜର ରଖି ଅଭିଧାନମାନଙ୍କ ମଝିରେ ମଝିରେ ଗୋଟାଏ ଲେଖାଏଁ ଦିପିଠିସାଧା ଉଡ଼ା ପୃଷ୍ଠା (fly leaf) ଛାଡ଼ି ନ ଗଲେ ଚଳିବ ନାହିଁ । ବିଦେଶୀ ଶବ୍ଦମାନଙ୍କୁ ଅବିକଳ ଆମ ଭାଷାକୁ ଉଠାଇ ଆଣିଲେ ସମସ୍ତେ କହିବେ, ଏଗୁଡ଼ାକ ଭାଷା ରାଜ୍ୟରେ ଚୋରି । ଅତଏବ ନଜିର୍ ଧରି ଶବ୍ଦମାନଙ୍କରେ ଗେବ ମାରି, ତାଙ୍କୁ ବେରୂପ କରି ଆମ ଭାଷାରେ ଠିଆ କରାଇ ଦେଲେ ଭାଷାର ଶବ୍ଦ ସମ୍ପଦର ଅଭିବୃଦ୍ଧି ହେବ; ଏଣେ 'ଆଧୁନିକ' ଭାଷା ରାଜ୍ୟରେ 'ପ୍ରଗତି' ନ ହେଉଛି ବୋଲି କେହି ଆମକୁ ଦୋଷ ଦେଇ ପାରିବେ ନାହିଁ । ଆମ ଓଡ଼ିଶୀ ବାବୁଆଣୀ, ସାଆନ୍ତାଣୀ, ରାଙ୍କୋଡ଼ିଆଣୀମାନେ, ସାହାବାଣୀ ବେଶ ସାଜିଲା ବେଳକୁ ଲୋଥ, ଗୁଣା, ନାକଚଣା, ବେସରପିନ୍ଧା ନାକ ପୁଡ଼ାର ଛିଦ୍ରରେ ଓ କାପପିନ୍ଧା କ୍ୟାଦାନଯୁକ୍ତ କାନରି କଣାରେ ରବର ଖଳିର ଗୋବ ମାରିଲା ପରି ଓ ଟଭାଫାଳ ଖୋଷା, ମୁଚୁଳାଦିଆ ଜଟ ବା ବଙ୍ଗାଳୀ ଖୋପା ବଦଳରେ ବବୁରି କାଳ (Bobbed hair) ସାଜିଲା ଭଳି ବିଦେଶୀ ଶବ୍ଦମାନଙ୍କୁ ଓଡ଼ିଆଣୀ ବେଶରେ ସଜାଇ ଦେଲେ ନଟ ଛିଣ୍ଡି ଯିବ - ଇତି ଲେଖନକାରସ୍ୟ ଟୀକା, ଚଉବଲ୍ (quadruple) ବ୍ୟାଣ୍ଡବାଜା, ପଞ୍ଚୁବଲ୍ (Pentuchord) ସାରଙ୍ଗୀ ବାଜିଥିଲା, ସେ କଥା ସବୁ ମୋର ପାସୋର ହୋଇଗଲା । କିନ୍ତୁ ନିଦଟା ଫରଚା ହୋଇ ଭାଙ୍ଗିଗଲାରୁ ଜାଣିଲି ଯେ ମୋ ମଗଜ ଥଣ୍ଡା ହେବା ପାଇଁ ମୁଁ ବିଲଙ୍କାକୁ ବଦଳି ହୋଇ ଆସିଛି । ମୋ ରାଇଜରେ ସିନା ହାତ ଗୋଡ଼, ପେଟ ପିଠି, ନାକ ନିଶ, କଲମ ବଲମ ଖେଳାଇବାକୁ ମୋତେ ସୁବିଧା ଥିଲା  ପର ମୁଲକରେ ତା ସବୁ କରି ହବ ନାହିଁ । ଏଥିପାଇଁ ମୋର ଇହରାଜ୍ୟ (ଅର୍ଥାତ୍, ମୋ ନିଜର ରାଜ୍ୟରେ) କରିଥିବା ପାପ ପୁଣ୍ୟ ପାଇଁ ପର ରାଜ୍ୟ (ଅର୍ଥାତ୍ ମୋର ନିର୍ବାସନ ରାଜ୍ୟ)ରେ ଯଥାକ୍ରମେ ପ୍ରାୟଶ୍ଚିତ୍ତ ଓ ଶାନ୍ତିବାଚନ କରିବ ବୋଲି ସ୍ଥିର କଲି । ଗହମ ନିଦ ସିନା ଭାଙ୍ଗିଗଲା, କିନ୍ତୁ ପୁଣି ଟିକିଏ ଗଡ଼େଇ ତଡ଼େଇ ହୋଇ କଡ଼ ଲେଉଟାଇ ଶୋଇଲି । ସେତେବେଳକୁ ଭୋର୍ ୩ଟା ବେଳ । କାରଣ, ଏ ତ ମୋ ରାଇଜ ନୁହେଁ ଯେ, ମୁଁ ଦିନଯାକ ଶୋଇଲେ ଓ ରାତିଯାକ ଦରକାର କଲେ ମୋ ରାଇଜର ପାତ୍ରମନ୍ତ୍ରୀ ଓ ମନ୍ତ୍ରୀଙ୍କଠାରୁ ତାଙ୍କମାନଙ୍କର ଘରର ସ୍ତ୍ରୀବାଳକ, ପିଲାକବିଲା, ବାଲବଚ୍ଚା, ଚାକର ନଉକର, ଘୋଡ଼ା ଘୋଡ଼ାଳୁଆ, ଗଧ ଗଧପିଲା, କୁକୁର ବିରାଡ଼ି

ପର୍ଯ୍ୟନ୍ତ ସମସ୍ତେ ଦିନଯାକ ଶୋଇବେ ଓ ରାତିଯାକ ଖଡ଼ା ପହରା ଜାଗତିଆର ରହିବେ । ଅତଏବ ପର ଦେଶର ଚାକର ଚାକରାଣୀଙ୍କ ନିଦ୍ରାଭଙ୍ଗ ହେବା ପର୍ଯ୍ୟନ୍ତ ମତେ ବିଛଣାରେ ପଡ଼ି ରହିବାକୁ ହିଁ ହେବ । ମୋ ରାଇଜରେ ପାଖଲୋକଙ୍କ ପିଠି ଚୁଟି ସଙ୍ଗେ ମୋ ହାତ ଗୋଡ଼ର ଓ କୋରଡ଼ା ପାଣ୍ଠୋଇର ସୂର୍ଯ୍ୟବନ୍ଧୁତା କଥା ପଦ ପଦକେ ଲାଗିଥାଏ; କିନ୍ତୁ ପର ଦେଶରେ ଚାକର ଚାକରାଣୀଙ୍କୁ କୌଣସି ଆଦେଶ ଦେବାକୁ ହେଲେ 'Please do this' (ଅନୁଗ୍ରହ କରି ଏ କାର୍ଯ୍ୟଟି କରିଦିଅ) ଓ ସେମାନେ ଆଦେଶ ପାଳନ କରି ସାରିବାର ଶେଷରେ 'Thanks' (ମୁଁ ତୁମ୍ଭକୁ ଧନ୍ୟବାଦ ଦେଉଛି), ଏହି ବୋଲିମାନ ଆଉଡ଼ାଇବାକୁ ପଡ଼େ । ଏପରି ଅବସ୍ଥାରେ ପର ଦେଶର ଠିକା ଚାକର ଓ ଚାକରାଣୀମାନଙ୍କ ହାଜିରା ସମୟ ପର୍ଯ୍ୟନ୍ତ ବିଛଣାରେ ଗଡ଼େଇ ତଡ଼େଇ ହେବା ଛଡ଼ା ଉପାୟାନ୍ତର ନାସ୍ତି । ଏକେତ 'ସ୍ୱପ୍ନରେ ରାଜଯୋଗ,' ତା ଉପରେ ସପନରେ ପୁଣି ଛାଇ-ନିଦ ଓ ଛାଇ-ସପନ ଆସି ମତେ ଗିରଫ କଲେ ।

ବହୁତ ସ୍ୱପ୍ନତତ୍ତ୍ୱବେତ୍ତା ବହୁ ଗବେଷଣା କରି ସ୍ଥିର କରିଅଛନ୍ତି ଯେ, ସ୍ୱପ୍ନ ବାସ୍ତବ ଅନୁଭବର ବିପର୍ଯ୍ୟସ୍ତ ଓ ଆଗଲୀପିଛଲୀ ଅବତାର ମାତ୍ର । ଆମେ ନିଜେ ଏ ବାସ୍ତବ ଜଗତରେ ଯାହା ଅଙ୍ଗେ ନିଭେଇ ଥାଉ, ସ୍ୱପ୍ନରେ ସେହିମାନ ଭିନ୍ନ ଭିନ୍ନ ଭଙ୍ଗୀରେ ଓଡ଼ାଙ୍କ, ମେଲାଙ୍କ, ଫେଡ଼ାଙ୍କ, ହରି ଗୁଣରେ ଦେଖୁଁ । ସେ ଦିନ ସପନରେ ସ୍ୱଦେଶରୁ ଖଣ୍ଡିଏ ଚିଠି ପାଇଥିଲି ଯେ, ନୂଆଗଡ଼ା ଓଡ଼ିଶା ପ୍ରଦେଶର 'ରାଜଧାନୀ' ଘେନି ଓଡ଼ିଶାରେ ବାହାରେ ଭିତରେ ଆଜକୁ ତିନି ମାସ ହେଲା ତୁଛା ତଷୁ କୁଟା, କୁହୁଡ଼ି ପହଁରା, ଧୂଆଁବାଡ଼ିଆ ଓ ଶୂନ୍ୟ କୁହାଟ ଲାଗିଛି ଏବଂ ଚତୁର୍ମାସ୍ୟାରେ ହିଡ଼ ତଳେ କଙ୍କଡ଼ା ଗାଡ଼ ମୁହଁରେ ମାଟି ଗାଳିଲା ଭଳି ପତ୍ରପତ୍ରିକା ମହଲରେ ମୂଷା ଗଳା ଓ ଜିଆ ଗଳା ମାଟି ହୁଙ୍କା ଉଞ୍ଚରେ ଗଦା ହେଉଛି ।

ଓଡ଼ିଶା ମାତାଙ୍କ ଭାଗ୍ୟରେ ବହୁତ ଟଣାଟଣି, ଝିଙ୍କା ଝିଙ୍କି, ଓଟରା ଓଟରି ଘଟିଅଛି । ଦିନା କେତେ ଓଡ଼ିଆ ମୁଲକ ହୋଇଥିଲା କଳିଙ୍ଗ, ତାପରେ ହେଲା ଓଡ୍ର, କୋଶଳ । ଦିନା କେତେ ରାଜତ୍ୱ କଲେ କର ବଂଶ, ଆନ୍ଧ୍ର ବଂଶ, କେଶରୀ ବଂଶ, ଗଙ୍ଗ ବଂଶ, ଭୋଇ ବଂଶ - ଏହିପରି କେତେ ବଂଶୀୟ ଓଡ଼ିଶୀ ରାଜାଙ୍କ କବଜରେ, ତାପରେ ପଠାଣଙ୍କ ରାଜଗୀରେ, ପୁଣି ମୋଗଲଙ୍କ ସାମ୍ରାଜ୍ୟରେ, ପୁଣି ମରହଟ୍ଟାଙ୍କ ଅଧିକାରରେ ରହି ଆଖର ଦେଗ୍ରାମର ସନ୍ଧି ଦ୍ୱାରା ଇଂରାଜମାନଙ୍କ ପାଣି ଗ୍ରହଣ କଲା । ଇଂରେଜମାନେ ଓଡ଼ିଆ ମୁଲକରୁ ଚିରୁଡ଼ାଏ ମେଦିନୀପୁର ସଙ୍ଗେ, ଛେଲାଏ ଗଞ୍ଜାମ ସଙ୍ଗେ, ଫଡ଼ାଏ ମଧ୍ୟପ୍ରଦେଶ ରାୟପୁର ସଙ୍ଗେ ଓ ଅଠର ଗଡ଼ଜାତ ସହିତ ଗଣ୍ଡିଟାକୁ ମାହାଲ୍ ସରକାର୍ ମିଳିନିୟଦ୍ ଖାସ୍ ହାଇବୁଲ୍ ଦେ କଟକରେ ଗୁଞ୍ଜାଗୁଞ୍ଜି କରି 'ଯଥା କରପଇଠଂ ତଥା ଶାସିତଂ' କରି ଗୁଜରାନ ମେଣ୍ଟାଇ ନେଲେ । ଏହି ଅବସ୍ଥାରେ ଓଡ଼ିଶୀ ନେତାମାନେ, ଓଡ଼ିଶୀ ରାଜନୀତିକ ପଣ୍ଡାମାନେ, ଓଡ଼ିଶୀ ରାଜନୀତିକ କାଳିଶିମାନେ ହୁରି ଛାଡ଼ିଲେ - ଆମର ସବୁ ଓଡ଼ିଆ

ମୁଲକକୁ ଏକ ଶାସନ-ଗେରଦରେ ପୂରାଅ; କୋଟିଏ ଓଡ଼ିଆଙ୍କୁ ଗୋଟିଏ କର, ଲକ୍ଷେ ଓଡ଼ିଆଙ୍କୁ ପକ୍ଷେ କର । ଏ ଆନ୍ଦୋଳନ ଲାଗିଲା ପ୍ରାୟ ୪୦ ବରଷ । ଇତି ମଧ୍ୟରେ 'ବଡ଼ିଆ ନାଗପୁର' ହତାରୁ 'ସମ୍ବଲପୁର' ଜିଲ୍ଲାକୁ ଓ କେତେକ ରାଜ୍ୟକୁ ଆଣି ସରକାର ଓଡ଼ିଶାରେ ପୂରାଇଲେ ଏବଂ 'ଛୋଟିଆ ନାଗପୁର' ହତାରୁ ଗୋଟି କେତେ ଗଡ଼ଜାତକୁ ଆଣି ଓଡ଼ିଶାରେ ମିଶାଇଲେ । ଏହା ମଧ୍ୟରେ ଫିଲିପ୍-ଡଫ୍ ସାହେବ ଦ୍ୱୟ ବାରଦ୍ୱାର ବୁଲି ବୁଲି ରିପୋର୍ଟ କଲେ - ଗଞ୍ଜାମର କେତେକ ଅଂଶ ଓଡ଼ିଆ ମୁଲକ ଅଟେ ଓ ତାହା ଓଡ଼ିଶାକୁ ଆସିବା ଉଚିତ ।

ପୂର୍ବେ ଓଡ଼ିଶାର ଗଡ଼ଜାତମାନେ ଓଡ଼ିଶା ଗେରଦରେ ଥିଲା । ତପ୍‌ରେ ଦିନାକେତେ ଓଡ଼ିଶା ଗଡ଼ଜାତମାନ ଓଡ଼ିଶା କରଦ ମାହାଲ (Orissa Tributary Mahals), ତପ୍‌ରେ ଓଡ଼ିଶା କରଦ ରାଜ୍ୟ (Orissa Feudatory States), ତପ୍‌ରେ ଓଡ଼ିଶା ରାଜ୍ୟ (Orissa States) ନାମ ଗ୍ରହଣ କଲା । ପହିଲେ ଏ ଗଡ଼ଜାତମାନ ଓଡ଼ିଶାର କମିସନର ସାହେବ (Superintendent of Tributary Mahals)ଙ୍କ ତନଖିରେ ଥିଲା । ପରେ ଜଣେ ପୋଲିଟିକାଲ ଏଜେଣ୍ଟ (Political Agent)ଙ୍କ ପୃଥକ୍ ତନଖିରେ ରହିଲା । ପୋଲିଟିକାଲ ଏଜେଣ୍ଟ ପ୍ରାଦେଶିକ ଲାଟସାହେବଙ୍କ ଅଧୀନ ପାଆନ୍ତି । ଏଣେ ଅନ୍ୟ ସ୍ୱଦେଶମାନଙ୍କରେ ଥିବା ଓଡ଼ିଆ ମୁଲକମାନଙ୍କୁ ଓଡ଼ିଶାରେ ମିଶାଇ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଢ଼ା ହେବା କଥା ଚାଲିଥାଏ, ତେଣେ ସରକାର ଓଡ଼ିଶା ଗଡଜାତମାନଙ୍କ ଠାରୁ 'ଓଡ଼ିଶା' ଶବ୍ଦ ଉଠାଇ ଦେଇ ସେମାନଙ୍କୁ Eastern States Agency (ପୂର୍ବ ରାଜ୍ୟପୁଞ୍ଜ)ରେ ଗୁଞ୍ଜିଦେଲେ ଓ ସେମାନେ ପ୍ରାଦେଶିକ ଲାଟଙ୍କ ହାତରୁ ହୁଗୁଳି ଯାଇ ବଡ଼ଲାଟଙ୍କ ଏଜେଣ୍ଟଙ୍କ ହାତରେ ରଖାଗଲା । ଏହାଦେଖି ''ଶାଶୂ ମଲା ବୋହୂ ବେଇଲା, ଯେଉଁ ତିନି ପ୍ରାଣୀକି ସେହି ତିନି ପ୍ରାଣୀ ହେଲା'' ଢଗର ବିଶେଷ୍ୟ କଥନ ଓଡ଼ିଆ ଜାତି ଆଗରେ 'କଳାପଟା'ରେ ଅଙ୍କିତ ହୋଇଗଲା । ଫଳତଃ ଏହି କଥା ହେଲା ଯେ, ଓଡ଼ିଶା ପ୍ରଦେଶ ଗଢ଼ାହେଲା ବେଳକୁ, ମଧ୍ୟପ୍ରଦେଶ ହତାରୁ ଓ ମାନ୍ଦ୍ରାଜ ହତାରୁ ଚେନାଏ ଲେଖାଏଁ ମିଶିଲା ବେଳକୁ ଓଡ଼ିଶା ଗଡ଼ଜାତ ଛେଲାକ ଓଡ଼ିଶାରୁ ଖସିଲା । ଗୁଡ଼ିଏ ପ୍ରକୃତ ଓଡ଼ିଆଭାଷୀ ଅଞ୍ଚଳ ଓଡ଼ିଶା ପ୍ରଦେଶରେ ନ ମିଶି ବଙ୍ଗଳା ହତାରେ, ମଧ୍ୟପ୍ରଦେଶ ହତାରେ ଓ ମାନ୍ଦ୍ରାଜ ହତାରେ ରହିଗଲା । ଫଳରେ ଆମ ଓଡ଼ିଶୀ ନେତାଙ୍କର ୪୦ ବର୍ଷ ଧୁମାକୁଟା ପରିଶ୍ରମରେ ଏହିତା ହେଲା ଯେ, ଆଗେ ଓଡ଼ିଆ ମୁଲକ ୪ ପ୍ରଦେଶରେ ଥିଲା (ବଙ୍ଗଳା, ବିହାର, ମଧ୍ୟପ୍ରଦେଶ, ମାନ୍ଦ୍ରାଜ) ଓ ବର୍ତ୍ତମାନ ଓଡ଼ିଆ ମୁଲକ ଛଅଟି ଶାସନର ଅଧୀନ ହେଲା । ଅର୍ଥାତ୍ ମେଦିନୀପୁର ଆଦି ବଙ୍ଗଳାରେ, ଚାଇଁବସା, ସିଂହଭୂମ ବିହାରରେ, ଫୁଲଝର ଆଦି ମଧ୍ୟପ୍ରଦେଶରେ, ମଞ୍ଜୁଷା ବୋଡ଼ାରସିଂଗି ଆଦି ମାନ୍ଦ୍ରାଜରେ, ଗଡ଼ଜାତଯାକ ଇଷ୍ଟର୍ଣ୍ଣ ଷ୍ଟେଟରେ ଓ ବାକିତକ ନୂଆ ଗଢ଼ା ଓଡ଼ିଶା ପ୍ରଦେଶରେ ସାମିଲ ହେଲେ । ନେଉଳ ନାଗ ସାପକୁ ଧରି ତାକୁ ୩ ଖଣ୍ଡ କରି କାଟେ, ଗଣ୍ଡି ଖଣ୍ଡିକ ଖାଏ ଓ ଶେଷକୁ ମୁଣ୍ଡ ଓ ଲାଞ୍ଜ

ଦି'ଖଣ୍ଡକୁ ଯୋଡ଼ି ସାପକୁ ଜିଅନ୍ତା କରି ଛାଡ଼ିଦିଏ; ସାପ ତା ସୁଖେ ଜଙ୍ଗଲକୁ ଯାଏ । ଆମ କଥା ସେହିତା ହେଲା । ଆମର ପଚପଚିଆ, ଚିକ୍‌କଣିଆ ମଝି ଖଣ୍ଡକ କଢ଼ା ହୋଇ ପୂର୍ବ ରାଜ୍ୟପୁଞ୍ଜର ପେଟରେ ପଶିଲା । ମୁଣ୍ଡ ଓ ଲାଞ୍ଜ ଯୋଡ଼ା ହୋଇ ଗୋଟାଏ ଜୀଅନ୍ତା ପ୍ରଦେଶ ହେଲା । ନେଉଳଭାଇ ସିନା ଆମର ମଉଷଧିର କରାମତରେ ସାପର ମୁଣ୍ଡ ଲାଞ୍ଜ ଯୋଡ଼ି ତାକୁ ଜୀଅନ୍ତା କରି ଛାଡ଼େ । ଦେଖାଯାଉ ଆମ ସରକାର ଏହି ମୁଣ୍ଡ ଲାଞ୍ଜ ଯୋଡ଼ା ପ୍ରଦେଶକୁ କେଉଁ ଅମର ମୌଷଧି ବଳରେ ବଞ୍ଚାଇ ଦେବେ ।

ଆନନ୍ଦର ଓ ଆଶାର କଥା ଏହି ଯେ, ମୁଣ୍ଡ ଲାଞ୍ଜ ଯୋଡ଼ା ହୋଇ ଗଢ଼ା ହୋଇଥିବା ପ୍ରଦେଶର ଜୀବନୀଶକ୍ତି ଥିବାର ଖୁବ୍ ସନ୍ତୋଷଜନକ ପ୍ରମାଣ ଏହି ମାସ ତିନୋଟିରେ ପ୍ରମାଣିତ ହୋଇ ଗଲାଣି । ଏ ରାଜଧାନୀ ବିଷୟରେ ଓଡ଼ିଶା ପ୍ରଦେଶ ତମାମ ଯେଉଁ ଜାଉଁଳି ପାଲା, ଦାଇକା ମାଡ଼, ଚଅଁର ଡିହ, ମୃଦଙ୍ଗ ଫଟା, ଗାୟକଙ୍କ କଣ୍ଠ ଫଟା କୀର୍ତ୍ତନ ଲାଗିଗଲାଣି, ଏଥିରେ ବହିର୍ଜଗତର କାହା ଜିଭରେ ହାଡ଼, କାହା ଲେଡ଼ିରେ ବାଳ ଅଛି ଯେ, ଓଡ଼ିଆ ଜାତିର ମେରୁଦଣ୍ଡ ନାହିଁ, ଓଡ଼ିଆ ଜାତିର ଧଡ଼ରେ ଜୀବନ ନାହିଁ, ଓଡ଼ିଆଙ୍କ ଜିଭ ବଳ ଓ କଣ୍ଠ ବଳ ନାହିଁ, ଏହା କହି ଦେବ ? ଯା ହେଉ, ମୁଁ ତ ପୂର୍ବଦିନରୁ ନବ ଓଡ଼ିଶା ପ୍ରଦେଶର ଭାବୀ ରାଜଧାନୀ ବିଷୟରେ ଆନ୍ଦୋଳନ କଥା ଚିଠି ପାଇଥାଏଁ, ମୁଁ ଗଡ଼ପଡ଼ ହଉ ହଉ ମୋତେ ଛାଇ ନିଦ ଲାଗିଗଲା । ମତେ ଲାଗିଲା ମୁଁ ଆସି ପୁଣି ମୋ ରାଇଜରେ, ମୋ ଦରବାର ଘର ପାଖରେ ରଙ୍ଗମହଲରେ ବିଜେ ଓ ମୋ ପାଳଚୁଣ୍ଡା ମନ୍ତ୍ରୀଭାଇ, ମୋ କଟୁଆଳଭାଇ, ମୋ ସାଧବଭାଇ, ମୋ ଓକିଲଭାଇ ଓ ପୋଇଲୀ ପରିବେଷ୍ଟିତା ମୋ ମାହାରାଣୀ ସମସ୍ତେ ସେଠାରେ ଯଥାସ୍ଥାନାବସ୍ଥିତ ହୋଇ ତିଆର ହୋଇ ହାଜର । ଏହି ସମୟରେ ମନ୍ତ୍ରୀଭାଇଙ୍କ ଇସାରାକ୍ରମେ ମନ୍ତ୍ରିଆଣୀ ପାଞ୍ଚଜଣ ସ୍ତ୍ରୀଲିଙ୍ଗଧାରିଣୀଙ୍କୁ ଆମ ଛାମୁରେ ହାଜର କରାଇଲେ । ପୂର୍ବରୁ ଶୁଣା ନାହିଁ, କି ଜଣା ନାହିଁ, କି ସମନ ନାହିଁ, କି ୱାରେଣ୍ଟ ନାହିଁ, ଏମାନେ କିଏ ଓ କାହିଁକି ଆସିଲେ ? ଆମର ଓ ଆମ ପାଟମଣିମାନଙ୍କ ନେତ୍ର ବକ୍ତ୍ର ବିକାରରୁ ଆମ ସିଆଣିଆ ମନ୍ତ୍ରୀ ଆମ କୌତୂହଳ ବୃତ୍ତି ଚେଇଁ ଉଠିବାର ସୁରାକ୍ ପାଇ ତାଙ୍କ ବିବୃତି ଆରମ୍ଭ କଲେ । ମନ୍ତ୍ରୀ କହିଲେ - "ପାଟ ମହାରାଣୀଙ୍କ ପାଇଁ ଛାମୁଙ୍କର ଯେଉଁ ନୂଆ ଉଆସ (ଆମ ପାଟମହାଦେଈ ରତ୍ନମଣିଙ୍କ ନାମ ଅନୁସାରେ ଏଥିର ନାମ 'ରତ୍ନପୁର' ଦିଆଯିବାର କଳ୍ପନା ଜଳ୍ପନା ଚାଲିଅଛି) ତୋଳା ଯିବାର ସ୍ଥିର ହେଉଅଛି, ସେଥିର ଅଧିଷ୍ଠାତ୍ରୀ ଦେବୀ (ଗ୍ରାମ ଦେବତୀ) ହେବାର ଦାବି କରି ଏ ପାଞ୍ଚଜଣ କାଲି ରାତି ଅଧରେ ମୋ ସାଙ୍ଗରେ ଆସି ଭାରି କଟାଳ କରି ଅଛନ୍ତି । ମୁଁ ତାଙ୍କୁ ଜବାବ ଦେଇଥିଲି ଯେ ଆଜି ରଙ୍ଗ ମହଲରେ ଡବଲ୍ ଶ୍ରୀଛାମୁଙ୍କ ଦ୍ୱାରା ଏ କଥା ଦରିଆଫତ୍ ହେବ । ସେହି ଦାବି ବିଷୟ ପକାଇବା ପାଇଁ ସେମାନେ ଆଜି ସିଂହଦୁଆରରେ ପହଞ୍ଚିବାରୁ ମୁଁ ତାଙ୍କୁ ସିଧାଏ ସିଧାଏ ରଙ୍ଗ ମହଲକୁ ଅଣାଇ ଅଛି ।"

ଆମର ନୂଆ ରାଜ୍ୟରେ ପୁରୁଷାନୁକ୍ରମେ ଆମ ରାଜବଂଶର ଉଆସ ହୋଇ ରହିବା ଉଦ୍ଦେଶ୍ୟରେ ଓ ଆମ ପାଟମହାରାଣୀଙ୍କ ନାମକୁ ଚିର ସ୍ମରଣୀୟ କରିବା ପାଇଁ ଆମେ ଆମ ପୂର୍ବ ପୁରୁଷଙ୍କ ମରହଟିଆ ଉଆସକୁ ଭାଙ୍ଗି ଦେଇ ନୂଆ ନହର୍ କରିବାକୁ ବସିଥାଉଁ । ଏପରି ସ୍ଥଳରେ ଏଥିରେ ଯେଉଁ ଯେଉଁ ଠାକୁରାଣୀ ପ୍ରତିଷ୍ଠା କରାଯିବେ, ତାଙ୍କର ସବୁ କଥା ନ ବୁଝି, ତାଙ୍କୁ ଉତ୍ତମ ରୂପେ ନ ପରଖି, ତାଙ୍କ ସୁନ୍ଦରପଣ, ତାଙ୍କ ଦିହ ମୁଣ୍ଡି ଗଢ଼ଣ, ତାଙ୍କ ପହରଣ, ତାଙ୍କ ବଳବହପ, ତାଙ୍କ କରାମତ ଆଦି ଟିକକ ଠଉଁ ନିଖକ ପର୍ଯ୍ୟନ୍ତ ନ ବୁଝି କିପରି ସ୍ଥାନ ଦେବା ? ଏହି ଲିହାଜରେ ଆମେ ଆମ ମାହାରାଣୀ (ମାହାରର ସ୍ତ୍ରୀଲିଙ୍ଗ ନୁହେଁ, ମାହାରାଜଙ୍କର ବିପରୀତ ଲିଙ୍ଗ)ଙ୍କ ସଙ୍ଗେ ସହ୍ଲା କରି ମନ୍ତ୍ରୀଙ୍କୁ କହି ଆଜ୍ଞା ହେଲୁଁ - ''ଦାବିଦାରିଆଣୀମାନଙ୍କର ଜଣ ଜଣ କରି ଆଗ କରି ଦିହ-ତଲାସ କରାଯାଉ (କାଳେ କେହି ପହରଣ ଭିତରେ ହତିଆର ରଖିଥିବେ) । ତା ପରେ ସେମାନଙ୍କଠାରୁ କଲମି ଇଜାହାର ଗ୍ରହଣ କରାଯିବ ଓ ତପୂରେ ଜଣ ଜଣଙ୍କର ଦାବି ସଂବନ୍ଧରେ ଲିଖିତ ଅରଜି, ଜବାବ୍ ନିଆଯିବ ଏବଂ କାହାର କେଉଁ ନୈବେଦ୍ୟ ପ୍ରିୟବସ୍ତୁ, ତାହା ବୁଝାଯିବ । ତା ପରେ କାହା ମୁଣ୍ଡରେ ରାଜଧାନୀ-ଶାଢ଼ି ବନ୍ଧାଯିବ, ତାହା ଫଏସଲ୍ କରାହେବ ।''

ଏହା ଶୁଣି ମନ୍ତ୍ରୀ ସେମାନଙ୍କୁ ସବୁ ରଙ୍ଗମହଲରୁ ପଦାକୁ ନେଲେ ଓ ଜଣ ଜଣ କରି ତଲାସି ନେଇସାରିବା ପରେ ପ୍ରଥମେ ଆଣି ଆମ ଛାମୁରେ ହାଜର କରାଇଲେ ଜଣକୁ ।

୧. ପ୍ରଥମେ ଆସିଲେ ୧୨ ବର୍ଷ ବୟସ୍କା ବାଳିକା । ତାଙ୍କ ପରିଧାନ ରାଉସାପାଟଣା ଶାଢ଼ି ତା ତଳେ ଜାକେଟ୍ । ମୁଣ୍ଡରେ ବଙ୍ଗାଳିଆ ଖୋପା । ଅଳଙ୍କାର - କାନରେ ମାକଡ଼ି, ନାକରେ ନୋଲକ, ହାତରେ ତାଲା ଓ ସରୁଆ ସରୁଆ ଚୁଡ଼ି (ଆମ ଓଡ଼ିଶୀ ପଚିଶ ପଳିଆ ଚୁଡ଼ି ନୁହେଁ - ଦୁଇ ହାତର ୬ ପଟ ଚୁଡ଼ିର ଓଜନ ହେବ ଦୁଇତୋଳା), ବେକରେ ଗୋପ, ଗୋଡ଼ରେ ମଲ । ତାଙ୍କ ଠାରୁ ନିମ୍ନଲିଖିତ ଭାବରେ କଲମୀ ଇଜାହାର୍ କଲମ ବନ୍ଦ କରାଗଲା -

''ମୋ ନାମ ଚଣ୍ଡୀ ଠାକୁରାଣୀ । ମୋ ରହଣି କିଲା ଭିତରେ ନଅ ମହଲା ଦେଉଳ । ମୋ ପ୍ରିୟବସ୍ତୁ 'ମାହାଲଦା'ର ପାଣି, 'ଲଡ଼ିଆ' ଓ କାଳିଆ ବୋଦା । ମୋ ସେବକ ବ୍ରାହ୍ମଣ ଜାତି । ମୁଁ ଯେଉଁଠାରେ ପୂଜା ପାଇବି, ସେଠାକୁ ରୋଗ ବୈରାଗ କିଛି ଛୁଇଁବ ନାହିଁ । ମୋର ପ୍ରଧାନ ପର୍ବ ବାଲିଯାତ୍ରା ।''

୨. ଦ୍ୱିତୀୟରେ ଆସିଲେ ୬୦ ବର୍ଷର ବାଳିକା । ତାଙ୍କ ପରିଧାନ ରଣପୁରୀ ଶାଢ଼ି, ମାଣିଆବନ୍ଧି ତା ତଳେ ପିମ୍ପୋଲିଆ ମିରିଜେଇ; ମୁଣ୍ଡର ଖପୁରି ଉପରେ ଲମ୍ବ ଭାବରେ ଠିଆ ଖୋଷା ବା ଜୁଡ଼ା । ଅଳଙ୍କାର - କାନରେ କାପ, ମଲାକଢ଼ି, ନାକରେ ନାକଚଣା, ଦଣ୍ଡି, ଫୁଲଗୁଣା ବେକରେ ଅଧୁଲିମାଳ ଅଣ୍ଟାରେ ଦଉଡ଼ିଆ ଚନ୍ଦ୍ରହାର ଗୋଡ଼ରେ ବଳା,

ପାହୁଡ଼, ଅଙ୍କୀ, ହାତରେ ଖଡ୍ଡୁ, ପଇଞ୍ଝ, ଇଡ଼ିଂଶୀ ଚୁଡ଼ି ବାହାରେ ବିଦ, ବାଙ୍କ ଡେଉଁରିଆ । ତାଙ୍କ ଇଜାହାର -

''ମୋ ନାମ ଭଗବତୀ । ମୋ ବୟସ ୬୦ ବର୍ଷ । ମୋ ରହଣି ଦରିଆପାରି ଟାପୁରେ ଦି'ମହଲା ଦେଉଳ । ମୋ ପ୍ରିୟବସ୍ତୁ - ଦିବ୍ୟ ବାସୁମତୀ ଚାଉଳର ପଖାଳ, ବିଛାବାଳିଆ ଚୁଙ୍ଗୁଡ଼ି । ଚିଲିକା ପାଣି ମୋର ଉପାଦେୟ ଭୋଗ । ମୋର ପ୍ରଧାନ ପର୍ବ ପଣା ସଂକ୍ରାନ୍ତି ଓ ଝାମୁଯାତ । ମୋ ସେବକ ପାଇକ ଜାତି ।''

୩. ତୃତୀୟରେ ଆସିଲେ ୫୦ ବର୍ଷ ବୟସର ଯୁବତୀ । ତାଙ୍କ ପରିଧାନ ତଣିଆ ବଡ଼ସାର, ଶାଢ଼ି । ମଧ୍ୟାଙ୍ଗରେ କାଞ୍ଚଲା । ସର୍ବାଙ୍ଗରେ ତେଲଙ୍ଗା ପହରଣ । ମୁଣ୍ଡରେ ବେକର ବାମ ପାର୍ଶ୍ୱକୁ ଢଳିଥିବା ଦକ୍ଷିଣୀ ଖୋଷା । କାଖେଇଛନ୍ତି ଗୋଦାବରୀ ରଙ୍ଗ ଶାଢ଼ି ପିନ୍ଧା ମାଇକିନିଆ ଝିଅଟିଏ, ତା ପିଠିକୁ ଗୋଟିଏ ବେଣୀ ଲମ୍ବିଛି । ଅଳଙ୍କାର - ମୁଣ୍ଡରେ ଦକ୍ଷିଣୀ ଟଭାଫାଳିଆ ବାଙ୍କ ଖୋଷାରେ ସେବତୀ ଫୁଲ ଗୋବ, କପାଳରେ ଚନ୍ଦ୍ର ରାଗଡ଼ି, କେତକୀ, ବେକରେ ଚାପସରି, ହାତରେ ଗୁଞ୍ଜର, ହାତଖଡ୍ଡୁ, କାଚ କାନରେ ଫାସିଆ, ମଲକଡ଼ି, ବାଉଲି, ତଳେ ନୋଳି ନାକରେ ଦଣ୍ଡି ଅଣ୍ଟାରେ ଓଡ଼ିଆଣୀ ଗୋଡ଼ରେ ପାହୁଡ଼ । ସେ କହିଲେ -

''ମୋ ନାଁ ତାରା । ମୋ ରହଣି ସମୁଦ୍ର କୂଳିଆ ଟାଙ୍ଗର ଭୂଇଁରେ ଦି'ମହଲା ଝିଙ୍କର ଛାଉଣି ଦେଉଳ । ମୋ ପ୍ରିୟ ଖାଦ୍ୟବସ୍ତୁ ଚିଡ଼ାପାଣ୍ଡୁ, ଗୁରୁପାଣି, ମିରିପିକାଇଲୁ, କୁକୁଡ଼ା ବୋଦା ଓ ଋଷିକୁଲ୍ୟା ପାଣି । ମୋ ସେବକ-କାଳିଞ୍ଜୀ ବା କାଳିନ୍ଦୀ ଜାତି । ମୋର ପ୍ରଧାନ ପର୍ବ - ଠାକୁରାଣୀ ଯାତ୍ରା । ଅତିରିକ୍ତ ଖଟାଭୋଗ ଖାଇ ଖାଇ ମୋତେ ଅଣ୍ଟାଧରା ରୋଗ ଧରିବାରୁ ମୁଁ ଭୋଗ ହଜମ କରିପାରୁ ନାହିଁ । ଏଥିପାଇଁ ସାଙ୍ଗରେ ଏ ଦେଢ଼ ବରଷୀ ଟୁକୁଲୀଟିକି ଧରିଥାଏ ତାକୁ ସବୁବେଳେ ଘଷାମଜା କରି, ତା ମୁଣ୍ଡରେ ମିନୟାଫଳ ଘଷି ତାକୁ ଗାଧୁଆ ପାଧୁଆ କରି, ତା ଦିହରେ ଲଣ୍ଡାଏ ବନ ହଳଦୀ ବୋଳି ତା ମୁଣ୍ଡ କୁଣ୍ଡାଇ ବେଣୀଟିଏ ପକାଇ କପାଳ ଉପରେ ଚନ୍ଦ୍ରରାଗଡ଼ି ଓ ଅଣ୍ଟାରେ ଓଡ଼ିଆଣୀ ପିନ୍ଧାଇ ତାକୁ ସାଙ୍ଗେ ସାଙ୍ଗେ ରଖିଥାଏଁ । ମୋ ପାଇଁ ପଛକେ ଟାଙ୍ଗରା ଭୂଇଁରେ ଦେଉଳ ନ ହେଉ, ତା ପାଇଁ ବାଲୁଚର ଉପରେ ନିତାନ୍ତ ପକ୍ଷରେ ମାଟିର ଲେଉଟା ଘମ ଭଳି ଖଣ୍ଡିଏ ଦେଉଳ ହେବା ଦରକାର । ମୋ ସେବକ ନୋଳିଆ, ତା ସେବକ ହେବେ କମା ବ୍ରାହ୍ମଣ । ମୋର ପ୍ରଧାନ ପର୍ବ - ଠାକୁରାଣୀ ଯାତ୍ରା ।''

୪. ଚତୁର୍ଥରେ ଆସିଲେ ଜଣେ ୬୦ ବର୍ଷର ସ୍ତ୍ରୀ । ତାଙ୍କ ନାମ ସାମଲେଈ । ପରିଧାନ ବରଗଡ଼ିଆ ଗରଗଡ଼ିଆ ଶାଢ଼ି । ମୁଣ୍ଡରେ ବେକ ଉପରେ ଡାହାଣ ଆଡ଼କୁ ବଙ୍କେଇଥିବା ଖୋପା । ହାତରେ କଡ଼୍‌ରିଆ ବନ୍ଦ୍‌ରିଆ । ଦିହଯାକ ଘିମିରି । ତାଙ୍କର ରହଣି ଗଡ଼ଜାତର ଜଙ୍ଗଲ ମୂଳକର ଦେଉଳ । ତାଙ୍କ ପ୍ରିୟବସ୍ତୁ - ଲେଥା, ରାଓ୍ୱ, ହେଣ୍ଡୁଆ, କଣା ବଉଦ ମାଛ । ତାଙ୍କର ଶୂଦ୍ରସେବକ - ଶଅର, ଦେହୁରି ଏବଂ ବ୍ରାହ୍ମଣ ସେବକ - ଝାଡୁଆ ।

୫. ପଞ୍ଚମରେ ଆସିଲେ ଗୋଟିଏ ନୁହନ୍ତି ବୁଢ଼ୀ, କି ନୁହନ୍ତି ଧାଙ୍ଗଡ଼ା, କି ନୁହନ୍ତି ପ୍ରୌଢ଼ା, କି ନୁହନ୍ତି ଟୋକୀ, କି ନୁହନ୍ତି ଶିଶୁ । ଏହାଙ୍କ ବୟସ ଠଉରାଇ ହେଲା ନାହିଁ । ପହରଣ ବାଉରି ବୁଣା ଖଦି ମୁଣ୍ଡରେ ନଈକୁଦ ଭଳି ଠିଆ ଗଣ୍ଠି, ତା ଉପରେ ମହଣ ବୋଳା ଓ ମେଥି ଚୂନା ଛିଞ୍ଚା ହୋଇଅଛି । ଭ୍ରୂମଧ୍ୟସ୍ଥ କ୍ଷେତ୍ରରେ ଅଧୁଲି ଆକାରର ତିନି ପରସ୍ତିଆ ସିନ୍ଦୂର ଟୋପା ଓ ତା ମଝିରେ ଗୁଞ୍ଜର ପୋକର ଟିକିଲି । ସେ କହିଲେ -

''ମୋ ନାମ କରାଙ୍ଗନା, ରହଣି ଚୁଙ୍କୁଡ଼ି ଦହ । ମୋ ସେବକ କାଠମାଳିଆ ସହର ଓ ଗୋଖା । ମୋ ମନ୍ଦିର ହଜାର ବର୍ଷର ଭଙ୍ଗା ରାଜବାଟୀ । କଉ, ମାଗୁର, ରଡା ଓ ସିଂଘଡ଼ା ମୋର ପ୍ରିୟ ଭୋଗ । ପଦ୍ମଫୁଲ ମୋର ପ୍ରିୟ ଫୁଲ ।''

ଏ ସବୁଙ୍କ ଇଜାହାର କଲମ ବନ୍ଦ ହେଲା ପରେ ସ୍ଥିର ହେଲା ଯେ କାହା ମୁଣ୍ଡରେ ଶାଢ଼ି ବନ୍ଧା ହେବ । ଏ କଥାରେ ଆମ ଦରବାରିଆ ଓ ଦରବାରିଆଣୀଙ୍କ ମଧ୍ୟରେ ମତଭେଦ ଅବଶ୍ୟମ୍ଭାବୀ । ଯେଉଁ ଠାକୁରାଣୀଙ୍କୁ ଇଷ୍ଟ ଦେବତା କରିବା, ତାଙ୍କର ସବୁ ଅଳିଆର୍ଦ୍ଦୋଳି ସିନା ଆମ ଉପରେ ଓ ଆମ ଭାବୀ ବଂଶଧରମାନଙ୍କ ଉପରେ ପଡ଼ିବ; କିନ୍ତୁ ତାଙ୍କୁ ବାଛିବା ଭାର ଆମ ଉପରେ ନ ରହି କାହୁଁ ଅଇଲା ବିଦେଶୀ ଚିହ୍ନରାଙ୍କ ଉପରେ ରଖାଗଲେ ସେମାନେ ଯାହା ଗାର କାଟିଦେବେ ସେଥିରେ ମଳି ଧୂଳି, ମାରୁମଲିଆ, ରଦଖଦ, ରୋଗବୈରାଗ, ସୁପାରିସ ଚକ୍ଷୁଲଜ୍ଜା କିଛି ରହିବ ନାହିଁ । ସେମାନେ ସୁର୍ଖି କରି ଓ ଗୁଳା ପକାଇ ଯାହା ମୁଣ୍ଡରେ ଟୀକା ମାରିଦେବେ, ତାହାଙ୍କ ମୁଣ୍ଡରେ ସୁନା କଳଶ ଢାଳିବ । ଆହା ଏତିକି ବେଳେ ଆମ ଶ୍ରୀମତୀ ଅଭିଆଡ଼ୀ ଓୟେଟିଙ୍ଗଖ ପାଇଁ ଆଣି ଆମ ପଲଙ୍କ ପାଖେ 'ପଲଙ୍କ ଚାହା' ରଖି ଦେଇଗଲେ ଓ ତାଙ୍କ ପଦକ୍ଷେପରେ ଆମ ଛାଇନିଦଟା ଚାଉଁକିନି ଭାଙ୍ଗିଗଲା ଓ 'ସ୍ୱପ୍ନରେ ରାଜଧାନୀ ଯୋଗ' ପଣ୍ଡ ହୋଇଗଲା । ଏହାକୁ ହିଁ କହନ୍ତି ହୀନିକପାଳ !!!

# ଧାରତାବଂଧାର ପୁଞ୍ଜିପାଣ୍ଠି

## ୧୯୩୫ - ୧୯୩୬

‘ଧାରତାବଂଧାର ପୁଞ୍ଜିପାଣ୍ଠି’ ୧୩୪୨ ସାଲରେ ଉତ୍କଳ ସାହିତ୍ୟର ଜ୍ୟେଷ୍ଠ, ଆଷାଢ଼ ଓ ଶ୍ରାବଣ ସଂଖ୍ୟାରେ ତିନି ଗୋଟି ଅଧ୍ୟାୟ ଏବଂ ୧୩୪୩ ସାଲ ଚୈତ୍ର ସଂଖ୍ୟାରେ ଓ ‘ଓଡ଼ିଆ ମୂଲକ’ ଶୀର୍ଷକରେ ଚାରିଗୋଟି ଭାଗରେ ପ୍ରକାଶିତ । ପ୍ରଥମ ତିନି ଅଧ୍ୟାୟରେ ଧାରତାବନ୍ଧାର ପୁଞ୍ଜିପାଣ୍ଠି ଓ ଓଡ଼ିଆ ମୂଲକରେ ଲେଖକଙ୍କର ଛଦ୍ମନାମ ଯଥାକ୍ରମେ ପାଣିପାତ୍ର ଶର୍ମା ଓ ଧୂମ୍ରମାର ପାଣି । ପୁଞ୍ଜିପାଣ୍ଠି ଗଡ଼ଜାତ ରାଜାମାନଙ୍କର ଛଳ ଜୀବନଚର୍ଯ୍ୟା ଓ ‘ଓଡ଼ିଆ ମୂଲକ’ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନଜନିତ ଆନନ୍ଦ ଓ ଅବସାଦର ସୂକ୍ଷ୍ମ ବିଶ୍ଳେଷଣ ।

ସଂପାଦକ

॥ ଏକ ॥

ଶର୍ମାଏ ଅଇରି ଖପର ବଇରି ବା । ଅର୍ଥାତ୍ ମୁଣ୍ଡ ଗୁଞ୍ଜିବାକୁ ଘର, ଶୋଇବାକୁ ଛପର, ବସିବାକୁ ଆସନ, ରହିବାକୁ ଆସ୍ଥାନ, ଭୁଞ୍ଜିବାକୁ ଅଶନ, ରାନ୍ଧିବାକୁ ବର୍ତ୍ତନ, ଖାଇବାକୁ ବାସନ, ଖେଳିବାକୁ ମଇଦାନ ଆଦି ତାଙ୍କର କିଛି ନାହିଁ । ଶିରୋନାସ୍ତି, ଶିରୋବ୍ୟଥା କାହୁଁ ହେବ ? କିନ୍ତୁ ଶର୍ମାଏ ଏତକ ଜାଣନ୍ତି ଯେ, ସେ ଯେତେବେଳେ ଯେଉଁଠାରେ ଶୁଅନ୍ତି, ବସନ୍ତି, ଠିଆ ହୁଅନ୍ତି, ଚାଲନ୍ତି, ଦଉଡ଼ନ୍ତି, ସେ ଘଡ଼ିକ ସେ ସ୍ଥାନରେ ତାଙ୍କର ନିଗୂଢ଼ ଦଖଲ ସ୍ୱତ୍ୱ । ଏ ଇହଲୋକରେ ମରଦେହରେ ଅବସ୍ଥିତିର ମିଆଦ ପୂରିଗଲେ ତାଙ୍କ ବ୍ୟକ୍ତିତ୍ୱର ନିଦର୍ଶନ ରୂପେ ଯେଉଁ ଅସ୍ଥିକଙ୍କାଳ ରହିବ, ତା'ପାଇଁ ଅବଶ୍ୟ ସ୍ଥାନ ମିଳିବ । ତାକୁ ନେଇ ଶୂନ୍ୟରେ ତ କେହି ମିଳାଇ ଦେବେ ନାହିଁ । ତାକୁ ହିନ୍ଦୁଙ୍କ ମଡ଼ା ମଶାଣିରେ କହ, ମୁସଲମାନମାନଙ୍କ କବର ସ୍ଥାନରେ କହ, ସାଧୁଙ୍କ ସମାଧି ସ୍ଥାନରେ କହ, ଯେଉଁଠାରେ ହେଲେ ୧,୨,୩,୪ ବର୍ଗ ହାତ ସ୍ଥାନ ଅବଶ୍ୟ ମିଳିବ । ଏତକ ହେଲା ତା'ର ନିଗୂଢ଼ ଦଖଲ ସ୍ୱତ୍ୱ । ଶର୍ମା ମଧ୍ୟ ନିଜେ ଏ ସଂସାରରେ ବହୁତ୍ ସଫର୍ କରି ଦେଖିସାରିଲେଣି ଯେ, ନରମାତାଙ୍କ କୁକ୍ଷିରୁ ଅନୁକୂଳ କଲାବେଳେ ତାଙ୍କର ଯେତିକି ଜମିରେ ନିଗୂଢ଼ ଦଖଲ ସ୍ୱତ୍ୱ ଜମିଲା, ଭୂ-ମାତାଙ୍କ କୁକ୍ଷିକୁ ଫେରିଗଲାବେଳେ ତାଙ୍କର

ଉଣା ଅଧିକେ ସେତିକି ଜମିର ନିଗୂଢ଼ ଦଖଲ ସ୍ୱତ୍ୱ ମିଳିବ । ଏପରି ଅବସ୍ଥାରେ ଯେଉଁମାନେ ବିଚାରନ୍ତି ଯେ, ଶର୍ମାଏ ଗରିବ, ସମ୍ବଳହୀନ, ସମ୍ପତ୍ତିହୀନ, ସେମାନେ ବେବୁଝ ଓ ବେସମଝଦାର ଅଟନ୍ତି । ଶର୍ମା ଜାଣନ୍ତି ଯେ, ତାରାଖଚିତ ଆକାଶଟା ତାଙ୍କ ବଇଠକ ଖାନାର ଓ ଶୟନାଗାରର ବେଲ ବୁଟାଦାର ଚାନ୍ଦୁଆ, ଦିକ୍ ସକଳ ତାଙ୍କର ଚୀନାଂଶୁକ, ସଂସାରର ସନ୍ତାନସନ୍ତତି ତାଙ୍କ ବାଲବଚ୍ଚା, ସନ୍ତାନର ଜନକ, ଜନନୀ, ଭ୍ରାତା, ଭଗିନୀ ମଧ୍ୟ ତାଙ୍କର ସେହିତା । ସଂସାରର ବ୍ୟାଙ୍କ ଓ ଖଜଣାଖାନା ଯାକରେ ତାଙ୍କର ଧନ ଅଛି, ସଂସାରର ରାଜ୍ୟ ଓ ଜମିଦାରିଯାକ ତାଙ୍କରି ଖାସ୍‌ମାହାଲ, ସଂସାରର ବଡ଼ଲୋକ, ଧନୀ ଓ ଶେଠ ସାହୁକାରମାନେ ତାଙ୍କରି ବେଠିଆ ଚାକର, ଏଥିପାଇଁ ଜନ୍ମବେଳେ ଜାତକ ଦେଖି ସିଆଣିଆ ବାପା-ମା ତାଙ୍କୁ 'ପାଣିପାତ୍ର' ନାମ ଦେଇଥିଲେ । ପାଠକ ପାଠିକା ଭାବୁଥିବେ, ଏ ଆପଣା ବଡ଼େଇମାନ ଏତେ ହକାଳି, ଡାକିହାକି କହିହେବାର ମତଲବ କଅଣ ? ଏ ପ୍ରବନ୍ଧର ହେଡିଙ୍ଗ୍ ହେଲା - ଧାରତାବଂଧାର ପୁଞ୍ଜିପାଣ୍ଠି । ପାଣିପାତ୍ର ଶର୍ମାଏ ପୁଣି ଧାରତାବଂଧା ହେଲେ କିପରି ଓ ତାଙ୍କର ପୁଞ୍ଜିପାଣ୍ଠି ଅଇଲା କାହୁଁ ? ଅବଶ୍ୟ ସମସ୍ତେ ଅଙ୍କ ବହୁତ ଠଉରାଇଥାଉଁ ଯେ, ଏ ଦୁନିଆଟା କେବଳ ଜୁଆଖେଳର ଆଡ୍‌ଡା, ପଶାଖେଳର ପାଲିମୁଠା । ଏଥିରେ ସମସ୍ତେ କାଠିଧରି ଗଡ଼ଉଥାଇଁ । ପଶାକାଠିରେ କେତେବେଳେ କ'ଣ ଗଡୁଛି, କେତେବେଳେ କେଉଁ ଦାନ ପଡୁଛି, ତାହା ଆଗରୁ ଜାଣିବାର ଜୁ' ନାହିଁ । କାହାର ପୁଅବାର ପଡ଼ି ସାର ଯୋଡ଼ିଯମକରେ ଚାଲୁଛି । କାହାର ଅଡ଼ିପଟ ନ ପଡ଼ିବାରୁ ସାର ପାଚି ନ ପାରି ବାରମ୍ବାର ଘରବାହୁଡ଼ା ଲାଗିଛି । ଏପରି ଅବସ୍ଥାରେ ରଜାପୁଅ ପଶାକାଠି ଗଡ଼ଉ ଗଡ଼ଉ ପଡ଼ିଗଲା କଚେବାର, ରାଜାପୁଅ ପରମୁହୂର୍ତ୍ତରେ ହେଲେ ଦାଣ୍ଡର ଫକିର । ଏଣେ ଫକିରପୁଅ କାଠି ଗଡ଼େଇ ଦେଲାବେଳକୁ ପଡ଼ିଗଲା ଥରେ, ତହିଁଆର ମୁହୂର୍ତ୍ତରେ ଫକିର ହେଲା ରାଜରାଜେଶ୍ୱର । ସଂସାରର ଏହି ଡାଳମାଙ୍କୁଡ଼ି ଖେଳରେ ଶର୍ମାଏ ମଧ୍ୟ ଉବେଇ ଚୁବେଇ ହେଉଛନ୍ତି । କେତେବେଳେ ଯାଇ ପହଞ୍ଚୁଛନ୍ତି ରାଜେନ୍ଦ୍ରଙ୍କ ସିଂହାସନ ତଳେ, କେତେବେଳେ ପହଞ୍ଚି ଯାଉଛନ୍ତି ଫକିର ତକିଆରେ । ଶର୍ମାଏ ଚାରିଦଉଡ଼ିକଟା । ତାଙ୍କ ଅଗାଡ଼ି ପିଛାଡ଼ି ସବୁ ଦଉଡ଼ି ଛିଣ୍ଡିଯାଇଛି, କିନ୍ତୁ ସେ ଛିଣ୍ଡା ଦଉଡ଼ିର ଯେଉଁ ଖଣ୍ଡମାନ ଖୁରାରେ ଓହଳିଛି, ସେହି ଖଣ୍ଡମାନ ବେଳେବେଳେ ତାଙ୍କୁ କରୁଛି ହଲାପଟା । ତା ନହେଲେ ରଜାର ପ୍ରଜା ନୋହି, ମହାଜନର ଖାତକ ନୋହି, ଡିଗ୍ରିଦାରର ଦେଣଦାର ନୋହି ସୁଦ୍ଧା ଆଜି ସଂପାଦକଙ୍କଠାରେ 'ଧାରତାବଂଧା' ହୁଅନ୍ତି କାହିଁକି ଓ ତାଙ୍କୁ ପୁଞ୍ଜିପାଣ୍ଠି ଫିଟାଇବାକୁ ସଂପାଦକଙ୍କର ତଲବ ହୁଅନ୍ତା କିଆଁ ?

ଅତଏବ ଏ ସମ୍ବନ୍ଧେ ପ୍ରଥମେ ଟିକିଏ ଅବତାରଣା (ତା-ନା-ନା-ନା) ନ କରି ହଠାତ୍ ପୁଞ୍ଜି ପାଣ୍ଠିଟା ସର୍ବସାଧାରଣରେ ଖୋଲିଦେଲେ ବା ସର୍ବସାଧାରଣଙ୍କ ତୋଠରେ ହକାଳି ଦେଲେ (ଯାହାକି ଅଙ୍ଗରେଜୀରେ Washing dirty linen କହନ୍ତି) ତାହା ସମସ୍ତଙ୍କୁ ଅଖଞ୍ଜିଆ ଲାଗିବ । ସଂପାଦକଙ୍କର ଏ ଦାବିଯୁକ୍ତ ତଲବ (Demand) ସଂପାଦକ

ଜନକ ଦେବଙ୍କ ଅମଳରେ ପ୍ରତିଷ୍ଠିତ ସଂପର୍କରେ ଘନିଷ୍ଠତା ରହିଅଛି - 'ଉତ୍କଳ ସାହିତ୍ୟ' ପତ୍ରିକାର ପ୍ରତିଷ୍ଠାତାଙ୍କ କଲମ ଛାୟାରେ ଅନେକ ଓଡ଼ିଶୀ ଲେଖାଳି ପରବସ୍ତ ହେଉଥିଲେ । ଏ କଥାଟା ତାଙ୍କ ଜୀବଦ୍ଦଶାରେ କେହି ମାନନ୍ତୁ କି ନ ମାନନ୍ତୁ, ତାଙ୍କ ଅନ୍ତେ ତାଙ୍କର ଶତ୍ରୁ ମିତ୍ର, ତାଙ୍କର ଦୁଷ୍ମନ୍ ଦୋସ୍ତ, ତାଙ୍କର ସମାଲୋଚକ ସ୍ତାବକ ସମସ୍ତେ ଏକ ମୁଖରେ ସ୍ୱୀକାର କରିଅଛନ୍ତି । ଏଥିପାଇଁ ଆମ ଭାଗବତକାର ଲେଖିଛନ୍ତି, ''ପ୍ରାଣୀର ଭଲମନ୍ଦ ବାଣୀ, ମରଣ କାଳେ ତାହା ଜାଣି'' । ଉତ୍କଳ ସାହିତ୍ୟାକାଶରେ ଇନ୍ଦ୍ରଧନୁ, ବିଜୁଳିର ଚମକ ପରେ ବିଶ୍ୱନାଥ କର ଉଦୟ ହୋଇ ନ ଥିଲେ ନବ୍ୟ ଓଡ଼ିଆ ସାହିତ୍ୟର ପ୍ରଗତି ଆଜି ଯାହା ଦେଖାଯାଉଛି, ତାହା ନ ହୋଇ ଆଉ ପ୍ରକାରେ ହୋଇଥାଆନ୍ତା । ନବ୍ୟ ଉତ୍କଳ ସାହିତ୍ୟାକାଶରେ ସୂର୍ଯ୍ୟ, ଚନ୍ଦ୍ର, ତାରା, ଗ୍ରହ, ନକ୍ଷତ୍ର ପୁଞ୍ଜ, ସପୁଚ୍ଛ ଓ ଅପୁଚ୍ଛ ଧୂମକେତୁ, ହାତୀଶୁଣ୍ଢ, ଇନ୍ଦ୍ରଧନୁ, ବିଜୁଳି, ମେଘ ଆଦି ଦେଖା ଦେଇଛନ୍ତି ଓ ଦେଉଛନ୍ତି । ତହିଁ ମଧ୍ୟରୁ ଗୁଡ଼ିଏ ଯେ ସ୍ୱର୍ଗୀୟ କର ମହାଶୟଙ୍କ ପୃଷ୍ଠପୋଷକ ରୂପେ ପାଇଥିଲେ ଓ ତାଙ୍କରି ଆଲୋକରେ ନିଜକୁ ଉଦ୍ଭାସିତ କରିଥିଲେ - ଏହା ଗତ ୪୦ ବର୍ଷ ଓଡ଼ିଆ ସାହିତ୍ୟର ପ୍ରଗତିକୁ ଯେ ଭଣ୍ଡି ଅଛନ୍ତି, ସେ ଠଉରାଇବେ । ତହିଁ ମଧ୍ୟରୁ ଶର୍ମାଏ ଜଣେ । ତାଙ୍କରିଠାରେ ଶର୍ମାଙ୍କର ହାତଖଡ଼ି ସିଦ୍ଧିରସ୍ତୁ ହୋଇଥିଲା ଓ ଶର୍ମାଏ ବିଚାରିଥିଲେ ଯେ ତାଙ୍କର ଅନ୍ତର୍ଦ୍ଧାନ ସଙ୍ଗେ ଶର୍ମାଙ୍କ ପାଠ ସାଙ୍ଗ ହେବ । କିନ୍ତୁ ଦାରୁଣ ବିଧାତା ତାହା କରାଇ ଦେଲା ନାହିଁ । ପିତୃଦେବଙ୍କ କୀର୍ତ୍ତିକୁ ବଜାୟ ରଖିବା ପାଇଁ ତଦୀୟ କୁମାର କୁମାରୀମାନେ ବଦ୍ଧପରିକର ହୋଇ ଅଛନ୍ତି । କୌଣସି ଖାନ୍ଦାନ ଘରର ପିଲାଏ ନୂଆକରି ପିତୃଦେବଙ୍କ ପରିଚାଳିତ ସଂସାରକୁ ପୁଣି ପ୍ରତିଷ୍ଠିତ କରିବାକୁ ବାହାରିଲେ, ଆଗେ ଖୋଜାପଡ଼େ ପିତାଙ୍କ ଅମଳର ଖାତାପତ୍ର, କାଗଜ ଓ ଦଲିଲ ବସ୍ତାନି । ତାକୁ ଉଣ୍ଡାଳି ସେଥିରୁ ଯାହା ମିଳେ ତାକୁ ହିଁ ମୂଳଦୁଆ କରି ପିଲାଙ୍କର ଘରକରଣା ଆରମ୍ଭ ହୁଏ । ଯେଉଁ ଖାତକମାନେ ଆପୋସିରେ ସୁରୁଖୁରୁ ହୋଇ ପିଲାଙ୍କ ପାଖରେ ରୁଜୁ ହାଜର ହୋଇ ଯାଆନ୍ତି, ସେମାନଙ୍କୁ ଫଳେ ପୁଷେ ଛାଡ଼ିଦିଆଯାଏ । ଯେ ଫଜିଲ ବାଜି କାଢ଼ନ୍ତି, ତାଙ୍କ ଦସ୍ତାବିଜମାନେ ତମାଦି ହୋଇଯାଇ ନ ଥିଲେ ପିଲାଏ ଦେବାନୀ କଚେରି ହତାର ବରଗଛ ମୂଳଠାରୁ ଓକିଲଖାନା, ଓକିଲଖାନାରୁ ଓକିଲଙ୍କ ସିରସ୍ତା ଓ ବଇଠକଖାନା, ସେଠାରୁ ଓକିଲ ମୋହରିରଙ୍କଠାକୁ, ସେଠାରୁ ସିଟାମଫରସଙ୍କ ପାଖକୁ, ସେଠାରୁ ହାକିମଙ୍କ ଇଜଲାସକୁ ଦଉଡ଼ଧାପଡ଼ କରି ଯୋଗାଡ଼ ତଦବିର କରି, ଚଣ୍ଡୀ ଚାମୁଣ୍ଡାଙ୍କୁ ଅଣ୍ଟିଗୁଞ୍ଜା, ମିଠେଇଖିଆ, ବକ୍‌ସିସ୍, ବେଲପତ୍ରୀ, ଚଣ୍ଡବଳୀ ଆଦିରେ ବୋଧଶୋଧ କରି କର୍ମ ସଲଖ ଥିଲେ, ଡିଗିରୀ ପାଆନ୍ତି ଓ ସେହି ଡିଗିରୀ ବଳରେ ଅଦିଆ ବିନ୍ଧଣା ଖାତକଙ୍କ ଚଳନ୍ତି, ଅଚଳନ୍ତି ସମ୍ପତ୍ତିରୁ, ଶରୀରରୁ ଡିଗ୍ରୀ ଜାରି କୋରଖ, ବାରେଣ୍ଟି (ଉଆରଣ୍ଟ), ଇସ୍ତିହାତ, ନିଲାମ, ଦଖଲ ଆଦି ଦ୍ୱାରା ବାପାଙ୍କ ସମ୍ପତ୍ତିରୁ କେତେକ ଆଦାୟ କରନ୍ତି । ବର୍ତ୍ତମାନ କ୍ଷେତ୍ରରେ ଶ୍ରୀ ବିଶ୍ୱନାଥବାବୁଙ୍କ ଦେହାନ୍ତେ ତାଙ୍କ ଆତ୍ମଜ

ଶ୍ରୀମାନ୍ ମହାନନ୍ଦବାବୁ ପ୍ରଥମେ ମୁହଁ ବୁଲାଇଲେ ବାପାଙ୍କ ଅମଳର ଧାରତାବଂଧାମାନଙ୍କୁ ଓ ତାଙ୍କ ନଜର ପଡ଼ିଲା ଶର୍ମାଙ୍କ ଉପରେ । ଆଗରୁ ବୋଲାଯାଇଛି ଯେ, ଶର୍ମାଏ ପାଣିପତ୍ର, ଦିଗମ୍ବର । ତାଙ୍କର ପୁଞ୍ଜିପାଣ୍ଠି ମଧ୍ୟରେ ଗୋଟିଏ ଗଣ୍ଠିରି । ସେ ଗଣ୍ଠିରିରେ ପିକା, ଦିଆସିଲି, ମାଳି ତିଳକ, ଅଦା, ପିଆଜ, ନାନା ଦେବଦେବୀଙ୍କ ପାଦୁକ, ଚନ୍ଦନ, ସିନ୍ଦୂର, ବିଭୂତି, ଆରଶି, ପାନିଆ, ସାବୁନ, ଆପୁ ଡିବା, ଗଞ୍ଜେଇ ମୁଣି, ଚିଲମ କଲକା, କାଗଜ, ପିନସିନ୍, ଲେଖନ, ତାଳପତ୍ର, ସଣ୍ଢୁଆଶି, ଚିମୁଟା, ଦାନ୍ତଖୁଣ୍ଟା, କାନସଫେଇ, ଖୁର, ନହୁରୁଣୀ ଆଦି ଦମେ ସରଞ୍ଜାମ ଅଛି । ଅଛି ଖଣ୍ଡ କେତେ ଚନ୍ଦ୍ରକଣ (ବହୁବ୍ରିହୀ ସମାସ, ଚନ୍ଦ୍ରପରି କଣାମାନ ବିଦ୍ୟାମାନ ପହଁରେ) କନ୍ଥା, ଖଣ୍ଡ ଦୁଇ ତିନି ପୋଛା, ଅଙ୍ଗୁଛା ଓ ଟିପାଟିପି କାଗଜ, ତାଳପତ୍ର ଉତ୍କଳ ସାହିତ୍ୟ ପତ୍ରିକାର ଅଧୁନାତନ ସମ୍ପାଦକ ମହାଶୟ ପିତୃଋଣ ପରିଶୋଧନାର୍ଥ ଶର୍ମାଙ୍କ ସଙ୍ଗେ ତୁମ୍ବି କଲାରୁ ଶର୍ମା ଅଗତ୍ୟା ସେହି ପୁଞ୍ଜି ପାଣ୍ଠିରୁ କିଛି କିଛି ବେଳକାଳ ଉଣ୍ଡି ଯୋଗେଇବାକୁ ବଚନ ଦେଲେ । ସେହି ପ୍ରତିଶ୍ରୁତି ରକ୍ଷା ପାଇଁ ଶର୍ମାଙ୍କର ଏହି କସରତ । ଏଥିରେ ଅଉଲ୍‌ନମ୍ବରୀ ମାଲ, ଦସ୍ତାବିଜ ଅସଲି ପଦାର୍ଥ ଖୋଜିଲେ ମିଳିବ କାହୁଁ ? ଏ ହେଲା ଶର୍ମାଙ୍କ ପୁଞ୍ଜିପାଣ୍ଠିର ଉତ୍କଳ ସାହିତ୍ୟରେ ଆବିର୍ଭାବର ଅବତାରଣା । ଏହି ଆଲୁକୁଚି ମାଲୁକୁଚିରୁ ଯାହା ଯେତେବେଳେ ଗଣ୍ଠିରାରୁ ହାବୁଡ଼େ ପଡୁଥିବ, ତାହା ଧାରତାବଂଧା ନେଇ ନୂଆ ସମ୍ପାଦକଙ୍କଠାରେ ହାଜର କରିବ । ତେଣିକି ସେମାନ 'ଉତ୍କଳ ସାହିତ୍ୟ'ରେ ରଖିବା ନ ରଖିବା ସମ୍ପାଦକଙ୍କର ମରଜି । ପୁଞ୍ଜିପାଣ୍ଠିର ପ୍ରଥମ ମାଲ୍ ଦେଖନ୍ତୁ ।

ଶର୍ମାଙ୍କ ପିତାମହ ଥିଲେ ଜଣେ ରାଜାଙ୍କ ଘରେ ପୁରୋହିତ । ପୁରୋହିତି କରି ତାଙ୍କ ପରିବାର ବେଶ୍ ଚଳାଉଥିଲେ । ଶର୍ମାଙ୍କ ପିତା କିନ୍ତୁ ପୁରୋହିତ ଛାଡ଼ି ରାଜଷୀ ପରିଚାଳନା ଆଡ଼େ ମନ ଦେଲେ । ଘଟନାଚକ୍ରରେ ଏ କଥା ଘଟିଗଲା । ଶର୍ମାଙ୍କ ପିତାମହ ପୁରୋହିତ କରିବାକୁ ରାଜାଙ୍କ ଉଆସକୁ ଆସନ୍ତି । ପୁରୋହିତ କାର୍ଯ୍ୟ ଶେଷ କରିବା ପରେ ନିବେଦନ ବସ୍ତୁମାନ (ଯଥା : ଅରୁଆ ଚାଉଳ, ଭଙ୍ଗା ନଡ଼ିଆ, ମୁଗଜାଇ, କଦଳୀ, ଆଳୁ, ସାରୁ, ଛଡ଼ା ପାଚିଲା କଦଳୀ, ଛେନାଗୁଡ଼, ଉଖୁଡ଼ା ଆଦି) ପୁରୋହିତଙ୍କୁ ପାଉଣା ମିଳେ । ଯାହା ନଗଦାନଗଦି ପାଆନ୍ତି, ତାକୁ ତ ଅଣ୍ଟାରେ ଖୋଷି ଦିଅନ୍ତି । କିନ୍ତୁ ଏ ଦ୍ରବ୍ୟମାନଙ୍କର ଜାଉଁଳିକୁ ଘର ପର୍ଯ୍ୟନ୍ତ ବୋହିନେବା ପିତାମହଙ୍କ ପକ୍ଷରେ ସମ୍ଭବପର ହୁଏ ନାହିଁ । ଅବଶ୍ୟ ପୁରୋହିତ ଆପଣା କାନ୍ଧରେ ଜାଉଁଳି ବୋହିନେଲେ ସେଥିରେ ତାଙ୍କର ମହତ ଦି'କଡ଼ାର ହୋଇଯିବ, ଏଥିପାଇଁ ନୁହେଁ । କିନ୍ତୁ ଦଶ ସେରରୁ ବେଶି ଓଜନର ଜାଉଁଳି ବୋହିନେବାକୁ ବୁଢ଼ାଙ୍କର ବଳ ନ ଥାଏ । ଆଗେ ଏ ଜାଉଁଳିକୁ ରାଜନବରରୁ ନିଜର ଘରକୁ ବୋହିନେବା ପାଇଁ ସାଙ୍ଗରେ ଅବୋଲକରା ଭଣ୍ଡାରି ପିଲାଟିଏ ଆଣୁଥିଲେ । କିନ୍ତୁ ବାରିକପୁଅ ପୋଖରୀପାଣି ମାଡ଼ିବା ବାହାନାରେ ବାଟରେ ପୁରୋହିତଙ୍କ ପଛରେ ରହି ପୁରୋହିତ ଚାଲିଯିବା ପରେ ବାଟରେ ଜାଉଁଳିରେ ଥିବା ଚର୍ବ୍ୟ (ନଡ଼ିଆ),

ଚୋଷ୍ୟ (ପାଚିଲା ଆମ୍ବ) ଓ ଲେହ୍ୟ (ଛେନାଗୁଡ଼) ଚକଟାର ଯେଉଁ ସଦ୍‌ବ୍ୟବହାର କଲା ଓ ଛାଉଁଳିକୁ ପୁରୋହିତଙ୍କ ଘରେ ପହଞ୍ଚାଇ ଦେଇ ତାର ପାରିଶ୍ରମିକ ପାଇଁ ଯେଉଁ 'ବୋର୍ଦ୍ଧଂମମାର୍ଦ୍ଧଂ' ବଣ୍ଟରା କଲା, ତାହା ଦେଖି ପଛକୁ ପୁରୋହିତ ସ୍ଥିର କଲେ ଯେ, ଆପଣାର ଅବରତୁଆ ପୁଅଙ୍କୁ ସାଙ୍ଗରେ ନେବେ ଓ କାର୍ଯ୍ୟ ସମାପନାନ୍ତେ ପୁଅଙ୍କ କାନ୍ଧରେ ଛାଉଁଳି ବୁହାଇ ଆଣିବେ । ଏଥିପାଇଁ ଶର୍ମାଙ୍କ ପିତାମହଙ୍କ ସଙ୍ଗେ ଉଆସକୁ ଆମ ଅବରତୁଆ ପିତା ଯାଉଥିଲେ । କର୍ମ ଆଦି କରିବାକୁ ପୁରୋହିତ ଉଆସ ଭିତରକୁ ପଶନ୍ତି । ଶର୍ମାଙ୍କ ବାପା ଦିହୁଡ଼ି ପାଖେ ବସି ରହନ୍ତି । ଦିହୁଡ଼ି ପାଖେ ରାଜାଙ୍କ ସିରସ୍ତାର ଦିଆନ୍ତା ଛାମୁକରଣ, କୋଠକରଣ, ବଇଠିକରଣ, ପାଞ୍ଜିଆ, ଚ୍ୟାଉ ପଟ୍ଟନାୟକେ ଆଦି ବସି ସିରସ୍ତା ଜମାଇଥାନ୍ତି । ଆମ ବାପାଙ୍କୁ ଖାଲି ବସି ବସି ବିରକ୍ତ ଲାଗିବାରୁ ସେ କ୍ରମେ କ୍ରମେ ଆଖେଇ ଆଖେଇ ଯାଇ ସିରସ୍ତାରେ ଦିହ ଗୁଞ୍ଜିଲେ । କ୍ରମଶଃ 'ଆଙ୍ଗୁଳି ପ୍ରବେଶାଦ୍ ବାହୁ ପ୍ରବେଶ' ହେଲା । ବାପା ଆମର ଚାହାଳିରେ ହରଗୁଣ, ଫେଡ଼ାମିଶା, ଶୋଧି ପଣିକିଆ, ଓଡାଙ୍କ ମେଲାଙ୍କ, କୁଟା କ୍ରୟ ବିକ୍ରୟ, ବଳଦିଆ ହିସାବ ଏ ସବୁକୁ ଆୟତ୍ତ କରିଥାନ୍ତି । ଭାଗବତ, ରାମାୟଣ, ଭାରତ, ହରିବଂଶ ଆଦି ଦାଣ୍ଡିଆ ଓ ଅଦାଣ୍ଡିଆ ପୋଥି ଖୋଲି ଶିଖିଥାନ୍ତି । ତାଳପତ୍ରରେ ଲେଖନୀ ଦ୍ୱାରା କମଳଲୋଚନ, କଳାକଳେବର 'ନରହରିପୁର ଦେବାଶାସନ ମକଦମ ନଗଦ ଗଣାଇଲା ଏତେ କାହାଣ, ଏତେ ପଣ, ଏତେ ଗଣ୍ଡା, ଏତେ କଡ଼ା' ଲେଖିଥାଆନ୍ତି । ସିରସ୍ତା ପାଖରେ ବସୁ ବସୁକା ପାଞ୍ଜିଆଙ୍କର ମିଶାଣ ଭୁଲ ୨।୩ ଥର ଧରି ପକାଇବାରୁ ଦିଆନ ପଟ୍ଟନାୟକଙ୍କ ସୁନଜର ବାପାଙ୍କ ଉପରେ ପଡ଼ିଲା ଓ ବାପା କ୍ରମେ କ୍ରମେ ରାଜ ସିରସ୍ତାରେ ଟାଇଜନବାସ, ଠିକା ମୋହରିର ଓ ଶେଷକୁ ରାଜ ସିରସ୍ତାରେ ଦେଉଳ କରଣ କାମ ଖଣ୍ଡେ ପାଇଲେ । ତାଙ୍କ ପିତୃଦେବଙ୍କ ସଙ୍ଗେ ଛାଉଁଳି ବୋହିବା ପାଇଁ କାମ ସୁର୍ କରି ଶେଷକୁ ବାପାଙ୍କର 'ବାଇଗଣ ବିକା ଓ କନ୍ୟା ଦେଖା', ଦୁଇ କାମ ହେଲା । ପଛକୁ ରାଜ ସିରସ୍ତାରେ 'ଜଣେ' ବୋଲି ଗଣତି ହେବା ବେଳକୁ ଆମ ବାପାଙ୍କ କାନ୍ଧରୁ ମନକୁ ଛାଉଁଳିବୁହା ଖସିଯାଇଁ ଦେଉଳ ପାହାରୀ ପାଇକଙ୍କ ବେଠିରେ ପୁରୋହିତଙ୍କ ଛାଉଁଳି ବୁହା କାମ ଚଳିଲା । ତାପରେ ବାପା ଆମର ଦଶ କର୍ମରେ ବ୍ରତ ହେଲେ ଓ ଦିନାକେତେ ବାଦ ତାଙ୍କ ଦିହାତ ଚାରି ହାତ ହେଲା । କିନ୍ତୁ ପୂର୍ବୋକ୍ତ ଘଟନାଚକ୍ରରେ ପଡ଼ି ବାପା ଆମର ଆଉ ପୁରୋହିତ କାମ କଲେ ନାହିଁ । କକେଇ ସେ ଲାଇନ୍‌ରେ ପଶି ପିତାମହଙ୍କ କୌଳିକ ଧର୍ମ ରକ୍ଷା କଲେ । ବାପାଙ୍କ ଦୁଇହାତ ଚାରିହାତରେ ପରିବର୍ତ୍ତିତ ଓ ପରିବର୍ଦ୍ଧିତ ହେବାପରେ ସ୍ୱପତ୍ନୀ ଉଦରରେ ଦ୍ୱିତୀୟ ଗର୍ଭକୁ ଶର୍ମାଙ୍କର ପଇଦା ହେଲା । ଶର୍ମାଙ୍କ ଜାତକ ରାଜାଙ୍କ ପାଟଜ୍ୟୋତିଷ (ଡାକ ନାମ ପାତୁଷି)ଙ୍କ ଦ୍ୱାରା ତିଆରି ହେଲା ଓ ପାତୁଷିଏ କହିଲେ ଯେ, ଏ ପୁତ୍ର 'ଘୋଡ଼ାମୁହାଁ' ହେବ ଓ ଏହାଙ୍କର ରାଜଯୋଗ କଥା ଧୋଇଯାଉ, ରାଜପ୍ରାସାଦ ଯୋଗ ମଧ୍ୟ ନାହିଁ । ଏଥିପାଇଁ ଶର୍ମାଙ୍କ ନାମ ଦିଆଗଲା 'ପାଣିପାତ୍ର ଶର୍ମା' । ସତକୁ ସତ ଶର୍ମାଙ୍କ ଭୂମିଷ୍ଠ

ହେବା ସଙ୍ଗେ ସଙ୍ଗେ ଦିନ କେତୁଟାରେ ତାଙ୍କ ଖାନ୍ଦାନ ଘରୁଟା ବିବାକ୍ ଚୂନା ହୋଇଗଲା ଓ ପିତୃଦେବଙ୍କ ତିରୋଧାନ ହେବା ବେଳକୁ ଶର୍ମା ସତକୁ ସତ ହେଲେ 'ପାଣିପାତ୍ର' । ଜାତକରେ ଶର୍ମାଙ୍କ କପାଳରେ ରାଜଯୋଗ ନ ଥିଲେହେଁ, ରାଜପ୍ରାସାଦ ଯୋଗ ନ ଥିଲେହେଁ, ରାଜ 'ପ୍ରସାଦସେବା' ଓ ରାଜ 'ପ୍ରାସାଦସେବା' ଯୋଗ ଅଛି ବୋଲି ପାତୃଷିଏ କହିଲେ । ତହିଁର ଫଳରେ ମଝିରେ ମଝିରେ ରାଜାଙ୍କ ପାରିବାରିକ ମଙ୍ଗଳ ଅନୁଷ୍ଠାନମାନଙ୍କରେ ଶର୍ମାଙ୍କୁ ହଳଦିଆ କାଗଜରେ ନାଲି ଲେଖା ନିମନ୍ତ୍ରଣ ପତ୍ର ଆସେ ଓ ତହିଁର ଜୋର୍‌ରେ ଶର୍ମା ଗଡ଼ଜାତର ଓ ମୋଗଲବନ୍ଦିର ଅନେକ ରାଜବାଟୀ, ମହା ରାଜବାଟୀ, ଜମିଦାର ବାଟୀ, ସାଆନ୍ତ ବାଟୀ, ଅନ୍ତର ବାଟୀ, ପ୍ରତ୍ୟନ୍ତର ବାଟୀ, ପାଟରାଣୀ ବାଟୀ, ମହାରାଣୀ ବାଟୀ, ବାବାଜି ବାଟୀ, ମାତାଜୀ ବାଟୀ, ମହନ୍ତ ବାଟୀ, ଶେଠ ବାଟୀ, ସାହୁକାର ବାଟୀ, ମହାଜନ ବାଟୀ, ମହାଦେଈ ବାଟୀ ଆଦିରେ ପାଦ ପକାଇ ଅଛନ୍ତି । ସେଠାରେ ଶର୍ମାଙ୍କର ତଥା ନିମନ୍ତ୍ରିତ ଓ ଅନିମନ୍ତ୍ରିତଙ୍କର ଡାକରା ଓ ଅଡାକରାଙ୍କର, କଳେ ପଶା ଓ ବଳେ ପଶାଙ୍କର, ଓଝରା ଓ ପୋଇଲୀଙ୍କର ସାଆନ୍ତ ଓ ଅନ୍ତରଙ୍କର, ଫୁଲବାଈ ଓ ବନାରସୀ ବାଈଙ୍କର ଓ ରାଜାରାଜୁଡ଼ା ସନ୍ଥ ମହନ୍ତଙ୍କର, ଯେଉଁ ଯେଉଁ ସବୁ ଆହାର ବ୍ୟବହାର, ଚାଲିଚଳଣ, ଭୋଜି, ନାଟ ଫାଟ, ବିଦାକୀ ମର୍ଯ୍ୟାଦା, ଖିଆଣାପିଇଣା, ବାଣରୋଶଣି, କଚିରି ଦରବାର ଯାହା ସବୁ ଅଙ୍ଗେ ନିଭାନ୍ତି ତାକୁ ଶର୍ମା ତାଳପତ୍ରରେ ଟିପି ରଖନ୍ତି । ରାଜବାଟୀ ମୁଲକରୁ ବାହୁଡ଼ା ବିଜେ କରି ସ୍ୱଦେଶକୁ ଆସି ଯେତେବେଳେ ଶର୍ମାଙ୍କର କିଛି ଅବଲମ୍ବନ ନ ଥାଏ, ସେତେବେଳେ ରାଜାରାଜୁଡ଼ାଙ୍କୁ କିସମ କିସମ କରି, ଜାତି ଜାତି କରି ବାଛନ୍ତି ଓ ପାରିବାରିକ ଓ ସରକାରୀ ଉପାଧି ଛଡ଼ା ଶର୍ମାଏ ପ୍ରତ୍ୟେକ ରାଜା ରାଜୋଡ଼ାଙ୍କୁ ଚିହ୍ନଟ କରିବା ସକାଶେ ଘୋଡ଼ାମୁହାଁ, ଗଧମୁହାଁ, ଗାଈମୁହାଁ, ତୋବଡ଼ାମୁହାଁ, ବାଆଁରାମୁହାଁ, ଅପାନମୁହାଁ, ପୋତାମୁହାଁ, ବିରୁଡ଼ିମୁହାଁ, ପିମ୍ପୁଡ଼ିମୁହାଁ, ରକତମୁହାଁ, ଆମ୍ବୁଲମୁହାଁ, ସଳିତାମୁହାଁ, ଘଡ଼ିମୁହାଁ, କ୍ଷଳଜଳାମୁହାଁ, ପଲମମୁହାଁ, ପିହାଣମୁହାଁ, ଛୁଞ୍ଚମୁହାଁ, ଗୋମୁହାଁ ବା ଗଧମୁହାଁ, ଅମୁହାଁ, ଛେତାମୁହାଁ, ମନ୍ତ୍ରୀମୁହାଁ, ସନ୍ତ୍ରୀମୁହାଁ, ହେଟାମୁହାଁ, ବାନ୍ଦରମୁହାଁ, ବାଘମୁହାଁ, ଧନୁମୁହାଁ, ଦରପୋଡ଼ାମୁହାଁ, ଭାଲୁମୁହାଁ, ଛଉକାମୁହାଁ, ଭଙ୍ଗମୁହାଁ, ସିଂହମୁହାଁ, କୋକୀମୁହାଁ, ପଟାମୁହାଁ, ବୋତଲମୁହାଁ, ଶିଶିମୁହାଁ, ଟେରୀମୁହାଁ, ଟୀକାମୁହାଁ, ଗମ୍ଭୀରାମୁହାଁ, ଗାତମୁହାଁ, ଭାଲିଆମୁହାଁ, ବିଛୁଆତିମୁହାଁ, ଚଷମାମୁହାଁ, ଦାଢ଼ିଆମୁହାଁ, ମୁଛିଆମୁହାଁ, ଥାକୁଳାମୁହାଁ, ଲାଜକୋଳାମୁହାଁ, କୁଆମୁହାଁ, କୋଇଲିମୁହାଁ, ଶାଗୁଣାମୁହାଁ, ଚାନ୍ଦମୁହାଁ, ପାଳତୁଣ୍ଡାମୁହାଁ, ବସନ୍ତମୁହାଁ, କରଣିମୁହାଁ, ଶଗଡ଼ଦଣ୍ଡାମୁହାଁ, ଚେମିଣିମୁହାଁ, ଗୋଧିମୁହାଁ, ବେଙ୍ଗମୁହାଁ, ବିରୁଡ଼ିମୁହାଁ, ଓଲୁଅମୁହାଁ, ବଙ୍କାମୁହାଁ, କଖାରୁମୁହାଁ, କଦଳୀମୁହାଁ, ସାରୁମୁହାଁ, ଏହିପରି ବହୁବ୍ରୀହି ସମାସ ନିଷନ୍ନ ଓଡ଼ିଆ ବ୍ୟାକରଣସିଦ୍ଧ ଗୋଟିଏ ଲେଖାଏଁ ଉପାଧି ମାର୍କାର ଟିକଟ ମାରି ଦିଅନ୍ତି । ପାଠକମାନେ ମଧ ବୁଝିବେ ଯେ, ମୁହଁର ବିଶେଷତ୍ୱ ଦ୍ୱାରା ମନୁଷ୍ୟଙ୍କୁ ଚିହ୍ନିବାଟା

ଯେଡ଼େ ସହଜ, ଅନ୍ୟ ଅଙ୍ଗ (ଅପାଙ୍ଗ, ପ୍ରତ୍ୟଙ୍ଗ, ଉତ୍ତମାଙ୍ଗ, ଅଧମାଙ୍ଗ) ଦ୍ୱାରା ଲୋକ ଚିହ୍ନିବା ସେତେ ସହଜ ନୁହେଁ । ସ୍ତ୍ରୀମାନଙ୍କ ପକ୍ଷରେ ବ୍ୟାକରଣ ନିୟମ ଅନୁସାରେ 'ମୁହଁ' ଗୋଟିଏ ମାର୍କାମରା କଣ୍ଟେଇକୁ ବାହାର କରାଯାଇ ଧାରତାବଂଧାରୁ ମୁକୁଳିବା ପାଇଁ ସମ୍ପାଦକଙ୍କୁ ଭେଟି ଦିଆଯିବ । ସଂପାଦକ ତାହାସବୁ ସାଇତିବାକୁ ଦତ୍ତାବଧାନ ହୁଅନ୍ତୁ । ଉ.ସା. ଜ୍ୟେଷ୍ଠ ୧୩୪୨ ସାଲ ।

॥ ଦୁଇ ॥

ପୂର୍ବରୁ ଶର୍ମାଏ କହିଛନ୍ତି ଯେ, ମୁହଁରୁ ମନୁଷ୍ୟଙ୍କୁ ଠଉରାଇ ହୁଏ ଓ ମୁହଁ ଚିହ୍ନଟ ପଦ ଲଗାଇଲେ ତତ୍ତତ୍ ଲୋକମାନଙ୍କ ଚରିତ୍ର ଉତ୍ତମ ରୂପେ ଠଉରାଇ ହୁଏ । ଜଣେ କବି କହିଲେ ପରା, The face is the window of the Soul ଅର୍ଥାତ୍ ମୁହଁ ହିଁ ଦେହ ଭିତରେ ଥିବା ଆତ୍ମାର ଝଲାକବାଟି । ଝରକା ବାଟେ ଯେଉଁପରି ଘର ଭିତରେ କ'ଣ ଅଛି ତାହା ଜଣାଯାଏ, ମୁହଁ ଦ୍ୱାରା ସେହି ମୁହଁଧାରୀ ମନୁଷ୍ୟ ଭିତରେ ଅମୃତ କି ନରକ ଅଛି ତାହା ଅନେକ ପରିମାଣରେ ଠଉରାଇ ହୁଏ । ଏଥିପାଇଁ ଶର୍ମାଏ ମୁହଁ ଅନୁସାରେ ଲୋକମାନଙ୍କ ଶ୍ରେଣୀ ବିଭାଗ କରି ପୂର୍ବରୁ ପାଠକମାନଙ୍କ ଆଗରେ ତହିଁର କେତେକ ନମୁନା ବାଢ଼ି ଦେଇଛନ୍ତି । ଆମେ ଏଠାରେ ଡାକି ଫୁକାରି କହିଥାଉଁ ଯେ, ଦିଓଟି ଗୋଟିଏ ଉଦାହରଣ ଦେଖାଇ ବାଟ ମଡ଼ାଇ ଦେଲେ ପାଠକପାଠିକାମାନେ ସେହି ବାଟ ଧରି ନିଜ ନିଜର ଅନୁଭବ ଅନୁସାରେ ନିଜର ପରିଚିତ, ଆଶ୍ରିତ, ପାଇତ, ପାଳିତ, ପ୍ରଭୁ, ଭୃତ୍ୟ, ପ୍ରେମିକ, ପ୍ରେମିକାମାନଙ୍କ ଶ୍ରେଣୀ ବିଭାଗ କରିଯିବେ । ଯେଉଁମାନେ ଦଣ୍ଡବିଧି ଆଇନରେ କିଛି କସରତ୍ କରିଅଛନ୍ତି, ସେମାନେ ଜାଣନ୍ତି ଯେ, ଦଣ୍ଡବିଧିରେ ଯେଉଁଠାରେ ପୁଂଲିଙ୍ଗ ବ୍ୟବହୃତ ହୋଇଅଛି ସେ ବିଧାନ ସ୍ତ୍ରୀଲିଙ୍ଗ ବାଚକ ଜୀବଙ୍କ ପ୍ରତି ମଧ୍ୟ ଖଟେ । ଅତଏବ ଓଡ଼ିଆ ବ୍ୟାକରଣରେ ଦଖଲ ଥିଲେ ପାଠକପାଠିକାମାନେ ତତ୍ତତ୍ ବିଶେଷଣ ବିଶିଷ୍ଟ ଅବଳାଙ୍କୁ ଦେଖିଲେ 'ମୁହଁ' ସ୍ଥାନରେ 'ମୁହାଁ' ଶବ୍ଦ ଖଞ୍ଜି ଦତ୍ତତ ସ୍ତ୍ରୀଲିଙ୍ଗ ଶବ୍ଦ ପଢ଼ିନେବେ । ତେବେ ଏ କ୍ଷେତ୍ରରେ ଟିକିଏ ଓସ୍ତାତି ଓ ମତଭେଦ ଅଛି । 'ଝଲଝଲା ମୁହାଁ'ର ସ୍ତ୍ରୀଲିଙ୍ଗ ଆକାର କଅଣ ହେବ ? ଏଥିରେ ଓଡ଼ିଶୀ ମୁନିମାନଙ୍କର ମତଦ୍ୱୈଧ ଦେଖାଯାଏ । କେହି କହିବେ 'ଝଲଝଲା ମୁହାଁ' କେହି କହିବେ 'ଝଲଝଲୀ ମୁହାଁ' ଏହିପରି ଲେଫଡ଼ା ମୁହାଁର ସ୍ତ୍ରୀଲିଙ୍ଗ ବିକଳ୍ପରେ ଲେଫଡ଼ୀମୁହାଁ, ହସୁରାମୁହାଁର ସ୍ତ୍ରୀଲିଙ୍ଗ 'ହସୁରୀ ମୁହାଁ' ହେବ ବୋଲି କେହି କେହି ପଣ୍ଡିତ ଭାବନ୍ତି । କିନ୍ତୁ ଶର୍ମା କହନ୍ତି ଯେ, ଶେଷୋକ୍ତି ଆକାରର ପକ୍ଷାବଲମ୍ବୀ ବୟକରଣମାନଙ୍କ ମତ ଭ୍ରାନ୍ତ । କାରଣ ଝଲଝଲା, ଲେଫଡ଼ା ଓ ହସୁରା ଶବ୍ଦମାନଙ୍କର ସ୍ତ୍ରୀଲିଙ୍ଗ ଆକାର ଯଥାକ୍ରମେ ଝଲଝଲା, ଲେଫଡ଼ା ଓ ହସୁରୀ ହେଲେହେଁ ଶଂସିତ ବିଶେଷଣ ପଦମାନଙ୍କରେ ପ୍ରଥମାଂଶ ଶବ୍ଦଗୁଡ଼ିକ ଉକ୍ତ ସ୍ତ୍ରୀମାନଙ୍କର ବିଶେଷଣ ରୂପେ ବ୍ୟବହୃତ ନ ହୋଇ ସ୍ତ୍ରୀମାନଙ୍କ ମୁହଁର ବିଶେଷଣ ରୂପେ ବ୍ୟବହୃତ

ହୁଏ । ସ୍ତ୍ରୀ-ମାନେ ସିନା ସ୍ତ୍ରୀଲିଙ୍ଗ, କିନ୍ତୁ ତାଙ୍କ ମୁହଁଟିମାନ ତ ସ୍ତ୍ରୀଲିଙ୍ଗ ନୁହେଁ, ବିଶେଷତଃ ବିଂଶ ଶତାବ୍ଦୀର ସ୍ତ୍ରୀମାନଙ୍କ ମୁହଁମାନ ତ ପୁଂଲିଙ୍ଗ ଥିବାର ସାଫ୍ ସାବିତ୍ । ହେଲେ ବ୍ୟାକରଣ ତ ଚକ୍ଷୁଲଜ୍ଜା ରଖିବା ବା ଉଁ ଚୁଁ କରିବାର ସ୍ଥାନ ନୁହେଁ । ସ୍ତ୍ରୀମାନଙ୍କ ଉପସ୍ଥିତିରେ, ଅନୁରୋଧରେ ବା ଉପରୋଧରେ ଅନେକ ପୁରୁଷ ନାମଧାରୀ ଜୀବ କାର୍ଯ୍ୟତଃ ସ୍ତ୍ରୀ ପାଲଟି ଯାଉଥିବାର ଦେଖାଯାଉଥିଲେ ମଧ ଏ ସ୍ଥଳରେ ବ୍ୟାକରଣାନୁମୋଦିତ ନିୟମ ପାଳିବାକୁ ଆମ୍ଭେମାନେ ଆଇନ ଅନୁସାରେ ବାଧ । ଅତଏବ ଜଳଜଳମୁହାଁ, ହସୁରାମୁହାଁ, ଲେଫଡ଼ାମୁହାଁର ସ୍ତ୍ରୀଲିଙ୍ଗ ଯଥାକ୍ରମେ ଜଳଜଳାମୁହାଁ, ହସୁରାମୁହାଁ ଓ ଲେଫଡ଼ାମୁହାଁ କରିବା ବ୍ୟାକରଣସମ୍ମତ ଓ ଆଧୁନିକ କାଇଦା ଓ ଦେଶାଚାରସଙ୍ଗତ । ତେବେ ଯେଉଁ ଲେଖକମାନେ ନିତାନ୍ତ ମାଇପି ଚାଟୁଆ ହେବାକୁ ଇଚ୍ଛା କରନ୍ତି, ସେମାନେ ଜଳଜଳୀମୁହାଁ, ହସୁରୀମୁହାଁ, ଲେଫଡ଼ୀମୁହାଁ କରନ୍ତୁ । ସେମାନଙ୍କ ପାଇଁ ମଧ ଶର୍ମା ବ୍ୟାକରଣରୁ ନଜିର ଯୋଗାଇବାକୁ ପ୍ରସ୍ତୁତ ଅଛନ୍ତି । ଯେଉଁମାନଙ୍କର ସଂସ୍କୃତ ବ୍ୟାକରଣରେ ଦଖଲ ଅଛି, ସେମାନେ ଦେଖୁଛନ୍ତି ଯେ, କେତେକ ସ୍ଥଳରେ ଦ୍ୱିଅଙ୍ଗ ବିଶିଷ୍ଟ କେତେକ ଶବ୍ଦରେ କେତେକ ପ୍ରତ୍ୟୟ ଲଗାଇଲେ ଶବ୍ଦର ଦିଓଟିଯାକ ଅଙ୍ଗରେ ପରିବର୍ତ୍ତନ ଘଟେ । (ଯଥା - ତ୍ରିମାସ + ଇକ = ତ୍ରୈମାସିକ, ଷଣ୍ମାସ + ଇକ = ଷାଣ୍ମାସିକ) । ଓଡ଼ିଆ ବ୍ୟାକରଣର ତ ମାଆ ବାପ କେହି ନାହିଁ, ତାର ମାଆ ବାପ ଓ ସାର୍ଟିଫିକେଟ ପ୍ରାପ୍ତ ମହାଫିସ ହେଲେ ଆଧୁନିକ ନବ୍ୟ ସଭ୍ୟ ଲେଖକମାନେ । ସେମାନେ ଓଡ଼ିଆରେ ଯାହା ବିଳିବିଳଉଛନ୍ତି ତାହା ହେଉଛି ବେଦର ଗାର । ଅତଏବ ସେହି କେତେଜଣ ଓଡ଼ିଆ ଭାଷାର କ୍ଷମତାପ୍ରାପ୍ତ ମହାଫିସ ସ୍ତ୍ରୀଲିଙ୍ଗର ମନ ରକ୍ଷାଲାଗି ଉପରୋକ୍ତ ନଜିରର ଦ୍ୱାହି ଦେଇ ହସୁରୀମୁହାଁ, ଜଳଜଳୀମୁହାଁ ଓ ଲେଫଡ଼ୀମୁହାଁ ଶବ୍ଦମାନଙ୍କର ପ୍ରୟୋଗ କରନ୍ତୁ ।

ହଁ, ଏଠାରେ ଆଉ ଗୋଟାଏ ବ୍ୟାକରଣଗତ ଆଲୋଚନାର ଅବତାରଣା କରାଯାଉ । 'ଜଳଜଳାମୁହାଁ' ଶବ୍ଦର ସ୍ତ୍ରୀଲିଙ୍ଗ 'ଜଳଜଳାମୁହୀଁ' ଓ 'ଜଳଜଳୀମୁହୀଁ' ଦୁଇଟି ରୂପ ପାଇଁ ବ୍ୟାକରଣ ଦୃଷ୍ଟିରୁ ଦିଓଟି ସ୍ଥାନ ଖଞ୍ଜି ଦେଲେ କାହାରି ଆଉ କିଛି କହିବାକୁ ନ ଥିବ । ବ୍ୟାକରଣରେ ଆମେ ସମସ୍ତେ ପଢ଼ିଲେହେଁ, ଲିଙ୍ଗ ତିନୋଟି - ଯଥା ସ୍ତ୍ରୀ, ପୁଂ ଓ ନପୁଂସକ । କିନ୍ତୁ ଏ ସ୍ତ୍ରୀଲିଙ୍ଗ ଓ ପୁଂଲିଙ୍ଗ ମଧରେ ଗଳିପଡ଼ି ଆଉ ଗୋଟିଏ କିସମର ଲିଙ୍ଗ ରହିଯାଇଅଛି । ଭାଇଙ୍କ ସ୍ତ୍ରୀ ହେଲା ଭାଉଜ; କିନ୍ତୁ ଖୋଦ୍ ଭାଇଙ୍କର ସ୍ତ୍ରୀଲିଙ୍ଗଧାରୀ ଅବତାର ହେଲେ ଭଉଣୀ । ଉଭୟ ଅବଶ୍ୟ ସ୍ତ୍ରୀଲିଙ୍ଗ କିନ୍ତୁ ଭାଇଙ୍କ ସମ୍ପର୍କରେ ସେ ଦୁହିଁଙ୍କର କି ସମ୍ପର୍କ ବିଦ୍ୟମାନ ଅଛି ଏ ସମ୍ବନ୍ଧରେ ଅନିଷ୍ଟ ଉଠିପାରେ । ଏହି ଅନିଷ୍ଟର ମୀମାଂସା ଲାଗି ଭାଉଜଙ୍କୁ ତାଙ୍କର ଧର୍ମପତ୍ନୀତ୍ୱାଧିକାର ସମ୍ମତ ଲିଙ୍ଗ ଦିଆଯାଇ ଭାଉଜ ଶବ୍ଦକୁ ଭାଇ ଶବ୍ଦର ସ୍ତ୍ରୀଲିଙ୍ଗ ଓ ଭଉଣୀ ଶବ୍ଦକୁ ଭାଇଶବ୍ଦର ବିପରୀତ ଲିଙ୍ଗ କରି ଲେଖିଦେଲେ କଳି ଠକ୍‌କିନି ଛିଣ୍ଡିଯିବ । ଏହିପରି ଭଉଣୀଙ୍କ ପୁଂଲିଙ୍ଗ ଭିଣେଇ ଓ ବିପରୀତ ଲିଙ୍ଗ ଭାଇ କରାଯାଇପାରେ । ଏ କ୍ଷେତ୍ରରେ ଜଳଜଳାମୁହାଁର ଏ ଦୁଇ ସ୍ତ୍ରୀଲିଙ୍ଗ ଆକାର

ମଧ୍ୟରୁ ଗୋଟିକୁ ସ୍ତ୍ରୀଲିଙ୍ଗ ଓ ଅନ୍ୟଟିକୁ ବିପରୀତ ଲିଙ୍ଗ ଶ୍ରେଣୀରେ ବସାଇ ଦେଲେ ଅଡୁଆ ଛିଣ୍ଡିଯିବ ଓ ଓଡ଼ିଆ ବ୍ୟାକରଣଟା ମଧ୍ୟ ଧନୀ ହୋଇଯିବ । ଏ ସବୁ ଓଡ଼ିଆ ସାହିତ୍ୟସେବୀମାନେ ମୀମାଂସା କରୁଥାଆନ୍ତୁ । ଯାହାହେଉ ଏ ଅବାନ୍ତର ମନ୍ତବ୍ୟ ସବୁ ଥାଉ । ବର୍ତ୍ତମାନ ଅସଲ ପ୍ରସଙ୍ଗ ପଡୁ । ପୂର୍ବ ଅଧ୍ୟାୟ ବର୍ଣ୍ଣିତ ସୂଚୀଧାରୀମାନଙ୍କ ମଧ୍ୟରୁ ଶର୍ମାଙ୍କର ଜଳଜଳାମୁହାଁ ବନ୍ଧୁ ଓ ତାଙ୍କ ଜଳଜଳାମୁହାଁ ବନ୍ଧୁଆଣୀଙ୍କ କଥା ପାଠକ-ପାଠିକାମାନେ ଶୁଣି ଆଜ୍ଞା ହେଉନ୍ତୁ । ଆମ ବାପା ଯେତେବେଳେ ରାଜଦ୍ୱାରରେ ସମ୍ମାନିତ ଆସନ (ଓଃ ରାମ୍ । ସସମ୍ମାନ ଦଣ୍ଡାୟମାନ ଅବସ୍ଥା) ପାଇଥିଲେ ସେହି ଅମଳରେ କେତେଗୁଡ଼ିଏ ରାଜା ମହାରାଜା, ରାଜାଙ୍କ ଅନ୍ତର, ପ୍ରତ୍ୟନ୍ତର, ସମାନ୍ତର, ଅବାନ୍ତରଙ୍କ ସଙ୍ଗେ ବାପାଙ୍କର ବନ୍ଧୁତା, ସୂର୍ଯ୍ୟବନ୍ଧୁତା, ଚନ୍ଦ୍ର ବନ୍ଧୁତା, ତୀର୍ଥ ବନ୍ଧୁତା ଘଟିଥିଲା ଏମନ୍ତ କି ବାପାଙ୍କର ସେମାନଙ୍କ ସଙ୍ଗେ ଭାର ବେଭାର, ଗୁଆ ଆଦାନ ପ୍ରଦାନ ଆଦି ଚଳିଥିଲା । ସେମାନଙ୍କ ମଧ୍ୟରୁ ବାପା ଜଣଙ୍କୁ ନାମ ଦେଇଥିଲେ ଜଳଜଳାମୁହାଁ । ବାପାଙ୍କ ନାମକରଣ ସଙ୍ଗେ ଆଭିଧାନିକ ଅର୍ଥ ଅନେକ ସମୟରେ ମେଳ ଖାଉ ନ ଥିବାରୁ କାଳେ ଜଳଜଳାମୁହାଁ ଶବ୍ଦର କୌଷିକ ଅର୍ଥ ସଙ୍ଗେ ବାପାଙ୍କର ଆନୁଭାବିକ ଅର୍ଥର ମେଳ ଖାଇବ ନାହିଁ, ଏହି ଆଶଙ୍କାରେ ସେହି ଜଳଜଳାମୁହାଁ ପିତୃବନ୍ଧୁଙ୍କ ବିଷୟରେ ବାପା ଯାହା ଲେଖନୀବଦ୍ଧ କରିଅଛନ୍ତି, ତାହା 'ସାହିତ୍ୟ'ର ସମ୍ପାଦକଙ୍କୁ ଉପଢୌକନ ଦିଆଗଲା ।

ଶର୍ମାଙ୍କ ପିତୃଦେବ ରାଜ ସରକାରରେ କୋଠକରଣ କର୍ମ କରୁଥିବା ବେଳେ ରାଜାଙ୍କ 'ଓକିଲ' (ପ୍ରତିନିଧି) ରୂପେ ତାଙ୍କୁ ଅନ୍ୟାନ୍ୟ ରାଜାମାନଙ୍କ ରାଜଧାନୀକୁ ସମୟ ସମୟରେ ଯିବାକୁ ପଡୁଥିଲା । ଗଡ଼ଜାତରେ ଓ ରାଜା ରାଜୋଡ଼ାରେ ଯେଉଁ ପାଠକମାନେ ଚଳାଚଳ ହୋଇ ଅଛନ୍ତି, ସେମାନେ ଜାଣନ୍ତି ଯେ, କୌଣସି ରାଜାଙ୍କ ସାମାଜିକ ଉତ୍ସବ ବା ଅନୁଷ୍ଠାନରେ ଯୋଗ ଦେବା ଲାଗି ଯେବେ ଏହି ରାଜା ସ୍ୱୟଂ ଯେଉଁ ରାଜାଙ୍କ ନିମନ୍ତ୍ରଣ କରିବାକୁ ତାଙ୍କ ରାଜଧାନୀକୁ ବିଜେ ହେବେ, ତେବେ ଉକ୍ତ ଉତ୍ସବରେ ଯୋଗଦେବା ଲାଗି ନିମନ୍ତ୍ରିତ ରାଜା ଖୋଦ୍ ଆସିବେ, ଯେବେ ରାଜପୁତ୍ର ନିମନ୍ତ୍ରଣ କରିବାକୁ ଯିବେ, ତେବେ ନିମନ୍ତ୍ରିତ ରାଜାଙ୍କ ରାଜପୁତ୍ର ଆସିବେ, ଯେବେ ରାଜବିରାଦର ଯିବେ, ତେବେ ରାଜବିରାଦର ଆସିବେ, ନିମନ୍ତ୍ରଣକାରୀଙ୍କ ଦେବାନ୍ ଗଲେ ନିମନ୍ତ୍ରିତଙ୍କ ଦେବାନ୍ ଆସିବେ, ଯେବେ ଏ ରାଜାଙ୍କ 'ଓକିଲ' ନିମନ୍ତ୍ରଣ କରିବାକୁ ଯିବେ, ତେବେ ନିମନ୍ତ୍ରିତ ରାଜାଙ୍କ 'ଓକିଲ' ଆସିବେ । ଆଜିକାଲିର ନୂଆ ଫେସନର ରାଜାମାନେ ଏ ନିୟମକୁ ଠିକ୍ ମତେ ପାଳୁ ନାହାନ୍ତି ବୋଲି ଏ ପ୍ରଥା ବୁଡ଼ିବାକୁ ବସିଲାଣି । ଆମ ବାପାଙ୍କ ଅମଳରେ ଏ ପ୍ରଥା ଷୋଳପଣ ବଳବତ୍ ଓ ଫଳବତ୍ ଥିଲା । ଆମ ବାପାଙ୍କୁ ତାଙ୍କ ଖାଉନ୍ଦ ରାଜାଙ୍କ 'ଓକିଲ' ରୂପେ ଅନେକ ରାଜୋଡ଼ାଙ୍କ ଉତ୍ସବାଦିରେ ଯୋଗ ଦେବାକୁ ପଡୁଥିଲା । ଏଠାରେ କହି ରଖିବା ଉଚିତ ଯେ, ଏ 'ଓକିଲ' ହେବା ପାଇଁ ଲ-କ୍ଲାସର ଲେକ୍‌ଚରମାନଙ୍କରେ ହାଜର ହେବା, ଲ-ବହି ପଢ଼ିବା, ଲ-ପାସ୍ କରିବା ଓ ଓକିଲାତି ସନନ୍ଦ ବା ସାର୍ଟିଫିକେଟ

ହାସଲ କରିବାକୁ ପଡ଼େ ନାହିଁ । ଅନ୍ୟ ରାଜାଙ୍କ ନିମନ୍ତ୍ରଣର ପ୍ରତ୍ୟୁତ୍ତରରେ ପ୍ରଭୁ ରାଜାଙ୍କ ଠାରୁ ବେଭାର ଧରି ଗଲେ 'ଓକିଲ' ଉପାଧି ମିଳେ । ଆମ ବାପା ସେହି ଶ୍ରେଣୀର ଓକିଲ କେତେଥର ହୋଇଥିଲେ । ଥରେ ଏକ ରାଜାଙ୍କ ଅନ୍ତ୍ୟେଷ୍ଟି କ୍ରିୟାକୁ ବାପା ଆମର ଓକିଲ ହୋଇ ଯାଇଥିଲେ । ଆମ ଦେଶର ରାଜପରିବାରମାନଙ୍କରେ ଗୋଟିଏ ପ୍ରଥା ଅବଶ୍ୟ ଅନେକ ପାଠକଙ୍କୁ ଜଣାଥିବ । ରାଜାମାନଙ୍କ ମୃତ୍ୟୁ ହେବା ମାତ୍ରେ ତାଙ୍କ ପୁତ୍ର ଗଦିନସିନ ହୁଅନ୍ତି ଓ ରାଜାଙ୍କ ଶବ ନ ଉଠୁଣୁ କୁମାରଙ୍କର ରାଜ୍ୟାଭିଷେକ ରୂପ 'ମଙ୍ଗଳକମ୍' ଯେ କରିବେ ସେ ଅଶୌଚ ପାଳିବେ କିପରି ? ଏଥିପାଇଁ 'ପୁଅ ବ୍ରାହ୍ମଣ'ଙ୍କ ସୃଷ୍ଟି । କୌଣସି ବ୍ରାହ୍ମଣଙ୍କୁ ବା ବ୍ରାହ୍ମଣ ପରିବାରଙ୍କୁ 'ପୁଅ ବ୍ରାହ୍ମଣ ରୂପେ ଯଥୋଚିତ ଜାଗିରି ଓ ଖଞ୍ଜା ଦିଆଯାଇ ପୋଷା ଯାଇଥାଏ । ରାଜାଙ୍କର ମୃତ୍ୟୁ ହେଲେ ରାଜପୁତ୍ର ରାଜ୍ୟାଭିଷେକ ରୂପ ମଙ୍ଗଳ କର୍ମରେ ଲାଗିବେ । 'ପୁଅବ୍ରାହ୍ମଣ' ମୃତ ରାଜାଙ୍କ ଅନ୍ତ୍ୟେଷ୍ଟିକ୍ରିୟା ସମ୍ପାଦନ କରିବେ । ଏକ ରାଜାଙ୍କ ଅନ୍ତ୍ୟେଷ୍ଟିକୁ ନିମନ୍ତ୍ରଣ ରକ୍ଷା କରିବାକୁ ବାପା ଆମର 'ଓକିଲ' ହୋଇ ଯାଇଥିଲେ । ରାଜାଙ୍କ ଦଶାହର ଅଧରାତିରେ ପୁଅବ୍ରାହ୍ମଣଙ୍କର ବାଇଜି ହାଣ୍ଡି (ଜଳଜଳା ହାଣ୍ଡି) ରାଜଧାନୀର ପ୍ରାନ୍ତସ୍ଥ ଦଣ୍ଡାକୁ ନିଆ ହେଲାବେଳେ ବାପା ଯାଇ ରାଜଧାନୀରେ ଗୋଡ଼ ଦେଲେ ଓ ସେହି ଅନୁକୂଳରେ ବାପାଙ୍କର କୋଥଳିରେ ଖଣ୍ଡିଏ ଟିପା ଅଛି । ସେଥିଯୋଗୁଁ ବାପା ଏ ରାଜପୁତ୍ରଙ୍କୁ ଜଳଜଳାମୁହାଁ ଉପାଧି ଦେଇ ଅଛନ୍ତି, କି ତାଙ୍କ ମୁହଁଟା ଜଳଉଦରୀ ରୋଗୀର ସ୍ଫୀତ ଉଦର ଭଳି (ଜଳଜଳ) ଫୁଲ୍‌କା ଥିବାରୁ ଏ ନାମ ଦେଇଅଛନ୍ତି, କି ଜଳଜଳାମୁହାଁର ଅଭିଧାନସୁଲଭ ଅର୍ଥରେ ତାଙ୍କର ଏ ନାମକରଣ କରିଅଛନ୍ତି, ତାହା ସଫା ଜଣାଯାଉ ନାହିଁ । ଉକ୍ତ ରାଜପୁତ୍ର ଆମ ବାପାଙ୍କ ସଙ୍ଗେ ଘଟନାଚକ୍ରରେ ଖୁବ୍ ରଜଘସ୍ ହୋଇଗଲେ । ରାଜପୁତ୍ର ଅହିଫେନସେବୀ, ଆମ ବାପା ମଧ୍ୟ ଅହିଫେନ ଭକ୍ତ ଥିଲେ । ଅହିଫେନର ପଞ୍ଚଭୂତ (କ୍ଷିତ୍ୟପତେଜୋମରୁଦ୍ବ୍ୟୋମ୍) ଅନୁସାରେ ପଞ୍ଚ ଅବତାର ଥିବା କଥା ଅଜ୍ଞ ବହୁତ ସମସ୍ତଙ୍କୁ ଜଣାଥିଲା । ବାପା ଥିଲେ ଅହିଫେନର କ୍ଷିତ୍ୟବତାର ବା ଜଡ଼ାକାରର ଉପାସକ । ରାଜପୁତ୍ର ଥିଲେ ମରୁଦେବତାଙ୍କର ବା ବାୟବ୍ୟାକାରର ସେବକ । ସୁଯୋଗରେ ଦୁହିଁଙ୍କର ରାଜନଗରୀରେ ଭେଟ ହେଲା । ବାପାଙ୍କ କୋଥଳିରେ ଥିବା ଅହିଫେନର ନିର୍ଦ୍ଦିଷ୍ଟ ମାତ୍ରା ସରିଯିବାରୁ ବାପା ସେହି ଜ୍ୱାଳାରେ ପାଟୁ ପାଟୁ ହେଉଥିଲେ । ଏହି ସମୟରେ ରାଜପୁତ୍ର ବାପାଙ୍କୁ ବାୟବୀୟାକାରଙ୍କ ଆରାଧନ ପଥରେ ପଥିକ କରାଇଲେ ଓ ଦୁହିଁଙ୍କର ଘନିଷ୍ଠତା ଏଥିରେ ଆରବ୍ଧ ହୋଇ ତାହା କ୍ରମଶଃ ଦୃଢ଼ୀଭୂତ ହେଲା । ବାପାଙ୍କର ଓ ରାଜପୁତ୍ରଙ୍କର ଜୀବିତ କାଳ ପରେ ସେ ବନ୍ଧୁତା ରାଜପୁତ୍ରଙ୍କ କୁମାର ଓ ଖୋଦ୍ ଶର୍ମାଙ୍କ ମଧ୍ୟରେ ଅବଧି ରହିଅଛି । ଉକ୍ତ ଜଳଜଳା- ମୁହାଁଙ୍କର ଯେଉଁ ବିଶିଷ୍ଟ ଗୁଣମାନ ଥିଲା, ତାହା ଆପଣମାନେ ଶୁଣି ଆଜ୍ଞା ହୁଅନ୍ତୁ । ଜଳଜଳାମୁହାଁ ବନ୍ଧୁଙ୍କର ପ୍ରଥମ ଗୁଣ ଥିଲା ପ୍ରତିଶ୍ରୁତି ଦେବାରେ ତତ୍ପରତା ଓ ତହିଁର ପାଳନରେ ପରାଙ୍ମୁଖତା

ଓ ନିଲଠାପଣ । ସାଧାରଣ ହିତକର କର୍ମ ପାଇଁ କିମ୍ବା ଦୁଃସ୍ଥ, ଗରିବ, କନ୍ୟାଦାୟଗ୍ରସ୍ତ ବ୍ୟକ୍ତିର ସାହାଯ୍ୟ ପାଇଁ ଚାନ୍ଦା ଫରଦ ବୁଲିଲେ, ବନ୍ଧୁଙ୍କର ଗୋଟିଏ ମନବୋଧିଆ, କାନବୋଧିଆ, ଆଖିବୋଧିଆ ଅଙ୍ଗୀକୃତ ଅର୍ଥର ପରିମାଣ ଚାନ୍ଦା ଫରଦରେ ଚଢ଼େ ଓ ତଳେ ବନ୍ଧୁଙ୍କର ଶ୍ରୀହସ୍ତର ସ୍ୱାକ୍ଷର ପଡ଼େ, କିନ୍ତୁ ଫଳବେଳକୁ ବନ୍ଧୁଙ୍କର ଉତ୍ତମାଙ୍ଗ (ମୁଖ) ନିଲଠାଗିରି ଦ୍ୟୋତକ ଦର୍ଶନୀୟ ଅଙ୍ଗ ବିଶେଷରେ ପରିଣତ ହୁଏ । ସମ୍ବାଦପତ୍ର ମହଲରେ ଜଳଜଳାମୁହାଁଙ୍କ ଆସନ ମଧ୍ୟ ମାର୍କାମରା ଓ ଦେଶ ବିଦେଶ ବିଖ୍ୟାତ । ତାଙ୍କର ନାମର ଓ ରା-କୁମରତ୍ୱର ଔଜ୍ଜ୍ୱଲ୍ୟରେ ପ୍ରଲୋଭିତ ହୋଇ ଦେଶ ବିଦେଶର ସମ୍ବାଦପତ୍ରମାନଙ୍କ ପରିଚାଳକମାନେ ତାଙ୍କ ଡାକ ଠିକଣାରେ ନିଜ ନିଜର ସମ୍ପାଦିତ ପତ୍ରପତ୍ରିକାମାନ (ଦୈନିକ, ସାପ୍ତାହିକ, ଦ୍ୱୈସାପ୍ତାହିକ, ମାସିକ, ତ୍ରୈମାସିକ ପତ୍ରିକା) ନିୟମିତ ରୂପେ ପଠାଇ ଦିଅନ୍ତି । ବନ୍ଧୁ ପତ୍ରିକା ନେବେ ନାହିଁ ବୋଲି ପ୍ରଥମରୁ ମନାକରି ଦେଉଥିଲେ ଲଟ ଛିଣ୍ଡି ଯାଉଥାଆନ୍ତା; କିନ୍ତୁ ତାହା କଲେ ବନ୍ଧୁଙ୍କ ପାରିବାରିକ ବାଳମଳପ୍ରୋଞ୍ଛନ, ଗାର୍ହସ୍ଥ୍ୟ ପଣ୍ୟାଦିର ପେଟିକାବନ୍ଧନାଦି କର୍ମ ପାଇଁ ରାଜମହଲରେ କାଗଜର ଅଭାବ ହୁଅନ୍ତା । ବର୍ଷ ଶେଷରେ ମୂଲ୍ୟ ଆଦାୟ ପାଇଁ ସମ୍ପାଦକଙ୍କଠାରୁ ନିବେଦନ ପତ୍ର ଗଲେ ବନ୍ଧୁ ନିରୁତ୍ତର ରହନ୍ତି ଓ ଡାକରେ ଭ୍ୟାଲୁ ପେଏବୁଲ (ଦେ କଉଡ଼ି ଖା ପିଠା) ପଦ୍ଧତିରେ ଉକ୍ତ ପତ୍ରିକା ପ୍ରେରିତ ହେଲେ ତାହା ଆଦାୟ ନ ହୋଇ ଫେରିଆସେ । 'ବଥ ଉପରେ ଟଣକର ଘା' ପରି ସମ୍ପାଦକଙ୍କୁ ଡାକ ଦ୍ୱାରା ଫେରସ୍ତ ଆସିବା ଭାଲ୍ୟୁ ପେଏବୁଲ୍ ପତ୍ରର ଡାକମାସୁଲ ତକ ଅର୍ଥ ଦଣ୍ଡ ପଡ଼େ । ବନ୍ଧୁଙ୍କଠାରୁ ତାର ରେଜେଷ୍ଟ୍ରିରେ ଯେତେକ ଡାକ ଚିଠି ଯାଏ, ସେଥିର ଉତ୍ତର ଦିଆଯାଏ ନାହିଁ ଓ ଯେଉଁ ସିଆଣା ମଣିଷ ରେଜିଷ୍ଟରି ଡାକରେ ଚିଠି ଦିଅନ୍ତି ତାହା 'Unfound' (ଗ୍ରାହକ ନିରୁଦ୍ଦିଷ୍ଟ) ବା Refused (ଅଗୃହୀତ) ବୋଲି ପ୍ରେରକଙ୍କଠାରୁ ଫେରିଆସେ । ଜଳଜଳାମୁହାଁ ବନ୍ଧୁଙ୍କର ଆଉ ଗୋଟିଏ ରୀତି 'ପ୍ରାଇଭେଟ ସେକ୍ରେଟେରୀ' ନାମକ ଜୀବର ପାଳନ । ବନ୍ଧୁ କୌଣସି ଚିଠିର ଜବାବ ଦେବେ ନାହିଁ, ସେ କାମ ପ୍ରାଇଭେଟ ସେକ୍ରେଟେରୀଙ୍କ ଉପରେ ଲଦା । ବେଳ ପଡ଼ିଲେ ବନ୍ଧୁ କହିବେ, 'ଆମର' ଅଜ୍ଞାତରେ ବା ବିନା ଆଦେଶରେ ପ୍ରାଇଭେଟ ସେକ୍ରେଟେରୀ ଏପରି ଲେଖିଥିଲେ । ଅତଏବ ଜଳଜଳା ମୁହଁକୁ ତାଜା ରଖିବା ପାଇଁ ଲୋକେ ଜାଣିବାକୁ ଉକ୍ତ ପ୍ରାଇଭେଟ୍ ସେକ୍ରେଟେରୀଙ୍କୁ ବରଖାସ୍ତ କରାଯିବାର ସମ୍ବାଦ ଲୋକ ସମାଜରେ ପ୍ରକଟିତ ହୁଏ । ବନ୍ଧୁଙ୍କର ଆଉ ଏକ ଗୁଣ ଥିଲା, ଅନ୍ୟର ସମ୍ପାଦିତ କର୍ମ ପାଇଁ ଶପଥଗ୍ରହଣପୂର୍ବକ ନିଜର ସମ୍ପାଦିତ କର୍ମ ବାହାଦୁରି ନେବା । ସେ ନିଜେ ଜାଣୁଛନ୍ତି ଓ ଲୋକେ ମଧ୍ୟ ଜାଣିଛନ୍ତି ଯେ, ଅମୁକ କାର୍ଯ୍ୟ ଅମୁକ ଲୋକ ଦ୍ୱାରା କରା ଯାଉଅଛି । କିନ୍ତୁ ଜଳଜଳାମୁହାଁ ବନ୍ଧୁ ଆପଣା ଦରବାରରେ ମୋ ସାହେବମାନଙ୍କ ଆଗେ ହଲପ ଖାଇ ପ୍ରଚାର କରନ୍ତି ଯେ, ଏ କାର୍ଯ୍ୟ ଖୋଦ୍ ଆମେ କରିଛୁଁ । ଜଳଜଳାମୁହାଁ ବନ୍ଧୁର 'ନାମବଡ଼ା' ପ୍ରଲୁବ୍ଧ ସମ୍ବାଦପତ୍ରମାନଙ୍କରେ ତାଙ୍କର ବାହାଦୁରିମାନ ପ୍ରେରିତ

ପତ୍ର, ଏମନ୍ତକି, ସମ୍ପାଦକୀୟ ସ୍ତମ୍ଭମାନଙ୍କରେ ଉପର୍ଯ୍ୟୁପରି ସପ୍ତାହକୁ ସପ୍ତାହ ବାହାରୁଥାଏ ଓ ବନ୍ଧୁ ସେଗୁଡ଼ିକର କାଟେଣୀ (Cutting) ମାନ ସରକାର ବା କର୍ତ୍ତୃପକ୍ଷଙ୍କଠାକୁ ପଠାଇ ଆପଣାର ଜନରଞ୍ଜନଜନିତ ବାହାଦୁରି ଓ ଉପାଧି ପାଇବା ବାଟରେ ମଖମଲି ପାହାଡ଼ା ବିଛେଇବାରେ ଲାଗିଥାଆନ୍ତି । ଏଣେ ତାଙ୍କ ଅନୁଚରବର୍ଗ, ସହଚରଦଳ, ପାର୍ଶ୍ୱଚରଗଣ ଜାଣନ୍ତି ଯେ, ପ୍ରକଟିତ ସମ୍ବାଦଗୁଡ଼ିକ ଅମୂଳକ, ଅତିରଞ୍ଜିତ ଓ ଅବାସ୍ତବ । ଲୋକଙ୍କୁ ବଚନ ଦେଇ ପରେ ଉକ୍ତ ବଚନ ନିର୍ଗତ ହୋଇଥିବା ଭଲସାଙ୍ଗକୁ (ମୁଖ) ଗୋଟିଏ ସ୍ଥିତିସ୍ଥାପକତା ବିଶିଷ୍ଟ ପ୍ରେକ୍ଷଣୀୟ ବସ୍ତୁରେ ପରିଣତ କରିବା ସୁଖବନ୍ଧୁଙ୍କର ନିତ୍ୟାନୁଭୂତ କିନ୍ତୁ 'ବେଢ଼ି ଉପରେ କୋରଡ଼ା' ନ୍ୟାୟର ଅନୁରୋଧରେ ବନ୍ଧୁ ପ୍ରତିଶ୍ରୁତି ପ୍ରାପ୍ତ ବ୍ୟକ୍ତିମାନଙ୍କୁ ପ୍ରତିଶ୍ରୁତି ଭଙ୍ଗଜନିତ କଷ୍ଟଦେଇ ସେଥିରେ ତାଙ୍କର ମନବୋଧ ହୁଏ ନାହିଁ । ପରନ୍ତୁ ଉକ୍ତ ବ୍ୟକ୍ତିଙ୍କୁ ଆଉକିଛି ଖର୍ଚ୍ଚାନ୍ତ କରାଇ ଜଳଜଳା ମୁହଁ ସୁଖ ଉପଭୋଗ କରନ୍ତି । ଥରେ ବାପା ଉକ୍ତ ଜଳଜଳାମୁହାଁ ବନ୍ଧୁଙ୍କୁ ଶର୍ମାଙ୍କ ଉପନୟାନାର୍ଥ କିଛି ସାହାଯ୍ୟ ପ୍ରାର୍ଥନା କରିଥିଲେ । ବନ୍ଧୁ ତାଙ୍କର ଦେୟ ପଦାର୍ଥମାନଙ୍କର ଗୋଟିଏ ଖୁବ୍ ଆଡ଼ମ୍ବରିଆ ତାଲିକା ତିଆରି କଲେ, ଯଥା ଓ ଖର (ଗୋକ୍ଷୀର) ୫ ମହଣ, ବଡ଼ମାଛ (ରୋହି, ଭାକୁଡ଼) ୪ ମହଣ, ପରିବାପତ୍ର ୧୦ ଭାର, ବେଦି ଉପରେ ହୋମ ପାଇଁ ଗୁଆଘିଅ ୧୦ ସେର, ଅମାଳୁ ଓ କାକରା ପାଇଁ ମଇଁଷି ଘିଅ ୧୫ ସେର, ପାଚିଲା କଦଳୀ ୫ କାହାଣ, ବସାଦହି ୧୧ ଭାର, ଏସବୁ ଜିନିଷ ବ୍ରତଘରର ସାହାଯ୍ୟାର୍ଥେ ପଠାଇବାର ନିର୍ଦ୍ଦିଷ୍ଟ ଦିବସ ମଧ ସ୍ଥିର ହୋଇଗଲା । ବାପା ସେହି ନିର୍ଭରରେ ଏସବୁ ପଦାର୍ଥ ପାଇଁ ଅନ୍ୟ ବ୍ୟବସ୍ଥା କଲେ ନାହିଁ । ରାଜବନ୍ଧୁ କେବଳ ଏତିକି ବାପାଙ୍କୁ କହିଲେ, ସେଦିନ ଆମର ଏକ ରାଜୋଡ଼ା ବନ୍ଧୁଙ୍କଠାକୁ ବେଭାର ପଠାଯିବାର ସ୍ଥିର ହୋଇଥିବାରୁ ଏସବୁ ଜିନିଷ ତୁମ ଘରକୁ ପଠାଇବା ପାଇଁ ଆମକୁ ସେଦିନ ବେଠିଆ ମିଳିବେ ନାହିଁ । ଏସବୁ ଜିନିଷ ନେବାଲାଗି ତୁମେ ଆମ ଗଡ଼କୁ ଯଥାସଂଖ୍ୟକ ଭାରୁଆ ବୋଝିଆ ପଠାଇଲେ ସେମାନେ ଏ ଜିନିଷମାନ ଆମ ଉଆସରୁ ନେଇଯିବେ । ବାପା ଆମର ଦିଲ୍ଲୀଲଡୁ ଖାଇବେ ବୋଲି ନିର୍ଦ୍ଧାରିତ ତାରିଖର ୨ ଦିନ ପୂର୍ବରୁ ୪୦ ଜଣ ଭାରୁଆ ବୋଝିଆ ଓ ୨ ଖଣ୍ଡ ଶଗଡ଼ ଉଆସକୁ ପଠାଇଲେ । ସେମାନେ 'ଚାରିକର୍ମ' ଦିନ ରାତି ଅଧ ସରିକି ଆମ ଘରକୁ ଫେରିଆସି କହିଲେ, ଗଡ଼ରେ ପହଞ୍ଚି ଶୁଣିଲୁଁ ଯେ, ବନ୍ଧୁ ସଦଳବଳରେ ରାଜ୍ୟାନ୍ତରକୁ ୪ ଦିନ ହେଲା ବିଜେ କରିଛନ୍ତି ଓ ଉଆସରେ ଥିବା ଲୋକେ ଏସବୁ ବରାଦି ଚିଜର କିଛିମାତ୍ର ସମ୍ବାଦ ଜାଣନ୍ତି ନାହିଁ । ଚାରିକର୍ମ ଦିନ ରାତି ଅଧରେ ଏ ଖବର ପାଇ ବାପାଙ୍କ ମନଟା କେଡ଼େ ଖୁସି ହୋଇଗଲା, ତାହା ସହଜରେ ଅନୁମେୟ । ଫେରିଆସିଥିବା ମୂଲିଆମାନଙ୍କୁ ମୂଲ ଓ ପାଥେୟ ଦେବାରେ ବାପାଙ୍କର ଖରଚ ହେଲା ଅଡ଼ଷଠି ଟଙ୍କା ବାରଅଣା ଚାରିପାହି ଆଠବିଶ୍ୱା । ଉପାୟାନ୍ତର ନ ଦେଖି 'ବସ୍ତ୍ରାଭାବେ ସୂତ୍ରଂ ଦଦ୍ୟାତି' କରି ଭାକୁଡ଼ ରୋହିମାଛ ସ୍ଥଳରେ ଚୂନାମାଛ, ନିରୋଳା ଗାଈଦୁଧ ପରିବର୍ତ୍ତେ ପାଣିମିଶା

ମଇଁଷି ଦୁଧ, ଗବ୍ୟଘୃତ ସ୍ଥାନରେ ଗଛଘିଅ, ମଇଁଷିଘିଅ ପରିବର୍ତ୍ତେ କଖାରୁ ଓ ମୁଣ୍ଡାସାରୁ, ଏହିପରି ପ୍ରତିନିଧି ବ୍ୟବସ୍ଥା କରି ଶର୍ମାଙ୍କ ବ୍ରତଘର ସାଙ୍ଗ କଲେ । ଜଳଜଳାମୁହାଁ ବନ୍ଧୁଙ୍କ ଯୋଗୁଁ ଅକଲ ସଲାମୀ ବା ଧର୍ମତଣ୍ଡ ପଡ଼ିଲା ଏତକ । ଉପନୟନାନ୍ତେ ଜଳଜଳାମୁହାଁ ବନ୍ଧୁଙ୍କ ସାଙ୍ଗେ ବାପାଙ୍କର ପୁଣି ଭେଟ ହେବାରୁ ବନ୍ଧୁଙ୍କ ଜଳଜଳା ମୁହଁ ଯୁଗପଦ୍ ଆକୁଞ୍ଚନ ସମ୍ପ୍ରସାରଣଶୀଳ କୌଣସି ଜୀବାଙ୍ଗ ବିଶେଷର ଆକାର ଧାରଣ କଲା ଓ ତହିଁରୁ କଥା ବ୍ୟାଙ୍କରେ କହିଲା - ସଙ୍ଗାତ, କଅଣ କରିବି ? ଶ୍ରୀମାନ୍ ପାଣୁ (ଶର୍ମାଙ୍କ ନାମ - ପାଣିପାତ୍ରର ଡାକନାମ)ର ବ୍ରତଘର ପାଇଁ ବମେ ଜିନିଷ ମୁଁ ବରାଦ କରିଥିଲି ଓ ତହିଁର ଅଧିକା ମୋ ନିଜର ବରାଦ ମୁତାବକ ଲେମ୍ବୁଲୁଣ ପ୍ରଭାର ସଜିଲ କରିଥିଲି, ବ୍ରତଘର ୩ ଦିନ ଥାଇ ମୁଁ ଆମ ପିଇସୀପୁଅ ଭାଇଙ୍କ ହୀନିଶଳାଙ୍କ ପୁଅର ନାଉଲି ପାଇଁ ତାଙ୍କ ମୁଲକ (ଯାହା ବନ୍ଧୁଙ୍କ ମୁଲକରୁ ୨୦ କୋଶ ଦୂର)କୁ ଯାଉଥିଲି, କିନ୍ତୁ ସେଠାରେ ତାଙ୍କ ଷ୍ଟେଟ୍ ଭୋଜି (Banquet)ରେ ଟେବୁଲ ଉପରେ ବଢ଼ା ହୋଇଥିବା ରଙ୍ଗିନ୍ ପାଣିର ପାନାଧିକ୍ୟରେ ମୋର ବମନ ଓ ହୃତସ୍ତମ୍ଭ (heartfail) ହୋଇଗଲା ଓ ମୁଁ ଆମ ପିଉସୀପୁଅ ଭାଇଙ୍କ ହୀନିଶଳାଙ୍କ ରାଇଜରେ ଡାକ୍ତରଖାନାରେ ୩ ଦିନ ବେହୋସ୍, ଦେଖୋରାକ୍ ଓ ବେପୋଷାକ ଅବସ୍ଥାରେ ପଡ଼ିରହିଲା । ଡାକ୍ତରଖାନାରୁ ଖଲାସ (discharge) ହୋଇ ବୁଝିଲି ଯେ, ପାଣୁର ବ୍ରତଘରକୁ ମୋର ଯାହା ଯାହା ପଠାଇବାର ବରାଦ ଥିଲା, ସେତକ ଯାଇ ଭାଇଙ୍କ ହୀନିଶଳାଙ୍କ ଉଆସରେ ପହଞ୍ଚିଲା ଓ ମୁଁ ସଂଜ୍ଞାହୀନ ଥିବାରୁ ମୋତେ କେହି ପଚାରି ନ ପାରିବାରୁ ସେ ପଦାର୍ଥତକ ହୀନିଶଳାଙ୍କ ଉଆସରେ ସଦ୍‌ବ୍ୟବହାର ହେଲା । ବାପା ଆମର ଏକଥା ଶୁଣି ଓ ଅନୁଭବ କରି ଏବଂ ହଲାପଟା ହୋଇ ସୁଦ୍ଧା ତାଙ୍କ ଆଖି ଫିଟିଲା ନାହିଁ । ଏଥିପୂର୍ବେ ବାପା ଖଣ୍ଡିଏ ଦେଉଳ ତୋଳେଇବେ ବୋଲି ସଙ୍କଳ୍ପ କରି ସେଥିପାଇଁ ରାଜାରାଜୋଡ଼ାଙ୍କ ପାଖରେ ୫ ବର୍ଷ କାଳ ଅନୁସରଣ କରି, କାହାଠାରୁ କିଛି ପଥର, କାହାଠାରୁ କିଛି ଗେଣ୍ଡୁଟି, କାହାଠାରୁ ଇଟା ଓ ଚୂନ, ପୋଡ଼ିବା ପାଇଁ କିଛି କାଠ ସଂଗ୍ରହ କରି ରଖିଥିଲେ । ବାକି କିଛି ନଗଦ ଧନ ହେଲେ ଦେଉଳ ତୋଳା କାମ ଲାଗିବ ବୋଲି ଅରଜ୍ ଜଳଜଳା ସଙ୍ଗାତଙ୍କ ଛାମୁରେ ଦିନେ ଉପସ୍ଥାପିତ କଲେ । ଜଳଜଳାମୁହାଁ ବନ୍ଧୁତ ("Quick to Promise, never to Perfrom") କଅଁଳକୁହା, ଆଦିଆ ଶ୍ରେଣୀର ପ୍ରତିଶ୍ରୁତିଦାତା । ସେ କହିଲେ- ଏ ଛାର କଥା କି ରହିଯିବ ? ଆମେ ଆଗାମୀ ମକର ମେଳାକୁ ତ୍ରିବେଣୀ ସ୍ନାନକୁ ଯିବା । ସେଠାକୁ ଆମ ଶଶୁର ନାମ ବଡ଼ । ଅଦିଆ ସିଂହ ନଳାଖୋଳର ରାଜାସାହେବ, ଆମ ଘର ଆଡ଼ଙ୍କ ଭାଇଲେଖା ପାଟଳପୁଆ ରାଇଜର ମହାରାଜା ଖାଲି ଫେର୍‌ଫାର୍ ଦେଉ ଓ ଆମର ସାନସଢୁ ପାଣିକିଣା ମୁଲକର ରଜା ତୀର୍ଥ କରିବାକୁ ଆସିବେ । ତୁମେ ଯେବେ ବେଳ ଉଣ୍ଡି ସେହିଠାରେ ଆମକୁ ଭେଟିବ, ତେବେ ଆମେ ତ ଯାହା ଆମର ସଦାସୁଦା ଭଣ୍ଡାରରୁ ଦେଇ ଆଜ୍ଞା ହେବା । ତା ଛଡ଼ା ଆମ ଶଶୁର, ଶଳା ଓ ସଢୁଙ୍କଠାରୁ ଟଙ୍କା ଆଠଶହ କି

ହଜାରେ ନଗଦ ଦସ୍ତବଦସ୍ତ ତୁମକୁ ଦିଆଇ ଦେବା । ଏକଥା ଶୁଣି ବାପାଙ୍କର ଫୁଲବୁକୁ ଉଲୁସି ଉଠିଲା । ବାପା ଆମର ମହାଜନ ଘରକୁ ଯାଇ ରେଜିଷ୍ଟରି ଗୋଟା ସମ୍ପାଦନ କରି ରାସ୍ତା ଖରଚର ବ୍ୟବସ୍ଥା କଲେ ଓ ଭାରି ସରସମୁଖା ହୋଇ ଧାର୍ଯ୍ୟ ତାରିଖ ଦିନ ପହଞ୍ଚିଲେ ତ୍ରିବେଣୀଠାରେ । ବାପା ବିଚାରିଲେ, ଯେ ଏକ ପାତ୍ରରେ ତାଙ୍କର କନ୍ୟା ଦେଖା (ଅର୍ଥଲାଭ) ଓ ବାଇଗଣ ବିକା (ତୀର୍ଥଗମନଜନିତ ପୁଣ୍ୟ ଲାଭ) ଦୁଇକାମ ଫଏର୍ ହୋଇଯିବ । ବାପା ରେଳଗାଡ଼ିରେ ଯାଉ ଯାଉ ବାଟରେ ଭଞ୍ଜଙ୍କ "ରସିକ ବିଚାର କରେ, ××× ଦୀପଦାନ କାର୍ତ୍ତିକରେ, ପ୍ରୟାଗ ସ୍ନାନ ମକରେ, ଯେହୁ ନ କରେ" ଛାନ୍ଦର ଆବୃତ୍ତି କରୁଥାନ୍ତି । ଟଙ୍କା ଶହେ ଖଣ୍ଡେ ଖରଚ କରି ବାପା ଯାଇ ତ୍ରିବେଣୀରେ ପହଞ୍ଚି ଦେଖିଲା ବେଳକୁ ଜଳଜଳାମୁହାଁ ସଙ୍ଗାତ ତ ସଙ୍ଗାତ ତାଙ୍କର ତୀର୍ଥାଗମନର ପତ୍ତା ମଧ ନଦାରଦ । ବହୁ କଷ୍ଟରେ ସଙ୍ଗାତଙ୍କ ପଣ୍ଡାଙ୍କଠାରୁ ସମ୍ବାଦ ମିଳିଲା ଯେ, ସଙ୍ଗାତଙ୍କ ଶଶୁର ରଚ୍ଚା ଅଶ୍ୱାଙ୍ଗୀ ବାତରେ ଉଆସରେ ଶଯ୍ୟାଶାୟୀ । ଧର୍ମଶଳାଙ୍କର ଛେଳିମୁଣ୍ଡିଆ ବାତରେ ଚଳତ୍‌ଶକ୍ତି ନଦାରଦ ଓ ସତୁ ମାଛିଆ ପାତକରେ ପାତକୀ ହୋଇ କଲିକତା ହାସପାତାଳରେ ଗଡୁଅଛନ୍ତି । ପଣ୍ଡାଏ ସଙ୍ଗାତଙ୍କ ଆଗମନର ଉଡ଼ାଖବର ପାଇ ଖୋଦ୍ ସଙ୍ଗାତଙ୍କ ପାଇଁ ଆଗତୁରା ଶହେଟଙ୍କା ଖୋଷଣିରୁ କାଢ଼ି ଖଣ୍ଡିଏ ଡେରାର ବ୍ୟବସ୍ଥା କରିଥିଲେ, କିନ୍ତୁ ପରେ ପୁଣି ଉଡ଼ାଖବର ମିଳିଲା ଯେ, ସଙ୍ଗାତ ଉଆସରୁ ସମହିଷୀ ଅନୁକୂଳ କଲାବେଳେ, 'ମାର୍ଜାର ଯୁଦ୍ଧେ କଳହଃ କୁଟୁମ୍ବେ' ବଚନ ବର୍ଣ୍ଣିତ ଗୋଟିଏ ଅପ୍ରକାଶ୍ୟ ବାଧା ହାବୁଡ଼ିଯିବାରୁ ସଙ୍ଗାତ ଅଗତ୍ୟା ଉଆସ ଛାଡ଼ିପାରିଲେ ନାହିଁ । ଅତଏବ ମକରମେଳା ଏଥର ଜଳଜଳମୁହାଁଙ୍କ ଉପସ୍ଥିତି ଓ ତୀର୍ଥାଗମକୃତ ପୁଣ୍ୟରୁ ଅଗତ୍ୟା ଦୈବଗତ୍ୟା ଓ ମନୁଷଗତ୍ୟା ବଞ୍ଚିତ ହେଲା । ଟଙ୍କା ଶହେ ଖରଚ କରି ବାପା ଆମର ଏହି ସମ୍ବାଦ ପାଇ ତୀର୍ଥରୁ ବାହୁଡ଼ିଲେ । ମନକୁ ଏହି ପ୍ରବୋଧ ଦେଲେ ଯେ, ସେ ତ ବିନା ପ୍ରଲୋଭନରେ ମକରବୁଡ଼ ପକାଇପାରି ନ ଥାନ୍ତେ, ଜଳଜଳାମୁହାଁ ସଙ୍ଗାତଙ୍କ ଦୟାରୁ ଏତକ ହେଲା । "ଖାଇଲେ ଖାଇଲି ଦି କୋରଡ଼ା, ମନ ଓରମାନ ଗଲା" । ଏହି ଢଗକୁ ସୁମରି ସୁମରି ବାପା ଗାଁକୁ ଫେରିଲେ । ଜଳଜଳାମୁହାଁଙ୍କର ଆଉ ଏକ ଅନନ୍ୟ ସାଧାରଣ ଗୁଣ ମିଥ୍ୟାଦାୟିକତା ଓ ମୁହଁରେ ନୈତିକ ସାହସ (moral courage)ର ଆସ୍ଫାଳନ । ଥରେ ଜଳଜଳାମୁହାଁ ବନ୍ଧୁ ଅନ୍ୟ ଜଣେ ବନ୍ଧୁଙ୍କ ଆଗରେ ବାପାଙ୍କ ନାମରେ ଗୁଡ଼ିଏ ମିଥ୍ୟା ଦୁର୍ନାମ କଲେ । ଏହା ଅବଶ୍ୟ ନୀଚତା ଓ କାପୁରୁଷତା, କିନ୍ତୁ ବାପାଙ୍କ ସଙ୍ଗେ ଭେଟ ହେବାକ୍ଷଣି ବନ୍ଧୁ ବାପାଙ୍କୁ କହିଲେ 'ସଙ୍ଗାତ, ମୁଁ ତୁମ ନାମରେ ଅମୁକ ବନ୍ଧୁଙ୍କ ଆଗରେ ଅମୁକ ମିଥ୍ୟା ଦୁର୍ନାମ କରିଅଛି' । ଏହା କହି ଜଳଜଳାମୁହାଁ ସଙ୍ଗାତ ଆପଣାର ନୈତିକ ସାହସର ନମୁନା ବାପାଙ୍କ ଆଗରେ ବଡ଼ ଆଟୋପରେ ଦେଖାଇ ହେଲେ ।

ଦୈବ ଉପରେ ବଳ କାହାର ? ବାପାଙ୍କ ଦେହାନ୍ତ ପରେ ତାଙ୍କ ଜଳଜଳାମୁହାଁ ସଙ୍ଗାତ କୁମାର ଅବସ୍ଥା ଟପି ପୈତୃକ ସିଂହାସନାଧିକାରୀ ହୋଇ ବରଷ କେତେ

ସଂସାରରେ ଜୀବିତ ଥିଲେ । ସେ ରାଜା ଓ ମୁଁ ଭିଖାରି ବ୍ରାହ୍ମଣ ହେଲେ ମଧ ବାପାଙ୍କ ସମ୍ପର୍କରେ ଦ୍ୱାହି ଦେଇ ତାଙ୍କୁ 'ମଉସା' 'ପିଉସା' ବୋଲି ସମ୍ବୋଧନ କରୁଥିଲି । ମଉସା ପୁତୁରାଙ୍କ ପାରସ୍ପରିକତା ରାଜନୀତି, ଚାଲିଚଳଣ, ଆଚାର ବ୍ୟବହାର, ଦିଆନିଆ, ଖିଆପିଆ, ଯାଆ ଆସ୍ ଶୁଆ ବସା ବାରାନ୍ତରେ ।

ଉ.ସା., ଆଷାଢ଼ - ୧୩୪୨ ସାଲ ।

## ।। ତିନି ।।

ଆରଥର ସମ୍ପାଦକଙ୍କୁ ମଉସା ପୁତୁରା ସମ୍ବାଦ ଦେବାକୁ ବଚନ ଦିଆଯାଇଥିଲା, କିନ୍ତୁ ଆଜିକାଲି ପତ୍ରିକାର ଲେଖକ ରେଜିଷ୍ଟରୀରେ ନାଆଁ ଲେଖାଇଲେ ସମ୍ପାଦକମାନଙ୍କ ସଙ୍ଗେ ଛକାପଞ୍ଝା ଓ ପାଠକମାନଙ୍କ ସଙ୍ଗେ ଲୁଚୁକାଳି ନ ଖେଳିଲେ ଆମ ଗୁଜୁରାନ୍ ମେଣ୍ଟିବା କାଠିକର ପାଠ । ଏଥିପାଇଁ ପାଠ ଡାକୁଛି, ''ଗୋଡ଼େଇଥିବ, ଧରିବ ନାହିଁ, ଉଞ୍ଚେଇଥିବ ମାରିବ ନାହିଁ ।'' ଏହାଛଡ଼ା 'ବାରାନ୍ତରେ' ଏ ସମ୍ବାଦ ଦିଆଯିବ ବୋଲି ଲେଖିଥିଲା । 'ବାରାନ୍ତର' ଶବ୍ଦର ଅର୍ଥ ସମ୍ପାଦକ ମହାଶୟ ବ୍ୟାକରଣ ଓ ଅଭିଧାନରେ ଧୁଣ୍ଡିଲେ ଦେଖିପାରିବେ ଯେ, ଏଥିରେ ଅର୍ଥ 'ଆଗାମୀ' ଥର ନୁହେଁ, ବାରାନ୍ତର ଶବ୍ଦର ଅର୍ଥ ଅନ୍ୟଥର, ଅର୍ଥାତ୍ ପରବର୍ତ୍ତୀ ଯେକୌଣସି ଥର । ଏପରି ସ୍ଥଳରେ ଏଥରକ ଉତ୍କଳ ସାହିତ୍ୟ ପତ୍ରିକାରେ ଉକ୍ତ ସମ୍ବାଦ ଦେଇ ସମ୍ପାଦକଙ୍କର କାଗଜକୁ ଓ ପାଠକ-ପାଠିକାଙ୍କ ଆଖିକୁ ଓ ମଗଜକୁ ପବିତ୍ର କଲା ନାହିଁ ବୋଲି ଲେଖକଙ୍କୁ ଆଇନ୍ ଅନୁସାରେ ଅଭିଯୁକ୍ତ କରାଯାଇ ନ ପାରେ - ଇତି କୈଫିଅତ ପଟଳ ।

ଏଥର ମୁଣିରୁ ବାହାରିଲା ଅପାନମୁହାଁ । ମନୁଷ୍ୟର ସ୍ମରଣଶକ୍ତିଟା ଭାରି ଦଗାଦିଆ । ଶ୍ରୀକୃଷ୍ଣ ଦଦରା ଡଙ୍ଗାରେ ଗୋପ ଭୁଆସୁଣୀଗୁଡ଼ାଙ୍କୁ ମଝି ନଇକି ନେଇ ସେଠାରେ ହଲାପଟା କଲାଭଳିଆ, ସ୍ମରଣ ଶକ୍ତି ଜିନିଷଟା ଶର୍ମାଙ୍କ ଭଳିଆ ବାରବୁଲାଙ୍କୁ ବେଳେବେଳେ ଦଗାଦିଏ, ଅର୍ଥାତ୍ ଥରେ ସେ ଯାହା ଟିପି ରଖିଥାଆନ୍ତି, ତାର ପ୍ରାସଙ୍ଗିକ ବିଷୟ କିଛିଦିନ ପରେ ତାଙ୍କ ଗୋମୟମୟ ମଗଜରେ ଭାଙ୍ଗପାଣି ଭଳି ଘୋଳେଇ ହୋଇଯାଏ ଓ ଟିପା ହୋଇଥିବା ଶବ୍ଦର ସମ୍ପର୍କ ସେ ଉଣ୍ଡି ଧୁଣ୍ଡି, ହେଜି ହାଜି, ଦରାଣ୍ଡି ଦୁରୁଣ୍ଡି, ଅଣ୍ଡାଳିଉଣ୍ଡିଳି, ଚକଟିଚାକଟି ଓର ଲଗାଇପାରନ୍ତି ନାହିଁ ଓ ପଛକୁ ତେନ୍ତୁଳି ଚକଟିବା ବା ହାତିଆ ଯାଦୁ ରାମ୍ପିଲା ଲୋକର ମୁହଁ ପରି ମୁହଁ କରି ଗୁମ୍‌ଖାଇ ବସିଯାଆନ୍ତି । ଏ କ୍ଷେତ୍ରରେ ତାହାହିଁ ହୋଇଅଛି ଓ ପାଠକମାନଙ୍କୁ ନ୍ୟାୟଶାସ୍ତ୍ରସମ୍ମତ ଯୁକ୍ତି (Logical reasoning)ର ଆଶ୍ରୟ ନେବାକୁ ହେବ । ଅପାନମୁହାଁକୁ ନଞର୍ଥକ କଲେ, ଅର୍ଥ ହେବ - ଯାହା ମୁହଁରେ ପାନ ନ ଥାଏ, ଏଠେଇଁ ଫେର୍ ମୁହଁ ଶବ୍ଦ ଯୋଗୁଁ ଦୋଘାଇରେ ପଡ଼ିବାକୁ ହେବ । ଏଇଟା ଜଣାଶୁଣା କଥା ଯେ, ଓଡ଼ିଆ ମୁହଁ ଶବ୍ଦ ସଂସ୍କୃତ 'ମୁଖ'

ଶବ୍ଦର ଅପଭ୍ରଂଶ ବା ଓଡ଼ିଶୀ ପରିଣତି ଅଟେ । ମୁଖ ଶବ୍ଦର ଅନ୍ତତଃ କୋଡ଼ିଏ ଅର୍ଥ ଅଛି, କିନ୍ତୁ ମନୁଷ୍ୟର ଅଙ୍ଗ ସମ୍ବନ୍ଧେ ତହିଁର ଦୁଇଟି ଅର୍ଥ ହୁଏ ।

(୧) ବଦନ ଅର୍ଥାତ୍ ଉପରେ ଲଲାଟ, ତଳେ ଥୋଡ଼ ଓ ଦୁଇପାଖେ ଦୁଇକାନ ଏହି ଚଉହଦି ବିଶିଷ୍ଟ ଓ ଚକ୍ଷୁ, ନାସିକା, ଭ୍ରୂଲତା, ଗଣ୍ଡ, ଓଷ୍ଠ ଦ୍ୱୟ ସମ୍ବଳିତ ବୃତ୍ତାଭାସ (oval) ଓ (୨) ପାଟି ଅର୍ଥାତ୍ ସମ୍ମୁଖରେ ଓଷ୍ଠ ଦ୍ୱୟ, ପଛରେ ଘଣ୍ଟିକା, ଉପରେ ମୂର୍ଦ୍ଧା ଓ ତଳେ ତଳଦାନ୍ତପାଟି, ଏହି ଚଉହଦି ବିଶିଷ୍ଟ ଦାନ୍ତ, ଜିଭ ଦୁଇକଳ ସମ୍ବଳିତ ଆକୁଞ୍ଚନ - ପ୍ରସାରଣକ୍ଷମ ଫରୁଆ ବା କୁମ୍ଭା ଆକାରର ଅଙ୍ଗ । ପାନ ମୁହଁର ଅର୍ଥ କରିବାକୁ ବସିଲେ ଓ ମୁହଁକୁ ପ୍ରଥମୋକ୍ତ ଅଙ୍ଗ 'ବଦନ' ବୋଲି ଧଇଲେ ଏ ଶବ୍ଦରୁ ଏକାଧିକ ଅର୍ଥ ବାହାରିବ । ପାନ ପରି ଯାହା ମୁହଁ ଚଟକା, ଯାହା ମୁହଁରେ (ଆପଣା ଚର୍ବିତ ହେଉ ବା ପର ଚର୍ବିତ ହେଉ) ପାନର ବୋଳ ବା ପିକ ବୋଳାଯାଇଥାଏ । ଏଣେ ମୁହଁକୁ ଦ୍ୱିତୀୟୋକ୍ତ ଅଙ୍ଗ 'ପାଟି' ରୂପେ ଧଇଲେ ଯେଉଁ ପାଟିରେ ପାନ ଥାଏ ବା ଯେଉଁ ପାଟି ପାନ ଚୋବାଏ ବା ଯେଉଁ ପାଟି ପାନ (ଆସବଆଦି ପାନ) କରିଥାଏ, ଏହିପରି ଏକାଧିକ ଅର୍ଥ ହୋଇପାରେ ।

ସେଥିପାଇଁ ଶର୍ମାଏ ପ୍ରଥମରୁ ଚେତାଇଛନ୍ତି ଯେ, ଯୁକ୍ତି ଦ୍ୱାରା ଏ ଶବ୍ଦର ଅର୍ଥ ପଗଡ଼ିବାକୁ ହେବ । ଉପର୍ଯ୍ୟୁକ୍ତ ଅର୍ଥମାନଙ୍କ ପୂର୍ବରେ ନଞର୍ଥକ 'ଅ' ଲଗାଇଲେ ନିମ୍ନଲିଖିତ ଅର୍ଥଗୁଡ଼ିକ ହେବ ଯଥା - ଯାହା ମୁଖ ପାନପରି ଟେକା ନୁହେଁ ଅର୍ଥାତ୍ ଓଉପରି ଫୁଲୁକା ବା ଯେ ଫୁଲୁକାମୁହାଁ, ଯାହା ମୁହଁରେ ପାନପିକ ବୋଳା ହୋଇ ନ ଥାଏ, ଯେଉଁ ଲୋକ ପାନ ଖାଏ ନାହିଁ ବା ଯେଉଁ ଲୋକ ପାନାସକ୍ତ ନୁହେଁ । ପରନ୍ତୁ ନଞର୍ଥକ ନ କରି ଅପାନମୁହାଁ ଶବ୍ଦକୁ ଅପାନ + ମୁହଁ + ଆ, ଏହିପରି ବିଶ୍ଳେଷଣ କଲେ ଯାହା ମୁହଁରେ ଅପାନ (ଅର୍ଥ ନିମନ୍ତେ କୌଣସି ସଂସ୍କୃତ ଅଭିଧାନ ଦ୍ରଷ୍ଟବ୍ୟ) ବାୟୁ ଅଛି, ଅର୍ଥାତ୍ ଅପାନ ବାୟୁର ସୁବାସ ପରି ସୁବାସ ବିଶିଷ୍ଟ ଶ୍ୱାସ ଯାହା ମୁହଁରୁ ଅର୍ଥାତ୍ ପାଟିରୁ ବାହାରୁଛି, ଅର୍ଥାତ୍ ବାଘରାମୁହାଁ ଓ ଅନ୍ୟ ଅର୍ଥ ହେବ ଯାହା ମୁହଁ ଅପାନ (ସଂସ୍କୃତ ଅଭିଧାନ ଦ୍ରଷ୍ଟବ୍ୟ) ପରି ଦେଖାଯାଏ କିମ୍ବା ଯାହା ମୁହଁ ଅପାନ ସଙ୍ଗେ ଲୋକେ ତୁଳନା କରନ୍ତି କିମ୍ବା ଯାହା ମୁହଁ ଅପାନ ଆଡ଼କୁ ସବୁବେଳେ ହୋଇଥାଏ । ଆଖୁ କିଆରିରେ ପଶିଲା ଭଳି ଏତେଗୁଡ଼ିଏ ଅର୍ଥରେ ଘାଣ୍ଟି ଚକଟି ହୋଇ କେଉଁ ଅର୍ଥ ଉପସ୍ଥିତ କ୍ଷେତ୍ରରେ ବାଢ଼ିବାକୁ ହେବ ? ଏଥିରେ ମୀମାଂସାରେ ସହଜ ଉପାୟ ପାଠକଙ୍କୁ ବତାଇ ଦେଉଥାଇଁ, ଶୁଣି ଆଜ୍ଞା ହୁଅନ୍ତୁ । ଛଅଗୁଳିଆ ଗିଭଲଭର ଭଳି ପାଠକଙ୍କ ପାଖରେ ଉପରୋକ୍ତ ଅର୍ଥଗୁଡ଼ିକ ମହଜୁଦ୍ ରହିଲା । ଏ ପ୍ରସଙ୍ଗ ବିବୃତ ବ୍ୟକ୍ତିଙ୍କ ଚେହେରା, ଆଚରଣ, କ୍ରିୟାକଳାପ ଆଦି ସଙ୍ଗେ ଯେଉଁ ଅର୍ଥ ବା ଅର୍ଥମାନ ଖାପ୍ ଖାଇବ, ସେହି ଅର୍ଥରେ ଅପାନମୁହାଁ ଶବ୍ଦକୁ ବୁଝିବାକୁ ହେବ । ଇତି ବ୍ୟାଖ୍ୟାକାର । କଥାଟିଏ କହୁଁ, କିସ କଥା ? ବେଙ୍ଗ ମଥା -

ଏକ ରାଜ-ପାରିବାରିକ ମଙ୍ଗଳ ଉତ୍ସବରେ ଶର୍ମା ପହଞ୍ଚିଲେ ଯାଇ ଏକ ଆଲୁଅ ମୁଲକ (ଅନ୍ଧାରି ମୁଲକର ବିପରୀତ ମୁଲକ)ରେ । ମୁଲକଟାଯାକ ଶାବ୍ଦିକ, ଲାକ୍ଷଣିକ ଅର୍ଥ ଅନୁସାରେ ଆଲୋକମୟ ହୋଇଅଛି । ବାହାରେ ଦୀପ, ମଶାଲ, ହାରିକେନ ଲଣ୍ଠନ, ମହମବତି ଲଣ୍ଠନ ଓ ବଇଂକି ଝାଡ଼ୁ, ଗ୍ୟାସ୍ ଲାଇଟ୍, ପଞ୍ଚ ଲାଇଟ୍, ବିଜୁଳିବତିରେ ରାଇଜଯାକ ଆଲୋକମୟ ହୋଇଛି ଓ ରାଜଧାନୀରେ ଅପାମର ସାଧାରଣ ଓ ଆବାଳବୃଦ୍ଧବନିତା ସମସ୍ତେ ଜ୍ଞାନ ଓ ଶିକ୍ଷାଲୋକରେ ହାଲୋଳମୟ ହୋଇ ଅଛନ୍ତି ।

ଏହା ଦେଖି ସ୍ୱତଃ ଶର୍ମାଙ୍କ ମନଟା ଭାରି ରବେଇ ଖବେଇ ହେଲା ଯେ, ଏ ଆଲୁଅ ସବୁ ଯେଉଁ କେନ୍ଦ୍ରରୁ ବିଚ୍ଛୁରିତ ହୋଇ ରାଜବାଟୀ ଠାରୁ ଆରମ୍ଭ କରି ଶଉରା ପଲ୍ଲୀ ପର୍ଯ୍ୟନ୍ତ ଭିତର ବାହାର ଦୁଇ ଆଡ଼କୁ ଆଲୋକମୟ କରିଛି, ସେହି କୈନ୍ଦ୍ରିକ ଶକ୍ତିକୁ ଥରେ ଦେଖିବେ । ଏହି ସଂକଳ୍ପ କରି ଶର୍ମା ବାହାରିଲେ ରାଜବାଟୀକୁ । ରାଜବାଟୀରେ ଯାଇ ପହଞ୍ଚି ଦେଖନ୍ତି ତ ତାଙ୍କରି ଭଳି ଆହୁରି ବାରଜଣ ଅନୁସରଣିଆ ମହାରାଜାଙ୍କ ଦର୍ଶନାର୍ଥୀ ହୋଇ ଦିହୁଡ଼ିରେ ପଡ଼ିଥିବା ଘୋଡ଼ଚି (ଯାହାକୁ ବର୍ତ୍ତମାନ ଯୁଗରେ ବେଞ୍ଚ ନାମରେ ଡକା ଯାଇଛି) ଉପରେ ବସିଛନ୍ତି ଓ ତ୍ରୟୋଦଶ ବ୍ୟକ୍ତିଙ୍କର ଅଧଃସ୍ଥିତାଙ୍ଗମାନଙ୍କର ଅବସ୍ଥିତି ପାଇଁ ସ୍ଥାନାଭାବ । ଦୁହୁଡ଼ିରେ ସଙ୍ଗିନ ଓ ବନ୍ଧୁକ କାନ୍ଧୁଆ ସନ୍ତ୍ରୀ ପ୍ରଥମେ ଖୋଲଟା ଭାଷାରେ କହିଲେ - ତୁମକୁ କଅଣ ଆଗରୁ ମହାରାଜଙ୍କ ପାଖରୁ ସିଲ୍ ମିଳିଛି ? ଏ ପ୍ରଶ୍ନର ନଞର୍ଥକ ଉତ୍ତର ଦେଲେ ସଙ୍ଗେ ସଙ୍ଗେ ଅର୍ଦ୍ଧଚନ୍ଦ୍ର ବିଦାକି ଲାଭର ଆଶଙ୍କା ମନରେ ଜନ୍ମିବାରୁ ପିଲାଦିନେ ବ୍ରତବେଦୀ ଉପରେ କାନରେ ମନ୍ତ୍ରଫୁଙ୍କା ପିତାକୁ ''ମିଥ୍ୟା ଭାଷଣଂ ନ କର୍ତ୍ତବ୍ୟଂ ବଚନରେ ମତ୍ ପ୍ରଦତ୍ତ ପ୍ରତିବଚନ 'ନକର୍ତ୍ତବ୍ୟଂ'କୁ ଏଡ଼ି କରି ମୋ ମୁହଁରୁ ବାହାରିଲା 'ହଁ' ଛାମୁରୁ ସିଲ୍ ମିଳିଛି'' । ଏହା ଶୁଣି ସନ୍ତ୍ରୀମହାଶୟ ତାଙ୍କର ରୋଷ-ଭାବିତ ମୁଖକୁ ଟିକିଏ ନରମାକରି ଦିହୁଡ଼ିରେ ଥିବା ଘଣ୍ଟାକୁ ନଜର କରି କହିଲେ, ହଉ, ତେବେ ବସ । ମହାରାଜା ୨ ଘଣ୍ଟା ୧୫ ମିନିଟ୍ ବାଦ ଉଆସରୁ କଚେରିକୁ ବିଜେ କରି ଆଜ୍ଞା ହେବେ । ବେଞ୍ଚରେ ଉପବିଷ୍ଟ ବ୍ୟକ୍ତିଗଣ ନିଜ ନିଜ ଆସନରୁ ଟିକିଏ ଘୁଞ୍ଚିଯାଇ ମୋ ଦେହର ଗଣ୍ଡି ସମ୍ଭାଇବା ଭଳି ପ୍ରାୟ ୧୧ ଇଞ୍ଚ ଫାଙ୍କ କାଢ଼ିଲେ ଓ ମୁଁ ସେଥିରେ ନିଜର ଆଣ୍ଠୁ ଠାରୁ ବେକ ପର୍ଯ୍ୟନ୍ତ ଅଙ୍ଗ ଭରିବା ଉଦ୍ୟମ କଲି । ମୋ ଯିବା ପୂର୍ବରୁ ବେଞ୍ଚରେ ଉପବିଷ୍ଟ ବ୍ୟକ୍ତିଙ୍କ ଠାରୁ ଅନୁସନ୍ଧାନରେ ବୁଝିଲି ଯେ ସେମାନଙ୍କ ମଧ୍ୟରୁ ପ୍ରଥମାଗତ ବ୍ୟକ୍ତି ମୋ ଯିବାର ତିନିଘଣ୍ଟା ପୂର୍ବରୁ ବେଞ୍ଚରେ ବସିଛନ୍ତି । ଏପରି ଅବସ୍ଥାରେ ମୋ ଭାଗ୍ୟଟା ଭାରି ଟାଣୁଆ ଓ ମୋତେ କେବଳ ୨ ଘଣ୍ଟା ୧୫ ମିନିଟ୍ ଅପେକ୍ଷା କରି ବସିବାକୁ ହେବ । ଯାହାହେଉ ସେଠାରେ ସମସ୍ତେ ଟାକି ବସିଲୁଁ । ପ୍ରାୟ ୧୫ ମିନିଟ୍ ବାଦ୍ ଅନ୍ଦର ମହଲରେ ବୀର କାହାଳୀ ୬ ଥର ବାଜିଲା, ଏଥିମଧ୍ୟରେ ଯେଉଁ ସନ୍ତ୍ରୀ ମୋତେ ଆସନ ଦେଇଥିଲେ, ତାଙ୍କର ବଦଳି ହୋଇ ଆଉ ଜଣେ ଆସି ତାଙ୍କ ସ୍ଥାନ ଓ କର୍ମ ଅଧିକାର କଲେଣି । ତାଙ୍କଠାରୁ ବୁଝାଗଲା ଯେ, ମହାରାଜାଙ୍କର କାଠି ଲାଗି,

ଶୃଙ୍ଗେଇ ବିଜେ, ଚୁରଟଲାଗି, ପନିଅର ଲାଗି, ଫୁଲୁରି ଲାଗି ଓ ଦିହପାଣି ଏପରି ୬ଟି ନୀତି ବଢ଼ିବା ପରେ ବର୍ତ୍ତମାନ ଦେବାର୍ଚ୍ଚନ ନୀତିକୁ ମହାରାଜା ବିଜେ କଲେ । ୬ଟି ନୀତି ବଢ଼ିଥିବା ହେତୁ ବୀର କାହାଳୀ ୬ ଥର ବାଜିଲା । ଏହିପରି ଗୋଟିଏ ଗୋଟିଏ ନୀତି ବଢ଼ିବା ପରେ କାହାଳୀର ସଂଖ୍ୟାବାଚକ କୁହାଟମାନ ଶୁଣାଯାଏ । ଶେଷକୁ ବଡ଼ସିଂହାର ନୀତିକୁ ବିଜେ କଲାବେଳକୁ ୨୧ ଥର କାହାଳୀ ଧ୍ୱନି ଶୁଣାଯାଏ ।

ଇତ୍ୟବସରରେ ଆହୁରି ୭ ଜଣ ଦର୍ଶନାର୍ଥୀ ସେଠାରେ ଉପସ୍ଥିତ ହେଲେ ଓ ସେମାନଙ୍କ ପାଇଁ ଦିହୁଡ଼ିରେ କାଷ୍ଠାସନର ଅଭାବ ଥିବାରୁ ସେମାନେ ଅଗତ୍ୟା ଭୂମ୍ୟାସନ ଅଧିକାର କଲେ । ଆମ୍ଭେମାନେ ବସିରହିଲୁଁ ଓ ଇତିମଧ୍ୟରେ ଆଉ ୩।୪ ଥର କାହାଳୀ ବାଜିଲା ଓ ଶେଷରେ ୪ ଘଣ୍ଟା ବାଦ କାହାଳୀ ବଜା ପରେ ସନ୍ତ୍ରୀ କହିଲେ ଯେ, ଛାମୁ କଚେରିକି ବିଜେ ହେଲେ । ମହାରାଜାଙ୍କ ଦର୍ଶନ ମୋ ଭାଗ୍ୟରେ ଘଟି ନ ଥିଲା । ଶୁଣିଥିଲି ଯେ, ସେ ଅପାନମୁହାଁ । ବେଞ୍ଚରେ ଓ ତଳେ ବସିଥିବା ୨୦ ଜଣ ବ୍ୟକ୍ତିଙ୍କ ମଧ୍ୟରୁ ଜଣ ଜଣଙ୍କୁ ଡାକରା ପଡ଼ିଲା । ପ୍ରତ୍ୟେକ ଲୋକଙ୍କୁ ଜଣେ ସନ୍ତ୍ରୀ ନାମ ଧରି ଡାକିବାକୁ ଆସେ । ସେ ଆମ ମଧ୍ୟରୁ ଉଠିଯାଇ କଚେରି ଆଡ଼କୁ ଯାଆନ୍ତି । ଏଠାରେ କହିରଖିବା ଉଚିତ ଯେ, ଏ କଚେରି ରାଜ ସରକାରଙ୍କ ବିଚାରାଳୟ ନୁହେଁ । ଏହା ମହାରାଜାଙ୍କର ଭୋଜନାନ୍ତ ଓ ସାନ୍ଧ୍ୟ ଭ୍ରମଣାନ୍ତ ଉପବେଶନର ସ୍ଥାନ ବା ବେହରଣ ମଣ୍ଡପ । ଶଂସିତ ମହାରାଜା ଅଦ୍ଧାରି ମୁଲକର ରାଜା ନୁହନ୍ତି । ଏଥିପାଇଁ ଏହାଙ୍କର ସରକାରୀ ଜଜ୍ ମେଜେଷ୍ଟରୀ କଚେରି (କୋର୍ଟ୍) ନାହିଁ, ଅଛି ଏହାଙ୍କର ରାଜବାଟିଆ କଚେରି ବା ରାଜସଭା ବା ଦରବାର ବା ମଜଲିସ୍ । ଦର୍ଶକମାନଙ୍କ ମଧ୍ୟରୁ କେବଳ ୩ ଜଣ ଫେରିଆସିଲେ ନାହିଁ, ଆଉ ସମସ୍ତେ ଫେରିଲେ । ଫେରିଲାବେଳେ ସେମାନଙ୍କ ପ୍ରଫୁଲ୍ଲ ଓ ବିରସ ମୁଖଭଙ୍ଗୀରୁ ସେମାନଙ୍କ ଦର୍ଶନୋଦ୍ଦେଶ୍ୟ ସିଦ୍ଧ୍ୟାସିଦ୍ଧିର କଳ୍ପନା କରିବା ଛଡ଼ା ସେମାନେ ସାଫଲ୍ୟମଣ୍ଡିତ ବା ବୈଫଲ୍ୟ ଲାଞ୍ଛିତ ହୋଇ ଫେରିଲେ ଏହା ଜାଣିବାର ଉପାୟ ନ ଥିଲା । କାରଣ ସେମାନେ ରାଜଦରବାରରୁ ଫେରି ଆମ୍ଭମାନଙ୍କ ଆଡ଼କୁ ଦୃଷ୍ଟିପାତ ସୁଦ୍ଧା ନ କରି ଦିହୁଡ଼ି ପରିତ୍ୟାଗ କଲେ । ଏହିପରି ଜଣକୁ ଜଣ ହୋଇ ଦରବାରକୁ ଯାଇ ଫେରୁଥାଆନ୍ତି । କେବଳ ୩ ଜଣ ତେଣେ ରହିଲେ । ଶେଷକୁ ରହିଲି ମୁଁ ଏକା ବାକି । ମୋତେ ତ କେହି ଡାକିବାକୁ ନ ଆସିବାରୁ ମୁଁ ଉପାୟାନ୍ତର ନ ଦେଖି ଛାମୁଙ୍କ କର୍ଣ୍ଣପଟହରେ ବାଜିବା ଭଳି ଧ୍ୱନି କରି କହିଲି - ମୁଁ ଛାମୁଙ୍କ ନାମ ଶୁଣି ପଚାଶ କୋଶ ବାଟରୁ କେବଳ ଛାମୁଙ୍କୁ ସାକ୍ଷାତ୍ କରିବାକୁ ଆସିଛି, ମୋର କୌଣସି ଅନୁସରଣ ବା ପ୍ରାର୍ଥନା ନାହିଁ । ମୋ ଧ୍ୱନି ଶୁଣି ସନ୍ତ୍ରୀ ମୋ ଉପରେ ଭାରି ଖପା ହୋଇ କହିଲେ, ତୁମ ଯୋଗୁଁ ଆମ ଦାନାପାଣି ମରିବ । ତୁମେ ସିଲ୍ ନ ନେଇ ଆସିଲ ଓ ଏଠାରେ ରାଜଦରବାରର କାଇଦା ବିରୁଦ୍ଧ ପାଟି କରୁଛ, ତୁମେ ଚାଲିଯାଅ । ଏହା କହି ସନ୍ତ୍ରୀମହାଶୟ ତାଙ୍କ ଆସ୍ଥାନରୁ ମୋ ଆଡ଼କୁ ଅଗ୍ରସର ହେବାର ଦେଖି ମୋ ମନକୁ ପାପ ଛୁଇଁଲା ଓ ମୁଁ ଦ୍ୱିଗୁଣ ଉଚ୍ଚତା ସହକାରେ

ଭାବିଲି - ମୋତେ ପହରାବାଲା ଛାଡ଼ି ଦେଉ ନାହିଁ । ଏହି ଅବସ୍ଥାରେ ବୋଧହୁଏ ମୋ ଡାକ ଛାମୁଙ୍କ କର୍ଣ୍ଣକୁହରରେ ଆଘାତ କଲା ଓ ତହିଁର ପ୍ରତିକ୍ରିୟା ରୂପେ ଜଣେ ସନ୍ତ୍ରୀ ମୋ ନିକଟରେ ଉପସ୍ଥିତ ହୋଇ କହିଲେ ଛାମୁରୁ ତୁମକୁ ଡାକରା ହେଉଛି । ଏହା ଶୁଣି ପୂର୍ବରେ ମୋତେ ନିଷେଧ କରିଥିବା ସନ୍ତ୍ରୀ ଆଡ଼କୁ ମୁଁ ବକ୍ର ଦୃଷ୍ଟିଟାଏ ନିକ୍ଷେପ କରି ଦରବାରରୁ ଆଗତ ସନ୍ତ୍ରୀଙ୍କ ପିଛା ଧରିଲି । ମହାରାଜା ମୋର ପରିଚୟ ଓ ମୋ ପିତୃଦେବଙ୍କ ପରିଚୟ ଓ ଆମର ମୌରସୀ ରାଜ ସଂପର୍କମାନ ଶୁଣି ଭାରି ପ୍ରସନ୍ନ ହୋଇ ମୋତେ ତାଙ୍କ ମାଞ୍ଚିଆ ପାଖରେ ପଡ଼ିଥିବା ଖଣ୍ଡିଏ କାଷ୍ଠାସନରେ ବସିବାକୁ ଆଦେଶ ଦେଲେ । ଆଜି ଚକ୍ଷୁ କର୍ଣ୍ଣର ବିବାଦ ମେଣ୍ଟିଗଲା । ଦେଖିଲି ଯେ, ମହାରାଜାଙ୍କ ପାଟିରେ ପାନ ନାହିଁ ଓ କଥା କହିଲା ବେଳେ ଶ୍ରୋତାଙ୍କ ମୁହଁଯାକ ମହାରାଜାଙ୍କ 'ବ୍ରହ୍ମବିନ୍ଦୁ' ଦ୍ୱାରା ଅଭିଷିକ୍ତ ହେଉଅଛି ଓ ସେ ବିନ୍ଦୁମାନ ବାଘରା ଗନ୍ଧ ଓ ଅରଖୀ ଗନ୍ଧ ଦ୍ୱାରା ସୁଗନ୍ଧିତ । ମହାରାଜାଙ୍କ ମୁହଁ (ପ୍ରଥମାର୍ଥ) ତାସ୍ ଖେଳର ତାସ୍‌ମାନଙ୍କରେ ଥିବା ହରତନ୍ (ନାଲିପାନ) ଆକୃତି ବିଶିଷ୍ଟ । ମହାରାଜାଙ୍କର ମଧ ଗୋଟିଏ ମାତ୍ରା ଦୋଷ ଅଛି । କଥା କହୁ କହୁ ତାଙ୍କ ମୁହଁ (ଦ୍ୱିତୀୟାର୍ଥ) ବାରମ୍ବାର ଆକୁଞ୍ଚନ ପ୍ରସାରଣ (ଚୁପ୍‌ଚାପ୍) ହେଉଥାଏ । ମହାରାଜାଙ୍କ ଦେହର ଅବଶ୍ୟ ମୁଁ ସର୍ବାଙ୍ଗ ଦେଖି ନାହିଁ, କେବଳ ସମ୍ମୁଖରେ ହରତନୀ ଆକୃତି ବିଶିଷ୍ଟ ମୁଖମଣ୍ଡଳ ଓ ପଛଆଡ଼େ ତାଳଫଳ ଆକୃତି ବିଶିଷ୍ଟ ମୁଣ୍ଡ ଗୋଲକ ଓ ଦୁଇହାତ କଟଟିଠାରୁ ଅଙ୍ଗୁଳ୍ୟଗ୍ର ପର୍ଯ୍ୟନ୍ତ ଶରୀରାଂଶ ମାତ୍ର ଦେଖିଛି । ତହିଁର ବର୍ଣ୍ଣ କଳା । କଳା ରଙ୍ଗ କହିଲେ ନାନା କିସମର କଳା ବୁଝାଯାଏ । ପୃଥିବୀରେ ନାନା ଜାତିର କଳାବସ୍ତୁ ଅଛି । କିଏ ଫିକା କଳା (ହାଣ୍ଡି କଳା), କିଏ ଚିକ୍‌କଣ କଳା (କଜ୍ଜଳ), କିଏ ନେଳିମିଶା କଳା (ବ୍ଲୁବାକ୍ କାଳି), କିଏ ନାଲିମିଶା କଳା (ଜାମୁକୋଳି), କିଏ ହଳଦିଆ ମିଶା କଳା (ପାଚିଲା ତାଳ), କିଏ ଆସମାନୀ କଳା (ଧାରା ଶ୍ରାବଣର କପିଳାସିଆ ବଉଦ), କିଏ ଚିକ୍‌କଣ କଳା (କୋଇଲି, କଜଳପାତି ଓ ଭୀମରାଜ ଚଢ଼େଇ) । ମହାରାଜାଙ୍କ ବର୍ଣ୍ଣକୁ କେଉଁ କଳାବସ୍ତୁ ଖାପ ଖାଇବ - ସେହି ବସ୍ତୁର ନାମ କହିଲେ ପାଠକପାଠିକାମାନେ ମହାରାଜାଙ୍କ ଅପାନମୁହଁକୁ ସହଜରେ ପଗଡ଼ିବେ । ଏହା ଭାବି ଭାବି ସ୍ଥିର କଲି ଯେ, ଉଗୁଡ଼ା ହୋଇଥିବା (ବିପର୍ଯ୍ୟସ୍ତ) ଧାନ ଉଷୁଆଁ ହାଣ୍ଡିକୁ ମନରେ କଳ୍ପନା କଲେ,ପାଠକ ମହାରାଜାଙ୍କ ମୁହଁ ଓ ତଦୀୟ କଳା ବର୍ଣ୍ଣ ସଂପର୍କରେ ଅନୁମାନ କରିପାରିବେ । ମହାରାଜା ଯେଉଁକ୍ଷଣି ଶୁଣିଲେ ଯେ, ମୁଁ କୌଣସି ଅନୁସରଣରେ ଆସି ନାହିଁ, କେବଳ ମହାରାଜାଙ୍କ ନାମ ଶୁଣି ଘରୁ ଚୁଡ଼ାଚାଉଳ ବାନ୍ଧି, ଘରୁ ଖାଇ ଘୋଡ଼ା ଆଗରେ ଡେଇଁବାକୁ ଆସିଛି ତାଙ୍କ ମୁହଁ ପ୍ରସନ୍ନ ହୋଇଗଲା ଓ ସେଥିରୁ ମହାରାଜାଙ୍କ ମୁହଁରୁ ନାନା ସରସ, ମିଠା, ନରମା, ପତଳା, ଛିଟି ଛିଟା କଥା ସବ୍ରହ୍ମବିନ୍ଦୁ ହୋଇ ବାହାରିଲା । ମୁଁ ସେଥିରୁ ଆମ ବଂଶର ପୂର୍ବ ବିଭବ, ରାଜସମ୍ପର୍କ ଆଦି କଥା କହି ଶେଷରେ ମୋ ଗୁଣକଥା କହିଲି ଓ ବେଳେବେଳେ ସେ ମୁଣିକୁ ନେଇ ଦାଣ୍ଡରେ ହାଟରେ ଝାଡ଼ିବା କଥାର ମଧ ସୂଚନା ଦେଲି । ସେ ଝଡ଼ାଝଡ଼ି

ଥଳିଆମାନ ସାଉଣ୍ଟା ସାଉଣ୍ଟି, ରମ୍ପାରମ୍ପି, ତଚ୍ଛାତଚ୍ଛି, ପୋଛାପୋଛି, ଲିପାଲିପି, ଚୂନକଳା ବୋଳାବୋଳି, ତୋଳାତୋଳି କରି ଛାପାଖାନା ବାଲାଙ୍କ ପ୍ରସାଦରେ ପ୍ରକାଶ କରିବା ବାସନା ମଧ୍ୟ ମହାରାଜାଙ୍କ ଛାମୁରେ ବାଢ଼ିଲି । ମହାର ଜା ଯା ଶୁଣି ଖୁସିଟାଏ ହେଲେ । କିନ୍ତୁ ଏଥିପାଇଁ ଧନ ଲୋଡ଼ା । ଏହା ଶୁଣିଲାକ୍ଷଣି ମହାରାଜାଙ୍କ କଳାମୁହଁ ଫିକାସିଆ ପଡ଼ିଗଲା । ମାଇପେ ଢଗ ବୋଲନ୍ତି - ''ଏକେଇ କାଳୀ, ନାଇଅଛି କାଚ କୋଚିଲାମାଳି, ପିନ୍ଧିଅଛି ପୁଣି ନେଳିଆ ଶାଢ଼ି, ତହିଁରେ ହୋଇଛି ରାନ୍ଧଣା ପାଳି ।'' ଅତଏବ କଳା ମହାରାଜାଙ୍କ କଳାମୁହଁ ଫିକାସିଆ ହୋଇଯିବା ଚିତ୍ର ପାଠକମାନଙ୍କ ଆଗରେ ଆଙ୍କିବା ତାକତ୍ ଲେଖକଙ୍କର ନଦରଦ୍ । ଯାହାହେଉ, ସେଇଠଉଁ ମହାରାଜା - ଆଜ୍ଞା ହେଲେ ବୁଝିଲ ଶର୍ମାଏ, ଏ ବରଷ ଆମେ ରାଜ୍ୟରେ ୪ଟା ଇସ୍କୁଲ ବସାଇଲୁଁ, ଦୁଇଟା ଡାକ୍ତରଖାନା ଖୋଲିଲୁଁ, ୩ଟା ହରିଜନ ବିଦ୍ୟାଳୟ ପ୍ରତିଷ୍ଠା କଲୁଁ, କେତେଗୁଡ଼ିଏ ସହରିଆ ଖଦଡ଼ିଆଙ୍କ ଟିହାଟେହିରେ ପ୍ରଜାଗୁଡ଼ାକ ବୃଥାରେ ମେଳିକରି ଖଜଣା ଦେବା ରୋକିଦେଲେ ଯେ, ସେଥିପାଇଁ ଦରବାର କରିବାକୁ ହେଲା । ଗମ୍ଭୀରି ସାଆନ୍ତଙ୍କୁ ମହାରାଜ କୁମାର ଇସ୍କୁଲକୁ ପଠାଇବାକୁ ହେଲା । ଆମ ଅନ୍ତର ପୁଅଙ୍କୁ ବିଲାତ ପଠାଇବାକୁ ହେଲା । ଆମ ପଟେଇତଙ୍କ ମଙ୍ଗଳକୃତ୍ୟ (ଯେଉଁ ମଙ୍ଗଳକୃତ୍ୟ ଉପଲକ୍ଷରେ ଶର୍ମା ସେ ରାଇଜକୁ ଯାଇଥିଲେ) ହେଲା, ଏ ସବୁ ଖରଚରେ ପଡ଼ି ଆମର ବ୍ୟାଙ୍କର ଟଙ୍କା ତିନି ଲକ୍ଷାନ୍ତର to the 3-tune of 3 (lakhs) ଉଠାଣ (Overdraw) କରି ସାରିଲୁଣି । ପୂର୍ବରୁ ତ ମହାରାଜା ଅଜ୍ଞାତ କୁଳଶୀଳ ବ୍ୟକ୍ତିଙ୍କୁ ସମ୍ବର୍ଦ୍ଧନା କରିସାରିଛନ୍ତି । ବର୍ତ୍ତମାନ ତାକୁ ମୁହେଁ ମୁହେଁ ବା କିପରି ନାହିଁ କରି ଦେଉଛନ୍ତି ? ଶେଷକୁ ମହାରାଜା ଭାଷିଲେ - ଏ ମଙ୍ଗଳକୃତ୍ୟର ଗୋଳମାଳରେ ଆମକୁ ଶୋଇବାକୁ ବସିବାକୁ ସୁଦ୍ଧା ଫୁରସତ ନାହିଁ । ଆଜି ରାତିକୁ କେତେ ରଜା ବିଦା ହେବେ । ଆମକୁ ଆଜି ଜମାରୁ ସମୟ ନାହିଁ । ଏବେ ତୁମ ପାଖେ ଘଣ୍ଟାଏ ବିଜେ କଲୁଣି ଯେ, ତେଣେ ଉଆସରେ ଆମ ବିରହରେ ମହାରାଣୀ ତୁଚ୍ଛା ବିରୁଡ଼ି ମାଇଲା ପରି ହୋଇ ତିତୁଳି ଚକଟୁଥିବେ ଓ ଭେକାବତାର ଧାରଣ କରିଥିବେ । ତୁମେ ଆଜି ଯାଅ, କାଲି ନିଶ୍ଚେ ତୁମକୁ ପାଞ୍ଚ ମିନିଟ୍ ସମୟ ଦିଆଯିବ, ଏହା ଶୁଣି ମୋ ମନଟା କୁଣ୍ଡେମୋଟ ହୋଇଗଲା । ମୁଁ ମନେ ମନେ ବିଚାରିଲି ଯେ, ଏଥରକ ଅନୁକୂଳ କଳାବେଳେ ବରାଡ଼ି ଶୁଆକୁଲ, ପ୍ରବାସପଞ୍ଛୀ (ପ୍ରବାସରେ ପତ୍ନୀଙ୍କ ବେଠିକାମ ତୁଲାଉଥିବା ରୁଷେୟା) ଓ ପ୍ରବାସ ପୁତ୍ର (ପ୍ରବାସରେ ପୁତ୍ରଙ୍କ ବେଠି ତୁଲାଇ ପାଦ ସେବନ ଆଦି କର୍ମ କରୁଥିବା ଗଉଡ଼ଟୋକା)ଙ୍କ କଳହ, ପେଚାବୋବାଳି, ତୁଚ୍ଛାମାଠିଆ, କଳା ବ୍ରାହ୍ମଣ, ଗୋରା ଶୂଦ୍ର ଦେଖି ଆସିଥିଲି । କିନ୍ତୁ ପ୍ରଭୁଙ୍କ କରୁଣାରୁ ମହାର୍ଜାଙ୍କ ବାହାର ଭଣ୍ଡାରରୁ ଏହି ଯାତ୍ରାରେ କିଛି ଅବଶ୍ୟ ଖସିବ । ଡେରାକୁ ଆସି ରାତିରେ ତୁଚ୍ଛା ମହାରାଜାଙ୍କ ଭଣ୍ଡାରଘରର ଲୁହା ସିନ୍ଦୁକମାନଙ୍କ ଛବି, ମହାରାଣୀଙ୍କ ଭିରୁଡ଼ି ମାଇଲା ବେଳର ବ୍ୟଙ୍ଗରାବ ଏହିକୁ ସପନ ଦେଖିଲି । ପରଦିନ ସକାଳୁ ବଡ଼ି ଝଟପଟିରୁ ଉଠି

ଭାରକୃତ୍ୟ ଝଟପଟ ସାରି ଦଉଡ଼ିଲି ରାଜବାଟୀ ଦିହୁଡ଼ିକୁ । ସେଠାରେ ପୂର୍ବ ପରିଚିତ ବେଞ୍ଚ ଉପରେ ବସିଲି । ସକାଳ ୬ଟାରୁ ଦିନ ୧୨ଟା ହେଲା । ମହାରାଜାଙ୍କ କାଠମାଳିଆ ପ୍ରାଇଭେଟ ସେକ୍ରେଟେରୀ ମିଷ୍ଟର ଚିତ୍ରଗୁପ୍ତ କହିଲେ, ଆଜି ଏ ଓଳି ନାହାନ୍ତି । ଆଜି ୪ଟା ବେଳେ ତୁମେ ଆସିଲେ ମହାରାଜାଙ୍କ ସଙ୍ଗେ କଥା ହେବ ବୋଲି ଉଆସରୁ ଖବର ଆସିଛି । ମୁଁ କହିଲି, ମହାରାଜାଙ୍କ ଶ୍ରୀମୁଖ ବଚନ ମିଳିଛି ଯେ, ଆଜି ୫ ମିନିଟ୍ ସମୟ ମୋତେ ନିଶ୍ଚେ ଦିଆଯିବ । ସେକ୍ରେଟେରୀ ମହାଶୟ ନ ଶୁଣିଲା ପରି ହୋଇ ବାହାରିଗଲେ ଓ ମୁଁ ଡେରାକୁ ଆସି ମୁଠିଏ ରାଜପ୍ରାସାଦ ପ୍ରାପ୍ତ ପ୍ରସାଦ ପାଇ ବସାରେ ରାଜଦତ୍ତ ଦଉଡ଼ିଆ ଖଟରେ ଗଡ଼ପଡ଼ ହେଲି । ଓପରଓଳି ୪ଟା ନ ବାଜୁଣୁ ପୁଣି ଯାଇ ଦିହୁଡ଼ିରେ ହାଜର ହେଲି । ୨ ଘଣ୍ଟା ଅନୁସରଣ ଓ ଦିହୁଡ଼ିର ଛାତର କଡ଼ି ବରଗା ସୁମାରି କର୍ମ କରିବା ପରେ ଏଥରକ ସେକ୍ରେଟେରୀ ସାହେବ ନ ଆସି ଦାରୋଗା ସାହେବ ଆସି ମୋତେ ସମ୍ବର୍ଦ୍ଧନାଟାଏ କଲେ ଓ କହିଲେ, ତୁମେ ଡେରାକୁ ଯାଅ, ମହାରାଜା ତୁମକୁ ୫ ମିନିଟ୍ ସମୟ ଦେବାକୁ କହିଛନ୍ତି । ବର୍ତ୍ତମାନ ତୁମର ଏ ମଙ୍ଗଳକୃତ୍ୟର ବିଦାକି ଡେରାକୁ ପଠାଯାଇଛି ଓ ସେଠାକୁ ତୁମର ଗୃହ ପ୍ରତ୍ୟାଗମନାର୍ଥ ଯାନ ପ୍ରେରିତ ହେଉଛି । ତୁମେ ସେହି ଯାନରେ ଏ ରାଜଧାନୀ ଛାଡ଼ିବାବେଳେ ଯାନ ଏ ରାଜବାଟୀ ବାଟେ ଆସିବ ଓ ଠିକ୍ ସେହି ସମୟରେ ମହାର୍ଜା ଅଇରି ଗଉଡ଼ ଓ ବାଉଁଶ ରାଣୀଙ୍କ ନାଟ ଦେଖିବାକୁ ଏ ଦିହୁଡ଼ି ଆଗରେ ବିଜେ କରିଥିବେ । ସେତିକିବେଳେ ତୁମେ ମହାର୍ଜାଙ୍କ ସଙ୍ଗେ ୫ ମିନିଟ୍ କଥାବାର୍ତ୍ତା ହୋଇ ସ୍ୱଗୃହାଭିମୁଖରେ ଯିବ । ବିଦାକି ଲୋଭଟା ସହଜରେ ତ ବଡ଼ ଲୋକଙ୍କ ପାଟିରୁ ନାଳ ବୁହାଏ, ମୁଁ ତ ସହଜେ ଅନିମନ୍ତ୍ରିତ ଓ ଗରିବ ମସିଆ ମୁଣ୍ଡ । ଅଗତ୍ୟା ଡେରାକୁ ଫେରିଆସି ଦେଖିଲି ଯେ, ମହାରାଜାଙ୍କ ଭିତର-ଛେଉ-ପଟ୍ଟନାୟକ ଜଣେ ଭଣ୍ଡାରି ସାଙ୍ଗରେ ଡେରାରେ ମୋତେ ଅପେକ୍ଷା କରୁଅଛନ୍ତି ଓ ଭଣ୍ଡାରି ହାତରେ ଗୋଟିଏ ରୁମାଲ ଘୋଡ଼ିଆ ଥାଳି ଧରିଛି । ମୁଁ ଡେରାରେ ପାଦ ଦେବାମାତ୍ରେ ଭଣ୍ଡାରି ସେ ଥାଳି ଓ ଭିତର-ଛେଉ-ପଟ୍ଟନାୟକେ ଖଣ୍ଡିଏ କାଗଜ ଟିପଣା ମୋ ଆଗରେ ଥୋଇଦେଲେ । ତାଲିକା ଦେଖିଲି ଓ ଥାଳି ମୁଆଡ଼ା କଲି ।

ପଞ୍ଚାୟତ ସାହେବଙ୍କ ମଙ୍ଗଳକୃତ୍ୟ ଉପଲକ୍ଷେ ଶ୍ରୀପାଣିପାତ୍ର ଶର୍ମାଙ୍କ ବିଦାକି

ପାଟଢୋଡ଼....ମୁ ୨ ବିଦାକି....ତିନିଟଙ୍କା ଦୁଇଅଣା ବାଟ ଖରଚ....ଏକ ଟଙ୍କା ନଅ ଅଣା

(ଟୀକା ପେଟ ଢୋଡ଼ ନାମରେ ଲିଖିତ ବସ୍ତୁ ଲୁଗା ଚଦର ୨ ମୂର୍ତ୍ତି ଯାକର ଓଜନ ୧୨ ଭରି ଓ ମୂଲ୍ୟ ଭରି ପିଛା ଦଶଅଣା ବା ବାରଅଣା କସିଲେ ଯାହା ହେବ । ବାଟ ପଚାଶ ମାଇଲ ଯିବାଆସିବା ବାଟ ଖର୍ଚ୍ଚ ମାଇଲ୍ ପିଛା ଦଶଅଣା ବା ଖରଚ ମାଇଲ ପିଛା ଦୁଇ ପଇସା ଓ ତହିଁକି ଚାହିଁ ବିଦାକି ଫି ମାଇଲକୁ ଅଣାଏ । ଏତେକ ମୁଁ ଥାଳିରୁ

ଉଠାଇଲା ବେଳକୁ ଭଣ୍ଡାରି ଦାବି କଲେ - ଆମ ବିଦାକି ? ସେଥିରୁ ଟଙ୍କାଟିଏ ପଟ୍ଟନାୟକଙ୍କୁ ଓ ଅଧୁଲିଟିଏ ଭଣ୍ଡାରିକୁ ଦେଇ ପଛଆଡ଼କୁ ଚାହୁଁ ଯେ, ମହାର୍ଜାଙ୍କ ବେଠିଆମାନେ ଆସି ଆମ ଡେରାରେ ପଡ଼ିଥିବା ଖଟିଆ, ମାଛିଆ, ହେଁସ, ପଟି ଉଠେଇଲେଣି ଓ ଆମକୁ ବ୍ୟବହାର ନିମନ୍ତେ ଦିଆ ଯାଇଥିବା ଲଣ୍ଠନ, ଢାଳ, ମାଠିଆ, ଗିଲାସ ଆଦି ବସ୍ତେ ରାଜ ପ୍ରଦତ୍ତ ସରଂଜାମ ସ୍ୱ ସ୍ୱ ସ୍ଥାନ ତ୍ୟାଗ କରିବାକୁ ଉଦ୍ୟତ ହେଲେଣି । କୌତୂହଳାକ୍ରାନ୍ତ ହୋଇ ପଟ୍ଟନାୟକଙ୍କ ଆଡ଼କୁ ଚାହିଁବାରେ ସେ କହିଲେ 'ଆଜ୍ଞା, ଆପଣ କ'ଣ ରାଜଦରବାରମାନଙ୍କ ରୀତି ଜାଣନ୍ତି ନାହିଁ ? ରାଜଦ୍ୱାରରୁ ବିଦାକି ପାଇବା ପରେ ଆଉ ରାଜଧାନୀରେ ରହିବା ଭଦ୍ରତା ବିରୁଦ୍ଧ ।'' ଯା ହେଉ, ଲୁଗାପଟା ଓ ବିଛଣା ବିଛଣିକୁ ବାନ୍ଧିଲି ଓ ଚାହୁଁ ଚାହୁଁ ଡେରାର ଦାଣ୍ଡରେ ମଟରଗାଡ଼ିର ଭେଁ ଶବ୍ଦ ଚେତାଇ ଦେଲା ଯେ ରାଜଧାନୀ ତ୍ୟାଗ କରିବା ବେଳ ଉପସ୍ଥିତ । ମୁଁ ମଧ ମନରେ ରେଣ୍ଡ ବାନ୍ଧିଥାଏ, ଯେତେ ଯାହା ବିଦାକି ମିଳିବାର ମିଳିଲା । ମହାରାଜାଙ୍କ ସଙ୍ଗେ ପ୍ରାର୍ଥିତ ୫ ମିନିଟ୍ ମୁଲାକାତରେ ମୋ ମନସ୍କାମନା ପୂର୍ଣ୍ଣ ହୋଇଯିବ ଯେ ! ଏହା ବିଚାରି ମଟର ଦେଖିଲା ବେଳକୁ ତାହା ଗୋଟିଏ ଇଟାବୁହା ଟ୍ରକ୍ ଓ ସେଥିରେ ଆଗ ପାଖରେ ଥିବା ବେଞ୍ଚରେ ମୋ ଯିବା ପୂର୍ବରୁ ୪ ଜଣ ଧୋବଧାଉଳିଆ ବସି ସାରିଲେଣି ଓ ଇଟାଚୂନ ବାଲି ବୁହାହେବା ଡାଳାବୃତ କୋଠରିରେ ସେମାନଙ୍କ ବିଛଣା ଆଦି ସଜାହୋଇ ରଖା ହେଲାଣି । ଅଗତ୍ୟା ମୁଁ ସେଥିରେ ମୋ ପେଟରା କମ୍ବଳ ପୂରାଇଲି ଓ ମୋ ଲାସକୁ ମଧ ପୂରାଇଲି । କିନ୍ତୁ ମୋ ମନଟା ସେହି ରାଜବାଟୀ ସାମନା ବାଉଁଶରାଣୀ ନାଟ ଦେଖିବାକୁ ଉପସ୍ଥିତ ଅପାନମୁହାଁ ମହାର୍ଜାଙ୍କଠାରେ । ସମସ୍ତେ ବସି ସାରିଲା ପରେ ମଟରଗାଡ଼ି ଚାଲିଲା ଦକ୍ଷିଣମୁଖା ହୋଇ । ମୁଁ ଡ୍ରାଇଭରଙ୍କୁ କହିଲି, କିହୋ ଡ୍ରାଇଭର୍ ସାହେବ, ମହାର୍ଜା ହୁକୁମ କରିଛନ୍ତି ଏ ମଟରଗାଡ଼ି ରାଜବାଟୀ ବାଟେ ଯିବ ଓ ମୁଁ ମହାର୍ଜାଙ୍କ ସଙ୍ଗେ ଭେଟ ହୋଇ ୫ ମିନିଟ୍ କଥାବାର୍ତ୍ତା ହେବି । ତେବେ ସୁଦ୍ଧା ଡ୍ରାଇଭର ନ ଶୁଣିଲା ପରି ହୋଇ ଦକ୍ଷିଣମୁଖା ମଟର ଛାଡ଼ିଲେ । ପଛକୁ ମୁଁ ମଟରର ଗତି ଫେରାଇବାର ଅନ୍ୟ ଉପାୟ ନ ଦେଖି କହିଲି, ଡ୍ରାଇଭର୍ ସାହେବ - ମହାର୍ଜା ପରା ଶ୍ରୀମୁଖରେ ମତେ ଆଜ୍ଞା ହୋଇଛନ୍ତି ୫ ମିନିଟ୍ ମୋ ସଙ୍ଗେ ଦେଖା କରିବେ ବୋଲି, ତୁମେ ମହାର୍ଜାଙ୍କ ମୁହଁ କଥା ଶୁଣିବ ନାହିଁ ? ଡ୍ରାଇଭର ସାହେବ ଏତିକିରେ ଖପା ହୋଇ ଓଲଟିକରି କହିଲେ, ''ହାମ୍ ହୁକୁମକା ନୌକର । ଆପ୍‌କା ନୌକର ନହିଁ ହୁଁ ।'' ଏହିପରି ଅବସ୍ଥାରେ ମଟର ଟ୍ରକ୍ ଆଣି ଆମକୁ ୧୫ ମାଇଲ ଦୂରବର୍ତ୍ତୀ ନିକଟତମ ରେଳଷ୍ଟେସନରେ ଛାଡ଼ିଦେଇଗଲା ଓ ମହାର୍ଜାଙ୍କ ମୁହଁର ମୁହଫଣିଆ କଥା ଭାବୁ ଭାବୁ ମୁଁ ଅପାନମୁହାଁ ମହାରାଜାଙ୍କ ମୁଲକରୁ ବିଦାୟ ନେଲି ।

ଉତ୍କଳସାହିତ୍ୟ - ଶ୍ରାବଣ, ୧୩୪୨ ସାଲ ।

### ।। ଚାରି ।।

ନୂଆ ଓଡ଼ିଶା ପ୍ରଦେଶ :

ସଂସାରରେ ଧାରତାବଂଧାଙ୍କ ପ୍ରକୃତି ପରିଲକ୍ଷିତ ଆଳସ୍ୟ ଆପଣଙ୍କ ଯୋଗୁଁ ବଦଳି ନାହିଁ । ସବୁ ଧାରତାବଂଧା ମହାଜନଙ୍କ ୱାରସ୍‌ମାନଙ୍କଠାରୁ କରଛଡ଼ା ଦେବାକୁ ବରାବର ଚେଷ୍ଟା କରୁଥାଆନ୍ତି । କିନ୍ତୁ ମହାଜନ ୱାରସ୍‌ଙ୍କ ଖାସ୍ ହାବୁଡ଼େ ପଡ଼ିଗଲେ ନାଚାର ହୋଇ ଫଳେ ପୁଷ୍ଟେ କିଛି ଦେଇ ପୁଣି 'ଚକେ ଗଲେ ବାର ହାତ' ନୀତିରେ ଦିନାକେତେ ପାଇଁ ନିଃଶ୍ୱାସ ମାରନ୍ତି । ଆପଣଙ୍କ ଧାରତାବଂଧା ମଧ୍ୟ ଏ ନିୟମରୁ ବହିର୍ଭୂତ ନୁହନ୍ତି । ଅତଏବ ମଝିରେ ମଝିରେ ତାଙ୍କର ଅନ୍ତର୍ଦ୍ଧାନ ଅବଶ୍ୟମ୍ଭାବୀ । ଶେଷଥର ଧାରତାବଂଧାଙ୍କ ସଙ୍ଗେ ପାଠକମାନଙ୍କର ଦେଖାହେବା ଦିନଠାରୁ ମହାନଦୀରେ ଓ କାଠଯୋଡ଼ିରେ ବହୁତ ପାଣି ବୋହି ଯାଇଅଛି । ଆମ ଦେଶରେ, ଜାତିରେ, ସମାଜରେ, ରାଜ୍ୟରେ, ରାଜଧାନୀରେ, ଉଆସରେ, ସହରରେ, ଗାଆଁରେ, ଘରଆଡ଼େ ଅନେକ ଝଡ଼ତୋଫାନ ବହି ଯାଇଅଛି । ଯା ହୋଇ ସୁଦ୍ଧା ଧାରତାବଂଧାଙ୍କ ଅବସ୍ଥା - ଯଥାପୂର୍ବଂ ତଥା ପରଂ । ଆଜି ଓଡ଼ିଆଙ୍କ ମନରେ କେତେ ନୂଆ ଭାବ, କେତେ ନୂଆ ଆଶା ଖେଳି ଯାଉଛି । ଓଡ଼ିଶା ପ୍ରଦେଶର ସୃଷ୍ଟି ଦ୍ୱାରା ବ୍ରିଟିଶ ସରକାର ଓଡ଼ିଆ ଜାତିର ଭାଷାଗତ ଓ ପ୍ରାଚୀନ ସଭ୍ୟତାଗତ ବିଶିଷ୍ଟତା ସ୍ୱୀକାର କରିଅଛନ୍ତି । ଦିନେ ଏହି ଓଡ଼ିଆ ଜାତି ପ୍ରାଚୀନ ଭାରତରେ ଗୋଟିଏ ଉଚ୍ଚ ଆସନ ଅଧିକାର କରିଥିଲା । ଓଡ଼ିଆ ରାଜ୍ୟ ବିନ୍ଧ୍ୟପାଦରୁ ସମୁଦ୍ର ପର୍ଯ୍ୟନ୍ତ, ଗଙ୍ଗା ଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଓଡ଼ିଆ ସମ୍ରାଟ୍‌ଙ୍କ ବିଜୟ ପତାକା କୁମାରିକା ଠାରୁ ହିମାଳୟ ପର୍ଯ୍ୟନ୍ତ ଫର୍ ଫର୍ ହୋଇ ଉଡୁଥିଲା । କିନ୍ତୁ ତାପରେ ଓଡ଼ିଶା ପରପଦାନତ ହେଲା । ସେଇଠୁଁ ପଡ଼ିଲା ତାର ଦୁର୍ଦ୍ଦଶା । ଯା ତା ହାତିଆନ୍ଦରେ ମୁଣ୍ଡ ଗୁଞ୍ଜି ଗୁଞ୍ଜି ଓଡ଼ିଆଙ୍କର ଦିନ ସରିଲା ନାହିଁ । ଲଙ୍ଗଳ ଲୁହା ଘୋରି ହୋଇ ଛୁଞ୍ଚିରେ ରହିଲା ପଛକୁ ଓଡ଼ିଶାର ସରକାରୀ ମୂଳକ କଟକ, ପୁରୀ, ବାଲେଶ୍ୱର ୩ ଜିଲ୍ଲାରେ ସୀମାବଦ୍ଧ ହେଲା । ଦିନାକେତେ ଏହା ରହିଲା ବଙ୍ଗଳା ହାତରେ, ପୁଣି ରହିଲା ବିହାର ହାତରେ । ଓଡ଼ିଆମାନେ ଛିନ୍ନଛତ୍ର ହୋଇ ଲୁଚାଏ ରହିଲେ ବଙ୍ଗ ଦେଶରେ, ଲୁଚାଏ ଛୋଟନାଗପୁରରେ, ଲୁଚାଏ ମଧ୍ୟପ୍ରଦେଶରେ, ଲୁଚାଏ ମାନ୍ଦ୍ରାଜରେ । ଥୋକେ ଖାଇଲେ ଛେଁଚକୀ, ଥୋଡ଼ାଏ ଖାଇଲେ ବଣଆଳୁ (କରବା), ଥୋଡ଼ାଏ ଖାଇଲେ ବାଜରା ରୁଟି ଓ ଛତୁଆ, ଲୁଚାଏ ଖାଇଲେ ଚିନ୍ତାପାଣ୍ଡୁ ଓ ଚାରୁପାଣି । ଯେଉଁ ପଞ୍ଚାକ ଖାସ୍ ଓଡ଼ିଶାରେ ରହିଲେ, ସେ ଖାଇଲେ ବାସି ପଖାଳ ଓ ଶୁଖୁଆପୋଡ଼ା । ପ୍ରଭୁଙ୍କ ସୁଦୟାରୁ ଓଡ଼ିଶାର ସୁଦିନ ଉଇଁବାର ସୂଚନା ଦେଖାଗଲା । ସମ୍ବଲପୁର ଓଡ଼ିଶା ବିଭାଗର ସୀମାଭୁକ୍ତ ହେଲା, କିନ୍ତୁ ସବୁ ଓଡ଼ିଆଯାକ ଏକ ଶାସନାଧୀନ ହେବା ପାଇଁ ଭାରି ବିକଳ ଡାକ ଛାଡ଼ିଥାଆନ୍ତି । ଏହିପରି ୪୦ ବର୍ଷର ବିକଳ ଡକା ଭାରତ ସରକାର ଓ ବ୍ରିଟିଶ ଜାତି ଓ ବ୍ରିଟିଶ

ପାର୍ଲିଆମେଣ୍ଟ ଶୁଣିଲେ । ଏକଥା ତଦନ୍ତ କରିବାକୁ ଫିଲିପ ଡଫ୍ କମିସନ୍ ବସିଲା । ତା'ପରେ ଯେତେବେଳେ ସାଇମନ୍ କମିଶନ୍ ଭାରତକୁ ଆସିଲେ, ସେତେବେଳେ କଂଗ୍ରେସବାଲାଙ୍କ ଆଞ୍ଚାମାଳମାନ ଦେଶଯାକ ବୁଲିଗଲା, 'ସାଇମନ୍ ଫେରିଯାଅ' । ସେହି ସମୟରେ କେତେଜଣ ଓଡ଼ିଆ ପୁଅ ସାଇମନ କମିଶନଙ୍କ ଆଗେ ଓଡ଼ିଆଙ୍କ 'ବାରଦୁଆର' ଅବସ୍ଥା ଗୁହାରି କରିବାକୁ ଯାଇଥିଲେ ବୋଲି ଓଡ଼ିଶୀ ସମ୍ବାଦପତ୍ରର ସଂପାଦକମାନେ ନଳିତା ପିତା ଖାଇଲା ଭଳି ମୁହଁଟାମାନ କଲେ । ସେହି ସାଇମନ୍ କମିଶନ୍‌ଙ୍କ ରିପୋର୍ଟ ଫଳରେ ଓଡ଼ିଆଙ୍କ କପାଳ ଫିଟିବାର ସୁନ୍ଦରା ଉଇଁଲା ଓ ବିଲାତର ରାଉଣ୍ଡ ଟେବୁଲ ବୈଠକକୁ ଓଡ଼ିଆ ମାତାଙ୍କ ସୁ-ସନ୍ତାନ ପାରଳାର ଗଜପତି ଓ ଖଲ୍ଲିକୋଟର ମର୍ଦ୍ଦରାଜ ଡକରା ହୋଇଯାଇ ଜାତି ପାଇଁ ଖୁବ୍ ଲଢ଼ିବାରୁ ଶେଷକୁ ଓଡ଼ିଆ ମୁଲକଯାକକୁ ମିଶାଇ 'ଓଡ଼ିଶା' ନାମରେ ଗୋଟିଏ ସ୍ୱତନ୍ତ୍ର ନୂଆ ପ୍ରଦେଶ ଗଢ଼ା ହେଲା । ଏ ଘୋଷଣା ସଙ୍ଗେ ସଙ୍ଗେ ପୁଣି ଚିତ୍କାର ଉଠିଲା ଯେ, ଜୟପୁର ଓ ପାରଳା, ସିଂହଭୂମ ଓ ମେଦିନୀପୁର ଆଦି ଓଡ଼ିଆ ମୁଲକ ନ ମିଶିଲେ ଏ ସ୍ୱତନ୍ତ୍ର ପ୍ରଦେଶ ଓଡ଼ିଶାକୁ ଦେବା ନ ଦେବା ସମାନ । ଏଥିପାଇଁ ଉତ୍କଳ ସମ୍ମିଳନୀର ବୈଠକ ହେଲା । ଶେଷକୁ କମିଟି ଓଡ଼ିଶା ପ୍ରଦେଶରେ ଜୟପୁର ଓ ପାରଳାରୁ କେତେକ ଅଂଶ ମିଶେଇଲେ । ଏହି ନୂଆ ଓଡ଼ିଶା ପ୍ରଦେଶର ପ୍ରତିଷ୍ଠା ୧.୪.୩୬ରେ ହୋଇଅଛି । ଓଡ଼ିଶାର ସୌଭାଗ୍ୟକୁ ଓଡ଼ିଶାରେ ସୁପରିଚିତ ଓ ଓଡ଼ିଶାକୁ ଉତ୍ତମରୂପେ ଚିହ୍ନିଥିବା ସାର୍ ଜନ୍ ହବାକ୍ ନୂଆ ଓଡ଼ିଶାର ପ୍ରଥମ ଲାଟ ହୋଇ ଆସିଲେ । ଆଜି ନୂଆ ଓଡ଼ିଶା ପ୍ରଦେଶ ପାଇବା ଯୋଗୁଁ ଓଡ଼ିଆ ପ୍ରଦେଶଭୁକ୍ତ ଓଡ଼ିଆ ପୁଅଙ୍କ ମନରେ ଯେତିକି ଆନନ୍ଦର ଢେଉ ଖେଳୁଛି, ଯେଉଁ ଓଡ଼ିଆ ମୁଲକମାନ ଓଡ଼ିଆ ପ୍ରଦେଶର ବାହାରେ ରହିଗଲେ (ଯଥା : ସିଂହଭୂମ, ଗଞ୍ଜାମ, ମଧ୍ୟପ୍ରଦେଶ ଓ ବଙ୍ଗର ଓଡ଼ିଆ ଅଞ୍ଚଳ) ସେ ଦେଶର ଓଡ଼ିଆମାନଙ୍କ ମନରେ ସେତିକି ଶୋକର ନଈବଢ଼ି ବହୁଛି । ୮।୩।୧୯୩୬ରେ ସଣୁଆରେ 'ସିଂହଭୂମ ଉତ୍କଳ ସଭା'ର ଯେଉଁ ଦଶମ ବାର୍ଷିକ ଅଧିବେଶନ ହୋଇଗଲା, ସେଥିରେ ପାରଳାର ଗଜପତି ମହାରାଜା ସଭାପତି ହୋଇଥିଲେ । ସେ ସଭାରେ ଅଭ୍ୟର୍ଥନା ସମିତିର ସଭାପତିଙ୍କ ଅଭିଭାଷଣ ଓ ତହିଁରେ ଉପସ୍ଥାପିତ ହୋଇଥିବା ପ୍ରସ୍ତାବମାନଙ୍କ ସମ୍ବନ୍ଧ ଯେଉଁ ଅଭିଭାଷଣମାନ ହୋଇଅଛି, ସେଥିରୁ ସିଂହଭୂମବାସୀ ଓଡ଼ିଆଙ୍କ ଦୁରବସ୍ଥାର କରୁଣ ଚିତ୍ର ସହଜରେ ଠଉରାଇ ହେଉଅଛି । ଯେତେଦିନ ପର୍ଯ୍ୟନ୍ତ ସିଂହଭୂମ ଆଦି ଓଡ଼ିଆ ଅଞ୍ଚଳ ଓଡ଼ିଶାରେ ନ ମିଶିଛି, ସେତେଦିନ ଯାକେ ଭାଷା ସୂତ୍ରରେ ଓଡ଼ିଶା ପ୍ରଦେଶ ଗଠନ ନୀତି 'ସୁନାର ପଥୁରୀ' ଭଳି ଅବାସ୍ତବ ହୋଇ ରହିଥିବ । ଆମେ ଓଡ଼ିଶାର ଓଡ଼ିଆମାନେ ଓଡ଼ିଶା ପ୍ରଦେଶ ପାଇଲେଇଁ ବୋଲି ନିଶ୍ଚିନ୍ତ ହୋଇ ବସିଲେ ହେବ ନାହିଁ । ସିଂହଭୂମରେ ଓଡ଼ିଆମାନଙ୍କ ଓଡ଼ିଆତ୍ୱ ବଜାୟ ରଖିବାପାଇଁ ଯେଉଁ ଶିକ୍ଷା ଓ ଜାତୀୟ ପ୍ରେରଣା ବିସ୍ତାର ଦରକାର, ତହିଁ ପାଇଁ ସିଂହଭୂମର ପଣ୍ଡିତ ଶ୍ରୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ପ୍ରମୁଖ କେତେଜଣ କର୍ମୀ

ପ୍ରାଣପାତ ପରିଶ୍ରମ କରୁଅଛନ୍ତି । ସିଂହଭୂମରେ ଓଡ଼ିଆ ଶିକ୍ଷାର ବିସ୍ତାର ପାଇଁ ପାରଳାର ମହାରାଜା ପାଞ୍ଚହଜାର ଟଙ୍କା ଦାନ କରିଅଛନ୍ତି । ଆଶା କରାଯାଏ ଯେ, ଓଡ଼ିଶାର ଓଡ଼ିଆପୁଏ ଓ ସିଂହଭୂମ, ମେଦିନୀପୁର, ଗଞ୍ଜାମ ଓ ମଧ୍ୟପ୍ରଦେଶରେ ରହିଯାଇଥିବା ଓଡ଼ିଆମାନେ ତତ୍‌ଅଞ୍ଚଳ ଓଡ଼ିଶାରେ ମିଶିବା ପାଇଁ ଧାରାବାହିକ ଆନ୍ଦୋଳନ କରିବେ ଓ ତତ୍ ସମ୍ବନ୍ଧେ ଦୃଢ଼ ଜନମତ ପ୍ରତିଷ୍ଠିତ ହେବା ପାଇଁ ଚେଷ୍ଟା କରିବେ । ଓଡ଼ିଆରେ ଗୋଟେ ଢଗ ଅଛି, 'କାନ୍ଦୁଥା, ଯାହା ପାଉଛୁ ବାନ୍ଧୁଥା', ଆମେ ଯାହା ମାଗୁଥିଲୁଁ ତାହା ନ ମିଳିଲା ବୋଲି ଯାହା ମିଳୁଛି, ତାହା ଫିଙ୍ଗିଦେବା ବୁଦ୍ଧିମତ୍ତାର କର୍ମ ନୁହେଁ ।

ଆହୁରି ଗୋଟିଏ କଥାରେ ଆମ ଓଡ଼ିଆ ଜାତିର ଦୁର୍ଭାଗ୍ୟ ସାଫ୍ ସବୁତ୍ ହେଉଅଛି । ଜୟପୁର, ପାରଳା, ଖଡ଼ିଆଳ ପାଇଲେ ବୋଲି ଆମେ ଆନନ୍ଦରେ ହରିବୋଲ ହୁଳହୁଳୀ ଦେଲା ବେଳକୁ', ତେଣେ ବୁଝୁ ବୁଝୁ ଆମ ଓଡ଼ିଆ ଜାତିର ମେରୁଦଣ୍ଡ, ଓଡ଼ିଆଙ୍କ ପେଡ଼ିଲୁଗା ଓଡ଼ିଆ ଗଡ଼ଜାତଯାକ ଆମଠାରୁ ଅଲଗା ହୋଇ ଗଲେଣି । ''ଶାଶୂ ମଲେ, ବୋହୂ ବେଇଲେ, ଯେଉଁ ତିନି ପ୍ରାଣୀକି, ସେହି ତିନି ପ୍ରାଣୀ ହେଲେ'' । ଆମ ଓଡ଼ିଆ ଗଡ଼ଜାତ ମୁଲକରେ ଉଆସର ଏକ ଆଡ଼େ ସ୍ୱର୍ଗୀୟ ରାଜାଙ୍କର ମୃତିକିଆ ଓ ରାମନାମ ସତ୍ୟ ହେ' ଡାକ ସଙ୍ଗେ ଅନ୍ୟଆଡ଼େ ନୂଆରାଜାଙ୍କ ଗାଦିଲାଗି ଉତ୍ସବର ହୁଳହୁଳୀ ପଡ଼ିବା ଦୃଶ୍ୟ ବିରଳ ନୁହେଁ । ସେହିପରି ଦେଖିବା ବେଳକୁ ''ବାପ ପୁଅ ଦିହେଁ ରାତି ଅନିଦ୍ରା, ମୁଗୁରା ମୁହଁ ମେଲା'' । ଓଡ଼ିଶା ପ୍ରଦେଶକୁ ଦୁଇ ମହାରାଜା ଓ ଗୁଡ଼ିଏ ରାଜାଙ୍କ ମୁଲକ ଆସିଲାବେଳକୁ ଆମ ଭିତରୁ ବାହାରିଲେ ୨୬ ଗଡ଼ଜାତର ରାଜା, ମହାରାଜା, ରୁଲିଙ୍ଗ୍ ଚିଫ୍ ଓ ରୁଲର । ସେମାନେ ପ୍ରାଦେଶିକ ଶାସନରୁ ଯାଇ ସାମ୍ରାଜ୍ୟ ଶାସନାଧୀନ ହେଲେ ବୋଲି ସେମାନଙ୍କ ମଧ୍ୟରୁ କେତେକଙ୍କ ମନକୁ ଲଙ୍ଗଳ ଦଉଡ଼ି ପାଉ ନାହିଁ । କିନ୍ତୁ ଯେବେ ଥରେ ଭାବିବାକୁ ହୁଏ ଯେ, 'ଓଡ଼ିଶା କରଦ ରାଜ୍ୟ' (Orissa Tributary Mahals) ଓଡ଼ିଶା ମିତ୍ର ରାଜ୍ୟ (Orissa Feudatory States), ଓଡ଼ିଶା ରାଜ୍ୟ (Orissa States) ବୋଲି ତାଙ୍କ ରାଜ୍ୟଉପରେ ଯେଉଁ ଛପାମୋହର ମରାହେଉଥିଲା, ତାହାଙ୍କ ଦେହରୁ ଖସିଲା ଓ ଏଣିକି ବିଶିଷ୍ଟ ଓଡ଼ିଆ, ଓଡ଼ିଆ ରାଜ୍ୟ ବୋଲି ସେ ରାଜ୍ୟମାନ ଚିହ୍ନାଇ ହେବେ ନାହିଁ । ଏ ରୁଲର୍ ଓ ରୁଲିଙ୍ଗ୍ ଚିଫ୍‌ମାନଙ୍କ ମଧ୍ୟରେ ସମସ୍ତଙ୍କର ଦୂରଦୃଷ୍ଟି ନାହିଁ ବୋଲି କହିବା ଅନୁଚିତ । କିନ୍ତୁ ଯେଉଁମାନଙ୍କର ରାଜନୀତିକ ଓ ଜାତୀୟ ଦୂରଦୃଷ୍ଟି ଅଛି ସେମାନେ ଅବଶ୍ୟ ବୁଝିପାରୁଥିବେ ଯେ, ମାତୃଭୂମିର ଚିହ୍ନଟ ନାମ ବା ଉପାଧି କଢ଼ା ହେବା ଆନନ୍ଦର କଥା ନୁହେଁ । ସେହିମାନେ ହିଁ ଓଡ଼ିଆ ଜାତିର ମେରୁଦଣ୍ଡ, ସେହିମାନେ ହିଁ ଓଡ଼ିଆ ଜାତିର ପ୍ରାଚୀନ ଓ ନବ୍ୟ କୀର୍ତ୍ତିର ପ୍ରତିଷ୍ଠାତା ଓ ପୃଷ୍ଠପୋଷକ । ସେମାନଙ୍କୁ ଛାଡ଼ି ଓଡ଼ିଶା ପ୍ରଦେଶ ଫମ୍ପା କଇଥ ବା ଭୂତପିଆ ନଡ଼ିଆ ମାତ୍ର । ଆଜିଯାକେ ଓଡ଼ିଆ ଜାତିର ବାଡ଼ି ଗୋବରେ ଗୋବେ ଭୂମି ନ ଥିଲା, ମୁଣ୍ଡ ଗୁଞ୍ଜିବାକୁ ଖଣ୍ଡେ କୁଡ଼ିଆ ନ ଥିଲା । ଆଜି ଯେଉଁ ନ୍ୟାୟପର ବ୍ରିଟିଶ ଜାତିଙ୍କ ନ୍ୟାୟ ବିଚାରରୁ ଆମେ ଓଡ଼ିଶା ପ୍ରଦେଶ

ପାଇଲେଇଁ, ଆମର ବିଶ୍ୱାସ ଯେ, ସେହି ଜାତିର ହିତାହିତ ବିବେକ ଦିନେ ଆମର ସବୁ ଓଡ଼ିଆ ମୁଲକକୁ ଏକ ହତା ମଧ୍ୟରେ ଆଣିବ ।

ଆମ ଓଡ଼ିଆ ରାଜା ମହାରାଜାମାନେ ଭାରତର ରାଜନ୍ୟମଣ୍ଡଳୀରେ ଉଚ୍ଚ ଆସନ ପାଆନ୍ତୁ । ଭାରତର ଯୁକ୍ତରାଷ୍ଟ୍ର ପୁଞ୍ଜରେ (Federated States)ର ଦରବାରରେ ସୁନୁଲି ରୁପୁଲି ଚଉକି ପାଆନ୍ତୁ । ସେମାନେ ଭାରତର ରାଜନ୍ୟବର୍ଗଙ୍କର ଆଦର୍ଶ ହୁଅନ୍ତୁ । ସେମାନଙ୍କ ସହାୟତା ଓ ପୃଷ୍ଠପୋଷକତାରେ ଓଡ଼ିଆ ଜାତିର ପ୍ରାଚୀନ ଉତ୍କଳର, ପ୍ରାଚୀନ କଳିଙ୍ଗର, ପ୍ରାଚୀନ କୋଶଳର ସେମାନେ ହିଁ ଯୋଗ୍ୟ ଦାୟାଦ ବୋଲି ଜଗତରେ ଘୋଷିତ ହେଉ୍ନ, ଏହା ପ୍ରତ୍ୟେକ ଓଡ଼ିଆ ଆଶା କରୁଅଛି ଓ କରୁଥିବ' କିନ୍ତୁ ତାଙ୍କ ଠାରୁ ଯେବେ 'ଓଡ଼ିଶା' ବା 'ଓଡ଼ିଆ' ଛାପା ପୋଛି ହୋଇଯାଏ, ତେବେ ତାଙ୍କ ବଡ଼ତିରେ ଜାତିର ବଡ଼ତି କାହୁଁ ହେବ ? ପ୍ରତ୍ୟେକ ମନୁଷ୍ୟ ଆଶା କରେ ଓ ଇଚ୍ଛା କରେ ଯେ, ମୋ ଅଙ୍ଗପ୍ରତ୍ୟଙ୍ଗ ହୃଷ୍ଟପୁଷ୍ଟ ହେଉ, କିନ୍ତୁ ବାତଜ୍ୱରଜନିତ ଗୋଦର ହାତ ଓ ଗୋଦର ଗୋଡ଼ ଦ୍ୱାରା ଅଙ୍ଗପ୍ରତ୍ୟଙ୍ଗର ସ୍ଫୀତି ସେ ଆଶାକୁ ପୂର୍ଣ୍ଣ କରିପାରେ ନାହିଁ । ଗୋଦରକୁ ଲୋକେ ପୁଷ୍ଟାଙ୍ଗ ବୋଲି କହିବେ ନାହିଁ, ତାକୁ କହିବେ ରୁଗ୍ଣାଙ୍ଗ, ଅତଏବ ଆମ ଓଡ଼ିଶା ପ୍ରଦେଶ ଓ ଓଡ଼ିଆ ମୁଲକ ଗୋଦରା ନ ହୋଇ ପହିଲ୍‌ମାନର ଶରୀର ପରି ହୃଷ୍ଟପୁଷ୍ଟାଙ୍ଗ ହେଉ, ଏତିକି ଆମର ପ୍ରତି ଓଡ଼ିଆ ଭାଇ-ଭଉଣୀଙ୍କଠାରେ, ରାଜା ମହାରାଜାଙ୍କଠାରେ, ହାକିମହୁକୁମାଙ୍କଠାରେ ଓ ଶେଷରେ ଗୋଦର ଗୋଡ଼ର ତଥା ହୃଷ୍ଟପୁଷ୍ଟାଙ୍ଗର ବିଧାତା ଭଗବାନ୍‌ଙ୍କଠାରେ ଅରଜ୍ ।

ଉତ୍କଳ ସାହିତ୍ୟ - ଚୈତ୍ର : ୧୩୪୩ ସାଲ ।

# ମନର ପାଞ୍ଚ

## ୧୯୩୪ - ୧୯୩୬

'ସତ୍ୟ ସମାଚାର' ସାପ୍ତାହିକ ସମ୍ବାଦପତ୍ର । ଏହାର ପ୍ରକାଶ କାଳ ୧୯୩୦ ମସିହା ଜୁନମାସ ଚଉଦ ତାରିଖ, ଶନିବାର । ପତ୍ରିକାର ସଂପାଦକ ଶ୍ରୀ ବିଶ୍ୱନାଥ କର ଓ ଗୋପାଳ ଚନ୍ଦ୍ର ପ୍ରହରାଜ, ପ୍ରକାଶକ ଶ୍ରୀ ମହାନନ୍ଦ କର । ଉତ୍କଳ ସାହିତ୍ୟ ପ୍ରେସ୍, କଟକରୁ ଏହାର ମୁଦ୍ରଣ ଓ ପ୍ରକାଶନ । ଶ୍ରୀ କରଙ୍କ ଦେହାନ୍ତ ପରେ ଶ୍ରୀକୃଷ୍ଣ ମହାପାତ୍ର, ପ୍ରହରାଜଙ୍କ ସହଯୋଗୀ ସମ୍ପାଦକ ରୂପରେ (୧୯୩୪ ମସିହା ଅକ୍ଟୋବର ୩୧ ତାରିଖ) ଯୋଗ ଦେଇଛନ୍ତି ଏବଂ ପରବର୍ତ୍ତୀକାଳ (୧୯୩୬ ମସିହା ଅଗଷ୍ଟ ମାସ ୧୯ ତାରିଖ)ରେ ପ୍ରହରାଜ ଏକାକୀ ପତ୍ରିକାର ସମ୍ପାଦନା କାର୍ଯ୍ୟ ନିର୍ବାହ କରିଛନ୍ତି ।

ଇଂରେଜ ପ୍ରଶାସନର ପ୍ରଶଂସକ ଏବଂ ସ୍ୱରାଜ୍ୟ ଆନ୍ଦୋଳନ ଓ ସ୍ୱାର୍ଥ- ସର୍ବସ୍ୱ କଂଗ୍ରେସୀ ନେତାମାନଙ୍କର ସମାଲୋଚକ (କେହି କେହି ତାଙ୍କୁ ନିନ୍ଦୁକ କହିଥାନ୍ତି) ରୂପରେ ପରିଚିତ ଶ୍ରୀ ପ୍ରହରାଜ ସମ୍ବାଦ ପରିବେଷଣ କାଳରେ ବେଶ୍ ସଚେତନ ଭାବରେ ଦେଶ ତଥା ବିଦେଶର ଭାଷା, ସାହିତ୍ୟ, ସଂସ୍କୃତି, ରାଜନୀତି, ଅର୍ଥନୀତି ଓ ସମାଜବ୍ୟବସ୍ଥା ସଂକ୍ରାନ୍ତରେ ଆପଣାର ସୂକ୍ଷ୍ମ ବିଚାର ଉପସ୍ଥାପନ କରିଛନ୍ତି । ସମାଚାରର ପ୍ରାୟ ପ୍ରତ୍ୟେକ ସମ୍ବାଦରେ ତାଙ୍କ ସ୍ୱତନ୍ତ୍ର ଗଦ୍ୟଶୈଳୀର ସଙ୍କେତ ରହିଛି । ଫଳତଃ ବହୁ ସମ୍ବାଦ ସ୍ୱତନ୍ତ୍ର ଆଲୋଚନା ପରି ବୋଧ ହେଉଛି ।

ସମାଚାରରେ 'ମନର ପାଞ୍ଚ' ଶିରୋନାମରେ ପ୍ରକାଶିତ ଆଲୋଚନା ବେଶ୍ ହୃଦ୍ୟ, କଳାତ୍ମକ ଓ ସୂକ୍ଷ୍ମ ଅନ୍ତର୍ଦୃଷ୍ଟିସମ୍ପନ୍ନ । ମଧ୍ୟଯୁଗୀୟ ସାହିତ୍ୟରେ ପାଞ୍ଚପଦବିଶିଷ୍ଟ କବିତାକୁ ପଞ୍ଚକା କୁହାଯାଉଥିଲା । ଗଦ୍ୟରେ ଏହି ପଞ୍ଚକା ବା ପାଞ୍ଚଭାଗବିଶିଷ୍ଟ ଗଦ୍ୟ ରଚନାଶୈଳୀ ସମ୍ପୂର୍ଣ୍ଣ ନୂତନ । ଏହାର ପ୍ରକାଶ ରୀତି ସର୍ଜନାତ୍ମକ ସମ୍ବାଦ ଶୈଳୀର ନମୁନା । ତେଣୁ ଏହି ଶୀର୍ଷକରେ ପ୍ରକାଶିତ ଆଲୋଚନାଗୁଡ଼ିକୁ ଗ୍ରନ୍ଥାବଳୀରେ ସଂଯୋଜନ କରାଯାଉଛି । 'ମନର ପାଞ୍ଚ' ପ୍ରଥମେ ପ୍ରକାଶ ପାଇଛି ସମାଚାରର ୧୯୩୪ ମସିହା ଡିସେମ୍ବର ମାସର ବାର ତାରିଖ ବୁଧବାର ସଂଖ୍ୟାରେ । ଏଥିରେ ସଂକଳିତ ଅଧ୍ୟାୟଗୁଡ଼ିକ ରାଜ୍ୟ ଅଭିଲେଖାଗାର ଓ ଉତ୍କଳ ସାହିତ୍ୟ ସମାଜ ପାଠାଗାରରେ ଉପଲବ୍ଧ ସଖ୍ୟାଗୁଡ଼ିକରୁ ସଂଗୃହୀତ ।

ସଂପାଦକ

## ।। ଏକ ।।

୧ . କେତେକ କହୁଛନ୍ତି ନୂତନ ପ୍ରଦେଶ ହେବା କଥା ଶୁଣି ଓଡ଼ିଆମାନଙ୍କର ହର୍ଷ ଓ ବିଷାଦ ଉଭୟ ଜାତ ହୋଇଅଛି । କିନ୍ତୁ ହର୍ଷ କେତେ ଭାଗ, ବିଷାଦ କେତେ ଭାଗ, କେହି ସ୍ଥିର କରିପାରୁ ନାହାନ୍ତି । ଶୁଣାଯାଏ, ଲୀଳାବତୀ ସୂତ୍ର ସାହାଯ୍ୟରେ ଜଣେ ଗଣିତଜ୍ଞ କରଣ ତାହା ସ୍ଥିର କରିବେ ।

୨. ନୂତନ ପ୍ରଦେଶ ଗଢ଼ା ନ ସରୁଣୁ କାହାଯୋଗୁଁ ଏ ପ୍ରଦେଶ ହେଲା ଓ କାହାର ଯଶ କେତେ ପଣ, ଏହି ତର୍କ ବିତର୍କ ଲାଗିଛି । ଏ ଗରିବର ଅରଜି ନିବେଦନ, ବର୍ତ୍ତମାନ ଏ ତର୍କ ବିତର୍କ ମଉନ ରଖାଯାଉ । ପ୍ରଦେଶ ହୋଇଯାଉ, ଲାଟସାହେବ ଗାଦିରେ ବସନ୍ତୁ, ଶଙ୍ଖ ବାଜୁ, ହୁଳହୁଳି ପଡୁ, ମିଠେଇ ବଣ୍ଟା ସରୁ, ଏ କଥା ଆପୋସରେ ବିଚାର କରିବା । ନଚେତ୍ ଦାବିଦାରମାନଙ୍କୁ ସମଜାଇ ଦେବା ଆପଣମାନେ ମଧୁବାବୁଙ୍କୁ ପକ୍ଷଭୁକ୍ତ କରି ବ୍ରଜସୁନ୍ଦରବାବୁଙ୍କୁ ସାକ୍ଷୀମାନି ଦେବାନି ଅଦାଲତରେ ନାଲିସ କରି ବଡ଼ ଓକିଲ ଦେଇ ମକଦମା କରନ୍ତୁ । ହାକିମ ଯାହା ମୀମାଂସା କରିବେ । ତାଙ୍କ ମୀମାଂସା ପସନ୍ଦ ନ ହେଲେ ଅପିଲ କରିବେ ।

୩. ଗୋଟାଏ ହସ୍ତା ଉଠିଛି, ଓଡ଼ିଶା ପ୍ରଦେଶର ଲାଟ ହେବେ ଜଣେ ଭାରତବାସୀ । ହାତୀ କାହା ମୁଣ୍ଡରେ କଳସ ଢାଳିବ ଏ କଥା ପଚାରିବାକୁ ଜଣେ ସର୍ବଜ୍ଞଙ୍କ ନିକଟକୁ ଯାଉଥିଲି, ସେ ମୌନ ହୋଇ ମୁଣ୍ଡ ଟୁଙ୍ଗାରିଲେ । ବ୍ରହ୍ମପୁରର 'ନବ ଓଡ଼ିଆ' ସହ ଜୋସେଫ ଭୋର ପାଇବା ଆଶାରେ ପଦ୍‌ଗଦ୍ ହୋଇଅଛନ୍ତି । ମନେ ରଖିଥାଅ ନନା ! ଭବିଷ୍ୟଦ୍‌ରେ ଓଡ଼ିଶାର ସୀମା ବିସ୍ତାର ଘେନି ମାନ୍ଦ୍ରାଜ ଓ ଓଡ଼ିଶା ମଧରେ ପ୍ରବଳ ଟଣା ଓଟରା ଲାଗିବ । କେତେବେଳେ ସାର୍ ଯୋସେଫ ଭୋର କାହା ମୁହଁକୁ ଅନାଇବେ ? ପୁଅ ମୁହଁକୁ, କି ପୋଷିଆ ପୁଅ ମୁହଁକୁ ?

୪. ଆମ ପୂର୍ବପୁରୁଷମାନେ ଯୁଦ୍ଧବିଦ୍ୟାରେ ନିପୁଣ ଥିଲେ । ଏ କଥା ଆମେ ବରାବର କହୁଁ, କିନ୍ତୁ ଆମର ଅନ୍ତରଙ୍ଗ ବନ୍ଧୁମାନେ ସେ କଥା ମାନନ୍ତି ନାହିଁ । ଏବେ ଦେଖିଲ, ତାର ପ୍ରମାଣ ଖୋଦ । ଛଣଗିରିରୁ ମିଳିଲା । ସେଠାରେ ଭୂମି ଗର୍ଭରୁ ତୋପ ବାହାରିଛି । ସେ ତୋପ ଓଡ଼ିଆ ରଜାଙ୍କର । ତାକୁ ଗଢ଼ିଥିଲେ ଓଡ଼ିଆ ମିସ୍ତ୍ରି । ତାକୁ ଚଳାଉଥିଲେ ଓଡ଼ିଆ ପାଇକ । ଆମ ଦାବି ଡିଗ୍ରୀ ହେଲା । ତମେ ଏଣିକି ମୁଣ୍ଡ ହଲାଉ ଥାଅ ।

୫. ଆମର ହରଷମୁଖା ବନ୍ଧୁ ଡାକ୍ତର କ୍ଷେତ୍ରମୋହନ ରାୟଙ୍କ ପୁତ୍ର ଶ୍ରୀମାନ୍ ସଂଗ୍ରାମ କେଶରୀ ରାୟ ବିଲାତରେ ଯୁଦ୍ଧବିଦ୍ୟା ଶିକ୍ଷାକରି, ସେ ବିଦ୍ୟାରେ ଧୁରନ୍ଧର ହୋଇ, ଏ ଦେଶକୁ ଫେରି ଆସିଛନ୍ତି । ତାଙ୍କର ନାମ ହୋଇଛି ଲେଫ୍‌ନେଣ୍ଟ ରାୟ । ସେ ବିଲାତ ଯିବାବେଳେ ତାଙ୍କୁ ଆଶୀର୍ବାଦ କରିଥିଲୁଁ, ବର୍ତ୍ତମାନ ତଦପେକ୍ଷା ଅଧିକ ଆଶୀର୍ବାଦ କରୁଛି ।

ସେ ବାପର ନାଁ ରଖନ୍ତୁ, ମାନ ରଖନ୍ତୁ । ସେହି କ୍ଷେତ୍ରମୋହନ ରାୟଙ୍କର ମଧ୍ୟ ପ୍ରଶଂସା କରୁଛୁଁ, କାରଣ ତାଙ୍କର ଭବିଷ୍ୟଦ୍ ଜାଣିବାର ଏପରି ଶକ୍ତି ଅଛି ଯେ, ପୁଅ ଜନ୍ମ ହେଲାବେଳୁ ସେ ତାହାର ନାମ ଦେଇଥିଲେ 'ସଂଗ୍ରାମ କେଶରୀ ।'

୧୨, ଡିସେମ୍ବର ୧୯୩୪

॥ ଦୁଇ ॥

୧. ଶୀତକାଳରେ ଚିଲିକାରେ ତ୍ରୈହସ୍ପର୍ଶ । ଓଡ଼ିଶାର ଜଳ, ହିମାଳୟର ପକ୍ଷୀ, ବଙ୍ଗଦେଶର ଶିକାରୀ, ଏ ତିନିଙ୍କର ସେଠାରେ ମିଳନ ହୁଏ । ଶୀତ ଶେଷରେ ପକ୍ଷୀ ସ୍ୱଦେଶକୁ ବାହୁଡ଼ିଯାନ୍ତି, ପକ୍ଷୀମାନେ ସେ ସ୍ଥଳ ତ୍ୟାଗ କରନ୍ତି, ଏକା ଚିଲିକା ସେଠାରେ ରହେ । ସେଠାରେ ଆଉ ଗୋଟାଏ ମିଳନ ହୁଏ, 'ହିଂସା' ଓ 'ଅହିଂସା' ଏ ଦୁହିଙ୍କର । 'ଅହିଂସା' ଧର୍ମରେ ଦୀକ୍ଷିତ ଶିକାରୀମାନେ ପକ୍ଷୀପଲ ବସିଥିବାର ଦେଖିଲେ ତାଳିମାରି ଉଡ଼ାଇ ଦିଅନ୍ତି, ଉଡ଼ିଲା ପକ୍ଷୀମାନଙ୍କ ଡେଣାରେ ଛର୍‌ରା ମାଡ଼ ଲାଗେ । 'ହିଂସା' ଧର୍ମରେ ଦୀକ୍ଷିତ ଶିକାରୀମାନେ ସୋଲ୍ଲର ପକ୍ଷୀ ଜଳରେ ଭସାଲ ପକ୍ଷୀମାନଙ୍କୁ ଆକର୍ଷଣ କରି 'ଫଏର' କରନ୍ତି । ଯେଉଁ ପକ୍ଷୀମାନେ ଦେଶକୁ ବାହୁଡ଼ିଯାନ୍ତି ସେମାନେ ତାଙ୍କ ଦେଶରେ ଆମ ଦେଶକଥା କହନ୍ତି ।

୨. ବ୍ରହ୍ମପୁର ସହର ବଡ଼ ହରବରରେ ପଡ଼ିଛି । ତାର ସଙ୍କଟର ସୀମା ନାହିଁ । ତେଲେଙ୍ଗାଭାଇମାନେ କହନ୍ତି, ଏ ସହରଟା ଆମର - ଏହା ମାନ୍ଦ୍ରାଜରେ ରହୁ । ଓଡ଼ିଆଭାଇମାନେ କହନ୍ତି, ଏ ସହରଟା ଆମର, ଏହା ଓଡ଼ିଶାକୁ ଆସି ଓଡ଼ିଶାର ରାଜଧାନୀ ହେଉ । ଜଣେ ପଚାରିଲା, ''କାହିଁକି ଏହା ରାଜଧାନୀ ହେବ ?'' ଏକ ବାଳକ ଉତର ଦେଲା, ''ଏଠାରେ ରାଜାମାନଙ୍କର କୋଠି ଅଛି ।''

ବ୍ରହ୍ମପୁର କାହାର ? ଓଡ଼ିଆମାନଙ୍କର କି ତେଲେଙ୍ଗାମାନଙ୍କର ? ଦିନେ ଇନ୍ଦ୍ରଙ୍କ ସଭାରେ ବିଚାର ପଡ଼ିଲା । ଅଧିକାଂଶ ଦେବତା ମତ ଦେଲେ, ବ୍ରହ୍ମପୁର ଆଦ୍ୟରୁ ଓଡ଼ିଆମାନଙ୍କର, ପରେ ତେଲେଙ୍ଗାମାନେ ଆସି ବଂଶ ବିସ୍ତାର କଲେ । ବିଚାର ପଡ଼ିଥାଏ, ଏହି ସମୟରେ ଆନ୍ଧ୍ର ପ୍ରତିନିଧିମାନେ ଆସି ବକ୍ତୃତା କରିବାରୁ ଗଣ୍ଡଗୋଳ ଘଟି ସଭା ଭାଙ୍ଗିଗଲା । ଜଣାଯାଏ, ଆଉଦିନେ ଏ କଥା ବିଚାର ହେବ ।

୩. ଜାପାନର ଠୁରା ମଣିଷମାନେ ଏବେ ମହାବଳକୁ ବଳି ଗଲେଣି । କୃଷିବିଦ୍ୟା ସେମାନେ ଏପରି ଶିଖିଛନ୍ତି ଯେ, ନିତାନ୍ତ ନିକୃଷ୍ଟ ଜମିରେ ସେମାନେ ଉତ୍କୃଷ୍ଟ ଫସଲ ଜନ୍ମାନ୍ତି । ଶିଳ୍ପକାର୍ଯ୍ୟରେ ସେମାନେ ଏପରି ନିପୁଣ ଯେ, ଶସ୍ତା ଦରର ଜିନିଷ ପ୍ରସ୍ତୁତ କରି ସେମାନେ ଦେଶ ବିଦେଶର ବଜାରକୁ ମାଡ଼ି ବସିଛନ୍ତି । ଯୁଦ୍ଧବିଦ୍ୟାରେ ସେମାନେ

ସାମାନ୍ୟ ନୁହନ୍ତି । ସ୍ଥଳ ଯୁଦ୍ଧ, ଜଳ ଯୁଦ୍ଧ ଓ ଆକାଶ ଯୁଦ୍ଧ, କେଉଁ ଯୁଦ୍ଧ ସେମାନେ ନ ଜାଣନ୍ତି ? ଏହା ସବୁ ଶିଖୁଛନ୍ତି ବୋଲି ସେମାନେ ଲେଖାପଢ଼ାରେ ଅପଟୁ ନୁହନ୍ତି । ଗତ ବର୍ଷ ସେ ଦେଶରେ ୧୬ ହଜାର ନୂତନ ପୁସ୍ତକ ମୁଦ୍ରିତ ହୋଇଥିଲା । ସେ ଦେଶରେ ୧୧ ହଜାର ସମ୍ବାଦପତ୍ର ଚଳେ । ତହିଁ ମଧ୍ୟରୁ ୧୯୭ ଦୈନିକ ସମ୍ବାଦପତ୍ର । ଚାରିଟି ଦୈନିକ ସମ୍ବାଦପତ୍ର ପ୍ରତ୍ୟେକ ୧ ଲକ୍ଷରୁ ଅଧିକ ଛାପା ହୁଏ । ଆମ ଦେଶରେ ବହୁସଂଖ୍ୟକ ଯୁବକ କଲେଜ ବା ସ୍କୁଲ ଛାଡ଼ିବା ପରେ ଲେଖାପଢ଼ା ସଙ୍ଗେ ସମ୍ପର୍କ ତୁଟାଇ ଦିଅନ୍ତି କାହିଁକି ? କିଏ କହୁଥିଲାଟି, ଲେଖାପଢ଼ା ଶିଖିଲେ ଲୋକେ ବାୟା ହୁଅନ୍ତି ?

୪. ସ୍କୁଲର ପିଲାମାନେ ଏବେ ଶିଖ, ଭୂମିକମ୍ପ କାହିଁକି ହୁଏ ? କେହି ପ୍ରଶ୍ନ କଲେ ଉତ୍ତର ଦେବ ‘‘ହରିଜନଙ୍କୁ ଅବହେଳା କଲେ ଭୂମିକମ୍ପ ହୁଏ ।’’ ଯଦି କେହି ପ୍ରଶ୍ନ କଲେ ‘‘ଆୟର୍ଲାଣ୍ଡରେ କାହିଁକି ଭୂମିକମ୍ପ ହେଲା ?’’ ଉତ୍ତର ଦେବ ‘‘ହରିଜନଙ୍କୁ ପଚାର ।’’

୫. ଗତ ସପ୍ତାହରେ ସତ୍ୟ ସମାଚାରରେ କିଏ ଜଣେ କଟକ ମିଉନିସିପାଲିଟିର ପ୍ରଶଂସା ଢାଳି ଦେଇଗଲେ । ମ୍ୟୁନିସିପାଲିଟିର ଗୋଟାଏ ଗୁରୁତର ଅବହେଳା କଥା ଆଦୌ ଭାବିଲେ ନାହିଁ । ମ୍ୟୁନିସିପାଲିଟିର ସୀମା ମଧ୍ୟରେ ବାନରମାନେ ଘୋର ଅତ୍ୟାଚାର କରୁଛନ୍ତି, ଅନଧିକାର ଗୃହ ପ୍ରବେଶ, ଚୋରି, ଡକାଏତ, ସବୁ ପ୍ରକାର ଅପରାଧ କରୁଛନ୍ତି, ଅଥଚ ଦୟାଳୁ ମାରବାଡ଼ିମାନେ ସେମାନଙ୍କୁ ରସଦ ଯୋଗାଇ ଅପରାଧର ସହାୟତା କରୁଅଛନ୍ତି । କେଉଁ ଯୁଗରେ ବାନରମାନେ ରାମଚନ୍ଦ୍ରଙ୍କ ସୈନ୍ୟ ଶ୍ରେଣୀଭୁକ୍ତ ହୋଇଥିଲେ, ଏହି ହେତୁରୁ ସେମାନେ ଏ ଯୁଗରେ ଆମ ସହରରେ ଏ ଦୌରାତ୍ମ୍ୟ କରିବେ -ଏହା ନ୍ୟାୟସଙ୍ଗତ ନୁହେଁ । ମ୍ୟୁନିସିପାଲିଟିର କର୍ତ୍ତା ଶୀଘ୍ର ତାଙ୍କର କର୍ତ୍ତବ୍ୟ ନିରୂପଣ କରନ୍ତୁ । ନଚେତ୍ କ୍ଷତିପୂରଣ ଭରିବାକୁ ଦାୟୀ ହେବେ, ଓକିଲମାନେ ତୋପ ଦେଖି କହିଲେଣି ।

୧୯, ଡିସେମ୍ବର ୧୯୩୪

## ।। ତିନି ।।

୧. ବର୍ଷକୁବର୍ଷ ବଡ଼ଦିନ ଆସେ, ଯାଏ । ଏ ବର୍ଷ ବି ଆସିଲା ଗଲା; କିନ୍ତୁ କଟକରେ ଆଉ ଆଗକାଳର ବଡ଼ଦିନ ନାହିଁ । କିଲାପଡ଼ିଆରେ ବା ଚାଉଳିଆଗଞ୍ଜ ଚକର ପଡ଼ିଆରେ ଘୋଡ଼ଦୌଡ଼ ହେଉଥିଲା । କିଲାପଡ଼ିଆରେ ଓ ମହାନଦୀ ପାଣିରେ କେତେ ପ୍ରକାର ଖେଳ-କୌତୁକ ହେଉଥିଲା । ଆମ ସହରର ନିକମା ଲୋକମାନେ ରୁଣ୍ଡ ହୋଇ ଦେଖୁଥିଲେ, ଖୁସି ହେଉଥିଲେ । ସେ କାଳରେ ଡାଲା ଦେବା ବା ନେବା ମନା ନ ଥିଲା । ଭଲ ଭଲ ମାଲ, ବଡ଼ ବଡ଼ ଫୁଲତୋଡ଼ା, ଭଲ ଭଲ ଖାଇବା ପିଇବା ଜିନିଷ ଭଲରୂପେ ମଣିଷଙ୍କ ମୁଣ୍ଡରେ ସବାର ହୋଇ ଯେତେବେଳେ ସଡ଼କରେ ବିଜେ

କରୁଥିଲେ, ଲୋକେ ଦେଖି ଦେବା ନେବା ଲୋକର ବଡ଼ପଣ ଠଉରାଇ ନେଇଥିଲେ । ସେ ଡାଲା ଦେବା ଲୋକ, ନେଲା ଲୋକ ସମସ୍ତଙ୍କୁ ଖୁସି କରି ଦେଉଥିଲା । ଏବେ ହେଲା, ଶୁଖିଲା ବଡ଼ଦିନ । କପୂର ନାହିଁ, କନା ଅଛି । କେବଳ ନାଆଁଟା ରହିଛି, ବଡ଼ ଖିସ୍‌ମିସ୍, ଛୋଟ ଖିସ୍‌ମିସ୍ ।

୨. ଲୋକେ କହନ୍ତି, କଟକ ବୀରମାଟି । ପିଲାଦିନେ ଶୁଣିଥିଲୁଁ, ପାଣ୍ଡବମାନେ ବନବାସ କଲାବେଳେ କୁଆଡ଼େ କଟକ ବାଟେ ଯାଉଥିଲେ । କଟକ ମାଟି ଛୁଇଁବାମାତ୍ରେ କୁନ୍ତୀଙ୍କର ମତିଭ୍ରମ ହେଲା, ମୁକାମେଶ୍ୱରରେ ପହଞ୍ଚିବା ବାଦ୍ ତାଙ୍କର ସେ ଭ୍ରମ ଭାଙ୍ଗିଗଲା । ସେହି କଟକ ତ ଏବେ ଗୋଟାଏ ପ୍ରଦେଶର ରାଜଧାନୀ ହେଉଛି । ଆମ୍ଭମାନଙ୍କର ମତିଭ୍ରମ ହେଲେ ରକ୍ଷା । ବୀରମାଟିର ଗୁଣ କଣ କହିବା ! ଆମେମାନେ ସାଢ଼େ ସାତଜଣ ମଣିଷ, ସଙ୍ଖାଳି ଆମର ଏତିକି, କିନ୍ତୁ ଆମେ କେହି କାହାରି ଶିରୀ ଦେଖିପାରୁ ନ ଥାଇଁ । କେଞ୍ଚା କେଞ୍ଚି, ହଣାହଣି ଲାଗି ରହିଛି । ଘର କଳିଆ ଦାଣ୍ଡରେ ପଡୁଛି । ଥଳ ଅଥଳ ବିଚାର ନାହିଁ । ଆମର ରୀତିନୀତି ଯେବେ ନ ବଦଳେ, ତେବେ କଟକ ରାଜଧାନୀ ହେଲା ବୋଲି କଅଣ ଆମର ଦୁଃଖ ଯିବ ?

୩. ପାଟଣାରେ ଜାନୁଆରୀ ମାସ ୧୫ ତାରିଖରୁ କାଉନ୍‌ସିଲ ବୈଠକ ଆରମ୍ଭ ହେବ, ମାର୍ଚ୍ଚ ମାସ ଶେଷ ସପ୍ତାହରେ ଶେଷ ହେବ । ଭଲ କଥାଟିଏ ମନେ ପଡ଼ିଲା । ଦିନେ ବେତାଳଙ୍କ ସଙ୍ଗେ ଦୈବାତ୍ ଭେଟ ହେବାରୁ ସେ ମତେ ପଚାରିଲେ, ଆଚ୍ଛା କହ ତ, ତୁମ ଓଡ଼ିଶା କଥା ଘେନି କାଉନ୍ସିଲରେ ଏତେ ରଙ୍ଗ କାହିଁକି ହୁଏ ? କଟକ କଥା ଅନ୍ୟ ଜିଲ୍ଲାର ମେମ୍ବର ପ୍ରଶ୍ନ କରନ୍ତି । ଅନ୍ୟ ଜିଲ୍ଲାର କଥା କଟକ ମେମ୍ବର ପ୍ରଶ୍ନ କରନ୍ତି, ଏ ଅଦଳ ବଦଳ କାହିଁକି ହୁଏ ? ମୁଁ ଦେଖିଲି ଏ ଗୋଟାଏ ଅଡୁଆ କଥା । ଖୋଲାଖୋଲି ଜବାବ ନ ଦେଇ ତାଙ୍କୁ କହିଲି, "ତୁମେ ପରା ବେତାଳ, ତୁମେ ତାଳ ଠିକ୍ କରି ନ ପାରିବ ତ କରିବ କିଏ ?" ବେତାଳ ମୁରକି ହସାଟାଏ ହସି ଚମ୍ପଟ୍ ଦେଲେ ।

୪. ଓଃ ! ଆମ କଟକର ବିଖ୍ୟାତ ନାଟ୍ୟଶାଳା ଶ୍ରୀରାମଚନ୍ଦ୍ରଭବନର ବି ଦୁର୍ଭାଗ୍ୟ ! ତାର ଘଟ ବଦଳିଗଲା । ସେଠାରେ ଯେଉଁ ନାଟତାମସା ହେଉଥିଲା, ତାହା ଦେଖି ମଣିଷ ତ ମଣିଷ, ଦେବତାଙ୍କ ମନ ଟଳି ଯାଉଥିଲା, ବଦ୍‌ରସିକ ଲୋକ କେଇଜଣ ସବୁ ସାରିଦେଲେ ! ଦିନେ ଜଣେ ପଚାରିଲା, କିହୋ ଭାଇ ! ସାହିତ୍ୟ ସମାଜଟା ନାଟ୍ୟଶାଳା କଲ କାହିଁକି ? ଉତ୍ତର - "କଟକରେ ରାଜଧାନୀ ହେଉଛି, ଏଠାରେ ଲାଟସାହେବ ବିରାଜମାନ ହେବେ । ତାଙ୍କ କୋଠିରେ ବଲ୍ ଡାନ୍‌ସ ଅର୍ଥାତ୍ ଗୋଲ୍ ଗୋଲ୍ ନାଚ ହେବ, ବଡ଼ଲୋକମାନଙ୍କୁ ନିମନ୍ତ୍ରଣ ହେବ । ସେମାନେ ଆଗରୁ ନାଚି ନ ଶିଖିଲେ ସେଠାରେ ନାଚି ପାରିବେ ନାହିଁ । ଏହି ମହତ ଉଦ୍ଦେଶ୍ୟରେ ଆମେ ନାଟ୍ୟ ଚର୍ଚ୍ଚାର ସୁବିଧା କରି ଦେଇଛୁଁ । ମୂର୍ଖ ଲୋକେ ଆମର ମହତ୍ ଉଦ୍ଦେଶ୍ୟ ବୁଝିବେ ନାହିଁ ?"

୫. ମଣିଷ ମରିଗଲା, ଶୁଣିଲେ ମନରେ ଦୁଃଖ ହୁଏ । କିନ୍ତୁ ସାହେବ ମଲେ, ଶୁଣିଲେ କଅଣ ଦୁଃଖ ହୁଏ ? ଗୋଟାଏ ନଜିର ଦେଉଛି ଶୁଣ । ବୋମ୍ବାଇରେ ଜଣେ ବଡ଼ ସାହେବ ସମୁଦ୍ରରେ ପହଁରୁ ପହଁରୁ ତାଙ୍କର ଦମ୍ ଅଟକି ଯିବାରୁ ସେ ବୁଡ଼ିମଲେ । ଆମ ଦେଶର ଏକ ସମ୍ବାଦପତ୍ର ସେ ସମ୍ବାଦର ହେଡିଙ୍ଗ୍ ଦେଲେ ''ପହଁରୁ ପହଁରୁ ବୁଡ଼ିମଲା, ସାହେବଙ୍କ କରାମତି ଜଣା ପଡ଼ିଲା ।'' ଅନ୍ୟ ଦେଶର ଲୋକ ଏହା ପଢ଼ି, ଏହାର ଚୁମ୍ବକ ମର୍ମ ବୁଝିଲେ, ଆମକୁ ମଣିଷ ବୋଲି କହିବେଟି ?

୨, ଜାନୁଆରୀ ୧୯୩୫

## ।। ଚାରି ।।

୧. ଟଙ୍କା କଉଡ଼ିର ହିସାବ ଦେବା ଝିଂଝୋଟ । ହିସାବ ଉଠି ନ ଗଲେ ଜଗତର ମଙ୍ଗଳ ହେବ ନାହିଁ । ମଣିଷ ପାଞ୍ଚଟା ଟଙ୍କା ଚାନ୍ଦା ଉଠେଇଲେ ପାଞ୍ଚ ଜଣ ଲୋକ କହିବେ, ହିସାବ ଦିଅ । ହିସାବ ଦେବା କଅଣ ଦରକାର ? ଦୀପ ତେଜିଲେ ହାତ ଚିକ୍କଣ ହୁଏ, ଏହା ତ ଜଣାଶୁଣା କଥା । ହିସାବ ନିମନ୍ତେ ତୁମ୍ଭି ନ କରିବା ସମ୍ପୂର୍ଣ୍ଣ ବେଆଇନ୍ ତାଗଦା କର୍ମ । କଲିକତାରେ କିଛି ଦିନ ପୂର୍ବେ ଯେଉଁ ଓଡ଼ିଆ ସମ୍ମିଳନୀ ହୋଇଥିଲା, ସେ ସମ୍ମିଳନୀର ସମ୍ପାଦକ ଅଭିଯୋଗ କରୁଅଛନ୍ତି ଯେ, କେତେକ ବ୍ୟକ୍ତି ଚାନ୍ଦା ସଂଗ୍ରହ କରିଥିଲେ, କିନ୍ତୁ ହିସାବ ଦେଉ ନାହାନ୍ତି, କି ମୁଣ୍ଡା ଚେକ୍ ଦାଖଲ କରୁ ନାହାନ୍ତି । ଏହି ସମ୍ମିଳନୀ କଂଗ୍ରେସ ଧରଣର ହୋଇଥିଲା, ମୁଖିଆ କଂଗ୍ରେସ କର୍ମୀମାନେ ବେଶଭୂଷା ପିନ୍ଧି ସେଠାରେ ବିରାଜମାନ ହୋଇଥିଲେ । କଂଗ୍ରେସ ଧରଣରେ ବକ୍ତୃତା ହୋଇଥିଲା, ନିର୍ଦ୍ଧାରଣ ହୋଇଥିଲା । ଚାନ୍ଦାଟା କାହିଁକି କଂଗ୍ରେସ ଚାନ୍ଦା ଧରଣରେ ନ ଉଠନ୍ତା ? ତହିଁର ହିସାବପତ୍ର କାହିଁକି କଂଗ୍ରେସ ହିସାବ ଧରଣରେ ନ ରହନ୍ତା ? ଅନୁକରଣ କରିବ ତ ମହତ୍ ବ୍ୟକ୍ତିର ଅନୁକରଣ କରିବ ।

୨. ଆମ ଗ୍ରାମର ଜଣେ ଅବଧାନ କୋଷ୍ଠୀ ଦେଖି ବର୍ତ୍ତମାନ ଅତୀତ ଓ ଭବିଷ୍ୟତ୍ ସବୁକାଳର କଥା କହି ଦିଅନ୍ତି । ଆମ ନୂତନ ଓଡ଼ିଶା ପ୍ରଦେଶର କୋଷ୍ଠୀ ଦେଖି ସେ କହୁଛନ୍ତି, ଏହାର ଅନେକ ଶତ୍ରୁ ହେବେ । ଘରେ ଶତ୍ରୁ, ବାହାରେ ଶତ୍ରୁ, ଚାରିଆଡ଼େ ଶତ୍ରୁ । ପ୍ରଧାନ ଶତ୍ରୁ ହେବେ, ଆମ ଆନ୍ଧ୍ରଭାଇମାନେ । ସେମାନେ ତ କହିସାରିଲେଣି, ଓଡ଼ିଶା ପ୍ରଦେଶ ନ ହେଉ, ଏହାର ତଣ୍ଟି ଚିପି ମାରିଦିଅ । ସୀମା ବିବାଦ ଯେ କେବେ ଛିଣ୍ଡିବ, ଏହା ସମ୍ଭବ ନୁହେଁ । ଶତ୍ରୁ ଘେନି ଘର କରିବା ବଡ଼ କଠିନ । ଏଥିର ପ୍ରତିକାର କଅଣ, ଏ କଥା ପଚାରିବାରୁ ଅବଧାନ କହିଛନ୍ତି, ଭଲରୂପେ ଗଣନା କରି ଗ୍ରହଶାନ୍ତିର ବ୍ୟବସ୍ଥା କରିବେ ।

୩. ପଣ୍ଡିତମାନେ ସ୍ଥିର କରିଛନ୍ତି ଶବ୍ଦ ଏକ ମିନିଟରେ ଊଣା ଅଧିକ ୬୫ ହଜାର ଫୁଟ ଯାଏ । କିନ୍ତୁ ଆମ ଓଡ଼ିଶାର କଣ୍ଠଧ୍ୱନି (Voice) କେତେଦୂର ଯାଏ, ତାହା କାହା କାନକୁ ଶୁଭେ ? ଦିନେ କେତେଜଣ ବକ୍ତା ହାତଯୋଡ଼ି ନଈକୂଳରେ ଏହା ଚର୍ଚ୍ଚା କରୁଥିଲେ । ଆସେମ୍ବ୍ଲିରେ ଓଡ଼ିଶାର ଭାଗ ବାସ୍ତରି ଅଂଶରୁ ଏକ ଅଂଶ । ବିହାର କାଉନ୍‌ସିଲରେ ଓଡ଼ିଶାର ଭାଗ ତେର ଅଂଶରୁ ଏକ ଅଂଶ । ଆମର ଦଉଡ଼ କେଉଁଯାକେ ଏଥିରୁ ଅନୁମାନ କରିପାରିବ ।

୪. ଆମ ଗାଁ କମଳବାବୁ ଜଣେ ମଝି ପାହିଆ ହାକିମ, ବଡ଼ ସରସ ଲୋକ । ତାଙ୍କର ଦେହରେ ଲୋମ ଯେତେ, ତାଙ୍କର ଭଲ ଗୁଣ ତେତେ । ଜାଣିବା ଲୋକେ କହନ୍ତି, ସେ ଖଣ୍ଡିଏ ହୀରା । କିନ୍ତୁ ଏତେ ହେଲେ କଅଣ ହେବ ତାଙ୍କ ଗ୍ରାମଦେବତୀ ତାଙ୍କୁ ସହି ପାରନ୍ତି ନାହିଁ । ତାଙ୍କ ଗାଁ ପୋଖରୀର ଧୋବାତୁଠରେ ଦୁଇ ଖଣ୍ଡ ଅକର୍ମଶିଳା ପଥର ପଡ଼ିଥିଲା । ଥରେ ଗାଁରେ ହଇଜା ଲାଗିଲା । ଗ୍ରାମବାସୀମାନେ ବଡ଼ ଆତଙ୍କରେ ଠାକୁରାଣୀ ମାର୍ଜ୍ଜନା କରିବାକୁ ବାହାରିଲେ । ସେ ଗାଆଁ ଭଣ୍ଡାରୁଣୀ ଭାରି ଚତୁରୀ । ସେ ସେହି ପଥର ଦୁଇଖଣ୍ଡ ଆଣି ପୁଳାଏ ସିନ୍ଦୂର ବୋଳି ଦେଲା, ତାଙ୍କୁ ବରଗଛ ମୂଳେ ଥାପନା କରିଦେଲା । ମଝି ସାହିଆ ହାକିମ ଯେମିତି ତାଙ୍କ ମିସଲ ଉପରକୁ ଗଲେ ସେ ଠାକୁରାଣୀ କହିଲେ, ''ଆରେ ଏ ତ ଆମ ଗାଁ ମଣିଷ । ଆଙ୍କୁ ତ ସମସ୍ତେ ଧନ୍ୟ ଧନ୍ୟ କହୁଛନ୍ତି । ଆମ କରାମତି କି କିଛି ରହିବ ନାହିଁ । ୟାଙ୍କୁ ପୁଳାଏ ଆଞ୍ଚୁଡ଼ି ଦବା ।'' ଠାକୁରାଣୀଙ୍କର ତ ହାତ ନାହିଁ କି ନଖ ନାହିଁ, ଆଞ୍ଚୁଡ଼ିବେ କାହିଁରେ ? ନାଚାର ହୋଇ ଠାକୁରାଣୀ ବହୁତ ରବେଇ ଖବେଇ ହେଲେ । ସେ ଗଛମୂଳେ ପଡ଼ିଥାଆନ୍ତି । ଏଥି ମଧ୍ୟରେ ଧୋବଣୀ କହିଲାଣି ''ମୋ ପଥର ଦୁଇଖଣ୍ଡ କିଏ ଆଣି ଏଠି ପକେଇଲା ? ମୁଁ ପୁଣି ତୁଠକୁ ନେଇଯିବି ।'' ତା ପରେ ଯାହା ହେବ, ପରେ ଜଣା ପଡ଼ିବ ।

୫. ଓଡ଼ିଶା ପ୍ରଦେଶ ନ ହେଉଣୁ ଆମ ଭିତରେ ଭାଗବଣ୍ଟା ଲାଗି ଗଲାଣି । ଆମ ଭିତରୁ ଜଣେ ଠିକ୍ କରି ସାରିଲେଣି - ସେ ଜଜ ସାହେବ ହେବେ । ଯାହା ଉପରେ ରାଗ ଥିବ ତାଙ୍କୁ ଶୂଳିରେ ଚଢ଼ାଇବେ । ଆଉ ଜଣେ ବାହାରିଲେଣି ମନ୍ତ୍ରୀ ହେବେ । ଏଥି ମଧ୍ୟରେ ଯୋଗାଡ଼ ଲାଗିଲାଣି ଆପଣା ଦଳର ଲୋକେ ଯଦି କାଉନ୍‌ସିଲ୍‌ଟାକୁ ମାଡ଼ି ବସି ପାରନ୍ତି, ତାହା ହେଲେ ଲାଟ୍ ସାହେବ ଡାକି କରି ତାଙ୍କ ମୁଣ୍ଡରେ ଶାଢ଼ି ବାନ୍ଧିଦେବେ । ଓଡ଼ିଆମାନେ ଏ କଥା ଶୁଣି ଥରହର କମ୍ପିଲେଣି । ଆମ ନନା ଯେଉଁ ଦିନ ମନ୍ତ୍ରୀ ହେବେ, ସେଦିନ ଓଡ଼ିଶାରେ ''ଭୂମିକମ୍ପ ହେବ ଧରଣୀ ଫାଟିବ ଉଠିବେ ସହସ୍ର ଭୁଜା ।''

୯, ଜାନୁଆରୀ ୧୯୩୫

॥ ପାଞ୍ଚ ॥

୧. ଆମ ଆନ୍ଧ୍ରଭାଇମାନେ କେଉଁ ଅନ୍ୟାୟ କଥା କହନ୍ତି ନାହିଁ । ସେମାନେ ବରାବର କହୁଥିଲେ, ଓଡ଼ିଶା ପ୍ରଦେଶ ହେଉ, ଆମର ଆପତ୍ତି ନାହିଁ । ଆମେ ଚାହୁଁ, ଆନ୍ଧ୍ରମାନଙ୍କ ଦଖଲରେ ଥିବା ଭୂମି ମଧ୍ୟରୁ ବିରାଏ ନ ଯାଉ । ଯେଉଁଠାରେ ଆନ୍ଧ୍ରମାନଙ୍କ ସଂଖ୍ୟା ଶତକରା କୋଡ଼ିଏ ଜଣ, ତାକୁ ଆନ୍ଧ୍ରମାନଙ୍କ ସମ୍ପତ୍ତି ବୋଲି ଗଣନା କରାଯାଉ । କିନ୍ତୁ ସରକାର ତ ଅବିଚାର କଲେ, ଜୟପୁର ଗୋଟାକଯାକ, ପାରଳାଖେମଣ୍ଡିରୁ ଚେନାଏ ଓ ବ୍ରହ୍ମପୁର ସହରଟା ଓଡ଼ିଆମାନଙ୍କୁ ଓ ଖଏରାତ ପୁରସ୍ତ ହେଲେ । ଏହି ହେତୁରୁ ଆନ୍ଧ୍ରମାନଙ୍କ ମତ ବଦଳିଗଲା । ସେମାନେ ବର୍ତ୍ତମାନ କହନ୍ତି, ଓଡ଼ିଶା ପ୍ରଦେଶ ନ ହେଉ, ଏତେଗୁଡ଼ିଏ ପ୍ରଦେଶ କାହିଁକି ହେବ, ପେଟକୁ ଦାନା ମିଳିବ ନାହିଁ, ପିନ୍ଧିବାକୁ କନା ମିଳିବ ନାହିଁ, ଏପରି ପ୍ରଦେଶ ଗୋଟାଏ କାହିଁକି ହେବ ? ଆନ୍ଧ୍ରଭାଇମାନଙ୍କର ଏ କଥାର ଅର୍ଥ କଅଣ ବୁଝି ପାରୁ ନାହୁଁ ? ଭାଗବତ ପରା କହିଛନ୍ତି -

ମୂଳୁ ମାଇଲେ ଯିବ ସରି ଦେବଙ୍କ ସଙ୍ଗେ କିପାଁ କଳି ।

ଓଡ଼ିଶା ପ୍ରଦେଶ ଯଦି ନ ହୁଏ, ତେବେ ଜୟପୁର ରହିଯିବ, ବ୍ରହ୍ମପୁର ରହିଯିବ, ପାରଳା ରହିଯିବ । ଏ କଥା ଅସଙ୍ଗତ, ଏହା କିପରି କହିବ ? ନିଜ ସ୍ୱାର୍ଥ ସମସ୍ତେ ରକ୍ଷା କରିବାକୁ ଚାହାନ୍ତି, ଆନ୍ଧ୍ରମାନେ କି ଅପରାଧ କଲେ ? ସେମାନେ କହିଲେ, ପାରଳାର ରାଜା ଓଡ଼ିଆ ନୁହନ୍ତି, ଲୋକେ ହସିଲେ, ହସନ୍ତୁ । ସେମାନେ କହିଲେ, ପାରଳାଖେମଣ୍ଡି ଜିଲ୍ଲାର ଶବରମାନେ ତେଲେଙ୍ଗା, ଲୋକେ ହସିଲେ, ହସନ୍ତୁ । ସେମାନେ କହିଲେ, ଜୟପୁର ଓଡ଼ିଆ ଦେଶ ନୁହେଁ, ଲୋକେ ହସିଲେ, ହସନ୍ତୁ । ସେମାନେ କହିଲେ, ଜୟପୁର ଓଡ଼ିଶାକୁ ଆସିଲେ ଗୋଦାବରୀ ନଦୀ ଶୁଖିଯିବ, ଲୋକେ ହସିଲେ, ହସନ୍ତୁ । ସେମାନେ ଚାନ୍ଦା ସଂଗ୍ରହ କରୁଅଛନ୍ତି, ବିଲାତକୁ ପ୍ରତିନିଧି ପଠାଇବେ, ସରକାରଙ୍କୁ ଅକଲ ଦେବେ, ଓଡ଼ିଆଙ୍କ କଥାରେ ଭୁଲି ଅନ୍ୟାୟ କାର୍ଯ୍ୟ କର ନାହିଁ, ଓଡ଼ିଆ ତୁମର କଅଣ କରିବେ, ଆମେ ତୁମର ସବୁ, ଆମ କଥାମାନ, ଓଡ଼ିଶାକୁ ଅଲଗା ପ୍ରଦେଶ କରିବା କଳ୍ପନା ମନରୁ ଦୂର କର । ତୁମେ ରହିବ, ଆମେ ରହିବା, ଓଡ଼ିଆଙ୍କ ପାଇଁ ବଙ୍ଗୋପସାଗର ଅଛି ।

୨. ପାଟଣା ହାଇକୋର୍ଟର ଚିଫ୍ ଜଷ୍ଟିସ ଭାରି ବିଦ୍ୱାନ୍ ଲୋକ । ଓଡ଼ିଶା ପ୍ରତି ତାଙ୍କର ସ୍ନେହ ଅଛି । ସେଦିନ ସେ ରେଭେନ୍ସା କଲେଜରେ ବକ୍ତୃତା ଦେଇଥିଲେ । ଛାତ୍ରମାନଙ୍କୁ କେତେଗୁଡ଼ିଏ ସାର ଉପଦେଶ ଦେଲେ । ଗୋଟାଏ ବଡ଼ ଉପଦେଶ, ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଉଛି, ଓଡ଼ିଆମାନଙ୍କ ପକ୍ଷରେ ଏହା ମହା ସୁଯୋଗ । ସେମାନେ ଯଦି ଏ ସୁଯୋଗ ପାଇ ମଣିଷପଣିଆ କରନ୍ତି, ତେବେ ସେ ଜାତିର ବହୁତ ଉନ୍ନତି ହେବ । ସେ ଯାହା କହିଲେ, ଆମର ହିତ ସକାଶେ କହିଲେ, କିନ୍ତୁ ମଣିଷପଣିଆ କହିବା କଥା

ସହଜ ନୁହେଁ । ଜଣେ ପ୍ରଫେସର ବହୁକାଳ ଏହି କଲେଜରେ କର୍ମ କରି ସୁଖ୍ୟାତି ଅର୍ଜନ କରିଥିଲେ । ଓଡ଼ିଆ ଛାତ୍ରମାନଙ୍କୁ ସେ ଭାରି ଭଲ ପାଉଥିଲେ । ଯିବା ବେଳକୁ କହିଲେ "ହଁ, ମୁଁ ପାଠ ପଢ଼ାଇଲି, ପାସ୍ କରାଇଲି, କିନ୍ତୁ ମଣିଷ ଗଢ଼ି ପାରିଲି ନାହିଁ ।"

୩. କି ପିଲା, କି ବୁଢ଼ା, ଆମ ଦେଶରେ ସମସ୍ତେ କହନ୍ତି, ମଧୁବାବୁ ଥିଲେ ଆମ କୁଳର ଚନ୍ଦ୍ରମା । ତାଙ୍କ କାଳ ପୂରିବାରୁ ସେ ଚାଲିଗଲେ, ଆମେ ତାଙ୍କ ପାଇଁ ଶୋକ ପ୍ରକାଶ କଲୁଁ । କହିଲୁଁ, ତାଙ୍କୁ ମନେ ରଖିବା ନିମନ୍ତେ ଏହା କରିବା, ତାହା କରିବା । ବର୍ଷେ ତ ପୂରିଗଲାଣି, ସେ କ'ଣ ଦେଖୁ ନ ଥିବେ, ତାଙ୍କ ଜାତି ତାଙ୍କ ପାଇଁ କ'ଣ କଲାଣି ? ତାଙ୍କର ଗୋଟାଏ ସ୍ମରଣ ଚିହ୍ନ ଦେଖିଲି ତାଙ୍କ କୋଠା ଦେହୁଡ଼ିରେ ଯେଉଁଠାରେ ଖଣ୍ଡେ ମାର୍ବଲ ପଥର ଦେହରେ ଲେଖା ହୋଇଛି 'ମଧୁସ୍ମୃତି' । ତହିଁର ଅର୍ଥ, ତୁମକୁ ତ ଆଉ କେହି ସ୍ମରଣ କଲେ ନାହିଁ, ତୁମ କୋଠି ତୁମକୁ ସ୍ମରଣ କରୁଛି । ଜଣେ କିଏ ଛିଦ୍ରାନ୍ୱେଷୀ ତହିଁରେ ଛିଦ୍ର ବାହାର କଲେଣି । ସେ ଏ ସ୍ଥାନର ଏକ ସମ୍ବାଦପତ୍ରରେ ଯାହା ଲେଖିଛନ୍ତି, ତାହା ପଢ଼ି ଜଣେ ଜଣକୁ ପଚାରିଲା, ହଇ ହେ ନନା, କହିବଟି ମଧୁବାବୁଙ୍କ ଦେହରେ ଯେଉଁ ଜାତିର ରକ୍ତ ଥିଲା, ସେ ଜାତିର କଣ ଭାଷା ନାହିଁ, ସେ ଭାଷାରେ କ'ଣ ସେ ଅକ୍ଷର କେଇଟା ନାହିଁ ? ରଜା ଉତ୍ତର ଦେଲେ "ଆରେ ବାୟା, ସେ ଜାତିର ଅଛି ସବୁ, ନାହିଁ କେବଳ ରକ୍ତ ।"

୪. ଜିଲ୍ଲା ବୋର୍ଡ଼ମାନଙ୍କର ମେମ୍ବରମାନେ - ସମସ୍ତେ ନୁହନ୍ତି, ମଫସଲିଆ ମେମ୍ବରମାନେ - ଦି' ପଇସା ରାସ୍ତା ଖର୍ଚ୍ଚ ପାଉଥିଲେ, ସରକାର ତାହା ବିଗାଡ଼ି ଦେଲେ । ଯେଉଁଠାରେ ମଟର ଅଛି, ସେଠା ମେମ୍ବରମାନେ ଏଣିକି ମାଇଲ ପ୍ରତି ଚାରିଅଣା ଆଉ ପାଇବେ ନାହିଁ । ପାଇବେ କେବଳ ମଟର ଭଡ଼ାର ଦୁଇଗୁଣ । ଦିଅଣାର ସୁଆଦ ଚାଲିଗଲା ।

୫. ମଫସଲର ଚଉକିଦାରି ଇଉନିଅନମାନଙ୍କ ପ୍ରେସିଡେଣ୍ଟମାନେ ଅନାହାରୀ ଅର୍ଥାତ୍ ସେମାନେ ବିନା ଦରମାରେ କାମ କରନ୍ତି । ବର୍ତ୍ତମାନ କଟକ ଜିଲ୍ଲାରେ ସାନି ବନ୍ଦୋବସ୍ତ ଲାଗିଛି । କିଏ ଯାଉଛି, କିଏ ରହୁଛି । ଏହି କାମ ନିମନ୍ତେ ଉମେଦବାରମାନେ ବହୁତ ଦଉଡ଼ଧାପଡ଼ କରୁଅଛନ୍ତି । କୌଣସି କୌଣସି ସ୍ଥାନରେ ଗୋଟିଏ ଗୋଟିଏ ପ୍ରେସିଡେଣ୍ଟ କାମ ସକାଶେ ଛଅଜଣ, ସାତଜଣ, ଆଠଜଣ ଦରଖାସ୍ତ ଦେଉଅଛନ୍ତି । ବରାହୀ ଠାକୁରାଣୀଙ୍କୁ ବୋଦା ମନାସ କରୁଛନ୍ତି । ଏଥିର ମର୍ମ ବୁଝିବା ଲୋକେ ବୁଝନ୍ତୁ ।

୧୬, ଜାନୁଆରୀ ୧୯୩୫

॥ ଛଅ ॥

### ୧. ନଈବାଲିରେ ଶୟନ

ନଈବାଲିରେ ଶୁଏ ମନୁଷ୍ୟ ସେତେବେଳେ, ଯେତେବେଳେ ତାହାର ସଂସାର ଲୀଳା ଶେଷ ହୁଏ । ଯେତେବେଳେ ତାକୁ ଆଉ କେହି ଆଶ୍ରୟ ନ ଦିଏ, ସେତେବେଳେ ତାକୁ ଆଶ୍ରୟ ଦିଏ ନଈବାଲି । ତେତେବେଳେ ମନୁଷ୍ୟ ନିଜ ଇଚ୍ଛାରେ ନଈବାଲିକୁ ଯାଏ ନାହିଁ, ଅନ୍ୟ ଲୋକେ ତାକୁ ନେଇ ଯାଆନ୍ତି । କିନ୍ତୁ ଏବେ ଏ କି ଦୃଶ୍ୟ ? ରାତି ପ୍ରହରକ ବେଳକୁ କାଠଯୋଡ଼ି ନଈବାଲି ଜନ ପରିପୂର୍ଣ୍ଣ । ରାତିତମାମ ସେଠାରେ ଜନଗହଳ । ସମସ୍ତେ ଜୀବିତ, ସମସ୍ତେ ଯାଇଛନ୍ତି ନିଜ ଇଚ୍ଛାରେ । ମୁଁ ଦିନେ ନଈବାଲିରେ ଶୋଇବା ସୁଖ କଳ୍ପନା କରି ମନେ ମନେ ପାଞ୍ଚୁଥାଏ, ଯଦି ଏ ନଈବାଲି ନ ଥାନ୍ତା, ତେବେ ଏ ଦାରୁଣ ଗ୍ରୀଷ୍ମକାଳରେ ଲୋକେ ଯାଆନ୍ତେ କୁଆଡ଼େ ? ଆଉ ଗୋଟାଏ କଥା ପାଞ୍ଚୁଥାଏ - ଏହି ନଈବାଲି ଦିନରେ ଏତେ ତାତେ, ଲୋକର ପାଦ ପଡ଼ିଲେ ଜାଳି ପୋଡ଼ି ଦିଏ । ରାତ୍ରିରେ ଏତେ ଶୀତଳ ହୁଏ, ଏତେ ଲୋକଙ୍କୁ ଶୋଇବା ସ୍ଥାନ ଦିଏ ନଈବାଲି । ନିଶ୍ଚେ ବୁଝି ପାରିଲେ ମୁଁ ତାହାର ଗୁଣ ଚିହ୍ନିବି, ଦିନେ ମିଳନ ହେବ ।

### ୨. ପରୀକ୍ଷାରେ ପାସ୍ କରିବାର ସହଜ ଉପାୟ

କଲିକତାରେ ଗୋଟିଏ ଛାତ୍ର ପରୀକ୍ଷାରେ ପାସ୍ କରିବାର ଗୋଟାଏ ନୂତନ ଉପାୟ କରିଥିବାର ସମ୍ବାଦ ମିଳିଅଛି । ଛାତ୍ରଟି ବି.ଏ. ପରୀକ୍ଷା ଦେବା ନିମନ୍ତେ ପଢୁଥିଲା, କିନ୍ତୁ ଅଳସୁଆ ଓ ଅୟେସୀ ପିଲାଙ୍କର ଯାହା ହୁଏ, ତାହାର ତାହାହିଁ ହେଲା । ପରୀକ୍ଷା ନିକଟବର୍ତ୍ତୀ ହେବାରୁ ସେ ପାଞ୍ଚିଲା, ଏତେ ଝଂଝଟ ଭିତରକୁ ମୁଁ ଯିବି କାହିଁକି ? ଆଉ ଜଣକୁ ପଠାଇ ଦିଏଁ, ସେ ମୋ ପାଇଁ ପରୀକ୍ଷା ଦେଇ ଆସିବ । ପରୀକ୍ଷା ଦିନ ପରୀକ୍ଷା କେନ୍ଦ୍ରରେ ଜଣେ ପ୍ରହରୀ ଦେଖିଲେ ଯେ, ଜଣେ ପରୀକ୍ଷାର୍ଥୀ ଗୋଟାଏ କୃତ୍ରିମ ଦାଢ଼ି ପିନ୍ଧି ପରୀକ୍ଷା ଦେଉଛନ୍ତି । ପରୀକ୍ଷାର୍ଥୀ ଦସ୍ତଖତ ସହିତ ଏ ବ୍ୟକ୍ତିର ଦସ୍ତଖତ ମେଳ ହେଲା ନାହିଁ । ପ୍ରକୃତ କଥା ବାହାରି ପଡ଼ିଲା, ଯେଉଁ ବ୍ୟକ୍ତି ଦାଢ଼ି ପିନ୍ଧି ପରୀକ୍ଷା ଦେଉଥିଲେ, ସେ ଜଣେ ପ୍ରଫେସର । ପୋଲିସ ତାଙ୍କୁ ମେଜଷ୍ଟରଙ୍କ ପାଖକୁ ପଠାଇ ଦେଲେ । ସେଦିନ ପ୍ରେସିଡେନ୍ସି ମାଜିଷ୍ଟ୍ରେଟ୍ ଏ ମକଦମାର ବିଚାର କଲାବେଳେ ପ୍ରଫେସରଙ୍କ କାମରେ ଏହି ଅଭିଯୋଗ ଆଗତ ହେଲା ।

### ୩. ସଂସାରକୁ ସ୍ୱର୍ଗ କରିବାର ସହଜ ଉପାୟ

ପଞ୍ଜାବରେ ଚାଳିଶ ଜଣ ଶିଖଜାତୀୟ ନାରୀ ପ୍ରତିଜ୍ଞା କରି ଅଛନ୍ତି କି, ଯଦି ଶିଖମାନଙ୍କ ମଧ୍ୟରୁ ଦଳାଦଳି ଦୂର ନ ହୁଏ, ଯଦି ସମଗ୍ର ଶିଖଜାତି ସମ୍ମିଳିତ ନ ହୁଅନ୍ତି, ତେବେ ସେମାନେ ଅନାହାରରେ ରହି ପ୍ରାଣତ୍ୟାଗ କରିବେ । ଅନେକ ଶିଖ ନାରୀ ଏହି

କାର୍ଯ୍ୟରେ ସହାନୁଭୂତି ପ୍ରକାଶ କରୁଅଛନ୍ତି । ଆମ ଓଡ଼ିଶାରେ ଏବେ ନେତ୍ରୀ ବାହାରିଲେଣି, ସେମାନଙ୍କ ମଧ୍ୟରେ କେହି ଜଣେ ନାହାନ୍ତି, ଯେଉଁମାନେ ପ୍ରତିଜ୍ଞା କରିବେ, ଓଡ଼ିଆମାନେ ଦଳାଦଳି, କଳିଆକଳି, ଟଣାଟଣି, ହଣାହଣି ନ ଛାଡ଼ିବେ ଏବଂ ଯଦି ସମଗ୍ର ଓଡ଼ିଆ ଜାତି ସମ୍ମିଳିତ ନ ହେବେ, ତେବେ ଆମ୍ଭେମାନେ ଅନାହାରରେ ପ୍ରାଣତ୍ୟାଗ କରିବୁଁ । ସେମାନେ ଯଦି ମୁହଁରେ ଏତିକି କଥା କହି ଦିଅନ୍ତେ, ସେମାନଙ୍କ ନାମ ଓ ଛବି ଖବରକାଗଜରେ ବାହାରନ୍ତା, ଅପର ପକ୍ଷରେ ଓଡ଼ିଆ ନେତାମାନେ ବଡ଼ ହରବର, କଲବଲ ହୋଇ କଣ କରିବା, କି ବାଟ ଧରିବା କହି ଲଣ୍ଡଭଣ୍ଡ ହୁଅନ୍ତେ । ଓଡ଼ିଆ ଜାତିର ଏକତାର କଥା ଦାଣ୍ଡରେ ପଡ଼ି ହାଟରେ ଗଡ଼ ଗଡ଼ଉଛି । କେତୁଟା ବା ମଣିଷ, ସେମାନଙ୍କ ମଧ୍ୟରେ ଟିକିଏ ହେଲେ ଏକତା ଥାଆନ୍ତା । କେହି କାହାରି ଶିରୀ ଦେଖନ୍ତି ନାହିଁ । ରାମା କହେ, ଶାମାର ତଣ୍ଟି ଚିପି ମାରିଦେଲେ ମୁଁ ବଡ଼ ହୁଅନ୍ତି । ରାମା ନିଜ ଚେଷ୍ଟାରେ ନିଜେ ବଡ଼ ହୋଇପାରେ, ଏ କଥା ସେ କଦାଚ ଭାବେ ନାହିଁ । ଡିଷ୍ଟ୍ରିକ୍ଟ ବୋର୍ଡ଼ରେ ଦଳାଦଳି, ଲୋକାଲବୋର୍ଡ଼ରେ ଦଳାଦଳି, ମ୍ୟୁନିସିପାଲିଟିରେ ଦଳାଦଳି । ଦଳାଦଳି ନାହିଁ, କେତେଜଣ ଅନାହାରରେ ରହି ମରିଯିବାର ଭୟ ଦେଖାନ୍ତେ - ସତେ କଣ ମରନ୍ତେ ? - ତେବେ ଗୋଟାଏ ଚହଳ ପଡ଼ିଯାନ୍ତା । ସେମାନେ ଶୀଘ୍ର ବାହାରି ପଡ଼ନ୍ତୁ । ଅୟେସ ବହୁତ ହେଲାଣି, ସୁଖ ଭୋଗରେ ମନ ବୋଧ ହେବଣି, ଏବେ ବାହାର ଦେଶ ପାଇଁ ଓ ଏକମନା ହୋଇ । ଦେଶରେ ଦୁର୍ନାମ ଦୂର ହେଉ ।

## ୪. ଜୁବୁଲୀ ବହୁକାଳ ମନେରହିବ

ସମ୍ରାଟ୍‌ଙ୍କ ଜୁବୁଲୀ ଏପରି ସୁଚାରୁରୂପେ ହୋଇଗଲା ଯେ, ଏହା ଗୋଟିଏ ଚିରସ୍ମରଣୀୟ ଘଟନା ବୋଲି ପରିଗଣିତ ହେବ । ଇଂରେଜମାନେ ତାଙ୍କ ସମ୍ରାଟ୍‌ଙ୍କୁ କିପରି ଭକ୍ତି କରନ୍ତି ଓ ସମ୍ରାଟ୍ ତାଙ୍କ ପ୍ରଜାମାନଙ୍କୁ କିପରି ସ୍ନେହ କରନ୍ତି, ଜୁବୁଲୀରୁ ତହିଁର ଆହୁରି ପ୍ରମାଣ ମିଳିଲା । ଗୋଟାଏ ଉଦାହରଣ ଦେଉଛି - ସମ୍ରାଟ୍ ସେ ଦିନ କାହାକୁ କିଛି ନ ଜଣାଇ ହଠାତ୍ ଲଣ୍ଡନ ନଗରର ଏକ ଅଂଶକୁ ସାମାନ୍ୟ ବ୍ୟକ୍ତିଙ୍କ ପରି ମଟରରେ ଚାଲିଗଲେ । ସମ୍ରାଟ୍ ଆସୁଅଛନ୍ତି ଏହା ଜାଣିବା ମାତ୍ରେ ସହସ୍ର ସହସ୍ର ନରନାରୀ, ବାଳକ ବାଳିକା ଘରୁ ବାହାରି ପଡ଼ିଲେ, ସମ୍ରାଟ୍‌ଙ୍କୁ ଅଭିବାଦନ କଲେ । ସମ୍ରାଟ୍ ବାହାରିବେ, ଏ କଥା ପୋଲିସ ସୁଦ୍ଧା ଜାଣି ନ ଥିଲେ । ଜୁବୁଲୀ ଉତ୍ସବ ଦେଖିବାକୁ ୭୫ ହଜାର ଛାତ୍ରଙ୍କୁ ବସିବାର ସ୍ଥାନ ଦିଆଯାଇଥିଲା । ଛାତ୍ରମାନେ ବଡ଼ ହେଲେ ଜୁବୁଲୀର ସ୍ମରଣ କରିବେ । ଭାରତବର୍ଷରୁ ଷାଠିଏ ଲକ୍ଷ ଟଙ୍କା ଚାନ୍ଦା ଉଠିଛି, ଜୁବୁଲୀର ସ୍ମରଣାର୍ଥେ ଭାରତବର୍ଷରେ ରୋଗୀମାନଙ୍କ ଚିକିତ୍ସାର, ବିଶେଷତଃ ନାରୀ ଚିକିତ୍ସାର ସୁବ୍ୟବସ୍ଥାରେ ତାହା ଖରଚ କରାଯିବ । ଏ ଉତ୍ସବ ଭାରତବର୍ଷରେ ଗ୍ରୀଷ୍ମ କାଳରେ ନ ହୋଇ ଶୀତକାଳରେ ହୋଇଥିଲେ ଲୋକମାନେ ଆହୁରି ଆନନ୍ଦ ଉପଭୋଗ କରିଥାନ୍ତେ । ମହାରାଣୀ ଭିକ୍ଟୋରିଆଙ୍କ ସ୍ୱର୍ଣ୍ଣ

ଜୁବୁଲୀ ୧୮୯୭ ସାଲରେ ବିଲାତରେ ଜୁନ୍ ମାସରେ ହୋଇଥିଲା, କିନ୍ତୁ ଭାରତବର୍ଷରେ ଫେବୃୟାରୀ ମାସରେ ହୋଇଥିଲା । ଗ୍ରୀଷ୍ମକାଳ ଭାରତବର୍ଷରେ ଉସବର ଉପଯୋଗୀ ନୁହେଁ ।

### ୫. କୃତ୍ରିମ ସଭା

ବର୍ତ୍ତମାନ କଟକ ମ୍ୟୁନିସିପାଲିଟି ସରକାରଙ୍କ ହାତରେ ରହିଛି କି ଆଖଡ଼ା ଦଳ ହାତରେ ସମର୍ପଣ କରାଯିବ, ଦିନେ ବୈକୁଣ୍ଠରେ ଏ କଥାର ଚର୍ଚ୍ଚା ହେଉଥିଲା । ସମସ୍ତେ କହିଲେ, ସାବଧାନ, ସାବଧାନ, ଆଉ କିଛି କାଳ ସରକାରଙ୍କ ହାତରେ ରହୁ, ସର୍ବସାଧାରଣଙ୍କର ମଙ୍ଗଳ ହେବ । ଯେଉଁମାନେ ଅନେଇ ବସିଛନ୍ତି, ମ୍ୟୁନିସିପାଲିଟି ଫେରି ଆସିଲେ ତାକୁ ଇଲିସି ମାଛପରି କସମସ କରି ଚୋବେଇବେ,-ସେମାନେ ବଡ଼ ସନ୍ତପ୍ତ ହୋଇ ଆଖିରୁ ଲୁହ ପୋଛି ପୋଛି ଏଠି ସେଠି ବସି ମନ୍ତ୍ରଣା କଲେ । ଶେଷରେ ଲୋକମାନଙ୍କୁ ମିଥ୍ୟା ପ୍ରଲୋଭନ ଦେଖାଇ ଡାକିଲେ, ଆସ ବୈଠକ କରିବା, ଟିକସ କମିଯିବ । ଟିକସ କମିବା କଥା ଶୁଣି ସୁଦ୍ଧା ଅଢ଼େଇ ଜଣ ମାତ୍ର ଲୋକ ଆସିଲେ । ଅସଲ ଲୋକେ କବାଟ କଣରେ ଓଢ଼ଣା ପକାଇ ବସିଲେ, ପଦାକୁ ବାହାରିଲେ ନାହିଁ । ବଡ଼େଇ କଲେ, ଆମ୍ଭେମାନେ କଟକ ସହରର ୬୫ ହଜାର ବାସିନ୍ଦାଙ୍କ ପ୍ରତିନିଧି । କିନ୍ତୁ ଟିକସ କଥାଟା ପଛରେ ପଡ଼ିଗଲା, ମ୍ୟୁନିସିପାଲିଟି ସରକାରଙ୍କ ହାତରୁ କିପରି ଆସିବ ଏହା ବିଚାର ହେଲା । ଯେ ସରକାରଙ୍କ ହାତରେ ରହୁ ବୋଲି କହିଲା, ତାକୁ ଥଟ୍ଟା ପରିହାସ କରି କଥା କୁହାଇ ଦେଲେ ନାହିଁ । ଯେଉଁମାନେ ଟିକସ କମିବା କଥା ଶୁଣି ଧାଇଁ ଆସିଥିଲେ, ବୈଠକ ଭାଙ୍ଗିବା ପରେ ସେମାନେ କହୁଥାନ୍ତି, କାହିଁ ଟିକସ କମିବା କଥା ତ କିଛି ହେଲା ନାହିଁ, ଆମକୁ ଏମାନେ ମିଛରେ ଡାକି ଆଣି ହଟହଟା କଲେ । ଏହା ଯଦି କୃତ୍ରିମ ସଭା ନୁହେଁ, ଆଉ କୃତ୍ରିମ ସଭା କହିବା କାହାକୁ ? ଭାଇମାନେ, ମନେ ରଖିଥିବ, ସରକାରଟା ଖୁବ୍ ସିଆଣା, ସରକାର୍ ଆଖିରେ ଧୂଳି ଦେଇ ଭୁଲାଇବା ସହଜ ନୁହେଁ ।

୨୩, ଜାନୁଆରୀ ୧୯୩୫

## ।। ସାତ ।।

୧. ପିଲାଏ ପରା ସଢ଼େଇରେ କୁଣ୍ଢିଏ ଚାଉଳ ରାନ୍ଧି ଖେଳଘର କରନ୍ତି, ମନେ ମନେ ଖିରି ଖେଚଡ଼ି ଖାଆନ୍ତି । ଖେଳଘର ସରିଯାଏ, ସୁଖ ସରିଯାଏ । ସେହିପରି ଗଲା ଶନିବାର ଦିନ ଭାରତବର୍ଷର ସ୍ୱରାଜ୍ୟ ଦଳ ପୂର୍ଣ୍ଣ ସ୍ୱାଧୀନତା ପାଇଗଲେ, କେତେ ପୀଠ-ସ୍ଥାନରେ ପତାକା ଉଡ଼ିଲା, ଲୋକେ ତାହା ଦେଖିଲେ । କେତେ ନେତା ଗର୍ଜନ ତର୍ଜନ କରି ବକ୍ତୃତା କଲେ, ଲୋକେ ତାହା ଶୁଣିଲେ । ତୋପ ଫଏର ହେଲା, ଲୋକେ ଚମକିଲେ । କିନ୍ତୁ କେହି କିଛି ବୁଝି ପାରିଲେ ନାହିଁ ।

ମରମ ନ ବୁଝି ସଖୀ ହେଲେ ଠରାଠରି
ପଥର ଭାସଇ ଜଳେ ବୋଇତ ଚଳଇ ଥଳେ
ଅତି ଆଚମ୍ଭିତ ମିତ
ପରତେ ଯିବା କିପରି ?

ଦୁଇଟା ଗାଈଜଗୁଆଳ ଟୋକା ଗଛ ମୂଳେ ବସି କଥାବାର୍ତ୍ତା ହୋଉଥାନ୍ତି । ଜଣେ କହୁଥାଏ, ଆରେ ଭାଇ, ସାହବଗୁଡ଼ାକ ତ ଅଛନ୍ତି, ତାଙ୍କରି ହୁକୁମ ତ ଚାଲୁଛି, ପୂରା ସ୍ୱାଧୀନତା ଆସିଲା କେଉଁବାଟେ, ରହିଲା କେଉଁଠାରେ, ତା ରୂପ କିପରି ? ଏହି ସମୟରେ ଗୋଟାଏ ଭୟଙ୍କର କୋଳାହଳ ଶୁଣାଗଲା । କିଏ କହିଲା ଭୂମିକମ୍ପ ହେଲା, କିଏ କହିଲା ମଲା ବାଦୁଡ଼ିଟାଏ ଗଛରୁ ଖସି ପଡ଼ିଲା । ବୁଝ ବୁଝ ଜଣାଗଲା ହିନ୍ଦୁ, ମୁସଲମାନ ନେତା, ଶିଖ ନେତା, ବଙ୍ଗଳୀ ନେତା, ଆନ୍ଧ୍ର ନେତା, ଓଡ଼ିଆ ନେତାମାନେ କଜିଆ ଲଗେଇଛନ୍ତି, ଇଂରେଜ ଯଦି ଲୁଗାପଟା ବାନ୍ଧି ବାଟ ଖରଚ ଘେନି ତାଙ୍କ ଦେଶକୁ ବାହୁଡ଼ିଯାନ୍ତି, ତେବେ ଭାରତବର୍ଷର ରାଜସିଂହାସନ ପାଇବ କିଏ । ବହୁତ ବାଦାନୁବାଦ ହେଲେ ସୁଦ୍ଧା ସେଦିନ ସେ ବିଷୟ ନିଷ୍ପତ୍ତି ହୋଇ ନ ପାରି ମୁଲତବୀ ରହିଲା । ଆଉ ଦିନେ ନଈ ବାଲିରେ ସଭା ହେବ । ଦାବିଦାରମାନଙ୍କ ପକ୍ଷରୁ ଜଣେ ଜଣେ ଓକିଲ ବକ୍ତୃତା କରିବେ । ଯଦି ଆପୋସରେ ଏ କଥା ନ ମେଣ୍ଟେ ତେବେ ଯେ ଯାହାର ବାଟ ଖୋଜିବେ । ଇଂରେଜ ସାବଧାନ ହୁଅନ୍ତୁ, ଏ ପୂର୍ଣ୍ଣ ସ୍ୱରାଜ ଦଳ ହୁଏ ତ ଦିନେ ତାଙ୍କଠାରୁ ଚାବି ମୁଠାକ ଛଡ଼ାଇ ନେଇ ତାଙ୍କୁ ଅର୍ଦ୍ଧଚନ୍ଦ୍ର ଦେଇ ବିଦାୟ କରିଦେବେ ।

୨. ଭୂମିକମ୍ପ କଥା ଆଉ କହ ନାହିଁ । ଆଗେ ଅକାଳେ ସକାଳେ ଭୂମିକମ୍ପ ହେଉଥିଲା, ଏବେ ତ କଣ ଆମ ଦେଶରେ ଭୂମିକମ୍ପ ଘର କରି ରହିଲାଣି । ବର୍ଷକୁ ବର୍ଷ ଥରକୁ ଥର ଭୂମିକମ୍ପ । ଲୋକେ ଏପରି ତାଟକା ହେଲେଣି ଯେ ଗଛରୁ ଡାଳଟିଏ ଦୋହଲିଲେ ସେମାନେ କହନ୍ତି, ହେଇରେ ଭୂମିକମ୍ପ ହେଲା । ଏ ଭୂମିକମ୍ପ କାହିଁକି ହେଉଛି, କିପରି ବନ୍ଦ ହେବ ଏହା ଆଜି ପର୍ଯ୍ୟନ୍ତ ଇଂରେଜ ସରକାର ସ୍ଥିର ନ କରିବାରୁ ପ୍ରସ୍ତାବ ଦେଉଅଛି ଯେ, ଆସେମ୍ବ୍ଲିରେ ସରକାରଙ୍କର ବଦନାମ ରଟନା କରାଯିବ । ମହାତ୍ମା ଗାନ୍ଧି କହିଛନ୍ତି, ବିହାରୀମାନେ ହରିଜନମାନଙ୍କୁ ଅବଜ୍ଞା କରିବାରୁ ବିହାରରେ ଭୂମିକମ୍ପ ହୋଇଥିଲା । ମହାତ୍ମାଙ୍କର ଏ ମତ ବିହାରୀଭାଇମାନଙ୍କର ପସନ୍ଦ ପଡୁ ନାହିଁ । କାରଣ ଭାରତବର୍ଷରେ ସବୁଠାରେ ଭୂମିକମ୍ପ ହେଲାଣି । ବିଲାତରେ ମଧ୍ୟ ଭୂମିକମ୍ପ ହେଲାଣି । କାରଣ ନିର୍ଣ୍ଣୟ ନ ହେଲେ ଭୂମିକମ୍ପ ବନ୍ଦ କରିବା ସମ୍ଭବ ହେବ ନାହିଁ । ଏହି ହେତୁରୁ ଶୀଘ୍ର ଗୋଟିଏ କମିଟି ବସିବାର ସ୍ଥିର ହେଉଅଛି । ଖାନନଗରରେ ସେହି କମିଟିର ବୈଠକ ହେବ । ସେମାନେ ପୂର୍ବକାଳର ମୃତବ୍ୟକ୍ତିମାନଙ୍କଠାରୁ ଜବାନବନ୍ଦି ନେଇ କାରଣ ନିର୍ଣ୍ଣୟ କରିବାକୁ ଚେଷ୍ଟା କରିବେ । ସେ କମିଟିରେ କିଏ କିଏ ମେମ୍ବର ହେବେ ଜଣାଯାଇ ନାହିଁ । କିନ୍ତୁ ସାଢେ

ସାତ ଜଣ ଉମେଦବାର ଥିବାର ଜଣାଯାଏ । ଅତି ଜରୁରୀ କାର୍ଯ୍ୟ । ଏଥିରେ ଯେପରି ହେଳା ନ ହୁଏ । କଂଗ୍ରେସ କର୍ମୀମାନେ ତତ୍ପର ହୁଅନ୍ତୁ । ଭୂମିକମ୍ପ ବନ୍ଦ ନ ହେଲେ ଏ ଦେଶ ରକ୍ଷା ପାଇବ ନାହିଁ । ସ୍ୱରାଜ୍ୟ ମିଳିଲେ ତାହା ବୃଥା ହୋଇଯିବ । ଏହି କାରଣରୁ ଭୂମିକମ୍ପକୁ ବନ୍ଦ କରିବା ନିତାନ୍ତ ଆବଶ୍ୟକ । ଏ ବିଷୟରେ ଆଉ ଯାହା କହିବାର ଅଛି ପରେ କହିବା ।

୩. ଏହାକୁ କହନ୍ତି ପରା ଖାଇବା ଭାତରେ ଧୂଳି ? କଂଗ୍ରେସ ବାନା ଧରି କଂଗ୍ରେସ ଆଶ୍ରାରେ ଭୋଟ ପାଇ ଯେଉଁମାନେ ଏଥର ଆସେମ୍ଳିର ମେମ୍ବର ହୋଇଛନ୍ତି, କଂଗ୍ରେସ ସଭାପତି ସେମାନଙ୍କୁ କହିଲେଣି, ଆରେ ବାବା, ଆସେମ୍ଳିରୁ ତୁମକୁ ଯେଉଁ ଚାରିପଇସା ମିଳିବ, ତାହା ତୁମେ ତୁମର ମୁଣିରେ ପକାଇଲେ ଚଳିବ ନାହିଁ । ମୁଠାଏ ଖାଇବା ପିଇବା ନିମନ୍ତେ ଯାହା ଖରଚ ହେବ, ସେତିକି ରଖି ବାକି ଟଙ୍କାଗୁଡ଼ିକ କଂଗ୍ରେସକୁ ଗଣିଦିଅ । ବେଶିଗୁଡ଼ାଏ ଖାଇ ପେଟ ଟିଙ୍କ ପରି ଫୁଲାଇବ ନାହିଁ । ଗରିବଙ୍କ ପରି ମୁଠିଏ ଖାଇ ଅଳ୍ପ ଖର୍ଚ୍ଚ କରିବ, ଯେପରି କଂଗ୍ରେସ ପାଇଁ ବେଶି ଟଙ୍କା ବଞ୍ଚିବ । ଏହି କଅଁଳ କଥା ଶୁଣି କେତେଜଣ ମେମ୍ବର ଅନୁଭବ କଲେ, ମୁଣ୍ଡରେ ବଜ୍ର ପଡ଼ିଲା । ସେମାନେ କହିଲେ, କଂଗ୍ରେସ ମନରେ ଏତେ କଥା ଥିଲା, ଆମକୁ ଆଗରୁ ଫିଟାଇ କହିଲା ନାହିଁ । ଆମ ହାତ ଧରି ତାକୁ ଅର୍ଗଳିରେ ପୂରାଇଲା, ଏତେବେଳେ କହୁଛି ''ଦିଲ୍ଲୀର ଶୀତ ଲାଗି ଓ ସିମଳାର ଶୀତ ଭୋଗ ଆମର, ଟଙ୍କା କଂଗ୍ରେସର ।'' ଜାଣିଥିଲି କି ସଖୀ ଶ୍ୟାମ ଏଡ଼େ କପଟ ।

୪. ମଶା ଓ ମାଛି ଦୁଇ ସଙ୍ଗାତ । ଦୁହେଁ ଅତି-ନୀଚ, ଅତି କ୍ଷୁଦ୍ର; କିନ୍ତୁ ଦୁହେଁ ମନୁଷ୍ୟର ପ୍ରବଳ ଶତ୍ରୁ । ସେମାନଙ୍କର ଗର୍ବ କେତେ ଦେଖ। ମଶା କହେ- ମୁଁ ମନୁଷ୍ୟର ରକ୍ତଯାକ ସବୁ ପିଇବି । ମାଛି କହେ - ମୁଁ ଘରଦ୍ୱାର ସବୁ ଅଧିକାର କରିବି, ଖାଦ୍ୟ ଓ ପାନୀୟ ଜିନିଷ ଦୂଷିତ କରିବି । ସେ ଦୁହେଁ ଧ୍ୱଂସ ନ ହେଲେ ଜଗତର କିଛି ମଙ୍ଗଳ ହେବ ନାହିଁ । ସେ ଦୁହେଁ ଥିବାଯାକେ ରୋଗ ବିସ୍ତାର କରୁଥିବେ । ମଶା ମ୍ୟାଲେରିଆ ଓ ଫାଇଲେରିଆର ଦୂତ । ମାଛି ବିସୂଚିକାର ଦୂତ । ମଶା ଯୋଗେ ଗୋଟିଏ ଗୋଟିଏ ବଡ଼ ବଡ଼ ଦେଶ ଉଚ୍ଛନ୍ନ ହୋଇ ଯାଇଛି । ସିଲୋନରେ ବର୍ତ୍ତମାନ ଲକ୍ଷ ଲକ୍ଷ ଲୋକ ମ୍ୟାଲେରିଆରେ ପଡ଼ିଛନ୍ତି । ଚାରିଆଡ଼େ ଲୋକେ ଚିତ୍କାର କରୁଛନ୍ତି, ମାର ମାର, ମଶାଙ୍କୁ ମାର । ତୋପଗୁଳିରେ ନଷ୍ଟ ହେବାର ଥିଲେ ସେମାନେ ଆଜି ପର୍ଯ୍ୟନ୍ତ ନ ଥାନ୍ତେ, କିନ୍ତୁ ତୋପର ପରାକ୍ରମ ମଶାର ପରାକ୍ରମ ପାଖରେ ହାର ମାନେ । ମଶା ଦିନରେ ଲୁଚେ, ରାତିରେ ବାହାରେ, କାମୁଡ଼ି ଦେଇ ପଳାଇଯାଏ । ବଣ ବୁଦାରେ ଲୁଚି ରହେ । ଏହି ହେତୁରୁ ତୋପର ପରାକ୍ରମ ଖଟୁ ନାହିଁ । ସିଲୋନର ଅବସ୍ଥା ଦେଖି କଲିକତାରେ ଚହଳ ପଡ଼ିଲାଣି । ବାଟ ଜଗ, ମଶା ଯେପରି ସହରରେ ପଶି ନ ପାରନ୍ତି । ଏଡ଼େ ସୁନ୍ଦର ସହର, ମର୍ତ୍ତ୍ୟରେ ସ୍ୱର୍ଗ, ତାହା ଯେପରି ଛାରଖାର ନ ହୁଏ । କିନ୍ତୁ ଯାବତ୍ ମଶାମାନେ ବୁଝି ନ ପାରିବେ ଯେ ସେମାନେ ମନ୍ଦ ପ୍ରକୃତିର ଜୀବ, ତାବତ୍ ସେମାନଙ୍କର ଦୌରାତ୍ମ୍ୟ

ରହିତ ହେବ ନାହିଁ । ଅତଏବ ସେମାନଙ୍କୁ ସେମାନଙ୍କର ଦୁଷ୍କର୍ମର କଥା ବୁଝାଇବା ନିମନ୍ତେ ଶୀଘ୍ର ଗୋଟିଏ ସଭା କରାଯାଉ ଏବଂ ସେମାନଙ୍କୁ ଏକ ନିର୍ଦ୍ଧାରଣ (Resolution) ଦ୍ଵାରା ତିରସ୍କାର କରାଯାଉ । ସେମାନେ ଲଜ୍ଜିତ ହୋଇ ସେମାନଙ୍କର ଇଲତ ସ୍ୱଭାବ ଛାଡ଼ି ଦେବେ । ଲୋକେ କହିବେ, ତ୍ରାହି ମଧୁସୂଦନ !

୫. ଅହିଂସା ନୀତି ପୂର୍ବେ ଏ ଦେଶରେ ନ ଥିଲା । ଯଦି ଥିଲା କେହି ତାକୁ ଦେଖୁ ନ ଥିଲେ କି ତାର ନାମ ଶୁଣୁ ନ ଥିଲେ । ତାହା ଅତି ପ୍ରଚ୍ଛନ୍ନ ଓ ଅଜ୍ଞାତ ଭାବରେ ଥିଲା । କଂଗ୍ରେସ ତାକୁ ପଦାକୁ ବାହାର କରି ତାହାର ରୂପ ଚିହ୍ନାଇ ଦେଲା । ଗତ କେତେକ ବର୍ଷ ମଧ୍ୟରେ ଏ ଅହିଂସା ନୀତିର ଅନେକ କୀର୍ତ୍ତି ଶୁଣାଯାଇଅଛି । ମହାତ୍ମା ଗାନ୍ଧିଙ୍କ ଉପରେ ଯେଉଁ ଦିନ ଚଢ଼ାଉ ହୋଇଥିଲା, ସେ ଗୋଟାଏ ଦିନ । ଆମ ଦେଶରେ ଏକ କଂଗ୍ରେସ କର୍ମୀ ଯେଉଁଦିନ ଆଉ ଏକ କଂଗ୍ରେସ କର୍ମୀଙ୍କ ଦେହରେ ଛୁରୀ ଚଲାଇ ଦେଲା, ସେ ଦିନ, ଆଉ ଗୋଟିଏ ଦିନ । ଲୋକେ କହୁଛନ୍ତି - ଏହା ଗୁଣ୍ଡାବୃତ୍ତି । ଏତେ ବଡ଼ କଥାଟାଏ କାହିଁକି କହିବ । ଏହା ମୁହଁ ବଢ଼ାଇବାର ଫଳ । ମୁହଁ ବଢ଼ାଇଲେ କିଏ ? ଝର ପାଣି ଆସୁଛି କେଉଁଠାରୁ ?

୩୦, ଜାନୁୟାରୀ ୧୯୩୫

## ।। ଆଠ ।।

୧. ଜନମେଜୟ ସର୍ପକୁଳର ବିନାଶ ନିମନ୍ତେ ସର୍ପଯଜ୍ଞ କରିଥିଲେ, ଗୋଟି ଗୋଟି ହୋଇ ବଡ଼ ବଡ଼ ସାପଗୁଡ଼ିକ ଅଗ୍ନିରେ ପଡ଼ି ଭସ୍ମ ହୋଇ ଯାଉଥିଲେ, ଆସ୍ତିକ ସର୍ପମାନଙ୍କ ପକ୍ଷରୁ ଓକାଲତନାମା ନେଇ ବହୁତ ବକ୍ତୃତା କରି ଜନମେଜୟଙ୍କ ମନ ଭୁଲାଇ ଦେଲେ । ଯଜ୍ଞ ବନ୍ଦ ହେଲା ।

ସର୍ପମାନେ ବଞ୍ଚିଗଲେ । କେତେଗୁଡ଼ିଏ ସର୍ପ ଆମ ଓଡ଼ିଶାରେ ରହିଗଲେ । ନୂତନ ପ୍ରଦେଶ ହେବାର ସମ୍ବାଦ ପାଇ ସେମାନେ ନାଚିଉଠିଲେଣି । ଦିନରାତି ସେମାନଙ୍କର କଳ୍ପନା, କାହାକୁ କାମୁଡ଼ିବା, ଯାହା ସଙ୍ଗେ ଅପଡ଼ ତାକୁ ଆଗ କାମୁଡ଼ିବା, ଆମ ଦାନ୍ତରେ ଯେତେ ବିଷ ଅଛି ସବୁ ଉଦ୍‌ଗାରିଦେବା, ଆମର କେତେ ଦାଉ ଦେଖାଇ ଦେବା । ଘରେ, ବାହାରେ, କଣରେ, ବୁଦାମୂଳେ, ଯେଉଁଠାରେ ପାଇବା, ଚୋଟେ ଦି' ଚୋଟ ମାରିବା, ପ୍ରାଣ ନେବା, ତେବେ ସିନା ଲୋକେ ଜାଣିବେ ଆମର କରାମତି କେତେ । ଯେତେବେଳେ ଆମେ କାଳିନ୍ଦୀ ହ୍ରଦ ଦଖଲ କଲୁଁ, ଲୋକେ ଦଉଡ଼ି ଯାଇ ଗୋଟାଏ କାଳିଆ ପିଲାକୁ ଡାକି ଆଣିଲେ, ତା'କୁ କଅଣ ଆମେ ଡରନ୍ତୁ ? କେତେ ଲୋକ ଗରୁଡ଼ଙ୍କ ନାମ ଧରି ଆମକୁ ଡରାନ୍ତି । ଆମେ ପୂର୍ଣ୍ଣ ସ୍ୱାଧୀନତା ପାଇଲୁଣି, ଗରୁଡ଼ ଆଉ କିଏ ? ଭଗବାନ୍ ଆମ ପ୍ରତି କିରୂପ ସଦୟ ଦେଖ, ଆମେ ମହାଦେବଙ୍କ ମୁଣ୍ଡରେ ବସୁଁ, ଆମର

ବିଷଦାନ୍ତ ଭାଙ୍ଗିଯିବା ମାତ୍ରେ ପୁଣି ନୂତନ ଦାନ୍ତ ଉଠେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲେ ଆମେ ସେଠାରେ ଏକାଧିପତ୍ୟ କରିବା । ଗୁଣି ଗାରେଡ଼ି, ମନ୍ତ୍ର, ଗଦ ଔଷଧ, ଝଡ଼ାଫୁଙ୍କା, କିଛି ଆମକୁ କାଟିବ ନାହିଁ । ଆମକୁ ସିନା ଗଡ଼ି ଆସେ ନାହିଁ, ଭାଙ୍ଗି ଆସେ । ଆମର ଫଁ ଫଁ ଗର୍ଜନ ଶୁଣି ସରକାର ଡରିବେ, ଲୋକମାନେ ଥରିବେ ।

୨. ମାଦକଦ୍ରବ୍ୟ ସେବନ କଲେ ଯେ ଅନିଷ୍ଟ ହୁଏ, ମାଦକଦ୍ରବ୍ୟ ଯେ ମନୁଷ୍ୟର ଧନ ଶୋଷିନିଏ, ବଳ ଶୋଷିନିଏ, ଏହା ନ ଜାଣେ କିଏ ? ନ କହେ କିଏ ? ତଥାପି ତ ଦୁନିଆରୁ ମାଦକଦ୍ରବ୍ୟର ପ୍ରଭାବ ଗଲା ନାହିଁ । ଅନେକ ଦେଶରେ ନିଶା ନିବାରଣୀ ସଭାମାନ ଅଛି । ସେମାନଙ୍କର ଚେଷ୍ଟା, ଲୋକମାନେ ମାଦକଦ୍ରବ୍ୟର ବ୍ୟବହାରରୁ କ୍ଷାନ୍ତ ହେଉନ୍ତୁ, ଜନସମାଜର ମଙ୍ଗଳ ହେବ । କିନ୍ତୁ ଭଲ ଉପଦେଶ କି ଲୋକେ ସହଜରେ ମାନନ୍ତି ? ଆମେରିକାର ଲୋକମାନେ ଯେପରି ଚତୁର ସେହିପରି ଧନୀ । ସେମାନେ ଦେଖିଲେ, ମଦ୍ୟପାନ ହେତୁ ଦେଶର ପ୍ରଚୁର ଅର୍ଥ ନଷ୍ଟ ହେଉଅଛି । ତହୁଁ ସେମାନେ ମଦ୍ୟର କାରବାର ବନ୍ଦ କରିଦେଲେ । କିନ୍ତୁ ଓଲିଆ ଗୋରୁ କି ସମ୍ଭାଳି ହୁଏ ? ଏରୋପ୍ଲେନ୍ ଦ୍ୱାରା ମଦ ଆସିଲା, ଅନ୍ୟ ପ୍ରକାର ଗୁପ୍ତ ଉପାୟରେ ମଦ ଆସିଲା । ବଡ଼ଲୋକମାନେ ଟଙ୍କାଏ ମୂଲ୍ୟର ମଦକୁ ପାଞ୍ଚଟଙ୍କା ଦେଇ କିଣିଲେ । ସରକାରଙ୍କ କାଇଦା କଟକଣା ବ୍ୟର୍ଥ ହେଲା । ଶେଷରେ ତାହା ସବୁ ଉଠିଗଲା, ଯାହା ଥିଲା, ତାହା ରହିଲା । ଆମେରିକା ଆଉ ଶୁଖିଲା (Dry) ନୁହେଁ, ଓଦା । ଭାରତବର୍ଷରେ ଅନେକ ସମୟରେ ବ୍ୟବସ୍ଥାପକ ସଭାମାନଙ୍କରେ ବକ୍ତୃତାମାନ ହୁଏ, ସରକାରଟା ମାଦକଦ୍ରବ୍ୟ ବିକ୍ରି କରାଇ ଅର୍ଥ ଉପାର୍ଜନ କରୁଛି, ଛି ଛି, ବଡ଼ ନିନ୍ଦାର କଥା । ନିଶାଖୋରମାନେ ସେ କଥା ଶୁଣି ହସନ୍ତି । ସେମାନେ କହନ୍ତି, ଏମାନେ କାହାର ପ୍ରତିନିଧି ହୋଇ ବକ୍ତୃତା କରନ୍ତି, ଆମ୍ଭେମାନେ ବି ଏମାନଙ୍କୁ କ୍ଷମତାପତ୍ର ଦେଇ ନାହୁଁ, ଆମ୍ଭମାନଙ୍କୁ ତ ଏମାନେ କିଛି ପଚାରି ନାହାନ୍ତି, ଏହିମାନଙ୍କ କଥାରେ ଆମ୍ଭେମାନେ ନିଶା ଛାଡ଼ିବୁ / ଏହି କଟକ ସହରରେ ବହୁକାଳ ପୂର୍ବେ ସ୍ୱର୍ଗତ ଦୀନନାଥ ବନ୍ଦୋପାଧ୍ୟାୟ ଚଉଧୁରୀ ବଜାର ନୂଆ ପୋଖରୀ ପଡ଼ିଆରେ ଗୋଟିଏ ପ୍ରକାଣ୍ଡ ପିତୁଳା ପୋଡ଼ାଇ ଥିଲେ, ସେ ପିତୁଳା ଦେହରେ ଲେଖାଥିଲା, 'ମାଦକାସୁର' । ସହରଯାକ ରାଷ୍ଟ୍ର ହୋଇଗଲା, ଆଜି ମାଦକାସୁର ପୋଡ଼ାଗଲା । କିନ୍ତୁ ମାଦକାସୁର ଅଗ୍ନି ଦ୍ୱାରା ଧ୍ୱଂସ ହେବା ଅସମ୍ଭବ । ଓଡ଼ିଶା 'ଅଫିମ ଖୋର' ବୋଲି ବିଖ୍ୟାତ । ଅଫିମର ଭାଉ ବଢ଼ିଛି । ତଥାପି ଲୋକେ ଅଫିମ ଖାଉଛନ୍ତି । କେତେଲୋକଙ୍କର ସର୍ବସ୍ୱ ଗଲାଣି ତଥାପି ଅଫିମ ଖାଇବା ଅଭ୍ୟାସ ଯାଇ ନାହିଁ । ନିଶାର ପ୍ରୀତି ବଡ଼ ବିଷମ ପ୍ରୀତି, ସେ ପ୍ରୀତିକି ମନ ଭାଙ୍ଗିଲେ ଭାଙ୍ଗେ, ଯମ ଭାଙ୍ଗିଲେ ଭାଙ୍ଗେ, ଆଉ ଭାଙ୍ଗିବ କିଏ ?

୩ . ନେପାଳର ମହାରାଜା ଦିଲ୍ଲୀ ଯାଇଛନ୍ତି । ବଡ଼ଲାଟ ଓ ପ୍ରଧାନ ସେନାପତି ତାଙ୍କୁ ବହୁତ ସମ୍ମାନ ଦେଖାଇଛନ୍ତି । ଭାରତ ସମ୍ରାଟ୍ ତାଙ୍କୁ ବହୁମୂଲ୍ୟ ତରବାରି ଉପହାର ଦେଇଅଛନ୍ତି । ଆସେମ୍ବ୍ଲିର ଜଣେ ମେମ୍ବର ତାଙ୍କ ସଙ୍ଗରେ ଦେଖାକରି ତାଙ୍କୁ କହିଲେ,

ଦେବାଳୟମାନଙ୍କରେ ହରିଜନମାନେ ପ୍ରବେଶ କଲେ ଭଲ ହୁଅନ୍ତା ନାହିଁ ? ମହାରାଜା ଉତ୍ତର ଦେଲେ "ନା, ନା, ସେ ପାଠ ଛାଡ଼ । ପୁରୀ, ଦ୍ୱାରକା, କାଶୀ ଓ ରାମେଶ୍ୱର ପରି ତୀର୍ଥସ୍ଥାନମାନଙ୍କର ପବିତ୍ରତା ରକ୍ଷା କରିବା ସର୍ବତୋଭାବେ ପ୍ରୟୋଜନ । ସେ ତୀର୍ଥସ୍ଥାନମାନଙ୍କରେ ଯଦି ହରିଜନମାନେ ଦେବାଳୟରେ ପ୍ରବେଶ କରିବାର ଅଧିକାର ପାଆନ୍ତି, ତେବେ ଆମ୍ଭେ ବା ଆମ୍ଭ ରାଜ୍ୟର କୌଣସି ବ୍ୟକ୍ତି କଦାପି ସେ ତୀର୍ଥମାନଙ୍କୁ ଯିବୁଁ ନାହିଁ । ଆମ୍ଭର ନାମ ଧରି ଆପଣ ସମସ୍ତଙ୍କୁ କହନ୍ତୁ, ଆମ୍ଭେ ହରିଜନମାନଙ୍କର ଦେବାଳୟ ପ୍ରବେଶର ବିରୋଧୀ ।" ଏଥିରୁ ଜଣାଯାଉଛି, ବାୟୁର ଗତି କେଉଁ ଆଡ଼କୁ ।

୪. କଟକରେ ଯେ ଚଉଧୁରୀ ବଜାରକୁ ଯାଉଛି, ସେ ଆପଣା ଇଚ୍ଛାରେ କହୁଛି, ମ୍ୟୁନିସିପାଲିଟି ହଠାତା ଇନ୍ଦ୍ରଭବନ ପରି ଦିଶୁଛି । ଏତେଦିନେ ଲୋକମାନେ ହେଜିଲେଣି ଯେ ସରକାର ହାତକୁ ଗଲା ବୋଲି ସେ ସ୍ଥାନର ରୂପ ବଦଳିଲା । ନଚେତ୍ ଯେଉଁ ଗୃହ ପଡ଼ିଆ ଥିଲା, ସେହି ଗୃହପଡ଼ିଆ ଥା'ନ୍ତା, ବାଦୀପାଲା କେଞ୍ଚା କେଞ୍ଚ୍ ଦେଖି ସେହି ପଡ଼ିଆ କାନ୍ଦୁଥାନ୍ତା । ଧନ୍ୟରେ ମ୍ୟୁନିସିପାଲିଟି ! ସେଠାରେ ଯେ ଭଲ କାମ କଲା, ସେ ଅପଯଶ ପାଇଲା । ସୋମନାଥବାବୁ ଲାଗିପଡ଼ି କାମ କଲେ । ପୁରସ୍କାର ପାଇଲେ ଢେଲା । ଏବେ ଯେ ଲୋକଙ୍କ ମୁହଁରୁ ଦି' ପଦ ଭଲ କଥା ଶୁଣାଗଲା - ମ୍ୟୁନିସିପାଲିଟିର ଭାଗ୍ୟ, ସରକାରଙ୍କର ଭାଗ୍ୟ ।

୫. ବିହାର ଗଭର୍ଣ୍ଣମେଣ୍ଟ ବୋଧହୁଏ ଭାବିଲେଣି, ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲେ, ଆଉ କିଛି ଉନ୍ନତି ହେଉ ବା ନ ହେଉ, ଯକ୍ଷ୍ମା ଏ ପ୍ରଦେଶରୁ ଅନ୍ତର୍ଦ୍ଧାନ ହେବ । ରାଞ୍ଚି ଜିଲ୍ଲାର ଇଟ୍‌କି ନାମକ ସ୍ଥାନରେ ଯକ୍ଷ୍ମା ରୋଗୀମାନଙ୍କ ଚିକିତ୍ସା ନିମନ୍ତେ ଯେଉଁ ସ୍ୱାସ୍ଥ୍ୟନିବାସ କୋଠଧନ ଦ୍ୱାରା ସଂସ୍ଥାପିତ ହୋଇଅଛି, ସ୍ଥାନ ନିଅଣ୍ଟ ହେବାରୁ ଗଭର୍ଣ୍ଣମେଣ୍ଟ ଯେଉଁ ଡିଷ୍ଟ୍ରିକ୍ଟ ବୋର୍ଡ଼ ଓ ମ୍ୟୁନିସିପାଲିଟିମାନଙ୍କ ନୂତନ ଗୃହ ନିର୍ମାଣ କରିଦେବାକୁ ଲେଖିଅଛନ୍ତି । ସେମାନଙ୍କ ମଧ୍ୟରେ ଓଡ଼ିଶାର କୌଣସି ଡିଷ୍ଟ୍ରିକ୍ଟ ବୋର୍ଡ଼ ବା ମ୍ୟୁନିସିପାଲିଟିର ନାମ ନାହିଁ । ତେବେ, ଓଡ଼ିଶାର ରୋଗୀମାନେ କଅଣ ସେ ସ୍ୱାସ୍ଥ୍ୟ ନିବାସରେ ସ୍ଥାନ ପାଇବେ ନାହିଁ ? ତାହା ଯଦି ହୁଏ, ତେବେ ଓଡ଼ିଶାର ରୋଗୀମାନେ ଯିବେ କେଉଁଠାକୁ ?

୬, ଫେବୃୟାରୀ ୧୯୩୫

## ।। ନଅ ।।

୧. ପ୍ରଦର୍ଶନୀ କେବଳ ଦେଖିବାର ସ୍ଥାନ ନୁହେଁ, ଶିଖିବାର ସ୍ଥାନ । କଟକରେ ବହୁକାଳରୁ ପ୍ରଦର୍ଶନୀ ହୋଇ ନ ଥିଲା । ପଚାଶ ବର୍ଷ ଗତ ହେଲାଣି, କିଲଟରି ପଡ଼ିଆରେ ସ୍ୱର୍ଗତ ଦୀନନାଥ ବନ୍ଦୋପାଧ୍ୟାୟ ଗୋଟିଏ କୃଷି ଓ ଶିଳ୍ପ ପ୍ରଦର୍ଶନୀ କରିଥିଲେ । ସେ ସରକାରଙ୍କ ଠାରୁ ସାହାଯ୍ୟ ନେଇ ନ ଥିଲେ । ସେ କାଳରେ ସୁଦ୍ଧା ସେ ପ୍ରଦର୍ଶନୀର ଖୁବ୍

ଆଦର ଓ ପ୍ରଶଂସା ହୋଇଥିଲା । ତାହା ପରେ ସରକାରଙ୍କ ଯତ୍ନରେ ଗୋଟିଏ ପ୍ରଦର୍ଶନୀ ହୋଇଥିଲା । ତାହା ମଧ୍ୟ ବହୁଦିନ ତଳର ଘଟନା । ସେହିଦିନୁ ପ୍ରଦର୍ଶନୀ କଟକକୁ ଭୁଲିଥିଲା ଓ କଟକ ପ୍ରଦର୍ଶନୀକି ମଧ୍ୟ ଭୁଲିଥିଲା । ଏବେ କଟକର ଭାଗ୍ୟ ପ୍ରସନ୍ନ ହେବାରୁ ପ୍ରଦର୍ଶନୀଟିଏ ହେଲା, ଭଲ କଥା । ଯେଉଁମାନଙ୍କ ବୁଦ୍ଧିରେ, ଧନରେ, ଯତ୍ନରେ ଓ ପରିଶ୍ରମରେ ତାହା ହେଲା, କୋଟି କୋଟି ଧନ୍ୟବାଦ ସେମାନଙ୍କର ହକ୍ ପାଉଣା । ବହୁତ ଲୋକ ପ୍ରଦର୍ଶନୀ ଦେଖିବାକୁ ଆସିଲେ, ଦେଖି ଖୁସି ହୋଇ ଘରକୁ ଫେରିଲେ । ପାଠୁଆ ବାବୁମାନଙ୍କ ମଧ୍ୟରେ ଯେଉଁମାନେ ନିଷ୍କର୍ମା ବା ଯେଉଁମାନେ ବେଶଭୂଷା ହୋଇ ଘରୁ ବାହାରନ୍ତି, ଖାଲି ହାତରେ ମୁହଁ ଶୁଖେଇ ଘରକୁ ଫେରନ୍ତି, ମୁଦି ଦୋକାନରୁ କାଳିଆ ବାକି କରି ଖାଆନ୍ତି, ଘର ଭଡ଼ା ବାକି ରଖନ୍ତି, ସେମାନେ ବୁଝିଲେ - ନିଶ୍ଚେ ବୁଝିଲେ, କୃଷି ଓ ଶିଳ୍ପରେ ମନ ନ ଦେଲେ ପେଟ ସଙ୍ଗେ ନିଜ ସଂଗ୍ରାମ ଲାଗିଥିବ । କୃଷି ଓ ଶିଳ୍ପ ଦେୟ ନୁହେଁ, ଶ୍ରେୟ । କିନ୍ତୁ ଗୋଟାଏ କଥା ଲୁଚାଇବା ଅସମ୍ଭବ, ତାହା ଜନମତ - ଲୋକମାନଙ୍କ ମୁଖରୁ, କି ସହର କି ମଫସଲ ସର୍ବତ୍ର - ପ୍ରଦର୍ଶନୀର ସମାଲୋଚନା । ସେ ସମାଲୋଚନାର ତାତ୍ପର୍ଯ୍ୟ - ଓଡ଼ିଶାର ଉତ୍କୃଷ୍ଟ ଆମୋଦ ପ୍ରମୋଦର ଅଭାବ ନ ଥିଲେ ସୁଦ୍ଧା ତାକୁ ଉପେକ୍ଷା କରି କଲିକତାରୁ ଥିଏଟର ଆଣି ଲୋକଙ୍କର ଏ ସ୍ୱଚ୍ଛ ଅବସ୍ଥାରେ ହଜାର ଟଙ୍କା ପେଲି ଦେବାଟା ସଦ୍‌ବିବେଚନାର କର୍ମ ନୁହେଁ ! ଏ ସମାଲୋଚନାର ଯେ ଉତ୍ତର ନାହିଁ, ତାହା ନୁହେଁ । ଦେଶର ଜିନିଷ ପସନ୍ଦ ନ ହେବା କଥା ଆଜି, ନୂଆ ନୁହେଁ । ପୁରୁଣାକାଳର ପ୍ରବାଦ ଅଛି 'ଗାଆଁ କନ୍ୟା ସିଙ୍ଘାଣିନାକୀ' । ଟଙ୍କା ଯେ ଚାଲିଗଲା ସେ ଦୋଷ କାହାର ? ଯେଉଁ ଦେଶରେ ଲୋକେ ବାଟରେ ପେଏଁକାଳିଟିଏ ବାଜିଲେ କାମ ଛାଡ଼ି ରୁଣ୍ଡ ହୁଅନ୍ତି, ସରକସ୍‌ଟିଏ ବା ବାୟସ୍କୋପଟିଏ ଆସିଲେ ଧାର ଉଧାର କରି ଦେଖିବାକୁ ଯାଆନ୍ତି, ଦେଖି ନୟନ ପବିତ୍ର କରନ୍ତି, ସେ ଦେଶର ଲୋକଙ୍କର ସହଜରେ ସଦ୍‌ବୁଦ୍ଧି ହେବ, ଏହା କାହିଁକି ଆଶା କରିବା ? ନୂତନ ପ୍ରଦେଶଟାଏ ସିନା ଗଢ଼ା ହେଉଛି, ନୂତନ ମନୁଷ୍ୟ ତ ଗଢ଼ା ହେଉ ନାହାନ୍ତି । କଥାଟା ଭାବିଲେ, ଚିନ୍ତିଲେ ବହୁତ ତତ୍ତ୍ୱ ମିଳିବ । ସେ କଥା ସତ, ବଡ଼ବଡ଼ିଆଙ୍କ କଥାରେ ପାଟି ନ ଫିଟାଇବା ଭଲ । ମୋର ଗୋଟାଏ ସନ୍ଦେହ ରହି ଯାଇଛି । ଥିଏଟର ଓ କୁସ୍ତି ଏ ଦୁହିଁଙ୍କ ମଧ୍ୟରୁ କେଉଁଟା ଶିଳ୍ପର ଅନ୍ତର୍ଗତ ଓ କେଉଁଟା କୃଷିର ଅନ୍ତର୍ଗତ ? ପ୍ରଦର୍ଶନୀର ଶ୍ରେଣୀବିଭାଗ ତାଲିକାରେ ତାହା ଲେଖା ନ ଥିବାରୁ ମୁଁ ବଡ଼ ଦୋଦୋପାଞ୍ଚରେ ପଡ଼ିଛି ।

୨. କେତେମାସ ହେଲା, କଟକ ସହରରେ ହସ୍ତା ଉଠିଛି 'ଚୋର, ଚୋର, ଚୋର ।' ସଙ୍ଗେ ସଙ୍ଗେ ବହୁତ ପ୍ରଶଂସା ହେଉଛି, ପୋଲିସଙ୍କର । କିନ୍ତୁ ଏହା କଅଣ ସତ୍ୟ ନୁହେଁ ଯେ ପୋଲିସ ଚୋର ପ୍ରସବ କରନ୍ତି ନାହିଁ । ଚୋରମାନେ ଏହି ଦେଶରେ ଜନ୍ମ ହୁଅନ୍ତି, ଏହି ଦେଶରେ ବଢ଼ନ୍ତି, ଏହ ଦେଶରେ ଚୋରି ଶିଖନ୍ତି, ଏହି ଦେଶରେ ଚୋରି କରନ୍ତି ? ଚୋରମାନେ ଧରାପଡୁ ନାହାନ୍ତି ବା ଚୋରିମାଲର କିନାରା ହେଉ ନାହିଁ, ଏହା ପୋଲିସର

ଦୋଷ ନୁହେଁ, ଚୋରମାନଙ୍କର ବାହାଦୁରି । ଜଗତରେ ବର୍ତ୍ତମାନ ଚାଲିଛି ବୁଦ୍ଧିର ଦୌଡ଼ । ଯେମନ୍ତ ପୋଲିସର ବୁଦ୍ଧି ବଢୁଛି, ତେମନ୍ତ ଚୋରଙ୍କର ବୁଦ୍ଧି ବଢୁଛି । ପରୀକ୍ଷାରେ କେତେବେଳେ ପୋଲିସ ଜିତୁଛନ୍ତି, କେତେବେଳେ ଅବା ଚୋର ଜିତୁଛନ୍ତି । ଆମ କଟକୀ ଚୋର ସେମାନଙ୍କ ଅଧିଷ୍ଠାତ୍ରୀ ଦେବୀ ମା କାଳୀଙ୍କଠାରୁ ବର ପାଇଥିବାରୁ ସେମାନେ ଚୋରି କରିବାକୁ ଆସିବା ବେଳେ, ଆଉ ମଧ୍ୟ ଚୋରି କରି ମାଲଘେନି ଫେରିବା ବେଳେ ସେମାନଙ୍କ ଶରୀର ଅଦୃଶ୍ୟ (invisible) ହେଉଅଛି, ଆଉ ମଧ୍ୟ ମାଲପତ୍ର ମନ୍ତ୍ରବଳରେ ଉଡ଼ି ଯାଉଛି । କହନ୍ତୁ ତ, ଏଥିରେ ପୋଲିସର କି ଦୋଷ ?

୩. ଦିନେ ଗୋଟିଏ ବାଳକ ଘରେ କାଳି ଦୁଆତଟାରୁ କାଳିଯାକ ଢାଳି ଯାଇ ଘରଟାକୁ ଅସନା କରିଦେଲା । ତାହାର ପିତା ପଚାରିଲେ "କାଳି ଢାଳିଲା କାହିଁକି ?" ବାଳକ ଉତ୍ତର ଦେଲା "ଆଉ କିଛି କାମ ନ ଥିଲା ।" ସେହିପରି କୌଣସି କଂଗ୍ରେସ କର୍ମୀଙ୍କୁ ଯଦି କେହି ପଚାରେ "ମିଥ୍ୟା ପ୍ରଚାର କରୁଛ କାହିଁକି ?" ସେ ହୁଏତ ଉତ୍ତର ଦେବେ, "ସତ କଥାତ ନାହିଁ, କହିବା କଅଣ ?" ବର୍ତ୍ତମାନ ଓଡ଼ିଶାର ପଲ୍ଲୀଗ୍ରାମମାନଙ୍କରେ କଂଗ୍ରେସ ଲୋକମାନଙ୍କ ମନ ଭୁଲାଇବା ନିମନ୍ତେ ଚେଷ୍ଟା କରୁଛି । କେତେ ସ୍ଥାନରେ ପ୍ରଚାର ଲାଗିଛି, କଂଗ୍ରେସ ପ୍ରଜାମାନଙ୍କ ଖଜଣା ମାଫ୍ କରାଇ ଦେବ । ଲୋକେ ବୁଝିପାରୁ ନାହାନ୍ତି, ପୂର୍ବକାଳରେ ହିନ୍ଦୁ ରାଜତ୍ୱକାଳରେ, ମୁସଲମାନ ରାଜତ୍ୱ କାଳରେ ବା ମରହଟ୍ଟା ରାଜତ୍ୱ କାଳରେ ଖଜଣା କେବେହେଁ ମାଫ୍ ହୋଇ ନ ଥିଲା । ବିନା ରାଜସ୍ୱରେ କୌଣସି ରାଜା ବା ସ୍ୱୟଂ ଭଗବାନ୍ ରାଜ୍ୟ ଶାସନ କରିବା ଅସମ୍ଭବ, ରାଜ୍ୟ ଶାସନ ନିମନ୍ତେ ବ୍ୟୟ ଆବଶ୍ୟକ । ଆୟ ନ ଥିଲେ ବ୍ୟୟ ହେବ ନାହିଁ ? ଯେଉଁମାନେ କହୁଛନ୍ତି ଖଜଣା ମାଫ୍ କରାଇ ଦେବେ, ସେମାନଙ୍କ କଥା - ସମୁଦ୍ରରେ ବୁନ୍ଦାଏ ସୁଦ୍ଧା ସତ୍ୟ ନାହିଁ । ଯାହା ଅସମ୍ଭବ, ତାହା କଦାପି ବିଶ୍ୱାସ କରିବ ନାହିଁ । ଏହି ନୀତିଶାସ୍ତ୍ର ଶିକ୍ଷା । କେଉଁ କଂଗ୍ରେସର ସାଧ୍ୟ ସେ ଇଂରେଜ ସରକାରଙ୍କ ରାଜସ୍ୱ ଛାଡ଼ କରାଇ ଦେବ ? କଂଗ୍ରେସ ଯଦି ନିଜେ ରାଜତ୍ୱ କରୁଥାନ୍ତା (ଈଶ୍ୱର ନ କରନ୍ତୁ, ଦେଶର ଏ ଦୁର୍ଭାଗ୍ୟ ନ ହେଉ) ତେବେ କେଉଁଠାରୁ ପଇସା ଆଣି ଖରଚ କରନ୍ତା ? ଲୋକମାନଙ୍କର କଅଣ ମନେ ନାହିଁ, କଂଗ୍ରେସ ପକ୍ଷରୁ ପଣ୍ଡିତ ଜହରଲାଲ ଘୋଷଣା କରିଥିଲେ, କଂଗ୍ରେସ ହାତକୁ ରାଜ୍ୟ ଆସିଲେ କୃଷି ଉପରେ ଟିକସ ବସିବ ?

୪. ଗୋଟାଏ କାମ ପରି କାମରେ ପାରିକୁଦ ରାଜା ହାତ ଦେଲେ । ସେ ତାଙ୍କର ଲୁଣି ରାଜ୍ୟରେ ଲୁଣ ପୋକ୍ତାନ କରାଇବେ, ସରକାର ତାଙ୍କୁ ପଟ୍ଟା ଦେଇଛନ୍ତି । ଲୁଣ ପୋକ୍ତାନ କରି ଓଡ଼ିଶାରେ ହଜାର ହଜାର ଗରିବ ଲୋକ ପେଟ ପୋଷୁଥିଲେ । ଲୁଣମାଟି ଭଗବାନ୍ ତାଙ୍କ ଦୁଆର ମୁହଁରେ ଦେଇଛନ୍ତି । ସେ ମାଟି କିନ୍ତୁ ଛୁଇଁବା ମନା, ଲୁଣ ମାରିବା ମନା । ଓଡ଼ିଶା କେତେଥର ଗୁହାରି କରିଛି, ପୋକ୍ତାନ ଛାଡ଼ ହେଲେ ଗରିବ

ଲୋକ ମୁଠାଏ ଅନ୍ନ ପାଇବେ; କିନ୍ତୁ ତହିଁର ଫଳ ହୋଇ ନ ଥିଲା । ପାରିକୁଦ ରାଜା ବଡ଼ ଉତ୍ସାହୀ । ସେ ଚକ ପରି ଘୂରନ୍ତି, ଚଢ଼େଇ ପରି ଉଡ଼ନ୍ତି । ସେ ଲାଗି ଲାଗି ଶେଷରେ ପଟ୍ଟା ପାଇଲେ, ଭାରି ଖୁସିର କଥା । ଅନେକ ଲୋକ ଅନ୍ନ ପାଇବେ । ମେଦିନୀପୁର ଜିଲ୍ଲାର କାନ୍ଥିରେ ଲୁଣ ପୋକ୍ତାନ ହେଉଛି । ଗୋଟିଏ କମ୍ପାନୀ ସେ କାରବାର ଚଳାଉଅଛନ୍ତି । ବ୍ରହ୍ମଦେଶରୁ ବିଶେଷଜ୍ଞ ବ୍ୟକ୍ତିଙ୍କୁ ଅଣାଇ ସେ କାରଖାନା ସେମାନଙ୍କ ଉପଦେଶ ଅନୁସାରେ କାମ କରୁଅଛନ୍ତି । ଓଡ଼ିଶାର କେତେବଡ଼ କାରବାରଟାଏ ନଷ୍ଟ ହୋଇ ଯାଇଥିଲା, କାଣିଚାଏ ମିଳିଲା, ସରକାରଙ୍କୁ ଧନ୍ୟବାଦ, ରାଜାଙ୍କୁ ଧନ୍ୟବାଦ । ରାଜା ଦେଶପାଇଁ ବାଟ ଫିଟାଇ ଦେଲେ, ଦେଶର କର୍ତ୍ତବ୍ୟ କଅଣ, ଦେଶବାସୀ ଭାବନ୍ତୁ ।

୫. ଗାଉଁଲି ଲୋକେ ପୂର୍ବକାଳରେ କୋବି ଲଗାଉ ନ ଥିଲେ କି ଖାଉ ନ ଥିଲେ, କଟକ ଆସିଲେ ହୁଏତ ଆଖିରେ ଦେଖୁ ନ ଥିଲେ । ଏବେ କୋବି ଚାଷ ଗାଆଁ ଗାଆଁକେ । ବାଇଗଣ ଫସଲ ପରି କୋବି ଫସଲ ହେଲାଣି । ଦୁଇଟା ପଇସା ପକେଇ ଦେଲେ ହାଟ ବାଟରେ ବଡ଼ ବନ୍ଧାକୋବିଟାଏ, ପଇସାଟାଏ ପକେଇ ଦେଲେ ଫୁଲକୋବିଟାଏ ନେଇଯିବ । କୋବି ଏବେ ଏପରି ମୁହଁରେ ଲାଗିଗଲାଣି ଯେ ନିତାନ୍ତ ଗରିବ ଦୁଃଖୀ ସୁଦ୍ଧା ତାହା କିଣି ଖାଉଛନ୍ତି । ଖାଆନ୍ତୁ ସେମାନେ, ମାରନ୍ତୁ ଟାକରା । ମୋର କେବଳ ଡର ମୁଁ ବାରିରେ ମୂଳା ଅରିଏ କରିଥିଲି, ତାକୁ ବି ଆଉ କେହି ଅନେଇବେ ନାହିଁ ।

୧୩, ଫେବୃୟାରୀ ୧୯୩୫

## ।। ଦଶ ।।

୧. ଦୋଳ ଆସୁଛି, ବାପମାଙ୍କ ସୁପୁତ୍ରମାନେ ପାଟି ପଢ଼େଇ ରଖିଲେଣି, 'ହୁରି' ଗୀତ ଗାଇବେ, ମା-ଭଉଣୀଙ୍କ କର୍ଣ୍ଣ ପବିତ୍ର କରିବେ, ପିତୃପୁରୁଷଙ୍କୁ ନରକରୁ ଉଦ୍ଧାର କରିବେ । ହେ ବୀରମାନେ, ସେ ଦୁର୍ବୁଦ୍ଧି ଛାଡ଼ । କାଳ ବଦଳିଲାଣି, ଏକାଳ ହୁରି ଗୀତ ବୋଲିବାର କାଳ ନୁହେଁ । ଏ କାଳରେ ଏ ଜଗତରେ କେତେ ସଭ୍ୟତା ହେଲାଣି, କେତେ ବଡ଼ କାର୍ଯ୍ୟମାନ ହେଲାଣି, ବିଜ୍ଞାନ ବଳରେ ମନୁଷ୍ୟ ଚଢ଼େଇ ପରି ଉଡ଼ିଲାଣି, ଘରେ ବସି ବିନା ତାରରେ ବିଲାତର ଖବର ପାଉଛି; ବିଲାତରେ ଗୀତ ବୋଲା ହେଲା; ଏଠାରେ ଶୁଣୁଛ, ସେଆଡ଼କୁ ଟିକିଏ ଅନାଅ, ସେମାନେ କେତେଦୂରରେ, ଆମ୍ଭେମାନେ କେତେ ଦୂରରେ ଏକଥା ଟିକିଏ ଭାବ । ଭଣ୍ଡସଣ୍ଡ ଗୀତ ବୋଲିଲେ ଆମର ତିଳାର୍ଦ୍ଧେ ଉନ୍ନତି ହେବ ନାହିଁ, ବରଂ ସଭ୍ୟ ଲୋକମାନେ ଆମ୍ଭମାନଙ୍କୁ ନିକୃଷ୍ଟ ଜନ୍ତୁ ବୋଲି ନିନ୍ଦା କରିବେ । ଏଣିକି ଆଉ ଏ ବୀଭତ୍ସ କାଣ୍ଡ ନ କର, ଯେ କରିବ ତାକୁ ନିଷେଧ କର, ଦେଶର କଳଙ୍କ ଦୂର କର । ଅଶ୍ଳୀଳ ଗୀତ ଦୋଳ ଯାତ୍ରାର ଅଙ୍ଗ ନୁହେଁ । ସେ ଗୀତ ନ ବୋଲିଲେ ଧର୍ମହାନି ହେବ ନାହିଁ । ତହିଁରେ ଏତେ ଶ୍ରଦ୍ଧା କାହିଁକି ?

୨. କଂଗ୍ରେସ ନଳ ଯୋଖିଥିଲା, ବିନ୍ଧି ପାରିଲା ନାହିଁ । ଆସେମ୍ବ୍ଲିରେ କଂଗ୍ରେସ ପକ୍ଷର ମେମ୍ବରମାନେ ପାଞ୍ଚିଥିଲେ, ଶାସନ ସଂସ୍କାର ସମ୍ପର୍କରେ ଢ଼ଏଣ୍ଟ କମିଟି ଯେଉଁ ରିପୋର୍ଟ ଦେଇଅଛନ୍ତି, ତାକୁ ଉଡ଼ାଇ ଦେବେ । କିନ୍ତୁ ଆସେମ୍ବ୍ଲିରେ ସେ କଥା ପଡ଼ିବା ବେଳେ ସେମାନେ ବାହାରିଗଲେ । ଅଧିକାଂଶ ମେମ୍ବର ସେମାନଙ୍କ ମତ ବିରୋଧରେ ଗଲେ । ଢ଼ଏଣ୍ଟ କମିଟି ରିପୋର୍ଟକୁ ଉଡ଼ାଇଦେଲେ କି ଲାଭ ହେବ ? ସରକାର ଆମ୍ଭମାନଙ୍କୁ ବର୍ତ୍ତମାନ ଯାହା ଦେବାକୁ ବସିଛନ୍ତି, ତାହା ନ ନେଇ ଫିଙ୍ଗିଦେଲେ ପୃଥିବୀରେ କେହି ଆମ ବୁଦ୍ଧିର ପ୍ରଶଂସା କରିବେ ନାହିଁ । ବରଂ କହିବେ, ଏହିମାନେ ଶାସନ ସଂସ୍କାର ନିମନ୍ତେ ଆନ୍ଦୋଳନ କରୁଥିଲେ, ଏହିମାନେ ବର୍ତ୍ତମାନ ତହିଁର ବିରୋଧୀ, ଏମାନଙ୍କ ମତ ସ୍ଥିର ନୁହେଁ । କାହିଁକି ଆମେ ଏ ନିନ୍ଦା ଶୁଣିବା ? ସରକାର ତ କହୁଛନ୍ତି, ବର୍ତ୍ତମାନ ଯାହା ଦେଉଛୁ ନିଅ, କାମ ଚଳାଅ, ଭବିଷ୍ୟତ୍‌ରେ ଆହୁରି ଦେବା । ସରକାର ଯଦି ଏକାଥରକେ ମାଠିଆକ ତେଲ ଆମ ମୁଣ୍ଡରେ ଢାଳି ଦିଅନ୍ତି, ଫଳ କଅଣ ହେବ, ଅନୁମାନ କରନ୍ତୁ । ସଂସାରରେ ସବୁ କାର୍ଯ୍ୟ ଧୀରେ ଧୀରେ ହୁଏ । ରାଜ୍ୟ ଶାସନର ଦାୟିତ୍ୱ ଗୁରୁତର । ତାହା ବୁଝି ସୁଝି ନ ଦେଲେ ଯେମନ୍ତ ସରକାର ତେମନ୍ତ ଦେଶର ଲୋକମାନେ ମନ୍ଦ ଫଳ ଭୋଗ କରିବେ । ଆମର ଏକମାତ୍ର କର୍ତ୍ତବ୍ୟ ଢ଼ଏଣ୍ଟ କମିଟୀ ରିପୋର୍ଟକୁ ଗ୍ରହଣ କରି ସରକାରଙ୍କ ସଙ୍ଗେ ସହଯୋଗିତା କରି ଆହୁରି ଅଧିକାର ପାଇବା ନିମନ୍ତେ ଅଣ୍ଟା ଭିଡ଼ିବା । ପାଇବା ବଡ଼ ନୁହେଁ, ନେଇ ଆଣି ଥୋଇବା ବଡ଼ ।

୩. କଟକ ଜିଲ୍ଲାରେ ଏକ ଡାକ୍ତରଖାନାଠାରୁ ଦେଢ଼ ମାଇଲ ଦୂରରେ ଏକ ଗ୍ରାମରେ ଏକ ବ୍ୟକ୍ତିର ଡବଲ ନିମୋନିଆ ହୋଇ ତାହାର ସନ୍ନିପାତ ଅବସ୍ଥା ହେବା ବେଳେ ଗ୍ରାମବାସୀ ଗୋଟିଏ ବୈଦ୍ୟଙ୍କୁ ଡାକି ଆଣିଲେ । ବୈଦ୍ୟରାଜ ତା ଅବସ୍ଥା ଦେଖି କହିଲେ "ଆରେ ଏକ ଖାଡ଼େଙ୍ଗୀ ବାତ, ଏହା ଉପରେ ପାଣି ଢାଳ ।" ମାଠିଆକୁ ମାଠିଆ ପାଣି ଢଳା ହେଲା । ଅଳ୍ପ ସମୟ ମଧ୍ୟରେ ରୋଗୀ ଇହଧାମରୁ ବିଦାୟ ନେଲା । ବୈଦ୍ୟ କହିଲେ "ମୋତେ ଯଦି ଦୁଇଘଣ୍ଟା ଆଗରୁ ଆଣିଥାନ୍ତ, ମୁଁ ଯମ ହାତରୁ ତାକୁ ଛଡ଼େଇ ନେଇଥାନ୍ତି ।" ଦେଶର ଏହି ଅବସ୍ଥା । ମୂର୍ଖ ଦୋଷ ଯାଇ ନାହିଁ, ଅଥଚ ଆମର ଚିତ୍କାର, ଆମ ହାତରେ ରାଜ୍ୟଭାର ଦେଇ ଇଂରେଜ ଚାଲିଯାନ୍ତୁ, ଆମେ ଦେଶ ସମ୍ଭାଳିବା । ସାର କଥା, ଆମର ବଳ ଆମେ ନିଜେ କଳଣା କରି ନାହୁଁ । କଳଣା କଲେ ବୁଝନ୍ତୁ, ଭାରତବର୍ଷ ପରି ଗୋଟାଏ ବିଶାଳ ରାଜ୍ୟକୁ ଚଳାଇବା ନିମନ୍ତେ ଯେଉଁ ଯୋଗ୍ୟତା ପ୍ରୟୋଜନ, ତାହା ଆମର ହାସଲ ହୋଇ ନାହିଁ । ଆଗ ତାହା ହାସଲ କର, ସବୁ ଆସିବ । କେଞ୍ଚୁଡ଼ି ଫଳ ଛିଣ୍ଡେଇଲେ ଖାଇବା ସୁଖ ମିଳିବ ନାହିଁ କି ଦେଖିବା ସୁଖ ମିଳିବ ନାହିଁ ।

୪. ଓଡ଼ିଶାରେ ଯେତେ ସଙ୍ଗାତ, ଯେତେ ସଇ, ଯେତେ ଅଭଡ଼ା, ଯେତେ ମକର, ଯେତେ ବଉଳ, ଅର୍ଥାତ୍ ଯେତେ ଯେତେ ମହାପ୍ରସାଦ ବନ୍ଧୁ, ତେତେ କୌଣସି ଦେଶରେ ନାହିଁ । ଏ କଥା ମଧ୍ୟ ସତ ଯେ ଓଡ଼ିଶାରେ ଯେତେ ହଣାହଣି, ମରାମରି, କେଞ୍ଚା କେଞ୍ଚି,

ଚୁମୁଟା ଚୁମୁଟି, ଏହା କୌଣସି ଦେଶରେ ନାହିଁ । ଭ୍ରାତୃ ସଂଗ୍ରାମ (Civil war)ରେ ଓଡ଼ିଶା ସମଗ୍ର ପୃଥିବୀରେ ପ୍ରଥମ ସ୍ଥାନ ପାଇଛି, ଶଗଡ଼ ଚକ ଆକାରର ଗୋଟାଏ ମେଡେଲ ପାଇଛି । ଯାହା ଅନ୍ୟ ଦେଶରେ ନ ଦେଖିବ, ତାହା ଓଡ଼ିଶାରେ ଦେଖିବ । ନୂଆ ଓଡ଼ିଶାରେ ଆହୁରି କଣ ହେବ ଦେଖିବ । କିଛି କିଛି ସୂଚନା ମିଳିଲାଣି ।

୫. ଏ ଯୁଗ ସମାଲୋଚନାର ଯୁଗ, ଭଲ ହଉ, ମନ୍ଦ ହଉ, ଦୁଇପଦ କହିବାକୁ ହେବ । ଲେଖିବାକୁ ହେବ, ନ କହିଲେ, ଜିଭ କାଲୁଆ ମାରିଯିବ, ନ ଲେଖିଲେ, କଲମ ଆଖିରୁ ଲୁହ ବୋହିବ । କଟକରେ ନାରୀମାନେ ପାଉଡର ବୋଳି, ଚଟି ଜୋତା ମାଡ଼ି, ପ୍ରଦର୍ଶନୀ ଦେଖିବାକୁ ଗଲେ, ଏଥିରେ ସମାଲୋଚନା ବାହାରିଲା । କଲିକତାରୁ ମହିଳାମାନେ ଆସି ଥିଏଟର କଲେ, ଗରମ ଗରମ ଦି' କଥା ଲୋକଙ୍କ ମୁହଁରୁ ବାହାରିଲା । କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ମତ ଏହିକି - ପାଉଡର ବୋଳିବା ଦ୍ୱାରା ନାରୀମାନେ ଦେଶର ସଭ୍ୟତା ଓ ସୁରୁଚିର ପରିଚୟ ଦେଇଅଛନ୍ତି । ଆଉ ମଧ୍ୟ ସେମାନେ କହନ୍ତି, ବେଶ୍ୟା ନାଚର ସୃଷ୍ଟି କଣ ଆଜି ହେଲା ? ସ୍ୱର୍ଗରେ ନୃତ୍ୟ ହୁଏ । ବେଦବ୍ୟାସ ଲେଖିଯାଇଛନ୍ତି ଯେ କୁରୁକ୍ଷେତ୍ର ଯୁଦ୍ଧ ସମୟରେ ବେଶ୍ୟାମାନେ ଯୁଦ୍ଧକ୍ଷେତ୍ରକୁ ଯାଇଥିଲେ, ଯୁଦ୍ଧ କରିବାକୁ ନୁହେଁ, ମଙ୍ଗଳ ଗୀତ ଗାଇବାକୁ । କଟକରେ ବି ହିନ୍ଦୁ କି ମୁସଲମାନ ଯେ ସାମାଜିକ କ୍ରିୟାରୁ ବେଶ୍ୟାନାଚ ବାଦ୍ ଦେଇଥିଲେ, ତାହା ପଇସା ବଞ୍ଚାଇବା ପାଇଁ, ନୈତିକ ଉନ୍ନତି ନିମନ୍ତେ ନୁହେଁ । ତୃତୀୟ ଅଭିଯୋଗ, କଟକର ଲୋକେ ଥିଏଟର ଦେଖିବାକୁ ଯାଇ ପଇସା ଢାଳିଦେଇ ଆସିଲେ । ଏ ସମ୍ବନ୍ଧେ କେହି କେହି କହୁଛନ୍ତି, ରଙ୍ଗ ମହଲରେ ଓଡ଼ିଆଙ୍କ ରଙ୍ଗ ଦେଖି ନ ଥିଲେ କଲିକତାକୁ ଫେରିଯାଇ ସେମାନେ କହିଥାନ୍ତେ, ଓଡ଼ିଆମାନେ ବଦ୍‌ରସିକ । ଏହି କୈଫିୟଦ୍ ଶୁଣି କ'ଣ ଲୋକମାନଙ୍କ ରାଗ ଥଣ୍ଡା ହେବ ନାହିଁ ?

୨୦, ଫେବୃୟାରୀ ୧୯୩୫

## ।। ଏଗାର ।।

୧. କେତେବଡ଼ ଯୁଦ୍ଧଟାଏ ବନ୍ଦ ହୋଇଗଲା । ଓଡ଼ିଆମାନେ ବିନା ଯୁଦ୍ଧରେ ଜୟଲାଭ କଲେ । ଓଡ଼ିଶା ପ୍ରଦେଶର ସୀମା ଘେନି ଆନ୍ଧ୍ର ଓ ଉତ୍କଳ ମଧ୍ୟରେ ଯୁଦ୍ଧ ଲାଗିବାର ଆୟୋଜନ ହେଉଥିଲା । ଉଭୟ ପକ୍ଷରୁ ରଥ ଓ ଦଳବଳ ସଜ୍ଜିତ ହୋଇଥିଲା । ସାରଥିମାନେ ଅଶ୍ୱରଶି ଧରି ରଥ ଉପରେ ବସିଯାଇଥିଲେ । ଦୈବ ଉପରେ ବଳ ବାହାର ? ହଠାତ୍ ଗୋଟାଏ ଚଡ଼କ ପଡ଼ି ଆନ୍ଧ୍ରମାନଙ୍କ ବ୍ୟୂହଭଙ୍ଗ କରିଦେଲା । ଏ ଚଉକିଟା ଆସିଲା ପଶ୍ଚିମ ଦିଗରୁ - ବିଲାତରୁ । ବିଲାତର ପାର୍ଲିଆମେଣ୍ଟରେ ସରକାର ଘୋଷଣା କରିଦେଲେଣି ଯେ, ଜଏଣ୍ଟ କମିଟି ରିପୋର୍ଟରେ ଓଡ଼ିଶା ପ୍ରଦେଶର ଯେଉଁ ସୀମା ନିରୂପିତ ହୋଇଅଛି, ତାହା ବାହେଲ ରହିବ, ଅର୍ଥାତ୍ ଯେ ଯେତେ ମୁଣ୍ଡ କୋଡ଼ୁ, ଦାନ୍ତ କାମୁଡ଼ୁ,

ଚିତ୍କାର କରୁ, ବକ୍ଷରେ କରାଘାତ କରୁ, ସରକାର ଜଏଣ୍ଟ ପାର୍ଲିଆମେଣ୍ଟାରୀ କମିଟିଙ୍କ ପ୍ରସ୍ତାବିତ ସୀମା ପରିବର୍ତ୍ତନ କରିବେ ନାହିଁ । ଅର୍ଥାତ୍ ଜୟପୁର ଆସିବ, ପାରଳାଖେମଣ୍ଡିର ମାଳ ଓ ପାରଳା ତାଲୁକର ଏକ ଅଂଶ ଆସିବ, ବ୍ରହ୍ମପୁର ସହର ଆସିବ; ଓଡ଼ିଶା ପ୍ରଦେଶର ଆୟତନ ତେତ୍ରିଶ ହଜାର ବର୍ଗମାଇଲରୁ ଊଣା ହେବ ନାହିଁ । ପାରଳାଖେମଣ୍ଡିର ଓ ଜୟପୁରର ରାଜା ଉଭୟେ ଏ ସମ୍ବାଦରେ ଆନନ୍ଦିତ ହେବେ । ବ୍ରହ୍ମପୁରବାସୀମାନେ ଆଶ୍ୱସ୍ତ ହେବେ ।

ଓଡ଼ିଶା ପ୍ରଦେଶ ଯାହା ପାଇଛି ତେତିକି ତାହାର ନ୍ୟାଯ୍ୟ ପ୍ରାପ୍ୟ ନୁହେଁ । ବିସ୍ତୃତ ଓଡ଼ିଆ ଭୂମି ଓଡ଼ିଶା ବାହାରେ ରହିଯାଉଛି - କେତେକ ରହୁଛି ଛୋଟନାଗପୁରରେ, କେତେକ ରହୁଛି ମାନ୍ଦ୍ରାଜରେ, କେତେକ ରହୁଛି ବଙ୍ଗଦେଶରେ, କିଞ୍ଚିତ୍ ରହିଛି ମଧ୍ୟପ୍ରଦେଶରେ । ତଥାପି ଆନ୍ଧ୍ରଭାଇମାନେ ନିଜ ପ୍ରଦେଶର ବିଶାଳତା ପ୍ରତି ଲକ୍ଷ୍ୟ ନ କରି ଓଡ଼ିଆଙ୍କ ସଙ୍ଗେ କଳହରେ ପ୍ରବୃତ୍ତ ହୋଇଥିଲେ ଏବଂ ସେମାନଙ୍କର ଆଶା ଥିଲା ଯେ, ଗୋଟାଏ ଆନ୍ଦୋଳନ ଲଗାଇ ଦେଲେ, ବିଭୀଷିକା ଉଦ୍ଭାବନ କଲେ, ହୁଏତ ସରକାର ତ୍ରସ୍ତ ହୋଇ ଜଏଣ୍ଟ କମିଟିର ସୁପାରିସ ବଦଳାଇ ଦେବେ ତ, ତାହା ଯେ ନ ହେଲା ତାହା କେବଳ ଇଂରେଜ ସରକାରଙ୍କ ଦୃଢ଼ତା ଯୋଗୁଁ । ଯେଉଁ ସରକାର ଏତେ ବଡ଼ ସାମ୍ରାଜ୍ୟର ଶାସନଭାର ଗ୍ରହଣ କରିଅଛନ୍ତି, ସେ ସାମାନ୍ୟ ଆନ୍ଦୋଳନରେ ତ୍ରସ୍ତ ହୋଇ ମତ ପରିବର୍ତ୍ତନ କରନ୍ତେ, ଏହା ଯେଉଁମାନେ ଆଶା କରିଥିଲେ ସେମାନଙ୍କ ବୁଦ୍ଧିର କିପରି ପ୍ରଶଂସା କରିବା ? ସରକାର ଓଡ଼ିଶାର ସୀମା ସମ୍ବନ୍ଧେ ବଡ଼ ଅବିଚାର କରିଥିଲେହେଁ ଏଥର ଏହି ଦୃଢ଼ ମୀମାଂସା ହେତୁରୁ ଓଡ଼ିଆ ଜାତି ତାଙ୍କ ନିକଟରେ କୃତଜ୍ଞ । ଓଡ଼ିଆ ଜାତିର ଗୋଟାଏ ମାରକଦଶା ଓ ଝଡ଼ତୋଫାନ କଟିଗଲା, ଆକାଶ ନିର୍ମଳ ହୋଇଗଲା । ବର୍ତ୍ତମାନ ଓଡ଼ିଶା ପ୍ରଦେଶର ଭବିଷ୍ୟଦ୍ ଭାବିବାର ସମୟ । ଏ ସମୟରେ ଯେଉଁ ବୀଜ ବୁଣିବା ଭବିଷ୍ୟଦ୍‌ରେ ତହିଁର ଫଳ ମିଳିବ । ବିହାରୀଭାଇମାନେ କିପରି ଅଳ୍ପକାଳ ମଧ୍ୟରେ ତାଙ୍କ ଘର ସଜାଡ଼ି ନେଲେ, ଯାହାଙ୍କୁ କେହି କେହି 'ଛତୁଖୋର' ବୋଲି ଅବଜ୍ଞା କରୁଥିଲେ, ସେମାନେ ନିଜ ଗୋଡ଼ରେ ଠିଆ ହୋଇ ଆଜି ଦାଣ୍ଡରେ କିପରି ମୁଣ୍ଡ ଟେକିଲେ ତାହା ସ୍ମରଣ କରି ଓଡ଼ିଆଭାଇମାନେ ଆପଣା ଘର ସଜାଡ଼ନ୍ତୁ ।

ପୁଣି ଯେ ଗଜ ନିସ୍ତାରଣ ଲୀଳା ଦେଖାଗଲା ! ଗଜକୁ କୁମ୍ଭୀର କାମୁଡ଼ି ଧରି କଲବଲ କରୁଥିଲା, ଭଗବାନ୍‌ଙ୍କ ଚକ୍ର ଆସି କୁମ୍ଭୀରର ମସ୍ତକ ଛେଦନ କଲା, ଗଜ ତ୍ରାହି ପାଇଲା । ଏ ଲୀଳା ପୂର୍ବକାଳର କଥା । ବର୍ତ୍ତମାନ ଯେଉଁ ଲୀଳା ଘଟିଲା ଦେଖନ୍ତୁ । ଓଡ଼ିଶା ପ୍ରଦେଶର ସୀମା ଘେନି ଆନ୍ଧ୍ରଭାଇମାନେ ଭୀଷଣ ଆନ୍ଦୋଳନ ଲଗାଇଥିଲେ । ସେମାନଙ୍କର ମୂଳମନ୍ତ୍ର ଥିଲା ''ସୂଚ୍ୟଗ୍ର ପରିମିତ ଭୂମି ମାନ୍ଦ୍ରାଜ ପ୍ରଦେଶରୁ ଓଡ଼ିଶାକୁ ଯିବ ନାହିଁ । ଯାଆନ୍ତୁ ଓଡ଼ିଆମାନେ, ଋଷିକୁଲ୍ୟା ନଦୀରେ ସ୍ନାନ କରି ସେହି ପାଖରେ ରହନ୍ତୁ ।'' ଆନ୍ଧ୍ର ପ୍ରତିନିଧିମାନେ ବିଲାତରେ ସୁଦ୍ଧା ତୁମୁଳ ଆନ୍ଦୋଳନ କରିଥିଲେ । ଅବଶେଷରେ

ପାର୍ଲିଆମେଣ୍ଟର ଜଏଣ୍ଟ କମିଟି ଓଡ଼ିଶାର ସୀମା ନିର୍ଦ୍ଧାରଣ କରିଦେଲେ । ମାନ୍ଦ୍ରାଜରୁ ଜୟପୁର, ପାରଳାଖେମୁଣ୍ଡିର ଏକ ଅଂଶ ଓ ବ୍ରହ୍ମପୁର ଓଡ଼ିଶାର ଅନ୍ତର୍ଭୁକ୍ତ ହେବ, ଏହା ଆନ୍ଧ୍ରମାନଙ୍କୁ ଭଲ ଲାଗିଲା ନାହିଁ । ସେମାନେ କହିଲେ, ଜୟପୁର ଆମର, ପାରଳାଖେମୁଣ୍ଡି ଆମର, ବ୍ରହ୍ମପୁର ଆମର । ବିଶାଳ ମାନ୍ଦ୍ରାଜ ପ୍ରଦେଶର ଏହି ସାମାନ୍ୟ ଅଂଶ ସୁଦ୍ଧା ସେମାନେ ଛାଡ଼ିବେ ନାହିଁ ବୋଲି ଦୃଢ଼ପ୍ରତିଜ୍ଞ ହେଲେ । ସେମାନେ ପୁନଶ୍ଚ ଆନ୍ଦୋଳନ ଲଗାଇଲେ । ଓଡ଼ିଆମାନଙ୍କ ତଣ୍ଟି ଚିପିଦେବାର ଉପକ୍ରମ କରୁଥିଲେ । ଏହି ସମୟରେ ସରକାରଙ୍କ ଚିନ୍ତା ବିବାଦ ଛେଦନ କରିଦେଲା । ପାର୍ଲିଆମେଣ୍ଟରେ ସରକାର ସେଦିନ ଘୋଷଣା କରିଦେଲେ ଯେ, ଜଏଣ୍ଟ କମିଟି ଯେଉଁ ସୀମା ନିର୍ଦ୍ଧାରଣ କରିଅଛନ୍ତି, ତାହା ବହାଳ ରହିବ । ଅର୍ଥାତ୍ ଯେ ଯେତେ କହୁ, ଯେତେ କାନ୍ଦୁ, ଯେତେ ଆନ୍ଦୋଳନ କରୁ, ତହିଁର ପରିବର୍ତ୍ତନ ହେବ ନାହିଁ । ଚକ୍ରର ଛେଦନ ଫଳରେ ଜୟପୁର ଓ ପାରଳାଖେମୁଣ୍ଡିର ରାଜା, ପ୍ରଜା ଓ ବ୍ରହ୍ମପୁରବାସୀମାନେ ଆଶ୍ୱସ୍ତ ହେଲେ ଏବଂ ଓଡ଼ିଆ ଜାତି ତ୍ରାହି ପାଇଲା, ସୁଖର କଥା । ଓଡ଼ିଆ ଜାତି ଯାହା ଦାବି କରୁଥିଲା, ତାହାପାଇଁ ନ ଥିଲେ ନାହିଁ, ଓଡ଼ିଆ-ଭାଷୀ ବିସ୍ତୃତ ଭୂମି ମାନ୍ଦ୍ରାଜ, ବିହାର ଓ ବଙ୍ଗଳାର ଗଭର୍ଣ୍ଣମେଣ୍ଟଙ୍କ ଅଧୀନରେ ରହି ଯାଉଥିଲେହେଁ ଓଡ଼ିଆମାନେ ଇଂରେଜ ଗଭର୍ଣ୍ଣମେଣ୍ଟଙ୍କର ଏହି ମୀମାଂସା ନିମନ୍ତେ ତାଙ୍କଠାରେ କୃତଜ୍ଞ । ଝଡ଼ ତୋଫାନ କଟିଗଲା, ଆକାଶ ନିର୍ମଳ ହେଲା । ଏବେ ଓଡ଼ିଆ ଜାତି ତାହାର ଭବିଷ୍ୟତ୍ କଥା ଚିନ୍ତା କରୁ, ଘର ସଜାଡୁ, ବିବାଦ ବିସମ୍ବାଦ ପରିତ୍ୟାଗ କରୁ, ସଂସାରରେ କିପରି ମୁଣ୍ଡଟେକି ନିଜ ଗୋଡ଼ରେ ଠିଆ ହେବ, ପ୍ରାଣପଣେ ଚେଷ୍ଟା କରୁ । ବର୍ତ୍ତମାନ ଯେଉଁ ବୀଜ ବୁଣିବ, ଭବିଷ୍ୟତ୍‌ରେ ତହିଁର ଫଳ ଭୋଗ କରିବ । ଏତେବେଳେ ନିଶ୍ଚେଷ୍ଟ ବା ଉଦାସୀନ ହେଲେ ଭବିଷ୍ୟତ୍‌ରେ ନୟନୁ ବହିବ ନୀର ।

୨. ବିହାରୀଭାଇମାନେ କିପରି ଘର ସଜାଡ଼ି ଜାଣନ୍ତି ତହିଁର ଗୋଟିଏ ଉଦାହରଣ ଓଡ଼ିଆଭାଇମାନେ ଦେଖନ୍ତୁ । ଅନେକ ବାହାରର ବ୍ୟକ୍ତି ବିହାରରେ କଣ୍ଟ୍ରାକ୍ଟରୀ କର୍ମ କରୁଥିଲେ । କଣ୍ଟ୍ରାକ୍ଟରୀ କରି ବିହାରୀଭାଇମାନଙ୍କ ଅନ୍ତରେ ଭାଗ ବସାଉଥିଲେ । ବିହାରୀମାନେ ତ ଓଡ଼ିଆଙ୍କ ପରି ନିର୍ଜୀବ ନୁହନ୍ତି ଯେ, କବାଟ କଣରେ କାନ୍ଦି ହାତ ଲେଢ଼ିରେ ଲୁହ ପୋଛି କପାଳରେ କରାଘାତ କରନ୍ତେ । ସେମାନେ ଭାବିଲେ, କାହିଁକି ଏ କଠିନ କାଳରେ ବାହାରର ଲୋକ ଆସି ଆମ ପେଟକୁ ପଛକେ ଦାନା ନ ଥାଉ, ସେମାନେ ପୁଳିଏ ପୁଳିଏ ନେଇ ଆମକୁ ରାମାନନ୍ଦୀ ଚିତା ଦେଇ ଚାଲିଯିବେ ? ସେଦିନ ବିହାର କାଉନ୍‌ସିଲରେ ଏ ବିଷୟର ଆଲୋଚନା ହୋଇଥିଲା । ଜଣେ ବିହାରୀ ମେମ୍ବର ପ୍ରସ୍ତାବ କଲେ ବିହାରରେ ଯେଉଁ କଣ୍ଟ୍ରାକ୍ଟରମାନଙ୍କର ହେଡ୍ ଅଫିସ ଅଛି, ଆଗ ସେହିମାନଙ୍କୁ କର୍ମ ଦିଆଯାଉ ଓ ବିହାରୀ ଇଞ୍ଜିନିଅରମାନଙ୍କ ଦାବି ଅଗ୍ରଗଣ୍ୟ ହେଉ । ସରକାର ସେ ପ୍ରସ୍ତାବ ଗ୍ରହଣ କଲେ । ପଣ୍ଡିତ ଗୋଦାବରୀଶ ମିଶ୍ର କାଉନ୍‌ସିଲରେ ପାଟି

ବୁଝି ବସିବା ଲୋକ ନୁହନ୍ତି । ସେ କହିଲେ, ଓଡ଼ିଶାରେ ମଧ ଏହି ନିୟମର ପ୍ରବର୍ତ୍ତନ ହେଉ । ସରକାର ତାହା ମଧ ଗ୍ରହଣ କଲେ । ଗୋରୁଲାଞ୍ଜ ଧରି ଓଡ଼ିଶା ବୈତରଣୀ ପାର ହେଲା ସତ, କିନ୍ତୁ କାର୍ଯ୍ୟ କ୍ଷେତ୍ରରେ କଅଣ ଘଟିବ ସମୟରେ ତାହା ଦେଖାଯିବ । ଓଡ଼ିଆମାନଙ୍କ ପ୍ରତି ଏ କ୍ଷେତ୍ରରେ ଯେତେ ଅବିଚାର ହେଉଛି, ତହିଁର ଯେ ପରିବର୍ତ୍ତନ ଘଟିବ ଏ ଭରସା ହେଉ ନାହିଁ ।

୨୭, ଫେବୃୟାରୀ ୧୯୩୫

## ।। ବାର ।।

### ୧. ଶିଳ ଚକିରେ ବସନ୍ତ

ହାଡ଼ିବାଦ୍ୟ ସିନା କୋଶେ ଯାଏ, ତୁଣ୍ଡବାଦ୍ୟ ଯେ ଯାଏ ସହସ୍ର କୋଶ । ଏବେ ପରା ଗୋଟିଏ ହସ୍ତା ଉଠିଛି ଯେ, ଶିଳ ଚକିରେ ବସନ୍ତ ହେଉଛି । କିଏ କହୁଛି, ଆରେ ଭାଇ ! ମିଛପୁରରେ ଜଣକ ଶିଳରେ ବସନ୍ତ ହୋଇଥିଲା, ତା ସ୍ତ୍ରୀଟା ବଡ଼ ମୂର୍ଖ । ସେ ସେହି ଶିଳରେ ବେସର ବାଟିଲା । ସେ ବେସର ଯେଉଁ ତିଅଣରେ ପଡ଼ିଲା, ସେ ତିଅଣ ଖାଇ ତା' ବଂଶ ନିର୍ମୂଳ ହେଲା । ଏହିପରି ଗପ ଜଣକ ମୁହଁରୁ ଶୁଣି ଆଉ ଜଣେ ପ୍ରଚାର କରୁଛି । ପ୍ରତ୍ୟେକ ବ୍ୟକ୍ତି ନିଜ ବର୍ଣ୍ଣନାରେ କିଛି କିଛି ରଙ୍ଗ ଓ ପୁଟ ଚଢ଼ାଉଛନ୍ତି । କ୍ରମେ କ୍ରମେ ଲୋକେ ଏ ହୋ'ରେ ଏପରି ମାତିଗଲେଣି ଯେ, ଯାହା ଶିଳ ଚକିଙ୍କ ଭାଗ୍ୟରେ ବସନ୍ତ ନାହିଁ ସେ ମଧ ନିରିଖି ନିରିଖି ଦୁଇଟା ଗୋଟାଏ ବସନ୍ତ ଚିତା ବାହାର କରି ଲୋକଙ୍କୁ ଦେଖାଇ ଦେଉଛି । ପାଷାଣ ନିର୍ଜୀବ ପଦାର୍ଥ, ତହିଁରେ ବସନ୍ତ ହେଲା । ଲୋକେ ତ କହିବେ, କଳିକାଳରେ ଅସମ୍ଭବ କଥା ସମ୍ଭବ ହେଲା । ଯାହା ଅସମ୍ଭବ, ତାହା ସମ୍ଭବ ନୁହେଁ, ଏ କଥା ଏକା କଳିକାଳ ନୁହେଁ, ବିଜ୍ଞାନ ମଧ ପ୍ରମାଣ କରିଦେଇଛି । ଶିଳ ଚକିରେ ଯେ ବସନ୍ତ ହେଉଛି, ତାହା କିନ୍ତୁ ବିଜ୍ଞାନ ଅନୁସାରେ ନୁହେଁ, ମନୁଷ୍ୟମାନଙ୍କ ଉଦ୍ଭାବନ ଶକ୍ତି ଓ କଳ୍ପନା ବଳରେ । ଆମର ସୌଭାଗ୍ୟ ଯେ, ଆମ ଦେଶରେ ଶିଳ ଚକିରେ ବସନ୍ତ ହେଲା । ଆମେ ସିନା ବୁଝି ନ ପାରି କହୁଁ ଯେ, ସବୁ କଥାରେ ଆମ ଦେଶ ଅନ୍ୟ ସବୁ ଦେଶଙ୍କ ପଛରେ । ଦେଖିଲ ତ ଗୋଟାଏ କଥାରେ ହେଲେ ଆମେ ସମସ୍ତଙ୍କୁ ଟପି ଗଲୁଁ । ଆଉ କେଉଁ ଦେଶ କହିବ ଯେ, ସେ ଦେଶରେ ଶିଳ ଚକିରେ ମାଆ ବିଜେ କରିଛନ୍ତି ? ମାଆ ତ ଆସିଛନ୍ତି, ତାଙ୍କୁ ପଣା ଦିଆଯିବ କି ନା ଏକଥା କାଳିଶିଙ୍କୁ ପଚାରନ୍ତୁ । ନଚେତ୍ ମାଆ କୋପ କରିବେ, ତାଙ୍କ କୋପରୁ ନୂତନ ଓଡ଼ିଶା ପ୍ରଦେଶ ଗଢ଼ା ହେବା ବନ୍ଦ ହୋଇଯିବ; ଅନ୍ୟାନ୍ୟ ଦେଶର ଭାଇମାନେ ମିଥ୍ୟା କଥା ରଚନା କରି କହିବେ, ଓଡ଼ିଆମାନେ ନିଦା ମୂର୍ଖ ବୋଲି ସ୍ୱତନ୍ତ୍ର ପ୍ରଦେଶ ପାଇଲେ ନାହିଁ ।

## ୨. ଗଜପତି ଉଦ୍ଧାର

ଓଡ଼ିଶାର ସୀମା ନିର୍ଣ୍ଣୟ ଘେନି ଓଡ଼ିଆ ଓ ତେଲେଙ୍ଗା ଟଣାଓଟରା ଝିଙ୍କାଝିଙ୍କି ଲଗାଇଥିଲେ, ହଠାତ୍ ଦଉଡ଼ି ଛିଣ୍ଡିଗଲା । ଏହି ଘଟଣାକୁ ଏକ ଭକ୍ତ ଗଜେନ୍ଦ୍ର ମୋକ୍ଷଣ ସଙ୍ଗେ ତୁଳନା କରିଅଛନ୍ତି । ସେ କହୁଛନ୍ତି - ଦେଖ ଭଗବାନ୍‌ଙ୍କ ଲୀଳା, ଜଳ ମଧ୍ୟରେ କୁମ୍ଭୀର ଗଜର ଚରଣଟି କାମୁଡ଼ି ଧରି ତାକୁ କଲବଲ କଲା । ସହସ୍ର ବର୍ଷ ଚାଲିଗଲା । ଟଣାଓଟରା ଲାଗିଥାଏ । କୁମ୍ଭୀର ତା ପରାକ୍ରମ ଦେଖାଉଥାଏ, ଜଗନ୍ନାଥ ମହାବାହୁ ତ ଭକ୍ତର ଦୁଃଖ ଦେଖି ପାରନ୍ତି ନାହିଁ, ସେ ଗଜର ବିକଳ ଶୁଣି ସ୍ୱୟଂ ସେଠାକୁ ବିଜେ କଲେ ଏବଂ ସୁଦର୍ଶନ ଚକ୍ର ଦ୍ୱାରା କୁମ୍ଭୀରର ମୁଣ୍ଡ ଛେଦନ କରି ଗଜକୁ ଉଦ୍ଧାର କଲେ । ଇଂରେଜ ସରକାର ସେହିପରି ଆମର ଗଜପତି ରାଜା କୃଷ୍ଣଚନ୍ଦ୍ରଙ୍କୁ ଆନ୍ଧ୍ରମାନଙ୍କ ଦାଉରୁ ଉଦ୍ଧାର କଲେ । ବର୍ତ୍ତମାନ ଓଡ଼ିଶା ପ୍ରଦେଶର ସୀମାଭୁକ୍ତ ଜୟପୁରର ଅଧିପତି ଓ ପାରଳାର ଅଧିପତିଙ୍କୁ ପାଇ ଓଡ଼ିଆମାନଙ୍କ ଛାତି କୁଣ୍ଢେମୋଟ ହେଲାଣି । ସେମାନଙ୍କ ଆହ୍ଲାଦର କାରଣ, ସେ ଦୁଇ ରାଜ୍ୟର ଅଧୀଶ୍ୱରମାନେ ରାଜା ନୁହନ୍ତି, ମନୁଷ୍ୟ ପରି ଜଣେ ଜଣେ ମନୁଷ୍ୟ, ଅର୍ଥ ସେମାନଙ୍କର ଆରାଧ୍ୟ ଦେବତା ନୁହେଁ, ଦେଶ ନିମନ୍ତେ ସେମାନେ ମୁକ୍ତ ହସ୍ତରେ ରାଶି ରାଶି ଅର୍ଥବ୍ୟୟ କରିଅଛନ୍ତି । ସେମାନେ ଓଡ଼ିଶାର ଗୌରବ । ଏହି ହେତୁରୁ ଓଡ଼ିଆମାନେ ଏବେ ଖୁସି । ଜୟପୁର ରତ୍ନଗର୍ଭା । ଭଗବାନ୍ ସହାୟକ ହେଲେ ଜୟପୁରର ଉନ୍ନତି ସମଗ୍ର ଉତ୍କଳର ଉନ୍ନତିରେ ସହାୟତା କରିବ । ମନୀଷୀ ବିକ୍ରମଦେବ ଆଜହୁଁ Development କଥା ଚିନ୍ତା କରନ୍ତୁ । ତାଙ୍କର ଚେଷ୍ଟାରେ ବୃହତ୍ ଜୟପୁର ବୃହତ୍ତର ହେଉ, ସେ ତାହା ଦେଖି ଯାଆନ୍ତୁ । ପାରଳାଖେମଣ୍ଡି ବହୁତ ଅଗ୍ରସର ହୋଇଛି ସତ, ତଥାପି ଆହୁରି ଅଗ୍ରସର ହେବାର ପଥ ଅଛି । ପାଞ୍ଚ ବର୍ଷର ପିଲାଟି ସୁଦ୍ଧା କହୁଛି, ଜୟପୁର ଓ ସମଗ୍ର ପାରଳା ଓଡ଼ିଶା ବାହାରେ ରହି ଯାଇଥିଲେ ଓଡ଼ିଶା ନିମୁଣ୍ଡିଆ ମୂଳକ ହୋଇଥାଆନ୍ତା । ଉଭୟେ ଆସିଲେ, ଏହା ଓଡ଼ିଆ ଜାତିର ପରମ ଭାଗ୍ୟ । ଆମ୍ଭେମାନେ କୋଟିଏ ଓଡ଼ିଆପୁଅଙ୍କ ପକ୍ଷରୁ ଉଭୟଙ୍କୁ ବାହୁ ପ୍ରସାରି ଅଭିବାଦନ କରୁଅଛୁ - ''ଆସନ୍ତୁ, ଓଡ଼ିଆ ଜାତିକୁ ଅଗ୍ରସର କରାନ୍ତୁ ।'' ଏହି ଆନନ୍ଦରେ ଓଡ଼ିଆପୁଏ ଖଲ୍ଲିକୋଟର ଉଦୀୟମାନ ରାଜାସାହେବଙ୍କ ଉଦ୍ୟମ ଓ ପରିଶ୍ରମକୁ ମଧ୍ୟ କୃତଜ୍ଞତା ସହ ସୁମରୁ ଅଛନ୍ତି ଓ ସୁମରୁ ଥିବେ । ରାମଚନ୍ଦ୍ରଙ୍କ ଯୋଗୁଁ ଓଡ଼ିଶା ରାମରାଜ୍ୟ ହେଉ ।

୩. ଭ୍ରମ ମନୁଷ୍ୟର ପଛେ ପଛେ ଧାଇଁଥାଏ, ମନୁଷ୍ୟ ଟିକିଏ ଅସାବଧାନ ହେଲେ ମାଡ଼ିବସେ । ଯେଉଁ ଲୋକ ଓଲଟିପଡ଼ି ଭ୍ରମକୁ ଧକ୍କାଏ ଦେଇ ବିଦାୟ ଦିଏ, ତାକୁ ଲୋକଙ୍କ ପାଖରେ ଚିହ୍ନାଇ ଦିଏ, ସେ ମନୁଷ୍ୟପଣିଆ ଦେଖାଏ । ଯେ ଭ୍ରମକୁ ଚିହ୍ନି ସୁଦ୍ଧା ତାକୁ ଘୋଡ଼ାଇ ରଖେ, ଭ୍ରମ ତାର ସର୍ବନାଶ କରେ । ଭ୍ରମ ପରିହାରର ଗୋଟିଏ ଦୃଷ୍ଟାନ୍ତ ଶୁଣନ୍ତୁ - ମୁଜାଫରପୁର ଜିଲ୍ଲାର ଏକ ବିଶିଷ୍ଟ ବ୍ୟକ୍ତି ଶ୍ରୀଯୁକ୍ତ ଜନକଧାରୀ ପ୍ରସାଦ କଂଗ୍ରେସର ଜଣେ ନେତା ହୋଇଥିଲେ । ପନ୍ଦର ବର୍ଷକାଳ କଂଗ୍ରେସ ଭିତରେ ରହି

କଂଗ୍ରେସର ଲୀଳା ଖେଳା ଦେଖି, କଂଗ୍ରେସର ଆନ୍ଦୋଳନର ଫଳ ଚାଖି ଚାଖି ଏବେ ସେ କଂଗ୍ରେସ ଛାଡ଼ିଲେଣି । ସେ ପ୍ରକାଶ୍ୟ ଘୋଷଣା କରିଅଛନ୍ତି, କଂଗ୍ରେସର ଫଳ ପିତା । ସେ କହନ୍ତି, ଅସହଯୋଗ ଆନ୍ଦୋଳନ ଯେ ନିଷ୍ଫଳ ହେଲା, ତହିଁର କାରଣ, ତାହା ଅବାଟ । ତାହା ଯଦି ବାଟ ହୋଇ ଥାଆନ୍ତା, ତେବେ ତାହା ନିଷ୍ଫଳ ହୋଇ ନ ଥାନ୍ତା । ୧୯୨୦ ସାଲରେ କଲିକତାରେ କଂଗ୍ରେସର ବୈଠକ ହୋଇଥିଲା, ସେଠାରେ ଆନିବେସାନ୍ତ କହିଥିଲେ, ଅସହଯୋଗ ଆନ୍ଦୋଳନ କର ନାହିଁ । ରାଜନୀତିରେ ସେ ଖୁବ୍ ବିଜ୍ଞ ଥିଲେ । ତାଙ୍କ କଥା ନ ମାନି ଆମ୍ଭେମାନେ ଅସହଯୋଗ ଆନ୍ଦୋଳନରେ ମାତିଲୁଁ । କିଛି ଫଳ ହେଲା ନାହିଁ । ଶ୍ରୀଯୁକ୍ତ ଜନକଧାରୀ ପ୍ରସାଦ ଏହି ଅନୁଭବ ଘୋଷଣା କରି କଂଗ୍ରେସ ସହିତ ସମ୍ପର୍କ ତୁଟାଇ ଦେଇଅଛନ୍ତି । ଏହି ଅନୁଭବ ଯେ କେବଳ ତାଙ୍କର, ଏହା ନୁହେଁ । ଦେଶର ଅନେକ ଚିନ୍ତାଶୀଳ ବ୍ୟକ୍ତିଙ୍କର ଏହି ଅନୁଭବ । ସେଥିପାଇଁ ମାଇପେ ଢଗ ବୋଲନ୍ତି "ଶିଖିଲି କାହିଁ ? ନା, ଠିକିଲି ଯହିଁ ।"

## ୪. କଟକବାସୀଙ୍କ ଅନୁଭବ

ବର୍ଷକୁ ବର୍ଷ ବର୍ଷାଦିନରେ କାଠଯୋଡ଼ୀରେ ବଢ଼ିପାଣି ଆସେ, ଥଳ କୂଳ ଭାଙ୍ଗେ, କାଠଯୋଡ଼ୀ କୂଳର ପଥରବନ୍ଧ ସହସ୍ର ସହସ୍ର ନରନାରୀଙ୍କ ଶ୍ରୀଚରଣ ଦ୍ୱାରା ପବିତ୍ର ହୋଇଯାଏ । ଖରାଦିନ ହେଲେ ବାଲିରୁ ନିଆଁ ବାହାରେ, ପାଣି ବିନା ଲୋକେ ଛଟପଟ ହୁଅନ୍ତି ? ଅନୁଭବୀ ବିନା ସେ କଷ୍ଟ କିଏ ବର୍ଣ୍ଣି ପାରିବ ? ପୁଣି, ବର୍ଷା ଦିନକୁ ସେ କଥା ପାସୋର ଯାଏ । ବର୍ଷେ ବର୍ଷେ ବିହାର ଓଡ଼ିଶା କାଉନ୍ସିଲରେ ବଜେଟ ଆଲୋଚନା ହେବାବେଳେ, କାହା ମୁହଁରୁ ବାହାରିପଡ଼େ, କଟକ ସହରରେ ଜଳ ଭଲ ନ ଥିବାରୁ ଲୋକମାନଙ୍କୁ ଭାରି କଷ୍ଟ ହେଉଛି, ସରକାର ଟଙ୍କା ଖରଚ କରି ଜଳକଳ କରିଦିଅନ୍ତୁ । ଏ ବର୍ଷ ମଧ୍ୟ ଜଣେ ଓଡ଼ିଆ ମେମ୍ବର ସେ କଥା କହିଥିଲେ । ସରକାର କହିଲେ, ବାବୁ ହୋ, ତୁମ ନିଜଗୁଣ ତ ତୁମେ ପାସୋରି ପକାଉଛ ? ଆମେ ଯେତେବେଳେ ମ୍ୟୁନିସିପାଲିଟିକୁ ଦଶ ଲକ୍ଷ ଟଙ୍କା ଯାଚିଲୁଁ, ମ୍ୟୁନିସିପାଲିଟି ତାହା ନେଲା ନାହିଁ, କହିଲା, କଟକରେ ଜଳ କଳ ହେବ ନାହିଁ । କାରଣ ଜଳ ନିମନ୍ତେ ଲୋକଙ୍କୁ ପୁଣି ନୂଆ ଟିକସ ଦେବାକୁ ପଡ଼ିବ । ଏତେବେଳେ କହୁଛ, ସରକାରଙ୍କ ହାତରେ ମ୍ୟୁନିସିପାଲିଟି ଅଛି, ସରକାର ଜଳକଳ ବସାଇ ଦିଅନ୍ତୁ । ସରକାର ତାହା କରିବେ ନାହିଁ । ମ୍ୟୁନିସିପାଲିଟି ଟଙ୍କା ଖରଚ କରି ଜଳକଳ ବସାଇଲେ ହୋଇପାରେ । ମ୍ୟୁନିସିପାଲିଟି ଖରାଦିନ କଥା ବର୍ଷାଦିନରେ ପାସୋରି ପକାଇଥିଲା । ଲୋକେ ଛଟପଟ ହେଉଥିଲେ । କିନ୍ତୁ ଲୋକେ ବଞ୍ଚି ରହିଲେ, ମ୍ୟୁନିସିପାଲିଟିର ତଣ୍ଟି ଶୁଖିଗଲା, ସେ ମଲା । ତାର ପୁନର୍ଜନ୍ମ ହେବ, ଟଙ୍କା ହେବ, ଲୋକେ ଟିକସ ଦେବାକୁ ରାଜି ହେବେ, ତେବେ ଯାଇ କଟକରେ ଜଳକଳ ହେବ । ଷାଠିଏ ମହଣ ଘିଅ ହେବ, ତେବେ ଯାଇ ରାଧା ନାଚିବେ ? ଏହି ସମୟରେ ମ୍ୟୁନିସିପାଲିଟି ଯେବେ ସରକାରଙ୍କଠାରୁ ଋଣ ନେଇ ଜଳକଳ ବସାଇଦିଏ, ତେବେ

ଲୋକେ ମନେ ରଖିବେ, ସରକାର କଟକ ମ୍ୟୁନିସିପାଲିଟିକୁ ହାତକୁ ନେବାରୁ ଜଳକଷ୍ଟର ନିବାରଣ ହେଲା । ଜଳ କଳ ହେଲେ ସହରର ସ୍ୱାସ୍ଥ୍ୟର ଉନ୍ନତି ହୁଅନ୍ତା, ରୋଗ କମିଯାଆନ୍ତା, ଜଳମୁନ୍ଦାଏ ପିଇ ଲୋକେ ତୃପ୍ତ ହୁଅନ୍ତେ, କାଠଯୋଡ଼ୀ ପାଣିରେ ବିଣ୍ଡା ବିଣ୍ଡା ହୋଇ ଯାହା ଭାସେ, ତାକୁ ଆଡ଼େଇ ଦେଇ ଲକ୍ଷ ଲକ୍ଷ କୀଟଙ୍କ ଦାଉରୁ ଜୀବନରକ୍ଷା କରିହୁଅନ୍ତା ।

୬, ମାର୍ଚ୍ଚ ୧୯୩୫

## ।। ତେର ।।

### ୧. ରେଭେନ୍ସା ବାଳିକା ବିଦ୍ୟାଳୟର ନୂଆ କଳେବର

''କି ଯୋଗେ ପାହିଲା ତାମସୀ ରଜନୀ
ନୂଆ ନୂଆ କଥା ଦେଖିଲି ସଜନୀ
ଦେଖି ତାହିଁ ମନ ଗଲା ମୋର ମାନି ।''

ସେଦିନ ଗଙ୍ଗା ମନ୍ଦିର ତଟେ, ହରିବଲ୍ଲଭଙ୍କ ମୃଦ୍‌ଘଟେ, ଶନିଶ୍ଚର ବାସରେ, ବିଶିଷ୍ଟ ଜନମଜଲିସରେ ଓଡ଼ିଶାର ରାଜଧାନୀ ପ୍ରପଞ୍ଚେ, ସୁସଜ୍ଜିତ ରଙ୍ଗମଞ୍ଚେ, ଭବିଷ୍ୟତ୍‌ର ସୁଜନନୀ, ସୁକୁମାରୀ, ସୁବାଳିକାମାନେ ଯେଉଁ ଅଭିନବ ଅଭିନୟ ଦେଖାଇଲେ, ମର୍ତ୍ତ୍ୟଧାମରେ ତାହାର ପଟାନ୍ତର ନାହିଁ ? ବିଦ୍ୟାଳୟଟା ଖୁବ୍ ଉତୁରି ପଡ଼ିଲା, ଯେତେବେଳେ ଶ୍ରୀମତୀ ବିଦ୍ୟାଳୟର ପାଳନୀଙ୍କ ଶ୍ରୀମୁଖରୁ ଅମୃତର ଧାରା ବହୁଥାଏ, ସେତେବେଳେ ସେ ଓଡ଼ିଆମାନଙ୍କର ଗୁଣ କୀର୍ତ୍ତନ କରିବା ଉଦ୍ଦେଶ୍ୟରେ କେତେ କଥା କହୁଥାନ୍ତି, ସେଥିରୁ ଆମ୍ଭେମାନେ ବୁଝୁଥାଉଁ ଯେ, ଓଡ଼ିଆଗୁଡ଼ାକ ଯେପରି ଗମାର ଓ ମୂର୍ଖ ଥିଲେ, ସେହିପରି ମୂର୍ଖ ରହିଅଛନ୍ତି, ଝିଅମାନଙ୍କୁ ପାଠ ପଢ଼ାଇବାର ଆଗ୍ରହ ସେମାନଙ୍କର ମନରେ ପକ୍କ ହୋଇ ନାହିଁ । ଓଡ଼ିଆ ଝିଅମାନଙ୍କ ନିମନ୍ତେ ସ୍କୁଲଟା ହୋଇଥିଲେହେଁ ସେମାନେ ତହିଁର ଫଳ ଭୋଗ କଲେ ନାହିଁ, ଖ୍ରୀଷ୍ଟାନ୍ ବାଳିକାମାନେ ନ ଥିଲେ ବିଦ୍ୟାଳୟର ଫାଟକରେ ବୃହତ୍ ତାଲା ପଡ଼ିଥାଆନ୍ତା । କେତେବେଳେ ଆମ୍ଭମାନଙ୍କ ଛାତି ଫୁଲିଉଠି କୁଣ୍ଢେମୋଟ ହୋଇ ଯାଉଥାଏ । ହେ ମୂର୍ଖ ଓଡ଼ିଆମାନେ ! ବାଳିକା ବିଦ୍ୟାଳୟର ନୂତନ କଳେବର ହୋଇଛି । ଏଣିକି ଆମେ ସବୁ ବୁଢ଼ାଯାକ ସ୍ୱର୍ଗକୁ ବା ଆମର ଉପଯୁକ୍ତ ଅନ୍ୟ ପୁରକୁ ଗଲେ ଏହି ବିଦ୍ୟାଳୟର ବାର୍ଷିକ ସଭାର ବିବରଣୀ ଆମ୍ଭମାନଙ୍କ ନିକଟକୁ ଟେଲିଫୋନ୍ ଦ୍ୱାରା ପ୍ରେରିତ ହେବାର ବ୍ୟବସ୍ଥା କରାଯାଉ । ନଚେତ୍ ଆମେ ସେପୁରରେ ଆନ୍ଦୋଳନ ଲଗାଇଦେବା ।

ଆଉ ଗୋଟାଏ କଥା କହିବାକୁ ଅଛି । ଶ୍ରୀମତୀ ଯେତେବେଳେ ତାଙ୍କ ରିପୋର୍ଟ ପଢୁଥାନ୍ତି, ବାରମ୍ୱାର ସାତ ବାର କହୁଥାନ୍ତି, 'ମିସ୍ ଦାସ' । ମାନନୀୟ କମିସନର ସାହେବ

କଅଣ ଭାବୁଥିବେ କେଜାଣି, କେତେଗୁଡ଼ିଏ ମୂର୍ଖ ଓଡ଼ିଆ ତହିଁର ମର୍ମ ବୁଝିପାରି କହୁଥାନ୍ତି, ମିସ୍ ଦାସଙ୍କ ଜୀବନଚରିତର ଏକ ଅଧ୍ୟାୟ ପଢ଼ାଯିବାର ଗୋଟାଏ ମାହେନ୍ଦ୍ର ଯୋଗ ମିଳିଗଲା । ମିସ୍ ଦାସ ସେ ଏ ବିଦ୍ୟାଳୟ ନିମନ୍ତେ ବହୁତ ଯତ୍ନ କରିଥିଲେ, ଏହା ଭୁଲି ନାହୁଁ । କିନ୍ତୁ ସେ ଯେ ଏକାଧାରରେ ଏ ବିଦ୍ୟାଳୟର ଜନ୍ମଦାତ୍ରୀ, ଧାତ୍ରୀ, ଲାଳୟିତ୍ରୀ, ପାଳୟିତ୍ରୀ, ଭାଷୟିତ୍ରୀ ଏହା ବୋଧହୁଏ ସାତତାଳ ପଙ୍କରେ ପୋତି ହୋଇ ପଡ଼ିଥିଲା, ତାଙ୍କ ଭଗିନୀ ଶ୍ରୀମତୀ ଲେଡ଼ି ପ୍ରିନ୍ସିପାଲ ଉଣ୍ଡାଳି ଉଣ୍ଡାଳି Research ଫଳରେ ତାହା ବାହାର କଲେ । ଏହି ବାଳିକା ବିଦ୍ୟାଳୟରୁ ପରା ଓଡ଼ିଆ ବାଳିକାମାନେ ମଧ୍ୟବୃତ୍ତ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାର ପଚାଶ ବର୍ଷ ହୋଇଗଲାଣି ? ଇନ୍‌ଫାଣ୍ଟ କ୍ଲାସରୁ ହାଇସ୍କୁଲ ଗଢ଼ା ହୋଇଥିଲା, ଏହା କଅଣ ଇତିହାସରେ ନୂତନ କଳେବର ?

## ୨. ସମ୍ରାଟ୍‌ଙ୍କ ଜୁବୁଲି

ବଡ଼ ସୁଖର କଥା, ମହାମାନ୍ୟ ସମ୍ରାଟ୍‌ଙ୍କ ରାଜତ୍ୱ ୨୫ ବର୍ଷ ପୂର୍ଣ୍ଣ ହୋଇ ଆସୁଛି । ଆମ୍ଭେମାନେ ତାଙ୍କର ରୌପ୍ୟ ଜୁବୁଲି ଦେଖିବୁଁ । ଜୁବୁଲି ଶବ୍ଦର ଅର୍ଥ କୌଣସି ପ୍ରସିଦ୍ଧ ଘଟନାର ପଞ୍ଚାଶତ୍ ସାମ୍ବତ୍ସରିକ । ମହାରାଣୀ ଭିକ୍ଟୋରିଆଙ୍କର ଦୁଇଟି ଜୁବୁଲି ଆମ୍ଭେମାନେ ଦେଖିଥିଲୁଁ । ୧୮୮୭ ଶାଳରେ ତାଙ୍କର ରାଜତ୍ୱ ୫୦ ବର୍ଷ ପୂର୍ଣ୍ଣ ହେବାରୁ ସୁବର୍ଣ୍ଣ ଜୁବୁଲି ଓ ୧୮୯୭ ଶାଳରେ ତାଙ୍କର ରାଜତ୍ୱର ୬୦ ବର୍ଷ ପୂର୍ଣ୍ଣ ହେବାରୁ ହୀରକ ଜୁବୁଲି ହୋଇଥିଲା । ହୀରକ ଜୁବୁଲି ପରେ ମହାରାଣୀ ଆହୁରି ଚାରି ବର୍ଷ ରାଜତ୍ୱ କରିଥିଲେ । ତାଙ୍କ ପୁତ୍ର ସପ୍ତମ ଏଡ୍‌ଆର୍ଡ୍ ୧୨ ବର୍ଷ ମାତ୍ର ରାଜତ୍ୱ କରିଥିଲେ । ତାଙ୍କ ରାଜତ୍ୱ କାଳରେ ଜୁବୁଲି ହୋଇ ପାରି ନ ଥିଲା । ବର୍ତ୍ତମାନ ତାଙ୍କର ପୌତ୍ର ପଞ୍ଚମ ଜର୍ଜଙ୍କର ରୌପ୍ୟ ଜୁବୁଲି ହେଉଛି । ସେ ସ୍ୱର୍ଗରୁ ଭୂରି ଭୂରି ଆଶୀର୍ବାଦ କରୁଥିବେ । ଭାରତରେ ମଇ ମାସ ୫ ଓ ୬ ତାରିଖରେ ରୌପ୍ୟ ଜୁବୁଲି ଉତ୍ସବ ପ୍ରତିପାଳିତ ହେବ । ସ୍ଥାନେ ସ୍ଥାନେ ଉତ୍ସବ ହେବ । ସ୍କୁଲର ଛାତ୍ର-ଛାତ୍ରୀମାନେ ଏ ଉତ୍ସବରେ ଯୋଗ ଦେବେ । ଏ ଉତ୍ସବର ସ୍ମରଣାର୍ଥ ହାସପାତାଳମାନ ନିର୍ମିତ ହେବ । ସ୍ୱୟଂ ସମ୍ରାଟ୍ ଏହି ଇଚ୍ଛା ପ୍ରକାଶ କଲେ । ନାଚତାମସା ଆତସବାଜିରେ ଟଙ୍କାଗୁଡ଼ାକ ଅପବ୍ୟୟ କରା ନ ଯାଇ ଭଲ କାମ କରାଯାଉଅଛି । ଏହି ଜୁବୁଲି ଉପଲକ୍ଷରେ ସରକାର ନୂତନ ଷ୍ଟାମ୍ପ ବା ଡାକଟିକଟ ଛପାଇ ବିକ୍ରି କରିବେ । ପୃଥିବୀରେ ବ୍ରିଟିଶ ସାମ୍ରାଜ୍ୟ ଅନ୍ତର୍ଗତ ସମଗ୍ର ଦେଶରେ ଭିନ୍ନ ଭିନ୍ନ ପ୍ରକାର ଷ୍ଟାମ୍ପ ଛପା ହେବ । ଅନେକ ଲୋକ ତାହା ସଂଗ୍ରହ କରି ରଖିବେ । ଭବିଷ୍ୟତ୍‌ରେ ତାହା ସ୍ମରଣୀୟ ଓ ଦୁଷ୍ପ୍ରାପ୍ୟ ସମ୍ପତ୍ତି ବୋଲି ଗଣ୍ୟ ହେବ । ସ୍କୁଲର ଛାତ୍ରଛାତ୍ରୀମାନେ ଆଜହୁଁ ଜୁବୁଲି ଗୀତ ରଚନା କରନ୍ତୁ । ଶୁଣିଲୁଁ, କଂଗ୍ରେସ ଭକ୍ତମାନେ ଏ ଉତ୍ସବରେ ଯୋଗ ଦେବେ ନାହିଁ । କିନ୍ତୁ ଯଦି ପ୍ରୀତିଭୋଜନକୁ ନିମନ୍ତ୍ରିତ ହୁଅନ୍ତି ଶିଷ୍ଟାଚାରାନୁରୋଧରେ ଅବଶ୍ୟ ତାହା ଅପରିହାର୍ଯ୍ୟ ହେବ ।

## ୩. ସୁବର୍ଣ୍ଣ ପଦକ-ପ୍ରାପ୍ତି

ଏ ଦେଶରେ ଧର୍ମ ବରାବର ଅଛି, କିନ୍ତୁ ଧର୍ମଘଟ ବା ଧର୍ମହଟ ନ ଥିଲା । ତାହା ଏ ଦେଶ ସଭ୍ୟତା ଆଲୋକପ୍ରାପ୍ତ ଦେଶମାନଙ୍କରୁ ଏବେ ଶିଖିଲା । ଯେଉଁ କମ୍ପାନୀ ବା ବ୍ୟକ୍ତିବିଶେଷଙ୍କଠାରୁ ମୂଲିଆମାନେ ଅନ୍ନ ପାଆନ୍ତି, ସେହିମାନଙ୍କ ସଙ୍ଗେ ଯଦି ମଜୁରି କଥା ବା ଅନ୍ୟ କଥା ଘେନି ଅପଡ଼ ହୁଏ, ତେବେ ମୂଲିଆମାନେ ମେଳି ବାନ୍ଧି ଧର୍ମର ଦୁହାଇ ଦେଇ ଧର୍ମଘଟ ବା ଧର୍ମକୁ ଆଖିଠାର ମାରି ଧର୍ମଘଟ କରନ୍ତି । ଭାରତବର୍ଷରେ ଗତ କିଛି ବର୍ଷ ମଧ୍ୟରେ ବଡ଼ ବଡ଼ ଧର୍ମଘଟ ହୋଇଯାଇଅଛି । ଅନେକ ସ୍ଥଳରେ ମୂଲିଆମାନେ ପର ବୁଦ୍ଧିରେ ପଡ଼ି ଧର୍ମଘଟ କରନ୍ତି, ପଛେ ଅନୁତାପ କରନ୍ତି । କଟକ ମ୍ୟୁନିସିପାଲିଟିର ମୂର୍ଖ ମେହେନ୍ତରମାନଙ୍କର ସେଦିନ ସେହି ଦଶା ଘଟିଲା । ସେଦିନ ସେମାନେ ପରବୁଦ୍ଧିରେ ପଡ଼ି କାମ ବନ୍ଦ କରିଦେଲେ, ପାଇଖାନାମାନ ସଫା ହେଲା ନାହିଁ, ନିରୀହ ନଗରବାସୀମାନେ ଅକାରଣ ଅସୁବିଧା ଭୋଗ କଲେ । ସୁଖର ବିଷୟ ଯେ, ମେହେନ୍ତରମାନେ ଶୀଘ୍ର ନିଜର ଭ୍ରମ ବୁଝିପାରି କାମକୁ ଫେରିଆସିଲେ ଏବଂ ଯେଉଁମାନେ ସେମାନଙ୍କୁ କୁମନ୍ତ୍ରଣା ଦେଇଥିଲେ, ସେମାନଙ୍କୁ ଓ ସେମାନଙ୍କ ପିତୃପୁରୁଷମାନଙ୍କୁ ଚକ୍‌ଚକିଆ ସ୍ୱର୍ଣ୍ଣପଦକ ପୁରସ୍କାର ଦେଲେ । ମନ ବୋଧ ହେଲା ତ ?

ଆଉ ଗୋଟିଏ କଥା । ଯେତେବେଳେ ନଗରବାସୀମାନେ ଧର୍ମଘଟ ହେତୁରୁ ଅସୁବିଧା ଭୋଗ କରୁଥାଆନ୍ତି, କେତେକ ବୁଦ୍ଧିମାନ୍ ବ୍ୟକ୍ତି କୌତୁକ ଅନୁଭବ କରୁଥାନ୍ତି, ପୁଣି କେତେକ ବ୍ୟକ୍ତି ସମ୍ବାଦପତ୍ରମାନଙ୍କୁ ମିଥ୍ୟା ସମ୍ବାଦ ଯୋଗାଇ ନିଜକୁ ଟାଳ କରୁଥାନ୍ତି । ଏମାନଙ୍କ ମନୁଷ୍ୟତ୍ୱକୁ ଧନ୍ୟ, ମହତ୍ତ୍ୱକୁ ଧନ୍ୟ । କି ଉଦ୍ଦେଶ୍ୟରେ ମେହେନ୍ତରମାନଙ୍କୁ ପ୍ରବର୍ତ୍ତାଇ କାମ ବନ୍ଦ କରାଯାଇଥିଲା, ତାହା ତ ଲୁଚି ରହିଲା ନାହିଁ, ରାଜା ପ୍ରଜା ସମସ୍ତେ ଜାଣିଲେ ।

## ୪. ଆସାମୀ ବଳିଗଲେ ଓଡ଼ିଆଙ୍କୁ

ଏକ ସମୟରେ ଯେପରି ଆମେମାନେ ଥିଲୁଁ 'ଓଡ଼ିଆ ମେଣ୍ଢା' ସେହିପରି ଆମର ଲୋକମାନେ ଥିଲେ 'ଜଙ୍ଗଲୀ ଆସାମୀ' । ଆମେ ଯେଉଁ ମେଣ୍ଢା ଥିଲୁଁ, ସେହି ମେଣ୍ଢା ଅଛୁଁ, କେବଳ ସ୍ୱର ଟିକିଏ ବଦଳିଛି । ଆସାମୀ ଆଉ ଜଙ୍ଗଲୀ ନୁହନ୍ତି, ଅସଭ୍ୟ ନୁହନ୍ତି, ମୂର୍ଖ ନୁହନ୍ତି, ମୂକ ନୁହନ୍ତି, ବହୁତ ଆଗେଇ ଗଲେଣି । ସେମାନେ ଏବେ ଜଣେ ପଣେ । ସେଦିନ ସେମାନେ ତାଙ୍କ କାଉନ୍‌ସିଲରେ ଧୂମ୍ ଲଗେଇ ଦେଲେ, ବାହାରର ଲୋକ କାହିଁକି ଆସାମରେ ଚାକିରି ପାଉଛନ୍ତି । କଣ୍ଟ୍ରାକ୍ଟର ହେଉଅଛନ୍ତି । ଆମ ଦେଶର ଲୋକଙ୍କର, କଅଣ ପେଟ ନାହିଁ ? ଆମ ଅନ୍ନରେ ଯଦି ପର ଭାଗ ବସାଇବେ, ଆମେ କଅଣ ପବନ ଆହାର କରି ମାଳି ଜପିବୁ ? ଆମକୁ ସରକାରୀ କାର୍ଯ୍ୟ ଦିଅ, ଆମକୁ କଣ୍ଟ୍ରାକ୍ଟ ଦିଅ, ରେଳ ବିଭାଗକୁ ଲେଖ, ସେ ବିଭାଗ ଆମକୁ କାମ ଦିଅନ୍ତୁ । ସରକାର

'ତଥାସ୍ତୁ' କହି ସେମାନଙ୍କୁ ପ୍ରବୋଧ ଦେଲେ । ଧନ୍ୟ ଆସାମୀଭାଇ ! ଆସାମ ଏକ କାଳରେ ବନଜଙ୍ଗଲ ପରିପୂର୍ଣ୍ଣ ଥିଲା, ଇଂରେଜମାନେ ଚା' ବଗିଚା କରି ଅନ୍ୟ ପ୍ରଦେଶମାନଙ୍କରୁ କୁଲି ଆଣି ଚା' ଚାଷ କରାଇଲେ । କ୍ରମେ ବାଟଘାଟ ଫିଟିଲା, ରେଳ ହେଲା, ଦେଶରେ ଲେଖାପଢ଼ା ହେଲା, ଏବେ ଆସାମୀ ନିଜ ଗୋଡ଼ରେ ଠିଆ ହେଲେ । ଆମ ଓଡ଼ିଆଭାଇମାନେ ଛିଙ୍କୁଥା, ଫୁଙ୍କୁଥା, ଝାଙ୍କୁଥା, ସାଇପଡ଼ିଶାଙ୍କ ଶିରୀ ନ ଦେଖି ଦି' ପଦ ଲେଖାଏଁ ହାଙ୍କୁଥା ।

## ୫. ନାହିଁ, ନାହିଁ, ମ୍ୟୁନିସିପାଲିଟି ଆସି ନାହିଁ

କଟକ ମ୍ୟୁନିସିପାଲିଟିକୁ ସରକାର ଫେରାଇ ଦେଉଅଛନ୍ତି, ଏ ଖବର ସତ୍ୟ ନୁହେଁ । ସରକାର ଏପରି ଗୋଟାଏ ଭୁଲ କରିବା ସମ୍ଭବ ନୁହେଁ । ମ୍ୟୁନିସିପାଲିଟି ଶଢ଼ିପଚି ଯାଉଥିଲା, ତହିଁରେ ପୋକ ପଡ଼ି ଯାଇଥିଲା, ସରକାର ତାକୁ ନିଜ ହାତକୁ ନେଇ, ମଲମ ଲଗାଇ ଘା' ଶୁଖାଉଛନ୍ତି, ଘା' ଶୁଖି ନାହିଁ । ଏ ସମୟରେ ଛାଡ଼ିଦେଲେ ପୂର୍ବେ ଯେଉଁ'ଅବସ୍ଥା ଘଟିଥିଲା ତଦପେକ୍ଷା ଆହୁରି ଖରାପ ଅବସ୍ଥା ଘଟିବ । ମାସ ଷୋଳଟା ମଧ୍ୟରେ କଟକର ହାଉଆ ବଦଳିଗଲା ? ଜଣେ କିଏ କହୁଥିଲା, ଏଥର ଭଲ ଭଲ ଲୋକ ମ୍ୟୁନିସିପାଲିଟିରେ ପଶି ପାରନ୍ତି । ଏହି ଭଲ ଭଲ ଲୋକ ପୂର୍ବେ ଥିଲେ, ନା ଏହି ଷୋଳ ମାସ ଭିତରେ ଜନ୍ମ ହେଲେ ? ପୂର୍ବେ ଯଦି ଥିଲେ, ପୂର୍ବେ କେଉଁ ମନ୍ଦିରରେ ନିଦ୍ରା ସୁଖ ଭୋଗ କରୁଥିଲେ, ମ୍ୟୁନିସିପାଲିଟି କାହିଁକି ମନେ ପଡ଼ି ନ ଥିଲା ? ଯେଉଁ ନଗରରେ ୬୫ ହଜାର ଲୋକ ବାସ କରନ୍ତି, ସେ ନଗରରେ ୨୪ ଜଣ ମାତ୍ର ଉପଯୁକ୍ତ ଲୋକ ମ୍ୟୁନିସିପାଲିଟି ଚଳାଇବାକୁ ବାହାରିଲେ ନାହିଁ, ରାମା ଭୀମା ମ୍ୟୁନିସିପାଲିଟିକୁ ଉଚ୍ଛନ୍ନ କରିଦେଲେ, ଏହା କି କଟକ ପକ୍ଷରେ ଅତ୍ୟନ୍ତ ଲଜ୍ଜାର ବିଷୟ ନୁହେଁ ? ସରକାରଙ୍କ ହାତକୁ ଯିବାରୁ ମ୍ୟୁନିସିପାଲିଟିର ଉନ୍ନତି ହେଉଛି, ଏହା ସମସ୍ତେ ସ୍ୱୀକାର କରୁଅଛନ୍ତି । ଯେଉଁମାନେ ଆନ୍ଦୋଳନ କରୁଅଛନ୍ତି ଯେ ସରକାର ଛାଡ଼ି ଦିଅନ୍ତୁ, ସେମାନଙ୍କୁ ଆମେ ଭଲରୂପେ ଚିହ୍ନୁ, ସେମାନଙ୍କ ନାଡ଼ିନକ୍ଷତ୍ର ସବୁ ଜାଣୁଁ, ସେମାନେ କାହିଁକି ନସର ପସର, ତାହା ବୁଝୁଁ । 'ସରକାର ଛାଡ଼ିଦେଲେ' 'ଛାଡ଼ିଦେଲେ' ଏହି ମିଥ୍ୟା ରଟନା ଯେଉଁମାନେ କରୁଅଛନ୍ତି ସେମାନେ କେବଳ ମ୍ୟୁନିସିପାଲିଟିର କାର୍ଯ୍ୟରେ ବ୍ୟାଘାତ ଜନ୍ମାଉଅଛନ୍ତି । ଏଥି ମଧ୍ୟରେ ବୁଢ଼ୀଠାକୁରାଣୀ ବୋଦା ପାଇବେ ବୋଲି ଦାନ୍ତ ପଜେଇ ସାରିଲେଣି । ମ୍ୟୁନିସିପାଲିଟିକୁ ଚୋବେଇ ଗ୍ରାସ କରିଦେବେ । ସରକାର ଭୁଲ ନ କରନ୍ତୁ । ନୂଆ ପ୍ରଦେଶ ହେବା ପର୍ଯ୍ୟନ୍ତ ଅପେକ୍ଷା କରନ୍ତୁ । ସରକାର ତ ଗଦ ଗଛ ନୁହନ୍ତି ଯେ, ସାମାନ୍ୟ ପବନ ଲାଗିଲେ ଭାଙ୍ଗିଯିବେ, ଟିକିଏ ଦମ୍ଭ ଧରନ୍ତୁ, ବିଚାରି କାର୍ଯ୍ୟ କରନ୍ତୁ । ନଚେତ୍ ସରକାର ନିଜର, ମ୍ୟୁନିସିପାଲିଟିର ବା ନଗରବାସୀମାନଙ୍କର କାହାରି ଉପକାର କରିବେ ନାହିଁ ।

## ।। ଚଉଦ ।।

### ୧. ପତ୍ର ପଡ଼ିଗଲାଣି ଯେ !

ଚୁଲିକି ଲୁଣ୍ଡା ନ ଯାଉଣୁ ଠାକୁର ଘରେ ଘଣ୍ଟା ବାଜିଲାଣି । ଅତିଥି ଅଭ୍ୟାଗତମାନେ ପତ୍ର ପକାଇ ବସି ଗଲେଣି । ପ୍ରସାଦ ଆସିଲେ ପେଟେ ପେଟେ ଖାଇବେ, ଜିଭରୁ ଲାଳ ଗଡ଼ୁଛି ।

କିଏ କହେ ମୁଁ ଖାଇବି ଅମାଲୁ କିଏ କହେ ମୋର ପ୍ରିୟ ଗୋଲାକୁ ।
କିଏ କହେ ମୁଁ ଖାଏଁ ସରପୁରି କିଏ କହେ ଭଲ ପାଏଁ ମୁଁ ଚକୁଳି ।
କିଏ କହେ ମୁଁ ଖାଇବି ପୁର କାକରା ଶାକର ଖାଇ ମୁଁ ମାରିବି ଟାକରା ।

କଟକ ମ୍ୟୁନିସିପାଲିଟି ଅଛି ବହୁଦୂରରେ, ସରକାରଙ୍କ ହାତରେ । ଏଣେ ବିଚାର ଲାଗିଲାଣି, କିଏ କେଉଁ ବଜାରର ମାଲିକ ହେବ, କାହା ସଙ୍ଗେ ଲଢ଼ିବ, ତାହାକୁ ମାରିବ, କାହାକୁ ତାରିବ, କେଉଁ ପୋଖରୀରୁ ମାଛ ଖାଇବ, କେଉଁ ଗଛରୁ ଫଳ ଖାଇବ, କାହାର ଟିକସ ବଢ଼ିବ, କାହାର ଟିକସ କମିବ, କେଉଁ କର୍ମଚାରୀ ରହିବେ, କେଉଁ କର୍ମଚାରୀ ଯିବେ । ଏ ଗୁଡ଼ାକ ବିଲୁଆ ବିଚାର ସିନା ! ସରକାର ବର୍ତ୍ତମାନ ମ୍ୟୁନିସିପାଲିଟିକୁ ଛାଡ଼ିବେ ନାହିଁ । ସରକାର ଯେ ଭୁଲ କରନ୍ତି ଏହା ନୁହେଁ, କିନ୍ତୁ ଏ ମ୍ୟୁନିସିପାଲିଟି ସମ୍ପର୍କରେ ଭୁଲ କରିବା ସମ୍ଭବ ନୁହେଁ ।

ନନା ଯାଇଥିଲେ ପାଟଣା ସେଠାରେ ନ ହେଲା ଘଟଣା ।
ଫାନ୍ଦି ବୋଇଲେ ରାମାନନ୍ଦ ଆଣିଛି ସରଗର ଚାନ୍ଦ ।
ନିଅ, ନିଅ, ହାତି ବଢ଼ାଅ, କବାଟକଣରେ ଲୁଚାଇ ରଖିଦିଅ ।

### ୨. ଛି, ଛି, ଓଡ଼ିଆ ଭାଷାଟା ମାଙ୍କଡ଼ଙ୍କ ଭାଷା

ଡମ ପୁଅ ବାଉଁଶ ଚିହ୍ନଇ, ସାପ ଚିହ୍ନଇ କେଳା ।
ଅନ୍ଧ କହଇ ହାତୀର କାନ ଗୋଟାଯାକ କୁଲା ।

ଓଡ଼ିଆ ଭାଷାଟା ସେ ମାଙ୍କଡ଼ଙ୍କ ଭାଷା ଏତେ ଦିନେକେ କଲିକତାର ଏକ ଗ୍ରନ୍ଥକାର ଚିହ୍ନିଲେ । ମାଟ୍ରିକୁଲେସନ୍ ମ୍ୟାନୁଆଲ୍ ନାମରେ ଖଣ୍ଡେ ବହି କଲିକତାରୁ ବାହାରିଛି । ତହିଁରେ ଗୋଟାଏ ନମୁନା ପ୍ରବନ୍ଧ ଦିଆଯାଇଅଛି । ସେ ପ୍ରବନ୍ଧରେ ଲେଖାଅଛି - ଏକ ଭ୍ରମଣକାରୀ ପୁରୀରେ ପହଞ୍ଚି କଥାବାର୍ତ୍ତା ଶୁଣିଲେ । ସେ ପ୍ରଥମେ ମନେକଲେ, ମାଙ୍କଡ଼ମାନେ କଥାବାର୍ତ୍ତା କରୁଛନ୍ତି । ପରେ ବୁଝିଲେ ଯେ ସେମାନେ ମାଙ୍କଡ଼ ନୁହନ୍ତି, ମନୁଷ୍ୟ ଗୁଡ଼ାଏ  ଓଡ଼ିଆ ଭାଷାରେ କଥାବାର୍ତ୍ତା କରୁଅଛନ୍ତି । କଟକରେ ଅନେକ ଓଡ଼ିଆ ଛାତ୍ର ଏହି ପ୍ରବନ୍ଧ ପଢ଼ି ଉତ୍ତେଜିତ ହୋଇଅଛନ୍ତି । ସେମାନଙ୍କର ମାତୃଭାଷା ପ୍ରତି ଭକ୍ତି ଦେଖି ତାହାଙ୍କୁ ଭାରି ଆଶୀର୍ବାଦ କରୁଅଛୁଁ । କିନ୍ତୁ ସେମାନେ ଧୀର ସ୍ଥିର ହୁଅନ୍ତୁ ।

ଗଙ୍ଗାଜଳରେ ବିଷ୍ଠା ପଡ଼ିଲେ ଗଙ୍ଗାର ପବିତ୍ରତା ନଷ୍ଟ ହୁଏ ନାହିଁ । ଯେଉଁ ଛାତ୍ରମାନେ ହୃଦୟରେ ବ୍ୟଥା ଅନୁଭବ କରି ଆପତ୍ତି ଉତ୍ଥାପନ କରିଅଛନ୍ତି, ସେମାନେ ନିଶ୍ଚିନ୍ତ ରହନ୍ତୁ, ଗ୍ରନ୍ଥକର୍ତ୍ତାଙ୍କ ଧୃଷ୍ଟତାର ବିହିତ ପ୍ରତିକାର କରାଯିବ ।

## ୩. ଗର୍ଭରିଷ୍ଟ ଖଣ୍ଡନ

ଓହୋ ! ଧର୍ମ ଆମକୁ ରକ୍ଷା କଲେ, ଓଡ଼ିଶା ପ୍ରଦେଶର ଗୋଟାଏ ବଡ଼ ରିଷ୍ଟ ଖଣ୍ଡନ ହୋଇଗଲା । ପାର୍ଲିଆମେଣ୍ଟରେ କର୍ଣ୍ଣେଲ ଉଓଏଜଡ୍ ପ୍ରସ୍ତାବ କରିଥିଲେ, ଓଡ଼ିଶା ପ୍ରଦେଶ ଗୋଟାଏ ଗଭର୍ଣ୍ଣରଙ୍କ ପ୍ରଦେଶ ନ ହେଉ । ବ୍ରହ୍ମଦେଶର ଭୂତପୂର୍ବ ଲାଟ ସାର୍ ରେଜିନାଲ୍ଡ୍ କ୍ରାଡକ୍ ସେ ପ୍ରସ୍ତାବ ସମର୍ଥନ କରି ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ବିରୋଧରେ କେତେ ଯୁକ୍ତି ପ୍ରଦର୍ଶନ କଲେ । ସରକାରଙ୍କ ପକ୍ଷରୁ ଭାରତ ସଚିବ ସାର ସାମୁଏଲ୍ ହୋର ଓଡ଼ିଶା ପାଇଁ ଲଢ଼ିଲେ । ତାଙ୍କ ବକ୍ତୃତା ଶୁଣି ପାର୍ଲିଆମେଣ୍ଟରେ ମେମ୍ବରମାନେ ପ୍ରକୃତ କଥା ବୁଝିଗଲେ । ତହୁଁ କର୍ଣ୍ଣେଲ ଓ ଓଏଜଉଡ୍‌ଙ୍କର ସାହସ ହେଲା ନାହିଁ ଯେ ପ୍ରସ୍ତାବ ସମ୍ପର୍କରେ ଭୋଟ ନିଆଯାଉ, ଏହା କହିବାକୁ । ବିନା ଭୋଟରେ ପ୍ରସ୍ତାବ ଅଗ୍ରାହ୍ୟ ହୋଇଗଲା । ସରକାର ସହାୟ ହୋଇ ନ ଥିଲେ ଓଡ଼ିଶା ପ୍ରଦେଶ ଗର୍ଭରୁ ବିନାଶପ୍ରାପ୍ତ ହୋଇଥାନ୍ତା । ସାର ସାମୁଏଲ୍ ହୋରଙ୍କୁ କୋଟି କୋଟି ଧନ୍ୟବାଦ ଦେଉଅଛୁଁ । ଆମ୍ଭମାନଙ୍କର ଭାଗ୍ୟ ଯେ ତାଙ୍କ ପରି ଜଣେ ଟାଣୁଆ ଲୋକ ଏ ସମୟରେ ଭାରତ ସଚିବ । ନଚେତ୍ ଓଡ଼ିଆମାନଙ୍କର ୩୫ ବର୍ଷର ଆନ୍ଦୋଳନ ବୃଥା ହୋଇଥାଆନ୍ତା ।

## ୪. ଦିଅ, ଦିଅ, ଆମକୁ ବଡ଼ ବଡ଼ ପଦମାନ ଦିଅ

ଓଡ଼ିଆମାନେ ବର୍ତ୍ତମାନ ଜଗତର ଗତି ସଙ୍ଗେ ଗତି କରିପାରୁ ନ ଥିଲେହେଁ ପାହୁଣ୍ଡେ ପାହୁଣ୍ଡେ ଆଗକୁ ମାଡୁଛନ୍ତି । ଷାଠିଏ ବର୍ଷ ବୟସରେ ପୁଅ ଆଁ କରୁଛି, ଆମେ ସେଥିଯୋଗୁଁ ମନେ ମନେ ଖୁବ୍ ଖୁସି ହେଉଛୁଁ । ଜଣେ ଓଡ଼ିଆ ସୈନ୍ୟ ବିଭାଗରେ ଉଚ୍ଚପଦ ପାଇଲେଣି, ଜଣେ ଓଡ଼ିଆ ଉଡ଼ାଜାହାଜ ଚଳେଇ ଶିଖିଲେଣି, କେତେଜଣ ଓଡ଼ିଆ ଯୁବକ ସାଇକେଲରେ ଭାରତ ଭ୍ରମଣ କଲେଣି । ସେଦିନ ପାଟଣାରେ କାଉନ୍ସିଲ ସମ୍ମୁଖରେ ଜଣେ ଓଡ଼ିଆ ମେମ୍ବର ଗୁହାରି କଲେ, ଜଣେ ସୁଦ୍ଧା ଓଡ଼ିଆଙ୍କୁ ଆଜିଯାଏ ହାଇକୋର୍ଟର ଜଜ୍ କାମ ଦିଆଗଲା ନାହିଁ, ସରକାରଙ୍କ ଏ ରୀତି ଭଲ ନୁହେଁ । ଆମେ ବି ତ ଓଡ଼ିଆ, ଆମେ ବି ତ ଚାହୁଁ ଆମ ଜାତିଟା ବଡ଼ ହେଉ, ଆମ ଜାତିରୁ ଲୋକେ ଲାଟ ହୁଅନ୍ତୁ, ମନ୍ତ୍ରୀ ହୁଅନ୍ତୁ, ହାଇକୋର୍ଟର ଚିଫ୍ ଜଷ୍ଟିସ ହୁଅନ୍ତୁ, ବିଲାତର ଓ ଆମେରିକାର ଧନକୁବେରମାନଙ୍କୁ ବଳିଯାଆନ୍ତୁ । ଆମର ଦୁଃଖ ଏତିକି ଯେ, ଯେଉଁ ମେମ୍ବର ପ୍ରସ୍ତାବ କଲେ, ଜଣେ ଓଡ଼ିଆଙ୍କୁ ହାଇକୋର୍ଟର ଜଜ୍ କରାଯାଉ, ସେ କାହାରି ନାମ କହିଲେ ନାହିଁ ଏବଂ ସେହି ହେତୁରୁ ସରକାରଙ୍କୁ ବହୁତ ଅଣ୍ଡାଳିବାକୁ ପଡ଼ିବ ! ସେ ନାମ କହିଲେ ନାହିଁ, କି କେଉଁ ଶ୍ରେଣୀର ଲୋକ ମଧ୍ୟରୁ ଜଣକୁ ବାଛିବାକୁ ହେବ, ତାହା ମଧ୍ୟ କହିଲେ ନାହିଁ । ତିନି ଶ୍ରେଣୀର

ଲୋକଙ୍କ ମଧ୍ୟରୁ ହାଇକୋର୍ଟର ଜଜ୍ ବଛା ଯାଆନ୍ତି । ଜିଲ୍ଲା ଜଜ୍‌ମାନଙ୍କ ମଧ୍ୟରୁ, ବାରିଷ୍ଟରମାନଙ୍କ ମଧ୍ୟରୁ, ଆଡ୍‌ଭୋକେଟମାନଙ୍କ ମଧ୍ୟରୁ, ଶୁଣାଯାଏ ଯେ କାଉନ୍ସିଲର ମେୟରମାନଙ୍କୁ ମଧ୍ୟ ଏଣିକି Chance ଦିଆଯିବ ।

## ୫. ଯେ ବିପଦରେ ବନ୍ଧୁ ସେ ପ୍ରକୃତ ବନ୍ଧୁ

ସେଦିନ ଏକ ପଲ୍ଲୀଗ୍ରାମରେ ବହୁତ ଲୋକ ଏକ ସାମାଜିକ ମିଳନ ଉପଲକ୍ଷେ ସମବେତ ହୋଇଥିଲେ । ଜୁବୁଲି କଥାର ଆଲୋଚନା ହେଉଥାଏ । ଜୁବୁଲି କଅଣ, ଚାନ୍ଦା କାହିଁକି ଉଠୁଛି, ଏହା ସେମାନେ ଜାଣି ନ ଥିଲେ । ପ୍ରକୃତ କଥା ଶୁଣି ସେମାନେ ଆନନ୍ଦିତ ହେଲେ । ସେହିଠାରେ ପଡ଼ିଲା, ଲାଟବନ୍ଦି ନିଲାମ କଥା । ଅଧିକାଂଶ ବ୍ୟକ୍ତି ଅଭିମତ ପ୍ରକାଶ କଲେ, କଲେକ୍ଟର ସାହେବ ଦୟା କରି ନ ଥିଲେ ବହୁତ ଲୋକ ଉଚ୍ଛନ୍ନ ହୋଇ ଯାଇଥାଆନ୍ତେ । ବୃଦ୍ଧ ଲୋକମାନେ କହିଲେ, ଏପରି କଲେକ୍ଟର ପାଇବା ଏ ଜିଲାର ଭାଗ୍ୟରେ କେବେ ଘଟି ନ ଥିଲା । କେହି କେହି କହିବେ, ବନ୍ଦୋବସ୍ତରେ ଜମା ବଢ଼ିଲା, ବନ୍ୟାର ପ୍ରକୋପ ବଢ଼ିଲା, ଜମିଦାରି ଆଉ ରହିବ ନାହିଁ । ଅଧିକାଂଶ ଲୋକ କହିଲେ, ଏ ଦୁଃସମୟରେ ଏହି କଲେକ୍ଟର ନ ଥିଲେ ଶତ ଶତ ତଉଜି ଖାସମାହାଲଭୁକ୍ତ ହୋଇସାରନ୍ତାଣି । ଏହି କଲେକ୍ଟର ଚାଲି ଯାଉଛନ୍ତି, ଶୁଣି ସମବେତ ବ୍ୟକ୍ତିମାନେ ଗଭୀର ଦୁଖ ପ୍ରକାଶ କଲେ । ଶ୍ରୀଯୁକ୍ତ ମୁଖୁର୍ଯ୍ୟା ସାହେବ ନିଜ ଗୁଣରେ ଲୋକମାନଙ୍କର ଅକୃତ୍ରିମ ଭକ୍ତି ଓ ସ୍ନେହ ଉପାର୍ଜନ କରିଅଛନ୍ତି । ସେ ଯେଉଁଠାରେ ଥାଆନ୍ତୁ ନା କାହିଁକି ଏ ଜିଲାର ଲୋକମାନଙ୍କର ଆଶୀର୍ବାଦ ଆଜୀବନ ଭୋଗ କରୁଥିବେ । ଲୋକମାନେ ତାଙ୍କୁ A friend in adversity ବୋଲି ମନେ କରୁଥିବେ । ତାଙ୍କର ମଙ୍ଗଳ ହେଉ ।

୨୭, ମାର୍ଚ୍ଚ ୧୯୩୫

### ॥ ପନ୍ଦର ॥

## ୧. ହାରୁଁ, ଜିତୁଁ, ଲଢୁଥିବା

ଏହା ଆମର ପ୍ରିୟ ଆନ୍ଧ୍ରଭାଇ (Cousin)ମାନଙ୍କର ନୀତି । ପୁଣି ଜଣେ କେତେ ଆନ୍ଧ୍ର ବିଲାତ ଗଲେଣି । ଓଡ଼ିଶାର ସୀମା ସମ୍ବନ୍ଧରେ ସେମାନେ ଭାରତ ସଚିବଙ୍କ ପାଖରେ ଜିଗର କରିବେ, ବିଲାତରେ ଆନ୍ଦୋଳନ କରିବେ, ମାନ୍ଦ୍ରାଜ ଓ ଓଡ଼ିଶାର ସୀମା ସମ୍ବନ୍ଧରେ ସରକାର ଯେଉଁ ଘୋଷଣା କରିଅଛନ୍ତି, ତାହା ଯେପରି ଓଲଟିଯାଏ ତାହାର ଚେଷ୍ଟା କରିବେ । ଗଲାବେଳେ ସେମାନେ ବୋମ୍ବାଇରେ କହିଯାଇଅଛନ୍ତି, ଆମର ଖୁବ୍ ଆଶା ଅଛି ଯେ ଆମର, ଆନ୍ଦୋଳନ ସଫଳ ହେବ, ବ୍ରହ୍ମପୁର ସହର, ଗଞ୍ଜାମର ମାଳ ଓ ଜୟପୁର ଓଡ଼ିଶାକୁ ଆସିବ ନାହିଁ । ଯଦି ଆମେ, ଆମେ ସରକାରଙ୍କୁ ଥୟ କରିଦେବା ନାହିଁ, ନଚେଇ ଦେବା । ମନେ ଅଛି ତ, ଲର୍ଡ କର୍ଜନ ବଙ୍ଗ ଦେଶକୁ ଦୁଇ ଖଣ୍ଡ କରି

ଦେବାରୁ ବଙ୍ଗାଳୀମାନେ କିପରି ମେଦିନୀ କମ୍ପାଇ ଦେଇଥିଲେ ? ଯଦି ଆମ କଥା ନ ରହେ, ଆମେ ବଙ୍ଗାଳୀ ପାଲଟି ଯିବା । ଆମର କରାମତ୍ ଦେଖାଇ ଦେବା :

ହିମାଳୟର ତୁଙ୍ଗ ଶୃଙ୍ଗ,
ଥରି ହରି ପଡ଼ିବ କଚାଡ଼ି ।
ଭାରତ ଭୂମିକୁ ଉତ୍ପାଟନ କରି
ସମୁଦ୍ରରେ ଦେବା ମାଡ଼ି ।

ଓଡ଼ିଆମାନେ ପ୍ରମାଦ ଗଣିଲେଣି, ସରକାରଙ୍କ କଥାକୁ ଆନ୍ଧ୍ରଭାଇମାନେ ପିକାଧୂଆଁ ପରି ଉଡ଼ାଇ ଦେବେ । ପ୍ରସିଦ୍ଧ ଜ୍ୟୋତିଷାଚାର୍ଯ୍ୟ ବାଇକୋଳି ମହାପାତ୍ରେ ଗଣନା କରି ଦେଖନ୍ତୁ, ବୋମ୍ବାଇରୁ ମାର୍ଚ୍ଚ ତା ୨୬ ମଙ୍ଗଳବାର ଇଟାଲୀ ଦେଶର ଜାହାଜ Comte Verde ଛାଡ଼ିବା ବେଳେ ଯୋଗିନୀ କେଉଁ ଦିଗରେ ଥିଲା ଓ ସେ କାହାକୁ ଖାଇବ ।

## ୨. ଭଗବାନ୍‌ଙ୍କ କ୍ଷମତା ମନୁଷ୍ୟ ହାତକୁ ଗଲାଣି

ଜନ୍ମ ମୃତ୍ୟୁ ଚିରକାଳ ଭଗବାନ୍‌ଙ୍କ ଖାସ୍ ଇଲାକା ମଧ୍ୟରେ ଥିଲା । ବର୍ତ୍ତମାନ ଜନ୍ମ ହେବା ନ ହେବା ମନୁଷ୍ୟର ଅକ୍ତିଆର ଅଧୀନ । ମନୁଷ୍ୟ ଇଚ୍ଛା କଲେ ଜନ୍ମ ବନ୍ଦ କରି ଦେଇ ପାରେ । ସବୁ ହୁନ୍ଦର ଇଉରୋପ ଓ ଆମେରିକାରେ । କେଉଁ ଦେଶର ଲୋକେ କହୁଅଛନ୍ତି, ଆମ ଦେଶରେ ଜନସଂଖ୍ୟା ବଢ଼ିଲେ ଅନ୍ନକଷ୍ଟ ବଢ଼ିବ, ଜନ୍ମ ଯେତେ ଅଳ୍ପ ହୁଏ, ତେତେ ଭଲ । କେଉଁ ଦେଶର ଲୋକେ କହୁଛନ୍ତି, ଜନସଂଖ୍ୟା ନ ବଢ଼ିଲେ ଯୁଦ୍ଧବେଳେ ହାଣ ଖାଇବାକୁ ଲୋକ ଅଣ୍ଟିବେ ନାହିଁ, ଜନସଂଖ୍ୟା ଯେତେ ବେଶି ହୋଇପାରେ ହେଉ । ଭାରତବର୍ଷର ଜନସଂଖ୍ୟା ୧୯୨୧ ସାଲରେ ଯେତେ ହୋଇଥିଲା ୧୯୩୧ ସାଲରେ ତହିଁ ଉପରେ ଶତକଡ଼ା ଦଶଜଣ ବେଶି ହେଲା । ବେଶି ଜନ୍ମିଲେ, ଅଳ୍ପ ମଲେ, ଏହାହିଁ ବୃଦ୍ଧିର କାରଣ । ଜନ୍ମ କିପରି ବନ୍ଦ ହେବ, ସେ ସମ୍ବନ୍ଧରେ ପୁସ୍ତକମାନ ବାହାରିଲାଣି । ଔଷଧ ଓ ଯନ୍ତ୍ରମାନ ପ୍ରସ୍ତୁତ ହେଲାଣି । ଆମ ଜାତି ତାହାର କର୍ତ୍ତବ୍ୟ ସ୍ଥିର କରୁ । ଆମ ଦେଶରେ ଚିର ଦିନ ଅନ୍ନକଷ୍ଟ । ଆମ ଜାତିର ପ୍ରଧାନ ଜୀବିକା କୃଷି, ତାହା ଧୋଇ ମରୁଡ଼ିରୁ ବର୍ତ୍ତିଲେ ମୁଠାଏ ମିଳିବ । ପ୍ରତି ବର୍ଷ ଘରକୁଆଣିକୁ ଘରକୁଆଣି ଜନସଂଖ୍ୟା ବଢୁଛି, କିନ୍ତୁ ଭୂମି ତ ବଢୁ ନାହିଁ । ବିଦେଶରେ ମୂଲ ଲାଗି ଅନେକ ଲୋକ ଚାରିପଇସା ଆଣୁଛନ୍ତି । ବ୍ରହ୍ମଦେଶ ଭାରତବାସୀଙ୍କୁ ତଥା ଓଡ଼ିଆମାନଙ୍କୁ ତଡ଼ିଦେବାକୁ ବସିଲାଣି । ଆମର କର୍ତ୍ତବ୍ୟ କଅଣ ଭାବିବା ଉଚିତ । ଆଚ୍ଛା ! ନାୟକ ନାୟିକାମାନଙ୍କର ମତ ଗ୍ରହଣ କରିବା ଉଦ୍ଦେଶ୍ୟରେ ଗୋଟିଏ ସମ୍ମିଳନୀ ଡାକିଲେ ଭଲ ହୁଅନ୍ତା ନାହିଁକି ?

### ୩. ପ୍ରଦେଶ ଗଠନ

ବାଟ ଚାଲି ଚାଲି ପଥିକ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲେ ଯେପରି କ୍ଳାନ୍ତ ହୋଇ ଶୋଇପଡ଼େ, ବର୍ତ୍ତମାନ ଆମ୍ଭମାନଙ୍କର ସେହି ଅବସ୍ଥା ଘଟିଛି । ଆମେ ଗୋଟାଏ ସ୍ୱତନ୍ତ୍ର ପ୍ରଦେଶ ପାଇବା ଠିକ୍, ଏହା ଜାଣିବା ଦିନୁ ଆମର ଆଉ ଊଁ ଚୁଁ ନାହିଁ; ଆମେ ନୀରବ, ନିସ୍ତବ୍ଧ, ନିଦ୍ରିତ । ଆଜି ପର୍ଯ୍ୟନ୍ତ ଗୋଟାଏ ସମ୍ମିଳିତ ବୈଠକ ସୁଦ୍ଧା ହେଲା ନାହିଁ ବା ଭବିଷ୍ୟତ୍ କଥା ଆଲୋଚନା କରାଗଲା ନାହିଁ । ଆମେ ନୂତନ ପ୍ରଦେଶ ଛାଡ଼ି ସ୍ୱର୍ଗପୁର ପାଇଲେ ମଧ ଆମର ପ୍ରକୃତି ବଦଳିବ ନାହିଁ । ଭାରତ ସରକାର ନୂତନ ରାଜଧାନୀ ନିର୍ମାଣର ବ୍ୟୟ ନିମନ୍ତେ ଦଶ ଲକ୍ଷ ଟଙ୍କା ମଞ୍ଜୁର କରିଅଛନ୍ତି । ଗୋଟାଏ କମିଟି ଗଠିତ ହୋଇଅଛି, ସେ କମିଟି ସ୍ଥିର କରିବେ ଓଡ଼ିଶା ପ୍ରଦେଶର ବ୍ୟବସ୍ଥାପକସଭା ନିମନ୍ତେ କେଉଁଠାରୁ କେତେ ପ୍ରତିନିଧି ନିର୍ବାଚିତ ହେବେ । ବିହାର ଓଡ଼ିଶା କାଉନ୍ସିଲର ଆୟୁ ଆଉ ବର୍ଷେ ବଢ଼ିବ । ସେ କାଉନ୍ସିଲ୍ ଥିବା ପର୍ଯ୍ୟନ୍ତ ଓଡ଼ିଶାର ପ୍ରତିନିଧିମାନେ ତହିଁରେ ବସୁଥିବେ । ତେବେ ନୂତନ ପ୍ରଦେଶର ଶାସନ ନିମନ୍ତେ ସ୍ୱତନ୍ତ୍ର ବ୍ୟବସ୍ଥା ହେବ, ତାହା ସରକାର ଘୋଷଣା କରି ନ ଥିଲେ ହେଁ ୧୯୩୬ ସାଲ ଅପ୍ରେଲରୁ ତାହା ହେବ ବୋଲି କେହି କେହି ଅନୁମାନ କରୁଅଛନ୍ତି । କିଏ ନୂତନ ପ୍ରଦେଶର ଲାଟ ହେବେ, ତାହା ମଧ ଉଡ଼ା ଖବର ଶୁଣାଯାଉଅଛି । ବିହାର-ଓଡ଼ିଶାର ଗଭର୍ଣ୍ଣର ମହୋଦୟ ଏ ମାସ ୮ ତାରିଖରେ ଏ ନଗରକୁ ଶୁଭାଗମନ କରିବେ ଓ ଏଠାରେ ୧୧ ତାରିଖ ପର୍ଯ୍ୟନ୍ତ ଅବସ୍ଥାନ କରିବେ । ନୂତନ ରାଜଧାନୀ ନିର୍ମାଣ ବିଷୟ ଆଲୋଚନା ଏ ଆଗମନର ଗୋଟିଏ ଉଦ୍ଦେଶ୍ୟ, ଏହା ଅନୁମାନ କରିବା ଅସଙ୍ଗତ ନୁହେଁ । ଆମ୍ଭେମାନେ ଲାଟ ମହୋଦୟଙ୍କୁ ସାଦର ଅଭ୍ୟର୍ଥନା କରୁଅଛୁଁ । ଓଡ଼ିଶା ପୃଥକ୍ ହେଉଥିଲେହେଁ ବିହାରର ହାଇକୋର୍ଟ, ବିଶ୍ୱବିଦ୍ୟାଳୟ, ମେଡିକାଲ୍ କଲେଜ୍, ଇଞ୍ଜିନିୟରିଙ୍ଗ୍ କଲେଜ, ଭେଟିରିନାରି କଲେଜ୍ ଓ ପାଗଳାଖାନା ସହିତ ଓଡ଼ିଶାର ସମ୍ପର୍କ ରହୁଛି । ବିହାରର ଲାଟ ଯେ ଓଡ଼ିଶାର କେହି ନୁହନ୍ତି, ଓଡ଼ିଶା ଏ କଥା ଭାବିବ ନାହିଁ । ବିହାରରେ ସମୁଦ୍ର ନାହିଁ । ଲାଟ ମହୋଦୟଙ୍କର ସମୁଦ୍ର ବାୟୁ ସେବନ କରିବାକୁ ଇଚ୍ଛାହେଲେ ପୁରୀକୁ ଆସୁଥିବେ । ସେ ଓଡ଼ିଶାକୁ ଭୁଲିବେ ନାହିଁ, ଆମର ଏହି ମିନତି । ସେ ଓଡ଼ିଆଙ୍କ ପାଇଁ ଯାହା କରିଅଛନ୍ତି ଓଡ଼ିଆମାନେ ତାଙ୍କୁ କେବେ ଭୁଲିବେ ନାହିଁ, ଏ କଥା ମଧ ଓଡ଼ିଆ ଜାତି ପକ୍ଷରୁ ତାଙ୍କୁ ବଚନ ଦେଉଛୁଁ ।

### ୪. ବିଶ୍ୱବିଦ୍ୟାଳୟ କର୍ତ୍ତୃକ ବଳିଦାନ

ବହୁକାଳ ପୂର୍ବେ ବଙ୍ଗଦେଶର ଏକ ସମ୍ବାଦପତ୍ରରେ ଗୋଟିଏ ଚିତ୍ର ବାହାରିଥିଲା । ସେ ଛବିର ନାମ ଥିଲା, ବିଶ୍ୱବିଦ୍ୟାଳୟ କର୍ତ୍ତୃକ ବଳିଦାନ । ସେ କାଳରେ କଲିକତା ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷାରେ ବହୁତ ପରୀକ୍ଷାର୍ଥୀ ଫେଲ ହେଉଥିଲେ, ଏହା ହିଁ ସେ ଚିତ୍ର ଦେଖାଇ ଦେଉଥିଲା । କ୍ରମେ କଲିକତା ବିଶ୍ୱବିଦ୍ୟାଳୟର ସେ ଦୁର୍ନାମ ଦୂର ହୋଇଅଛି । ସାର୍ ଆଶୁତୋଷ ମୁଖୋପାଧ୍ୟାୟ ସରସ୍ୱତୀ ସେ ବିଶ୍ୱବିଦ୍ୟାଳୟର ନୀତି

(Policy) ବଦଳାଇ ଦେଇ ଯାଇଅଛନ୍ତି । ତାଙ୍କର ମତ ଥିଲା, ପ୍ରବେଶିକା ପରୀକ୍ଷା ବିଶ୍ୱବିଦ୍ୟାଳୟରେ ପ୍ରବେଶ କରିବାର ଦ୍ୱାର, ସେ ଦ୍ୱାର ଅବରୋଧ କଲେ ଶିକ୍ଷାର ବିସ୍ତାରରେ ବ୍ୟାଘାତ ଘଟିବ । ବର୍ତ୍ତମାନ କଲିକତା ବିଶ୍ୱବିଦ୍ୟାଳୟ ଘାତକ ନୁହେଁ, ପ୍ରତିପାଳନ ବୋଲି ଗଣ୍ୟ । ପାଟନା ବିଶ୍ୱବିଦ୍ୟାଳୟର ନୀତି ବିଭିନ୍ନ । ଉକ୍ତ ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷାରେ ଥରେ ଥରେ ଶତକଡ଼ା ୬୦ ବା ୭୦ ଜଣ ପରୀକ୍ଷାର୍ଥୀ ଫେଲ୍ ହୁଅନ୍ତି । ଏଥି ନିମନ୍ତେ ସେ ବିଶ୍ୱବିଦ୍ୟାଳୟର ଯେଉଁ ଦୁର୍ନାମ ହୋଇଅଛି, ତାହା ଦୂର କରିବା ନିମନ୍ତେ ସେ ନିଜେ ଚେଷ୍ଟା କରୁଅଛି । କାହିଁକି ଏତେ ଛାତ୍ର ଫେଲ୍ ହେଉଛନ୍ତି, କି ଉପାୟ ଅବଲମ୍ୱନ କଲେ ଏହା କମିବ, ଏହା ନିର୍ଣ୍ଣୟ କରିବା ନିମନ୍ତେ ଗୋଟିଏ କମିଟି ଗଠିତ ହୋଇଅଛି । ଏ ଚେଷ୍ଟା ଅବଶ୍ୟ ପ୍ରଶଂସନୀୟ । କିନ୍ତୁ ଭିତର କଥା ଭାବିଲେ ମନେହୁଏ 'ଘରେ ଚୋର, ସହରରେ ଧେଣ୍ଡୁରା' । ବିଶ୍ୱବିଦ୍ୟାଳୟ ଯଦି ନିଜର ନୀତିଗତି (Policy) ଠିକ୍ କରିଦିଅନ୍ତି, ପରୀକ୍ଷକ, ଛାତ୍ର ଓ ଶିକ୍ଷକ ସମସ୍ତେ ସେହି ନୀତି ଦ୍ୱାରା ପରିଚାଳିତ ହୁଅନ୍ତେ; କେହି କାହାକୁ ଦୋଷୀ କରନ୍ତେ ନାହିଁ ।

### ୫. ଦୋଷୀ, ନିର୍ଦ୍ଦୋଷ ପରୀକ୍ଷା

ଇଂରେଜ ସରକାରଙ୍କ ଅମଳରେ ଏତେ ଆଇନ, ଏତେ କଚେରି, ଏତେ ହାକିମ, ଏତେ ପୁଲିସ ଥିଲେହେଁ ପୂର୍ବକାଳର ରୀତି ଏକାବେଳକେ ଲୋପ ପାଇ ନାହିଁ । ଏବେ ସୁଦ୍ଧା ଓଡ଼ିଶାରେ ଚୋରକୁ ଠିକଣା କରିବା ପାଇଁ ଗୁଣିଆ ଆସି କୁଲା ବୁଲାଏ, କୁଲା ଚୋରର ନାମ ବତାଇଦିଏ, ଗୁଣିଆ ଅରୁଆଚାଉଳ ମନ୍ତୁରି ଚୋବେଇବାକୁ ଦିଏ, ଯାହା ପାଟିରୁ ରକ୍ତ ବାହାରେ, ସେ ଚୋର ବନେ । ଲଖନର ଚିଫ୍ କୋର୍ଟରେ ଏବେ ଗୋଟାଏ ମକଦମାର ଅପିଲ ପଡ଼ିଥିଲା । ସେ ମକଦମାର ବୃତ୍ତାନ୍ତ ଏହିକି - ଜଣେ କୃଷକର କୃଷି କ୍ଷେତରୁ କିଛି ଦ୍ରବ୍ୟ ଚୋରି ଯାଇଥିଲା । ତାର ସନ୍ଦେହ ହେଲା,ତିନି ଜଣ ମୂଲିଆଣୀଙ୍କ ଉପରେ । ସେ କହିଲା, ତୁମ୍ଭେମାନେ ଯଦି ନିର୍ଦ୍ଦୋଷ, ତେବେ ଧର୍ମମାଣ୍ଡୁ କର; ତତଲା ତେଲରେ ଆଙ୍ଗୁଠି ବୁଡ଼ାଅ । କରେଇରେ ତେଲ ଫୁଟିଲା, ସେମାନେ ଡରିହରି ଆଙ୍ଗୁଠି ବୁଡ଼ାଇ ଦେଇ ଗୁରୁତର ଆଘାତ ପାଇଲେ । ପୁଲିସ ଏ ସମ୍ବାଦ ପାଇ ଯେଉଁ ବ୍ୟକ୍ତିର ମାଲ ଚୋରି ଯାଇଥିଲା, ତାକୁ ଚଲାଣ ଦେଲେ । ତାର ପାଞ୍ଚ ବର୍ଷ ଜେଲ୍ ଓ ପାଞ୍ଚ ଶତ ଟଙ୍କା ଅର୍ଥଦଣ୍ଡ ହେଲା । ସେ ଚିଫ୍ କୋର୍ଟରେ ଅପିଲ କରିଥିଲା । ଅପିଲ୍ ଅଗ୍ରାହ୍ୟ ହେଲା । ଆଶା ଅଛି ଯେ ଦେଶରେ ଶିକ୍ଷା ବିସ୍ତାର ହେଲେ ଏଭଳି କୁପ୍ରଥାମାନ ଦୂର ହେବ । କିନ୍ତୁ ଶିକ୍ଷା ବିସ୍ତାର ନ ହେଉଣୁ ଆମେ କହିଲୁଣି, ଆମର ଲେଖାପଢ଼ା ହୋଇ ନାହିଁ, ଆମକୁ ସ୍ୱରାଜ ଦିଅ । ପାଇବା ଓ ସମ୍ଭାଳିବା ଏ ଦିଓଟି ସମ୍ପୂର୍ଣ୍ଣ ଭିନ୍ନ । ଆଗ ସମ୍ଭାଳିବାର ଶକ୍ତି ହେଉ, ପାଇବା କଠିନ ହେବ ନାହିଁ, ସରକାର ତ ଏହା ହିଁ କହୁଛନ୍ତି ।

ଏପ୍ରିଲ ୧୯୩୫

## ।। ଷୋହଳ ।।

### ୧. ନୂତନ ପ୍ରଦେଶ ଗଠନ

ଲାଟ ସାହେବ ଓଡ଼ିଶାକୁ ବିଜେ କରିଥିଲେ । ଓଡ଼ିଶାର ଅବସ୍ଥା ସ୍ୱୟଂ ଦେଖିଗଲେ । ଅନେକ ଲୋକଙ୍କୁ ମୁଲାକାତ୍ ଦେଲେ ଓ ବନ୍ଧୁ ସମ୍ମିଳନୀମାନଙ୍କରେ ଦେଖିଗଲେ । ତାଙ୍କ ଶ୍ରୀମୁଖରୁ ଶୁଣିଲୁ, ନୂତନ ପ୍ରଦେଶ ଆମ ହାତକୁ ଆସିଲା ପରି ହେଲାଣି, ଶୀଘ୍ର ଆସିବ, ବିଳମ୍ବ ହେବ ନାହିଁ; ଭାରତରେ ନୂତନ ଶାସନ ପଦ୍ଧତି ପ୍ରଚଳନ ହେବା ପୂର୍ବରୁ ଆମ ଓଡ଼ିଶା ପ୍ରଦେଶ ଗଢ଼ା ହୋଇଯିବ । ଆମର ତ ଖୁସି ହେବାର କଥା, ଆମେ ଖୁସି ହେଉଅଛୁଁ । ତେବେ ଗୋଟିଏ କଥା ମୁଁ ମନରେ ପାଞ୍ଚୁଛି । ସରକାରଙ୍କ ହାତରେ ପ୍ରଦେଶ ଗଠନର ଭାର ଅଛି, ସେ ତ ଗଢ଼ିଦେବେ । ଇଞ୍ଜିନିୟରଙ୍କ ହାତରେ ନୂତନ ରାଜଧାନୀ ଗଠନର ଭାର, ସେ ତାହା ଗଢ଼ିଦେବେ । ଭୋଟ୍ କମିଟି ହାତରେ କାଉନ୍ସିଲ ନିମନ୍ତେ ଭୋଟ୍ କବଲା ଗଢ଼ିବାର ଭାର, ସେ ତାହା ଗଢ଼ି ଦେଲେଣି । କିନ୍ତୁ ଆମ ପ୍ରଦେଶର 'ମଣିଷ' ଗଢ଼ିବା ଭାର କାହା ଉପରେ ? ଆମର ତ ଗୋଟାଏ ପ୍ରଧାନ ଅଭାବ ଏହିତା, ତାହା ଭାରତ ସରକାରଙ୍କ ହାତରେ ନାହିଁ, କି ଇଞ୍ଜିନିଅର୍ ବା ଭୋଟ୍ କମିଟିଙ୍କ ହାତରେ ନାହିଁ - ପ୍ରକୃତ ଖାଣ୍ଟି ମଣିଷ, ମଣିଷଭଳିଆ ମଣିଷ, ଗଢ଼ା ନ ହେଲେ ପ୍ରଦେଶ, ରାଜଧାନୀ, କାଉନ୍ସିଲ କି ପ୍ରୟୋଜନରେ ଲାଗିବ ? ସେ ଭାର ଆମ ନିଜ ଉପରେ । ଆମେ ଯଦି ମଣିଷ ନ ହେବା, ତେବେ ଏପରି ପାଞ୍ଚଟା ପ୍ରଦେଶ, ସାତଟା ରାଜଧାନୀ, ଦଶଟା କାଉନ୍ସିଲ ଅଜାଗଳସ୍ତନ ପରି ବୃଥା ହେବ ସିନା ! ମାନଚିତ୍ରରେ ଆଖି ବୁଲେଇ କେଉଁ ସ୍ଥାନ କେଉଁଠାରେ ଦେଖିବା ପରି ଥରେ ଆମ ଦେଶର ମଣିଷଙ୍କ ଉପରେ ଆଖି ବୁଲେଇ ଗଲେ ଆମ କଥାର ମର୍ମ ବୁଝାଯିବ । ମନେ ମନେ ଚିନ୍ତା କରନ୍ତୁ, ଯାହା କହିଲୁଁ ତାହା ଅସାର ନୁହେଁ ।

### ୨. ଏହି କଟକ ସ୍ୱରାଜ ପାଇବ

ପିଲାଦିନେ ଶୁଣୁଥିଲୁ, କେତେ ବ୍ୟକ୍ତି ପରିହାସ ଛଳରେ କହୁଥିଲେ, ଆମ କଟକ ସହର ଗୋଟାଏ 'ପୃଥ୍ୱୀ' । ଏବେ ସେହି 'ପୃଥ୍ୱୀ' ବି ସାର୍ଟିଫିକେଟ ପାଉଛି ଦେଖ । ଶ୍ରୀଯୁକ୍ତ ପୁରୁଷୋତ୍ତମ ଦାସ ଟାଣ୍ଡନ ଜଣେ ପ୍ରସିଦ୍ଧ କଂଗ୍ରେସ ନେତା, ସେ ରାମା ଭୀମାଙ୍କ ପରି ଯେ ସେ ଲୋକ ନୁହନ୍ତି, ସେ ଭାରତ ଲୋକସେବକ ସଂଘର ସଭାପତି, ଜଣେ ପ୍ରକୃତ କର୍ମୀ ଲୋକ । ଅଳ୍ପ ଦିନ ତଳେ ସେ କଟକକୁ ଆସିଥିଲେ । କଟକ ସହରର ଅବସ୍ଥା ଦେଖି ସେ ଚମକି ପଡ଼ିଲେ । ସେ କହିଲେ "ଆହେ ବାବୁମାନେ ! ତୁମେ ସବୁ ମ୍ୟୁନିସିପାଲିଟିର କମିସନର ହେବାକୁ ବିଲେଇଙ୍କ ପରି କାମୁଡ଼ା କାମୁଡ଼ି ଲଗାଉଛ, କିନ୍ତୁ ମୁଁ ଦେଖୁଛି ଯେ, ତୁମର ତ ଦାୟିତ୍ୱ ଜ୍ଞାନ ନାହିଁ । କି ଲାଜର କଥା । ଏ ସହରଟା ଏପରି ମଇଳା । ତୁମ୍ଭମାନଙ୍କ ମନ ଯଦି ପରିଷ୍କାର ଥାଆନ୍ତା, ତେବେ ସହରଟା ଏପରି ମଇଳା

ହୋଇ ନ ଥାନ୍ତା । ତୁମ୍ଭମାନଙ୍କ ମନ ଯଦି ପରିଷ୍କାର ନୁହେଁ, ତେବେ ସ୍ୱରାଜ ତୁମ୍ଭମାନଙ୍କଠାରୁ ବହୁ ଦୂରରେ । ଏ ସାର୍ଟିଫିକେଟ ପାଇ ଆମ ସହରର ଯେଉଁ ବାବୁମାନଙ୍କର ମ୍ୟୁନିସିପାଲିଟି ଜୀବନ, ମ୍ୟୁନିସିପାଲିଟି ଧ୍ୟାନ, ମ୍ୟୁନିସିପାଲିଟି ବିନା ଯେଉଁମାନଙ୍କୁ ସଂସାର ଅନ୍ଧକାର ଦିଶେ, ସେମାନେ କଅଣ କହିବେ ? ଆମେ ଯଦି ଏହି ସାର୍ଟିଫିକେଟ ଦେଇଥାଆନ୍ତୁ, ଆମକୁ କେତେ ଲୋକେ କାମୁଡ଼ି ଗୋଡ଼ାନ୍ତେ, ଆମ ଦେହରେ ଦାନ୍ତ ଲଗେଇ ଦିଅନ୍ତେ, କିନ୍ତୁ ଜଣେ ବାହାରର ବିଶିଷ୍ଟ ଲୋକ, ନିରପେକ୍ଷ ଲୋକ ମରମ କଥା ଶୁଣେଇ ଦେଇଗଲେ, ଆମ ଶିରରେ ଚଡ଼ୁ ଦେଇଗଲେ । ସୁନାମୁଦିଆ ହାତରୁ ଟାକରା ସୁହାଏ । ସରକାର ତ ଆମର ଯୋଗ୍ୟତା ବିଶାକାଠିରେ, ସେର ତରାଜୁରେ, ବଣିଆ ନିକିତିରେ, କଳରେ, ତଉଲି ତଉଲି ଆମ ହାତରୁ ମ୍ୟୁନିସିପାଲିଟି ଛଡ଼ାଇ ନେଇଗଲେ ଏବଂ ସରକାରୀ କର୍ମଚାରୀଙ୍କ ଉପରେ ମ୍ୟୁନିସିପାଲିଟିର ଭାର ଦେଇ ଆମ ଆଖିରେ ଅଙ୍ଗୁଳି ଗୁଞ୍ଜି ଦେଇ ଦେଖାଇ ଦେଲେ, କାର୍ଯ୍ୟ କିପରି କରିବାକୁ ହୁଏ । ତୁଳନା କରି ଦେଖ, ଆଉ ନସର ପସର ନ ହୁଅ, ଆଉ କଳସ ସ୍ଥାପନ କରି, ଶଙ୍ଖ ବଜାଇ, ହୁଳହୁଳି ଦେଇ, ଅପଯଶ ବରଣ କରୁଥାଇଁ କାହିଁକି ? ଅକଲବନ୍ତ ଲୋକଙ୍କୁ ଇସାରା ଯଥେଷ୍ଟ । ଟାଣ୍ଡନ ମହାଶୟଙ୍କ ଇସାରାରୁ ଜାଣିଲେଣି ଆମର ଯୋଗ୍ୟତା ନଦାରଦ୍ । ଆମେ ତ ନିଜର ଘର, ନିଜର ଅଗଣା, ନିଜର ହତା, ନିଜର ବାଡ଼ି, ନିଜର ଦାଣ୍ଡ, ନିଜର ବାଡ଼ିଆଡ଼ ସଫା ରଖି ପାରି ନ ଥାଇ, ଆମେ ଯାଇଁ ଷାଠିଏ ହଜାର ଲୋକଙ୍କ ଦାଣ୍ଡ ବାଡ଼ି ସଫା ରଖିବା ।

## ୩. ନା ନା ଓଡ଼ିଆଭାଷା ମାଙ୍କୁଡ଼ିଆ ଭାଷା ନୁହେଁ

ସତ୍ୟ ସମାଚାରରେ କିଛିଦିନ ତଳେ ପ୍ରକାଶିତ ହୋଇଥିଲା ଯେ, କଲିକତାର ଏକ ଗ୍ରନ୍ଥକାର ଲେଖିଛନ୍ତି, ଯେ ଭ୍ରମଣ କରୁ କରୁ ପୁରୀ ଷ୍ଟେସନରେ କେତେଗୁଡ଼ାଏ ମୂର୍ଖ ଓଡ଼ିଆଙ୍କ କଥାବାର୍ତ୍ତା ଶୁଣି ପହିଲେ ମନେ କଲେ, ମାଙ୍କଡ଼ଗୁଡ଼ାଏ ଖେଙ୍କାରି ହେଉଛନ୍ତି, କିନ୍ତୁ ପରେ ଦେଖିଲେ ଯେ ସେଗୁଡ଼ାକ ମଣିଷ ! ଏ କଥା ଘେନି ଏ ନଗରରେ ଛାତ୍ରମହଲରେ ଟିକିଏ ଚାଞ୍ଚଲ୍ୟ ଉପସ୍ଥିତ ହୋଇଥିଲା - ହେବାର କଥା । ଆମ୍ଭମାନଙ୍କର ଜଣେ ବନ୍ଧୁ ସେ ପୁସ୍ତକର ପ୍ରକାଶକ କଲିକତାର ମଜୁମଦାର କମ୍ପାନୀଙ୍କ ନିକଟକୁ ପତ୍ର ଲେଖିଥିଲେ ଏବଂ ଏପରି ଲେଖାଦ୍ୱାରା ଓଡ଼ିଆ ଭାଷାର ଅଯଥା ଅବମାନନା ହୋଇଅଛି ବୋଲି ତାଙ୍କୁ ଜଣାଇଥିଲେ । ମଜୁମଦାର କମ୍ପାନୀ ଉତ୍ତର ଦେଇଅଛନ୍ତି, ଯେଉଁ ବ୍ୟକ୍ତି ସେ ପ୍ରବନ୍ଧ ଲେଖିଥିଲେ, ତାଙ୍କର ସ୍ୱର୍ଗପ୍ରାପ୍ତି ହୋଇଅଛି । ତାଙ୍କଠାରୁ କୈଫିୟତ୍ ବା କ୍ଷମାପ୍ରାର୍ଥନା ଆସି ପାରିବ ନାହିଁ । ତେବେ କମ୍ପାନୀ ପ୍ରତିଶ୍ରୁତି ହୋଇଅଛନ୍ତି ଯେ, ସେ ପୁସ୍ତକର ନୂତନ ସଂସ୍କରଣ ହେବାବେଳେ ସେ ଅଂଶଟା ଉଠାଇ ଦେବେ । ଭଲ ହେଲା, ଗୋଇଠାମାଡ଼ ପରେ 'ବିଷ୍ଣୁ' କରାଗଲା, ଏତିକି ସୁଖର କଥା ।

## ୪. ଓଡ଼ିଶାର ବନ୍ୟା ବିପତ୍ତି

ଖୋଦ୍ ବିହିବିଧାତା ମୋଗଲବନ୍ଦିଆଙ୍କ କପାଳରେ, ହାତରେ ଲେଖିଦେଇଛନ୍ତି ଯେ, ଯୁଗେ ଯୁଗେ ଦେଶ ଓ ଦେଶାନ୍ତରରୁ, ଉପର ମାଳରୁ ବନ୍ୟାଜଳ ଆସି ମୋଗଲବନ୍ଦିକୁ ବଢ଼ିରେ ଭସାଇ ମୋଗଲବନ୍ଦିଆଙ୍କୁ ଉଚ୍ଛନ୍ନ କରି ସମୁଦ୍ରକୁ ବୋହି ଯାଉଥିବ । ବନ୍ୟାଜଳ ବନ୍ଧ ଭାଙ୍ଗିବ, ଫସଲ ନଷ୍ଟ କରିବ, ଘରଦ୍ୱାର, ଗାଈ ଗୋରୁ ଭସାଇ ନେବ । ବୁଡ଼ିଗଲେ ପାଣିରେ ପ୍ରାଣ ଯିବ, ନଈବଢ଼ିରୁ ବଞ୍ଚି ରହିଲେ ଦାନା ନ ପାଇ ହାହାକାରରେ ଶୁଖିଲାରେ ପ୍ରାଣଯିବ । ଓଡ଼ିଶାର ଏ ଦୁଃଖ ସମସ୍ତେ ଦେଖୁଛନ୍ତି, କିନ୍ତୁ ସମସ୍ତଙ୍କ ପ୍ରାଣ ଏଥିପାଇଁ କାନ୍ଦୁ ନାହିଁ । ଶ୍ରୀଯୁକ୍ତ ଆଣ୍ଟ୍ରୁଜ୍ ସାହେବ ଜଣେ ଭାରତ-ହିତୈଷୀ ଇଂରେଜ । ସେ ବାରମ୍ବାର ଓଡ଼ିଶାକୁ ଆସିଛନ୍ତି, ଓଡ଼ିଆଙ୍କ ଦୁଃଖ ସ୍ୱଚକ୍ଷୁରେ ଦେଖିଛନ୍ତି ଓ ଅଙ୍ଗେ ନିଭେଇଛନ୍ତି । ବନ୍ୟା ବିପତ୍ତିର କି ପ୍ରତିକାର ହୋଇପାରେ, ସେ ଏ କଥା ଭାବିଛନ୍ତି । ତାଙ୍କର ମତ ଏହି ଯେ, ନଈସବୁ ଏକ ପ୍ରଦେଶରୁ ବାହାରି ଅନ୍ୟ ପ୍ରଦେଶ ବାଟେ ସମୁଦ୍ରକୁ ବୋହିଯାଉଅଛି । ଏପରି ସ୍ଥଳରେ ନଈବଢ଼ି ସମ୍ବନ୍ଧେ କଟକଣା କରିବା କାମ ଏକ ପ୍ରାଦେଶିକ ସରକାରଙ୍କ ଦ୍ୱାରା ହୋଇପାରିବ ନାହିଁ । ଯଥା, ମହାନଦୀ ମଧ୍ୟପ୍ରଦେଶରୁ ବାହାରି ଗଡ଼ଜାତ ବାଟେ ପୁରୀ ଓ କଟକ ଜିଲ୍ଲା ଦେଇ ସମୁଦ୍ରରେ ପଡ଼ିଛି । ଏପରି ଅବସ୍ଥାରେ କେଉଁ ପ୍ରାଦେଶିକ ସରକାର ମହାନଦୀର ବନ୍ୟା ସମ୍ବନ୍ଧେ କଟକଣା କରିବେ ? ଅତଏବ ବନ୍ୟା ପ୍ରତିକାର କରିବାପାଇଁ ଭାରତ ସରକାରଙ୍କ ଅଧୀନ ଗୋଟିଏ କେନ୍ଦ୍ର କମିଟି ସ୍ଥାପିତ ହେଉ । କେଉଁ ନଦୀର ବନ୍ୟା ଉପଦ୍ରବ ନିବାରଣ ନିମନ୍ତେ କେଉଁ ପ୍ରଦେଶରେ କି ଉପାୟ କରାଯାଇପାରେ, କେନ୍ଦ୍ର କମିଟି ତାହା ସ୍ଥିର କରୁ । ଭାରତ କେନ୍ଦ୍ର ଗଭର୍ଣ୍ଣମେଣ୍ଟ ଆଣ୍ଟ୍ରୁଜ୍ ସାହେବଙ୍କର ଏ ପ୍ରସ୍ତାବକୁ ଉତ୍ତମ ରୂପେ ବିବେଚନା କରନ୍ତୁ । ଆଶା ହୁଏ, ତାହା କାର୍ଯ୍ୟରେ ପରିଣତ ହେଲେ ଓଡ଼ିଶାର ଉପକାର ହେବ । ବର୍ତ୍ତମାନ ଯେପରି ଅବସ୍ଥା, ଥରକୁ ଥର ଯେପରି ବନ୍ୟା ବିପତ୍ତି ଓଡ଼ିଶାରେ ଲାଗିରହିଛି, ତାହା ଦେଖି ଆମେମାନେ ମନରେ ପାଉ ଯେ ଓଡ଼ିଶାରେ ଧାନ ବିଲରେ ସୁନା ଫଳିଲେ ସୁଦ୍ଧା ବନ୍ୟା ଉପଦ୍ରବ ରହିବ, ନ ହେଲେ ଓଡ଼ିଆଏ ତାହା ଭୋଗ କରିପାରିବେ ନାହିଁ । ବନ୍ୟା ଓଡ଼ିଶାର ପରମ ଶତ୍ରୁ, ସେ ଅନେଇ ବସିଥାଏ - ବାଗ ପାଇଲେ ଓଡ଼ିଆଙ୍କ ତଣ୍ଟି ଚିପିଦିଏ ।

## ୫. ଆମ ମିସ୍ ଦାସ

'ନିଉ ଓଡ଼ିଶା' ଖବରକାଗଜରେ ପାଟଣାରୁ ପ୍ରେରିତ ଏକ ପତ୍ର ଛାପା ହୋଇଅଛି । ମିସ୍ ଦାସ ଯାଇ ଆମ ଲାଟ ମହିଷୀ ଲେଡ଼ୀ ସିଫ୍‌ଟନ୍ ମହୋଦୟାଙ୍କୁ କଟକର ନାରୀସଭା (Womens' Council) ପକ୍ଷରୁ ନିମନ୍ତ୍ରଣ କରି ଆସିଥିଲେ ଏବଂ ଲାଟ ମହିଷୀ ତାଙ୍କ ନିମନ୍ତ୍ରଣ ଗ୍ରହଣ କରିଥିଲେ । କିନ୍ତୁ ଲାଟ ମହିଷୀ କଟକରେ ବିଜେ କରିବା ବେଳେ ମିସ୍

ଦାସ କଟକରେ ଅନୁପସ୍ଥିତ ରହିବେ ବୋଲି ମିସେସ୍ ସିଂହଙ୍କ ହସ୍ତରେ ଅଭ୍ୟର୍ଥନାର ଭାର ଦିଆଗଲା । ଏ ସମ୍ବାଦ ପଢ଼ି ଏଠାରେ କେତେ ଅସଭ୍ୟା, ଅଯୋଗ୍ୟା, ଅକର୍ମଣ୍ୟା, ଓଡ଼ିଆ ନାରୀ, ତଥା କେତେ ବୁଦ୍ଧିହୀନ, ଭାଗ୍ୟହୀନ, କର୍ତ୍ତବ୍ୟଜ୍ଞାନହୀନ ନର, ଗୋଟିଏ ଲେଖାଏଁ ଦୀର୍ଘ ନିଃଶ୍ୱାସ ଛାଡ଼ିଲେ । ହାୟରେ ବିଧାତା ! ଆମ କପାଳକୁ, ଏତିକି ବେଳେ ଆମ ମିସ୍ ଦାସ ଏଠାରୁ ଅନ୍ତର୍ଦ୍ଧାନ ହେଲେ । ଭଗବାନ୍ ତାଙ୍କୁ ଓଡ଼ିଶାକୁ ପ୍ରେରଣ କରିଅଛନ୍ତି । ତାଙ୍କର ମହାବ୍ରତ (Noble mission) ହେଉଛି - ଏ ପତିତ, ପରାଙ୍ମୁଖ, ପଶ୍ଚାତ୍ପଦ ଓ ଗୁଆଁର ଓଡ଼ିଆ ଜାତିର ନରନାରୀମାନଙ୍କର Uplift ବା ଉତ୍ତୋଳନ । ଆମର ଡର ଏତିକି, ମିସ୍ ଦାସ ଆମକୁ ଉତ୍ତୋଳନ କରୁ କରୁ ଯେବେ ଶେଣା ଦଉଡ଼ି ଛିଣ୍ଡିଯାଏ, ଆମେ ଦୁଲ୍‌କିନି କଚାଡ଼ି ହୋଇ ପଡ଼ିବା, ସେ ବି ମାଙ୍କଡ଼ଚିଡ୍ ଖାଇ ଭୁଷ୍‌କିନି ପଡ଼ିବେ - ଉଠେଇବାବାଲୀ ଓ ଉଠିବାବାଲୀ ସମସ୍ତଙ୍କର ଦଶା ହେବ 'ପପାତ ଧରଣୀତଳେ' ।

୧୭, ଏପ୍ରିଲ ୧୯୩୫

## ।। ସତର ।।

### ୧. ବାଣ ଓଲଟି ଆସି ନିଜ ଦେହରେ ବାଜିଲା

ଲୋକେ ପରା କହନ୍ତି, ଯେ ପରର ମନ୍ଦ ପାଞ୍ଚେ, ଭଗବାନ୍ ତାହାରି ମନ୍ଦ କରନ୍ତି । ଆମ ଆନ୍ଧ୍ରଭାଇମାନେ ନ ଖାଇ, ନ ପିଇ, ନ ବସି, ନ ଶୋଇ, ପ୍ରାଣପଣେ ଲାଗିଥିଲେ - ଓଡ଼ିଶା ପ୍ରଦେଶ ନ ହେଉ । ଭଗବାନ୍‌ଙ୍କ କୃପାରୁ ଓଡ଼ିଶା ପ୍ରଦେଶ ହେବ ବୋଲି ପାର୍ଲିଆମେଣ୍ଟରେ ଆଇନ ପାସ୍ ହୋଇଅଛି । ଯେଉଁ ଦିନ ସେ ଆଇନ ପାସ୍ ହେଲା, ସେହିଦିନ ସରକାର ପାର୍ଲିଆମେଣ୍ଟରେ ଘୋଷଣା କରିଦେଲେ ଯେ, ବର୍ତ୍ତମାନ ଆନ୍ଧ୍ରପ୍ରଦେଶ ହେବ ନାହିଁ । ଆନ୍ଧ୍ରଭାଇମାନେ ସିନା ଆମକୁ ବାଣ ମାରୁଥିଲେ, ବାଣ ଯେ ଓଲଟି ତାଙ୍କ ଦେହରେ ବାଜିଲା । ସେମାନଙ୍କ ପ୍ରତି ଆନ୍ତରିକ ସହାନୁଭୂତି ପ୍ରକାଶ କରୁଅଛି ।

### ୨. କଂଗ୍ରେସର ଅହିଂସା ନୀତି

ସେଦିନ ମାନ୍ଦ୍ରାଜରେ କେତେ ଜଣ କଂଗ୍ରେସ ନେତା ଗୋଟାଏ ସଭା କରିଥିଲେ । ଆସେମ୍ଳିରେ କଂଗ୍ରେସ ଏ କାମ କରିଛି, ସେ କାମ କରିଛି, କେତେ ଜଣ ବକ୍ତା ଏହା ବଖାଣୁଥିଲେ । ପାଟିରେ ବାଟୁଳି ବାଜୁ ନ ଥିଲା । ଜଣେ ଭଦ୍ରଲୋକ କହିଲେ, ମୂଲିଆମାନଙ୍କ ପାଇଁ ତ କଂଗ୍ରେସ କିଛି କଲା ନାହିଁ, ଆଉ ସେ ଯିବେ କୁଆଡ଼େ ? କଂଗ୍ରେସ ଭକ୍ତମାନେ ତାଙ୍କୁ ମାରି ଚୂନା କରି ଦେଇଥାନ୍ତେ, ଜଣେ ବକ୍ତା ତାଙ୍କୁ ସଭାଗୃହ ମଧ୍ୟରୁ ଖସାଇ ନେଇଗଲେ । ସମ୍ବାଦପତ୍ରରେ ବାହାରିଲା, ଦେଖିଲ, କଂଗ୍ରେସନେତା କେଡ଼େ ମହତ୍ କାର୍ଯ୍ୟଟାଏ କଲେ । ସେ ଯଦି ସେ ଭଦ୍ରଲୋକଟିକୁ ଖସାଇ ନେଇ ନ

ଥାନ୍ତେ, ତାଙ୍କର କ'ଣ ଜୀବନ ରହିଥାନ୍ତା ? କଂଗ୍ରେସଭକ୍ତମାନେ ଯେ ଗରମପାଣି ପରି ଫୁଟି ଉଠିଲେ, ଏହା ଅନୁଚିତ ବୋଲି କେହି ସେ ସଭାରେ କହିଲେ ନାହିଁ । ଏହାଠାରୁ ବଳି କଂଗ୍ରେସର ଅହିଂସାନୀତିର ଆଉ କଣ ପରିଚୟ ମିଳିପାରେ ?

### ୩. ଅଡ଼ା କାହା ହାତରେ ରହିବ

ମହାତ୍ମାଗାନ୍ଧିଙ୍କ କୃପାରୁ ଓଡ଼ିଶା ସତର ହଜାର ଟଙ୍କା ପାଇବ, ଏ ଟଙ୍କା କପାଚାଷ ଉନ୍ନତିରେ ଖରଚ ହେବ । କିନ୍ତୁ ଅଡ଼ା ରହିବ କାହା ହାତରେ ? ଓଡ଼ିଶାକୁ ଓଡ଼ିଶା ବାହାରୁ କେତେ ଥର କେତେ ଟଙ୍କା କଂଗ୍ରେସ କର୍ମୀମାନଙ୍କ ହାତକୁ ଆସେ । ସୁଅ କେଉଁଆଡ଼କୁ ବୋହି ଯାଏ, ଲୋକେ ତା ଜାଣିପାରନ୍ତି ନାହିଁ । ପୁଳା ପୁଳା ଟଙ୍କା ଜଣେ ଜଣେ ମାରି ନେବାର ଜାଣୁ । ଏଥର ଏ ଟଙ୍କା ସମ୍ପର୍କରେ ଶ୍ରୀଯୁକ୍ତ ଗୋପବନ୍ଧୁ ଚଉଧୁରୀଙ୍କ ନାମ ଶୁଣୁଛୁଁ, କିନ୍ତୁ ତାଙ୍କ ପରି ଲୋକ ଓଡ଼ିଶାରେ କଂଗ୍ରେସ କର୍ମୀମାନଙ୍କ ମଧ୍ୟରେ କେତେ ଜଣ ଅଛନ୍ତି ? ଓଡ଼ିଶାରେ କପା ଚାଷର ଉନ୍ନତି ପ୍ରୟୋଜନ, ଏଥିରେ ଦୁଇ ମତ ନାହିଁ । ଏହି ଟଙ୍କାର ଯଦି ସଦ୍‌ବ୍ୟୟ ହୁଏ ତେବେ ଗୋଟାଏ ଭଲ କାମ ହୋଇଯିବ ।

### ୪. ସୁନା ଚାଲିଗଲା

ଭାରତବର୍ଷରୁ ବହୁତ ସୁନା ଇଉରୋପ ଓ ଆମେରିକାକୁ ଚାଲିଗଲା । ଆଜି ପର୍ଯ୍ୟନ୍ତ ଯେତେ ସୁନା ଗଲାଣି, ତହିଁର ମୂଲ୍ୟ ଦୁଇଶ ତିନିଶ କୋଟି ଟଙ୍କା ଓ ଓଜନ ଅନ୍ଦାଜ ଅଠାଇଶ ହଜାର ମହଣ । ଯାହା ଠୁଳ କରି ଦେଲେ ଗୋଟିଏ ଛୋଟ ମୁଣ୍ଡିଆ ପାହାଡ଼ ହୁଅନ୍ତା । ଭାରତବର୍ଷ ଏ ସୁନା ବିକି ବଡ଼ ଲୋକ ହେଲା ନାହିଁ, ଦରିଦ୍ର ହେଲା । ଯେ ସଞ୍ଚି ରଖେ ସେ ବଡ଼ । ଯେ ବିକି ଭାଙ୍ଗି ଖାଏ, ସେ ଦରିଦ୍ର । ଭାରତବର୍ଷ ଯାହା ସଞ୍ଚିଥିଲା, ସବୁ ସାରି ଦେଲା ।

### ୫. ବୁଢ଼ାବର

ବକ୍‌ସି ବଜାରରେ ଏକ ବୃଦ୍ଧ ଅଛନ୍ତି, ତାଙ୍କର ବୟସ ୭୦ର ଆଖପାଖ । ତାଙ୍କୁ ଯଦି କେହି କହେ, ମୁଁ ତୁମ ପାଇଁ ଗୋଟିଏ କନ୍ୟା ଠିକ୍ କରିଛି, ସେ ଆନନ୍ଦରେ ବିଭୋର ହୋଇ ନାଚି କୁଦି ଗୀତ ଗାଇ, ମନେ ମନେ ସ୍ୱର୍ଗସୁଖ ଭୋଗ କରନ୍ତି । ଆଉ ଏକ ବ୍ୟକ୍ତି ଅଛନ୍ତି, ତାଙ୍କୁ ଯଦି କେହି କହିଦେବ, ତୁମକୁ ମ୍ୟୁନିସିପାଲିଟିର ଚେୟାରମାନ୍ ପାଇଁ ଠିକ୍ କରିଛୁଁ, ତେବେ ସେ ତାଙ୍କର ଜୀବନର ଆକାଂକ୍ଷା ପୂରଣ ହେଲା ମନେକରି ଖୁସି ହୋଇ ଦୋହଲି ଦୋହଲି ଉନ୍ମତ୍ତ ହୋଇଯିବେ । ବର୍ତ୍ତମାନ ତାଙ୍କର ସେହି ଦଶା ଦେଖି ଆମେ ହସିବା କେତେ ? ଏକ ବାଜିକର ତାଙ୍କୁ ଭେଲିକି ଲଗାଇ ଦେଇଛି, ତାଙ୍କୁ ଅବସର ନାହିଁ । କେଉଁ ଦିନ ସେ ବେଦିରେ ବସିବେ, ହୁଳହୁଳି ପଡ଼ିବ, ପଲାଓ, କୋର୍ମା, କୋପ୍ତା ଭକ୍ଷଣ କରିବା - ଆମେ ଅନେଇ ବସିଛୁଁ ।

୨୪, ଏପ୍ରିଲ ୧୯୩୫

## ।। ଅଠର ।।

### ୧. ଶୋଇଥାଅ ଭାଇ ଶୋଇଥାଅ

କଟକରେ ରାଜଧାନୀ ଗଢ଼ା ହେବ, ଲକ୍ଷ ଲକ୍ଷ ଟଙ୍କା ଖରଚ ହେବ । ଆମରି ମୂଲିଆ, ରାଜମିସ୍ତ୍ରି, ଆମରି ବଢ଼େଇ କାମ କରିବେ, ଆମରି ଇଟା, ଆମରି ଚୂନ, ଆମରି ବାଲି, ଆମରି କାଠ ସେ କାମରେ ଲାଗିବ । କିନ୍ତୁ ଆମର ଯେପରି ସ୍ୱଭାବ, ଏହା ଅସମ୍ଭବ ନୁହେଁ ଯେ - ବରଂ ଖୁବ୍ ସମ୍ଭବ ଯେ, ବିଦେଶୀ କମ୍ପାନୀ କାମ କରାଇ ସର ଖାଇବେ, ଆମେ ପାଇବା ଛେନାପାଣି । ହୁଏତ କାମ ସରିଲେ ଆମର ନିଦ ଭାଙ୍ଗିବ, ସେତେବେଳେ ଆଖି ମଳି ମଳି ଆମେ କହିବା, ଦେଖିଲ ହୋ, ଆମେ କିଛି ପାଇଲୁ ନାହିଁ । ପାଇବ କାହୁଁ ? ପ୍ରତିଜ୍ଞା କରିଛନ୍ତି, ଅଳସୁଆଙ୍କୁ ଦାନା ଦେବେ ନାହିଁ । ସରକାରଙ୍କୁ କାହିଁକି ଦୋଷ ଦେବା, ବିଦେଶୀ ଲୋକଙ୍କୁ କାହିଁକି ଦୋଷ ଦେବା ? ସରକାର ତ କାଉନ୍ସିଲରେ ପ୍ରତିଶ୍ରୁତ ହୋଇଅଛନ୍ତି, ମାତବର ସ୍ଥାନୀୟ କମ୍ପାନୀଙ୍କୁ ଆଗ କାମ ଦେବେ । କିନ୍ତୁ ମାତବର ସ୍ଥାନୀୟ କମ୍ପାନୀ କାହାନ୍ତି ? ଯେଉଁ ରାଜ୍ୟରେ ତିନି ଜଣ ମାତ୍ର ଗୋଟାଏ ଡଙ୍ଗାରେ ବସିଲେ ଜଣେ କହେ, ପୂର୍ବକୁ ଯିବା, ଜଣେ କହେ ପଶ୍ଚିମକୁ ଯିବା କେହି ମଙ୍ଗ ଧରେ ନାହିଁ, କେହି ଆହୁଲା ପକାଏ ନାହିଁ, ଡଙ୍ଗା ଟଳମଳ ହୋଇ ମଝି ନଈରେ ଭାସିଯାଏ, ସେ ରାଜ୍ୟରେ ମାତବର କମ୍ପାନୀ ଖୋଜିବା ଯାହା - ନିର୍ମୂଳୀର ମୂଳ ଓ ଡିମିରି ଗଛରୁ ଫୁଲ ଖୋଜିବା ତାହା । ସତ୍ୟ ସମାଚାରରେ ପଢ଼ିଥିବ, ହାଇଦ୍ରାବାଦରେ ଗୋଟିଏ ବାଳକ ପରୀକ୍ଷା ଦେବାକୁ ଯାଇ ପରୀକ୍ଷା ଗୃହର ପିଣ୍ଡାରେ ଶୋଇପଡ଼ିଲା, ନିଦ ଭାଙ୍ଗିବା ବେଳକୁ ପ୍ରଶ୍ନ ବଣ୍ଟାଯାଇ ପିଲାମାନେ ଉତ୍ତର ଲେଖିବା ଆରମ୍ଭ କରିଥିଲେ, ସେ ଆଖି ମଳି ମଳି ଘରକୁ ଫେରିଗଲା । ଆମର ସ୍ୱଭାବ ସେହିପରି । ତେବେ କେତେଜଣ ବିଶିଷ୍ଟ ଲୋକ ଗୋଟାଏ ମାତବର କମ୍ପାନୀ ଗଢ଼ିବାକୁ ଚେଷ୍ଟା କରୁଅଛନ୍ତି; ଏହା ଅନ୍ଧାର ରାତିରେ ବିଜୁଳି ପରି ଟିକିଏ ହିମ୍ମତ ଦେଉଛି । ଦେଖାଯାଉ, କଅଣ ହଉଛି । ଗୋଟାଏ କଥା ଟାଣ କରି କହୁଛି, କିଛି ମନେ କରିବ ନାହିଁ । ଆମର ଯଦି ହୋସ୍ ନ ହୁଏ, ତେବେ ସ୍ୱତନ୍ତ୍ର ପ୍ରଦେଶ ତ ସ୍ୱତନ୍ତ୍ର ପ୍ରଦେଶ, ବୈକୁଣ୍ଠରୁ ଅରାଏ ପାଇଲେ ସୁଦ୍ଧା ଆମେ ମଣିଷ ହେବା ନାହିଁ ।

### ୨. ଗାଁ କନିଆଁ ସିଙ୍ଗାଣିନାକୀ

ମେଦିନୀପୁର ଜିଲାର ତମଲୁକରୁ ଗୋଟିଏ ଯାତ୍ରା ଦଳ ଆସି ବାଲେଶ୍ୱର ଜିଲାରେ ବଙ୍ଗଳା ଯାତ୍ରା କରି ବହୁତ ପଇସା ଛାଣି ନେଇଗଲା । ସେ ଜିଲାରେ ଭଲ ଭଲ ଯାତ୍ରା ଦଳ ଥିଲେହେଁ ସେମାନଙ୍କୁ କେହି ପଚାରନ୍ତି ନାହିଁ, ଏହି କଥା ଲେଖି ଆମର ଏକ ଦୈନିକ ସମ୍ବାଦପତ୍ରରେ ସମ୍ବାଦଦାତା ବଡ଼ ଦୁଃଖ ପ୍ରକାଶ କରିଅଛନ୍ତି । ମୁଁ କହେଁ, ଲୋକେ ବଙ୍ଗଳା ଯାତ୍ରା ଦେଖିଲେ, ଏହା ଦୋଷର କଥା ନୁହେଁ, ନୂଆ ଜିନିଷ ପାଟିକୁ ସୁଆଦ ଲାଗେ, ଦିନେ ନୂଆ ଜିନିଷ ଚାଖିଦେଲେ ଦୋଷ ନାହିଁ । କିନ୍ତୁ କ୍ଷୋଭର କଥା, ନିଜ ଦେଶର ଯାତ୍ରାଦଳ ପ୍ରତି ଅବହେଳା, ଅବଜ୍ଞା । ଯେଉଁ ଦିନଯାଏ ଆମେ ନିଜ ଜିନିଷର

ଆଦର କରି ନ ଶିଖିବା, ସେ ଦିନଯାଏ ଆମେ ଯେଉଁ ମେଣ୍ଢା, ସେହି ମେଣ୍ଢା । ଯେଉଁ ଦିନ ଯାଏ ଆମର ଅକଲ ପଇଦା ନ ହେବ, ଆମର ବଗଡ଼ା ଚାଉଳ ଆମର ପରମାନ୍ନ, ଯେଉଁଦିନଯାଏ ଆମେ ନ ବୁଝିବା, ପରଘରେ ପଲାଉ ରନ୍ଧା ହେଲେ ଆମେ କେବଳ ଆଘ୍ରାଣ ପାଇବା ସିନା, ତାହା ତ ଆମର ନୁହେଁ, ତେତେଦିନଯାଏ ଆମକୁ କିଏ ମଣିଷ ବୋଲି ଗଣିବ ? ଆମର ଅଛି ବହୁତ ଭଲ ଜିନିଷ, କିନ୍ତୁ ଆମ ଅଯତ୍ନରୁ ଆମ ଜିନିଷରେ କଳଙ୍କି ଲାଗିଯାଉଅଛି, ଆମେ ଆମ ଦିଅଁଙ୍କୁ ପଥର ଜ୍ଞାନ କରି ଗୋଇଠା ମାରୁଛୁଁ । ଆମର ଦରକାର - ଅକଲ । ତାହା ତ ବଜାରରେ ମିଳେ ନାହିଁ କି ଖାନନଗର ମାଳୀସାହିରେ ଉତ୍ପନ୍ନ ହୁଏ ନାହିଁ । ଆମ ମୁଣ୍ଡ ଚିନ୍ତା କଲେ ତାହା ପାଇବ ।

## ୩. ନାରୀ ପ୍ରତିନିଧି

ଓଡ଼ିଶା ପ୍ରଦେଶରୁ ଯେଉଁ କାଉନ୍ସିଲ ଗଢ଼ା ହେବ ତହିଁରେ ଷାଠିଏ ଜଣ ପ୍ରତିନିଧି ରହିବେ, ସେମାନଙ୍କ ମଧ୍ୟରେ ଦୁଇ ଜଣ ହେବେ ନାରୀ । ଅନେକ ଓଡ଼ିଆ ମନେ ମନେ ପାଞ୍ଚୁଛନ୍ତି, କେଉଁ ଓଡ଼ିଆ ନାରୀ ଦୁଇଜଣ ସଭା ମଣ୍ଡନ କରିବେ ? ମୁଁ କହେଁ, ଏତେ କଳ୍ପନା ଜଳ୍ପନାର କି ପ୍ରୟୋଜନ ? ଜଣେ ପରା ଭାର ନେଇଛନ୍ତି, ଓଡ଼ିଶାରେ ଉତ୍ତମ ନାରୀ ଗଢ଼ିଦେବେ ? ତାଙ୍କ ପାଖକୁ ଗଲେ, ସେ ଦୁଇଟି ଭଲ ପିତୁଳା ତାଙ୍କରି ଛାଞ୍ଚରେ ଗଢ଼ିଦେବେ । ଯଦି ତାଙ୍କ ଗଢ଼ା ପିତୁଳା ତୁମର ପସନ୍ଦ ନ ହେବ, ତାଙ୍କ ଗୋଡ଼ତଳେ ପଡ଼ି କହିବ, ଆପଣ ନିଜେ ବସିଯାନ୍ତୁ । ତାଙ୍କୁ ଆଉ ମଧ୍ୟ କହିବ, ପଣେ ଓଡ଼ିଆଣୀଙ୍କ ସଙ୍ଗେ ସରି, ଆପଣ ଜଣେ । ଆପଣଙ୍କଠାରେ ସବୁ ଗୁଣ ଅଛି । ପ୍ରଜାପତିଙ୍କ କାରଖାନାରେ ମନୁଷ୍ୟ ଗଢ଼ା ହେବାବେଳେ ସେ ତିଳ ତରଳ କରି ଶୋଭା ଠୁଳ କରି ତିଳୋତ୍ତମାଙ୍କୁ ଗଢ଼ିଥିଲେ, ଆପଣ ତ ଗୁଣୋତ୍ତମା, ଆପଣ ଉତ୍ତରାଧିକାରିଣୀ ସୂତ୍ରେ ଆମର ନେତ୍ରୀ । ଆପଣ ଆମକୁ ଛାଡ଼ିବେ କିପରି, ଆମେ ଆପଣଙ୍କୁ ଛାଡ଼ିବୁ କିପରି ? ତୁମେମାନେ ତାଙ୍କୁ ଏହା କହିଲେ ସେ କଅଣ ଉତ୍ତର ଦେବେ, ସତ୍ୟ ସମାଚାର ଅଫିସ୍‌କୁ ଲେଖି ପଠାଇବ, ପାସୋରିବ ନାହିଁ ।

## ୪. ତାଲିମ ହୁଅ, ସ୍ୱରାଜ ପାଇବ

ବୋମ୍ବାଇରେ ଗୋଟିଏ ସମିତି ସଂସ୍ଥାପିତ ହୋଇଅଛି, ତହିଁର ଉଦ୍ଦେଶ୍ୟ, ଡିଷ୍ଟ୍ରିକ୍ଟ ବୋର୍ଡ଼ ଓ ମ୍ୟୁନିସିପାଲିଟିମାନଙ୍କ ଭୋଟରମାନଙ୍କୁ ଶିକ୍ଷା ଦିଆଯିବ, "ଠିକ୍ ଲୋକଙ୍କୁ ଭୋଟ ଦେବ", ମେମ୍ବରମାନଙ୍କୁ ଶିକ୍ଷା ଦିଆଯିବ, "ଦଳାଦଳି ଛାଡ଼ି ଯହିଁରେ ସର୍ବସାଧାରଣରେ ଉପକାର ହେବ, ତାହା କରିବ, ଲୋଭ କରିବ ନାହିଁ ।" ଆଉ ମଧ୍ୟ ଡିଷ୍ଟ୍ରିକ୍ଟ ବୋର୍ଡ଼ ଓ ମ୍ୟୁନିସିପାଲିଟିମାନଙ୍କରେ କାମ କରିବା ନିମନ୍ତେ ଲୋକମାନଙ୍କୁ କାର୍ଯ୍ୟପ୍ରଣାଳୀ ଶିକ୍ଷା ଦିଆଯିବ, ସେହିମାନେ କର୍ମ ପାଇବେ । ସେ ପ୍ରଦେଶରେ ପ୍ରତ୍ୟେକ ଜିଲାବୋର୍ଡ଼ ଓ ମ୍ୟୁନିସିପାଲିଟି ସେ ସମିତିର ମେମ୍ବର । ସମିତିର ଉଦ୍ଦେଶ୍ୟ, ଲୋକେ ଯଦି ଡିଷ୍ଟ୍ରିକ୍ଟ ବୋର୍ଡ଼ ଓ ମ୍ୟୁନିସିପାଲିଟି ଭଲ ରୂପେ ଚଳାଇ ଶିଖିବେ, ସେମାନେ ସ୍ୱରାଜ

ପାଇବାର ଲାଏକ୍ ହେବେ । ଏହି ସମିତିର ଅନୁକରଣରେ ଲାହୋରରେ ଗୋଟିଏ ସମିତି ସେଦିନ ପ୍ରତିଷ୍ଠିତ ହୋଇଅଛି । ସମିତିର ଉଦ୍ଦେଶ୍ୟ ସଫଳ ହେଉ, କାମନା କରୁଅଛୁଁ । କିନ୍ତୁ ପୃଥିବୀର କୌଣସି ସ୍ଥାନରେ ଯଦି ଭୋଟରମାନଙ୍କୁ ଶିକ୍ଷା ଦେବା ପ୍ରୟୋଜନ, ମ୍ୟୁନିସିପାଲିଟିର କମିସନର ଓ ଡିଷ୍ଟ୍ରିକ୍ଟ ବୋର୍ଡ଼ର ମେମ୍ବରମାନଙ୍କୁ ଶିକ୍ଷା ଦେବା ବିଶେଷ ପ୍ରୟୋଜନ, ତେବେ ସେ ସ୍ଥାନ ଆମ କଟକ । ଏଠାରେ ସେ ଶିକ୍ଷା ପ୍ରଦାନ ଯେମନ୍ତ ପ୍ରୟୋଜନ, ତେମନ୍ତ କଠିନ । କାରଣ, ପଥୁରିଆ ମାଟିରେ ଘାସ ଉଧାଏ ନାହିଁ ।

## ୫. ଜୁବୁଲି

ଅନେକ ବୃଦ୍ଧ ଲୋକ ଅଛନ୍ତି, ଯେଉଁମାନେ ୧୮୮୭ ସାଲର ଜୁବୁଲି ଓ ୧୮୯୭ ସାଲର ଜୁବୁଲି ଦେଖିଥିଲେ, ପୁଣି ୧୯୩୫ ସାଲର ଜୁବୁଲି ଦେଖିଲେ । ତୁଳନା କଲେ ଦେଖାଯିବ, ସେ କାଳର ଜୁବୁଲି ଓ ଏ ବର୍ଷର ଜୁବୁଲି ମଧ୍ୟରେ ତାରତମ୍ୟ ବହୁତ । ସେ କାଳରେ ବୈଦ୍ୟୁତିକ ଆଲୋକ ନ ଥିଲା, ଏବେ ଘରେ ଘରେ ବୈଦ୍ୟୁତିକ ଆଲୋକ । ଏବେ ସମ୍ରାଟ୍‌ଙ୍କ ଅଭିଭାଷଣ ସମଗ୍ର ବ୍ରିଟିଶ ସାମ୍ରାଜ୍ୟର ଲୋକମାନେ ରେଡିଓ ଯନ୍ତ୍ର ସାହାଯ୍ୟରେ ଶୁଣିବେ, ସେକାଳରେ ଏହା କେହି କଳ୍ପନା ସୁଦ୍ଧା କରି ନ ଥିଲେ । ଆଉ ଗୋଟାଏ ତାରତମ୍ୟ, ସେକାଳରେ ଯେଉଁ ପିଲାମାନେ ଦନାଏ ଦନାଏ ମିଠେଇ ଖାଇଥିଲେ, ବର୍ତ୍ତମାନ ସେମାନେ ବୁଢ଼ା, ମିଠେଇରେ ସେମାନଙ୍କର ଭାଗ ନାହିଁ । ନ ମିଳିଲା ନାହିଁ, ସମ୍ରାଟ୍ ଓ ସାମ୍ରାଜ୍ଞୀଙ୍କୁ ଭଗବାନ୍ ଦୀର୍ଘ ଜୀବନ, ସୁଖସମ୍ପଦ ଓ ସଂସାରରେ ଯାହା କିଛି ଭଲ, ସବୁ ସେମାନଙ୍କୁ ଦିଅନ୍ତୁ, ସେମାନଙ୍କର ସ୍ୱର୍ଣ୍ଣ ଜୁବୁଲି ହେଉ ।

୧, ମେ ୧୯୩୫

### ।। ଉଣେଇଶ ।।

## ୧. ରାଜଶକ୍ତି ପ୍ରବଳ ଶକ୍ତି

ଆପଣମାନେ ଦେଖୁଥିଲେ କେତେ କଥା, ଶୁଣୁଥିଲେ କେତେ କଥା । କିଏ କହୁଥିଲେ, ଇଂରେଜମାନଙ୍କ ଶକ୍ତି ଚୂର୍ଣ୍ଣ କରିଦେବା, ସେମାନଙ୍କୁ ଭାରତବର୍ଷରୁ ଘଉଡ଼ିଦେବା, ଭାରତବର୍ଷ ସ୍ୱାଧୀନ ହେବ, କଂଗ୍ରେସ ନାମ ଧରି ରାମା, ଭୀମା, ଶାମା ରାଜତ୍ୱ କରିବେ, ଦେଶରେ ଅଭାବ ରହିବ ନାହିଁ, ଧାନ ଗଛରେ ସୁନା ଫଳିବ, ଅତଏବ ଆଉ ଇଂରେଜମାନଙ୍କୁ ମାନ ନାହିଁ । ସେମାନେ କାହିଁକି ଆମ ଦେଶ ଶାସନ କରିବେ, ସେମାନଙ୍କ ରାଜା କାହିଁକି ଆମର ରାଜା ହେବେ । ଏହିପରି ରାଶି ରାଶି କଥା ତ ଶୁଣୁଥିଲ, କିନ୍ତୁ ଫଳ କଅଣ ହେଲା ? ଯେମିତି ଜୁବୁଲି ଉତ୍ସବ ହେବ ବୋଲି ଘୋଷଣା ହେଲା, ଦେଶର ଧନୀ, ଦରିଦ୍ର, ଯୁବକ, ବୃଦ୍ଧ, ବାଳକ, ବାଳିକା, ହିନ୍ଦୁ, ମୁସଲମାନ, ବୌଦ୍ଧ, ଖ୍ରୀଷ୍ଟାନ ଆବାଳବୃଦ୍ଧବନିତା ସ୍ତ୍ରୀ-ପୁରୁଷ ସମସ୍ତେ ଉତ୍ସାହରେ ମାତିଗଲେ । ଅତି ଆଗ୍ରହରେ ଜୁବୁଲି

ଉତ୍ସବ ପାଳନ କଲେ । ଯେ ନିତାନ୍ତ ଗରିବ, ସେ ମଧ୍ୟ ଅଣାଏ ପଇସା ଚାନ୍ଦା ଦେଲା, ମାଟି ଦୀପାଳି ଜାଳି ଘରଦ୍ୱାର ଆଲୋକିତ କଲା । କେହି ତ ତାହା ବନ୍ଦ କରିପାରିଲେ ନାହିଁ । କଂଗ୍ରେସବାଲାଙ୍କ ଅକଲ ଗୁଡୁମ । ସେମାନେ ଆଖି ମଳି ମଳି ମନେ ମନେ ଅବଶ୍ୟ ଭାବୁଛନ୍ତି, ନା, ଭାରତବର୍ଷରେ ଇଂରେଜଙ୍କ ପ୍ରଭାବ କାଣିଚାଏ ସୁଦ୍ଧା କମି ନାହିଁ । ଭାରତବାସୀ ଇଂରେଜ ସମ୍ରାଟ୍‌ଙ୍କୁ ଯେପରି ସମ୍ମାନ କରୁଥିଲେ, ସେହିପରି ସମ୍ମାନ କରୁଅଛନ୍ତି । କେତେ କଂଗ୍ରେସବାଲା କବାଟ କଣରେ କାନ୍ଦି କାନ୍ଦି କହିଲେ - ଆମେ ନାଚି ନାଚି ଥେୟା । ପ୍ରକୃତ କଥା, ଭାରତବାସୀ ଇଂରେଜଙ୍କ ସଙ୍ଗେ ସମ୍ପର୍କ ତୁଟାଇବା କଥା କଳ୍ପନା ସୁଦ୍ଧା କରି ନାହାନ୍ତି । ଯେଉଁ କେତେଜଣ ତାହା କରିଛନ୍ତି, ସେମାନେ ବାଚାଳ ।

ଜୁବୁଲି ହେବ ହେବ ବୋଲି ଚହଳ ପଡ଼ିଥିଲା, ହୋଇଗଲା । ପିଲାଏ ମିଠେଇ ଖାଇଲେ, ପତାକା ଘେନି ଶୋଭାଯାତ୍ରା କଲେ, ଗ୍ରାମେ ଗ୍ରାମେ କୀର୍ତ୍ତନ ହେଲା, ଦେବମନ୍ଦିରମାନଙ୍କରେ ସମ୍ରାଟ୍‌ଙ୍କ ମଙ୍ଗଳ କାମନାରେ ପୂଜା ଓ ହୋମାଦି ହେଲା । କେତେ ଗ୍ରାମରେ ଯାତ୍ରା ହେଲା, ସହରରେ ପାରେଡ୍ ହେଲା, ସଲାମି ଦିଆଗଲା, ମେଡାଲ ବଣ୍ଟାଗଲା, ଖେଳ ହେଲା, ଆହୁରି କେତେ କଅଣ ହେଲା । ଆମ ଦେଶ ଅପେକ୍ଷା ବିଲାତରେ ବହୁତ ଉତ୍ସବ ହେଲା । ବର୍ତ୍ତମାନ ତାହା ସବୁ ସରିଗଲାଣି । ତହିଁରୁ ଶିଖିଲ କଅଣ ? ପ୍ରଧାନ ଶିକ୍ଷା ରାଜଭକ୍ତି, ପ୍ରଜାମାନଙ୍କର ରାଜାଙ୍କ ପ୍ରତି ଅଟଳ ଭକ୍ତି ଓ ସ୍ନେହ । ଏହି ସ୍ନେହ ଭକ୍ତି ନ ଥିଲେ ରାଜା ବା ପ୍ରଜା କେହି ଶାନ୍ତିଭୋଗ କରନ୍ତେ ନାହିଁ । ପ୍ରଜା ବିଦ୍ରୋହୀ ହେଲେ ରାଜାଙ୍କର ଅମଙ୍ଗଳ ହୁଏ । ରାଜା ଅତ୍ୟାଚାରୀ ହେଲେ ପ୍ରଜାମାନଙ୍କର ଭକ୍ତି ଓ ସ୍ନେହ ହରାଇ ବସନ୍ତି । ସମ୍ରାଟ୍ ପଞ୍ଚମ ଜର୍ଜ ଯେ ଏତେ ସମ୍ମାନ ପାଇଲେ ତାଙ୍କର ମହତ୍‌ଗୁଣ ହେତୁରୁ । ଇଂଲଣ୍ଡର ପ୍ରଜାମାନଙ୍କର ତାଙ୍କ ପ୍ରତି କେତେ ଭକ୍ତି ଓ ସ୍ନେହ, ଗୋଟାଏ କଥାରୁ ତାହା ଜଣା କରିବା । ସହସ୍ର ସହସ୍ର ଲୋକ ରାଜପ୍ରାସାଦ ସମ୍ମୁଖରେ ସମବେତ ହୋଇଥାଆନ୍ତି, ସମ୍ରାଟ୍‌ଙ୍କର ଥରେ ଦର୍ଶନ ପାଇବା ନିମନ୍ତେ । ସମ୍ରାଟ୍ ରାଜପ୍ରାସାଦର ଛାତ ଉପରେ ଠିଆ ହୋଇ ଦେଖାଦେବା ମାତ୍ରକେ ଲୋକମାନେ ଆନନ୍ଦରେ ଜୟଜୟକାର କରୁଥାନ୍ତି । ସମ୍ରାଟ୍‌ଙ୍କ ଶୋଭାଯାତ୍ରା ଦେଖିବା ନିମନ୍ତେ ଲୋକେ ଦଶ ବାର ଘଣ୍ଟାପୂର୍ବରୁ ଠିଆ ହୋଇ ଟାକି ରହିଥାଆନ୍ତି, କାଳେ ବିଳମ୍ବ ହେଲେ ସ୍ଥାନ ନ ମିଳିବ । ଜୁବୁଲି ଉତ୍ସବର ପ୍ରଧାନ ଅଙ୍ଗ ସମ୍ରାଟ୍‌ଙ୍କ ମଙ୍ଗଳ ନିମନ୍ତେ ଭଗବାନ୍‌ଙ୍କଠାରେ ପ୍ରାର୍ଥନା । ଯେତେବେଳେ ଗୀତ ବୋଲା ହୁଏ 'God save the King' (ଭଗବାନ୍ ରାଜାଙ୍କୁ ଘଣ୍ଟ ଘୋଡ଼ାଇ ରଖନ୍ତୁ) ସେତେବେଳେ କେହି ଆସନରେ ବସନ୍ତି ନାହିଁ, ସମସ୍ତେ ମୁଣ୍ଡରୁ ଟୋପି କାଢ଼ି ଧ୍ୟାନମଗ୍ନ ହୋଇ ଠିଆ ହୋଇ ରହନ୍ତି । ଏହା ରାଜଭକ୍ତି ।

ଏହି ରାଜଭକ୍ତି ବଳରେ ଇଂରେଜ ଜାତି ଶ୍ରେଷ୍ଠ । ଭାରତବାସୀମାନଙ୍କର ପରମ୍ପରା ରାଜଭକ୍ତି, ସେମାନଙ୍କର ରାଜଭକ୍ତି ନଷ୍ଟ କରିବାର ଚେଷ୍ଟା ପର୍ବତକୁ ଢେଲା ମାରି ଚୂନା କରିବା ପ୍ରୟାସ ମାତ୍ର ।

## ୩. କଲେକ୍ଟରଙ୍କ ବିଦାୟ

ଅନେକ କଲେକ୍ଟର ଆସନ୍ତି, ଯାଆନ୍ତି । ସମ୍ମାନ ପାଆନ୍ତି କେବଳ ସେହିମାନେ - ଯେଉଁମାନେ ପ୍ରଜାମାନଙ୍କର ମଙ୍ଗଳ କରନ୍ତି, ପ୍ରଜାମାନଙ୍କର ସୁଖ ଦୁଃଖର କଥା ଭାବନ୍ତି, ଦୟାର ସହିତ କର୍ତ୍ତବ୍ୟକାର୍ଯ୍ୟ ସମ୍ପାଦନ କରନ୍ତି । ବି.ସି. ମୁଖୁର୍ଯ୍ୟା ସାହେବ ଏ ଜିଲାରେ ଦୁଇ ବର୍ଷ ମାତ୍ର ରହିଥିଲେହେଁ ଲୋକେ ଭାବୁଛନ୍ତି, ଆମର ଜଣେ ବନ୍ଧୁ ଚାଲି ଯାଉଛନ୍ତି । ଆଜି ପର୍ଯ୍ୟନ୍ତ କୌଣସି କଲେକ୍ଟର ବିଦାୟ ନେବାବେଳେ ଏତେ ସମ୍ମାନ ପାଇ ନ ଥିଲେ । ମୁଖୁର୍ଯ୍ୟା ସାହେବ ଯେ ଏତେ ସମ୍ମାନ ପାଇଥିଲେ, ତାହା ତାଙ୍କର ବ୍ୟକ୍ତିଗତ ମହତ୍‌ଗୁଣ ହେତୁରୁ ।

## ୪. ବଟ ଅଶ୍ୱତ୍ଥ ବିବାହ

ବୈଶାଖ ମାସରେ ଛଅଟା ବିବାହ ତିଥି ଥିଲା । ଏହି ଛଅ ଦିନରେ କେଜାଣି କେତେ ବିବାହ ହୋଇଗଲା । ରାତ୍ରିର ଶେଷ ଭାଗରେ କେବଳ ଶୁଣାଯାଉଥାଏ ସବାରି ଡାକ "ହୁଁ ମୋର ଭାଇରେ" ବାଣର "ଠୋ ଠା, ଢୁ ଢା" । ପରିବାପତ୍ରର ଦର ଚଢ଼ିଗଲା, ବଜାରରେ ପରୁଡ଼ି ମସିଣା ଖଣ୍ଡିଏ ମିଳିଲା ନାହିଁ । କିନ୍ତୁ ଅଧିକ ଯେ ବିବାହର ଆଡ଼ମ୍ବର ପର ପଇସାରେ - ଆମ ଦେଶରେ ଲୋକେ ମହାଜନଠାରୁ କରଜ ଆଣି ଖରଚ କରି ଆଡ଼ମ୍ବର ଦେଖାନ୍ତି । ପୁଅ ଝିଅଙ୍କ ବିବାହ ଛଡ଼ା ଗୋଟା କେତେ ବଟ-ଅଶ୍ୱତ୍ଥ (ବର ଓସ୍ତ) ବିବାହ ହୋଇଗଲା, ତହିଁରେ ମଧ୍ୟ ଆଡ଼ମ୍ବର ଦେଖାଗଲା । ଏକ ବ୍ୟକ୍ତି ବଟବୃକ୍ଷ ଆଉ ଏକ ବ୍ୟକ୍ତି ଅଶ୍ୱତ୍ଥ ବୃକ୍ଷ ରୋପଣ କରିଥାନ୍ତି । ବଟବୃକ୍ଷ କନ୍ୟା, ଅଶ୍ୱତ୍ଥ ବୃକ୍ଷ ବର । ଅଶ୍ୱତ୍ଥ ବୃକ୍ଷର ଡାହାଣରେ ବଟ ବୃକ୍ଷ । ଏ ଦୁଇ ବୃକ୍ଷର ବିବାହ ପୂର୍ବରୁ ସ୍ଥିର ହୋଇଥାଏ, କୋଷ୍ଠୀ ଦେଖା ହୁଏ ନାହିଁ । ରାଜଯୋଟକ କି ମେଳକ ବୁଝାଯାଏ ନାହିଁ । ବିବାହ ତିଥିରେ ଲଗ୍ନ ଧରି ପୁରୋହିତ ବିବାହ କ୍ରିୟା ସମ୍ପନ୍ନ କରନ୍ତି । ବାଜା ବାଣ, ଶଙ୍ଖ ବାଜେ, ହୁଳହୁଳି ପଡ଼େ, ହାତଗଣ୍ଠି ପଡ଼େ ଡାଳକୁ ଡାଳ ଛନ୍ଦି ଦେଇ, ପୁରୋହିତ ଦୁଇ ସମୁଦିଙ୍କଠାରୁ ଦକ୍ଷିଣା ପାଆନ୍ତି । ଯେଉଁମାନେ ଏ ବିବାହ କରନ୍ତି, ସେମାନଙ୍କର ବିଶ୍ୱାସ ଯେ କନ୍ୟାଦାନ କଲେ କେବଳ କନ୍ୟାପିତାର ପୁଣ୍ୟ ହୁଏ । କିନ୍ତୁ ବଟ-ଅଶ୍ୱତ୍ଥ ବିବାହ ଦେଲେ ଉଭୟ ପକ୍ଷଙ୍କର ପୁଣ୍ୟ ହୁଏ ଅର୍ଥାତ୍ ବରପକ୍ଷ ଓ କନ୍ୟାପକ୍ଷ ଆଠପଣିଆ କିସ୍ମତ୍ ମୁତାବକ ପୁଣ୍ୟ ବାଣ୍ଟି ନିଅନ୍ତି ।

## ୫. ନୂତନ ପ୍ରଦେଶରେ ବ୍ୟାଧିର ସୂଚନା

ବ୍ୟବସାୟୀମାନେ ଦୁର୍ଗନ୍ଧ ଘେନି ନିରୀକ୍ଷଣ କରୁଥାଆନ୍ତି କେଉଁ ସ୍ଥାନରେ କେଉଁ ଜିନିଷ କଟିବ । ପୂର୍ବବଙ୍ଗର କେତେଜଣ ବୈଦ୍ୟ ଦୁର୍ବିଣ ସାହାଯ୍ୟରେ ଦେଖିଅଛନ୍ତି ଯେ, ଓଡ଼ିଶା ନୂତନ ପ୍ରଦେଶ ହେଲେ ବ୍ୟାଧି ବୃଦ୍ଧି ହେବ ଏବଂ ସ୍ଥାନୀୟ କବିରାଜମାନେ ସେ କଠିନ ବ୍ୟାଧିର ଚିକିତ୍ସା କରିପାରିବେ ନାହିଁ, ଏହି ହେତୁରୁ ପୂର୍ବ ବଙ୍ଗରେ ତିନିଜଣ ପ୍ରଧାନ ବୈଦ୍ୟ କଟକରେ ଶାଖା ସଂସ୍ଥାପନ କରିସାରିଲେଣି । ବିଜ୍ଞାପନ ପଢ଼ି, ସେମାନଙ୍କ ବଟିକାର ଗୁଣ ଜାଣିବ ।

୧୫, ମେ ୧୯୩୫

## ।। କୋଡ଼ିଏ ।।

### ୧. ନଈବାଲିରେ ଶୟନ

ନଈବାଲିରେ ଶୁଏ ମନୁଷ୍ୟ ସେତେବେଳେ, ଯେତେବେଳେ ତାହାର ସଂସାରଲୀଳା ଶେଷ ହୁଏ । ଯେତେବେଳେ ତାକୁ ଆଉ କେହି ଆଶ୍ରୟ ନ ଦିଏ, ସେତେବେଳେ ତାକୁ ଆଶ୍ରୟ ଦିଏ ନଈବାଲି । ତେତେବେଳେ ମନୁଷ୍ୟ ନିଜ ଇଚ୍ଛାରେ ନଈବାଲିକୁ ଯାଏ ନାହିଁ, ଅନ୍ୟ ଲୋକେ ତାକୁ ନେଇ ଯାଆନ୍ତି । କିନ୍ତୁ ଏବେ ଏ କି ଦୃଶ୍ୟ ? ଚାରି ପ୍ରହରକ ବେଳକୁ କାଠଯୋଡ଼ି ନଈବାଲି ଜନ ପରିପୂର୍ଣ୍ଣ । ରାତିତମାମ ସେଠାରେ ଜନଗହଳ । ସମସ୍ତେ ଜୀବିତ, ସମସ୍ତେ ଯାଇଛନ୍ତି ନିଜ ଇଚ୍ଛାରେ । ମୁଁ ଦିନେ ନଈବାଲିରେ ଶୋଇବା ସୁଖ କଳ୍ପଣା କରି ମନେ ମନେ ପାଞ୍ଚୁଥାଏ, ଯଦି ଏ ନଈବାଲି ନ ଥାନ୍ତା, ତେବେ ଏ ଦାରୁଣ ଗ୍ରୀଷ୍ମକାଳରେ ଲୋକେ ଯାଆନ୍ତେ କୁଆଡ଼େ ? ଆଉ ଗୋଟାଏ କଥା ପାଞ୍ଚୁଥାଏ, ଏହି ନଈବାଲି ଦିନରେ ଏତେ ତାତେ, ଲୋକଙ୍କ ପାଦ ପଡ଼ିଲେ ଜାଳିପୋଡ଼ି ଦିଏ । ରାତ୍ରିରେ ଏତେ ଶୀତଳ ହୁଏ, ଏତେ ଲୋକଙ୍କୁ ଶୋଇବା ସ୍ଥାନ ଦିଏ ନଈବାଲି । ନିର୍ଣ୍ଣେ ବୁଝିପାରିଲେ ମୁଁ ତାହାର ଗୁଣ ଚିହ୍ନିବି, ଦିନେ ମିଳନ ହେବ ।

### ୨. ପରୀକ୍ଷାରେ ପାସ୍ କରିବାର ସହଜ ଉପାୟ

କଲିକତାରେ ଗୋଟିଏ ଛାତ୍ର ପରୀକ୍ଷାରେ ପାସ୍ କରିବାର ଗୋଟାଏ ନୂତନ ଉପାୟ ଉଦ୍ଭାବନ କରିଥିବାର ସମ୍ବାଦ ମିଳିଅଛି । ଛାତ୍ରଟି ବି.ଏ. ପରୀକ୍ଷା ଦେବା ନିମନ୍ତେ ପଢୁଥିଲା । କିନ୍ତୁ ଅଳସୁଆ ଓ ଅଯେସୀ ପିଲାଙ୍କର ଯାହା ହୁଏ, ତାହାର ତାହା ହିଁ ହେଲା । ପରୀକ୍ଷା ନିକଟବର୍ତ୍ତୀ ହେବାରୁ ସେ ପାଞ୍ଚିଲା, ଏତେ ଝଂଝଟ ଭିତରକୁ ମୁଁ ଯିବି କାହିଁକି ? ଆଉ ଜଣକୁ ପଠାଇଦିଏଁ, ସେ ମୋ ପାଇଁ ପରୀକ୍ଷା ଦେଇ ଆସିବ ।'' ପରୀକ୍ଷା ଦିନ ପରୀକ୍ଷା କେନ୍ଦ୍ରରେ ଜଣେ ପ୍ରହରୀ ଦେଖିଲେ ଯେ, ଜଣେ ପରୀକ୍ଷାର୍ଥୀ ଗୋଟାଏ କୃତ୍ରିମ ଦାଢ଼ି ପିନ୍ଧି ପରୀକ୍ଷା ଦେଉଛନ୍ତି । ପରୀକ୍ଷାର୍ଥୀ ଦସ୍ତଖତ ସହିତ ଏ ବ୍ୟକ୍ତିର ଦସ୍ତଖତ ମେଳ ହେଲା ନାହିଁ । ପ୍ରକୃତ କଥା ବାହାରି ପଡ଼ିଲା, ଯେଉଁ ବ୍ୟକ୍ତି ଦାଢ଼ି ପିନ୍ଧି ପରୀକ୍ଷା ଦେଉଥିଲେ, ସେ ଜଣେ ପ୍ରଫେସର । ପୋଲିସ ତାଙ୍କୁ ମେଜେଷ୍ଟରଙ୍କ ପାଖକୁ ପଠାଇ ଦେଲେ । ସେଦିନ ପ୍ରେସିଡେନ୍‌ସି ମାଜିଷ୍ଟ୍ରେଟ୍ ଏ ମକଦମାର ବିଚାର କଲାବେଳେ ପ୍ରଫେସରଙ୍କ ନାମରେ ଏହି ଅଭିଯୋଗ ଆଗତ ହେଲା ।

### ୩. ସଂସାରକୁ ସ୍ୱର୍ଗ କରିବାର ସହଜ ଉପାୟ

ପଞ୍ଜାବରେ ଚାଳିଶ ଜଣ ଶିଖଜାତୀୟ ନାରୀ ପ୍ରତିଜ୍ଞା କରି ଅଛନ୍ତି କି, ଯଦି ଶିଖମାନଙ୍କ ମଧ୍ୟରୁ ଦଳାଦଳି ଦୂର ନ ହୁଏ, ଯଦି ସମଗ୍ର ଶିଖଜାତି ସମ୍ମିଳିତ ନ ହୁଅନ୍ତି, ତେବେ ସେମାନେ ଅନାହାରରେ ରହି ପ୍ରାଣତ୍ୟାଗ କରୁଅଛନ୍ତି । ଆମ ଓଡ଼ିଶାରେ ଏତେ

ନେତ୍ରୀ ବାହାରିଲେଣି, ସେମାନଙ୍କ ମଧ୍ୟରେ କେହି ଜଣେ ନାହାନ୍ତି, ଯେଉଁମାନେ ପ୍ରତିଜ୍ଞା କରିବେ । ଓଡ଼ିଆମାନେ ଦଳାଦଳି, କଳିଆକଳି, ଟଣାଟଣି, ହଣାହଣି ନ ଛାଡ଼ିବେ ଏବଂ ଯଦି ସମଗ୍ର ଓଡ଼ିଆଜାତି ସମ୍ମିଳିତ ନ ହେବ, ତେବେ ଆମ୍ଭେମାନେ ଅନାହାରରେ ପ୍ରାଣତ୍ୟାଗ କରିବୁ । ସେମାନେ ଯଦି ମୁହଁରେ ଏତିକି କଥା କହି ଦିଅନ୍ତେ, ସେମାନଙ୍କ ନାମ ଓ ଛବି ଖବରକାଗଜରେ ବାହାରନ୍ତା, ଅପର ପକ୍ଷରେ ଓଡ଼ିଆ ନେତାମାନେ ବଡ଼ ହରବର, କଲବଲ ହୋଇ କ'ଣ କରିବା, କି ବାଟ ଧରିବା କହି ଲଣ୍ଡଭଣ୍ଡ ହୁଅନ୍ତେ । ଓଡ଼ିଆ ଜାତିର ଏକତାର କଥା ଦାଣ୍ଡରେ ପଡ଼ି ହାଟରେ ଗଡ଼ଗଡ଼ଉଛି । କେତୁଟା ବା ମଣିଷ, ସେମାନଙ୍କ ମଧ୍ୟରେ ଟିକିଏ ହେଲେ ଏକତା ଥାଆନ୍ତା । କେହି କାହାରି ଶିରୀ ଦେଖନ୍ତି ନାହିଁ । ରାମା କହେ, ଶାମାର ତଣ୍ଟି ଚିପି ମାରିଦେଲେ ମୁଁ ବଡ଼ ହୁଅନ୍ତି । ରାମା ନିଜ ଚେଷ୍ଟାରେ ନିଜେ ବଡ଼ ହୋଇପାରେ, ଏ କଥା ସେ କଦାଚ ଭାବେ ନାହିଁ । ଡିଷ୍ଟ୍ରିକ୍ଟ୍ ବୋର୍ଡ଼ରେ ଦଳାଦଳି, ଲୋକାଲ ବୋର୍ଡ଼ରେ ଦଳାଦଳି, ମ୍ୟୁନିସିପାଲିଟିରେ ଦଳାଦଳି ।

ବର୍ତ୍ତମାନ କଟକ ମ୍ୟୁନିସିପାଲିଟି ସରକାରଙ୍କ ହାତରେ ରହିବ କି ଆଖଡ଼ା ଦଳ ହାତରେ ସମର୍ପଣ କରାଯିବ, ଦିନେ ବୈକୁଣ୍ଠରେ ଏ କଥାର ଚର୍ଚ୍ଚା ହେଉଥିଲା । ସମସ୍ତେ କହିଲେ, ସାବଧାନ, ସାବଧାନ - ଆଉ କିଛି କାଳ ସରକାରଙ୍କ ହାତରେ ରହୁ, ସର୍ବସାଧାରଣଙ୍କର ମଙ୍ଗଳ ହେବ । ଯେଉଁମାନେ ଅନେଇ ବସିଛନ୍ତି, ମ୍ୟୁନିସିପାଲିଟି ଫେରି ଆସିଲେ ତାକୁ ଇଲିଶି ମାଛପରି କସ୍‌ମସ୍ କରି ଚୋବେଇବେ, ସେମାନେ ବଡ଼ ସନ୍ତପ୍ତ ହୋଇ ଆଖିରୁ ଲୁହ ପୋଛି ପୋଛି ଏଠି ବସି ସେଠି ବସି ମନ୍ତ୍ରଣା କଲେ । ଶେଷରେ ଲୋକମାନଙ୍କୁ ମିଥ୍ୟା ପ୍ରଲୋଭନ ଦେଖାଇ ଡାକିଲେ, ଆସି ବୈଠକ କରିବ, ଟିକସ କମିଯିବ । ଟିକସ କମିବା କଥା ଶୁଣି ସୁଦ୍ଧା ଅଢ଼େଇ ଜଣ ମାତ୍ର ଲୋକ ଆସିଲେ । ଅସଲ ଲୋକ କବାଟ କଣରେ ଓଢ଼ଣା ପକାଇ ବସିଲେ, ପଦାକୁ ବାହାରିଲେ ନାହିଁ । ବଡ଼େଇ କଲେ, ଆମ୍ଭେମାନେ କଟକ ସହର ତ ୬୫ ହଜାର ବାସିନ୍ଦାଙ୍କ ପ୍ରତିନିଧି । କିନ୍ତୁ ଟିକସ କଥାଟା ପଛରେ ପଡ଼ିଗଲା, ମ୍ୟୁନିସିପାଲିଟି ସରକାରଙ୍କ ହାତରୁ କିପରି ଆସିବ ଏହା ବିଚାର ହେଲା । ଯେ ସରକାରଙ୍କ ହାତରେ ରହୁ ବୋଲି କହିଲା, ତାକୁ ଥଟ୍ଟା ପରିହାସ କରି କଥା କୁହାଇ ଦେଲେ ନାହିଁ । ଯେଉଁମାନେ ଟିକସ କମିବା କଥା ଶୁଣି ଧାଇଁ ଆସିଥିଲେ, ବୈଠକ ଭାଙ୍ଗିବା ପରେ ସେମାନେ କହୁଥାନ୍ତି, କାହିଁ ଟିକସ କମିବା କଥା ତ କିଛି ହେଲା ନାହିଁ, ଆମକୁ ଏମାନେ ମିଛରେ ଡାକିଆଣି ଦହେଶ କଲେ । ଏହା ଯଦି କୃତ୍ରିମ ସଭା ନୁହେଁ, ଆଉ କୃତ୍ରିମ ସଭା କହିବା କାହାକୁ ? ଭାଇମାନେ, ମନେ ରଖିଥିବ, ସରକାରଟା ଖୁବ୍ ସିଆଣା, ସରକାର ଆଖିରେ ଧୂଳି ଦେଇ ଭୁଲାଇବା ସହଜ ନୁହେଁ ।

## ।। ଏକୋଇଶ ।।

୧-୨. ଗଛରେ ଫଳ ପାଚି ଝୁଲୁଥିଲେ ଦେଖିବା ଲୋକର ମନରେ ଲୋଭ ହୁଏ, କାହାରି କାହାରି ପାଟିରୁ ଲାଳ ଗଡ଼େ । କଂଗ୍ରେସବାଲାଙ୍କର ଏହା ହେଲା ବୋଲି ତାଙ୍କୁ କିଆଁ ଦୋଷ ଦେବା ? ସେମାନେ କହୁଛନ୍ତି, ଆମେ ମନ୍ତ୍ରୀ ହେବା, ଆମେ ମନ୍ତ୍ରୀ ନ ହେଲେ ଦେଶରେ ପ୍ରଳୟ ଘଟିବ । କିନ୍ତୁ କାଉନ୍ସିଲର ମେମ୍ବର ନ ହୋଇ ପାରିଲେ ତ କେହି ମନ୍ତ୍ରୀ ହୋଇପାରିବେ ନାହିଁ । ଏହି ହେତୁରୁ କଂଗ୍ରେସବାଲା କହିଲେଣି, ହଉ ତେବେ ଆମେ କାଉନ୍ସିଲରେ ପଶିବା । ଜଣେ କଂଗ୍ରେସ ନେତା ଭାରି ଗରମ ହୋଇ କାଉନ୍ସିଲ ପ୍ରବେଶର ପକ୍ଷପାତୀ ଦଳକୁ କହିଲେ "ହଇ ହୋ ଭାଇମାନେ ! କାଉନ୍ସିଲରେ ଯେ ପଶେ, ସେ ଆଗ ହଲପ କରେ, ମୁଁ ଭାରତ ସମ୍ରାଟ୍‌ଙ୍କ ପ୍ରତି ଆନ୍ତରିକ ରାଜଭକ୍ତି ପୋଷଣ କରିବି । ତୁମ୍ଭେମାନେ ଯଦି କାଉନ୍ସିଲରେ ପଶି ଏହି ହଲପ କର ଓ ରାଜଭକ୍ତ ପାଲଟିଯାଅ, ତେବେ ତୁମମାନଙ୍କ ଦ୍ୱାରା ଦେଶର କି ଉପକାର ହେବ ?" ମହାତ୍ମାଗାନ୍ଧିଙ୍କ ଦରବାରରେ ଏ କଥା ପଡ଼ିଲା । ସେ ମଧ୍ୟସ୍ଥ ହୋଇ ଭାଙ୍ଗିଦେଲେ "ହଁ, ସେମାନେ କାଉନ୍ସିଲକୁ ଯାଆନ୍ତୁ । ଦେଶର ଅବସ୍ଥା ଦୃଷ୍ଟିରେ ଟିକିଏ ଏ ପାଖ ସେ ପାଖ ହେଲେ ତାହା ଦୋଷ ମଧ୍ୟରେ ଗଣାଯିବ ନାହିଁ । ଅର୍ଥାତ୍ ଆଗ ରାଜଭକ୍ତ ହେବାକୁ ହଲପ କର, କାଉନ୍ସିଲରେ ପଶି ପଛରେ ରାଜାଙ୍କୁ ନ ମାନିଲେ, ତାଙ୍କ ଆଇନ ଅମାନ୍ୟ କଲେ ବା ତାଙ୍କ ଶାସନ କଳକୁ ଭାଙ୍ଗି ଚୂରିଦେଲେ ତାହା ଶାସ୍ତ୍ର ବିରୋଧ, ବିବେକ ବିରୋଧ ଓ ଆମ ପ୍ରଚାରିତ ଧର୍ମ ରାଜନୀତିର ବିରୋଧ ବୋଲି ଧରା ହେବ ନାହିଁ । ମହାତ୍ମାଙ୍କ ମୁହଁରୁ ଦିନେ ଶୁଣାଯାଇଥିଲା, ବର୍ତ୍ତମାନ ଲୋକେ ରାଜନୀତି ଓ ଧର୍ମନୀତି ମଧ୍ୟରେ ପ୍ରଭେଦ ରଖୁଛନ୍ତି, ରାଜନୀତିରେ ପଶିଲା ବେଳକୁ ଧର୍ମନୀତି ଓ ବିବେକ କୁଆଡ଼େ ପାସୋର ଯାଉଛି; କିନ୍ତୁ ଆମ ପ୍ରଚାରିତ ରାଜନୀତିରେ ଏପରି କପଟାଚାରର ସ୍ଥାନ ପାଇପାରିବ ନାହିଁ । ଆମେ ଯାହା ମନରେ ବିଚାରିବା, ତାହା ମୁହଁରେ ଭାବିବା ଓ କାମରେ ଯୋଖିବା । ଏବେ ସେହି ମହାତ୍ମାଙ୍କ ମୁହଁରୁ ବାହାରିଲାଣି ଯେ ଯେଉଁଆଡୁ ପାଣି ବରଷୁଛି ସେହିଆଡ଼କୁ ଛତା ଧର । ଏଥିପାଇଁ କହନ୍ତି ବଡ଼ଲୋକଙ୍କୁ ଉତ୍ତର ନାହିଁ, କି ସରଗକୁ ନିଶୁଣି ନାହିଁ । ନୂଆ ଭାରତ ସଂସ୍କାର ଆଇନ ପାସ୍ ହେଲେ ଆମେ ତାର ତ୍ରିସୀମା ମାଡ଼ିବା ନାହିଁ ବୋଲି ଯେଉଁମାନେ ସ୍ୱର୍ଗ ମର୍ତ୍ତ୍ୟ ପାତାଳ କମ୍ପାଉଥିଲେ, ସେହିମାନେ ବର୍ତ୍ତମାନ ତାହାର ପ୍ରଧାନ ପୁରୋହିତ ହେବେ । ହେଉ, ଭଲ କଥା, ସେହି କଥା ତ ଆଗରୁ କରିଥିଲେ ହୋଇଥାଆନ୍ତା । ସେତେବେଳେ ଯେଉଁଗୁଡ଼ାଙ୍କୁ ଗମାର, ଦେଶଦ୍ରୋହୀ ବୋଲି ଭାବୁଥିଲ, ତାଙ୍କର କଥାକୁ ପାସଙ୍ଗରେ ପକାଇ ଥିଲେ ତ ବଉଁଶଯାକ ଗଡ଼ିମରି ନ ଥାନ୍ତେ ।

୩. ପ୍ରହରାଜେ ତାଙ୍କ ଭାଷାକୋଷରେ ଛାପିଦେଲେ, ଉତ୍କଳ ଶବ୍ଦର ଭିନ୍ନ ଭିନ୍ନ ଅର୍ଥ ମଧ୍ୟରେ ଗୋଟିଏ ଅର୍ଥ ଭାରବାହକ । କେତେ ଲୋକ ତାଙ୍କ ଉପରେ ଗର୍ଜି ଉଠିଲେ,

କହିଲେ ଏହା ଓଡ଼ିଆ ଜାତିର ଅବମାନନା, ଯାହାକୁ ଇଂରାଜୀରେ କହନ୍ତି Contempt । ପହରାଜେ ତ ଛାଡ଼ିବା ଜନ୍ତୁ ନୁହନ୍ତି । ସେ ଗାଡ଼ି ଗାଡ଼ି ପ୍ରମାଣ ଦର୍ଶାଇ ଦେଲେ । ସର୍ବାପେକ୍ଷା ମାତବର ନଜିର ବାହାରିଲା ପ୍ରାଚୀନ କାଳର ଏକ ଓଡ଼ିଶା ରାଜାଙ୍କର ଏକ ସଂସ୍କୃତ ପୋଥି । ତଥାପି ଲୋକେ ଛାଡ଼ିଲେ ନାହିଁ । ସେମାନେ କହିଲେ, ପହରାଜେ ଗୋଟାଏ ଏତେ ବଡ଼ ଦେଉଳ ତୋଳିଲେ । ସେ କେବଳ ଅନୁକରଣ ନ କରି ନିଜର ଗବେଷଣା ଶକ୍ତି ଓ ସିଆଣାପଣରେ କେଉଁଟା କେଉଁ କାଳର ଖାପ ଖାଇବ ତାହା ଭାବିଚିନ୍ତି ଅର୍ଥ ଲେଖିଥିଲେ ଭଲ ହୋଇଥାଆନ୍ତା । ମକଦମାର ବିଚାର ଏହିଠାରେ ସ୍ଥଗିତ ରହିଲା । କାରଣ ବହି ତ ଛପା ସରିଲାଣି । ପହରାଜଙ୍କର ବା ସମାଲୋଚକମାନଙ୍କ ଜୀବଦ୍ଦଶାରେ ତାହାର ପୁନର୍ଜନ୍ମ ହେବା ସମ୍ଭାବନାର ସୀମା ମଧ୍ୟରେ ନୁହେଁ । ତାଳ ଗୋଟାଏ ପକାଇ ଦେଲେ ଧୋବ ଲୁଗାରେ କାଳି ପଡ଼ିବା ପରି ତ ଆହୁରି ଫୁଟି ଉଠିବ । ପହରାଜେ ଏବେ ଆଛା ଦୋଘାଇରେ ପଡ଼ିଲେ ।

୪. ବିହାରରେ ଭୂମିକମ୍ପ ହେଲାଦିନୁ ମୋ ଛାତି ଥରୁଥିଲା, କାଳେ ଆମ ଓଡ଼ିଶାରେ ଏହିପରି ଭୂମିକମ୍ପ ହେବ, ଆମେ ଛାରଖାର ହୋଇଯିବା । ଭଗବାନ୍‌ଙ୍କ କୃପାରୁ ସେ ଡର ଆଉ ନାହିଁ । ଯେଉଁ ପଣ୍ଡିତମାନେ ଭୂମିକମ୍ପ ତତ୍ତ୍ୱ ଗବେଷଣା କରୁଛନ୍ତି ସେମାନଙ୍କର ଅଭିମତ ଯେ, ଓଡ଼ିଶା ଭୂମିକମ୍ପର ଶାସ୍ତ୍ର, ଚରାଭୂଇଁରେ ଅନ୍ତର୍ଗତ ନୁହେଁ । ଓଡ଼ିଶାରେ ଖୁବ୍ ଜୋର ଗୋଟାଏ ଧକା ଲାଗିପାରେ । ମୁଁ ଏହା ପଢ଼ି ଗୋଟିଏ ଦୀର୍ଘନିଃଶ୍ୱାସ ଛାଡ଼ିଲି । ଓଡ଼ିଶା ଭାଗ୍ୟରେ ବନ୍ୟା ଅଛି, ଧୋଇ ଅଛି, ମରୁଡ଼ି ଅଛି । ଭୂମିକମ୍ପ ଶଏ ବର୍ଷରେ କି ଷାଠିଏ ବର୍ଷରେ ଥରେ ହୁଏ । ବନ୍ୟା, ଧୋଇ, ମରୁଡ଼ି ଆମର ସହଚର । ଭୂମିକମ୍ପ ଯେଉଁଆଡ଼େ ହେଉଛି ହେଉ; ଆମେ ଯେପରି ଢୋକେ ପିଇ ଦଣ୍ଡେ ଜୀଇ ଏ ସଂସାରରେ ଅଛୁଁ ସେହିପରି ଆମର ଦିନ କଟିଯାଉ । ଯେଉଁମାନେ ଆମ ଓଡ଼ିଶାକୁ ଭୂମିକମ୍ପର ଇଲାକାର ବହିର୍ଭୂତ ବୋଲି ରାଏ ଦେଉଅଛନ୍ତି, ସେମାନେ ଖୋରଧା ଅଟରୀ ଉଷ୍ଣପ୍ରସ୍ରବଣ ଓ ଆଠମଲ୍ଲିକର 'ଦେଉଳଝରେ' ଉଷ୍ଣପ୍ରସ୍ରବଣ କଥା ଭାବିଛନ୍ତି ?

୫. ସମ୍ରାଟ୍ ପଞ୍ଚମ ଜର୍ଜଙ୍କର ରୌପ୍ୟ ଜୁବୁଲି ହୋଇଗଲା । ଏବେ ଶୁଣାଯାଉଛି, କଂଗ୍ରେସର ସୁବର୍ଣ୍ଣ ଜୁବୁଲି ହେବ । ରୁପା ଦର ସୁନା ଦର ମଧ୍ୟରେ ପ୍ରଭେଦ ବହୁତ । ରୁପା ତ ଯାଇ ଖପର ସଙ୍ଗେ ସାଙ୍ଗ ହୋଇଥିଲା । ଆମେରିକା ପ୍ରସାଦରୁ ରୁପା ପୁଣି ଟିକିଏ ତେଜି ଉଠିଲାଣି । ସୁନା ତ ଉଠି ଉଠିକା ଯାଉଛି । ସେହି ହିସାବରେ ସୁବର୍ଣ୍ଣ ଜୁବୁଲିର କିମତ ବେଶି । କିନ୍ତୁ ଆଉ ଗୋଟାଏ ଅଡୁଆ କଥା ଅଛି । ରାଜମୁକୁଟଧାରୀଙ୍କର ଜୁବୁଲି ହୋଇ ଆସୁଅଛି । କଂଗ୍ରେସର ତ ରାଜମୁକୁଟ ନାହିଁ । ତାହାର ସୁବର୍ଣ୍ଣ ଜୁବୁଲିକୁ କେମିକାଲ୍ ଗୋଲ୍ଡ (Chemical Gold) ବା ଗିଲୀ ସୁନାର ଜୁବୁଲି କହିବା ସିନା !

୧୧, ସେପ୍ଟେମ୍ବର ୧୯୩୫

## ।। ବାଇଶ ।।

୧. ଦେଖ, ଚନ୍ଦ୍ର ଦେବତାଙ୍କର ବି ଅବିଚାର । ଲୋକେ ଜଳ ବିନା ହାହାକାର କରୁଅଛନ୍ତି । ଭାଦ୍ରବ ମାସ ପୂର୍ଣ୍ଣିମା ଦିନ ଲୋକେ ଇନ୍ଦ୍ରଙ୍କ ପୂଜା କଲେ । ଇନ୍ଦ୍ର ସେ ପୂଜା ଗ୍ରହଣ କଲେ, କିନ୍ତୁ ଆଶ୍ୱିନ ମାସରେ ଯେତେବେଳେ କୃଷି କ୍ଷେତରେ ଜଳ ଲୋଡ଼ା, ସେତିକିବେଳକୁ ଇନ୍ଦ୍ର ବୃଷ୍ଟି ନିରୋଧ କରିଦେଲେ । ବିଲଯାକ ଗଲାଣି ଫାଟି, ଧାନଗଛଯାକ ଗଲା । ଲୋକଙ୍କୁ ଚାରିଆଡ଼ ଅନ୍ଧାର ଦିଶୁଛି । କାଲି ସକାଳେ ଲାଟବନ୍ଦି ଜମିଦାରଙ୍କ ପିଆଦା ଆସି ଦୁଆର ମୁହଁରେ ବସିଲାଣି । ଫସଲର ଅବସ୍ଥା ଦେଖି ମହାଜନମାନେ ଋଣ ଦେବେ ନାହିଁ । ପ୍ରଜା ଖଜଣା ଦେବେ କିପରି ? ଜମିଦାର ମାହାଲ ରକ୍ଷା କରିବେ କିପରି ? ଓଡ଼ିଶାର କପାଳରେ ଏକ ପାଖରେ ଲେଖା ଅଛି ଧୋଇ, ଅନ୍ୟ ପାଖରେ ଲେଖା ଅଛି ମରୁଡ଼ି । ଧୋଇ ନ ହେଲେ ମରୁଡ଼ି, ମରୁଡ଼ି ନ ହେଲେ ଧୋଇ । ଋଷ୍ୟଶୃଙ୍ଗ ମୁନି ନାହାନ୍ତି ଯେ, ତାଙ୍କୁ ଡାକି ଆଣିବା, ସେ ବୃଷ୍ଟି କରାଇ ଦେବେ । ଜରତା ନାହିଁ ଯେ ତାକୁ ପଠାଇବା, ସେ ଋଷ୍ୟଶୃଙ୍ଗଙ୍କୁ ଭୁଲାଇ ଆଣିବ । ଲୋକେ କହିଲେଣି ଏହା କି ସ୍ୱତନ୍ତ୍ର ପ୍ରଦେଶର ସୂଚନା ?

୨. କାଳର ସ୍ରୋତ ଖର ବେଗରେ ଧାଇଁଛି । ଆମ୍ଭମାନଙ୍କର ଶ୍ରଦ୍ଧେୟ ବନ୍ଧୁ ବିଶ୍ୱନାଥ କର ଚାଲିଗଲେ ସେଦିନ । କିନ୍ତୁ ଏହା ମଧ୍ୟରେ ବର୍ଷେ ପୂରି ଗଲାଣି । ବିଶ୍ୱନାଥ ଜଣେ ସାଧୁପୁରୁଷ ଥିଲେ । ଲୋକେ ତାଙ୍କୁ ଭକ୍ତି, ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । ଆମ୍ଭମାନଙ୍କ ସହିତ ତାଙ୍କର ପାର୍ଥିବ ସମ୍ବନ୍ଧ ଛିଣ୍ଡି ଯାଇଥିଲେହେଁ, ତାଙ୍କ ପ୍ରତି ଯେ ଲୋକମାନଙ୍କର ଶ୍ରଦ୍ଧା, ଭକ୍ତି ଓ ସମ୍ମାନ ଅକ୍ଷୁଣ୍ଣ ରହିଛି, ତାହା ଗତ ଶନିବାର ତାଙ୍କର ପ୍ରଥମ ସାମ୍ବତ୍ସରିକ ଶ୍ରାଦ୍ଧ ସଭାରେ ସ୍ପଷ୍ଟ ଦେଖାଗଲା । ବହୁ ସମ୍ଭ୍ରାନ୍ତ ନରନାରୀ ସେ ସଭାରେ ଉପସ୍ଥିତ ହୋଇ ତାଙ୍କର ଆତ୍ମା ପ୍ରତି ଶ୍ରଦ୍ଧା ପ୍ରଦର୍ଶନ କରିଥିଲେ । ଆଚାର୍ଯ୍ୟ ଶ୍ରୀଯୁକ୍ତ ନିରଞ୍ଜନ ନିୟୋଗୀଙ୍କ ଉପାସନାରେ ସମସ୍ତେ ମୁଗ୍ଧ ହୋଇଥିଲେ । ବିଶ୍ୱନାଥ କୃପା କରନ୍ତୁ, ତାଙ୍କର ନିରୀହ ଓ ନିଃସହାୟ ପୁତ୍ରକନ୍ୟା ଆଜୀବନ ସୁଖ ଶାନ୍ତି ଭୋଗ କରନ୍ତୁ । ବିଶ୍ୱନାଥ ତାଙ୍କ ପୁତ୍ରକନ୍ୟାମାନଙ୍କର ଯେତେ ଉପକାର କରିଥିଲେ, ଓଡ଼ିଆ ସାହିତ୍ୟର ତଦପେକ୍ଷା ଅଧିକ ଉପକାର କରିଥିଲେ । କାହିଁ ଆଜି ଉତ୍କଳ ସାହିତ୍ୟିକଙ୍କର ତାଙ୍କ ପ୍ରତି କୃତଜ୍ଞତା ? ଏହି ମାସ ୨୬ ତାରିଖ ଦିନ ସତୀଚଉରାଠାରେ ତାଙ୍କ ସମାଧି ଉପରେ ଲଗାଯିବା ଶଙ୍ଖ ମର୍ମର ଫଳକମାନ ଉଦ୍‌ଘାଟିତ ହେବ । ଆଠମଲ୍ଲିକର ସାହିତ୍ୟପ୍ରେମିକ କିଶୋର ଅଧୀଶ୍ୱର ରାଜା ଶ୍ରୀ କିଶୋର ଚନ୍ଦ୍ର ଦେବ ସେଦିନ ଫଳକମାନଙ୍କ ଆବରଣ ଉନ୍ମୋଚନ କରିବେ । ଏ ସମାଧି ବିଶ୍ୱନାଥଙ୍କ ପୁତ୍ରକନ୍ୟାମାନଙ୍କ କୀର୍ତ୍ତି । ବିଶ୍ୱନାଥଙ୍କ ତୈଳଚିତ୍ର ଶୀଘ୍ର ଉତ୍କଳ ସାହିତ୍ୟ ସମାଜର ଶ୍ରୀରାମଚନ୍ଦ୍ର ଭବନରେ ରଖାଯିବ । ବିଶ୍ୱନାଥ ସ୍ମୃତିରକ୍ଷା ସମିତି ସମାଜକୁ ଏ ତୈଳଚିତ୍ର ଉପହାର ଦେଉଅଛନ୍ତି । ବିଶ୍ୱନାଥଙ୍କ ସ୍ମୃତିରକ୍ଷା ପାଇଁ ଦେଶବାସୀ ତଥା ସ୍ମୃତିରକ୍ଷା କ'ଣ ଦଶ ସ୍ଥାୟୀକାର୍ଯ୍ୟ କରୁଛନ୍ତି ଏହା ଦେଖିବା ପାଇଁ ଆମ୍ଭେମାନେ ଉଦ୍‌ଗ୍ରୀବ ।

୩. ଲଙ୍କାରେ ଢିଙ୍କି ପାହାର, ଲକ୍ଷ୍ମୌ ଦୁଲକି ପଡୁଛି । ଇଟାଲୀ ୟୁରୋପରେ, ଆବିସିନିଆ ଆଫ୍ରିକାରେ, ଏହି ଦୁଇ ରାଜ୍ୟ ମଧ୍ୟରେ ଯୁଦ୍ଧ ଲାଗିଛି । ରଣଭୂମି ଆବିସିନିଆ । କିନ୍ତୁ ଭାରତବର୍ଷରେ ଅନେକ ଜିନିଷର ଦର ବଢ଼ିଗଲାଣି । ଭାରତବର୍ଷରୁ କୌଣସି ଜିନିଷ ଇଟାଲୀକୁ ବା ଆବିସିନିଆକୁ ଯିବାର ତ ଦେଖାଯାଉ ନାହିଁ । ଜର୍ମାନ ଯୁଦ୍ଧ ସେତେବେଳେ ଲାଗିଥାଏ, ଦିନେ ଜଣେ ସାନ୍ତାଳ ନାରୀ ଶାଳପତ୍ର ବିକିବାକୁ ଆଣିଥିଲା । ପ୍ରଚଳିତ ଦର ଅପେକ୍ଷା ଅଧିକ ଦର ସେ ଚାହିଁବାରୁ କେତେଜଣ ଭଦ୍ରଲୋକ ତାକୁ ପଚାରିଲେ, ''ଶାଳପତ୍ରର ଦର କାହିଁକି ବଢ଼ିଲା ?'' ସେ ଉତ୍ତର ଦେଲା, ''ବାବୁ ! ଲଢ଼େଇ ଲାଗିଛି ପରା !''

୪. ଆମ ପିଲାଦିନର ସାଙ୍ଗ ଶ୍ରୀମାନ୍ ଶଶିଭୂଷଣ ରାୟ (ଆମର ସ୍ନେହର ମଧୁ) ବୁଢ଼ା ହେଲେଣି, କିନ୍ତୁ କାର୍ଯ୍ୟ କରିବାକୁ ଅସମର୍ଥ ହୋଇ ନାହାନ୍ତି । ବହୁକାଳ ପର୍ଯ୍ୟନ୍ତ ସେ ଉତ୍କଳ ସାହିତ୍ୟ ସମାଜର କର୍ଣ୍ଣଧାର ଥିଲେ, ଏବେ ମଧ୍ୟ ମଙ୍ଗ ଧରିଛନ୍ତି । ସେ ଉକ୍ତ ସମାଜକୁ ଅକାଳ ମୃତ୍ୟୁରୁ ରକ୍ଷା କରିଥିଲେ, ଏବେ ମଧ୍ୟ ହଡ଼ା ବଳଦ ଅଚା ଛାଡୁ ନାହିଁ । ଦଶହରା ଛୁଟିରେ ସେ ଜୟପୁର ଧାଇଁ ଯାଇ ସେଠାରେ ଗୋଟିଏ ସାହିତ୍ୟ ସମାଜ ଠିଆ କରି ଆସିଛନ୍ତି । ଆମ୍ଭେମାନେ ସେ ସମାଜର ସ୍ଥାୟିତ୍ୱ ଓ ଶ୍ରୀବୃଦ୍ଧି କାମନା କରୁଅଛୁଁ । ଉତ୍କଳ ବିକ୍ରମାଦିତ୍ୟ ଯେଉଁ ରାଜ୍ୟର ଅଧୀଶ୍ୱର, ସେ ରାଜ୍ୟରେ ଗୋଟିଏ ସାହିତ୍ୟ ସମାଜ ସ୍ଥାୟୀ ହେବା ଓ ତାଙ୍କ ନେତୃତ୍ୱରେ ଓଡ଼ିଆ ସାହିତ୍ୟର ଉନ୍ନତି ହେବା ଦୁରୂହ ନୁହେଁ ।

୫. ଦେଉଳଟିଏ ତୋଳା ହୋଇ ମୁଣ୍ଡି ନ ମଲେ ଲୋକେ ତାକୁ 'ଲଣ୍ଡା' ଦେଉଳ କହି ହସନ୍ତି । 'ଲଣ୍ଡା ଦେଉଳ' କୀର୍ତ୍ତି ନୁହେଁ, ଅପକୀର୍ତ୍ତି । ପ୍ରହରାଜଙ୍କ ଓଡ଼ିଆ ଭାଷାକୋଷ ଯଦି ଲଣ୍ଡା ଦେଉଳ ହୋଇ ରହିଯାଏ, ତେବେ ତାହା ଓଡ଼ିଆ ଜାତିର ଅପକୀର୍ତ୍ତି ବୋଲି ଚିରକାଳ ଘୋଷିତ ହେବ । ଭାଷାକୋଷ ଛଅ ଖଣ୍ଡରେ ଶେଷ ହୋଇ ଥାଆନ୍ତା । ଚାରିଖଣ୍ଡ ବାହାରି ଗଲାଣି । ପଞ୍ଚମ ଖଣ୍ଡ ଛାପା ହେଉଥିଲା, କାର୍ଯ୍ୟ ବନ୍ଦ ହୋଇ ଯାଇଛି । ବନ୍ଦ ହେବାର କାରଣ ଅର୍ଥାଭାବ । ଆଉ କୋଡ଼ିଏ ହଜାର ଟଙ୍କା ଲାଗିଲେ ପଞ୍ଚମ ଓ ଷଷ୍ଠ ଖଣ୍ଡ ବାହାରି ଯିବ । ଦେଶର ସାହିତ୍ୟାନୁରାଗୀ ଧନିକମାନେ ଏ ବିଷୟରେ ବଡ଼ ଉଦାସୀନ ହେଲେ ଚଳିବ ନାହିଁ । ଜର୍ମାନୀ, ଇଂଲଣ୍ଡ, ଫ୍ରାନ୍ସ, ଇଟାଲୀ ଆଦି ବିଦେଶରେ ଯେଉଁ ଭାଷାକୋଷର ଭୂରି ଭୂରି ପ୍ରଶଂସା ହେଉଛି, ତାହା ବାରପଣ ପର୍ଯ୍ୟନ୍ତ ଅଗ୍ରସର ହୋଇ ଏଠାରେ ସ୍ଥଗିତ ହେଲେ । ଏହା ଓଡ଼ିଆ ଜାତି ପକ୍ଷରେ ଆଦୌ ଶୋଭନୀୟ ହେବ ନାହିଁ । ଉତ୍କଳରେ ଧନୀ ବ୍ୟକ୍ତି ଅଛନ୍ତି, ବିଦ୍ୱାନ୍ ବ୍ୟକ୍ତି ଅଛନ୍ତି, କିନ୍ତୁ ଏ ଦେଶରେ ଗାଁ ଯୋଗୀ ଭିକ ନ ପାଇଲେ ଦେଶକୁ ନିନ୍ଦା ହେବ । ଉତ୍କଳ ଭୂମି ତାହାର ଏହି ଅପକୀର୍ତ୍ତି ଉପେକ୍ଷା କରୁ । ଭାଷାକୋଷ ଓଡ଼ିଆ ଜାତିର ଅମୂଲ୍ୟ ସମ୍ପତ୍ତି । ତାହା ପ୍ରତି ଏପରି ଅବହେଳା ଦେଖି ଅନ୍ୟ ଦେଶର ଲୋକମାନେ ହସିବେ ସିନା ?

୨୩, ଅକ୍ଟୋବର, ୧୯୩୫

## ।। ତେଇଶ ।।

୧. ''ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳବର୍ଗେଶ୍ୱର ବୀରାଧିବୀରବର ପ୍ରତାପୀ ଶ୍ରୀ ଶ୍ରୀ ରାମଚନ୍ଦ୍ରଦେବ ମହାରାଜଙ୍କ ୧୩୩ ଅଙ୍କେ ସନ ୧୩୪୩ ଚୈତ୍ର ଶୁକ୍ଳପକ୍ଷ ମୀନ ୨୪ ଦିନ ବୁଧବାର ଦଶମୀ ତିଥିରେ ପୁଷ୍ୟା ନକ୍ଷତ୍ର, କର୍କଟ ଚନ୍ଦ୍ରେ, ସୁକର୍ମା ଯୋଗେ, ବାଣିଜ୍ୟକରଣେ, ସୂର୍ଯ୍ୟୋଦୟକାଳରେ ଓଡ଼ିଆ ଜାତିର ମାନସପୁତ୍ର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ଜନ୍ମ ହେବ । ଦେବଜ୍ଞମାନେ ଏ ସନ୍ତାନର ଭାଗ୍ୟଗଣନା କରିବାକୁ ଆଜହୁଁ ଉଦ୍ୟତ ହେଲେଣି । ଦୁର୍ଯ୍ୟୋଧନର ଜନ୍ମକାଳରେ ଦୁର୍ଲକ୍ଷଣମାନ ଦେଖି ମହାରାଜା ଧୃତରାଷ୍ଟ୍ର ଯେପରି ବ୍ୟାକୁଳ ହୋଇଥିଲେ, ଏ ସନ୍ତାନର ଜନ୍ମ ପୂର୍ବରୁ ନାନାପ୍ରକାର ଦୁର୍ଲକ୍ଷଣମାନ ଦେଖି ଓଡ଼ିଆଜାତି ସେହିପରି ବ୍ୟାକୁଳ ହେଉଅଛନ୍ତି । କାହାର ମନରେ ଫୂର୍ତ୍ତି ନାହିଁ । ବହୁକାଳର ସାଧନା ସଫଳ ହେଲେ ମୁଖମଣ୍ଡଳରେ ଯେପରି ଆନନ୍ଦର ଚିହ୍ନ ଦେଖାଯାଏ, ତାହା ଦେଖାଯାଉ ନାହିଁ । କିଏ ପାଞ୍ଚୁଛି ଆମେ ଚାହିଁଥିଲୁଁ ଆମ୍ବ, ପାଇଲୁଁ ଆମ୍ବଡ଼ା । କିଏ ପାଞ୍ଚୁଛି ଏତେଦିନଯାଏ ଆମେ ଜାହାଜ ପଛରେ ବଟାଲି (ଗଧବୋଟ) ବନ୍ଧାହେବା ପରି ବଡ଼ ପ୍ରଦେଶ ପଛରେ ବନ୍ଧା ହୋଇଥିଲୁଁ, ଆମ ଦିନ କଟି ଯାଉଥିଲା; ଏବେ ଡୋର କାଟି ଦେଲୁଁ, ବାଆ ବତାସ ସମ୍ଭାଳି ନ ପାରିଲେ ବୁଡ଼ିଯିବୁଁ ସିନା । କିଏ ପାଞ୍ଚୁଛି ନୂତନ ପ୍ରଦେଶ ହେଲା ନାହିଁ ଯେ, ଓଡ଼ିଆ ଜାତିର ସମାଧି ହେଲା । କିଏ ପାଞ୍ଚୁଛି, ଏ ପ୍ରଦେଶରେ ଜନମତ ଲୋଡ଼ା ହେବ ନାହିଁ । ତାହା ନଈବାଲିରେ ସାଢ଼େ ସାତଫୁଟ ଗର୍ତ୍ତରେ ପୋତା ହେବ । କାରଣ, ନଙ୍ଗ ନ ପଶୁଣୁ ମୁଣ୍ଡରେ ଚାଳ ବାଜିଲାଣି । କିଏ ଅବା କବି ନ ହୋଇ ସୁଦ୍ଧା ଗୁଣୁଗୁଣୁ ହୋଇ ଗାଉଛି -

ଜାଣି ତ ନ ଥିଲି ମୁହିଁ, ଲଲାଟେ ଲେଖିଛି ବିହି
ଧାଡ଼ି କି ଧାଡ଼ି କଷଣ, କେମନ୍ତେ ବଞ୍ଚିବି ଦିନ
ସହୀ ମନ ମୋ ହେଉଛି ଦହି ।

୨. ଶୁଣାଯାଉଛି, କଟକର ମସ୍ତକ ଛେଦନ ହେବ । କଟକରେ ରାଜଧାନୀ ହେବ ନାହିଁ, କେଉଁଠି ବଣବୁଦାରେ ରାଜଧାନୀ ହେବ । ହଠାତ୍ ଏ ନିଆଁଟା କାହିଁକି ଉଠିଲା ? ଲୋକେ ଭାବି ଭାବି ଠିକ୍ କରିପାରୁ ନାହାନ୍ତି । କଟକକୁ ପ୍ରାଚୀନ ଓଡ଼ିଶାର ରାଜାମାନେ ରାଜଧାନୀ କରିଥିଲେ, ଆମେ ଅବା କହିବା ସେମାନଙ୍କର ବୁଦ୍ଧି ନ ଥିଲା । ମୋଗଲମାନେ ଓ ମରହଟ୍ଟାମାନେ ଏହାକୁ ରାଜଧାନୀ କରିଥିଲେ, ଆମେ ଅବା କହିବା ସେମାନେ ଇଞ୍ଜିନିୟରିଙ୍ଗ୍ ଜାଣି ନ ଥିଲେ, କିନ୍ତୁ ଇଂରେଜମାନେ ତ ଏହାକୁ ଆଜିଯାକେ ରାଜଧାନୀ ବୋଲି ଗଣି ଆସୁଅଛନ୍ତି । ମହାନଦୀ ବା କାଠଯୋଡ଼ି ଏ ନଗରଟାକୁ ତ ଆଜିଯାକେ ଗର୍ଭସାତ୍ କରି ନାହିଁ । କେଶରୀବଂଶର ପଥରବନ୍ଧ ହଜାର ବର୍ଷ ହେଲା ଠିଆ ହୋଇଛି । ତିନି ଚାରିଶତ ବର୍ଷର ପୁରୁଣା ମରହଟ୍ଟିଆ ପକ୍କାମାନ ଆଜିଯାଏ ଠିଆ ହୋଇଛି ।

ଚାଉଳିଆଗଞ୍ଜର ପଡ଼ିଆରେ ଧାଡ଼ିଏ ବହୁକାଳର ପୁରୁଣା ପକ୍କା ଚୁଙ୍ଗି ନିଖୁଣ ରହିଛି । ତେବେ କଟକ ଉପରେ କାହିଁକି କୁଦୃଷ୍ଟି ପଡ଼ିଛି ? ଭଗବାନ୍ କଟକକୁ ଶନି ଦୃଷ୍ଟିରୁ ରକ୍ଷା କରନ୍ତୁ ।

୩. ପୁଣି ଶୁଣାଯାଉଛି ରେଭେନ୍ସା କଲେଜ ଦରଜାରେ ବଡ଼ ବଡ଼ ତାଲାମାନ ପଡ଼ିବ, କାରଣ ସେ କଲେଜରେ ଯେଉଁମାନେ ପଢ଼ିବେ, ତାଙ୍କୁ ଚାକିରି ବାକିରି ମିଳିବ ନାହିଁ। ବିଦେଶରୁ ଲୋକମାନେ ଆସି ଚାକିରି କରିବେ । ଓଡ଼ିଶାରେ ଯଦି ଯୋଗ୍ୟ ଲୋକ ଥାଆନ୍ତି, ସେମାନେ ଘାସ ଛେଲିବେ, ଜାଳକାଠ ହାଣିବେ ଓ ପାଣି ବୋହିବେ। ସରକାରଙ୍କର ବୁଝାମଣା ଦେଖି ଆମର ବୁଦ୍ଧି ହଜିଲାଣି । ଏକଥା ମନରେ ଯଦି ପାଞ୍ଚ ଥିଲା, ତେବେ ଗୋଟାଏ ସ୍ୱତନ୍ତ୍ର ପ୍ରଦେଶ କରିବାର କି ଦରକାର ଥିଲା । ଯେଉଁମାନେ ସ୍ୱତନ୍ତ୍ର ପ୍ରଦେଶ ପାଇଁ ଅଳି କରୁଥିଲେ, ଯେଉଁମାନଙ୍କ ପାଇଁ ସ୍ୱତନ୍ତ୍ର ପ୍ରଦେଶ ହେଲା, ସେମାନେ ଡୋର କୌପୁନି ଧାରଣ କରି ରାମାନନ୍ଦୀ ଚିତାକାଟି ବାଏଁ ବାଏଁ ବଦ୍ରିକା ଗମନ କରନ୍ତୁ । ଲକ୍ଷ୍ମୀ ବାମ ହେଲେ ଅଭାଗାର ସମ୍ମୁଖରେ ଥାଳୀରେ ବଢ଼ାହୋଇଥିବା ଅନ୍ନ ପାଟିକୁ ଯାଏ ନାହିଁ ।

୪. ପାରଳାଖେମଣ୍ଡି କଥା ଭାବିଲେ ଭଗବାନ୍‌ଙ୍କ ବିଚାରକୁ ଜୁହାର କରୁଁ । ପାରଳାଖେମଣ୍ଡି ରାଜା ଲକ୍ଷ ଲକ୍ଷ ଟଙ୍କା ଖରଚ କରି ବହୁତ କଷ୍ଟ ସହ୍ୟକରି, ବିଲାତରେ ପଡ଼ିରହି ନୂତନ ଓଡ଼ିଶା ପ୍ରଦେଶ ମଞ୍ଜୁର କରାଇଲେ,କିନ୍ତୁ ତାଙ୍କ ରାଜ୍ୟରୁ ଛିଲିକାଏ ମାତ୍ର ଏ ପ୍ରଦେଶରେ ମିଶିଲା । ପୁଣି ସେହି ଛିଲିକା ଏବେ ଯିବ ଜୟପୁରକୁ । ଏହା ଓଡ଼ିଆ ଜାତି ପ୍ରତି ଭଗବାନ୍‌ଙ୍କ ସୁ ବୁଝାମଣାର ନମୁନା । ତାଙ୍କୁ ପୁଣି ଲୋକେ କହନ୍ତି ଦୟାମୟ ! ତାଙ୍କର ଯେତକ ଦୟା ଥିଲା ସେ କଅଣ ପାରଳାଖେମଣ୍ଡି ମୁଣ୍ଡରେ ଢାଳି ଦେଲେ ।

୫. ଶ୍ରୀଯୁକ୍ତ ଡିସ୍ପୀ ସାହେବ ନୂତନ ଓଡ଼ିଶା ପ୍ରଦେଶର ଶିକ୍ଷା ବିଭାଗର ଡାଇରେକ୍ଟର ହେବା ନିମନ୍ତେ ମନୋନୀତ ହୋଇଅଛନ୍ତି ବୋଲି ଶୁଣାଯାଏ । ଜଣେ କଳାଲୋକଙ୍କୁ କାହିଁକି ଏ କାମ ଦିଆ ନ ଯାଇ ଜଣେ ଗୋରାଲୋକଙ୍କୁ ଦିଆଯାଉଛି । ଏହି କଥା ଓଡ଼ିଶାର କେତେକ ସମ୍ବାଦପତ୍ର ସମାଲୋଚନା କରି ଗୋଟାଏ ଆନ୍ଦୋଳନ ଲଗାଇଥିଲେ । ଡିସ୍ପୀ ସାହେବଙ୍କ ଅପେକ୍ଷା ଶ୍ରେଷ୍ଠ ଯୋଗ୍ୟତର ଓ ଉଚ୍ଚ ପାହିଆର କୌଣସି ଓଡ଼ିଆ ଉପେକ୍ଷିତ ହୋଇଥିଲେ ଓଡ଼ିଆମାନେ ଅବଶ୍ୟ ଅସନ୍ତୁଷ୍ଟ ହୁଅନ୍ତେ, କିନ୍ତୁ ତାହା ହୋଇ ନାହିଁ । ଯେଉଁ ଦୁଇଜଣ ଓଡ଼ିଆ ସନ୍ତାନ ଶିକ୍ଷା ବିଭାଗ ଉଚ୍ଚକର୍ମରେ ଅଛନ୍ତି, ଦୁହେଁଯାକ ଡିସ୍ପୀ ସାହେବଙ୍କ ଅପେକ୍ଷା କର୍ମକ୍ଷେତ୍ରରେ କନିଷ୍ଠ । ଓଡ଼ିଶା ଶିକ୍ଷା ବିଭାଗର ଭିତରର ଅବସ୍ଥା ବର୍ତ୍ତମାନ ଯେପରି ହୋଇ ଉଠିଛି ତାହା ଯେ ଜାଣେ ସେ କହିବ ଯେ, ଜଣେ ଇଂରେଜ ସେ ବିଭାଗର ପରିଚାଳକ ହୋଇ ଆସିବା ଓଡ଼ିଶା ପକ୍ଷରେ ମଙ୍ଗଳ । ଗୋଟାଏ ପୁରୁଣା ଇଂରେଜୀ କବି ବଚନ ଅଛି - 'Something is rotten in the state of Denmark' କିନ୍ତୁ ଓଡ଼ିଶା ଶିକ୍ଷା ବିଭାଗର କଥା ଯଦି ସ୍ପଷ୍ଟ କହୁଁ ତେବେ କହିବା 'manythings are rotten in the Education atmosphere of Orissa' ।

ଶୁଣାକଥା ଦୂରେ ଥାଉ, ନିଜେ ଯାହା ଅନୁଭବ କରିଥାଇଁ ତାହା ବର୍ଣ୍ଣନାକଲେ, କିଏ ନ କହିବ ଯେ ଓଡ଼ିଶା ଶିକ୍ଷା ବିଭାଗର ରକ୍ତ ଦୂଷିତ ହୋଇଅଛି । ଭଲ ବୈଦ୍ୟ ଓ ଉତ୍କୃଷ୍ଟ ଔଷଧର ପ୍ରୟୋଜନ । ବିହାର ଶିକ୍ଷା ବିଭାଗର କର୍ତ୍ତା ବିଶେଷ ଯୋଗ୍ୟ ବ୍ୟକ୍ତି ହେଲେହେଁ ଓଡ଼ିଶାରୁ ବହୁଦୂରରେ ଥିବାରୁ ହୁଏ ତ ସବୁବେଳେ ଓଡ଼ିଶାର କଥାଗୁଡ଼ାକ ଜାଣିପାରୁ ନ ଥିଲେ । ଡିସ୍ତୀ ସାହେବଙ୍କ ନିଯୁକ୍ତିରେ ଓଡ଼ିଶାର ଶିକ୍ଷିତ ବ୍ୟକ୍ତିମାତ୍ରେ କି ରୂପ ସନ୍ତୁଷ୍ଟ ହୋଇଅଛନ୍ତି, ସେ ଦିନ ଏ ନଗରର ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟାନ, ଓଡ଼ିଆ, ବଙ୍ଗାଳୀ, ଗୁଜୁରାଟୀ, ମାରବାଡ଼ୀ ଆଦି ସମ୍ଭ୍ରାନ୍ତ ବ୍ୟକ୍ତିମାନେ ତାଙ୍କର ଯେରୂପ ସମ୍ବର୍ଦ୍ଧନା କରିଥିଲେ, ତହିଁରୁ ତାହା ସ୍ପଷ୍ଟ ରୂପେ ପ୍ରତୀୟମାନ ହୋଇଥିଲା । ଡିସ୍ତୀ ସାହେବ ଓଡ଼ିଶାକୁ ନୂଆ ନୁହନ୍ତି ବା ଓଡ଼ିଶା ତାଙ୍କୁ ନୂଆ ନୁହେଁ । ସିଂହଭୂମରେ ଓଡ଼ିଆ ଭାଷା ଶିକ୍ଷା ଦିଆଯିବା ପାଇଁ ସେ ଓଡ଼ନେଲ କମିଟିଙ୍କ ଆଗରେ ଓଡ଼ିଆଙ୍କ ପଟରେ ଯେଉଁ ଲଢ଼େଇ କରିଥିଲେ, ତାହା ଓଡ଼ିଆ ଜାତି କୃତଜ୍ଞତା ସହକାରେ ଚିରକାଳ ମନେ ରଖିବ । ଡିସ୍ତୀ ସାହେବ ଯେପରି କାର୍ଯ୍ୟଦକ୍ଷ ସେପରି ଭଦ୍ରବ୍ୟକ୍ତି । ଆଶା କରୁଁ, ସେ ଓଡ଼ିଶାର ଶିକ୍ଷା ବିଭାଗର ସଂସ୍କାର ଓ ଉନ୍ନତି କରି ପ୍ରଭୂତ ମଙ୍ଗଳ ସାଧନ କରିବେ ।

୧ ଜାନୁୟାରୀ ୧୯୩୬

## ।। ଚବିଶ ।।

୧. ସ୍ୱତନ୍ତ୍ର ପ୍ରଦେଶ ହୋଇଗଲା । ମଞ୍ଜି ପୋତିଥିଲୁଁ, ଗଛ ଉଠିଲା, ଫଳ ଫଳିଲେ ଖଟା କି ମିଠା ଜଣାଯିବ । ସମସ୍ତେ କହୁଛନ୍ତି ଟଙ୍କା କଉଡ଼ି ଅଣ୍ଟିବ ନାହିଁ, ସୁରୁଖୁରୁରେ କାର୍ଯ୍ୟ ଚଳିବ ନାହିଁ, ହଇରାଣ ହରକତ ହୋଇ ଦିନ ଯିବ । କେତେ ଲୋକଙ୍କର ଆଶଙ୍କା ହେଲାଣି କାମ ଚଳିଲେ ମଧ୍ୟ ଉନ୍ନତି ନିମନ୍ତେ ପାହୁଲାଏ ମିଳିବ ନାହିଁ । ଏ ଅବସ୍ଥାରେ ପୁଣି କେତେ ଲୋକ କହୁଛନ୍ତି ଆମ ପାଇଁ ଗୋଟାଏ ସ୍ୱତନ୍ତ୍ର ହାଇକୋର୍ଟ କର । ଯାହା ଘରେ ଦାନା ନ ଥାଏ ସେ ଯେବେ ଘୋଡ଼ା ଚଢ଼ିବାକୁ ଇଚ୍ଛା କରେ, ତେବେ ଲୋକ ହସନ୍ତି । ଖୁବ୍ ହିସାବ କରି ଚଳିପାରିଲେ ହୁଏତ୍ ଏ ପ୍ରଦେଶ ଚଳିପାରେ, ଖର୍ଚ୍ଚକୁ ନ ଏ ପ୍ରଦେଶ ଦେବାଳିଆ ହୋଇପଡ଼ିବ ।

୨. ପ୍ରଦେଶର ଆର୍ଥିକ ଅବସ୍ଥା ଶୋଚନୀୟ ହେଲେହେଁ ତାହାର ସୌଭାଗ୍ୟ ଯେ ସେ ସାର୍ ଜନ୍ ହବାକଙ୍କ ପରି ଜଣେ ଲାଟ ପାଇଛି । ତାଙ୍କ ପ୍ରତି ଏ ଦେଶର ଜନସାଧାରଣ କି ରୂପେ ଆକୃଷ୍ଟ, ପ୍ରତିଷ୍ଠା ଉତ୍ସବରେ ଯେତେ ଲୋକ ଯୋଗ ଦେଇଥିଲେ, ଉଦ୍ୟାନ ମିଳନରେ ଯେତେ ଲୋକ ସମବେତ ହୋଇଥିଲେ, ଯେତେ ଲୋକ ତାଙ୍କ ସାଙ୍ଗେ ସାକ୍ଷାତ୍ କରିବାକୁ ଆବେଦନ କରିଥିଲେ ଓ ସେତେ ଲୋକ ସର୍କିଟ୍ ହାଉସକୁ ଯାଇ ମହିରେ ନାମ ଲେଖି ଦେଇ ଆସିଥିଲେ ତାହା ସବୁ ତହିଁର ପ୍ରମାଣ । ତାଙ୍କର ଆଉ ଗୋଟାଏ ଗୁଣ ସେ

ଅୟେସ୍‌ପ୍ରିୟ ନୁହନ୍ତି । ଦିନରାତି କାମ କରନ୍ତି, ନିଜେ କାମ କରନ୍ତି, ନିଜେ କାଗଜପତ୍ର ପଢ଼ନ୍ତି । ନିଜେ ସବୁ ଦେଖି ଶୁଣି ହୁକୁମ ଦିଅନ୍ତି । ଏପରି ପ୍ରଦେଶ ପକ୍ଷରେ ଏହା ଶ୍ରେୟସ୍କର । ତାଙ୍କର ଆଉ ଗୋଟିଏ ଗୁଣ ସେ ନ୍ୟାୟବାନ୍ ଓ ନିରପେକ୍ଷ । ସମସ୍ତଙ୍କର ଆଶା ତାଙ୍କର ଶାସନ କାଳରେ ସେ ଓଡ଼ିଶାର ଯେତେ ଉପକାର କରିପାରନ୍ତି ତାହା କରିବେ । ଏଥି ମଧ୍ୟରେ ସେ ଅନେକ ଗ୍ରାମ ଦେଖିବାକୁ ବାହାରିଲେଣି । ଗ୍ରାମର ଅବସ୍ଥା ଦେଖିଲେ ଯାହା ଜଣାଯାଏ, ରାଜଧାନୀରେ ବସିଲେ ତାହା ଜଣାଯାଏ ନାହିଁ । ଲାଟସାହେବ ଗ୍ରାମ ଚିହ୍ନିବେ, ଗ୍ରାମର ଲୋକେ ଲାଟସାହେବଙ୍କୁ ଚିହ୍ନିବେ, ଏତଦ୍ୱାରା ପରସ୍ପର ସଦ୍ଭାବ ସୃଷ୍ଟି ହେବ । ସେଦିନ ଦିଲ୍ଲୀରେ ନୂତନ ବଡ଼ଲାଟ ଜିଲ୍ଲାର ହାକିମମାନଙ୍କୁ ଉପଦେଶ ଦେଲେ, ତୁମ୍ଭମାନଙ୍କର ଯେତେ ଅସୁବିଧା ହେଉ ପଛେକେ ତୁମ୍ଭେମାନେ ନିଜ ନିଜ ଜିଲ୍ଲାର ଗ୍ରାମମାନ ଭଲ ରୂପେ ଦେଖିବ । ବଡ଼ଲାଟ ଏକଥା କହିବା ଆଗରୁ ଓଡ଼ିଶାର ଲାଟ ଗ୍ରାମ ଦେଖିବାର କଳ୍ପନା କରି ସାରିଲେଣି ।

୩. ଜନମତ ଅନୁସାରେ ସ୍ୱତନ୍ତ୍ର ପ୍ରଦେଶ ହେଲା କିନ୍ତୁ ସେ ପ୍ରଦେଶର ରାଜଧାନୀ କେଉଁଠାରେ ହେବ, ତହିଁ ନିମନ୍ତେ ତ ଜନମତ ଲୋଡ଼ା ନୁହେଁ ? ଯଦି ଜନମତ ଲୋଡ଼ା ତେବେ ଉତ୍କଳ ସମ୍ମିଳନୀରେ ନିର୍ଦ୍ଧାରଣ ଗଲା କୁଆଡ଼େ ? ସମ୍ମିଳନୀ ସ୍ପଷ୍ଟ ନିର୍ଦ୍ଧାରଣ କରିଥିଲା କଟକରେ ରାଜଧାନୀ ହେଲେ, ତେବେ ଗୋଟାଏ କମିଟି କାହିଁକି ବସିଲା । କମିଟି କେଉଁ ନୂଆ କଥା କହିବ ? କଟକ ସହର ସମସ୍ତଙ୍କୁ ଜଣା, ବରୁଣେଇ ପାହାଡ଼ ସମସ୍ତଙ୍କୁ ଜଣା । କମିଟି ଦିନେ ଆସି ଯାହା ଦେଖିବେ, ଏ ଦେଶର ଲୋକମାନେ ଚିରକାଳ ତାହା ଦେଖି ଆସିଅଛନ୍ତି । କମିଟି ଆସି ମାଟି ପରୀକ୍ଷା କରିବେ, ଜଳ ପରୀକ୍ଷା କରିବେ, ବାୟୁ ପରୀକ୍ଷା କରିବେ ? କଟକ ହଜାର ବର୍ଷର ସହର - ଦୁଇ ପାଖରେ ଦୁଇଟି ନଦୀ ବି ଅଛି, ଦିନେ ତ କଟକ ବୁଡ଼ି ଯାଇ ନାହିଁ, ଏ ଆଶଙ୍କା ବାହାରିଲା କାହା ମୁଣ୍ଡରୁ । ରେଳଲାଇନ୍‌ର ପୂର୍ବକୁ ବିସ୍ତୃତ ସ୍ଥାନ ରହିଅଛି । ଗୋଟାଏ ନଗରକୁ ରାଜଧାନୀରେ ପରିଣତ କରିବା ଅପେକ୍ଷା ଗୋଟାଏ ବଣକୁ ବି ରାଜଧାନୀ କରିବା ସହଜ ? ବରୁଣେଇରେ ରାଜଧାନୀ ହେଲେ ବିଲିମୋରିଆର ଦେବାନ୍ ସେଠାକୁ ସହଜରେ ଯାଇପାରେ, କିନ୍ତୁ ରେଭେନ୍‌ସା କଲେଜ, ଜେନେରାଲ ହସ୍‌ପିଟାଲ, ଇଞ୍ଜିନିୟରିଂ ସ୍କୁଲ, ରେଭେନ୍‌ସା ବାଳିକା ବିଦ୍ୟାଳୟ ଏହାସବୁ ସେଠାକୁ କପିକଳ ଦ୍ୱାରା ଉଠାଇ ଦିଆଯାଇପାରିବ ତ ? ମୟଦାନବ ରାତିକ ମଧ୍ୟରେ ଗୋଟାଏ ବିରାଟ ସଭାମଣ୍ଡପ ଗଢ଼ି ଦେଇଥିଲା, ବରୁଣେଇ ଜଙ୍ଗଲକୁ ଗୋଟାଏ ରାଜଧାନୀରେ ପରିଣତ କରିବା ପାଇଁ ସେହି ମୟଦାନବ ଆସିବେ ନା, ଆଉ କିଏ କରିବ ? ପ୍ରଦେଶଟା ଭାରତ ଗଭର୍ଣ୍ଣମେଣ୍ଟଙ୍କ ଇଚ୍ଛା ଉପରେ ନିର୍ଭର କରି ଚଳିବ, କିନ୍ତୁ ନୂତନ ରାଜଧାନୀ ନିର୍ମାଣ କରିବା ନିମନ୍ତେ ଗୁଡ଼ାଏ ଟଙ୍କା ଅପବ୍ୟୟ ହେବ, ଏ କଥା ଭାବିଲେ ଦୁଃଖ ହୁଏ, ହସ ମାଡ଼େ । ସ୍ୱୟଂ ଲାଟସାହେବ ଯେଉଁ କମିଟିର ସଭାପତି ଥିଲେ, ଯେଉଁ କମିଟିରେ କଟକ, ପୁରୀ ଓ ଗଞ୍ଜାମର ବିଶିଷ୍ଟ ବ୍ୟକ୍ତିମାନେ ସଭ୍ୟ ଥିଲେ ଓ ଯେଉଁ କମିଟି ସମ୍ମୁଖରେ ଓଡ଼ିଶାର ବିଭିନ୍ନ ଅଞ୍ଚଳର ବିଶିଷ୍ଟ ବ୍ୟକ୍ତିମାନେ ଅଭିମତ

ପ୍ରକାଶ କରିଥିଲେ ସେହି କମିଟି ତ କଟକକୁ ରାଜଧାନୀ ନିମନ୍ତେ ମନୋନୀତ କରିଥିଲେ, ଏହି ତିନିବର୍ଷ ମଧ୍ୟରେ ସେହି କଟକର ଏପରି କି ପରିବର୍ତ୍ତନ ଘଟିଲା ଯେ କଟକ ନାପସନ୍ଦ ହେଲା ବରୁଣେଇ ପାହାଡ଼ ପସନ୍ଦ ହେଲା । ଗୋଟାଏ ଯୁଗ ଗଲେ ବା କୋଟିଏ ଟଙ୍କା ବ୍ୟୟ ହେଲେ ସୁଦ୍ଧା ବରୁଣେଇ ପାହାଡ଼ କଟକ ନଗରୀର ସମକକ୍ଷ ହେବା ସମ୍ଭବ ନୁହେଁ ।

୪. ଓଡ଼ିଆଙ୍କ ନିମନ୍ତେ ଓଡ଼ିଶା ପ୍ରଦେଶ ହେଲା, କିନ୍ତୁ ସବୁ ଚାକିରିଯାକ ଓଡ଼ିଆ ପାଇଲେ ନାହିଁ, ବହୁତ ଗୁଡ଼ିଏ ଚାକିରି ବିଦେଶୀ ଲୋକଙ୍କୁ ଦିଆଗଲା । ଯେଉଁମାନେ ଆସୁଛନ୍ତି ଡୋମିସାଇଲ ସାର୍ଟିଫିକେଟ୍ ବଳରେ, ଦିନେ ହୁଏତ୍ ସେମାନଙ୍କର ଏଠାରେ ଚେର ଲାଗିଯିବ, ଓଡ଼ିଆ ଘାସ କାଟିବେ । ଯଦି ଓଡ଼ିଶାରେ ଉପଯୁକ୍ତ ଲୋକ ନ ଥାଆନ୍ତେ, ତେବେ ସରକାର ଅନ୍ୟ ଜାତିର ଲୋକଙ୍କୁ ଏଠାକୁ ଆଣିଲେ କେହି କିଛି କହିପାରନ୍ତେ ନାହିଁ, କିନ୍ତୁ ପଲ ପଲ ଓଡ଼ିଆ ପାଠପଢ଼ି ଘରେ ବସିଛନ୍ତି । ଚାକିରି ଖୋଜି ବୁଲୁଛନ୍ତି, ବିଦେଶରୁ ଲୋକ ଆସି ଏଠାରେ ଚାକିରି କଲେ । ଓଡ଼ିଆମାନେ ସେମାନଙ୍କୁ ଦେଖି କୃତାର୍ଥ ହେବେ । କାମ ଶିଖି ନ ଥିବା ଦୋଷରୁ ଯଦି ଓଡ଼ିଆ ବଞ୍ଚିତ ହେଲେ ତେବେ ସେମାନଙ୍କୁ କିଛିଦିନ ବିନା ବେତନରେ କାମ ଶିଖାଇ ଦେଇଥିଲେ ସେମାନେ ଉପଯୁକ୍ତ ହୋଇଥାନ୍ତେ । କାମ ଶିଖିବାକୁ ଚାଲନ୍ତା ବା କେତେ ଦିନ ? ବେକରେ ଢୋଲ ପଡ଼ିଲେ ଲୋକେ ବଜାଇ ଶିଖନ୍ତି । ଏହି ଓଡ଼ିଆ ତ ପାଟନା ଯାଇ ସେଠାରେ କାମ ଶିଖି କାମ କରି ସୁଖ୍ୟାତି ଅର୍ଜନ କରି ଆସିଲେ । ଏମାନଙ୍କୁ ବଞ୍ଚିତ କରାଗଲା କାହିଁକି ? ମୂଳରୁ ଓଡ଼ିଆଙ୍କ ପ୍ରତି ଯେ ଅତ୍ୟାଚାର ହେଲା ଏଥିରେ ସମସ୍ତେ ଦୁଃଖିତ । ଭବିଷ୍ୟତ୍‌ରେ ଆଉ ବିଚାର ନ ହେଲେ ଏ ଦୁଃଖ କିୟତ୍ ପରିମାଣରେ ହ୍ରାସ ହେବ ।

୫. ନୂତନ ପ୍ରଦେଶଟା କିପରି ଚଳିବ, ଏହା କେବଳ ସରକାର ଭାବିଲେ ଯଥେଷ୍ଟ ହେବ ନାହିଁ, ଦେଶର ଲୋକେ ମଧ୍ୟ ଭାବିବା ଆବଶ୍ୟକ । ଦେଶର ପାଞ୍ଚଜଣ ମିଳି ଦେଶର କାର୍ଯ୍ୟଭାର ଲାଗିଲେ, ଦେଶର ମଙ୍ଗଳ ହେବ, କିନ୍ତୁ ମୂଳରୁ ବ୍ୟକ୍ତିଗତ ସ୍ୱାର୍ଥ ପ୍ରବଳ ହେଲାଣି ସମବେତ ଚେଷ୍ଟା ବିରଳ । କିଏ ଭାବୁଛି ମୁଁ ହିମାଳୟ ପର୍ବତ ପରି ବଡ଼ ହେବି, କିଏ ଭାବୁଛି ସ୍ୱର୍ଗର ଚାନ୍ଦ,ମୋ ହାତକୁ ଆସୁ, ଭାବୁଛି କାହାକୁ ଖୁସି କଲେ ସେ ମତେ ଗଛ ଅଗରେ ବସାଇଦେବେ, କିଏ ଭାବୁଛି କାଳେ ଅମୁକ ବ୍ୟକ୍ତି ମୋତେ ବଳିଯିବ, ମୁଁ ତାକୁ ଟିକିଏ ଘାଇଲା କରିଦିଏ । କିଏ କେତେ ପ୍ରକାର ଅଭିନୟ କରୁଛି, ଫନ୍ଦିଫିକର କରୁଛି, ଲୋକେ ସବୁ ବୁଝି ପାରୁଛନ୍ତି । ଏ କାଳରେ ସମସ୍ତେ ସିଆଣା, ନ ବୁଝିବ କିଏ ? ଏହି ଚତୁଃସ୍ୱାର୍ଥପର ବ୍ୟକ୍ତିଗୁଡ଼ିକ ସେମାନଙ୍କ ଅଭିସନ୍ଧି ଛାଡ଼ି ଦେଇ ଦେଶପାଇଁ କିଛି କିଛି କାମ କଲେ ସେମାନେ ଦେଶର ସତ୍‌ଯୁକ୍ତ ବୋଲି ଗଣ୍ୟ ହୁଅନ୍ତେ ।

ଆମ ଦେଶର କଥା ଭାବନ୍ତୁ, ପରେ ନିଜର କଥା ଭାବିବେ । ଏହିମାନଙ୍କ ଲାଭ ନିମନ୍ତେ ଭଗବାନ୍ ଏ ପ୍ରଦେଶ ସୃଷ୍ଟି କରିଛନ୍ତି ଏହା ଭାବିବା ବିଡ଼ମ୍ବନା ମାତ୍ର ।

୨୨, ଏପ୍ରିଲ ୧୯୩୬

# ଜେଜେବାପାଙ୍କ ଟୁଣିମୁଣି

## ୧୯୩୬-୧୯୩୭

ଶ୍ରୀ ପ୍ରତାପ ସେନ ଓ ଶ୍ରୀ ନାରାୟଣ ପ୍ରସାଦ ଷାଠିୟାଙ୍କଦ୍ୱାରା ସମ୍ପାଦିତ 'ରସଚକ୍ର' ପତ୍ରିକାର ପ୍ରଥମ ବର୍ଷ ୭ମ ସଂଖ୍ୟା (୧୩୪୧ ସାଲ ଭାଦ୍ର)ରୁ ଆରମ୍ଭ ହୋଇ ଦ୍ୱିତୀୟ ବର୍ଷ ନବମ ସଂଖ୍ୟା (୧୩୪୨ ସାଲ) ମଧ୍ୟରେ ୧୦ଗୋଟି ଭାଗରେ ପ୍ରକାଶିତ । ଲେଖକଙ୍କ ଛଦ୍ମନାମ ଶ୍ରୀ ଧୂନ୍ଧୁମାର ପାଣି । ଧୂନ୍ଧୁମାର ଶବ୍ଦର ପରିଭାଷା ଅଳନ୍ଧୁ ଓ ସାଧବବୋହୂ ପୋକ । ଅଳନ୍ଧୁ ଘରର ଅନ୍ଧାରୁଆ ଜାଗା, କୋଣ ଓ ଛପରର ବିଭିନ୍ନ ସ୍ଥାନରେ କଳାଧୂଆଁ, ଧୂଳିକୁ ଧରି ରଖିଥିବା ବୁଢ଼ିଆଣୀ ଜାଲ - ଯାହାର ଅବସ୍ଥିତି ବ୍ୟକ୍ତିର ଅନ୍ଧାରି ମନ ଓ ରୁଚିହୀନତାର ସୂଚକ ଏବଂ ସାଧବବୋହୂ - ଲାଲ ମଖମଲ କନା ପରି ଚିକ୍‌କଣଦେହୀ ଅଳ୍ପକାଳଜୀବୀ ଛୋଟ ପୋକ । ପହିଲି ବର୍ଷାର ସବୁଜାୟିତ ପଡ଼ିଆରେ ଯେଉଁମାନଙ୍କର ବର୍ତ୍ତମାନ ବ୍ୟକ୍ତିର ସୌନ୍ଦର୍ଯ୍ୟବୋଧକୁ ସମାହିତ କରିଦିଏ । ଶ୍ରୀଯୁକ୍ତ ପ୍ରହରାଜ ଆପଣାର ଏହି ବିଶେଷ ରଚନାରେ ଜେଜେବାପାଙ୍କର ଭୂମିକା ତୁଲେଇଛନ୍ତି ।

ଆଲୋଚନାର ଦଶଗୋଟି ଭାଗରେ ଲେଖକ ମଣିଷକୁ ଗ୍ରାସିଥିବା ଯାବତୀୟ ମାନସିକ ଓ ଶାରୀରିକ ରୋଗ ସମ୍ପର୍କରେ ବିଶଦ ବ୍ୟାଖ୍ୟା କରିଛନ୍ତି । ରୋଗଗୁଡ଼ିକର ନାଁ ପଶୁମାନଙ୍କ ସହିତ ସମ୍ବନ୍ଧିତ; ଯଥା - ବେଙ୍ଗା, ଘୁଷୁରିଆ, ବିରାଡ଼ିଆ, ମେଁମେଁୟା, କୁକୁରିଆ, ବେନାମୀ ଓ ହାମ୍‌ବଡ଼ା ଇତ୍ୟାଦି । ପୃଥିବୀରେ ନିଜ ନିଜକୁ ବୁଦ୍ଧିମାନ୍, ସଭ୍ୟ ଓ ବିବେକୀ ବୋଲି ଦାବି କରୁଥିବା ମଣିଷ ଯେ ଏକ ଚତୁର, ଉନ୍ନତ ଓ ଶକ୍ତିଶାଳୀ ପଶୁ - ଏହି ତତ୍ତ୍ୱର ପ୍ରମାଣ ପାଇଁ ପଶୁ ଓ ମଣିଷମାନଙ୍କ ମଧ୍ୟରେ ଥିବା ଆଚରଣଗତ ସାଦୃଶ୍ୟକୁ ସେ ଉପଲକ୍ଷ୍ୟ ଭାବରେ ଗ୍ରହଣ କରିଛନ୍ତି ।

ବି.ଦ୍ର. - ଏଠାରେ ମୋତେ ଦୁଃଖର ସହିତ କହିବାକୁ ପଡୁଛି ଯେ, ରସଚକ୍ର ୨ୟ ବର୍ଷ ୭ମ ସଂଖ୍ୟାର ୨୪୭ରୁ ୨୫୨ ପର୍ଯ୍ୟନ୍ତ ୬ ପୃଷ୍ଠା କୌଣସି ସହୃଦୟ କାଟି ନେଇଥିବାରୁ 'ହାମ୍‌ବଡ଼ା' ରୋଗର ପ୍ରଥମ କେତେକ ଅଂଶର ସଂଯୋଜନ ଏଠାରେ ସମ୍ଭବ ହୋଇପାରିଲା ନାହିଁ । ପାଠକେ ମୋର ଅସହାୟତାକୁ ଗ୍ରହଣ କରିବେ ।

ସମ୍ପାଦକ

## ।। ଏକ ।।

ରସଚକ୍ର ପାଇଁ ମାଲମସଲା ସଂଗ୍ରହ କରିବା ନିମନ୍ତେ ସମ୍ପାଦକ ସାହେବ ବ୍ୟସ୍ତ ଅଛନ୍ତି । ସମ୍ପାଦକ ମହାଶୟ ! ଥରେ ଆପଣ ଯାଇ କଟକ ଆୟୁର୍ବେଦ ବିଦ୍ୟାଳୟ ତଦାରଖ୍ କରି ଆସନ୍ତୁ । ସହସ୍ର ସହସ୍ର ମନ୍ଦୁଙ୍କ ପାଇଁ ଜଡ଼ିବୁଟି, ଓଷଧି ମହୌଷଧିର ବ୍ୟବସ୍ଥା କରିବାକୁ ହେଲେ ଓ ସେଥିରେ ପ୍ରତିଷ୍ଠା ଓରଫ୍ ନେକ୍‌ନାମୀ ହେଲେ ପୋଟଳି ବଣିଆଙ୍କ ଠାରୁ ଡାବ ମୁତାବକ୍ ଚେରମୂଳି କିଣିଆଣିଲେ ଚଳିବ ନାହିଁ । ସେ ଚେର ଡାଳ, ମୂଳିମୂଳିକାଗୁଡ଼ିକ ପୂର୍ବରୁ ସଂଗ୍ରହ କରି ରଖିବାକୁ ହେବ; ତାହୀ ହେଲେ ଲୋଡ଼ା ପଡ଼ିଲାବେଳେ କବିରାଜ ଯା ଦୁଆର ତା ଦୁଆର ନ ହୋଇ ନିଜ ବଗିଚାରେ ମଉଜୁଦ୍ ଥିବା ଓ ଘରେ ସାଇତା ହୋଇଥିବା ଗଛଲଟା, ଫଳପୁଷ୍ପ, ଲତାଚେର ଯାହା ଲୋଡ଼ା ହେବ ତାହା ଖଡ଼େଦମ୍ ପାଇବେ ଓ ଏକା ଏକା ପାନକେ ରୋଗମାନଙ୍କୁ ସାତ ସମୁଦ୍ର ଲଙ୍କା ପାରି କରି ଦେବେ । ଏଥିପାଇଁ କଟକ ଆୟୁର୍ବେଦ ବିଦ୍ୟାଳୟର କର୍ତ୍ତୃପକ୍ଷମାନେ ଗୁଡ଼ିଏ ଆୟୁର୍ବେଦୀୟ ଗଛଲତା କୁଣ୍ଡମାନଙ୍କରେ ସଂଗ୍ରହ କରି ମାର୍କାମାରି ରଖୁଅଛନ୍ତି । ଏଥରୁ ଆମ ଓଡ଼ିଶାର ସମ୍ପାଦକମାନେ ଏତିକି ଶିକ୍ଷା କରନ୍ତୁ ଯେ ବଣିଆ ଦୋକାନରୁ ପୋଟଳା ବାନ୍ଧି ଆଣି ମନୁଙ୍କୁ ଭଲ କରିବାକୁ ଆଶା କରିବା ପରି ଆଶା ନ କରି ସେମାନେ ଲେଖକ ନାମଧାରୀ ଜୀବ ଗୁଡ଼ିଏ ଆଣି ଆପଣା ଅସ୍ତାବଲରେ ପୋଷନ୍ତୁ । ହାତୀ ପୋଷିଲା ଭଳି ଲେଖକ ନାମଧାରୀ ଜୀବଙ୍କୁ ପୋଷିବା ବଡ଼ ସହଜ କଥା ନୁହେଁ । ଅବଶ୍ୟ ହାତୀଙ୍କ ଭଳି ଲେଖକମାନେ ବରଡାଳ, କିଆକନ୍ଦା, ପାଳବିଣ୍ଡାରେ ଗୁଡ଼ିଆ ଧାନ ଖାଆନ୍ତି ନାହିଁ, କିନ୍ତୁ ତାଙ୍କୁ ପାଳିବାକୁ ହେଲେ ବହୁତ ଅଳିଅର୍ଦୋଳି ସହିବାକୁ ହେବ ଓ ଜଣକେତେ ମାହୁନ୍ତ ଓ ଗୋଟି କେତେ ଆଙ୍କୁଶା ରଖିବାକୁ ହେବ । ପ୍ରଥମ କଥା ଦେଖନ୍ତୁ ଯେ, ଏଗୁଡ଼ାକ ହେଲେ ମାଆ ସରସ୍ୱତୀଙ୍କ ମାର୍କାମରା ଓ୍ୟାରସ୍ । ଏମାନଙ୍କ ତୁଣ୍ଡ ଓ ମେଣ୍ଢାମୁଣ୍ଡ ସବୁବେଳେ ଯାହାକୁ ଇଚ୍ଛା ତାକୁ ମୁଣ୍ଡିଆ ମାରିବାକୁ ମୁସ୍ତେଇ୍ । ଏ ମାରଣା ଜୀବଗୁଡ଼ିଏ ପାଳିବାକୁ ହେଲେ ଏମାନଙ୍କ ଭୁସାଭୁସିରେ ଲହୁ-ଲୁହାଣ ହେବା ଅନେକ ଜଖମୀମାନଙ୍କୁ କ୍ଷତିପୂରଣ ଦେବା ପାଇଁ ପ୍ରସ୍ତୁତ ହେବାକୁ ହେବ । ଏବାଟେ ସମ୍ପାଦକଙ୍କର ଗୁଡ଼ିଏ ଧନକ୍ଷୟ । ତା ପରେ ସାବତମାଆ (ମାଆ ଲକ୍ଷ୍ମୀ) ଙ୍କର ଏ ନିଉଛୁଣା ସଉତୁଣିଆଁ ପୁଅଗୁଡ଼ାକଙ୍କ ଉପରେ ସବୁବେଳେ ନାକ ଟାଉଁ ଟାଉଁ । ଏଥିପାଇଁ ଏ ଗୁଡ଼ାକ ପେଟବିକଳରେ ଓ ପିଠିବିକଳରେ ତୁଚ୍ଛା, କି ଦିନ କି ରାତି, ବାର ଦ୍ୱାର ଶୁଣ୍ଢୀପିଣ୍ଡା ହେଉ ହେଉ ଯାଙ୍କ ଦିନ ସରେ ନାହିଁ । ଏହାଛଡ଼ା ଏମାନେ ହେଲେ ଓଲିଆ ଗାଈ । ଏମାନଙ୍କୁ ତୁମେ ହଜାରେ ଅୟସରେ ରଖ, ହଜାରେ ପୁରୀ ଲଡୁ, ସନ୍ଦେଶ, ରସଗୋଲ୍ଲା, କାକରା ନାନମାନ, ଖିରି ଖେଚଡ଼ି ଖଞ୍ଜା କରି ଦିଅ, ଏମାନେ ନିଶ୍ଚେ ଯା ତା ବାଡ଼ିକୁ ମୁହଁ ବଢ଼ାଇବେ । ଆହୁରି ମଧ୍ୟ ଏମାନଙ୍କର ଜଣ ଜଣଙ୍କର ଏକ ଏକ କିସମର ଅମଳ ଅଛି ।

କଳ୍ପନା ଦେବୀଙ୍କୁ ଆବାହନ, ସଂସ୍ଥାପନ, ସନ୍ନିଧାନ, ସନ୍ନିରୋଧନ, ସକଳୀକରଣ, ଅବଗୁଣ୍ଠନ, ଅମୃତୀକରଣ ଓ ପରମୀକରଣ ଆଦି କରିବା ପାଇଁ କାହାରି ଜାନ୍ତବ, କାହାରି ପାଶବ, କାହାରି ସ୍ଥାବର, କାହାରି ବା ଜଙ୍ଗମ ଏହିପରି ଗୋଟିଏ ଗୋଟିଏ ଅମଳ ନ ହେଲେ ଏମାନଙ୍କର ଦଣ୍ଡେ ଚଳିବ ନାହିଁ । ଏମାନଙ୍କୁ ପୋଷିବା ଅର୍ଥ ଏମାନଙ୍କ ପାଇଁ ଗୋଟିଏ ଲେଖାଏଁ ସଜୀବ ବା ନିର୍ଜୀବ ପାର୍ଶ୍ୱ ଦେବତା, ବିଦ୍ୟା ଦେବତା, ଅବିଦ୍ୟା ଦେବତା, ଜ୍ଞାନ ଦେବତା, ଅଜ୍ଞାନ ଦେବତାଙ୍କ ଖୋରାକି ପୋଷାକି ଯୋଗାଇବା । ଏତେ ବଦ ନେଇ ଏଥିରୁ ପୁଞ୍ଜାଏ ଖଣ୍ଡେ ନ ପୋଷିଲେ ଆମ ଦେଶର ପତ୍ର, ପତ୍ରକ, ପତ୍ରୀ, ପତ୍ରିକା ଆଦି ଚଳାଇବା ଏଣିକି ଆଉ ସୁଗମ ହେବ ନାହିଁ । ଆଚ୍ଛା ! ଏତେ କଥା କରି, ଏତେ ବଦ ମୁଣ୍ଡାଇ, ଏତେ କ୍ଷତି ଉପରକୁ ନେଇ ତୁମେ ଦରକାର ବେଳେ କର୍ମ ଭଲା ପାଆନ୍ତ; କିନ୍ତୁ ତାହା ପାଇବ ନାହିଁ; ଫରମାସ ବେଳେ ଲୋଡ଼ା ଚିଜ ପାଇବ ନାହିଁ । ଏମାନଙ୍କର ଗୋଟିଏ ପ୍ରଧାନ ରୋଗ ଅଛି । ଜଗତରେ ସିନା ଗୋଟାଏ ବସନ୍ତ ଋତୁ କିନ୍ତୁ ଏମାନଙ୍କର ଜଣ ଜଣକ ପାଇଁ ଗୋଟିଏ ଲେଖାଏଁ ସ୍ୱତନ୍ତ୍ର ବସନ୍ତ ଋତୁ ଅଛି । ସେ ବସନ୍ତ ଋତୁର ଆଭାସ ଖଡ଼ିରତ୍ନଙ୍କ ପାଞ୍ଜିରେ ନାହିଁ କିମ୍ବା ପାଶ୍ଚାତ୍ୟ ନାବ୍ୟ (ନତ୍ୟ) ପଞ୍ଜିକା (Nautical almanac) ରେ ନାହିଁ । ଏ ଜଣ ଜଣକର ଧାତୁ ଅନୁସାରେ ଜଣ ଜଣକର ଚୋରା ବସନ୍ତ ବୁହେ । ଆପଣ ତାଙ୍କୁ ହଜାରେ ପୋଷନ୍ତୁ, ହଜାରେ ପାଳନ୍ତୁ, ହଜାରେ ଚୁଚୁକାଳି ମାରନ୍ତୁ, ହଜାରେ ବାପରେ ! ଧନରେ ! ମନରେ ! ଘନରେ ! ଜୀବନରେ ! କରନ୍ତୁ, ଯାଙ୍କ ଆଗରେ ହଜାରେ ଅମଳ ଆଣି ଥୁଅନ୍ତୁ, ବିନା ଯାଙ୍କର ବସନ୍ତିଆ ଜୁଆର ନ ଉଠିଲେ, ଏ ନ ଚଙ୍କନ୍ତିରେ ବାବା । ନଇଲେ ଅନ୍ୟ ସମୟରେ ଏମାନେ ମୁହଁରେ ପାଲଚୁଣ୍ଡା ଲଗେଇ ବସିଥିବେ । କିରେ ! ଖାଉଚ, ପିଉଚ, ମଉଜ ମଜଲିସ କରୁଛ, ସବୁ କରୁଛ, ଯେଉଁଥିପାଇଁ ପୋଷିଛୁ ସେ କଥା ବେଳକୁ - ଶିକାର ବେଳକୁ, ତୁମକୁ ପୋଖରୀପାଣି ତଲବ ଦଉଛି ! ଏତ ରାଇଜଛଡ଼ା ପାଠ ! "ତଥାପି ପ୍ରାତରୁଥାୟ ନାମେବ ତସ୍ୟ ଗାୟତେ", ତଥାପି ସେମାନଙ୍କୁ ଛାଡ଼ିଲେ ସମ୍ପାଦକଙ୍କର ଗୁଜରାନ୍ ଦଣ୍ଡେ ନ ଚଳେ । ସମ୍ପାଦକମାନେ ଖଣ୍ଡିଏ ଲେଖାଏଁ ପତ୍ର ପ୍ରକାଶ କରିବାକୁ ଯାଇ ଯେଉଁ ହଲାପଟା ହୁଅନ୍ତି, ଏ ଦଶା ଆମ ଦୁଷ୍‌ମନ୍‌କୁ, ଚୋର ଚଣ୍ଡାଳକୁ ନ ହଉ । କେତେକ ସମ୍ପାଦକଙ୍କ ଘରୋଇ ଖବର ଥୋଡ଼ାବହୁତ ଆମକୁ ମାଲୁମ୍ । ସେମାନେ ଯାହାଙ୍କୁ ପୋଷନ୍ତି ତାଙ୍କର ନିତି ସାତ ଭୁଜା, ନଅ ତିଅଣ, ତାଙ୍କ ଘରେ ଝଟକ ବିଜୁଳିବତି ଓ ବିଜୁଳି ପଙ୍ଖା, ତାଙ୍କର ଫରାସଡ଼ାଙ୍ଗା ଓ ଚନ୍ଦ୍ରକଣିଆଁ ଧୋତି, ତାଙ୍କ ଘରଆଡ଼େ ସଚ୍ଚାଜରୀ ବୁଟାଦାର ବନାରସୀ ଶାଢ଼ି ଓ ଫରାଜ୍, କିନ୍ତୁ ଖୋଦ୍ ସମ୍ପାଦକଙ୍କର ନାହିରେ ତେଲ କନା ପଡ଼ିଥାଏ ଓ ବତି ଘଷିବାକୁ ତାଙ୍କୁ ପୁଲାଙ୍ଗ ମାଲପା ଟିକିଏ ସୁଦ୍ଧା ମିଳେ ନାହିଁ । ଏପରି ହାଲତ୍‌ରେ ଆମେ ଲେଖକଗୁଡ଼ାକ ନିତି ସକାଳୁ ଉଠି ଡାକୁଁ 'ମାଆ ସରସ୍ୱତି ! ଜନ୍ମେ

ଜନ୍ମେ ଆମକୁ ତୁମରି ଗର୍ଭରେ ସ୍ଥାନ ମିଳୁ ଓ ଜନ୍ମେ ଜନ୍ମେ ଆମେ ସମ୍ପାଦକମାନଙ୍କ ପୋଷା ଜୀବ ହେଉଁ ।' ଜର୍ମାନୀ, ଆମେରିକା, ଜାପାନ ଓ ବିଲାତ ଆଦି ସଭ୍ୟ ଦେଶର ସମ୍ବାଦପତ୍ରର ସମ୍ପାଦକମାନଙ୍କ ଉଆସ ବା ଅଫିସକୁ ଯାଅ, ସେଠାରେ ଦେଖିବ ଯେ ଲେଖକମାନେ ପୋଷା ଏକ ଜାତୀୟ ଜୀବ ପରି ସମ୍ପାଦକଙ୍କ ଚଉକି ପାଖେ, ଟେବୁଲ ପାଖେ, ରଦି କାଗଜ ଟୋକେଇ ପାଖେ ଜିଭ ଲହ ଲହ କରି ନାକେଇଛନ୍ତି । କିନ୍ତୁ ଆମ ଦେଶରେ ଦେଖ, ଲେଖକଙ୍କ ପାଖରେ ସମ୍ପାଦକମାନେ ଅଧା ପଡୁଛନ୍ତି । ତଥାପି ପତ୍ରିକା ପାଇଁ ମାଲମସଲା ଜୁଟୁ ନାହିଁ ଓ ପତ୍ରିକାମାନ ନିୟମତ ରୂପେ ବାହାରି ପାରୁ ନାହିଁ । କେହି ଖଣ୍ଡି ଭଡ଼ା ଦଉଛନ୍ତି; କିଏ ଡେଣା ବାଡ଼େଇ ଦଣ୍ଡେ ଖଣ୍ଡେ ଫଡ଼ଫଡ଼ ହୋଇ ଭୂଇଁରେ ଲଥିକିନି ପଡ଼ି ଯାଉଛନ୍ତି । କେହି ଲଞ୍ଜାତରା ପରି ଦିନାକେତେ ଦେଖା ଦେଇ ଅନ୍ତର୍ଦ୍ଧାନ ହେଉ ଅଛନ୍ତି, ପୁଣି ୫ ବର୍ଷ ୭ ବର୍ଷରେ ଥରେ ଦେଖା ଦଉଛନ୍ତି, କିଏ ଉଲ୍‌କା ପରି ଗୋଟାଏ ଆଲୋକ ରେଖା ଚମକାଇ ଦେଇ ଅନନ୍ତ ଗର୍ଭରେ ଚିରକାଳ ପାଇଁ ଲୀନ ହୋଇ ଯାଉଛନ୍ତି । ଅଥଚ "ଶେଷାଣ୍ଡିରାୟୁରିଚ୍ଛନ୍ତି କିମାଶ୍ଚର୍ଯ୍ୟମତଃ ପରଂ ।"

ଆଜିକାଲି କେହି କେହି ସମ୍ପାଦକ ପ୍ରବନ୍ଧ-ଲେଖକଙ୍କ ପାଇଁ ପୁରସ୍କାର ଘୋଷଣା କରିବା ଦ୍ୱାରା ସଭ୍ୟ ଦେଶର ଚାଲିଚଳଣ ଆଡ଼କୁ ଆଖିମିଟିକା ମାରୁଅଛନ୍ତି, କିନ୍ତୁ ସେ ଦେଶମାନଙ୍କ ଅବସ୍ଥା ଓଡ଼ିଶାରେ - ଓଡ଼ିଶାରେ କିଆଁ ଭାରତରେ, ପହଞ୍ଚିବାକୁ ଅଛି ଆଉ କେତେ ଯୁଗ । ଯେଉଁ ସମ୍ପାଦକ ଚୁଲି ଉପରେ ତୁଚ୍ଛା ପାଣିହାଣ୍ଡି ବସାଇ ଦେଇ ପତ୍ରିକାରେ ଗ୍ରାହକଙ୍କ ଠାରୁ ଆସିବା ମନିଅର୍ଡ଼ର୍ ବା ଭି. ପି. ପାଇ ଡାକବାଲାକୁ ଟାକି ରହନ୍ତି ସେପରି ସମ୍ପାଦକଙ୍କ ଦେହି ଲେଖକ ଜୀବ ପୋଷା କାମ ପଟିଲା ପରି ଲାଗୁ ନାହିଁ - "ନିଜ ରକ୍ଷଣ ଅସମ୍ଭବ, ସେ କାହୁଁ ପରକୁ ରଖିବ ?" ଏ ପରା ଆମ ଜେଜେବାପାଙ୍କ ଅମଳର ବଚନ । ଏଥିପାଇଁ ସମ୍ପାଦକମାନେ ଆମ୍ଭମାନଙ୍କୁ ପତ୍ରିକା ପାଇଁ ମାଲ ସରବରାହ କରିବାକୁ ଚୁଚୁକାଳି ମାଇଲା ବେଳେ ଆମେ ତାଙ୍କୁ ଚାରା ଢୋକିବା ପୂର୍ବରୁ ସମ୍ପାଦକଙ୍କ ଇହଲୌକିକ, ପାରଲୌକିକ, ସାଂସାରିକ, ସମ୍ବାଦପାତ୍ରିକ, ବୈଷୟିକ, ସେଭିଙ୍ଗ୍ ବ୍ୟାଙ୍କିକ ଓ ଅଫିସରେ ଥିବା ଲୁହାସିନ୍ଦୁକି ଅବସ୍ଥାକୁ ଟିକିଏ ଲେଉଟ ପାଉଟ କରି ଦେଖିନେଉଁ, ପରେ ତାଙ୍କ ଥୋପରେ ଥିବା କେରାଣ୍ଡି ମାଛକୁ ଗଳାଧଃକରଣ କରୁଁ । ଆମେ ବିଶ୍ୱସ୍ତ ଖବର ବୁଝିସାରିଛୁ ଯେ ରସଚକ୍ର ପତ୍ରିକାର 'ପୋତା ଯେତେ ଉଭା ତେତେ ।' ଏଥିପାଇଁ ବିଶ୍ୱାସ ହେଉଛି ଯେ ଏ ବିକାକେତେ ଆମ ଦେଶର ଲୁହାଲହୁଣିଆ ଚିକିଟା ମାଟିରେ କୁଆଁ ଦେବ ଓ ଷଣ୍ଢା ମାରିବ । ଏପରି ହାଲତ୍‌ରେ ସମ୍ପାଦକଙ୍କଠାରୁ ଫରମାସି ଆସିବା କ୍ଷଣି ଖୋଦ୍ ଲେଖକ ଏ ସୁଯୋଗଟା ଛାଡ଼ି ନ ପାରି ଏ ମାୟାଡୋରିରେ ବନ୍ଧା ହେବା ପାଇଁ ସଂକଳ୍ପ କଲେ ଓ ସମ୍ପାଦକଙ୍କ ଟେଣ୍ଡର ଗ୍ରହଣ କଲେ । ନୋଟ - ପାଠକ ପାଠିକା ଅବଧାନିମାନେ ! କ୍ଷମା ଦେବେ ଏ ଲେଖାରେ ଗୁଡ଼ିଏ ଅବ୍ୟାକରଣିକ ଶବ୍ଦଯୋଜନା

ଦେଖି ଆପଣମାନେ ହୁରୁଡ଼ନ୍ତୁ ନାହିଁ । ଆମ ଭାଷାକୁ ସଂପ୍ରସାରଣଶୀଳ କରିବାକୁ ହେବ, ସବୁ ଭାଷାରୁ ଶବ୍ଦ, ଭାବ ଓ ରସ ଛାଙ୍କିନିଗାଡ଼ି ଆଣି ଆମ ଭାଷାର ଅଙ୍ଗବୃଦ୍ଧି କରିବାକୁ ହେବ, ଏଥିପାଇଁ ବୈଦେଶିକ ଓ ଓଡ଼ିଶୀ ଶବ୍ଦରେ ସଂସ୍କୃତ ପ୍ରତ୍ୟୟ ଲଗାଇ ଗୁଡ଼ିଏ ଶବ୍ଦ ଗଢ଼ିବା ଦରକାର । ଏହାସବୁ ଓଡ଼ିଆ ସାହିତ୍ୟରେ ମାର୍କାମରା ମହାପିସ୍‌ମାନେ ଆରମ୍ଭ କଲେଣି; ଆମ ମଳିମୁଣ୍ଡିଆଙ୍କୁ ପଚାରେ କିଏ ? ଆତ୍ର ଦୋଷନାସ୍ତି ଇତି ।

ସଉଦା ହୋଇଗଲା, ବହିନା ଦିଆନିଆ ହେଲା, ଚୁକ୍ତିପତ୍ର ଲେଖାପଢ଼ି, ଦସ୍ତଖତ୍ ଓ ଟିପଗ୍ରସ୍ତ ହୋଇଗଲା । କରଡ଼ି ଜଳୁଥିଲା ବେଳେ ଆଗରେ ଖେଚୁଡ଼ି ଥାଳିଏ ରଖାହେଲେ ମନ ଯେଉଁପରି ହୁଏ, ସମ୍ପାଦକଙ୍କଠାରୁ ବହିନା ପାଇଲା ବେଳେ ମନଟା ଏକା ସେହିତା ହେଲା । ଚାରିତାରି ଦିନ ଓପାସ ଉଜୁଆଁ ହେଲାବେଳେ କାହାର ମନ ଫୁଲାଣିଆ ନ ହୁଏ ? ଚକଚକିଆ ଟଙ୍କା, ଅଧୁଲି, ସୁଉକି, ଦୋଓଣି ଓ ନୂଆ ତାଡ଼ାଫିଟା ନୋଟ୍ ଦେଖି ମନଟା ଭୋକ ସମ୍ଭରଣ କରିପାରିଲା ନାହିଁ । ଆଗେ ଅତି ଜରୁରୀ ଦ୍ୱାଦଶୀ ପାରଣାଟା ହୋଇସାରୁ, ପରେ ସମ୍ପାଦକ କଥା ବୁଝାଯିବ ।

ଏହା ଭାବି ଅଣ୍ଟାରେ ଗାଞ୍ଜିଆ ଗୁଡ଼େଇ ଘରେ ପହଞ୍ଚି ଦେଖିଲାବେଳକୁ ଗୃହାଧିଷ୍ଠାତ୍ରୀ ଦେବତାଙ୍କର ଧୂମାବତୀ ଅବତାର । ଖଙ୍କା ପେଟରେ ରସିକତା କାହୁଁ ଆସିବ ? ସଂସାରରେ ଆବହମାନ କାଳରୁ ନିୟମ ଚଳିଆସୁଅଛି ଯେ ''ଯାବଦ୍ ବିତ୍ତୋପାର୍ଜନ ଶକ୍ତ ସ୍ତାବନ୍ନିଜପରିବାରୋରକ୍ତଃ ।'' ଅର୍ଥାତ୍ 'ତୁ ଦଉ ଥିବୁ, ମୁଁ ଖାଉଥିବି, ତୋ ସୁନ୍ଦର ବଦନ ଦେଖୁଥିବି, ତୁ ନ ଦବୁ କି ମୁଁ ନ ଖାଇବି, ତୋର ଫଲଫଲା ମୁହଁ ନ ଚାହିଁବି ।' ଏ ନିୟମରୁ ତ ଆମ ଘରଟା କାହାର ନୁହେଁ । ଅନେକ ସମୟରେ ଆମ ଗୃହ (ଗୃହିଣୀ ଗୃହମୁଚ୍ୟତେ) ଏ ଅବତାର ଧାରଣ କରି ଆମ 'ଫଲଫଲା ମୁହଁ'କୁ ଚାହାନ୍ତି ନାହିଁ, ପରେ ପୁଣି ଯଥୋଚିତ ଉପଚାର ଖାଇଲେ ଆମ 'ସୁନ୍ଦର ବଦନ'କୁ ନିକୁଚି କରି ଦେଖନ୍ତି । ବର୍ତ୍ତମାନ ମଧ୍ୟ ସେହିତା ହେଲା । ସମ୍ପାଦକଙ୍କ ସ୍ନେହୋପହୃତ ପୁଞ୍ଜିତକ ଦେଖାଇ ତାଙ୍କୁ ପ୍ରକୃତିସ୍ଥ କରିବାକୁ ହେଲା । କିଛିକ୍ଷଣ ବାଦ୍ ତତ୍‌ପ୍ରସାଦରୁ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ଦ୍ୱାରା ଦୁଇ ପ୍ରାଣୀଙ୍କ ଉଦର ଜ୍ୱାଳା ନିବୃତ୍ତ ହେବା ପରେ ପ୍ରିଭି କାଉନ୍‌ସିଲ୍ ବସିଲା - କି ଉପାୟରେ ଏ କାଢ଼ିଆ ପରିଶୋଧ କରାଯିବ ? ଯେବେ ପତ୍ରିକାର ପାଣ୍ଡୁଲିପି ଛାପାଖାନାକୁ ଦିଆଯିବା ପୂର୍ବରୁ ବସନ୍ତିଆ ଜୁଆର ନ ଉଠେ ତେବେ ତ ସର୍ବନାଶ । ସମ୍ପାଦକ ତ କାଲି ସକାଳୁ ଡାମେଜ୍ ଚାଟ୍ (ଖେସେରା ମକଦ୍ଦମା) ଦାଏର କରିଦେବେ । ଭାବୁ ଭାବୁ ଗୃହଗୋଧିକା ତିନିଥର ଟକ୍ ଟକ୍ ଟକ୍ କଲା ଓ ଗୃହଦେବୀଙ୍କର ଗୋଟାଏ ଭଲକଥା ମନେ ପଡ଼ିଗଲା । ବହୁକାଳ ହେଲା ଆମ ଢେଙ୍କେବାପା ଫଉତ ହେଲେଣି । ସେ ଆଡ଼ଦୀର୍ଘେ ଚାରିକୋଣରେ ନାମଡାକ ବୈଦ

ଓ ଗୁଣିଆଁ ଥିଲେ । ତାଙ୍କ ଜଡ଼ିବୁଟି ଯେଉଁଠାରେ କାଟୁ କରୁ ନ ଥିଲା ସେଠାରେ ସେ ମନ୍ତ୍ରଯନ୍ତ୍ର, ଗୁଣି ଗାରିଡ଼ି, ଢାରଣ ମାରଣ ପ୍ରୟୋଗ କରି କାମ ହାସଲ କରୁଥିଲେ । ତାଙ୍କ ବିୟୋଗ କାଳରୁ ବାପା ଆମର ପୈତୃକ ବ୍ୟବସାୟ ଛାଡ଼ି ପେଟ ପୋଷିବା ପାଇଁ ଆଜିକାଲିର ସୁଗମ ପନ୍ଥା (ଚାକିରି) ଧଇଲେ ଓ ଆମ୍ଭମାନଙ୍କୁ ପାଳି 'ଏଡ଼େଠଉଁ ଏଡ଼େ' କଲେ ଓ ଦି'ହାତକୁ ଚାରି ହାତ କଲେ । ଚାରି ହାତ ଚାହୁଁ ଚାହୁଁ ଛଅହାତ ହେଲାବେଳକୁ ବାପା ଇହସଂସାରରୁ ବିଦାୟ ନେଲେ । ତା'ପରେ ଆମ ଉପରେ ସଂସାରର ବୋଝ ଓରଫ ଆଳିଆ ଟୋକେଇ ଲଦାହେଲା । ଜେଜେବାପାଙ୍କ ଅମଳର ଟୁଣିମୁଣି ଆମର ହୁସିଆରା (ହୁସିଆରର ସ୍ତ୍ରୀଲିଙ୍ଗ) ଗୃହିଣୀ ବହୁ ଯତ୍ନରେ ପେଡ଼ିରେ ସାଇତି ଦେଇଥିଲେ । ଆମର ବର୍ତ୍ତମାନ ଭାଳେଣି ପଡ଼ିଲା ବେଳକୁ ସେ ମୁଣିଟି ଆଣି ଆଗରେ ଲଥକିନି ଥୋଇଦେଲେ । କୁଆଡ଼େ ତାଙ୍କୁ ବାପା ଆମର ଅନ୍ତିମ ଶଯ୍ୟାରେ ଶାୟିତ ହେବାବେଳେ ମହାପ୍ରସାଦ ତୋଡ଼ାଣି ତେଣ୍ଟିଲା ବେଳେ କହି ଯାଇଥିଲେ, ଯାକୁ ଧୋଇ ଶୁଖାଇ ଖାଇ ଜାଣିଲେ ଦୁର୍ଦ୍ଦଶା ତୁମକୁ ଭରସି କରି ଛୁଇଁବ ନାହିଁ ? ସେ ମୁଣିକୁ ଫିଟାଇ ଦେଖିଲାବେଳକୁ ସେଥିରେ ଭୂତ, ପ୍ରେତ, ଡାହାଣୀ, ଚିରିଗୁଣୀ, ପିତାଶୁଣୀ, ବ୍ରହ୍ମରାକ୍ଷସ, ପଠାଣ ଭୂତ ଓ ଜୀନ୍ ଲାଗିବା ଠାରୁ ଆରମ୍ଭ କରି ସନ୍ଧି ସନ୍ନିପାତ, ବାତଜର, ଗୋଦଡ଼, କଫ, ଲସମ, ଜର ଶରଦି, ସାପୁଆ, ବାଘୁଆ, ଭାଲୁଆ ବେଙ୍ଗା, ଚୁଚୁନ୍ଦ୍ରି ଆଦି ଶାରୀରିକ, ମାନସିକ, ସାମାଜିକ, ସାହିତ୍ୟିକ, ନୈତିକ, ଦେଶ-ସେବକ ଅନେକ ଜ୍ଞାତନାମା ଓ ଅଜ୍ଞାତନାମା ରୋଗ ପାଇଁ ଜଡ଼ିବୁଟି, ଓଷଦ ମଉଷଦି, ଚେରମୂଳି, ଗୁଣିଗାରିଡ଼ି, ଯନ୍ତ୍ରମନ୍ତ୍ର ଓ ଓଷଦ ଡାବ ଅଛି ଓ ଖଣ୍ଡିଏ ଖେଦା ମଧ୍ୟ ଅଛି । ଆୟର ଉତ୍ତମତର ଅର୍ଦ୍ଧ (ଯାହାଙ୍କୁ ଇଂରାଜୀରେ Better-half କହନ୍ତି) ଙ୍କ ପରାମର୍ଶମତେ ସେହି ଡାବରୁ ଗୁଡ଼ିଏ ବଟୁଆରୁ ଉଦ୍ଧାର କରି ସମ୍ପାଦକଙ୍କୁ ଦେଇ ଆପାତତଃ ତାଙ୍କର ବହିନା ଦେଣାରୁ ମୁକ୍ତି ପାଇବାକୁ ମନରେ ଗୋଟାଏ ଭାରି ହେମତ ହେଲା । ଜେଜେବାପା ରୋଗର ଲକ୍ଷଣଗୁଡ଼ିକ ତାଳପତ୍ର ଖେଦାରେ ଲେଖି ଲେଖି ଯାଇଛନ୍ତି ଓ ତହିଁର ପ୍ରୟୋଗ ମଧ୍ୟ ଟିପି ଅଛନ୍ତି । କେଜାଣି ସମ୍ପାଦକ ଆମକୁ ରସଦ ଯୋଗାଇବ ମାତ୍ରା ଅନୁସାରେ ଆମ ଠାରୁ ତାହା ପାଇ ପ୍ରକାଶ କଲେ ଅବା କେତେ ରୋଗୀ ପାଠକଙ୍କର କାମରେ ଆସିପାରେ, ଏହି ଆଶାରେ ସମ୍ପାଦକଙ୍କୁ ଦଫାଓ୍ୱାରିରେ ତାହା ଯୋଗାଇବାର ସ୍ଥିର କଲୁଁ । ଇତି - ରସଚକ୍ର ସମ୍ପାଦକଙ୍କଠାରେ ଜେଜେବାପାଙ୍କ ଟୁଣିମୁଣି

ସମ୍ପାଦକ - ଓଃ ରାମ୍ ! ସମ୍ପାଦୟିତ୍ରୀ (କାରଣ ଏହାକୁ ଲେଖକ ସମ୍ପାଦି ରଖି ନ ଥିଲେ, ଯେ ସମ୍ପାଦି ସାଇତି ରଖିଥିଲେ ତାଙ୍କ ନାଆଁ ପଡ଼ିବା ଦରକାର) ଙ୍କର କୈଫିୟତ ବା ସମଜାସୀ ଅଧ୍ୟାୟ ।

ଅବଶ୍ୟ ଆମ ଢେଙ୍କେବାପାଙ୍କ ଟିପା ସେ ଯୁଗର ଓଡ଼ିଶୀ ଓଡ଼ିଆରେ ଲେଖା । ଆଜିକାଲି ଆମ ଓଡ଼ିଆ ଲେଖକଙ୍କ ସାହିତ୍ୟିକ ଓଡ଼ିଆ ଓ ସେ କାଳର ପୁରୁଣା ଓଡ଼ିଆ ମଧ୍ୟରେ ଆକାଶ ପାତାଳ ଫରକ୍ । ଖେଦାରେ ଲେଖା ଥିବା ସେ କାଳରେ ଓଡ଼ିଆରେ ପ୍ରବନ୍ଧ ଲେଖିଲେ ପାଠକମାନଙ୍କର ରୁଚିକର ହେବ ନାହିଁ, ସେଥିପାଇଁ ତାକୁ ଆଜିକାଲିର ନବ୍ୟରୁଚିମାର୍ଜିତ, ନବ୍ୟଲେଖକାନୁସୃତ, ନବ୍ୟସମ୍ପାଦକାନୁମୋଦିତ, ନବ୍ୟବ୍ୟାକରଣ-ସମ୍ମତ, ନବ୍ୟସାହିତ୍ୟ ରସାମୃତ, ତଟକା-ଶାକ-ସବଜି-ରଙ୍ଗରେ ବା କୃଷ୍ଣ କେଶବର୍ଣ୍ଣରେ ବା ହରରଙ୍ଗୀ ଲକ୍ଷ୍ମୀନୃସିଂହ (ଲକ୍ଷ୍ମୀ ଗୋରୀ ଓ ନୃସିଂହ ତ୍ରିପଣ୍ଡକଳା) ବା ଶାରଦୀୟ ଚନ୍ଦ୍ରିକା ବିଭବରେ ସଜାଇ ଲେଖିବାକୁ ଦେବ । ଏଥିରେ ମଧ୍ୟ ଆମର ବ୍ୟକ୍ତିଗତ ବାହାଦୁରି ଟିକିଏ ରହିବ । ଢେଙ୍କେବାପା ସାଧାରଣ ଜଗତର ମନୁଷ୍ୟମାନଙ୍କର ସାଧାରଣ ରୋଗମାନଙ୍କ ପାଇଁ ଯେଉଁ ଡାବ ଓ ଅଢ଼େଇଚରଣିଆ ମନ୍ତ୍ରମାନ ରଖିଯାଇଥିଲେ ତାକୁ ଆମେ ଆମ ଦେଶ, କାଳ, ପାତ୍ରକୁ ଚାହିଁ ଆମର ଖାସ୍ ଇଲାକାର ସାହିତ୍ୟସେବୀ (ଓଃ ରାମ୍ ! ସାହିତ୍ୟ ସେବକ) ମାନଙ୍କ ରୋଗ ପାଇଁ ରୋଗୋଚିତ, ଭୋଗୋଚିତ, ରାଗୋଚିତ ଓ ଯୋଗୋରତ କରି ଲେଖିବାକୁ ବାସନା କରିଅଛୁଁ । ଆମ ଏ ଦେଶର ଆବ୍‌ହାଉଆର କରାମତରେ ବାସନା ଦୁର୍ଗନ୍ଧରେ ପରିଣତ ନ ହେଲେ ରକ୍ଷା । କିନ୍ତୁ ଭାଷା ସମ୍ବନ୍ଧେ ପାଠକମାନଙ୍କୁ ଏତିକି ଆଗରୁ ଏତଲା ଦେଇ ରଖିଛୁ ଯେ ଆଜିକାଲି ଓଡ଼ିଆ ଭାଷାରେ ରଚନା ଲେଖିବା ଓ ରଚକ ହେବା ଓ ଖବରକାଗଜରେ ସାହିତ୍ୟିକ ପଦବୀ ପାଇବା ବଡ଼ ସହଜ । ଏଥିରେ କେହି ମାଆ ବାପ ନାହିଁ, କେହି ନିୟନ୍ତା ନାହିଁ, କେହି ପାଟି ଫିଟାଇବାକୁ ନାହିଁ । ଓଡ଼ିଆ ଭାଷାର, ଓଡ଼ିଆ ସାହିତ୍ୟର ଓ ଓଡ଼ିଆ ଜାତିର ନିୟାମକ କେନ୍ଦ୍ର-ସମାଜଟାତ ନାଓ୍ୱାରସୀ ସମ୍ପତ୍ତି । ଆମେ ତାର ହର୍ତ୍ତା କର୍ତ୍ତା ବିହିବିଧାତା, ଆମେ ହାତରେ କୋଡ଼ି ଧରି ତାକୁ ତଥା ଉତ୍କଳ ସାହିତ୍ୟକୁ ଯେଉଁ ପହଣୀ ଆଡ଼କୁ ମୁହାଁଇ ଦେବା ତାହାହିଁ ହେବ ପାଠ । ଆମେ ଯାହା ଗାର ମାରିଯିବା ତାହାହିଁ ହେବ ସାହିତ୍ୟ । ତାକୁ ଯେ ସମାଲୋଚନା କରିବାକୁ ଆସ୍ପର୍ଦ୍ଧା କରିବ, ସେଥିରେ ପାଟି ଫିଟାଇବାକୁ ଯାହାର ଜିଭରେ ହାଡ଼, ଲେଡ଼ିରେ ବାଳ ହେବ ତାର ସାତପୁରୁଷ ଉଝାଳି ଦେବାକୁ ଓ ତା ଘରର ଗୋଇ ଖୋଳିବାକୁ ଓ ତାକୁ ଧୋବା ଭଣ୍ଡାରି ବାସନ୍ଦ କରିବାକୁ ଆମେ ଓ ଆମର ଓ୍ୱାଲି, ଓ୍ୱାରସ, ଉତ୍ତରାଧିକାରୀ ସ୍ଥଳାଭିଷିକ୍ତ, କାଏମ ମୁକାଏମ, ସାହେବ ମୋସାହେବମାନେ ମଜୁଦ୍ ଅଛୁଁ, ଅଛନ୍ତି, ରହିଲୁ, ରହିଲେ, ରହିବୁଁ ଓ ରହିବେ- ଏ ପ୍ରମାଣ । ଏତଦର୍ଥେ ଏ ପ୍ରଥମ ଏତଲା ଦେଲୁଁ କି ଦରକାର ବେଳେ କର୍ମରେ ଆସିବ । ଆଜି ଏହି ଅବତରଣିକା ବା ମୁଖବନ୍ଧରେ ଥାଉ । କ୍ରମଶଃ ବଟୁଆ ଫିଟିବ ଯେ - ପ୍ରଥମ ମୁଣି ଫିଟିବ ବେଙ୍ଗାରୋଗ ପାଇଁ । ଇତି -

ରସଚକ୍ର : ପ୍ରଥମ ଭାଗ, ସପ୍ତମ ସଂଖ୍ୟା, ଭାଦ୍ର, ୧୩୪୧ ସାଲ ।

## ।। ଦୁଇ ।।

ଟୁଣିମୁଣିରେ ଯେଉଁ ଖେଦାଖଣ୍ଡିକ ଥିବାର ଏବେ ପାଠିକାମାନଙ୍କୁ ଏତଲା ଦେଇଥିଲୁଁ ସେକରେ ନାନା ରୋଗର ନିଦାନ ବା ଲକ୍ଷଣ, ଫଳ ଆୟୁର୍ବେଦୀୟ ଔଷଧର ଡାବ, ଛଡ଼ିବୁଟି ଓ ମନ୍ତ୍ର-ଯନ୍ତ୍ରର ପ୍ରୟୋଗ ଟିପା ଅଛି । କିନ୍ତୁ ସେଥିର ଅଧିକାଂଶ ଠାରଠୁରରେ ଟିପାଥିବାରୁ ତାହା ଆଜି ସମ୍ପାଦକୀୟ ସମିତି (Editorial Board) ଙ୍କ ଛାମୁରେ ଉପସ୍ଥାପିତ ହୋଇ ତହିଁର ଟୀକା ଟିପ୍‌ପଣୀ, ବିଶଦବ୍ୟାଖ୍ୟା କରାଯିବା ପରେ, ତାହା କ୍ରମଶଃ ସମ୍ପାଦକଙ୍କୁ ଉପହାର ଦେବାର ବୋର୍ଡ଼ରେ ସ୍ଥିର ହେଲା ସଂବାଦପତ୍ର ଓ ପତ୍ରିକାମାନଙ୍କର ସମ୍ପାଦକମାନେ ପ୍ରେରିତ-ପତ୍ର ପ୍ରକାଶ କରିବା ପୂର୍ବରୁ ତା ଶିରୋନାମାରେ 'ପତ୍ରପ୍ରେରକଙ୍କ ମତାମତ ନିମନ୍ତେ ସମ୍ପାଦକ ଦାୟୀ ନୁହନ୍ତି ବୋଲି ଲେଖିଦେଇ ପିଙ୍ଗଳ-କୋର୍ଡର ଫାଶରୁ ଆପଣା ମୁଣ୍ଡଟି ମାନ ଖସାଇ ନେବାକୁ ଯେଉଁ ପନ୍ଥାଟି ବାହାର କରି ଅଛନ୍ତି ଆମ ଯୁଗ୍ମ-ସମ୍ପାଦକୀୟ ବୋର୍ଡ଼ ସେହି ପଦ୍ଧତି ଅନୁସରଣ କରି ପାଠକ-ପାଠିକା, ଗ୍ରାହକ-ଗ୍ରାହିକା, ସମ୍ପାଦକ-ସମ୍ପାଦିକା, ସମାଲୋଚକ ସମାଲୋଚିକାମାନଙ୍କୁ ଏତଲା ଦେଇ ରଖୁଛି ଯେ, ଢେଢେବାପାଙ୍କ ମୁଣିର ଗର୍ଭସ୍ଥ ବିଷୟମାନଙ୍କ ସତ୍ୟାସତ୍ୟତା ନିମନ୍ତେ ଧୁନ୍ଧୁମାର ଦ୍ୱନ୍ଦ୍ୱ ଦାୟୀ ନୁହନ୍ତି ।

ପ୍ରଥମ ରୋଗ ହେଲା ବେଙ୍ଗା ରୋଗ - ଏ ରୋଗର ନାମ ଆୟୁର୍ବେଦ ବା ଆଧୁନିକ ଡାକ୍ତରି ବହିରେ ମିଳିଲା ନାହିଁ । ଏଥିପାଇଁ ଆମ ବୋର୍ଡ଼ଙ୍କ ବୈବାହିକ ସମ୍ପର୍କରେ ଝିଆରୀ ଜୋଇଁ ଓ ରକ୍ତ ସମ୍ପର୍କରେ ପୁତୁରା (ଦକ୍ଷିଣେ ମାତୁଳା କନ୍ୟା ଓଡ଼ିଶାରେ କେତେ ମହଲରେ ଚଳିଲାଣି) ଜଣେ ଉପାଧିଧାରୀ ଡାକ୍ତରଙ୍କୁ ପଚାରିଲୁଁ, ସେ କହିଲେ ଯେ ଢେଢେବାପାଙ୍କ ଖେଦା ବର୍ଣ୍ଣିତ ରୋଗର ନିଦାନ ଦେଖି ସେ ଠିକ କରିଅଛନ୍ତି ଯେ ଏ ରୋଗର ନାମ ଦିଆଯିବ 'ଫ୍ରଗୋଫୁନିଆ' ବା ଆଧୁନିକ ଓଡ଼ିଆ ସାହିତ୍ୟିକ ଭାଷାରେ 'ବେଙ୍ଗା ମାନିଆ' ।

ବେଙ୍ଗଙ୍କର ଜିଭ ନାହିଁ କି ଦାନ୍ତ ନାହିଁ, କାନ ନାହିଁ କି ନାକ ନାହିଁ । ଏମାନେ କୌଣସି ପଦାର୍ଥର ସ୍ୱାଦ ବା ଗନ୍ଧ ବାରିପାରନ୍ତି ନାହିଁ ଓ ପୋକଜୋକ ଆଦିଙ୍କୁ ଟାକୁକିନି ଗିଳି ଦିଅନ୍ତି । ସେମାନେ ପାହୁଣ୍ଡ ପକାଇ ଚାଲିପାରନ୍ତି ନାହିଁ, ଖେପା ଖେପା ଡେଇଁ ଡେଇଁ ଚାଲନ୍ତି । ଦାନ୍ତୁରୀର ହସିବା କାନ୍ଦିବା ପରି ବେଙ୍ଗଙ୍କର ବସିବା ଠିଆ ହେବା ସମାନ । ତାଙ୍କ ଦିହଯାକ ଆବୁ-ଆବୁଆ । ବେଙ୍ଗଫୁଲା ବା ଫେଣରୁ ପ୍ରଥମେ ଛୁଆ ବାହାରିଲା ବେଳେ ସେମାନଙ୍କର ଲାଙ୍ଗୁଡ଼ ଥାଏ ଓ କ୍ରମଶଃ ବଢ଼ିଲେ ସେମାନଙ୍କ ଲାଞ୍ଜ ଛିଣ୍ଡିଯାଏ । ଏମାନେ ଜଳଚର ଓ ସ୍ଥଳଚର ଓ ଅଧିକାଂଶ ସମୟରେ ଜଳସ୍ଥଳର ସମ୍ମିଶ୍ରଣ କାଦୁଅଚର । ବେଙ୍ଗମାନଙ୍କର ଆକାର, ତ୍ୱକର ମସୃଣତା ଓ ବର୍ଣ୍ଣ ଭେଦରେ ଭିନ୍ନ ଭିନ୍ନ ନାମ ଅଛି । ଯଥା - କଟକଟିଆ ବେଙ୍ଗ, କାଠ ବେଙ୍ଗ, ବ୍ରାହ୍ମଣୀ ବେଙ୍ଗ, କୁଜିବେଙ୍ଗ,

ଡିଆଁ ବେଙ୍ଗ; କିନ୍ତୁ ସମସ୍ତଙ୍କର ଗୋଟାଏ ସାଧାରଣ ଗୁଣ ଅଛି :- କଟକଟିଆ କର୍ଣ୍ଣରସାୟନ ବୋବାଳି ବା ରଡ଼ି । ପାଠରେ ମଧ ଅଛି ଯେ ସାରୁଗଛ ମୂଳେ ବସିଲେ ବେଙ୍ଗ ବିଚାରେ ଯେ ସେ ରାଜ୍ୟର ରଜା ଓ ତା ମୁଣ୍ଡ ଉପରେ ସାରୁପତ୍ର ଛତ୍ରୀ ରୂପେ ଧରା ଯାଇଅଛି । ବର୍ଷାକାଳରେ ଓ ବିଶେଷତଃ ଚତୁର୍ମାସ୍ୟା ରାତିରେ ମଫସଲରେ ଏମାନଙ୍କ ରଡ଼ିରେ କାନ ଅତଡ଼ା ପଡ଼ିଯାଏ ଓ ଜଣାଯାଏ ସତେ ଯେମିତି ଏ ସଂସାରରେ ତାଙ୍କ ରଡ଼ି ଛଡ଼ା ଆଉ କିଛି ରାବ ନାହିଁ । ବହୁକାଳ ବର୍ଷା ନ ହେଲେ ପିଲାମାନେ ଗୋଟିଏ ବେଙ୍ଗକୁ ଧରି ତା ମୁଣ୍ଡରେ ସିନ୍ଦୂର କଜ୍ଜ୍ୱଳ ଦେଇ ତା ବେକରେ ଦଉଡ଼ି ବାନ୍ଧି ତାକୁ ଏଣେ ତେଣେ ଓଟାରୁ ଥାଆନ୍ତି ଓ ନିଜେ ବେଙ୍ଗପରି ଡେଇଁ ବୋଲୁ ଥାଆନ୍ତି ।

ବେଙ୍ଗୁଲୀ ବେଙ୍ଗୁଲା ପାଣି ଦଉଁ
ନଈବଢ଼ି କରି ଭସେଇ ଦଉଁ

ବେଙ୍ଗୁଲୀ ନାନୀଙ୍କର ଇନ୍ଦ୍ରଙ୍କ ସଙ୍ଗେ ଗୋଟାଏ କିଛି ରିସ୍ତା ଥିବାରୁ ବେଙ୍ଗୁଲୀ ନାନୀଙ୍କ ସୁପାରିସରେ ଇନ୍ଦ୍ରରଜା ବର୍ଷା କରି ସଂସାରକୁ ପାଣିରେ ଭରିଦେବେ ବୋଲି ଶିଶୁମାନଙ୍କର ବିଶ୍ୱାସ । ସତକୁ ସତ ଇନ୍ଦ୍ର ବର୍ଷାକରି ରାଇଜଯାକ ପାଣିରେ ଛେଲାଟ କରିଦିଅନ୍ତି । ତେଣିକି ସଂସାର ରହିଲେ କେତେ, ଗଲେ କେତେ ? ବୁଡ଼ିଗଲେ ଭାସିଗଲେ କେତେ ? ବର୍ଷା ଓ ବଢ଼ିରେ ଟୁବାଟୁବ ହେଉଥିଲା ବେଳେ ବେଙ୍ଗୁଲୀ ନାନୀ ବୁଦାମୂଳେ ମୁଣ୍ଡ ଉପରେ ସାରୁପତ୍ରଛତି ଧରାଇ ଆନନ୍ଦରେ କେଁକଟର କରି ଲୋକଙ୍କ କାନ ଅତଡ଼ା ପକାଇ ଇନ୍ଦ୍ର ରଜାକୁ ଧନ୍ୟବାଦ ଦେବାର ଲାଗିଥାନ୍ତି । ପିଲାମାନେ ଗଜୁରିଥିବା ଆମ୍ବ ଟାକୁଆରୁ ଉପର ଟାଣୁଆ ଛଡ଼ାଇ ପକାଇ ସେ ଦିଫାଳିଆ କୋଇଲିର ଅଗକୁ ପାହାନ୍ତିଆଁ କରି ଘୋରି ତାକୁ ପେଏଁକାଳି କରି ବଜାନ୍ତି ଓ ବଜାଇବା ପୂର୍ବରୁ ସେ କୋଇଲି ଅଙ୍ଗୁଠି ନଖର ପିଠି ଦ୍ୱାରା ଟାକରା ମାରି ବୋଲନ୍ତି ହାତୀ ନେ ! ଘୋଡ଼ା ନେ ! ମୋ ପେଏଁକାଳି ବଜାଇ ଦେ । ସାପ ଥେଲେ ବାହାରି ଯାହା, ବେଙ୍ଗ ଥିଲେ କଟକ କଟର ହଉଥା ।'' ବେଙ୍ଗଙ୍କର ଏତେ କରାମତ ଥାଇ ସୁଦ୍ଧା ସେ ଭାରି ଡରକୁଳା - ପୋଖରୀ, ଯୋର, ଖାତଆଦିର କାଦୁଆ ବଗମରାରେ ବେଙ୍ଗଯାକ ବସି ଥାଆନ୍ତି ଓ ଜଳାଶୟର କୂଳ ପାଖରେ ଅଳ୍ପ ପାଣିରେ ଭାସୁଥାଆନ୍ତି । ଜଳାଶୟର ଉକ୍ତ ଅଂଶ ନିକଟକୁ କେହି ମନୁଷ୍ୟ ଆସିବାକ୍ଷଣି ବେଙ୍ଗଗୁଡ଼ାକ ଖପ୍‌ଖାପ୍ ଗଭୀର ପାଣିକୁ ଡେଇଁ ପଡ଼ନ୍ତି ଓ ପାଣିରେ ବୁଡ଼ିଯାଆନ୍ତି ।

ବେଙ୍ଗଙ୍କ ସମ୍ବନ୍ଧେ ଏତେ ବର୍ଣ୍ଣନା ଅବଶ୍ୟ ଢେଢେବାପାଙ୍କ ଖେଦାରେ ଲେଖା ନାହିଁ କିନ୍ତୁ ଖେଦାରେ 'ବେଙ୍ଗା' ରୋଗର ଲକ୍ଷଣ ବେଙ୍ଗସୁଲଭ ଆମର ଅନୁମାନ ହେବାରୁ ତାହା ଏଠାରେ ପ୍ରବୃଦ୍ଧ କରାଗଲା ।

ଏ ରୋଗ ଆକ୍ରମଣ କରିବାର ମୂଳ କାରଣ ପଲ୍ଲବଗ୍ରାହୀତା । ପଲ୍ଲବଗ୍ରାହୀତା ପାଇଁ ପାଠକ-ପାଠିକାମାନେ କୋଷ ଅଣ୍ଡାଳିଲେ ଚଳିବ ନାହିଁ । ଭିନ୍ନ ଭିନ୍ନ ପଡ଼ିଆ ବାଡ଼ିରୁ ଓ ବିଶେଷତଃ ବହୁ ପଡ଼ିଆରୁ ଓଲୁଅ, ବଣସାରୁ, ମାଣସାରୁ, ଭାଲିଆ, ବିଛୁଆତି ଆଦିର ପତ୍ରମାନ ଟିକିଏ ଟିକିଏ ଖାଇଲେ ହୁଏ । ଯେନତେନ ପ୍ରକାରେ କିଛି ପାଠପଢ଼ି ମୌଖିକ ଇଂରାଜୀ ପାଠର ଅକ୍ଷରଗୁଡ଼ିଏ (ଏ.ବି. ଏଲ୍. ଏମ୍.) ଆପଣା ନାମରେ ଛପା ମାରିବା ପାଇଁ ରୋଗର ପୂର୍ବଲକ୍ଷଣାକ୍ରାନ୍ତ ବ୍ୟକ୍ତିମାନେ ଭାରି ଲାଳାୟିତ ହୁଅନ୍ତୁ । ସତକୁ ସତ ସଂସାରରେ ଦେଖିଥାଉଁ ଯେ ମାର୍କାମରା ଚିଜର ଆଦର ବେଶି । ଭିତର ମାଲ ଭଲ କି ନାହିଁ ତାହା ଖରିଦଦାର ପରଖନ୍ତି । ଚିଜକୁ ଆଗ୍ରହରେ ହେଲେ ଆଦର କରନ୍ତି - ଯେଉଁ ଲୋକେ ନିଜ ଦସ୍ତଖତ ବେଳେ ମଧ୍ୟ ଆପଣାର ଉପାଧି ଲେଖନ୍ତି ତାଙ୍କୁ ଜାଣିବ ଶୀଘ୍ର ବେଙ୍ଗା ରୋଗ ଧରିବ । ଯେବେ ସେ ଉପାଧି ମଣ୍ଡିତ କରି ତାଙ୍କ ନାମ କେହି ନ ଲେଖେ ବା ତାଙ୍କୁ ନ ଡାକେ ବା ଡାକ ଲଫାଫା ଉପରେ ଉପାଧି ନ ଲେଖେ ତେବେ ସେ ଲୋକ ତାଙ୍କ ବିଷ ଦୃଷ୍ଟିରେ ପଡ଼େ । ଏତ ଗଲା ବିଶ୍ୱବିଦ୍ୟାଳୟ ବା ସରକାରୀ ଉପାଧି । ଆଉ କେତେ ଲୋକ ଅଛନ୍ତି ଯେ ସେମାନେ ନିଜ ନିଜର ଗୋଟିଏ ଗୋଟିଏ କାଳ୍ପନିକ ଗୁଣ ଯୋଗୁଁ ତାଙ୍କ ନାମ ପୂର୍ବରେ ଗୋଟିଏ ଗୋଟିଏ କଳ୍ପିତ ଉପାଧି ଲଗାଇବାର ଯୋଗାଡ଼ କରନ୍ତି । କୌଣସି ସଭା ସମିତିର ଦ୍ୱାହି ଦେଇ ଜଣ କେତେ ସ୍ତାବକ ବା ଉପକୃତ ବନ୍ଧୁ ବା ଅନୁସରଣିଆଁଙ୍କୁ ଧରିପାରିଲେ କିମ୍ବା କୌଣସି ଗଡ଼ଜାତିଆ ରଜାଙ୍କୁ ଅକ୍ତିଆର କରିପାରିଲେ ଉପାଧିଟାଏ ଆପଣା ନାମରେ ଆଗରେ ବା ପଛରେ ଲାଗିବାର ବାଟ ସୁଗମ ହୋଇଯାଏ । ଥରେ ଦୁଇଥର ଦିହରେ ସେ ଦ୍ୱାରକା ଛପା ମରିଗଲେ ତେଣିକି ଲୋକେ ଅଗତ୍ୟା ବାଧ ହୋଇ ସେହି ଉପାଧି ଲଗାଇବେ ହିଁ ଲଗାଇବେ - ଉଦାହରଣ ଦେଲେ କଥାଟା ନିତାନ୍ତ ବ୍ୟକ୍ତିଗତ ହୋଇପଡ଼ିବ, ଅଥଚ ଉଦାହରଣ ନ ଦେଲେ କଥାଟା ସହଜରେ ଠଉରାଇ ହେବ ନାହିଁ । ଆମ ନିଜ କଥାଟା କହିଲେ କେହି ଆପଣା ଦିହକୁ ନେବେ ନାହିଁ ଅଥଚ କଥାଟା ସାଫ ସୁତୁରା ହୋଇଯିବ । ମୋ ଶିଶୁ କାଳର ସାଙ୍ଗଖେଳାଳି, ପଠନାବସ୍ଥାରେ ସାଙ୍ଗ ପଢୁଆ, ଯୁବକାବସ୍ଥାରେ ସାଙ୍ଗ ବୁଲାଳି, ପ୍ରୌଢ଼ାବସ୍ଥାରେ ସାଙ୍ଗ ଆପୁଆ, ବୃଦ୍ଧାବସ୍ଥାରେ ମୋର ସାଙ୍ଗ ବୈରାଗୀ, କୁଳିଆଭାଇନା ମୋ ଅନ୍ନରେ ପ୍ରତିପାଳିତ ନ ହେଲେହେଁ ଅନେକ ସମୟରେ ମୋ ଅଫିମରେ ପ୍ରତିଲାଳିତ ହୁଅନ୍ତି । ତାଙ୍କର ଭାରି ଆକାଂକ୍ଷା ଯେ ମୋ ନାମ ପୂର୍ବରେ ଓ ପରେ ଲମ୍ବା ଚଉଡ଼ା ଉପାଧି ଗୋଟାକେତେ ଲାଗନ୍ତା ଏବଂ ମୋତେ ଲୋକେ ଖାଲି ଧୁନ୍ଧୁମାର ପାଣି ନ ଡାକି ବା ନ ଲେଖି ତୁରଗ ବ୍ରହ୍ମଚାରୀ ବା ଧୁନ୍ଧୁମାର, (ମୋର ସ୍ତ୍ରୀ ବିଚ୍ଛେଦ ଘଟିଥିବାରୁ ମୁଁ ଆପାତ ବ୍ରହ୍ମଚାରୀ) ରାହାଙ୍ଗମଣି (ମୋ ନିବାସ ରାହାଙ୍ଗ ପ୍ରଗନାରେ), ବର୍ଷା ଡାହୁକ (ବର୍ଷାଦିନେ ଡାହୁକ ସମ୍ଭବତଃ ବେଶି ରାବନ୍ତି), ପ୍ରଭାତୀ କଜଳପାତି (ବଡ଼ିଭୋର

କଜଳପାତି ଚଢ଼େଇମାନେ ସିଟିମାରି ରାବ କରନ୍ତି), ନୀଳାଚଳ ସେବକ (ନୀଳାଚଳ ସେବକ ସମ୍ପ୍ରଦାୟର ମୁଁ ଜଣେ ସଭ୍ୟ), ବକ୍ତୃର୍ଷଭ ବା ବକ୍ତାବର (ମୋର ବକ୍ତୃତା ଶୁଣି ଏକାଧିକ ସ୍ତ୍ରୀ, ପୁଂ, ନପୁଂସକ କାନ୍ଦିଛନ୍ତି ଓ ହସିଅଛନ୍ତି) ଏହିପରି ଗୋଟାଏ କିଛି ଝଟକବିକୁଳିଆ ଉପାଧି ଲଗାନ୍ତେ । ଏଥିପାଇଁ କୁଳିଆନା ପରାମର୍ଶ ଦେଲେ ଯେ ଗ୍ରାମରେ ଗୋଟିଏ ସଭା କରାଯିବ ଓ ସେ ସଭାକୁ ବଛା ବଛା କେତେ ଅନୁସରଣିଆ ପ୍ରବେଶାଧିକାର ପାଇବେ ଓ ସେ ସଭାରେ ମୋତେ ଗୋଟାଏ ଉପାଧି ଦ୍ୱାରା ମଣ୍ଡିତ କରାଯିବ । ଏ ବିଷୟ ସମ୍ବାଦପତ୍ରମାନଙ୍କ ସ୍ଥାନୀୟ ପ୍ରତିନିଧି ଓ ବିଶିଷ୍ଟ ପ୍ରତିନିଧିମାନଙ୍କ ଦ୍ୱାରା ଏକାଧିକ ସମ୍ବାଦପତ୍ରରେ ଉଦ୍‌ଘୋଷିତ ହେବ ଏବଂ ଦିନାକେତେ ଏ ଅଞ୍ଚଳରେ ଯେତେ ସଭା ସମିତି ହେବ ବା ଦଣ ପୋଡ଼ି ସହାୟକ ସଂଘ, ନଅଙ୍କିଆ ବିବର୍ଦ୍ଧିନୀ ସମାଜ, ଉତ୍କଳିଙ୍ଗ ଉନ୍ନତି ବିଧାୟିନୀ ସମାଜ, ଗୋଲାପି ଯୁବଜନଶକ୍ତିନାଦିନୀ କମେଟି, ନଈବଢ଼ି ତ୍ରାଣ ପରିଷଦ୍ ଓ ନାରଙ୍ଗୀ ନାଟକ ସ୍ରଷ୍ଟୃ ସମ୍ପ୍ରଦାୟ, କଂଗ୍ରେସ ବାହୁଙ୍ଗା ସମିତି, ଅସ୍ପୃଶ୍ୟତା କର୍ଷଣୀ ସଭା ଆଦି ଖବରକାଗଜ ଜରିଆରେ ଗଡ଼ା ହୋଇ ଧେଣ୍ଡୁରା ପିଟାଯିବ ସେଥିରେ ମୁଁ ଅବୈତନିକ ସହ ସଭାନେତା, ଅନାହାରୀ ତନ୍ନୀ ବା ବେଠିଆ ଯୁଗ୍ମ ସମ୍ପାଦକ ବା ଚାନ୍ଦା ସଂଗ୍ରାହକ, ନିରମ୍ବୁ କୋଷାଧ୍ୟକ୍ଷ ନିର୍ବାଚିତ ହେବାର ବ୍ୟବସ୍ଥା କରାଯିବ ଓ ସମ୍ବାଦପତ୍ରର ସମ୍ପାଦକମାନଙ୍କ ସଙ୍ଗେ ଆର୍ଥନୀତିକ, ବୈବାହିକ, ଖୌନିକ (ଫାରସୀ ଖୁନ୍ ଶବ୍ଦର ଅର୍ଥ ରକ୍ତ - ଫାରସୀ ଖୁନ୍ ଶବ୍ଦର ସଙ୍ଗେ ସଂସ୍କୃତ ଇକ ପ୍ରତ୍ୟୟ କରି ଏ ପଦ ନିଷ୍ପନ୍ନ ପଦ) ବନ୍ଦୋବସ୍ତ କରିବାକୁ ହେବ ଯେ ପ୍ରତି ସଂଖ୍ୟାରେ ମୋର ସେବାଧିକ ନାମରେ ପ୍ରେରିତ ପତ୍ର, ସ୍ଥାନୀୟ ସମ୍ବାଦ, ରାଜନୀତିକ ପ୍ରବନ୍ଧ, ହାରିଜନିକ ସୂଚନା, ସର୍ବଭକ୍ଷଣ ଅଗ୍ରଲେଖା, ବେଓ୍ୱାରିସ ବା ନାଓ୍ୱାରିସ (ଅର୍ଥାତ୍ ବିଚରା) ବିବାହ ମନ୍ତବ୍ୟ ଆଦି ବାହାରିବ । ଦିନାକେତେ ଏହି ଉପାଧିଟି ମୋ ନାମ ସଙ୍ଗେ ରଜଘଷ ହେଲା ପରେ ଭାରତର ମାର୍କାମରା ନେତା (ଯଥା : ଗାନ୍ଧିଜୀ, ନେହ୍ରୁ, ଆନିବେସାନ୍ତଙ୍କ ଲେଖାରେ ଏହି ଉପାଧି ଯୁକ୍ତ ହୋଇ ମୋ ନାମଟା ବାହାରିବାର ଉଦ୍ୟମ କରାଯିବ । ତାହାହେଲେ ଏ ନାମରେ ମୋର ଗୋଟାଏ ସ୍ଥାୟୀ ଅଧିକାର (କଚିରିଆ ଭାଷାରେ ନିଗୂଢ଼ ସତ୍ତ୍ୱ) ହୋଇଯିବ । ତେଣିକି ଲୋକେ ସେହି ଉପାଧିରେ ମୋତେ ଡାକିବେ ଓ ଲେଖିବେ । ଯଥା : ଗତକାଲି ଅମୁକ ଠାରେ ଅସ୍ପୃଶ୍ୟ ଭୋଜନ ସଂଘର ସାମ୍ବତ୍ସରିକ ଉତ୍ସବ ଉପଲକ୍ଷରେ ଯେଉଁ ଭୋଜି ହୋଇଥିଲା ସେଥିରେ ଉତ୍କଳ-ଶାସନିଆ ମଣି ଧୁନ୍ଧୁମାର ପାଣି ଅମୁକ ସ୍ଥାନର ନାଗରଚୀ ସଙ୍ଗେ ଏକାସନରେ ଏକପତ୍ରରେ ଅନ୍ନ ଓ କାଶୀ, କଟେଲେଟ୍ ଓ ବେସର, ଚପ୍ ଓ ଖେଚୁଡ଼ି ସେବା କଲେ ଏବଂ କ୍ଳବର ଜାତୀୟ ହରିଜନ ବିବରାଙ୍କ ସଙ୍ଗେ ନିଜେ ବିବାହ କରିବାର ପ୍ରସ୍ତାବ ସର୍ବସମ୍ମତିକ୍ରମେ ସେହି ବୈଠକରେ ଯଥାକ୍ରମେ ମତ୍ତ (ମତ ଶବ୍ଦ ଉପରେ ଜୋର୍ ଦେବା ପାଇଁ ଶେଷବର୍ଣ୍ଣର ଦ୍ୱିତ୍ୱ) ଦ୍ୱିତୀୟ ଓ ତୃତୀୟ

ହୋଇଗଲା । କୁଳମଣିଆନା ଉପରୋକ୍ତ ଉପାଧି ବରଣ ପ୍ରସ୍ତାବ ଉପସ୍ଥାପିତ କଲାବେଳେ ଉପାଧି ପ୍ରାପ୍ତି ଲୋଭଟା ମୋଠେ ଘୋଟି ଯାଇଥିଲା, କିନ୍ତୁ କେଜାଣି କାହିଁକି ସେ ପ୍ରସ୍ତାବଟା କାର୍ଯ୍ୟରେ ପରିଣତ ହୋଇପାରି ନ ଥିଲା । ଆଜି କେ.ଜେ.ବାପାଙ୍କ ଖେଦା ଦେଖି ତହିଁରେ ଲେଖାଥିବା ନିଦାନ ସଙ୍ଗେ ମୋ ନିଦାନକୁ ମେଳ କରିବାରେ ଦେଖା ଯାଉଅଛି ଯେ ମୋଠାରେ ଏହି ବେଙ୍ଗା ରୋଗର ପୂର୍ବ ଲକ୍ଷଣ ଦେଖା ଦେଇଥିଲା । ପୂର୍ବ ଲକ୍ଷଣ ଯେତେବେଳେ ପ୍ରକାଶ ହୋଇଛି ସେତେବେଳେ ଯେ ଦିନେ ଏ ରୋଗ ନ ଧରିବ ଏହା କିଏ କହିବ ? ଯେ.ହେଉ, ଏ ଗଲା ବେଙ୍ଗା ରୋଗର ପୂର୍ବଲକ୍ଷଣ । ବର୍ତ୍ତମାନ ରୋଗ ଆକ୍ରମଣ କରିବାରେ ଲକ୍ଷଣମାନ ଦେଖାଯାଉ ।

ଏ ରୋଗୀର ଫୁସ୍‌ଫୁସ୍ ଯନ୍ତ୍ର ଖୁବ୍ ଶକ୍ତିଶାଳୀ ହୁଏ ଓ ତହିଁ ଯୋଗୁଁ ରୋଗୀର ଗଳାର ଆବାଜ୍ ଖୁବ୍ ବେଶି ଦୂରକୁ ଶୁଣାଯାଏ - ଏକାଧିକ ବେଙ୍ଗାରୋଗୀ ଏକ ସ୍ଥାନରେ ମିଳିଲେ ତହିଁ ମଧ୍ୟରୁ ଯାହାର ଗଳାର ସ୍ୱର ବେଶି କର୍କଶ ଓ ଉଚ୍ଚ ସେ ରୋଗୀର ରୋଗ ଗୁରୁତର ବୋଲି ନିର୍ଦ୍ଧାରିତ ହୁଏ । ଗଳାରେ ଗଣ୍ଡୁ ହେବାରୁ ରୋଗୀ ସବୁବେଳେ ଗର୍ଜିବାକୁ ସୁଖପାଏ ଓ ଗୁଡ଼ାଏ ଗର୍ଜିଲେ ତାକୁ ଟିକିଏ ଆରାମ ବୋଧହୁଏ । ଫୁସ୍‌ଫୁସ୍ ଓ ଗଳାର ବିସ୍ତାର ଓ ଶକ୍ତିଶାଳିତା ଯେଉଁ ପରିମାଣରେ ବଢୁଥାଏ ସେହି ପରିମାଣରେ ମସ୍ତିଷ୍କସ୍ଥ ନବନୀତବତ୍ ପଦାର୍ଥ (ଓଡ଼ିଆ ଭାଷାରେ ମଗଜର ଘିଅ) କାଠୁଆ ହେଉଥାଏ, ଏପରିକି ରୋଗୀର ଗଳାର ସ୍ୱର ଶେଷ ଉଚ୍ଚସୀମା (Maximum limit) ରେ ପହଞ୍ଚିଲା ବେଳକୁ ମସ୍ତିଷ୍କର ହିତାହିତ, କାର୍ଯ୍ୟାକାର୍ଯ୍ୟ, ସ୍ପୃଶ୍ୟାସ୍ପୃଶ୍ୟ ନିଷିଦ୍ଧାନିଷିଦ୍ଧ ବିଷୟ ଆଲୋଚନା ଶକ୍ତି ନୀଚସୀମା (Minimum limit) ରେ ପହଞ୍ଚେ । ରୋଗୀ ମନେକରେ ଯେ ସଂସାରର ଅନ୍ୟ ସମସ୍ତେ କେବଳ ଦେଖଣାହାରି ଓ ଶୁଣନାହାରି । ସେହି କେବଳ ସଭ୍ୟ ଜଗତର ରଙ୍ଗଭୂମିରେ ଏକମାତ୍ର ବକ୍ତା ଓ ଅଭିନେତା ଓ ସ୍ୱାମୀ, ଅନ୍ୟଗୁଡ଼ାକ ନିର୍ବୁଦ୍ଧିଆ, ମାନ୍ଧେ ବୁଦ୍ଧିଆ, କୁସଂସ୍କାରାଚ୍ଛନ୍ନ ଅଜାଣିଲାର ଓ ନିପାରିଲାର । ଏ ରୋଗ ଧରିବାର ବୟସ ୧୫ ଠାରୁ ଓ ୪୫ ପର୍ଯ୍ୟନ୍ତ । ୪୫ ବର୍ଷ ଟପିଲା ପରେ ଏ ରୋଗ ପ୍ରାୟ ଧରେ ନାହିଁ; କିନ୍ତୁ ଯାହାଙ୍କୁ ଏଥି ପୂର୍ବରୁ ରୋଗ ଧରିଥାଏ ଓ ବିନା ଚିକିତ୍ସାରେ ଯେଉଁ ରୋଗୀଙ୍କୁ ଛାଡ଼ି ଦିଆ ଯାଇଥାଏ, ୪୫ ବର୍ଷରେ ପଦାର୍ପଣ କଲାବେଳକୁ ସେଥିରୁ ପନ୍ଦରପଣ ରୋଗୀଙ୍କ ରୋଗ ଖସିପଡ଼େ ଓ କଦବା କ୍ୱଚିତ୍ ଯାହାଙ୍କର ଏ ରୋଗ ୪୫ ବର୍ଷ ପରେ ରହିଥାଏ ସେମାନେ ଯୁବକ ରୋଗୀଙ୍କ ପିଛା ଧରିବାକୁ ଓ ଯୁବକରୋଗୀ ଓ ଯୁବତୀରୋଗିଣୀଙ୍କ ସହବାସ କରିବାକୁ ତାଙ୍କୁ ସୁଖ ଓ ସ୍ୱସ୍ତି ଲାଗେ ।

ରୋଗୀଙ୍କର ଗୋଟାଏ ପ୍ରଧାନ ଲକ୍ଷଣ ଏହି ଯେ ସେମାନେ ସବୁବେଳେ ରାବନ୍ତି ଯାହା ପୁରୁଣା ତାହା ଅକାମିକା, ଅଭଲ ଓ ଅରକ୍ଷଣୀୟ; ଯାହା ନୂଆ ତାହା କାମିକା, ଭଲ ଓ ରକ୍ଷଣୀୟ, ବୁଢ଼ାଳୁଚାକ ଏ ଜଗତରେ ନିର୍ମୂଳୀଲତା ପରି । ବୁଢ଼ାଗୁଡ଼ାକ ବେକୁବ୍ ।

ଏ ସଂସାରର ସଭ୍ୟତା କେବଳ ଯୁବକଙ୍କ ଦ୍ୱାରା ବୃଦ୍ଧି ଓ ପ୍ରସାରଣ ଲାଭ କରିବ । ଯୁବକମାନେ ହିଁ ଜଗତର ମେରିଖୁଣ୍ଟ ଓ ଘଣାଗଣ୍ଠି । ଏହି ରୋଗୀଙ୍କ ଧ୍ୟାନମନ୍ତ୍ରଃ -

"ଗୋଟାଏ କିଛି କରିବି ନୂଆ,
ବୁଢ଼ାଙ୍କୁ କରିବ କୁଆବୁଆ
ଖାଦ୍ୟ ବିଷୟରେ ହେବି ମୁଁ କୁଆ,
ପର ଧନକୁ କରିବି ମୁଆଁ,
ଅସ୍ପୃଶ୍ୟଯାକ ହେବେ ଛୁଆଁ,
ପିଲା ପରି ହେବି କୁଆଁ କୁଆଁ,
ଫୋକଟ୍‌ରେ ମାରି ନେବି ନାଆଁ,
ଖବରକାଗଜରେ ପାରିବି ବାହା,
ବିବରାଯାକଙ୍କୁ କରିବି ବିହା,
କଂଗ୍ରେସଙ୍କର ଧରିବି ଢୁଆ,
ଶାସ୍ତ୍ର ମୁହଁରେ ଦେବି ନିଆଁ,
ଗୁରୁଜନଙ୍କୁ ଦେବି ଚିଆଁ,
ହୋଟେଲରେ କରିବି ଖିଆପିଆ,
ବୁଢ଼ାଏ ମାନିବେ ମୋହରି କୁହା,
ନଇଲେ ତାଙ୍କୁ କରିବି ଦାହା,
ସାହିତ୍ୟ ରାଜ୍ୟରେ ଭାଷିବି ଯାହା,
ତାହା ପାଲଟିବ ଲଙ୍ଗଳ ଲୁହା,
ଦାଣ୍ଡରେ ବକ୍ତୃତା ଦେବି ଯାହା,
ଘରେ ତା ଭାଙ୍ଗିବି ତୁହାକୁ ତୁହା,
ଚାଉଳ ଭାଜି କାଢ଼ିବି ଲିଆ,
ମୁହଁରେ କହିବି ତିର୍ଲାକୁ ମାଆ,
ଜଗତ ମୋ ପାଇଁ ବୁଲିବ ଭୁଆଁ,
କାହାକୁ ନ ଦେବି ଧରା ଛୁଆଁ,
ପର ଘରେ ପଶି ପୋଇବି ନିଆଁ,
ହରିଜନଙ୍କର ହେବି ସାହା
ଦାତାର ଘିଅରେ କରିବି ସ୍ୱାହା,
ସଭା ମଞ୍ଚରେ ହେବି ଠିଆ,
ବେଙ୍ଗ ରଡ଼ିରେ ମୋ ଫାଟିବ ହିଆ,
ପୋଥି ବାଇଗଣ ହୋଇବ ଯାହା,
ବାଡ଼ି ବାଇଗଣ ନୋହିବ ତାହା,
ଭଣ୍ଡପଣ ମୋର ହୋଇବ ରାହା,
ଧରମେ ନୁହେଁ ମୋ ଡଙ୍ଗା ବୁହା,
ବଳରେ ଆୟତ୍ତ ନୋହିବ ଯାହା,
କଳେ କଉଶଳେ ସାଧିବି ତାହା,
ଦେଶ ସେବା ବାନା କରିବି ଠିଆ,
ଯାହା କରୁଥିବି ନ ଥିବେ ଗୁହା,
ନିଜେ ହେବି ପଛେ ବାସି ମଦୁଆ,
ନିଶା ନ ଛୁଇଁବେ ସାରା ଦୁନିଆ,
ସବୁବେଳେ ହେବି କଅଁଳକୁହା,
ପେଟରେ ରଖିବି ଖୁର ଦାଢ଼ୁଆ,
ସଭା ସମିତିରେ ହେବି ମୁଖିଆ,
ପବ୍ଲିକଙ୍କ ହେବି ସରଘରିଆ,
ହିସାବ ମାଗିଲେ ହୋଇବି ନିଆଁ,
ମୁଖିଆଙ୍କ ଲାଞ୍ଜେ ହୋଇବି ଠିଆ,
ପର ଧନେ କୋଠା କରିବି ଠିଆ,
ଜାତି ରଥର ମୁକଳା ବେଠିଆ,
ରଥ ଟାଣୁଥିବି ଅଖିଆ-ପିଆ,
ଅଘର ଦ୍ୱାରେ ମୋ ଉଠିବ ଦୁଆ,
ଦ୍ୱାରିକା ଛାପାରେ ମଣ୍ଡିବି କାୟା,
ସମାଜ ସଂସ୍କାରେ ହେବି ମୁଖିଆ,
ଜୀବିକା କରିବି ମୁଁ କାନକୁହା,
ଯେ ମୋ ସଙ୍ଗେ ନ ଦେବ ଢୁଆ,
ତାକୁ କରିଦେବି ଏକଘରିଆ,
ଶୋଧୁଥିବି ତାକୁ ତୁଆକୁ ତୁଆ,

ମୁଁ ଯାହା ବିଲିବିଲେଇବି ତାହା ହିଁ ହେବ ଖାଣ୍ଟି ସାହିତ୍ୟ, ରୋଗୀଙ୍କର ଏହା ହେଲା ଧ୍ୟାନ । ଏଥିର ପ୍ରତିକାର ଓ ଚିକିତ୍ସା, ଜେଜେବାପାଙ୍କ ଖେଦାରେ ଲେଖାଅଛି, ଲଙ୍କାମରିଚ ଧୂଆଁ ଓ ପଛବୁହାକରି ଗୋରୁବାଡ଼ିଆ । ଆମ ଦେଶରେ କାହାଣୀ ଅଛି ଯେ ଜଣେ ବେକାର କରଣ ରାଜାଙ୍କଠାରୁ ସମୁଦ୍ରର ଢେଉ ଗଣିବାର ଅନାହାରୀ ଚାକିରି ପାଇ ସେଥରେ ଆପଣାଙ୍କ ପରିବାର ପୋଷଣର ବ୍ୟବସ୍ଥା କରି ପାରିଥିଲେ । ବେଙ୍ଗା ରୋଗୀକୁ ସେହିପରି କୌଣସି ଗୋଟାଏ ଅବଲମ୍ବନ ଓ ଚାନ୍ଦା ସଂଗ୍ରହ ପାଇଁ ବାଟ ମିଳିଗଲେ, ଅର୍ଥାତ୍ ଦେଶରେ ଦୁର୍ଭିକ୍ଷ, ବଢ଼ି, ଘରପୋଡ଼ି, ଆଇନ ଅମାନ୍ୟ ଅକ୍ରିୟ ପ୍ରତିରୋଧ, ଅସହଯୋଗ, ଅସ୍ପୃଶ୍ୟ ନିବାରଣ, ନିଶା ନିବାରଣ, ବିଲାତୀ-ବହିଷ୍କାର ଏହିପରି କୌଣସି ଗୋଟାଏ ଢୁଆ ଉଠିଲେ ଏ ରୋଗୀମାନେ ସେଥିକି ଡେଇଁପଡ଼ି ତାଙ୍କର ଓ ତାଙ୍କ ବାଲବଚ୍ଚାଙ୍କର ପୋଷଣର ବ୍ୟବସ୍ଥା ବଳେ କରି ନିଅନ୍ତି । ଶାସ୍ତ୍ର ବଚନ ଅଛି 'ପେଟ ପୋଷ, ନାହିଁ ଦୋଷ ।'

ଆମ ହିନ୍ଦୁଶାସ୍ତ୍ରପୁରାଣରେ ପୁରାଣକାରମାନେ ବିଷ୍ଣୁଙ୍କର ମଛକରୂପ ଅବତାର କଳ୍ପି ଅଛନ୍ତି, ସେମାନେ ଯେ କିପରି ବେଙ୍ଗକୁ ଗୋଟିଏ ଅବତଳ କରି ନାହାନ୍ତି, ଏହା ତାଙ୍କ ଗମାରପଣର ଚୂଡ଼ାନ୍ତ ପ୍ରମାଣ । -

ତିନି ଦୁଣ୍ଡରେ ଛେଳି କୁକୁର ହେଲା ଭଳି, ଯେବେ ସମ-ଧର୍ମା, ଓ ସମ-କର୍ମା, ଜଣ କେତେକଙ୍କୁ ସଙ୍ଗୀ ପାଆନ୍ତି, ତେବେ ସଂସାରର ସର୍ବଶ୍ରେଷ୍ଠ ମାନବମଣିଙ୍କ ଆଖିରେ ଧୂଳି ପକାଇ ତାକୁ ନେଇ ବଜାରରେ ବିକିଦେଇ ଆସନ୍ତି । ବେଙ୍ଗଙ୍କର ଜିଭ ନ ଥିବାରୁ ଖାଦ୍ୟା-ଖାଦ୍ୟରେ ସେମାନଙ୍କର ବାରଣ ନାହିଁ । କାନ ନ ଥିବାରୁ ନିନ୍ଦା ସ୍ତୁତିରେ ସେମାନଙ୍କର ବାରଣ ନାହିଁ, ନାକ ନ ଥିବାରୁ ସୁଗନ୍ଧ ଦୁର୍ଗନ୍ଧରେ ତାଙ୍କର ଭ୍ରୂକ୍ଷେପ ନାହିଁ, ବଳରେ, ବୁଦ୍ଧିରେ, କରାମତରେ, ଗୁଣରେ ବେଙ୍ଗଠାରୁ ମହତ୍ତର ଜୀବ ସଂସାରରେ ଥିଲେ ମଧ ବେଙ୍ଗ-ରଡ଼ିରେ ସଂସାରର ଅନ୍ୟ ଶବ୍ଦଯାକ ବୁଡିଗଲା ଭଳି ଏ ରୋଗୀମାନେ ବିଚାରନ୍ତି ଯେ ମୋହରି ଓ ମୋ ବିରାଦରଙ୍କ ରଡ଼ିରେ ଜଗତରେ ଜୁଆର ମାଡ଼ିଯିବ ଓ ପଣ୍ଡିତଲୁଚାକ ମୋ ପାଟି ଶୁଣି କହିବେ ''ଭଦ୍ରଂ କୃତଂ କୃତଂ ମୌନ୍ୟ କୋକିଲୈର୍ଜଳଦାଗମେ, ଦର୍ଦ୍ଦୂରାଃ ଯତ୍ର ବକ୍ତାର ସ୍ତତ୍ର ମୌନଂହି ଶୋଭନଂ ।''

ଏହାପରେ ଖେଦା ଡାକୁଛି ଘୁଷିରିଆ ରୋଗର ନିଦାନ ଓ ଚିକିତ୍ସା । ତାହା ବାରାନ୍ତରେ - ଆଜି ଥାଉ ।

ରସଚକ୍ର, ପ୍ରଥମ ଭାଗ, ୯ମ ସଂଖ୍ୟା, ଆଶ୍ୱିନ / କାର୍ତ୍ତିକ, ୧୩୪୧ ସାଲ ।

## ।। ତିନି ।।

ଢେଢେବାପାଙ୍କ ମୁଣିରେ ଏଥରକ ଘୁଷୁରିଆ ରୋଗର ବିଷୟ ଦିଆ ଯାଇଅଛି - ଘୁଷୁରିର ସଂସ୍କୃତ ନାମ ଘୃଷ୍ଟି, ଶୂକର, ସୂକର, ଦଂଷ୍ଟ୍ରୀ, ଭୂଦାର, ସ୍ଥୂଳନାଶିକ, ଦନ୍ତାୟୁଧ, ବକ୍ରବକ୍ତ୍ର, ଦୀର୍ଘତର, ଆଖନିକ, ଭୂକ୍ଷିତ, ସ୍ତବ୍ଧରୋମା, ମୁଖଲାଙ୍ଗୁଳ ବରାହ । ଘୁଷୁରିମାନେ ଦୁଇ ଜାତିର, ଅର୍ଥାତ୍ ଜାତିଏ ଗାଆଁ ତଳେ ଥାଆନ୍ତି ଓ ଆମ ମଫସଲରେ ମିଉନିସିପାଲିଟି ମେହେନ୍ତରଙ୍କ କାମ ତୁଲାନ୍ତି (ନୋଟ, ବାବା ବୈଦ୍ୟନାଥ ଧାମରେ ମଧ୍ୟ ସହରରେ ପାଇଖାନାମାନେ ଘୁଷୁରିମାନଙ୍କ ଦ୍ୱାରା ସଫା ହେବାର ଦେଖା ଯାଇଅଛି) ଆଉ ଜାତିଏ ଘୁଷୁରି ବଣରେ ଥାଆନ୍ତି ସେମାନଙ୍କ ନାମ ବାହ୍ରା । ଏ ଦୁଇ ଶ୍ରେଣୀର ଜୀବ ପଙ୍କରେ ଲୋଟିବାକୁ ସୁଖ ପାଆନ୍ତି, ଭକ୍ଷ୍ୟ ଅଭକ୍ଷ୍ୟ ସବୁ ଖାଆନ୍ତି ଓ ଥୋମଣିରେ ଭୂଇଁ ତାଡ଼ନ୍ତି । ଏମାନଙ୍କର ବଂଶ ବୃଦ୍ଧି ପ୍ରକ୍ରିୟା ମଧ୍ୟ ପ୍ରବଚନ ସିଦ୍ଧ । କୌଣସି ବ୍ୟକ୍ତିଠାରେ ବା ପରିବାରରେ ପ୍ରଜନନ ଶକ୍ତି ବେଶି ପରିମାଣରେ ଦେଖାଗଲେ ଲୋକେ କହନ୍ତି ତା'ଘରେ ଘୁଷୁରି ଫଉଜ ଭଳି ଛୁଆ ବଢୁଛନ୍ତି । ଘରଛୁଆଣିକୁ ଘରଛୁଆଣି ପରିବାର-ବୃଦ୍ଧି-କାରିଣୀ ସ୍ତ୍ରୀକୁ ଲୋକେ ଘୁଷୁରିବିୟାଣୀ ନାମ ଦିଅନ୍ତି । ବନ୍ୟ ଶୂକରଙ୍କର ଥୋମଣି ଉପରେ ୨ଟି ଦାନ୍ତ ଶିଙ୍ଗପରି ବଙ୍କା ହୋଇ ଉପରକୁ ଉଠିଥାଏ, ତଦ୍ୱାରା ସେମାନେ ଶତ୍ରୁକୁ ଆକ୍ରମଣ କରି ପ୍ରାଣାନ୍ତ କ୍ଷତବିକ୍ଷତ କରନ୍ତି । ଏମାନଙ୍କ ଜୀବନ ଅତି କଠୋର ଅର୍ଥାତ୍ ଏମାନଙ୍କର ସହଜେ ପ୍ରାଣ ଛାଡ଼େ ନାହିଁ । ଆମ ଦେଶରେ ଯେଉଁ ନୀଚଜାତିମାନେ ଘୁଷୁରି ମାଂସ ଖାଆନ୍ତି ସେମାନେ ଘୁଷୁରିକୁ ଅନ୍ୟ ଉପାୟରେ ବଧକରି ନ ପାରି ପାଣିରେ ବୁଡ଼ାଇ କରି, ଅଣନିଃଶ୍ୱାସୀ କରି ସ୍ଥାନ ଅସ୍ଥାନ ଚିପି ମାରି ପକାନ୍ତି । ବଣୁଆ ଘୁଷୁରିକୁ ବାହ୍ରା ବୋଲାଯାଏ ଓ ଏମାନଙ୍କୁ ଶିକାର କରିବା ପାଇଁ ଶିକାରୀର ଖୁବ୍ ସାହସ ଓ ଧୈର୍ଯ୍ୟ ଲୋଡ଼ା । ବିଲାତରେ ଲୋକେ ଘୋଡ଼ାରେ ଚଢ଼ି ଜେଞ୍ଚା ଦ୍ୱାରା ଘୁଷୁରି ଶିକାର କରନ୍ତି । ଘୁଷୁରିର ମାଂସ ହିନ୍ଦୁ ଓ ମୁସଲମାନମାନଙ୍କ ପକ୍ଷରେ ନିଷିଦ୍ଧ, କିନ୍ତୁ ଇଉରୋପୀୟ ଖ୍ରୀଷ୍ଟାନ ଜାତିମାନେ ଓ ନୀଚ ଶ୍ରେଣୀର ହିନ୍ଦୁମାନେ ଏହା ଖାଆନ୍ତି । ବନ୍ୟ ଶୂକର ବା ବରାହର ମାଂସ ଉଚ୍ଚଶ୍ରେଣୀର ହିନ୍ଦୁମାନଙ୍କ ପକ୍ଷରେ ନିଷିଦ୍ଧ ନୁହେଁ । ଆମ ଦେଶରେ ଘୁଷୁରିଆ ନାମରେ ଏକ ନୀଚ ହିନ୍ଦୁ ଜାତି ଘୁଷୁରି ପାଳିବା ବ୍ୟବସାୟ କରନ୍ତି । ଘୁଷୁରି ପାଳିବାର ଖରଚ କମି, ଲାଭ ବେଶି ଘୁଷୁରିଙ୍କ ଲୋମ ଓ ଲାଞ୍ଜର ବାଳ ଭାରି ଟାଆଁସା, ଏଥିପାଇଁ ଏଥିରେ କଡ଼ା ବୁରୁସ୍ ଓ ମାଇପଙ୍କର ଅଳଙ୍କାରର 'ମଜାମୁଠା' କରାଯାଏ । ହିନ୍ଦୁମାନଙ୍କ ପୁରାଣ ଅନୁସାରେ ଭଗବାନ୍ ବରାହ ଅବତାରରେ ଦଂଷ୍ଟାଗ୍ରରେ ନିମଜ୍ଜମାନା ପୃଥିବୀକୁ ଟେକି ଧରିଥିଲେ । ନୈମିଷାରଣ୍ୟ ପାଖରେ ଗୋଟିଏ ତୀର୍ଥ ଅବଧି ଶୂକର କ୍ଷେତ୍ର ନାମରେ ପ୍ରସିଦ୍ଧ, ଏହାର ଆଧୁନିକ ନାମ ସୋରୋଁ । ଗଙ୍ଗା ଆଦି ନଦୀରେ ବେଳେ ବେଳେ ଦେଖାଯାଉଥିବା ଶୁଶୁର (ସଂ-ଶିଶୁମାର) ନାମ ଜୀବ ଦେଖିବାକୁ ଘୁଷୁରି ପରି ଥିବାରୁ ଏ ଜୀବର ଗୋଟିଏ ସଂସ୍କୃତ ଭାଷାର ନାମ ବରାହ ବା ଶୂକରୀ । ଅର୍ଜୁନ ତପସ୍ୟା

କଲାବେଳେ ମହାଦେବ କିରାତ ବେଶରେ ଗୋଟିଏ ବରାହକୁ ଶିକାର କରିବାକୁ ଯାଇ ଅର୍ଜୁନଙ୍କ ବୀରତ୍ୱ ପରୀକ୍ଷା କରିଥିଲେ । ପରିଶେଷରେ ଅର୍ଜୁନଙ୍କ ବୀରତ୍ୱରେ ପରିତୁଷ୍ଟ ହୋଇ ତାଙ୍କୁ ପାଶୁପତ ଅସ୍ତ୍ର ପ୍ରଦାନ କରିଥିଲେ ଓ ସେହି ଅସ୍ତ୍ର ସିଦ୍ଧି ଯୋଗୁଁ ଅର୍ଜୁନ କୁରୁକ୍ଷେତ୍ର ଯୁଦ୍ଧରେ ଜୟୀ ହୋଇଥିଲେ । ଏହି ବରାହକୁ ଅବଲମ୍ବନ କରି କବି ଭାରବି ୧୮ ସର୍ଗରେ ସଂସ୍କୃତର କିରାତାର୍ଜୁନୀୟ ନାମକ ଏକ ମହାକାବ୍ୟ ଲେଖିଯାଇ ଅଛନ୍ତି । ଏତ ସବୁ ପୁରାଣର କଥା । ଘୁଷୁରି ସମ୍ପର୍କରେ ଆମର ମଧ୍ୟ ଗୁଡ଼ିଏ ପ୍ରବଚନ ଅଛି । 'ଘୁଷୁରିକି କାହିଁ ପାଚିଲା କଦଳୀ, ଅନ୍ଧ ହାତେ ରତ୍ନମୁଦି, ବଣି ଚଢ଼େଇକି ସୁବର୍ଣ୍ଣ ପଞ୍ଜୁରି କୋରଡ଼ ସୁମରି କାନ୍ଦି' । 'ମଣିଷ ପ୍ରକୃତି ମଲେ ତୁଟେ, ଘୁଷୁରି ପ୍ରକୃତି ପଙ୍କରେ ଲୋଟେ । 'ସିଂହ ବିୟାଣ ଜଣେ, ଘୁଷୁରି ବିୟାଣ ପଣେ' । 'ଏକୁଟିଆ ବାହାରା ମୁଣ୍ଡି ସାହାରା ।' ଏ ସବୁ ଅବଶ୍ୟ ଜେଜେବାପାଙ୍କ ଖେଦାରେ ନାହିଁ, କିନ୍ତୁ ଆମ୍ଭେମାନେ ହେଲୁ ପ୍ରକାଶକ । ଆମେ ଯେବେ 'ଗଲୁ ଅଇଲୁ, ଯାହା ଦେଖିଥିଲୁ ତାହା କହିଲୁ' କରିବା ତେବେ ଆମର ବାହାଦୁରି ଆଉ ରହିବ କାହିଁରେ ? ଏଥିପାଇଁ ଏ ପ୍ରସଙ୍ଗରେ ଗୁଡ଼ିଏ ଜ୍ଞାତବ୍ୟ ଅଜ୍ଞାତବ୍ୟ, କଥ୍ୟ ଓ ଅକଥ୍ୟ ବିଷୟ ତ ପାଠକମାନଙ୍କୁ ଉପହାର ଦେବା ଦରକାର । ସମ୍ପାଦକ, ସଂଗ୍ରାହକ, ପ୍ରକାଶକ ଆଦିଙ୍କ ଗୁରୁଦାୟିତ୍ୱ ସାଧାରଣ ପାଠକ-ପାଠିକାମାନଙ୍କ ପକ୍ଷରେ ଠିକଣା (realise) କରିବା ସହଜ ନୁହେଁ । ସମ୍ପାଦକମାନଙ୍କ ଗୁରୁ ଦାୟିତ୍ୱ କିପରି ସମାହିତ ହୁଏ, ତାହା ଆମ ଦେଶର ଯେକୌଣସି ସମ୍ବାଦ ପତ୍ରପତ୍ରିକା ବା ପ୍ରକାଶନ (publication) ରୁ ଶିକ୍ଷା କରାଯାଇପାରେ । ସମ୍ପାଦକଙ୍କ ହାତରେ ଯେଉଁ ବହୁବଚନାନ୍ତ 'ଆମ୍ଭେମାନେ' ଶବ୍ଦର ବ୍ୟବହାର କରିବାର ଏକଚେଟିଆ ଅଧିକାର ଅଛି, ତହିଁର କରାମତରେ ଏକବଚନାନ୍ତ 'ଆମ୍ଭେ' ଶବ୍ଦକୁ ମାନ୍ୟାର୍ଥେ ବହୁବଚନ 'ଆମ୍ଭେମାନେ' ରେ ପରିଣତ କରି ସମ୍ପାଦକ ଓ ପ୍ରକାଶକମାନେ ଅନେକ ବିଷମ ସମସ୍ୟା, ବ୍ୟକ୍ତିଗତ ଅଦାଉତି, ଉପରିଲାଭ, ମନର ଓରମାନ ମେଣ୍ଟାଇ ନିଅନ୍ତି । ଓଡ଼ିଆ ଭାଷାଭିଜ୍ଞ ପାଠକ-ପାଠିକାମାନେ ଅବଶ୍ୟ ଜାଣନ୍ତି ଯେ ଆମ ଓଡ଼ିଆ ଭାଷାରେ ସଂସ୍କୃତ ଭଳି ଦ୍ୱିବଚନ ନାହିଁ । ସଂସ୍କୃତରେ ଏକବଚନରେ ଅହଂ ଶବ୍ଦର ଅର୍ଥ - ମୁଁ ବା ଆମ୍ଭେ ଏକ, ଦ୍ୱିବଚନରେ ଆଦାମ୍ ଶବ୍ଦର ଅର୍ଥ - ଆମ୍ଭେ ଦୁହେଁ ଓ ବହୁବଚନରେ ବୟଂ ଶବ୍ଦର ଅର୍ଥ - ଆମ୍ଭେ ବହୁ କିନ୍ତୁ ଓଡ଼ିଆଭାଷାରେ ବହୁବଚନାନ୍ତ 'ଆମ୍ଭେମାନେ' କହିଲେ 'ଆମ୍ଭେଦୁହେଁ' ଓ 'ଆମ୍ଭେ ବହୁ' ବୁଝାଇବ । ଏପରି ସ୍ଥଳରେ ଆମେ ସମ୍ପାଦକୀୟ ଭାଷାରେ ଯେଉଁ 'ଆମ୍ଭେମାନେ' ଶବ୍ଦ ବ୍ୟବହାର କରୁଁ ତହିଁର ଅର୍ଥ ଆମ୍ଭେ ଦୁହେଁ । ଅର୍ଥାତ୍ ଖୋଦ୍ ସମ୍ପାଦକ ଓ ସମ୍ପାଦକଙ୍କ ଘରଆଡ଼େ ବା ସମ୍ପାଦୟିତ୍ରୀ ବା ସମ୍ପାଦକଙ୍କ ପାଖେ ଥାଇ ସମ୍ପାଦକ । ଆମର ଢଗ ଅଛି ନାଆଁ ମାହାନ୍ତି, ଗାଆଁ ମାହାନ୍ତି, ମାହାନ୍ତିଙ୍କ ପାଖେ ଥାଇ ମାହାନ୍ତି, ମାହାନ୍ତିଙ୍କ ବୋକଚା ବୋହି ମାହାନ୍ତି । ମାହାନ୍ତିଙ୍କ ଅପେକ୍ଷା 'ଥାଇ ମାହାନ୍ତି' ଓ 'ବୋହି ମାହାନ୍ତି'ଙ୍କ ଦାଉ ବେଶି । ଅତଏବ 'ଆମ୍ଭେମାନେ' ଶବ୍ଦର ଦ୍ୱାହିରେ ଯେଉଁ ମତ ପ୍ରକାଶିତ ହୁଏ, ପାଠକ

ସାଧାରଣଙ୍କ ଅର୍ଥବୋଧ ପାଇଁ ତହିଁର ଅର୍ଥ ଆମ୍ଭେ ସ୍ୱୟଂ ଓ ଆୟ ପରି ସଂସାରର ଅଧିକାଂଶ ସୂକ୍ଷ୍ମ ବୁଦ୍ଧି ବ୍ୟକ୍ତି ଏବଂ ଏ ଶବ୍ଦର ଖାଣ୍ଟି ନିରାଟ ସତ୍ୟାର୍ଥ ଆମ୍ଭେ ସ୍ୱୟଂ ଓ ସମ୍ପାଦୟିତ୍ରୀ ବା ଆମର ବୋକଚାବୁହା । ଏପରି ସ୍ଥଳରେ ସମ୍ପାଦକୀୟ ମନ୍ତବ୍ୟରେ ଯେଉଁଠାରେ ପାଠକମାନେ 'ଆମେ ବା ଆମ୍ଭେମାନେ' ଶବ୍ଦର ପ୍ରୟୋଗ ଲକ୍ଷ୍ୟ କରିବେ ସେଠାରେ ପ୍ରଥମେ ବହୁବଚନାର୍ଥ ବୁଝିବେ ଓ ଧୀରଚିତ୍ତ ସ୍ଥିର ମତିରେ ତାହା କେବଳ ସମ୍ପାଦକ ଯୁଗଳ ବୋଲି ସ୍ଥିର କରିବେ । ଛାଡ଼ନ୍ତୁ ସେ କଥା । ସେଥିପାଇଁ କହୁଥିଲୁଁ ଯେ ଖେଦାରେ ଯେତିକି ଲେଖା ଅଛି ସେଗୁଡ଼ିକ ଟୀକା ଟିପ୍‌ପଣୀ ସହିତ ପ୍ରକାଶ ନ କଲେ ଆମ୍ଭମାନଙ୍କର ବାହାଦୁରି ରହିବ ନାହିଁ । ବର୍ତ୍ତମାନ ଖେଦାଲିଖିତ ଘୁଷୁରିଆ ରୋଗର ନିଦାନ ଓ ଚିକିତ୍ସା କଥା ଦେଖାଯାଉ - ଏ ରୋଗର ପ୍ରଧାନ ଲକ୍ଷଣ - ଏ ରୋଗୀଯାକ ଉଚ୍ଛିଷ୍ଟ ଓ ବିଷ୍ଠା ଖାଇବାକୁ ସର୍ବଦା ଆଗ୍ରହାନ୍ୱିତ ହୁଅନ୍ତି । ଯେଉଁମାନେ ଭଦ୍ର ସମାଜରେ ଶିକ୍ଷିତ ଓ ବିଦ୍ୱାନ୍ ଓ ସଭ୍ୟ ମୁଖା ପିନ୍ଧି ଥାଆନ୍ତି ସେମାନେ ଏ ବାହ୍ୟେନ୍ଦ୍ରିୟଗ୍ରାହ୍ୟ ଆଗ୍ରହଟାକୁ ସାମାଜିକ ଆଦବ କାଇଦା ଅନୁସାରେ ଚାପିରଖି ଅନ୍ତରେନ୍ଦ୍ରିୟ ପ୍ରୟୋଗ ଦ୍ୱାରା ପରର ବୁଦ୍ଧି ଓ ଲେଖନୀ ନିଃସୃତ ବିଷୟମାନ ଗଳାଧଃକରଣ କରନ୍ତି ଓ ସେଗୁଡ଼ିକ ଉଦ୍ଗିରଣ କରି ଆପଣାର ବୋଲି ବାହାରେ ଦେଖାଇ ହୁଅନ୍ତି । ଆମ ଦେଶର ସାହିତ୍ୟକ୍ଷେତ୍ରରେ ଏ ରୋଗୀଙ୍କ ସଂଖ୍ୟା କମ୍ ନୁହେଁ । ଇଂରାଜୀ, ଫ୍ରେଞ୍ଚ୍ ଓ ବଙ୍ଗୀୟ ସୁଲେଖକମାନଙ୍କର ଲେଖାକୁ ଚୋରାଇ ଆଣି ଆପଣା ନାମରେ ମାର୍କାମାରି ଏମାନେ ଆପଣାର ଉର୍ବର ମସ୍ତିଷ୍କ ପ୍ରସୂତ ବୋଲି ଜନସାଧାରଣରେ ଘୋଷଣା କରନ୍ତି । ଆଜିକାଲି ପତ୍ରିକା, ସମ୍ବାଦପତ୍ର, ପୁସ୍ତକ ଅଧିକାଂଶ ଦେଖିବ କେବଳ ଏହି ଶ୍ରେଣୀର ଘୁଷୁରିଆ ରୋଗୀ ଓ ଘୁଷୁରିଆ ଲେଖାଳିଙ୍କ ସଂଖ୍ୟା ବହୁତ । ଯେଉଁ ଲୋକମାନେ ଉକ୍ତ ପଦାର୍ଥମାନ ଅନ୍ୟମାନଙ୍କର ଉଚ୍ଛିଷ୍ଟ ବା ଉତ୍ସର୍ଗ ବୋଲି ଜାଣି ନ ଥାନ୍ତି ସେମାନେ ଏ ରୋଗୀଙ୍କୁ ମହାପୁରୁଷ ମଧ୍ୟରେ ଗଣନା କରି ତାଙ୍କ ଦେହଯାକ ଦ୍ୱାରକା ଛପାମାରି ତାଙ୍କୁ ଖଟୁଲିରେ ବସାଇ ପୂଜା କରନ୍ତି ଓ ବିମାନ ଏବଂ ଚଉଦୋଳରେ ବସାଇ ସାହିତ୍ୟ-ରାଜ୍ୟର ଓଳକଣା ମେଲଣକୁ ନେଇ ଯାଆନ୍ତି । ମେଲଣକୁ ଯିବାବେଳେ ଏମାନଙ୍କ ଗହଣରେ ଅସଂଖ୍ୟ ଛତ୍ରୀ, ତରାଶ, ବୈରଖ, ଘଣ୍ଟା, ଝାଞ୍ଜ, ଢୋଲ, ମୃଦଙ୍ଗ, ଭେରୀ, ତୂରୀ, କାହାଳୀ, ତିଶାଖା ମଶାଲ, ପଞ୍ଚଲାଇଟ, ଗାସ୍‌ଲାଇଟ ଚାଲିଥାଏ ଓ ମେଲଣରେ ଏମାନଙ୍କର ଷୋଡ଼ଶୋପଚାରରେ ପୂଜା ହୁଏ । କିନ୍ତୁ ଅକସ୍ମାତ୍ ଯେବେ ଏ ଉଚ୍ଛିଷ୍ଟ ଓ ନରକସେବୀମାନଙ୍କର ନରିସୃତ ମାଲମାନଙ୍କୁ ଚିହ୍ନିଥିବା କେହି ବ୍ୟକ୍ତିର ହାବୁଡ଼େ ଏମାନେ ପଡ଼ି ଯାଆନ୍ତି ସେତେବେଳେ ଏମାନଙ୍କ ସ୍ୱରୂପ ଧରାପଡ଼େ । ଏମାନେ ଫଳରେ ଦେଖନ୍ତି ଯେ ଏପରି ଧରାପଡ଼ିବା ଘଟଣା ଶତକଡ଼ା ଏକ ବା ଦୁଇ ସ୍ଥାନରେ ଘଟେ । ବାକି ଅଠାନବେ ଜାଗାରେ ଏମାନେ ମହାପୁରୁଷ ଓ ବଡ଼ଠାକୁରଙ୍କ ଭେକ ଧରି ପୂଜା ପାଆନ୍ତି । ଏଥି ଲାଗି ଏପରି ଧରାପଡ଼ିବାର ବଦି (risk) ଥାଇ ସୁଦ୍ଧା ଏମାନେ ଭାବନ୍ତି ଯେ,

ବର୍ତ୍ତମାନ ଘଡ଼ିକ ତ ସବୁଠାରେ ପାଦପୂଜା ଓ ବାହାବା ପାଇଯିବା'। ପରେ ଲୋକେ ଆମ ସ୍ୱରୂପ ଜାଣିଲା ବେଳକୁ ଆମର ସାହିତ୍ୟ ରାଜ୍ୟରେ ନାମ ଥାଇତ (confirmed) ହୋଇଯାଇଥିବ ଯେ । ବିରାଡ଼ି ଆଖି ବୁଜି ଦୁଧ ପିଇଲା ନ୍ୟାୟ ଏମାନେ ବିଚାରନ୍ତି ଯେ ଆମକୁ ଚିହ୍ନିବା ଭଳି ବିଦ୍ୟାବୁଦ୍ଧି ଲୋକଙ୍କର ନାହିଁ ।

ଘୁଷୁରିଙ୍କର ତୀର୍ଥସ୍ଥାନ ଗାଆଁ ମୁଣ୍ଡରେ ଥିବା ସକାଳେ ଓ ସନ୍ଧ୍ୟାବେଳେ କୌଣସି ଅବଶ୍ୟ କର୍ତ୍ତବ୍ୟ-ନିତ୍ୟ-କର୍ମାର୍ଥ ବ୍ୟବହୃତ ପଡ଼ିଆ । ସେହିପରି ଏମାନଙ୍କ ତୀର୍ଥସ୍ଥାନ ଦେଶମୁଣ୍ଡ ସାହିତ୍ୟର ଆବର୍ଜନା ପଡ଼ିଆ, ସେଠାରେ ଯେତକ ଆବର୍ଜନା, ଉଚ୍ଛିଷ୍ଟ ଓ ମଳ ଜମା ହୋଇଥାଏ ଏମାନେ ସେହିଗୁଡ଼ିକ ଆପଣା ଥୋମଣିରେ ଖୋଳି ଖାଆନ୍ତି ଓ ଏମାନଙ୍କ ହୃଷ୍ଟପୁଷ୍ଟ କଳେବର ଦେଖି ନ ଜାଣିବାର ଲୋକେ ଭାବନ୍ତି ଯେ ତୁଚ୍ଛା ପୁଷ୍ଟିକର ସୁଖାଦ୍ୟ ଖାଇ ଏମାନଙ୍କ ଦେହର ଏ ବଢ଼ତି ହୋଇଅଛି । କିନ୍ତୁ ଜାଣିବା ଲୋକେ ବୁଝନ୍ତି ଯେ ତାଙ୍କ ପୁଷ୍ଟିର ମୌଳିକ ଉପାଦାନ କେଉଁଠାରେ । ସାହିତ୍ୟର ଅଙ୍ଗ ପୁଷ୍ଟି ପାଇଁ ଅପରାପର ଉଚ୍ଚ ସାହିତ୍ୟରୁ ଉଚ୍ଚ ଧରଣର ଲେଖକ ଓ ଭାବୁକମାନଙ୍କ ମସ୍ତିଷ୍କ ନିଃସୃତ ଖାଣ୍ଟି ମାଲମାନ ଲୋଡ଼ା । ଏଥିରେ ମତଦ୍ୱୈଧ ହୋଇ ନ ପାରେ । କିନ୍ତୁ ସେଗୁଡ଼ିକ ହୁବେହୁବ୍ ଆଣି ସେଥିରୁ ସେମାନଙ୍କ ନାମର ଛାପା ଉଠାଇ ଦେଇ ଆପଣା ନାମର ମାର୍କା ମାରି ଦେଇ ଏଗୁଡ଼ିକ ଖୋଦ୍ ଆମର କପୋଳ-ନିର୍ଗତ ବୋଲି ଜଗତ ସମ୍ମୁଖରେ ଦେଖାଇ ହେବା ଘୁଷୁରିଆ ରୋଗର ପ୍ରଧାନ ଲକ୍ଷଣ - ପୂର୍ବରେ ବୋଲା ଯାଇଅଛି ଯେ ଏ ଜୀବଗୁଡ଼ାକଙ୍କର ଜୀବନ ସହଜରେ ଛାଡ଼େ ନାହିଁ । ଏହାକୁ ବିନା କଲେଇ ବଲେଇ କରି ମୂଳପୋଛ କରି, ଅଣନିଃଶ୍ୱାସୀ କରି ନ ମାଇଲେ ଏମାନଙ୍କ ଦାଉରୁ ସାହିତ୍ୟ ବର୍ତ୍ତିବା ଅସମ୍ଭବ । ଅପ୍ରତ୍ୟାଶିତ ଭାବରେ ଅତି କମ୍ ସମୟ ମଧ୍ୟରେ ଘୁଷୁରିମାନଙ୍କର ବଂଶବୃଦ୍ଧି ହେଲା ଭଳି ସାହିତ୍ୟ ଜଗତରେ ଏ ଶ୍ରେଣୀର ଗୋଟାକେତେ ରୋଗୀ ଦେଖାଦେଲେ ଚାହୁଁ ଚାହୁଁ ଏମାନଙ୍କ ସଂଶ୍ରବରେ, ଏମାନଙ୍କ ସହବାସରେ, ଏମାନଙ୍କ ଔରସରେ, ଏମାନଙ୍କ ଦଳ ଘୁଷୁରି ଫଉଜ ଭଳିଆ ମାଡ଼ିଯାଆନ୍ତି । ଆଜିକାଲିର ଯେଉଁ କ୍ଷେତ୍ରକୁ ଯାଅ ଦେଖିବ ସେ କ୍ଷେତ୍ରରେ କେବଳ ଏହି ଘୁଷୁରିଆ ରୋଗାକ୍ରାନ୍ତ ଲେଖକ, କବି, ସମ୍ପାଦକ ତୁଚ୍ଛା ସାଲୁ ବାଲୁ ହେଉ ଅଛନ୍ତି ଓ ଏ ରୋଗୀଙ୍କ ବଂଶବୃଦ୍ଧିର ପନ୍ଥାକୁ ସୁଗମ କରୁ ଅଛନ୍ତି । ଘୁଷୁରିଙ୍କର ଯେତେଗୁଡ଼ିଏ ଅନନ୍ୟ ସାଧାରଣ ଗୁଣ ଅଛି ସବୁଗୁଡ଼ିକ ଲକ୍ଷଣାର୍ଥରେ ଏମାନଙ୍କ ଠାରେ ବିଦ୍ୟମାନ, ଏମାନେ ଥୋମଣିରେ କଠିନ ଭୂଇଁକୁ ତାଡ଼ି ପାରନ୍ତି । ବାରହାଦାଢ଼ (ଦାନ୍ତ) ରେ ଶତ୍ରୁକୁ ଲହୁଲୁହାଣ କରି ଦରମରା କରନ୍ତି, ପଙ୍କରେ ଲୋଟନ୍ତି । ଟାଆଁସା ଲୋମରେ ଓ ଚର୍ମରେ ଦେହଯାକ ଆବୃତ ଥିବାରୁ ଖୁବ୍ ଦାଉଘାତିଆ ଓ ଦାଉଥାନିଆ ମାଡ଼ ନ ହେଲେ ଏମାନେ ସହଜରେ ମରନ୍ତି ନାହିଁ । ଏଥିପାଇଁ ଢେଙ୍କେବାପା ଭାବି ଅଛନ୍ତି ଯେ ଏ ଜାତିର ରୋଗୀଙ୍କୁ ଭଲ କରିବାର ଏକମାତ୍ର ଉପାୟ ଶିରଚ୍ଛେଦନ ଦ୍ୱାରା ଶିରୋରୋଗର ପ୍ରତୀକାରବଦ୍ ପାଣିରେ ବୁଡ଼ାଇ ଅଣନିଃଶ୍ୱାସୀ କରି

ମାରିବା । ଏମାନଙ୍କ ପ୍ରତି ଦୟା ମାୟା ନ ରଖି ଯେଉଁଠାରେ ଏ ରୋଗୀଙ୍କୁ ଦେଖିବ ସେଠାରେ ଏମାନଙ୍କ ଥୋମଣିରେ ଗୁଡ଼ାଏ ଅରଦାଉକଥା ଗୋଗଛବାଡ଼ିଆ ବାଡ଼େଇ ଜନସାଧାରଣରେ ଏମାନଙ୍କୁ ନିର୍ଘାତ ପ୍ରହାର ଦେଇ ଅଣନିଃଶ୍ୱାସୀ କରି ମାରିବା । ଏମାନଙ୍କ ବଂଶ ଲୋପ ନ ହେବା ଯାକେ ଜାତିର ଓ ସାହିତ୍ୟର ମଙ୍ଗଳ ନାହିଁ । ଉଚ୍ଛିଷ୍ଟ କେତେବେଳେ ମହାପ୍ରିୟ ଖାଦ୍ୟରେ ପରିଣତ ହୁଏ ଓ କେତେ କେତେ ବେଳେ ଏହା ଅମେଧ ହୁଏ ? ଉଦାହରଣସ୍ୱରୂପ ଦେଖାଯାଉ ଯେ ଆମ୍ଭେମାନେ ଦେବ ପିତ୍ରାଦି କାର୍ଯ୍ୟରେ ଯେଉଁ କ୍ଷୀର ବା ଦୁଗ୍ଧ ବ୍ୟବହାର କରୁଥାଇଁ, ତାହା ବସ୍ତାର (ବାଛୁରିର) ଉଚ୍ଛିଷ୍ଟ । ଯେଉଁ ମଧୁ ଔଷଧରେ, ପଞ୍ଚଗବ୍ୟରେ ଓ ଦେବପୂଜାରେ ବ୍ୟବହାର କରୁଥାଇଁ ତାହା ମଧୁମକ୍ଷିକାର ଉଚ୍ଛିଷ୍ଟ, ଯେଉଁ ମହାପ୍ରସାଦ ସେବନ କରୁଥାଇଁ ତାହା ଦେବତାଙ୍କର ଉଚ୍ଛିଷ୍ଟ, ଗୁରୁଜନଙ୍କ ଉଚ୍ଛିଷ୍ଟ ଶିଷ୍ୟାଦିଙ୍କ ପକ୍ଷରେ ମହାପ୍ରସାଦ ରୂପେ କଳ୍ପିତ, କିନ୍ତୁ ଗଣଗଣା ମାଛି ଓ ନେଳିମାଛି (blue bottle) ଙ୍କ ଉଚ୍ଛିଷ୍ଟ ରୋଗ-ବର୍ଦ୍ଧକ ଓ ମାରାତ୍ମକ । ଅତଏବ ଉଚ୍ଛିଷ୍ଟ ସର୍ବତ୍ର ଅବହେଳ୍ୟ ନୁହେଁ - କିନ୍ତୁ ଯେଉଁ କ୍ଷେତ୍ରରେ ଯେଉଁ ଆକାରରେ, ଯେଉଁ ପ୍ରଣାଳୀରେ ଆମ ଦେଶର ଘୁଷୁରିଆ ରୋଗୀମାନେ ତାକୁ ଗଳାଧଃକରଣ କରି ଲୋକଙ୍କୁ ଅଇଣ୍ଠା ଚଟେଇ ଜାତୀୟ ସାହିତ୍ୟକୁ ଅଇଣ୍ଠା ପତରରେ ପରିଣତ କରିବାକୁ ବସି ଅଛନ୍ତି ସେଥିରେ ଜାତିର, ଜାତୀୟ ସାହିତ୍ୟର, ଜାତୀୟ ନୈତିକ ଜୀବନର ଅଧଃପାତ ଓ ବିକାର ଅବଶ୍ୟମ୍ଭାବୀ ଅତ୍ର ସନ୍ଦେହୋନାସ୍ତି - ମାଇପେ ଢଗ ବୋଲନ୍ତି 'ପରଲୁଗା ପିନ୍ଧି ଜାତକୁ ଯାଏ, ଲୋକେ ପଚାରିଲେ ମୁଣ୍ଡ ଟୁଙ୍ଗାରୁ ଥାଏ ।'

ଏପରେ ପୋଥି ଡାକିଲା କୁକୁରିଆ ରୋଗ । ଆଜି ଥାଉ ।

ରସଚକ୍ର : ପ୍ରଥମ ଭାଗ / ନବମ ସଂଖ୍ୟା / ମାର୍ଗଶିର/ ୧୩୪୧ ସାଲ ।

## ।। ଚାରି ।।

ଏଥରକ ମୁଣିରେ ଅଛି କୁକ୍କୁରିଆ ରୋଗ - କୁକ୍କୁର ଗୋଟିଏ ସାଧାରଣ ଜୀବ । ଏହାର ସଂସ୍କୃତ ନାମ କୁକ୍କୁର, ଶ୍ୱାନ, ସାରମେୟ, ଶ୍ୱା, ଦୀର୍ଘରତ ।

ଆମ ଢେଙ୍କେବାପାର ଯେପରି ବୈଦ୍ୟକୁଳ ଚନ୍ଦ୍ରମା, ସେହିପରି ମଧ ଭାରି ଦୂରଦର୍ଶୀ ବା ଆଗତ ଭବିଷ୍ୟ ଜାଣିବା ଲୋକ ଥିଲେ । କୁକୁରିଆ ରୋଗର ଲକ୍ଷଣ, ନିଦାନ, ଓଷଦ, ପଥି, ପାଞ୍ଚଣ ଆଦି ଲେଖିବା ଆଗରୁ କୁକୁରଙ୍କ ସମ୍ବନ୍ଧରେ ଅନେକ ଜ୍ଞାତ ଓ ଜ୍ଞେୟ ତଥ୍ୟ ସବୁ ତାଙ୍କ ଖେଦାରେ ଲେଖିଯାଇଅଛନ୍ତି । ଆଗେ ସେଥିରୁ କିଛି ଏଠାରେ ପାଠକ-ପାଠିକାମାନଙ୍କୁ ଉପହାର ଦେଉଅଛି ।

ଏ ସଂସାରରେ ନାନା ଜାତିର କୁକୁର ଅଛନ୍ତି । ମିଉନିସିପାଲିଟିର ଠେଙ୍ଗାଧରା 'କୁକୁର ବାଡ଼ିଆ' ବା ଶ୍ୱାନଘାତର ଠେଙ୍ଗାରେ ଯେଉଁ ବାର କୁକୁରଙ୍କର ନାମ ତିନିପାଞ୍ଜିରୁ

ପୋଛା ହୁଏ ସେହି ବାରବୁଲା କୁକୁରଙ୍କଠାରୁ ଆରମ୍ଭ କରି କୁସୁମ ପେଲବ କର ମର୍ଦ୍ଦିତ ସମ୍ରାଟ୍‌ଙ୍କ ସୁସ୍ନେହ ପାଳିତ, ଦୁଗ୍ଧ ଫେନନିଭ ଶଯ୍ୟାଶାୟିତ ସୁକୁମାରିଆ କୁକୁର ପର୍ଯ୍ୟନ୍ତ, ବିଲରେ ଓ ଦାଣ୍ଡରେ ବିଚରଣକାରୀ କାମୁଡ଼ା କୁକୁରଠାରୁ ଆରମ୍ଭ କରି ଆଲ୍‌ପସ୍ ପର୍ବତର ତୁଷାରାଚ୍ଛନ୍ନ ଗିରି ସଙ୍କଟରେ ମ୍ରିୟମାଣ ପଥିକର ପ୍ରାଣ ବଞ୍ଚାଇବା ସେଣ୍ଟ ବାର୍ଣ୍ଣାଡ୍ କୁକୁର ପର୍ଯ୍ୟନ୍ତ ଦିନରାତି ଖରା ତରାରେ ପଡ଼ି ଜୀବନ ଯାପନ କରିବା କୁକୁରଙ୍କଠାରୁ ଆରମ୍ଭ କରି ସାବୁନ୍, ଏସେନ୍‌ସ, ପାଉଡର, ଲୁଗା ପାଶ୍ଚାତ୍ୟ ସୁକୁମାରିଆ ମେମସାହେବଙ୍କ ପକେଟରେ ସଯତ୍ନ ସାଇତା ଟିକି କୁକୁର ପର୍ଯ୍ୟନ୍ତ ଅଲୋମକ ଦେହଙ୍କ ଠାରୁ ଆରମ୍ଭ କରି ସର୍ବାଙ୍ଗ ଘନଦୀର୍ଘ ଲୋମରେ ଆବୃତଙ୍କ ପର୍ଯ୍ୟନ୍ତ ଗାଁର ବାଡ଼ିଆଡ଼େ ରାତିଯାକ କାମୁଡ଼ା କାମୁଡ଼ି ଲଗାଉଥିବା ଓ ଶଙ୍ଖ ବଜାଉଥିବା କୁକୁରଙ୍କଠାରୁ ଆରମ୍ଭ କରି ସଭ୍ୟ ଦେଶରେ ପହରା ଦେବା, ଚୋର ଜଗିବା, ବାସନା ବାରି ଚୋରଙ୍କ ସନ୍ଧାନ କରୁଥିବା ବୁଦ୍ଧିଜୀବୀ କୁକୁରଙ୍କ ପର୍ଯ୍ୟନ୍ତ ଗ୍ରାମର ବାଡ଼ିଆଡ଼ ଖତଗଦାରେ ବା କୁଟାଗଦା ମୂଳେ ବର୍ଷକୁବର୍ଷ ସ୍ୱବଂଶବୃଦ୍ଧିକାରିଣୀ ଛିଟପକା ଡବଲ ବ୍ରେଷ୍ଟ କୁରତାପିନ୍ଧା ମାଈକୁତୀଠାରୁ ଆରମ୍ଭ କରି କୁକୁର ପାଳନକୁ ଆୟଜନକ ବ୍ୟବସାୟ ରୂପେ ପରିଣତ କରିଥିବା ବଡ଼ ବଡ଼ ବିଶେଷଜ୍ଞ କୁକୁର ପୋଷା ପାଶ୍ଚାତ୍ୟମାନଙ୍କ ଯତ୍ନ ବର୍ଦ୍ଧିତ ଓ ବହୁ ପୁରୁଷର ପିତୃକୁଳ ଓ ମାତୃକୁଳର ଆଭିଜାତ୍ୟ (pedigree) ସଂଗୃହୀତ ହୋଇଥିବା ହଜାର ହଜାର ଟଙ୍କାର କୁତାଙ୍କ ପର୍ଯ୍ୟନ୍ତ, ଗ୍ରାମ ବାହାରେ, ମଶାଣିପଦାରେ ଓ ହେଡ଼ାପଦାରେ ବିଚରଣ କରୁଥିବା କୁକୁରଙ୍କଠାରୁ ଆରମ୍ଭ କରି କୁକୁର ପ୍ରଦର୍ଶନୀ (Dogshow) ରେ ହଜାର ହଜାର ଟଙ୍କା ପୁରସ୍କାର ଓ ତକମା (Medal) ପାଇବା କୁକୁର ପର୍ଯ୍ୟନ୍ତ ଅତି ଟୁକୁଜୀବନିଆ ଟିକିକୁକୁରଙ୍କ ଠାରୁ ବିଶାଳକାୟ ବିଲାତୀ କୁକୁର ଓ ଜଙ୍ଗଲୀ ଉଗ୍ର ସ୍ୱଭାବ ବଳିଆ କୁକୁର ପର୍ଯ୍ୟନ୍ତ - ନାନା ଆକାରର, ନାନା ପ୍ରକୃତିର, ନାନା ଶ୍ରେଣୀର, ନାନା ମୂଲ୍ୟର କୁକୁରଙ୍କ କଥା ଢେଙ୍କେଙ୍କ ଖେଦାରେ ଦେଖାଯାଏ । ଆମ ଦେଶର କୁକୁରମାନେ କେତେକ ସ୍ଥାନରେ ମେହେନ୍ତରାଣୀଙ୍କ ବାଡ଼ିତାଟି ଖଟିବା କାମକୁ ଉଶ୍ୱାସ କରନ୍ତି ଓ ଶୀତ-ପ୍ରଧାନ ଦେଶରେ କୁକୁରମାନେ ଗାଡ଼ିରେ ଯୋଚା ଯାଆନ୍ତି । କୁକୁରମାନେ ବଣୁଆ ହେଲେ କି ଭୟଙ୍କର ଜୀବ ହୁଅନ୍ତି ତାହା ଗଡ଼ଜାତର ପାଟବଳିଆମାନଙ୍କ କଥା ଯେ ଶୁଣିଛନ୍ତି, ସେ ବୁଝିପାରିଥିବେ । ସେହି କୁକୁର ଜାତିକୁ ପୋଷିଲେ, ପାଳିଲେ, ତାଲିମ କଲେ କୁକୁର ମନୁଷ୍ୟର ନାନା ଉପକାରରେ ଲାଗେ । ପ୍ରଭୁର ଅନୁପସ୍ଥିତ ବା ନିଦ୍ରିତାବସ୍ଥାରେ ତା ଘରଦ୍ୱାର, ସମ୍ପତ୍ତିବାଡ଼ିକୁ ଜଗେ, ମନୁଷ୍ୟକୁ ହିଂସ୍ରଜନ୍ତୁ ଓ ଚୋରଙ୍କ ଆକ୍ରମଣରୁ ରକ୍ଷା କରେ, ପ୍ରେରିତ ସମ୍ବାଦ ଓ ଲଣ୍ଠନ, ଛତା ଆଦି ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନେଆଣ କରେ । ଶିକାର କରେ । ନାନା ଆପଦବିପଦରେ ମନୁଷ୍ୟର ସହାୟ ଓ ସଙ୍ଗୀ ହୁଏ । ସର୍କସବାଲାମାନେ କୁକୁରଙ୍କୁ ଏପରି ତାଲିମ କରିଥାଆନ୍ତି ଯେ, ଶିକ୍ଷିତ କୁକୁରମାନେ ମନୁଷ୍ୟର ଅସାଧ ଅନେକ ଖେଳ ଓ ବ୍ୟାୟାମ କୌଶଳ ଦେଖାଇ ସହସ୍ର ସହସ୍ର ଦର୍ଶକଙ୍କୁ ବିସ୍ମିତ କରନ୍ତି । ଯେଉଁମାନେ କୁକୁର

ପାଳିଛନ୍ତି ଓ କୁକୁରଙ୍କ ସଙ୍ଗେ ବହୁସମୟ ମିଶିବାର ସୁବିଧା ପାଇ କୁକୁର ପ୍ରକୃତିକୁ ପର୍ଯ୍ୟବେକ୍ଷଣ କରିଅଛନ୍ତି, ସେମାନେ ଦେଖିପାରି ଅଛନ୍ତି ଯେ ଏହି ସାମାନ୍ୟ ପଶୁଠାରୁ ଆମ୍ଭମାନଙ୍କର ଶିକ୍ଷଣୀୟ ଓ ଅନୁକରଣୀୟ ଅନେକ ଗୁଣ ଅଛି । ଏଥିପାଇଁ ଆମ ବଡ଼ବଡ଼କେ ଶୋଲକ ସୁମୃତି କରି ଯାଇଅଛନ୍ତି ଯେ କୁକୁର ଠାରୁ ମନୁଷ୍ୟ ଏହି ଏହି ଗୁଣମାନ ଶିକ୍ଷା କରିବ-

ବହ୍ୱାଶୀ ସ୍ୱଳ୍ପ ସନ୍ତୁଷ୍ଟଃ ସୁନିଦ୍ରଃ ଶୀଘ୍ରଚେତନଃ

ପ୍ରଭୁ ଭକ୍ତଶ୍ଚ ଶୂରଶ୍ଚ ଷଡ଼େତେ ଚ ଶୁନୋଗୁଣାଃ

ଅର୍ଥାତ୍ କୁକୁର ବେଶି ଖାଏ କିନ୍ତୁ ଅଳ୍ପରେ ସନ୍ତୁଷ୍ଟ ହୁଏ, ବେଶି ଶୁଏ କିନ୍ତୁ ଶୀଘ୍ର ଚେତେ, କୁକୁର ପ୍ରଭୁଭକ୍ତ ଓ ବୀର ଅଟେ । ହିନ୍ଦୁମାନଙ୍କ ମତରେ କୁକୁର ଅସ୍ପୃଶ୍ୟ ଜୀବ, ତଥାପି ଆମ୍ଭମାନଙ୍କ ଶାସ୍ତ୍ର ଓ ପୁରାଣରେ ଅନେକ ସ୍ଥଳରେ କୁକୁର ନାମର ଉଲ୍ଲେଖ ଦେଖାଯାଏ । ପଞ୍ଚୁପାଣ୍ଡବ ଅଭିମନ୍ୟୁଙ୍କ ପୁଅ ପରୀକ୍ଷିତଙ୍କୁ ରାଜ୍ୟଭାର ଦେଇ ମହାପ୍ରସ୍ଥାନ କଲାବେଳେ ଧର୍ମଦେବତା ସେମାନଙ୍କ ନିଷ୍ଠା ପରୀକ୍ଷା କରିବା ପାଇଁ ଏମାନଙ୍କ ପଛରେ କୁକୁର ରୂପ ଧରି ଯାଇଥିବା କଥା ମହାଭାରତରେ ଅଛି । ଆକାଶରେ ମୂଳା ନକ୍ଷତ୍ର ବା ବିଛା ରାଶିର ଅଗରେ ଯେଉଁ ୨ଟି ନକ୍ଷତ୍ର ଦେଖାଯାଆନ୍ତି ସେ ଦୁଇଟି ଯମ ଦେବତାଙ୍କ ଶ୍ୟାମ ଓ ସବଳ ନାମଧାରୀ ଦୁଇଟି କୁକୁର ରୂପେ କଳ୍ପିତ । ପୂନର୍ବସୁ ନକ୍ଷତ୍ରର ୨ଟି ଉଜ୍ଜ୍ୱଳ ତାରା ସରମା ବା ଶ୍ୱା Peocyon ଓ ପ୍ରଶ୍ୱା ବା ଲବ୍ଧକ (Siriusor dog-star) କରୁ, ହିନ୍ଦୁ ଓ ଗ୍ରୀକ୍ ଜ୍ୟୋତିଷୀମାନେ ଯୋଡ଼ିଏ କୁକୁର ବୋଲି କଳ୍ପନା କରିଅଛନ୍ତି । ଶ୍ମଶାନବାସୀ ଶିବଙ୍କ ଅନୁଚର ଭୈରବଙ୍କ ସଙ୍ଗରେ କୁକୁର ଥିବା କଥା ପୁରାଣ ପଣ୍ଡାଏ ବରାବର ବଖାଣନ୍ତି । ହିନ୍ଦୁଙ୍କର ପ୍ରଧାନ ତୀର୍ଥ କାଶୀର ମଣିକର୍ଣ୍ଣିକା ଘାଟର ଶ୍ମଶାନରେ କାଶୀର ଅଧିଷ୍ଠାତା ଓ ରକ୍ଷକ କାଳ ଭୈରବଙ୍କ ଅନୁଚର ରୂପେ ଦୁଇଟି ତ୍ରିପଣ୍ଡ କଳା କୁକୁର ଥିବା ବିଷୟ କାଶୀଯାତ୍ରୀମାନଙ୍କୁ ଏବେବି ପଣ୍ଡାଏ ସ୍ମରଣ କରାଇ ଦିଅନ୍ତି ।

କୁକୁରମାନଙ୍କ ପ୍ରଭୁଭକ୍ତି ବା ନିମକସଚ୍ଚାଇ ଇତିହାସ ପ୍ରସିଦ୍ଧ ଓ ତାହା ମନୁଷ୍ୟ ପକ୍ଷରେ ଆଦର୍ଶ ପ୍ରବଚନ ପାଲଟି ଯାଇଅଛି । କୁକୁରର ଅଳ୍ପନିଦ୍ରତା ମଧ୍ୟ ପ୍ରବଚନ-ସିଦ୍ଧ । ଆମ ଦେଶର ଗୁଡ଼ିଏ ଢଗ ଓ ପ୍ରବଚନରେ ମଧ୍ୟ କୁକୁରଙ୍କ ନାମ ସଂଯୋଜିତ ହୋଇଅଛି 'କୁକୁର-ଧାଉଡ଼ି' ଅର୍ଥ ଅକ୍ଲାନ୍ତ ଭାବରେ ଅବିଶ୍ରାମ ପରିଶ୍ରମ କରିବା । କୁକୁରମାନଙ୍କର ମନୁଷ୍ୟର ମନୋଭାବ ବୁଝିବାର ଶକ୍ତି ଏପରି ଯେ ଅମୁକ କାମ ନ କରିବାକୁ କୁକୁରକୁ 'ଛିଃ !' ବୋଲି କହି ଦେଲେ ସେ କାମ ସେ କରେ ନାହିଁ ବୋଲି ଲୋକେ କଥା ପ୍ରସଙ୍ଗରେ ଉଲୁଖା ଦିଅନ୍ତି । କୁକୁରଙ୍କ ଘ୍ରାଣଶକ୍ତିର ପ୍ରଖରତା ବିଷୟରେ ଯାହା ଯାହା ଦେଖାଯାଏ ଓ ଶୁଣାଯାଏ ତାହା ଅତି ଆଶ୍ଚର୍ଯ୍ୟଜନକ । କୌଣସି ସ୍ଥଳରେ ଚୋର ପଶି ଚୋରି କରିଅଛି, ସେ ସ୍ଥାନରେ ଯେବେ ଚୋର ନିଜର ଜୋତା ବା ବାଡ଼ି ବା ଲୁଗା ବା ରୁମାଲ ଛାଡ଼ିଯାଇ ଥାଏ, ଶିକ୍ଷିତ କୁକୁରକୁ ତାହା ଦେଖାଇ ଶୁଙ୍ଘାଇ ଦେଲେ କୁକୁର ଉକ୍ତ ଲୁଗା ଆଦିକୁ ଶୁଙ୍ଘି ସେ ଲୋକର ଦେହର ବାସନା ବାରି ଠିକଣା କରେ ଓ ଚୋର-ଚୋରି କରି ସାରି ଯେଉଁ

ବାଟ ଦେଇ ଯାଇଛି ସେ ବାଟରେ ଭୂମିରେ ତା ପାଦ ଲାଗିବା ଯୋଗୁଁ ତା ଦେହର ଯେଉଁ ବାସନା ଟିକକ ତା ପାଦ ଚିହ୍ନରେ ରହିଥାଏ, ସେହି ବାସନାକୁ ଠଉରେଇ ଠଉରେଇ କୁକୁର ଚୋର ଯାଇଥିବା ବାଟେ ବାଟେ ଯାଇ ଚୋର ଯେଉଁ ସ୍ଥାନରେ ଥାଏ ସେଠାରେ ପହଞ୍ଚେ ଓ ଚୋରର ଦେହଗନ୍ଧକୁ ଠଉରାଇ ନେଇ ଚୋରକୁ ଧରେ । ଶିକାରୀ କୁକୁରମାନେ ମଧ୍ୟ ଏହି ଘ୍ରାଣଶକ୍ତି ବଳରେ ଶିକାର କରି ଯାଉଥିବା ଜନ୍ତୁର ପିଛାଧରି ପାଞ୍ଚ କୋଶ ତିନିକୋଶ ଯାଇ ସେ ଜୀବକୁ ଧରିବାର ମଧ୍ୟ ଶୁଣାଅଛି - ମୋଟାମୋଟି କହିଲେ - କୁକୁରର ଗୁଣଗୁଡ଼ିଏ ଯେଉଁପରି ଅଛି ଦୋଷଗୁଡ଼ିଏ ମଧ୍ୟ ସେହିପରି ଅଛି -

କୁକୁରଙ୍କର ନରମୟ (ତୁଳନାକର ଗୋମୟ) ପ୍ରତି ଗୋଟିଏ ପ୍ରାକ୍ତନସିଦ୍ଧ ଲାଳସା ଥିବାର ଦେଖାଯାଏ । ଅନେକ ସ୍ଥାନରେ ଏହା ଦେଖା ଯାଇଅଛି ଯେ ତୁମେ କୁକୁରକୁ ଯେତେ ସଉକୀରେ ବଢ଼ାଅ, ଯେତେ ସୁଖାଦ୍ୟ ଦିଅ, ସେ ବିଷ୍ଠା ଦେଖିଲେ ସେଥିରେ ମୁକର ମୁହଁ ମାରିବ; ଦୁଇଟି କୁକୁରଙ୍କର ଅକସ୍ମାତ୍ ଭେଟ ହେଲେ ଦୁହିଁଙ୍କ ମଧ୍ୟରେ କଳି ଲାଗେ - ଏଥିପାଇଁ ଢଗ ଅଛି 'ଯୋଗୀ, ବ୍ରାହ୍ମଣ, କୁକୁର, ଘୋଡ଼ା - ଏ କେବେହେଁ ନୁହନ୍ତି ଯୋଡ଼ା ଯୋଡ଼ା ।' ଅର୍ଥାତ୍ ଏକ ସ୍ଥାନରେ କାହୁଁ ଆଇଲା ଜୀବଙ୍କ ମଧ୍ୟରୁ ଦୁଇଟିଙ୍କର ଭେଟ ହେଲେ ଦୁହିଁଙ୍କର ଖୁଆଖୋଇ ଲାଗିବ । ଏ ଢଗଟା ଅବଶ୍ୟ ଆମ ଦେଶର ଅଇଣ୍ଠା ପତରଚଟା କୁକୁରଙ୍କ ଅନୁଭୂତିରୁ ବାହାରିଛି । କେବଳ କୁକୁର କାହିଁକି, ପର ଅଇଁଠା ଲୋଭୀ ୨ଟି ଜୀବ ଅଇଁଠାପତର ଉପରେ ସରଜମିନରେ ହାବୁଡ଼ା ହାବୁଡ଼ି ହେଲେ ଫଳ ଏହିତା ହୋଇଥାଏ । ଆମର ଗୋଟିଏ ଢଗ ଅଛି "କୁକୁର ଲାଙ୍ଗୁଡ଼କୁ ଯେତେ ସଳଖ କଲେ ସୁଦ୍ଧା, ବାର ବରଷରେ ନ ସଳଖେ" - କୁକୁରଙ୍କ ଲାଙ୍ଗୁଡ଼ର ଅଗ ଉପରକୁ ବଙ୍କାଇ ହୋଇ ଉଠିଥାଏ, ତାକୁ ସାଉଁଳା ସାଉଁଳି କରି ସରଳରେଖା କରିବାକୁ ଯେତେ ଚେଷ୍ଟା କଲେ ସୁଦ୍ଧା ତାହା ସଳଖ ହୁଏ ନାହିଁ । କୁକୁରଙ୍କର ଗୋଟିଏ ବିଶେଷତ୍ୱ ଏହି କି ସେମାନଙ୍କର ପାଶବିକ ପ୍ରବୃତ୍ତି ବହୁ ବିଳମ୍ବରେ ସମାହିତ ହୁଏ । ଏଥିପାଇଁ କୁକୁରର ଗୋଟିଏ ସଂସ୍କୃତ ନାମ- ଦୀର୍ଘରତ ବା ଦୀର୍ଘସୁରତ ।

କୁକୁରଙ୍କର ଗୋଟିଏ ମାରାତ୍ମକ ଦୁର୍ଗୁଣ ଅଛି । ବାୟା କୁକୁର ଦାନ୍ତରେ ଉତ୍କଟ ମାରାତ୍ମକ ବିଷ ଅଛି । ବାୟା କୁକୁର କୌଣସି ଜୀବକୁ କାମୁଡ଼ିଲେ, ଏମନ୍ତ କି ବାୟା କୁକୁର ମୁହଁରୁ ଲାଳ ଅନ୍ୟ ଜୀବର କୌଣସି ଅଙ୍ଗରେ ଲାଗିଗଲେ ସେ ଜୀବ ଦେହରେ ଉକ୍ତ ବିଷ ପ୍ରବେଶ କରେ । ସେ ବିଷର ଲକ୍ଷଣ ଯେ - ତାହା କାମୁଡ଼ିଲା ମାତ୍ରେ କାର୍ଯ୍ୟକାରୀ ନ ହୋଇ କିଛିଦିନ ପରେ କାମ ଦେଖାଏ । ବାୟା କୁକୁର କାମୁଡ଼ା ବିଷଜନିତ ରୋଗକୁ ଜଳାତଙ୍କ (Hydrophobin) ରୋଗ କହନ୍ତି । ଏଥିରେ ରୋଗୀ ପାଗଳ ହୁଏ, ପାଗଳ ପରି ପ୍ରଳାପ କରେ, କୁକୁର ପରି ଭୁକେ ଓ ଅନ୍ୟ ଜୀବକୁ କାମୁଡ଼ିବାକୁ ଧାଏଁ । ଉକ୍ତ ରୋଗୀ ପାଣି ପିଇବା କଥା ଦୂରେ ଥାଉ, ପାଣି ଛୁଇଁବା କଥା ଦୂରେ ଥାଉ, ପାଣିକି ଦେଖିବା ମାତ୍ରେ ଛାନିଆ ହୋଇ କୁକୁର ପରି ଭୁକେ ଓ ପାଣି ଛାଡ଼ି ପଳାଏ । ଶେଷରେ

ବହୁକାଳ ପାଣି ନ ପିଇ ଏ ରୋଗୀ ମରିଯାଏ । (ବର୍ତ୍ତମାନ ପାଶ୍ଚାତ୍ୟ ପଣ୍ଡିତମାନେ ଜଳାତଙ୍କ ରୋଗର ଗୋଟିଏ ଚିକିତ୍ସା ପଦ୍ଧତି (Antirabic treatment) ବାହାର କରିଅଛନ୍ତି । କୁକୁର କାମୁଡ଼ିବା ମାତ୍ରେ ଉକ୍ତ ଚିକିତ୍ସା କଲେ ଦୁଷ୍ଟ ବ୍ୟକ୍ତିକୁ ବା ଜୀବକୁ ଜଳାତଙ୍କ ରୋଗ ଆକ୍ରମଣ କରିବାର ଆଶଙ୍କା ରହେ ନାହିଁ ।

ଓଃ ! ଆମ ଶ୍ରେଣୀର ଲେଖକଙ୍କର ଏ ଗୋଟାଏ ଅମାର୍ଜନୀୟ ଦୋଷ । ଢିଙ୍କିଶାଳରେ ବସୁ ବସୁ ଆମେ ଢେଙ୍କାନାଳର ପ୍ରସଙ୍ଗ ଆଣି ପକାଉଁ । ଆମର ବର୍ତ୍ତମାନ ପ୍ରସଙ୍ଗ ହେଲା ଢେଙ୍କେବାପାଙ୍କ ମୁଣିରେ ଥିବା କୁକୁରିଆ ରୋଗର ଚିକିତ୍ସା ମାତ୍ରା ବଖାଣିବା । ମାତ୍ର ଝାଡୁ ଝାଡୁ ସେଥିରେ ତ କୁକୁରଙ୍କ ଚଉବନ ପୁରୁଷ ଉଝାଳିବା କଥା ମିଳିଗଲା, ଏପରି ଅବସ୍ଥାରେ ସେହି ରତ୍ନଗୁଡ଼ାକ ଛାଡ଼ିଦେବୁଁ କିପରି ? ଏହା ଅବାନ୍ତର ହେଲେ ବି ପାଠକ-ପାଠିକାମାନେ ମେହେରବାନୀ ପ୍ରଦର୍ଶନପୂର୍ବକ ଯେତେବେଳେ ରସଚକ୍ରର ଦିଆ ବା ଅଦିଆ ଗ୍ରାହକ ଗ୍ରାହିକା ହୋଇ ସମ୍ପାଦକ ଓ ତାଙ୍କ ସାତ ପୁରୁଷଙ୍କୁ ଆପ୍ୟାୟିତ କରିଅଛନ୍ତି, ଏପରି ଅବସ୍ଥାରେ ସମ୍ପାଦକଙ୍କ ପୋଷା ଏହି ପ୍ରସଙ୍ଗର ଜୀବ ଜାତୀୟ ଜନ୍ତୁଙ୍କୁ ଟିକିଏ ଅନୁଗ୍ରହ ନ ଦେଖାଇଲେ ଚଳିବ କାହୁଁ ?

ବର୍ତ୍ତମାନ ପ୍ରସଙ୍ଗକୁ ଫେରିଆସିବା ଦରକାର - 'କୁକୁରିଆ ରୋଗ' ଶବ୍ଦର ନାନା ଅର୍ଥ ହୋଇପାରେ ଆମ ଓଡ଼ିଶୀ ପହରାଜ ଗୋସେଇଁ 'ମରିବା ବେଳକୁ ପରିବା କାଟିବା ନ୍ୟାୟ' ଯେଉଁ ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ବନାଉଛନ୍ତି ସେଥିରେ 'କୁକୁରିଆ ରୋଗ'ର ନାମ ହିଁ ନଦାରଦ୍ ଓ ସେଥିରେ କୁକୁରିଆ ଶବ୍ଦର ଯାହା ଅର୍ଥମାନ ଦେଖିଲେଇଁ ତହିଁରେ ମନଃପୂତ ହେଲା ନାହିଁ । ନୋଟ : ଅତଏବ ଓଡ଼ିଆଭାଷାର ଏ ଅଭାବ ପୂରଣ କରିବା ପାଇଁ ଆମେ ଆମର ସହକର୍ମୀଗଣଙ୍କ ଜରିଆରେ ଖଣ୍ଡିଏ ଓଡ଼ିଆ ଶବ୍ଦ କଳ୍ପଦ୍ରୁମ ଯୋଜନାରେ ଲାଗିଅଛୁଁ ଓ ତାହା ପ୍ରକାଶ କରିବାକୁ ଅଣ୍ଟା ଭିଡ଼ିବା ପୂର୍ବରୁ ପହରାଜଙ୍କ ଭାଷାକୋଷକୁ ଦିକଡ଼ାର ନ କଲେ ନ ଚଳେ । ଅନ୍ତତଃ ଆମ ଶବ୍ଦ କଳ୍ପଦ୍ରୁମ ନ ବାହାରିବା ପର୍ଯ୍ୟନ୍ତ ପହରାଜେ ଏ କ୍ଷେତ୍ରରେ ଯାହା ବାହାଦୁରି ଦେଖାଇବାର ଦେଖାଇ ନିଅନ୍ତୁ । ଇତି ମଧ୍ୟରେ ଆମେ ଜଣେ ମାର୍କାମରା, ବେକରେ ଘଣ୍ଟିବନ୍ଧା ମୁଖିଆ ପ୍ରସିଦ୍ଧ ଜୀବଙ୍କୁ ଆମ ଦଳରେ ନେବାକୁ ଉଦ୍ୟମ କରୁଛୁ, ଯେ କି ରଙ୍ଗମଞ୍ଚରେ, ସଭାମଞ୍ଚରେ, ସ୍କୁଲ କଲେଜମଞ୍ଚରେ ଓ ରାମନବମୀ ଯାତ୍ରାମଞ୍ଚରେ ପ୍ରାଚ୍ୟ (ପ୍ରାଚୀ ସୁଲଭ) ଢଙ୍ଗରେ ବକ୍ତୃତା ଦେବେ ଯେ ଆମ ନବ ରଚିତ ଶବ୍ଦ କଳ୍ପଦ୍ରୁମ ହିଁ ସ୍ୱର୍ଗ, ମର୍ତ୍ତ୍ୟ ପାତାଳରେ ଏକମାତ୍ର ଅବଧାନ, ସମସ୍ତେ ତାହାର ପୃଷ୍ଠପୋଷଣ କରନ୍ତୁ ଇତ୍ୟାଦି ।

କୁକୁରିଆ ଶବ୍ଦର ଭାଷାକୋଷଗତ ଅର୍ଥ ବିଶ୍ଳେଷଣରେ ୧ 'କୁକୁର ସମ୍ବନ୍ଧୀୟ' ଓ ବିଶେଷ୍ୟରେ 'କୁକୁର ପାଳିବା ବ୍ୟକ୍ତି', ୨ 'କୁକ୍ରିୟା ରତ ବ୍ୟକ୍ତି' ଓ ୩ କଣ୍ଟି ବସିବା ପାଇଁ ଲଙ୍ଗଳ ମୁଣ୍ଡାରେ କରାଯିବା ଛିଦ୍ର ଏହି ତିନି ରୋଗ ଅର୍ଥ ଅଛି । କିନ୍ତୁ ଭାଷାକୋଷକାର ବୋଧହୁଏ ଆପୁଭୋଳରେ କୁକୁରିଆର ଗୋଟିଏ ଅସଲ ଉତ୍କଳ ପ୍ରସିଦ୍ଧ ଅର୍ଥ ଛାଡ଼ି ଯାଇଛନ୍ତି । (ପାଠକ ଅବଧାନ ! କ୍ଷମା କରିବେ । ସମାଲୋଚନାରେ ଆପୁଭୋକ ଆଦି

ଶବ୍ଦର ପ୍ରୟୋଗ ଆଧୁନିକ ଓଡ଼ିଆ ସାହିତ୍ୟର ସମାଲୋଚନାର ବିଶେଷତ୍ୱ । ଯାହାର ଗ୍ରନ୍ଥ ବା ଲେଖାକୁ ସମାଲୋଚନା କରାଯିବ ତାହାର ଗୁହମୂତକନା ଧୋବା ତୋଠରେ ନ କାଚିଲେ ସମାଲୋଚନାର ଅଙ୍ଗହାନି ହେବ । ଏଇଟା ବର୍ତ୍ତମାନ ଆମ ସାହିତ୍ୟ ରାଜ୍ୟରେ ଗୋଟାଏ ଫେସନ୍ ଓ ଏହି ଫେସନ୍‌ର ଅନୁବନ୍ଧନରେ ଆମେ ପ୍ରହରାଜଙ୍କ ଆପୁଖିଆକୁ ସୂଚନା କଲୁ । କ୍ଷନ୍ତବ୍ୟୋମେଽପର ।

ଓଡ଼ିଶାର ଗଡ଼ଜାତମାନଙ୍କ ମଧ୍ୟରେ କୌଣସି କୌଣସି ରାଜ୍ୟରେ ଏକ ଜାତିର ରାଜାନୁଚର ଖାସ୍ କରଣ ବା କ୍ଷତ୍ରିୟ ଜାତି ଅଛନ୍ତି; ଯେଉଁମାନଙ୍କୁ କୁକୁରିଆ ବୋଲାଯାଏ । ଏମାନଙ୍କ ପୂର୍ବପୁରୁଷମାନେ ସ୍ୱସମାଜ ବହିର୍ଗତ କୁକୁର ପାଳନ କରି ଥିବାରୁ ସେମାନେ ସମାଜରେ ପତିତ ହୋଇଥିବାର କେହି କେହି ଅସହଣିକ ନିନ୍ଦୁକଙ୍କ ମୁହଁରୁ ଶୁଣାଯାଏ, କିନ୍ତୁ ଆମ୍ଭେମାନେ କେତେକ ରାଜାଙ୍କ ଶ୍ରୀମୁଖରୁ ଶୁଣିଅଛୁ ଯେ ଏ ଉପାଧିର ପ୍ରକୃତ ବ୍ୟୁତ୍ପତ୍ତି ତାହା ନୁହେଁ । ଏମାନଙ୍କ ପୂର୍ବପୁରୁଷମାନେ କେତେକ କୁକ୍ରିଆ କରି ଥିବାରୁ ତଦାନୀନ୍ତନ ରାଜାମାନେ ସେମାନଙ୍କୁ 'କୁକ୍ରିୟା' ଉପାଧି ଦେଇଥିଲେ ଓ କାଳକ୍ରମେ ଏହି ସଂସ୍କୃତ ଶବ୍ଦ ଦେଶଜ ଆକାର ଧାରଣ କରି 'କୁକୁରିଆ' ହୋଇପଡ଼ିଛି ଓ ବର୍ତ୍ତମାନ ପ୍ରାୟଶ୍ଚିତ୍ତ କଲେ ସେମାନେ ପୁଣି ଉଚ୍ଚ କରଣ ଓ କ୍ଷତ୍ରିୟ ଜାତିରେ ପ୍ରବେଶାଧିକାର ପାଇବେ ଓ ଉଦ୍‌ବାହ ପ୍ରକ୍ରିୟା ଦ୍ୱାରା ଏମାନଙ୍କ ରକ୍ତ ପରିବର୍ତ୍ତିତ ହୋଇଗଲେ ଏମାନେ ପୁଣି ଆଗ ପାହ୍ୟା ପାଇବେ ଓ ଏମାନେ କୁକ୍ରିୟା ପରିବର୍ତ୍ତେ ସୁକ୍ରିୟା ନାମରେ ଡକାହେବେ । ତେବେ ଏ ନାମ ପରିବର୍ତ୍ତନରେ ଗୋଟିଏ ଆଶଙ୍କା ଅଛି ଯେ 'କୁକ୍ରିୟା' କାଳକ୍ରମେ 'କୁକୁରିଆ' ରୂପ ଧାରଣ କଲା ଭଳି 'ସୁକ୍ରିୟା' ଶବ୍ଦ 'ଶୂକରିଆ' ଆକାର କାଳେ ଧାରଣ କରିବ, ଏଥିପାଇଁ ଏ ସମ୍ବନ୍ଧେ ଖଣ୍ଡିଏ ଗ୍ରନ୍ଥ ଛାପିବା ଜରୁରୀ ପଡ଼ିଅଛି । ପାଠକ ମହାଶୟ ! ଏ ଉତ୍କଳ ଇତିହାସର ଗୋଟିଏ ପ୍ରତ୍ନତତ୍ତ୍ୱ ହେଉଥିବାରୁ ଓ ଏଥିପାଇଁ ଶୀଘ୍ର ଖଣ୍ଡିଏ ପୁସ୍ତିକା ବାହାରିବାର ଆଶା ଥିବାରୁ ବର୍ତ୍ତମାନ 'କୁକୁରିଆ' ଶବ୍ଦ ସମ୍ବନ୍ଧେ ଅଧିକ ତଥ୍ୟ ଲେଖି ଗ୍ରନ୍ଥକାରଙ୍କ ଦାନାରେ ଧୂଳି ପକାଇବା ଆମର ଅଭିପ୍ରାୟ ବା ସ୍ୱଭାବ ନୁହେଁ । ଉକ୍ତ କୁକୁରିଆ ଜାତିସୁଲଭ ରୋଗ ଜେଜେବାପା ଚୁଣିମୁଣିରେ ଔଷଧ ବ୍ୟବସ୍ଥା କରି ନାହାନ୍ତି ଏହା ସ୍ୱତଃସିଦ୍ଧ । କୁକୁରିଆ ଶବ୍ଦର କୋଷ ନିହିତ ୩ୟ ଅର୍ଥ ଗୋଟିଏ ନିର୍ଜୀବ ଛିଦ୍ର ଥିବାରୁ ତହିଁର ରୋଗ ହେବା ଅସମ୍ଭବ । ଅତଏବ ଜେଜେବାପାଙ୍କ କୁକୁରିଆ ରୋଗକୁ ୬ଷ୍ଠୀ ତତ୍‌ପୁରୁଷ ସମାସରେ (କୁକୁରିଆମାନଙ୍କ ରୋଗ) ଅର୍ଥ ନ କରି କର୍ମଧାରୟ ସମାସରେ (କୁକୁରିଆ = କୁକୁର ସୁଲଭ ଗୁଣ ପରିପୂରିତ + ରୋଗ) ଅର୍ଥ କଲେ ଜେଜେବାପାଙ୍କ ମୂଣିରେ ଟିପା ଥିବା କୁକୁରିଆ ରୋଗର ପ୍ରକୃତିକୁ ରସଚକ୍ର ପାଠକମାନେ କଥଞ୍ଚିତ ପଗଡ଼ି ପାଇବେ -

ଜେଜେବାପାଙ୍କ ଖେଦାରେ ଟିପାଥିବା ଲକ୍ଷଣମାନଙ୍କରୁ ଧରାପଡୁଛି ଯେ କୁକୁରମାନଙ୍କର ଉପରିଲିଖିତ ବିଶେଷତ୍ୱମାନଙ୍କ ମଧ୍ୟରୁ ଦୁଇଟି ଗୋଟିଏ ବିଶେଷତ୍ୱ- ଯେଉଁ ବ୍ୟକ୍ତିଙ୍କଠାରେ ଲକ୍ଷଣାର୍ଥରେ ବା ସ୍ୱାର୍ଥରେ ପରିଲକ୍ଷିତ ହୁଏ ତାଙ୍କୁ କୁକୁରିଆ ରୋଗ ଧରିଛି ବୋଲି ବୋଲାଯିବ ।

କୁକୁରମାନଙ୍କର ଗୋଟିଏ ଦୁର୍ଗୁଣ ପୂର୍ବେ ବୋଲା ଯାଇଅଛି ଯେ ଅଇଁଠା ପତରକୁ ଗୋଟିଏ କୁକୁର ଚାଟୁଥିବା ସମୟେ ସେଠାରେ ଆଉ ଗୋଟିଏ କୁକୁର ପହଞ୍ଚିଲେ ସେମାନେ ନିଶ୍ଚେ ଅଇଁଠା ପତରଚଟା ଛାଡ଼ି ପରସ୍ପର ମଧ୍ୟରେ ଦୁହେଁ ଖୋଆଖୋଇ, କାମୁଡ଼ା କାମୁଡ଼ି, ଭୁକାଭୁକି, ଖତିଆ ଖତେଇ, ରାମ୍ପୁଡ଼ା ରାମ୍ପୁଡ଼ି ଓ ରକ୍ତା ରକ୍ତି ହୁଅନ୍ତି । ଢେଙ୍କାନାଳ ଭାଷୁଛନ୍ତି ଯେ ଏକ ସ୍ଥଳରେ ବା ଏକ ଦାତାଙ୍କ ଦ୍ୱାରରେ ଜଣେ ପ୍ରାର୍ଥୀ ପହଞ୍ଚିଥିବା ଅବସ୍ଥାରେ ଆଉ ଜଣେ ପ୍ରାର୍ଥୀ ପହଞ୍ଚିଗଲାରୁ ସେଥି ମଧ୍ୟରୁ ଯେଉଁ ଜଣକ ଅନ୍ୟକୁ ଖ୍ୟାଙ୍କାରି ହୋଇଉଠେ ବା କାମୁଡ଼ି ଗୋଡ଼ାଏ; ତାହାହେଲେ ସ୍ଥିର କରାଯିବ ଯେ ତାକୁ କୁକୁରିଆ ରୋଗ ଧରିଛି ଓ ଯେବେ ଦୁହିଁକି ଦୁହେଁ ଖେଙ୍କା ଖେଙ୍କା, ଝିଙ୍କା ଝିଙ୍କି ହେବାର ଦେଖାଯାଏ, ତେବେ ଦୁହିଁଙ୍କୁ କୁକୁରିଆ ରୋଗ ଧରିଛି ବୋଲି ସ୍ଥିର କରିବାକୁ ହେବ । ଖୋଦ୍ ଧୁନ୍ଧୁମାର ପାଣିଙ୍କର ଅଭ୍ୟାସ ଓ ଅନୁଭୂତି ରାଜା ମହାରାଜାଙ୍କ ସିଂହଦ୍ୱାରରେ ଭୁକିବାର ଅଛି ଓ ସେମାନଙ୍କଠାକୁ ପ୍ରାର୍ଥନାପତ୍ର ପଠାଇବାର ଖୋଇ ମଧ୍ୟ ଅଛି । ଆପଣା ପେଟ ଓ ବାଲ୍‌ବଚ୍ଚାଙ୍କ ପେଟ ପୋଷିବା ପାଇଁ ଭିକ୍ଷାପାତ୍ର ଧରି ପରିବ୍ରାଜକାଚାର୍ଯ୍ୟ ସାଜିଲେ ଦାଣ୍ଡରେ ସୁନ୍ଦର ଦିଶେ ନାହିଁ ବା ଆଦର ହୁଏ ନାହିଁ, ଏଥିପାଇଁ ଧୁନ୍ଧୁମାର ଗୋଟିଏ ସହକାର ବା ସହକାରୀଙ୍କୁ ସଙ୍ଗରେ ଧରି ତାଙ୍କରି ବାନା ଧରିବାକୁ ସୁଖ ପାଆନ୍ତି ଓ ଗୋଟାଏ ସାଧାରଣ କାର୍ଯ୍ୟର ଦୁଆ ଧରି କାମ ହାସଲ କରି ରାଜଦ୍ୱାରରୁ ପାଟଜଥା, ବାଟଖରଚ, ଖତୁ ବିରୁବୋଲି, ବିଦାକି ପାଇ ଖୁସି ମନରେ ଘରକୁ ଫେରନ୍ତି । ଥରେ ଖଣ୍ଡିଏ ପ୍ରାର୍ଥନା ପତ୍ର ପଠାଇବାର ଦରକାର ହେବାରୁ ସେ ଅତି ଆର୍ତ୍ତ ହୋଇ ଜଣେ ମାର୍କାମରା ବଡ଼ ଲୋକଙ୍କଠାକୁ ସ୍ୱାକ୍ଷର ସଂଗ୍ରହ କରିବାକୁ ଗଲେ, ଉକ୍ତ ବ୍ୟକ୍ତିଙ୍କୁ ଧରିଥାଏ କୁକୁରିଆ ରୋଗ । ଦୁଇ କୁକୁରିଆ ରୋଗୀଙ୍କର କାର୍ଯ୍ୟକ୍ଷେତ୍ରରେ ଭେଟ ହୋଇ ଗଲାରୁ କୁକୁର-ସୁଲଭ କେତେ ଗୁଣ ବାହାରିଲା । ଏଠାରେ ସିଆଣା ସିଆଣାଙ୍କ ମଧ୍ୟରେ କୋଳାକୋଳି ହେବା ନ୍ୟାୟରେ ଦୁଇ କୁକୁରିଆରୋଗୀଙ୍କ ମଧ୍ୟରେ ବିଦ୍‌ବଜାରରେ ତଣ୍ଟାତଣ୍ଟି ଲାଗିଲା । ଧୁନ୍ଧୁମାର କହିଲେ- ଆପଣ ଦସ୍ତଖତ୍ କର । ମାର୍କାମରା ବଡ଼ଲୋକ କହିଲେ 'କିହୋ ! ତୁମେ ଆମ ଥାଳରେ ଧୂଳି ପକାଇବାକୁ ବସିଛ ସିନା । ତୁମ କାମ ପାଇଁ ତ ଆମେ ବର୍ତ୍ତମାନ ଦସ୍ତଖତ୍ କରିଦେବୁଁ, ଆମ ବାଲବଚ୍ଚାଙ୍କ ପେଟ ପୋଷିବା ପାଇଁ ଆମେ ଯାଇଁ ସେ ଦିହୁଡ଼ିରେ ପହଞ୍ଚିଲା ବେଳକୁ ଯେ ଆମେ ରିକ୍ତ ହସ୍ତରେ ଫେରିବୁଁ । ଅତଏବ ଆମର ଏଥିରେ ସ୍ୱାକ୍ଷର କରିବା ଆଶା ତୁମେ ଛାଡ଼ । ଧୁନ୍ଧୁମାର ଅଗତ୍ୟା ସେ ଆଶା ତ୍ୟାଗ କରି ଅନ୍ୟ ସ୍ୱେଚ୍ଛାସେବକଙ୍କଠାରେ ଉପସ୍ଥିତ ହେଲେ ଓ ତାଙ୍କଠାରୁ ଦସ୍ତଖତ୍ ହାସଲ କରି ଆପଣା ଗୁଜରାନ୍ ଚଳାଇ ନେଲେ । କିଛି ଦିନ ପରେ ସତକୁସତ ଦେଖାଗଲା ଯେ ଦସ୍ତଖତ୍ କରିବାକୁ ନାହିଁ କରିଥିବା ବ୍ୟକ୍ତିଙ୍କୁ ଜଳାତଙ୍କ ରୋଗ ଏପରି ଧଇଲା ଯେ, ସେ ତାଙ୍କ ସହକର୍ମୀଙ୍କୁ ମଧ୍ୟ କାମୁଡ଼ିବାକୁ ଧାଇଁଲେ ଓ ଜଳାତଙ୍କ ରୋଗର ଅନ୍ୟ ଲକ୍ଷଣମାନ ତାଙ୍କଠାରେ ଏବେ ମଧ୍ୟ ପ୍ରକାଶ ପାଉଅଛି ।

କୁକୁରମାନଙ୍କର ଆଉ ଗୋଟିଏ ଲକ୍ଷଣ ଅମେଧ ପ୍ରତି ଗୋଟାଏ ବିଶେଷତଃ ମମତା । ଢେଙ୍କେବାପା ପରନିନ୍ଦା, ବ୍ୟକ୍ତିଗତ ଆକ୍ରମଣ ଓ ଆକ୍ଷେପ, ଚୁଗୁଲି ଓ ପରାନିଷ୍ଟ ସାଧନକୁ ଲକ୍ଷଣାର୍ଥରେ ଅମେଧ ରୂପେ କଳ୍ପନା କରି ସେଗୁଡ଼ିକ ମୁହଁରେ ଧରିବା ଲୋକଙ୍କୁ କୁକୁରିଆ ରୋଗ ଧରିଥିବାର ସ୍ଥିର କରିଅଛନ୍ତି ।

କୁକୁର ପାଗଳ ହେଲେ ପାଗଳା କୁକୁର ଯାହାକୁ କାମୁଡ଼େ ତାର ଜଳାତଙ୍କ ରୋଗ ହେବା ନ୍ୟାୟରେ ଏ ଜାତିର କୁକୁରିଆ ରୋଗୀଙ୍କ ଦାନ୍ତ ବା ଲାଳ ଯାହାଠାରେ ଲାଗିବ ତାକୁ ଅବଶ୍ୟ ସାହିତ୍ୟିକ ଜଳାତଙ୍କ ରୋଗ ଧରିବ ହିଁ ଧରିବ । ମାତ୍ର ସନ୍ଦେହୋ ନାସ୍ତି । ଆମ୍ଭେମାନେ ମଧ୍ୟ ଅନୁଭବରେ ଦେଖିଛୁଁ ଯେ ଏ ରୋଗୀଙ୍କ ସହବାସରେ ଯେତେ ଲୋକ ଆସିଛନ୍ତି ସେମାନଙ୍କୁ ଆଗରୁ Hydrophobic injection (ଜଳାତଙ୍କ ପ୍ରତିଷେଧକ ଫୋଡ଼ା) ଦିଆଯାଇ ନ ଥିଲେ ସେମାନଙ୍କୁ ଏହି ରୋଗ ଧରିଛି ।

କୁକୁରିଆ ରୋଗୀଙ୍କ ଔଷଧ ବିଷୟରେ ଏହି ବ୍ୟବସ୍ଥା ଖେଦାରେ ଅଛି ଯେ- ଏପରି ଗୋଟିଏ ରୋଗୀ ଦେଖିଲେ ତାକୁ କୌଣସି ସଭାସମିତି, ସମ୍ପ୍ରଦାୟ, ବୋର୍ଡ଼, କମେଟି, କାଉନ୍‌ସିଲ୍, ସଂଘ ସମାଜ ଭିତରକୁ ଭରତି କରାଇବ ନାହିଁ । ମିଉନିସିପାଲିଟି କୁକୁର ବାଡ଼ିଆଙ୍କ ପାଇଁ ପୁରସ୍କାର ଘୋଷଣା କରି କୁକୁର ବଂଶର ନିପାତ କରିବାକୁ ଚେଷ୍ଟା କଲା ଭଳି ସାହିତ୍ୟ-ରାଜପଥର ଗୁଡ଼ିଏ କୁକୁର ବାଡ଼ିଆଙ୍କୁ ପୁରସ୍କାର ଘୋଷଣା-ପୂର୍ବକ ନିଯୁକ୍ତ କରି ରୋଗୀ ପାଞ୍ଚଣ ପ୍ରୟୋଗ ଦ୍ୱାରା ନିପାତ କରିବା ଛଡ଼ା ଏହାଙ୍କ ବଂଶ ନିପାତ କରିବାର ଉପାୟାନ୍ତର ନାସ୍ତି ।

ଢେଙ୍କେଙ୍କ ପାଠରେ ଡାକୁଛି ବିଷସ୍ୟ ବିଷ ମୌଷଧଂ । ଫଳରେ ମଧ୍ୟ ଦେଖୁଥାଇଁ କଣ୍ଟାକୁ କଣ୍ଟା କାଢ଼େ । ବନସ୍ତର କାଠ ଗଛକୁ କାଠବେଣ୍ଟ ଲଗା-କଟୁରି ଓ କୁରାଢ଼ି କାଟେ । ହୋମିଓପାଥିକ ରୋଗର ମଧ୍ୟ ମୂଳଦୁଆ ଏହି ସିଦ୍ଧ ବଚନ ଉପରେ ଗଢ଼ା ।

ଏହାପରେ ପୋଥି ଡାକିଲା ମେଁମେଁୟା ରୋଗ । ଆଜି ଥାଉ -

ରସଚକ୍ର : ପ୍ରଥମ ଭାଗ, ୧୧ଶ ସଂଖ୍ୟା, ପୌଷ, ୧୩୪୧ ସାଲ ।

## ।। ପାଞ୍ଚ ।।

ଏଥରକ ମୁଣିରୁ ବାହାରିଲା ମେଁମେଁୟା ରୋଗ - ଆମ୍ଭେମାନେ ବରାବର ଶୁଣି ଆସି ଥାଇଁ ଛେଳିଙ୍କ ରାବ ମେଁ-ମେଁ । ଛେଳିଙ୍କ ବୋବାଳିକୁ ଆମ୍ଭେମାନେ ମେଁ-ମେଁ ଧ୍ୱନି ଦ୍ୱାରା ପ୍ରକାଶ କରିଥାଉଁ । ଏପରି ଅବସ୍ଥାରେ ମେଁମେଁୟା ରୋଗ କହିଲେ ମନୁଷ୍ୟ ମନୋଭାବ ଛେଳିଙ୍କ ଆଡ଼କୁ ଆକୃଷ୍ଟ ହୁଏ । ଛେଳିର ସଂସ୍କୃତ ନାମ ଛାଗ, ଛାଗଳ, ଅଜ, ବର୍କର, ବସ୍ତ, ଛେଳକ, ସ୍ତୁଭ । ଛେଳି ଗୃହପାଳିତ ଓ ବନ୍ୟ ଅବସ୍ଥାରେ ଦେଖା ଯାଆନ୍ତି । କେତେକ ଛେଳି ଶୃଙ୍ଗହୀନ, କିନ୍ତୁ ଅଧିକାଂଶ ଛେଳିଙ୍କର ଶିଙ୍ଗ ଅଛି, ଶିଙ୍ଗ ତିନି ପହଲିଆ ଓ ପିଠିଆଡ଼କୁ

ବଙ୍କେଇ ଥାଏ । କେତେକ ଛେଳିଙ୍କ ଶିଙ୍ଗ ମୋଡ଼ା ମୋଡ଼ା । ଏମାନଙ୍କ ଲାଞ୍ଜ ଛୋଟ । ଛେଳିଙ୍କ ଦେହରୁ ଏକ ପ୍ରକାର ଗନ୍ଧ ବାହାରେ । କେତେକ ଛେଳିଙ୍କ ଥୋଡ଼ି ତଳେ ଦାଢ଼ି ଭଳି କେରାଏ କେଶର ଓହୋଳି ଥାଏ - ଏମାନେ ପାକୁଳି କରନ୍ତି । କେତେକ ଛେଳିଙ୍କ ବେକତଳେ ଦୁଇପାଖେ ଚିର ଭଳି ଦୁଇଟି ଚମ ଥଳି ବାହାରି ଥାଏ, ଏହାକୁ ଛେଳିଙ୍କ ଗଳସ୍ତନ ବୋଲାଯାଏ । ଏହା ଛେଳିଙ୍କର ଅସଲସ୍ତନ (ଚିର) ପରି ଦେଖା ଯାଉଥିଲେ ମଧ ଏଥିରେ ସ୍ତନ୍ୟ ନ ଥାଏ । ଏଥିପାଇଁ ଅକାମିକା ବସ୍ତୁକୁ ଲୋକେ ଅଜାଗଳସ୍ତନ ସଙ୍ଗେ ତୁଳନା କରି ଉଲ୍ଲାଖ ଦିଅନ୍ତି । କେତେକ ମାଈ ଛେଳିଙ୍କ ପହ୍ନାରେ ଦୁଇଟି ଚିର ଥାଏ । ଏ ଚିରକୁ ଦୁହିଁଲେ ଏଥିରୁ ଦୁଧ ବାହାରେ । ଏକ ଜାତୀୟ ଛେଳିଙ୍କର ଅସଲ ଚିର ପାଖେ ଦୁଇଟି ସ୍ତନ୍ୟହୀନ ଛୋଟଚିର ଓହଳି ଥାଏ । କେତେକ ଛେଳିଙ୍କ ଲୋମ ଛୋଟ ଓ କେତେକଙ୍କର ବଡ଼ । ପ୍ରାଚୀନ କାଳରୁ ଛେଳି ଭାରତରେ ଅଛନ୍ତି ଓ ସେମାନଙ୍କ ନାମ ବେଦରେ ମିଳେ । ଛେଳି ଚର୍ବିରେ ଦେବତାଙ୍କୁ ଆହୁତି ଦେବା କଥା ହିନ୍ଦୁଶାସ୍ତ୍ରମାନଙ୍କରେ ଲେଖା ଅଛି । ଛେଳି ମାଂସକୁ ପାକ କରି ଖାଇବା ଓ ଅତିଥିଙ୍କୁ ଦେବା କଥା ଭାରତରେ ବହୁ ପ୍ରାଚୀନ କାଳରୁ ଚଳିଅଛି । ଛେଳି ଦୁଧ, ଗାଈ ଦୁଧ ଅପେକ୍ଷା ମିଠା ଓ ଗାଈ ଦୁଧ ଯେଉଁ ସରଖିଆ ଶିଶୁ ଓ ଲୋକଙ୍କ ଦେହରେ ଯାଏ ନାହିଁ, ସେମାନଙ୍କର ଛେଳି ଦୁଧ ଉପକାର କରେ - ବୈଦ୍ୟଶାସ୍ତ୍ର ଓ ଆଧୁନିକ ଚିକିତ୍ସାଶାସ୍ତ୍ର ମତରେ ଯକ୍ଷ୍ମାରୋଗୀ ପାଖରେ ସର୍ବଦା ଛେଳି ରଖି ତା ସଙ୍ଗେ ଚଳପ୍ରଚଳ ହେଲେ ରୋଗର ପ୍ରକୋପ ଊଣା ହୁଏ ।

ଛେଳି ଦୁଧରୁ ଦହି ଓ ଘିଅ ମଧ ତିଆରି ହୁଏ । ଘୃତର ଗୋଟିଏ ନାମ 'ଆଜ୍ୟ ।' ଏହି 'ଆଜ୍ୟ' ଶବ୍ଦର ବ୍ୟୁତ୍ପତ୍ତି (ଅଜ ଜାତାର୍ଥେ ବା ସମ୍ବନ୍ଧାର୍ଥେ ଯ) ରୁ ଜଣାପଡ଼େ ଯେ ପ୍ରାଚୀନ କାଳରେ ହିନ୍ଦୁମାନେ ଛେଳିଦୁଧରୁ ଘିଅ ବାହାର କରି ହୋମ ଆଦି କରୁଥିଲେ । ଦାକ୍ଷିଣାତ୍ୟରେ ଏକପ୍ରକାର ଛେଳି ଅଛନ୍ତି ସେମାନେ ଆମଆଡ଼ର ଛେଳିଙ୍କ ଅପେକ୍ଷା ବଡ଼ ଓ ଗୋଟିଏ ଗୋଟିଏ ଛେଳି ଦିନରେ ୫ ସେର ପର୍ଯ୍ୟନ୍ତ ଦୁଧ ଦେବାର ଦେଖାଯାଏ । ଛେଳି ବର୍ଷକେ ଦୁଇଥର ଗର୍ଭଧାରଣ କରନ୍ତି । ଥରକେ ୧ ଠାରୁ ୪ଟି ପର୍ଯ୍ୟନ୍ତ ଛୁଆ ଜନ୍ମ କରନ୍ତି । ଛେଳିମାନଙ୍କ ଖୁରା ଗୋଟା ନୁହେଁ, ଫଟା ଅଟେ । ଏମାନଙ୍କ ଖୁରା ଅନ୍ୟ ଜନ୍ତୁଙ୍କ ଖୁରା ତୁଳନାରେ ଛୋଟ ଥିବାରୁ ଯେଉଁ ସଂକୀର୍ଣ୍ଣ ଓ ଉଚ୍ଚାବଚ ସ୍ଥାନରେ ଅନ୍ୟ ଜନ୍ତୁ ଯାଇ ପାରନ୍ତି ନାହିଁ ସେଠାରେ ଛେଳିମାନେ ସହଜରେ ଚାଲବୁଲ କରନ୍ତି । ଏଥିପାଇଁ ହିମାଳୟର ପର୍ବତ ସଙ୍କଟମାନଙ୍କରେ ଲୋକେ ଛେଳିଙ୍କ ପିଠିରେ ପଣ୍ୟଦ୍ରବ୍ୟମାନ ଲଦି ନିଆ ଅଣା କରନ୍ତି । ଉତ୍ତର ଭାରତରୁ ତିବ୍ବତକୁ ଓ ତିବ୍ବତରୁ ଉତ୍ତର ଭାରତକୁ ହିମାଳୟ ବାଟେ ନେ-ଆଣ ହେଉଥିବା ପଣ୍ୟମାନ ଛେଳିଙ୍କ ପିଠିରେ ବୁହାଯାଏ । କାଶ୍ମୀର ଓ ଉତ୍ତର ହିମାଳୟର ପାର୍ବତ୍ୟ ଅଞ୍ଚଳର ଛେଳିମାନଙ୍କ ଲୋମ କୋମଳ ଓ ଲୟ ଓ ତହିଁରେ ନିର୍ମିତ ଶାଲ ଦୋଶାଲ ଆଦି ବହୁ ମୂଲ୍ୟରେ ବିକ୍ରି ହୁଏ । ଛେଳିର ସ୍ୱଭାବ ଅନ୍ୟାନ୍ୟ ପଶୁଙ୍କ ତୁଳନାରେ ଶାନ୍ତ । ମେଣ୍ଢାମାନେ ଡରକୁଳା ବୋଲି ପ୍ରବାଦ ଅଛି । କିନ୍ତୁ ଛେଳିମାନଙ୍କ

ସମ୍ବନ୍ଧେ ଏପରି ପ୍ରବାଦ ନାହିଁ । ଗୋଟିଏ ପ୍ରବାଦ ଅଛି 'ପାଣି କି ଛେଳି,' ଅର୍ଥାତ୍ ଛେଳିମାନେ ପାଣିରେ ପଶିବାକୁ ସୁଖ ପାଆନ୍ତି ନାହିଁ । ଛେଳି ସାଧାରଣତଃ ବାର ତେର ବରଷ ବଞ୍ଚିବାର ଦେଖାଯାଏ । ଅଣ୍ଡିରା ଛେଳିକୁ ଖାସି କଲେ ସେ ଖୁବ୍ ହୃଷ୍ଟପୁଷ୍ଟ ହୁଏ । ଅଣ୍ଡିରା ଛେଳିକୁ ହିନ୍ଦୁମାନେ ଦେବତାଙ୍କ ଆଗରେ ବଳି ଦିଅନ୍ତି । ଛେଳିର ଶିଙ୍ଗରେ ଛୁରି ଓ କଟୁରୀ ଆଦିର ବେଣ୍ଟ, ବୋତାମ ଆଦି ହୁଏ । ଛେଳିର ଚମଡ଼ା ଗୋରୁ ଚମଡ଼ା ଠାରୁ ପତଳା ଓ କୋମଳ ଥିବାରୁ ତାକୁ କଷି କରି ସେଥିରେ ଅନେକ ପ୍ରକାର କୋମଳ ଚମଡ଼ା ଜିନିଷ ତିଆରି କରାଯାଏ । ଛେଳି ମାଂସରୁ, ସ୍ନିଗ୍ଧ, ତ୍ରିଦୋଷ ନାଶକ, ଅନତିଶୀତଳ, ଅଦାହକର, ପୀନସ-ନାଶକ, ବଳକର, ରୁଚିପ୍ରଦ, ପୁଷ୍ଟିବର୍ଦ୍ଧକ ଓ ବୀର୍ଯ୍ୟକାରକ ବୋଲି ବୈଦ୍ୟଶାସ୍ତ୍ରରେ ଲେଖାଅଛି । ବୈଦ୍ୟଶାସ୍ତ୍ର ମତରେ ଅପ୍ରସୂତା ଛାଗୀର ମାଂସ ପୀନସ-ନାଶକ ଓ ଅଗ୍ନିଦୀପକ ଏବଂ ଏହା ଶୁଷ୍କକାଶ, ଅରୁଚି ଓ ଶୋଷ ରୋଗରେ ହିତକର ଛୁଆ ଛେଳିର ମାଂସ ଅତ୍ୟନ୍ତ ଲଘୁ, ହୃଦ୍ୟ, ଶ୍ରେଷ୍ଠ ଜ୍ୱର-ହାରକ, ସୁଖପ୍ରଦ ଓ ଅତ୍ୟନ୍ତ ବଳଦାୟକ । ଖାସି ଛେଳିର ମାଂସ କଫଜନକ, ଗୁରୁ, ସ୍ରୋତଃ-ଶୁଦ୍ଧିକାରକ, ବଳପ୍ରଦ, ମାଂସବର୍ଦ୍ଧକ ଓ ବାତପିତ୍ତ ନାଶକ । ବୃଦ୍ଧ ଓ ବ୍ୟାଧିମୃତ ଛେଳିର ମାଂସ ବାତଜନକ ଓ ରୁକ୍ଷ । ଛାଗଳାଦ୍ୟ ଘୃତର ପ୍ରଧାନ ଉପକରଣ ନପୁଂସକ ଛାଗଳର ମାଂସ ଓ ଏହା ବାତରୋଗର ପ୍ରଧାନ ଆୟୁର୍ବେଦିକ ଔଷଧ ଅଟେ । ଖେଦାରେ ଜେଜେବାପା ଟିପି ଦେଇ ଯାଇଛନ୍ତି ଯେ ଉକ୍ତ ବିବରଣମାନ ତାଙ୍କର ନୁହେଁ । ଏହା ସେ ପଣ୍ଡିତମାନଙ୍କଠାରୁ ଓ ବୈଦ୍ୟମାନଙ୍କଠାରୁ ଶୁଣିଥିଲେ ।

ମେଁମେଁୟା ରୋଗାକ୍ରାନ୍ତ ବ୍ୟକ୍ତି ସମୟ ଅସମୟରେ, ସ୍ଥାନ ଅସ୍ଥାନରେ, ସବୁବେଳେ ମେଁମେଁ ରାବ କରେ । ଏ ରୋଗୀଙ୍କର ଗୋଟିଏ ବିଶେଷ ଲକ୍ଷଣ ଏହି କି ଏମାନେ ଦଳବାନ୍ଧି ରହିବାକୁ ସୁଖ ପାଆନ୍ତି । ଯାହାକୁ ଏ ମେଁମେଁୟା ରୋଗ ଧରେ ସେ ସେହି ରୋଗାକ୍ରାନ୍ତ ଅନ୍ୟ ବ୍ୟକ୍ତିକୁ ସର୍ବଦା ଖୋଜୁଥାଏ ଓ ତା' ସହ ବାସ କଲେ ତାକୁ ଆନନ୍ଦ ଓ ସୁଖ ବୋଧହୁଏ । ଏ ରୋଗୀ ମୁହଁରୁ ଏ ଯେଉଁ 'ମେଁ, ରବ ବାହାରୁଥାଏ ତାକୁ ଯେବେ କିଛି ପ୍ରଶ୍ନ କରିବ, ତେବେ ତହିଁର ଉତ୍ତର 'ମେଁ,' ତାକୁ ଯେବେ କୌଣସି ସ୍ଥାନରେ କିଛି କହିବାକୁ କହିବ, ତେବେ ତହିଁର ଉତ୍ତର 'ମେଁ,' ତାକୁ ଯେବେ କୌଣସି ବିଷୟରେ ମତ ଦେବାକୁ କହିବ ତେବେ ତହିଁର ଉତ୍ତର 'ମେଁ ।' ସେ ଚେଇଁଥିଲା ବେଳେ ତା ପାଟିରୁ ସବୁବେଳେ ବାହାରୁଥାଏ ମେଁ, ସେ ଶୋଇକରି ବିଲିବିଲେଇଲା ବେଳେ ମଧ୍ୟ ତା ପାଟିରୁ ବାହାରୁଥାଏ ମେଁ । ଏ ରୋଗୀର ମନସ୍ତତ୍ତ୍ୱ ବିଶ୍ଳେଷଣ କରିଦେଲେ ଦେଖାଯିବ ଯେ ଏ ଜାଣେ ଜଗତଟା 'ମେଁ' ଓ ଦିନାକେତେ ଏପରି ମେଁ ମେଁ ରାବ କରିବା ପରେ ଏହା ମୁହଁରୁ ବାହାରେ 'ଆମେଁ' ବା 'ଆମ୍ଭେ ।' ଜଗତରେ ଯେତକ ସାର ବ୍ୟକ୍ତି ଅଛନ୍ତି, ତାହା 'ଆମେ ।' ଆମେ ହେଲୁ ଜଗତରେ ଜ୍ଞାନର, ବିଦ୍ୟାର, ପାଣ୍ଡିତ୍ୟର, ଗୁଣର, କ୍ଷମତାର କେନ୍ଦ୍ର । 'ଆମେ' କେତେଜଣଙ୍କ ଛଡ଼ା ଜଗତରେ ଆଉ ଯେଉଁ ଦ୍ୱିପଦ ଚତୁଷ୍ପଦ ଜୀବ

ଅଛନ୍ତି ସେଗୁଡ଼ାକ ହେୟ, ଘୃଣ୍ୟ, ଅପଦାର୍ଥ । ଆମେ ଯେଉଁ ଅନୁଷ୍ଠାନରେ ନାହୁଁ, ଆମେ ଯେଉଁ କର୍ମରେ ସହକାରୀ ନୋହୁଁ, ଆମେ ଯେଉଁ ସଭାରେ ନାହୁଁ, ଆମେ ଯେଉଁ ପତ୍ରିକାରେ ନ ଲେଖୁଁ, ଆମେ ଯେଉଁ ରଙ୍ଗମଞ୍ଚରେ ନ ନାଚୁଁ, ସେଗୁଡ଼ାକ କିଛି ନୁହେଁ । ପ୍ରତ୍ୟେକ ରୋଗୀଙ୍କର କଥାର ଘୋଷା 'ଆମେ ।' 'ଆମେ'ର ଅର୍ଥ ମୁଁ ଓ ମୋ ସହକାରୀବୃନ୍ଦ । ଏହି ସହକାରୀ ପହ୍ଲ ଅପେକ୍ଷା ଜଗତରେ ରୂପରେ ସୁନ୍ଦର, ଗୁଣରେ ସୁନ୍ଦର, କଥାରେ ସୁନ୍ଦର, କର୍ମରେ ସୁନ୍ଦର ଆଉ କିଛି ନାହିଁ । ଆମେ ସମସ୍ତଙ୍କୁ କହିବୁଁ ଅସୁନ୍ଦର ଓ ଏଥିର ପ୍ରତିଦାନରୂପେ ଆମକୁ ସମସ୍ତେ କହ ସୁନ୍ଦର । ଏ ରୋଗୀଙ୍କର ଗୋଟିଏ ପ୍ରଧାନ ଗୁଣ ଯେ ଏମାନଙ୍କର ଲଜ୍ଜା ଓ ଅପମାନ ଜ୍ଞାନ ଆଦୌ ନାହିଁ । ଏମାନଙ୍କ ବୁଦ୍ଧି ଓ ଛେଳିଙ୍କ ବୁଦ୍ଧିରେ ପ୍ରଭେଦ ଖୁବ୍ କମ୍ । ସଂସାର ଏହାକୁ ତୁହାକୁ ତୁହା ଗୋଇଠା ମାରୁଥିବ, ଏହାକୁ କାଇଲ କରୁଥିବ, କିନ୍ତୁ ଏମାନେ କହୁଥିବେ 'ମେଁ' ଅର୍ଥାତ୍ ''ମାଲୋ ମା ! ମୋତେ ସମସ୍ତେ କାଇଲ କଲେ, କିନ୍ତୁ ମୁଁ କାଇଲ୍ ମାନିଲି ନାହିଁ । ସବୁ ଯୁକ୍ତିର ଉତ୍ତର ମୋ ମୁହଁରୁ ବାହାରେ 'ମେଁ ।'

କିରେ ତୁ ନିର୍ବୋଧ - ଉତ୍ତର - 'ମେଁ' ।
କିରେ ତୁ ମୂର୍ଖ - ଉତ୍ତର - 'ମେଁ' ।
କିରେ ତୁ ନିର୍ଲଜ୍ଜ - ଉତ୍ତର - 'ମେଁ' ।
କିରେ ତୁ ଚୁଗୁଲିଆ - ଉତ୍ତର - 'ମେଁ' ।

ଯେ ଆମକୁ ସୁନ୍ଦର ନ କହିବ, ଆମ ସହକାରୀଦଳ ତା' ପଛରେ ଗୋଡ଼େଇବେ ଓ ତା ପଛେ ପଛେ ହୁଲର କରିବେ 'ମେଁ' । ଏହି ମେଁ ମେଁ ରଡ଼ିରେ ସଂସାରର କାନ ଅତଡ଼ା ପଡ଼ିବ, ସଂସାରର ଲୋକେ ଆମର ଏ ରଡ଼ିର ଜ୍ୱାଳାରେ ବ୍ୟତିବ୍ୟସ୍ତ ହୋଇ ପଛକୁ ଆମକୁ ସମାଜରେ, ସଭାରେ, ସଂବାଦପତ୍ରରେ ପ୍ରଥମ ସ୍ଥାନ ଦେବାକୁ ବାଧ ହେବେ - ମନେ କରନ୍ତୁ- ଗୋଟିଏ ଜାଗାରେ ସଭା ହେଉଛି, ସାହିତ୍ୟ ଆଲୋଚନା ହେଉଛି, ସେଠାରେ ଆମରି ସହକାରୀ ଦଳ ପହଞ୍ଚିଯିବେ, ସେଠାରେ ଆମ ରୋଗୀଦଳର ପ୍ରଶଂସା ଗାନ ନ ଶୁଣିଲେ, ଆମ ଭିତରୁ ଜଣେ ଭାବିବ 'ମେଁ' । ଜଣେ ରାବିଲାକ୍ଷଣି ସେଠାରେ ଆମ ଦଳର ସମସ୍ତେ ରାବିବେ ମେଁ । ଏହି ମେଁ ରଡ଼ିକୁ ଶାନ୍ତ କରିବାର ଉପାୟ 'ମେଁମେଁୟାଙ୍କର ସ୍ତୁତିଗାନ', ନଚେତ୍ ସଭାଭଙ୍ଗ । ସଭାଭଙ୍ଗ କରି ସୁଦ୍ଧା ମେଁମେଁୟାଙ୍କ ଠାରୁ ନିସ୍ତାର ନାହିଁ । ମେଁମେଁୟା ଯାଇ ପହଞ୍ଚିବେ ନାନା ସ୍ଥାନରେ, ତାଙ୍କର ସ୍ତାବକଙ୍କ ଛଡ଼ା ସଂସାରର ଅନ୍ୟ ସମସ୍ତଙ୍କର ନିନ୍ଦାବାଦ, ଅପବାଦ କରିବେ । ଯେଉଁଠାରେ ସୁନାମୀ ବଚନ ବା ଲେଖାରେ ନ ପାରିବେ ସେଠାରେ ବେନାମୀର ଆଶ୍ରୟ ନେବେ । ଯେଉଁଠାରେ ବେନାମୀ ଚିଠିଆଦି ଦେଖି ଉଦ୍ଦିଷ୍ଟ ବ୍ୟକ୍ତି ତାହା ଗ୍ରାହ୍ୟ କରିବେ ନାହିଁ ବୋଲି ଜଣାଯିବ, ସେଠାରେ ଆଉ ଗୋଟାଏ ବ୍ୟକ୍ତିର ମୁଖା ବାନ୍ଧି ଚିଠି ଓ ଲେଖା ବାହାରିବ - ପରର ଅନିଷ୍ଟାଚରଣ କରିବା ଯେତେବେଳେ ତାଙ୍କର ଉଦ୍ଦେଶ୍ୟ, ସେଥିରେ ନ୍ୟାୟ ଅନ୍ୟାୟ, ସତ୍ୟ ମିଥ୍ୟା, ଧର୍ମ ଅଧର୍ମର ବିଚାର ରଖିବା

ମେଁମେଁୟାଙ୍କ ଜାତକରେ ନାହିଁ । ଯାହାକୁ ବଳରେ ନ ପାରିବା, ତାକୁ କଳରେ ହଟାଇବା, ଯାହାକୁ ସତ୍ ଉପାୟରେ ନ ପାରିବା, ତାକୁ ଅସତ୍ ଉପାୟରେ ତଡ଼ିବା, ଆଲୋଚ୍ୟ ପ୍ରସଙ୍ଗରେ ଯାହାର ଦୋଷ ଦେଖାଇ ନ ପାରିବା, ତା ଉପରେ ପ୍ରସଙ୍ଗ ବହିର୍ଭୂତ, ଗୃହଛିଦ୍ର, ମିଥ୍ୟାକଳଙ୍କ, ମିଥ୍ୟାରୋପ, ମିଥ୍ୟା ଅପବାଦର କୁଢ଼ ଜମାକରିବା, ଯାହାକୁ ଶିଷ୍ଟ ଭାଷାରେ ନ ପାରିବା ତା ପ୍ରତି ଅଶିଷ୍ଟ ଭାଷା, ନୀଚ ଜନୋଚିତ ଭର୍ତ୍ସନା, ମାଛ ହାଟର ଢଗ ପ୍ରୟୋଗ କରିବା । ଏଗୁଡ଼ିକ ସବୁ ମେଁମେଁୟା ରୋଗୀଙ୍କର ଲକ୍ଷଣ ।

ଜେଜେବାପା ଏ ରୋଗର ଉପଶମ ପାଇଁ ଗୋଟିଏ ଦଶାଙ୍ଗ ପାଚନର ଡାବ ଖେଦାରେ ଲେଖି ଯାଇଅଛନ୍ତି । ସେ ପାଚନର ଉପାଦାନମାନ ଏଠାରେ ପୋଟଳି ବଣିଆଙ୍କ ଦୋକାନରେ ତଲାସ କଲୁ । ସମ୍ଭବତଃ, ଜେଜେବାପାଙ୍କୁ ଚାଳିଶା ହୋଇଥିବାରୁ ସେ ଲେଖିଲା ବେଳେ ଅକ୍ଷର ଓ ମାତ୍ରା ଭୁଲ କରିଅଛନ୍ତି; କିମ୍ବା ଆମ ପୋଟଳି ବଣିଆଙ୍କର ତଥା ଆମର ବୈଦ୍ୟଶାସ୍ତ୍ରର ପର୍ଯ୍ୟାପ୍ତ ଜ୍ଞାନ ନାହିଁ । ଫଳତଃ ସେ ପାଚନର ଉପାଦାନଗୁଡ଼ିକ ଠଉରାଇ ହେଉ ନାହିଁ । ପାଠକମାନଙ୍କ ମଧ୍ୟରୁ ଯେବେ କେହି କସରତ କରି ଏଥିରୁ କିଛି ଥୟ କଥା କାଢ଼ିପାରିବେ ତେବେ ସମାଜର ବିଶେଷ ଉପକାର କରିବେ; କାରଣ ଏ ରୋଗୀଙ୍କ ରୋଗ ଛଡ଼ାଇ ତାଙ୍କୁ ପ୍ରକୃତିସ୍ଥ ନ କରିବା ପର୍ଯ୍ୟନ୍ତ, କିମ୍ବା ଏହାଙ୍କର ମୂଳପୋଛ ନ କରିବା ପର୍ଯ୍ୟନ୍ତ ସମାଜରେ ମେଁମେଁୟାଙ୍କ ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ସମାଜରୁ ଶିଷ୍ଟତା, ଭଦ୍ରତା, ଶୀଳତା ଏ ସବୁ କ୍ରମଶଃ ଲୋପ ପାଇବ । ଏ ରୋଗଟା ଭାରି ସଂକ୍ରାମକ ଥିବାର ଜେଜେବାପା ଭାଖିଛନ୍ତି ।

ମେଁମେଁୟା ରୋଗର ପାଞ୍ଚଣ ଡାବ,
ମୁଥ (ମୁଥା ହେବ କି ?)
ହରିକାଠ (ହରୀତକୀ ହେବ କି ?)
ମୁଷ୍ଟି (ମୁଷ୍ଟି ପ୍ରମାଣ ବା ସିଓ ଫଳ ହେବ କି ?)
କଣ୍ଟୁରୀ (କଣ୍ଟୁରୀ ବା ବାଇଡଙ୍କ ହେବ କି ?)
ବେତ (ବେତସ ହେବ କି ?)
ମତ୍ସ୍ୟଣ୍ଡୀ (ଗୁଡ଼ ହେବ କି ?)
ସର୍ପ ଦଷ୍ଟ୍ରା (ବିଛୁଆତି ହେବ କି ?)

ଏ ପ୍ରତ୍ୟେକ ୫ (ନୋଟ୍ - '୫' କଅଣ ? ଲେଖା ନାହିଁ) ଏ ସବୁ ଯେତିକି ଗଧମୂତ ତହିଁର ୧ ଗୁଣ । ଚାରିପଣ ଅବଶିଷ୍ଟ ଥାଉଁ ଥାଉଁ ଓହ୍ଲାଇବ ।

ଏ ପାଚନର ଡାବ, ପରିମାଣ, ମିଶ୍ରଣ ଓ ପ୍ରସ୍ତୁତ ପ୍ରଣାଳୀ ଖେଦାରୁ କିଛି ଠଉରାଇ ହେଉ ନାହିଁ । ପାଠକ-ପାଠିକାମାନଙ୍କ ମଧ୍ୟରୁ କେହି ଯେବେ ରୋଗର ନିଦାନ ଓ ଲକ୍ଷଣରୁ ଡାବର ଅର୍ଥ ଜୁଟାଇ ପାରିବେ, ତେବେ ସାଧାରଣଙ୍କର ଉପକାର । କାରଣ ମେଁମେଁୟା ରୋଗ ଦିନକୁ ଦିନ ଦେଶରେ ବୃଦ୍ଧି ପାଉଛି । ପ୍ରତିକାର ଅବଶ୍ୟ କର୍ତ୍ତବ୍ୟ - ଇତି -

ରସଚକ୍ର : ୧୨ଶ ସଂଖ୍ୟା / ମାଘ, ୧୩୪୧ ସାଲ ।

॥ ଛଅ ॥

ଏଥର ଢେଙ୍କେବାପାଙ୍କ ଖେଦାରୁ ବାହାରୁଛି ଧନାରୋଗ । ଢେଙ୍କେବାପାଙ୍କ ଖେଦାରେ ଆଜି ଯାକେ ଯେତେଗୁଡ଼ିଏ ରୋଗ ଆମେ ଦେଖିଲୁଣି ଢେଙ୍କେବାପାଙ୍କ ନାମକରଣ ସଙ୍ଗେ ସେଗୁଡ଼ିକର ଆମ ଓଡ଼ିଶୀ ନାମମାନ ମିଳୁ ନାହିଁ - ଯେବେ ଖେଦାରେ ପ୍ରଦତ୍ତ ଲକ୍ଷଣମାନଙ୍କରୁ ରୋଗ ଚିହ୍ନା ଯାଇପାରେ ଓ ତହିଁର ପ୍ରତିକାର କରାଯାଇପାରେ ତେବେ ନାଆଁରେ ବେଶି କିଛି ଯାଏ ଆସେ ନାହିଁ ।

ଏ ରୋଗ ଧନୀମାନଙ୍କୁ ଧରିବାରୁ କିମ୍ବା ଧନ ବାହୁଲ୍ୟ ଯୋଗୁଁ ଏ ରୋଗର ଉତ୍ପତ୍ତି ଓ ବୃଦ୍ଧି ହେବାରୁ ବୋଧହୁଏ ବାପା ଏହି ନାମ ଦେଇଛନ୍ତି ।

ଆମ ପାଠ ଡାକୁଛି -

'ଯୌବନଂ ଧନ ସମ୍ପତ୍ତିଃ ପ୍ରଭୁତ୍ୱମବିବେକତା
ଏକୈକମପ୍ୟନର୍ଥାୟ କିମୁପତ୍ର ଚତୁଷ୍ଟୟଂ ?'

ଅର୍ଥାତ୍ ଯୌବନ, ଧନ, ପ୍ରଭୁତ୍ୱ ଓ ଅବିବେକିତା ଏ ପ୍ରତ୍ୟେକ ଅନର୍ଥର ମୂଳ । ଅତଏବ ଯେଉଁଠାରେ ଏ ଚାରିଟିଯାକ ଏକାଠେଇଁ ଥାଆନ୍ତି ସେଠାକଥା କହିଲେ ନ ସରେ ।

ଅନୁଭବୀ କବି ଦୀନକୃଷ୍ଣ ଜୀବନ ବିକଳରେ ରସ କଲ୍ଲୋଳରେ ଡାକ ପକାଇ ଅଛନ୍ତି ।

''କବି ଯା କରେ ମୂର୍ଖକୁ ସ୍ତୁତି, ଏଥିରୁ ବଳି ନାହିଁ ବିପତ୍ତି, ଏଥିକୁ ପ୍ରତି ଛାତିରେ କାତି - ମାରିବା ଭଲ ଯେ ।''

ଧନ ଅନେକ ପ୍ରକାରେ ଲୋକଙ୍କ ହାତକୁ ଆସେ  କେହି ନିଜର ମୁଣ୍ଡଝାଳ ତୁଣ୍ଡରେ ମାରି ଧନ କମାଏ, କେହି ପରପୁଅ ମୁଣ୍ଡରେ ନଡ଼ିଆ ଭାଙ୍ଗି ବିନା ପରିଶ୍ରମରେ ଧନ କମାଏ, କେହି ନାନା ଅସନା ଲଟରା କାମ କରି ଧନ କମାଏ, କେହି ଅନ୍ୟ ସଞ୍ଚିତ, ପୋତାନୋତା ନିଧିନିଖାତ ପାଇ ଧନ୍ୟ ହୁଏ, କେହି ପିତୃପିତାମହଙ୍କ ସଞ୍ଚିତ ମାଲ ପୁଳାକ ପାଇ ବଡ଼ଲୋକ ବନିଯାଏ, କେହି ସଂସାର ଆଖିରେ ଧୂଳି ପକାଇ ସାରା ଦୁନିଆରେ ଲୋକଙ୍କୁ ଓଲୁ ବନାଇ, ଲୋକଙ୍କ ମୁଣ୍ଡରେ, ପିଠିରେ, ଗୋଡ଼ରେ, ଦିହରେ, ହାତରେ ହାତ ବୁଲାଇ ଧନ କମାଏ, କେହି ପିତୃ ପିତାମହଙ୍କ ନାମ ଓ ସମ୍ପତ୍ତି ଓ ଜାତି ବିକି ଧନ କମାଏ, କେହି ପାଠ ବିକି, କେହି ବହି ବିକି, କେହି ମନ ବିକି, କେହି ସ୍ୱାଧୀନତା ବିକି, ଧର୍ମ ବିକି, କେହି ଆତ୍ମା ବିକି, କେହି ଗୋରୁ ଗାଈ, ହାତୀ, ଘୋଡ଼ା, ଛେଳି, ମେଣ୍ଢା, କୁକୁର, ଘୁଷୁରି ପାଳି ସେମାନଙ୍କୁ ଗରାଖଙ୍କ ପସନ୍ଦ ସହି ଓ ଦିହଲଗା ଭଳି ହେବା ପର୍ଯ୍ୟନ୍ତ ବଢ଼ାଇ ବଜାର ସରଗରମ ଥିଲାବେଳେ ଚେଳକାଳ ଉଣ୍ଡି ବିକି ଧନ କମାଏ । ସବାଖିଆକେଳା ଆପଣା ଦିହକୁ ଛୁରିରେ କାଟି ରକ୍ତ ବାହାର କରି ଧନ କମାଏ । କେହି ସିଆଣାପଣ କରି ଅନ୍ୟମାନଙ୍କୁ ସୋଧାସୋଧି କରି ନିଜର ସଚ୍ଚାପଣ, ନିଜର ନିଃସ୍ୱାର୍ଥପଣ, ନିଜର ଧନ ପ୍ରତି ବିତୃଷ୍ଣା ଓ ଘୃଣାର ଅଭିନୟ କରି ଧନ କମାଏ । କେହି ଆପଣା

ନିଲଠାପଣ ଜାହିର କରି ଧନ କମାଏ । ଏହିପରି ଧନ କମାଇବାର ନାନାମାର୍ଗ ଆମ୍ଭମାନଙ୍କ ଆଖିରେ ପଡୁଛି । କେହି ତାଡ଼ିଖାନା, କେହି ଦାଢ଼ିଖାନା, କେହି ଗାଡ଼ିଖାନା, କେହି ଶାଢ଼ିଖାନା, କେହି ଜାଡ଼ିଖାନା କେହି ହାଡ଼ିଖାନା, କେହି ନାଡ଼ିଖାନା, କେହି ଝାଡ଼ିଖାନା, କେହି ଧାଡ଼ିଖାନା କରି ଧନ କମାଏ, କେହି ଛାପାଖାନା, କେହି ସମ୍ବାଦପତ୍ର ଖାନା, କେହି ଧପାଖାନା, କେହି ସାହେବୀଖାନା କେହି ଦେଶୀଖାନା, ଏହିପରି ନାନା ଉପାୟରେ ଧନ କମାଏ; ଧନ କମାଇବାର ଓ ବଢ଼ାଇବାର ସବୁ ମାର୍ଗ ଓ ସୂତ୍ରମାନ ପାଠକମାନଙ୍କୁ ବତାଇ ଦେବା ଦ୍ୱାରା ଖୋଦ୍ ଆମର ଧନାର୍ଜ୍ଜନର ବାଟରେ କଣ୍ଟା ବୁଜିବା ଆମର ଉଦ୍ଦେଶ୍ୟ ନୁହେଁ ।

ସଂସାରରେ ମୁନି କହ, ଯୋଗୀ କହ, ମହାତ୍ମା କହ, ମହାପୁରୁଷ କହ, ପରମହଂସ କହ, ଶାସ୍ତ୍ର କହ, ଯେ ଯାହା କହିବାର କହନ୍ତୁ, ଆମେ ଅନୁଭବରେ ଦେଖୁଥାଇଁ- ଧନ ବିନା କାହାରି ଢୋକ ଚଳେ ନାହିଁ । ଶଙ୍କରାଚାର୍ଯ୍ୟ କହିଗଲେ 'ଅର୍ଥ ମନର୍ଥଂ ଭାବୟ ନିତ୍ୟଂ' ନାସ୍ତିତତଃ ସୁଖ ଲେଶଃ ସତ୍ୟଂ', ଅର୍ଥାତ୍ ଅର୍ଥ ସବୁ ଅନର୍ଥର ମୂଳ ବୋଲି ଜାଣ । ଅର୍ଥରେ ତିଳେ ମାତ୍ର ସୁଖ ନାହିଁ । ପରମହଂସ ରାମକୃଷ୍ଣ ଦେବ କହିଗଲେ ''କାମିନୀ କାଞ୍ଚନ ସବୁ ଅନର୍ଥର ମୂଳ, ଏ ଦୁହିଁଙ୍କୁ ତ୍ୟାଗ କର'' ଆବହମାନ କାଳରୁ ସବୁ ଯୁଗରେ, ସବୁ କାଳରେ, ସବୁ ଦେଶରେ, ସବୁ ଧର୍ମରେ ମହାପୁରୁଷମାନେ ଓ ଶାସ୍ତ୍ରକାରମାନେ ଉପଦେଶ ଦେଇଯାଇ ଅଛନ୍ତି ଯେ - ଧନ ହେୟ, ଧନକୁ ଘୃଣା ଚକ୍ଷୁରେ ଦେଖିବ, ଧନକୁ ଧୂଳି ମୁଠାକ ପରି ମୂଲ୍ୟହୀନ ମଣିବ । କିନ୍ତୁ ଆମେ ଫଳରେ କଅଣ ଦେଖୁଥାଇଁ ?

ଧନୈଷିଷ୍କୁଳାନାଃ କୁଳୀନାଭବନ୍ତି,
ଧନୈ ରୀତାଦଂ ମାନବା ନିସ୍ତରନ୍ତି
ଧନେଭ୍ୟଃ ପରଂ ବାନ୍ଧବୋନାସ୍ତି ଲୋକେ
ଧନାନ୍ୟର୍ଜ୍ଜୟଧ୍ୱଂ ଧନାନ୍ୟର୍ଜ୍ଜୟଧ୍ୱଂ ।

ଅର୍ଥାତ୍ ଧନ ଯାହା ପାଖରେ ଅଛି, ସେ ଅକୁଳା ହୋଇ ମଧ ଉଚ୍ଚକୁଳରେ ନାମ ଲେଖାଉଛି, ଧନ ଯୋଗୁଁ ଲୋକେ ନାନା ଆପଦରୁ ଉଦ୍ଧାର ପାଉଛନ୍ତି । ଏ ସଂସାରରେ ଧନ ଅପେକ୍ଷା ବଡ଼ବନ୍ଧୁ ମନୁଷ୍ୟର ନାହିଁ, ଅତଏବ ଧନ ହିଁ ଅର୍ଜ୍ଜନ କରିବାରେ ଲାଗ ।

ଆର୍ଯ୍ୟମାନେ ଜୀବନକୁ ଚାରି ଆଶ୍ରମରେ ବାଣ୍ଟି ଦେଇଗଲେ – ଜୀବନର ପ୍ରଥମ ଚଉଠକ ବ୍ରହ୍ମଚର୍ଯ୍ୟ, ଦ୍ୱିତୀୟ ଚଉଠକ ଗୃହସ୍ଥାଧର୍ମ, ତୃତୀୟ ଚଉଠକ ବାନପ୍ରସ୍ଥ ଓ ଶେଷ ଚଉଠକ ଭିକ୍ଷୁଆଶ୍ରମ । ସମସ୍ତଙ୍କୁ ଉପଦେଶ ଦେଇଗଲେ ଏ ସଂସାରର ଜଞ୍ଜାଳରେ ଲଟେଇ ପଟେଇ ଉବେଇ ଟୁବେଇ ହୁଅନା । ସଂସାର ବିରାଗୀ ହୋଇ 'ଧନଜନ ଗୋପଲକ୍ଷ୍ମୀ ଏ ସବୁକୁ ଛାଡ଼ି ଏକା ସେହି ପରମାତ୍ମାଙ୍କଠାରେ ଲୟ କର । କିନ୍ତୁ ଶେଷରେ ଭାଖିଗଲେ ଗୃହସ୍ଥ ଆଶ୍ରମ ହିଁ ଅନ୍ୟ ସବୁ ଆଶ୍ରମର ପୋଷଣାହାରି ଅତଏବ ଗୃହସ୍ଥାଶ୍ରମହିଁ ଶ୍ରେଷ୍ଠାଶ୍ରମ । ମନୁଷ୍ୟର ଚତୁର୍ବର୍ଗ (ଧର୍ମ, ଅର୍ଥ, କାମ ଓ ମୋକ୍ଷ) ମଧ୍ୟରେ ଅର୍ଥକୁ ଦେଇ ଗଲେ ଦ୍ୱିତୀୟ ସ୍ଥାନ । ପୋଥିରେ 'ପୋଥି ବାଇଗଣ' ଲେଖାହେଲା ପ୍ରକାରେ, ବାଡ଼ିରେ

'ବାଡ଼ି ବାଇଗଣ' ଫଳିଲା ଆଉ ଏକ ପ୍ରକାରେ । ଧନକୁ ସମସ୍ତେ ମୁହଁରେ ନିନ୍ଦା କରିଗଲେ ଓ କରୁଛନ୍ତି, କିନ୍ତୁ ଧନ ପାଇଁ ହାତ ଓ ପେଟ, ମୁହଁ, କାନ, ବେକ, ପିଠି ପତଉଛନ୍ତି ସମସ୍ତେ । ଯୋଗୀ, ଭିକାରି, ପୀର, ଫକୀର, ସେଣ୍ଟ୍ ପାଦରୀ ଅର୍ହତ୍ କ୍ଷପଣକଙ୍କ ଠାରୁ ଆରମ୍ଭ କରି ମହାତ୍ମା ମହାପୁରୁଷ ପର୍ଯ୍ୟନ୍ତ ସମସ୍ତେ ହେଲେ ମୁହଁରେ ଧନର ନିନ୍ଦୁକ, କିନ୍ତୁ ଧନ ପାଇଁ ସମସ୍ତେ ପତେଇଲେ ଅଣ୍ଟି । କିରେ ! ଧନ ତ ଦରକାର ନାହିଁ ବୋଲି ଘୋଷୁଛ, ଏଣେ ଧନ ପାଇଁ କାନି ପତଉଛ କାହିଁକି ? ଯେ ଯାହା କହୁ, ଫଳ କଥା ଏହି ଯେ, ବିନା ଧନରେ 'ମଥୁରା ଗମନ' ନ ହୁଏ ରେ ବାବା ! ଅତଏବ ଏଥିପାଇଁ ଧନୀଙ୍କ ପିଛା ଧର, ଧନୀଙ୍କ ଛାମୁରେ ମୁହଁ ହରାଅ, ମହତ ସରାଅ, ଅଭିନୟ କରାଅ, ମୁଣ୍ଡଝାଳ ତୁଣ୍ଡରେ ମରାଅ, ଧନୀଙ୍କ ଛେଳି, ମେଣ୍ଢା, କୁକୁର, ଗଧ ପର୍ଯ୍ୟନ୍ତ ଚରାଅ, ଧନୀଙ୍କ ତୀବ୍ର ସମାଲୋଚକମାନଙ୍କୁ ଡରାଅ ଓ ତାଙ୍କ ଅନୁଗ୍ରହ ଲାଭ କରି ଦୁଃଖସାଗରରୁ ତୁମେ ଓ ତୁମ ପିଲା ପିଚକାଏ ତରିବାର ଉପାୟ କରାଅ । ଆଲୋ ମଉସା ଜଡ଼ ପଇସା । ପେଟ ପୋଷ, ନାହିଁ ଦୋଷ । ଯେତେଦିନ ଯାକେ ମନୁଷ୍ୟ ଏ ସଂସାରରେ ଚଳାଚଳ ହେଉଥିବ, ସେତେଦିନ ଯାକେ ହାଡ଼ ମାଉଁସ ଉପରେ ଚମଘେରା ଏ ଧଡ଼ି ଖଣ୍ଡିକ ଥିବ, ଯା'ରି ଭିତରେ ଗୋଟାଏ ପାଆକିଆ ହାଣ୍ଡି ଭଳି ଗୁମ୍ଫଟିଏ ଥିବ ଓ ତାକୁ ଦିନାନ୍ତେ ନିକୁଛ ପକ୍ଷରେ ଦୁଇଥର ଲିପାପୋଛା କରି ତାଜା କରିବାକୁ ହେଉଥିବ; ଏଥିପାଇଁ ଦରକାର ପଚପଚିଆ ମାଲ । ସେ ପଚପଚିଆ ମାଲ ବିନା ଧନରେ ନ ହୁଏରେ ବାବା ! ଏ ଧଡ଼ ଚଳୁଥିବା ଯାକେ ଏ ଗହ୍ୱର ପୂର୍ଣ୍ଣ ହେବା ପାଇଁ ଦରକାର ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ, ଏ ଧଡ଼ ପାଇଁ ଲୋଡ଼ା ପରିଧେୟ, ଶୟନୀୟ; ଏଥିପାଇଁ ଦରକାର ଖଣ୍ଡେ ଆଶ୍ରମ ବା ଘର ଓ ଲମ୍ବରେ ୬ ଫୁଟ ଓ ଚଉଡ଼ାରେ ୨ ଫୁଟ ଭୂମି । ଏତକ ମୌଳିକ ଅଭାବ କଥା ବୁଝାଗଲା ବାଦ ଏ ଧଡ଼ିର ସୁଖ ପାଇଁ, ସଉକୀ ପାଇଁ, ଫରମାସ ପାଇଁ, ଖାମଖିଆଲି ପାଇଁ, ଭୋଗ ପାଇଁ, ଯୋଗ ପାଇଁ, ଏ ଧଡ଼ର ଆତ୍ମରକ୍ଷା ପାଇଁ, ଗମନାଗମନ ପାଇଁ, ଏକାଧିକ ଧଡ଼ଧାରୀଙ୍କ ମଧ୍ୟରେ କଥାଭାଷା, କଳିକଜିଆ, ଦୁଃଖସୁଖ, ମନଓରମାନାଣ୍ଡଣ ଆଦି ପାଇଁ ଦରକାର କାଗଜ-କଲମ, ବହିପତ୍ର, ତେଲ-ସାବୁନ, ଏସେନ୍ସ ଅର୍କ, ପାନ ବିଡ଼ି, ହାଣ୍ଡିଆ ଧାନୁଆ, ସଂବାଦପତ୍ର, ପତ୍ରିକା, ଯାନବାହନ, ପୋଷାକ ପହରଣ, ଚଉକି ମେଜ ଆଦି ବମେ ସରଞ୍ଜାମ । ବଂଶବୃଦ୍ଧି ପାଇଁ ଲୋଡ଼ା ବିବାହ, ସାହଚର୍ଯ୍ୟ, ସନ୍ତାନପାଳନ ସ୍ୱାସ୍ଥ୍ୟରକ୍ଷା ପାଇଁ ଲୋଡ଼ା ଓଷଦ, ଚୁଣିମୁଣି, ମୂଳମୂଳକା, ପଦଗଦ ଇତ୍ୟାଦି ଇତ୍ୟାଦି । ଏହିପରି ଯେଉଁଆଡ଼େ ଚାହିଁବ ଦେଖିବ ଯେ ସବୁକଥା ପାଇଁ ଲୋଡ଼ା ଧନ । ଏ ଧଡ଼ମାନଙ୍କ ପାଇଁ ନିତି କେତେ ଫେଡ଼ାମିଶା, ହରଗୁଣ, ଓଡ଼ାଙ୍କ ମେରାଙ୍କ, ସିଧି ରସ୍ତୁ, ଆଉଁଶାଘଷା, ଛିଞ୍ଚାବିଞ୍ଚି, ଛେରାପହଁରା, ବିବାହବନ୍ଧନ ଓ ଛେଦନ, ବଂଶରକ୍ଷା ଓ ବଂଶଲୋପ ପେଞ୍ଚପାଞ୍ଚ, ଭୁଆବିହୁଡ଼ା ଏହିପରି ଲାଗିଥିଲା, ଲାଗୁଛି ଓ ଲାଗିଥିବ । ଏଥିପାଇଁ ଲୋଡ଼ା ଧନ । ଧନ ଆସିବ କାହୁଁ ? ଅତଏବ ଯାହାଙ୍କଠାରେ ଧନ ଅଛି, ତାଙ୍କ ପାଖେ ଅଧିଆ ନ ପଡ଼ିଲେ ଗୁଜରାନ୍ ନ ମେଣ୍ଟେ । ଏ ସୃଷ୍ଟିକୁ ଯେ ଭିଆଣ

କରିଛନ୍ତି ବା କରିଥିବାର କଳ୍ପିତ ହୋଇ ଅଛନ୍ତି, ସେ ସବୁକ୍ଷେତ୍ରରେ ଦୁଇଟି ଲେଖାଏଁ ପରସ୍ପର ବିପରୀତ ବସ୍ତୁ ଖଞ୍ଜିଛନ୍ତି- ଯଥା ଅନ୍ଧାର-ଆଲୁଅ, ଧନୀ-ନିର୍ଧନ, ଲକ୍ଷ୍ମୀ-ସରସ୍ୱତୀ, ଧନ-ମନ, ଭାବ-ଅଭାବ, ଜହ୍ନପକ୍ଷ-ଅନ୍ଧାରପକ୍ଷ, ପଡ଼ିଆ-ଉଠିଆ । କେଉଁଠାରେ ଗୋଟିଏ କଥା ପାଇବ, ସେଠାରେ ଅନ୍ୟ କଥାଟି ନାହିଁ । ଅନ୍ଧାର ଥିବା ଜାଗାରେ ଆଲୁଅ ନାହିଁ, ଧନୀ ପାଖେ ନିର୍ଧନ ନାହିଁ, ଲକ୍ଷ୍ମୀଙ୍କ ପାଖେ ସରସ୍ୱତୀ ନାହାନ୍ତି, ଧନ ପାଖେ ମନ ନାହିଁ, ଭାବ ପାଖେ ଅଭାବ ନାହିଁ । ଜହ୍ନପକ୍ଷ ବେଳେ ଅନ୍ଧାରପକ୍ଷ ନାହିଁ । ଏହି ସବୁ ଅଭାବ ପୂରଣ ହିଁ ସଂସାରର ନିତ୍ୟଲୀଳା । ସବୁଲୀଳା ଭିତରେ ଦେଖ ସେହି ଧନ ଓ ଧନର ଆବଶ୍ୟକତା ଅଶିକ୍ଷିତକୁ ଶିକ୍ଷିତ କରିବାକୁ ହେବ, ଅଛବକୁ ଛୁଆଁ କରିବାକୁ ହେବ, ବିବରାକୁ ସବରା କରିବାକୁ ହେବ, ପଡ଼ିଆ ଜମିକୁ ଉଠିଆ କରିବାକୁ ହେବ; ଏ ସବୁରି ପାଇଁ ଲୋଡ଼ା ଧନ । ଏ ଧନ ଆସିବ କାହୁଁ ? ଓ "ଯେସନେ ସର୍ବ ନଦନଦୀ, ଶେଷରେ ମିଳନ୍ତି ଜଳଧି ।" ସେହିପରି ସମସ୍ତଙ୍କର ଧାଉଡ଼ି ପଡ଼ିଲା ଶେଷକୁ ଧନୀଙ୍କ ସଂଦହୁଆରକୁ; ଏ ସଂସାରେ ଯେତେ ଯେତେ ଅଭାବ ରହିଅଛି ତାକୁ ପୂରଣ କରିବାକୁ ସେ ସବୁ ଅଭାବକୁ ଦୂର କରିବାକୁ, ଏ ଦୁନିଆର ସବୁ ଧନୀଙ୍କ ପାଖେ ଥିବା ଧନ ଯଥେଷ୍ଟ ନୁହେଁ, ଏ କଥା ସ୍ୱତଃସିଦ୍ଧ । ସବୁ ଅଭାବ ତ ଏକାଦିନକେ କିମ୍ବା ଏକା ଜଣକେ ପୂରଣ ହୋଇପାରିବ ନାହିଁ । ସବୁ ଶିରାଯାକ ବେକରେ ଗୋଛା ହେଲାଭଳି ଦୁନିଆର ପ୍ରାର୍ଥନା ସ୍ରୋତତକ ଯାଇ ହେଲା ଗୋଛା ଧନୀମାନଙ୍କ ଗୋଡ଼ତଳେ । ଦେଖିଲାବେଳକୁ ସେଥିମଧ୍ୟରୁ ଅଧିକାଂଶକୁ ଧରିଅଛି 'ଧନାରୋଗ' ।

ଢେଙ୍କେବାପାଙ୍କ ଖେଦା ଲିଖିତ 'ଧନାରୋଗ' ବିଷୟ ବୁଝାଇବା ପାଇଁ ଧୂନ୍ଧୁମାର ପାଣିକୁ ଏତକ ପରିଶ୍ରମ କରିବାକୁ ପଡ଼ିଲା । ବର୍ତ୍ତମାନ ଖେଦା ଅନୁସାରେ ଧନାରୋଗର ଲକ୍ଷଣମାନ ଏଠାରେ ଦିଆଗଲା ।

ଏ ରୋଗୀ ପ୍ରତ୍ୟେକେ ମନେକରନ୍ତି ଯେ, ଏ ପୃଥିବୀରେ ଯାହା ଉତ୍କୃଷ୍ଟ, ଯାହା ପୂଜ୍ୟ, ଯାହା ଆଦରଣୀୟ, ଯାହା ପ୍ରଶଂସନୀୟ, ଯାହା ଖେୟ, ଯାହା ପେୟ ସବୁ ମୋଠାରେ କେନ୍ଦ୍ରୀଭୂତ ।

ଏ ସଂସାରର ସଭ୍ୟତା, ମନୁଷ୍ୟତା, ଗ୍ରାହକତା, ବିଦ୍ୱତ୍ତା, ଭାବୁକତା, ଦାତୃତା, ଭଦ୍ରତା, ସୁଗୁଣବତ୍ତା, ହୃଦୟବତ୍ତା, ଧର୍ମପ୍ରାଣତା ସବୁର କେନ୍ଦ୍ର ଏକା 'ମୁଁ' । ମୋଠାରେ ଧନ ଅଛି, ଅତଏବ ମୁଁ ସଂସାରକୁ ଭଦ୍ରତା ଶିଖାଇବାରେ ଅନ୍ୟମାନଙ୍କର ବିଶେଷତଃ ମୋ ଛାମୁରେ ଉପସ୍ଥିତ ଅର୍ଥୀମାନଙ୍କର ଗୁରୁ ହେବି । ମୋ ପାଖରେ ଧନ ଅଛି, ଅତଏବ ଏ ଧନ ବଳରେ ମୁଁ କିଣିପାରିବି ଏ ପ୍ରତ୍ୟର୍ଥୀ ଲୁଚାଙ୍କର ମନ, କଲମ, ମହତ୍ତ୍ୱ । ଏମାନଙ୍କର ଓ ଏମାନଙ୍କ ଓ୍ୟାଲି, ଓ୍ୱାରସ ଉତ୍ତରାଧିକାରୀ, କାମ, ମୋକାଏମ, ପିଲାପିଚିକାମାନଙ୍କର ମନ, କଲମ, ମହତ୍ତ୍ୱ । ଯେ ମୋ ପାଖକୁ ଧନ ପ୍ରାର୍ଥନା କରିବାକୁ ଆସୁଛି ଓ ଆସିବ ତାର ପୁଣି ସମ୍ମାନଟାଏ କଅଣ ? ତାର ପୁଣି ମାନାପମାନ ବୋଧ କଅଣ ? ତାର ପୁଣି ମନୁଷ୍ୟତା

କାହିଁ ? ମୁଁ ଧନ ନ ଦେଲେ ମଧ୍ୟ ସେ ମୋ ଆଗରେ କାନି ପାରିବାକୁ ସଙ୍କଳ୍ପ କରି ତା ଘରୁ ପାଦ କାଢ଼ିଲା ବେଳେ ତାର ମାନମହତ୍ତ୍ୱ, ମାନାପମାନ, ଶୀତୋଷ୍ଣ-ବୋଧ, ନିନ୍ଦାସ୍ତୁତି-ବୋଧ ଏ ସବୁକୁ ଆପଣା ଦେହରୁ ଉତାରି ତାହା ପେଡ଼ିରେ ଥୋଇଦେଇ ଆସିଛି । ମୁଁ ତ ତାର ଦ୍ୱାରସ୍ଥ ହୋଇ ନାହିଁ, କି ମୁଁ ତ ତା'ପାଖେ ହାତ ପତାଇବାକୁ ଯାଇ ନାହିଁ, କି ମୁଁ ତା ବାଡ଼ିଦୁଆରେ ଲୁଙ୍ଗୁପୁଙ୍ଗୁ ହେବାକୁ ଯାଇ ନାହିଁ, ଯେତେବେଳେ ମୋ ପାଖେ ଶରଣାର୍ଥୀ, ମୋ ଛାମୁରେ ସାହାଯ୍ୟପ୍ରାର୍ଥୀ, ମୋ ସିଂହଦୁଆରେ ଅନୁଗ୍ରହାର୍ଥୀ, ମୋ ଦିହୁଡ଼ିରେ ଭିକ୍ଷାର୍ଥୀ, ସେତେବେଳେ ମୋ ବଚନ ହିଁ ହେବ ଏହାର ଗୁରୁବଚନ, ମୋ ଆଚରଣ ହିଁ ହେବ ଏହାର ଆଦର୍ଶ, ମୋ ମୁଖନିଃସୃତ ଗାଳି ହେବ ହିଁ ଏହା ପକ୍ଷରେ କର୍ଣ୍ଣରସାମୃତ, ମୁଁ ଯାହାକୁ ଧନ ଦେବି, ସେ ଓ ତାର ଉପର ତଳ ସାତପୁରୁଷ ହେଲେ ଓ ହେବେ ମୋର ଜାଗିରିଖିଆ ନଉକର, ମୋର ହେତାଖିଆ ସ୍ତାବକ, ମୋର ଦରମା ଖିଆ ଭାଟ । କିନ୍ତୁ ମୁଁ ଧନ ନ ଦେଲେ ମଧ୍ୟ ଯେତେବେଳେ ଏ ମୋର ଦ୍ୱାରସ୍ଥ ହେଲାଣି, ସେତେବେଳେ ମୁଁ ମୋରଂ ବ୍ୟକ୍ତିଗତ ପରାକ୍ରମର ପ୍ରମାଣ ଟିକିଏ ଏହାକୁ ଦେଖାଇ ଦେଇଥାଏଁ । ଆମ ଢେଙ୍କେବାପ ତ ଟୁଣିମୁଣି ବ୍ୟବସାୟରେ ପରିବାର ପୋଷୁଥିଲେ । ଏହି ବ୍ୟକ୍ତିଗତ ପେଟ ପୋଷାକୁ ସେ ଜାତିଗତ ଓ ଓ୍ୟାରସଗତ କରିବାକୁ ଇଚ୍ଛା କରି ଗୋଟିଏ ଭିଷକ୍ ଚତୁଷ୍ପାଠୀ ପ୍ରତିଷ୍ଠା କରିବାର କଳ୍ପନା କଲେ । ଚଉପାଢ଼ିରେ ପଢ଼ିବା ଛାତ୍ରମାନେ ବିନା ଖରଚାରେ ଢେଙ୍କେବାପାଙ୍କ ମକ୍କଲଙ୍କର ଚିକିତ୍ସା ଓ ସେବା କରିବେ, ପୋଟଳୀବଣିଆ ଦୋକାନରୁ ଓ ବଣ ଜଙ୍ଗଲରୁ ଚେର ମୂଳ ବିନା ଖରଚାରେ ସଂଗ୍ରହ କରି ଆଣିବେ । ମୂଳମୂଳିକା ଓ ଔଷଧ ଯାକ କାଟିବେ, ବାଟିବେ, ଛେଚିବେ, ଚୂରିବେ, ଛାଣିବେ, ତୈଳ ରାନ୍ଧିବେ, ମୋଦକ ପାଗ କରିବେ, ବଟିକା ବଳିବେ । ଏସବୁ କାମ କରିବାକୁ ଢେଙ୍କେବାପା ଗୁଡ଼ିଏ ମାଗଣା ଓ ବେଠିଆ ବୋଲକରା ପାଇବେ । ମକ୍କଲଙ୍କ ଠାରୁ ଯାହା ମିଳିବ ସେତେକ ପାଇବେ ଢେଙ୍କେବାପା, କାମ କରିବେ ଚଉପାଢ଼ିର ଛାତ୍ରବୃନ୍ଦ । ଢୋଲ ଖାଇବ ମାଡ଼, ହାଡ଼ି ଖାଇବ କଉଡ଼ି । ଦେଶରେ ଗୋଟାଏ ପ୍ରଧାନ ଅଭାବ ଥିଲା ତାର ଢେଙ୍କେବାପା ଦାରା କରିବେ ବୋଲି ଦୃଢ଼ ସଂକଳ୍ପ କରିଥିବା କଥା ସ୍ୱନାମୀ ଓ ବେନାମୀରେ ସମ୍ବାଦପତ୍ର ଓ ପତ୍ରିକାମାନଙ୍କରେ, ପ୍ରେରିତ ପତ୍ର, ସ୍ଥାନୀୟ ପତ୍ର, ସାମ୍ବାଦିକଙ୍କ ପତ୍ର, ପ୍ରତିନିଧିଙ୍କ ପତ୍ର, ସାକ୍ଷାତ୍ ଦ୍ରଷ୍ଟାଙ୍କ ପତ୍ର, ସମ୍ପାଦକୀୟ ପତ୍ର, ଏହିପରି ହେଡ଼ିଙ୍ଗରେ ଦିନାକେତେ ବାହାରିଲା । ଦେଶସେବା-ରୂପ-ବ୍ରତ ନିଃସ୍ୱାର୍ଥ ଭାବରେ କରିବାକୁ ଅଣ୍ଟା ଭିଡ଼ି ଥିବାରୁ ଦେଶ ବିଦେଶରେ ଢେଙ୍କେବାପାଙ୍କର ଖୁବ୍ ଗୋଟାଏ ନାଆଁ ବାଜିଗଲା ଓ ବିନା ଖରଚାରେ ଖବରକାଗଜବାଲାମାନେ କଳ୍ପିତ ଚଉପାଢ଼ିର ବିଜ୍ଞାପନ ପ୍ରକାଶ କଲେ । ଛାତ୍ରମାନଙ୍କର ଚଉପାଢ଼ିରେ ପ୍ରବେଶାର୍ଥ ଦରଖାସ୍ତମାନ ଆସିଲା, ଚଉପାଢ଼ି-ସଂଲଗ୍ନ ବ୍ରହ୍ମଚର୍ଯ୍ୟ-ଛାତ୍ରାଶ୍ରମରେ ଆସନ ପ୍ରାର୍ଥନାକାରୀ ଭାବି ଅଧ୍ୟୟନେଚ୍ଛୁମାନଙ୍କ ଆବେଦନମାନ ଓ ବିଦ୍ୟାଳୟରେ ଶିକ୍ଷକତା ପଦ ପଦପ୍ରାର୍ଥୀମାନଙ୍କ ଅରଜିମାନ ଡାକରେ ଓ ହାତରେ

ଢେଙ୍କେବାପାଙ୍କ ଠାକୁ ଆସିବା ସୁରୁ ହେଲା । ଏସବୁ ତ ହେଲା 'ପୁଣ୍ୟାହବାଚନ' । ଏତିକିରେ ତ କାମ ସରିବ ନାହିଁ । ଖଣ୍ଡିଏ ଚଉପାଢ଼ି ଓ ଛାତ୍ରାଶ୍ରମ ପାଇଁ ଧନ ଦରକାର । ଖବରକାଗଜବାଲାଙ୍କୁ ଓ ନିର୍ଧନ ସାଧାରଣଙ୍କ ଆଖିରେ ଧୂଳିଦେବା ସହଜ, କିନ୍ତୁ ଧନୀଙ୍କଠାରୁ ଧନ କାଢ଼ିବା ତ ଏଡ଼େ ସହଜ ନୁହେଁ । କି ଉପାୟରେ କୌଣସି ସ୍ୱନାମଧନ୍ୟ ଧନୀଙ୍କ ଆଖିରେ ଅନ୍ଧପୋଟଳା ବାନ୍ଧି ତାଙ୍କ 'ଟ୍ରେଜରି'ରୁ କିଛି ଧନ କଢ଼ାଇବାକୁ ହେବ, ଆମ ଢେଙ୍କେବାପା ଓ ଢେଙ୍କେମାଆ, ଢେଙ୍କେଭାଇ, ଢେଙ୍କେନାନୀ, ଢେଙ୍କେକକେଇ ଓ ଢେଙ୍କେଖୁଡ଼ୀ ବସି ଗୋଟାଏ ଘମାଘୋଟିଆ କବାଟକିଳା ପରାମର୍ଶ ସଭା ହେଲା । ସ୍ଥିର ହେଲା ଯେ ଯେଉଁ ବ୍ୟକ୍ତି ଏ ବିଦ୍ୟାଳୟର ଗୃହ ଓ ଛାତ୍ରାବାସ ନିର୍ମାଣ କରିବା ପାଇଁ ଅର୍ଥ ସାହାଯ୍ୟ କରିବେ, ତାଙ୍କରି ନାମରେ ବା ତାଙ୍କ ଘରଆଡ଼ଙ୍କ ନାମରେ ଏ ଅନୁଷ୍ଠାନର ନାମକରଣ ହେବ । ଏ ଥୋଁପ ଗିଳିବାର ଉପଯୁକ୍ତ ଜଣେ ଧନୀକୁ ସ୍ଥିର କରିବା ପାଇଁ ସମ୍ବାଦପତ୍ରର ଅଫିସମାନଙ୍କୁ ଯାଇ ସମ୍ପାଦକଙ୍କ ଅନୁଗ୍ରହରୁ ବଢ଼ିଆ ବଢ଼ିଆ ମାର୍କାଦାର ଧନୀ ଗ୍ରାହକମାନଙ୍କ ନାମ ଟିପା ହୋଇ ଆସିଲା । ଦେଖାଗଲା ଯେ ଅଧିକାଂଶ ନାମବଡ଼ା ଗ୍ରାହକମାନେ ଅଦିଆ ଓ ବିନ୍ଧଣା, କଅଁଳକୁହା ଓ ରକତବୁହା, ଅର୍ଦ୍ଧରଦିଆ ଓ ଭିଃ ପିଃ ଲେଉଟା, ମୁହଁ ଲେଫଡ଼ା ଓ ଦର୍ଶନ ଥୋଡ଼ା ଅଟନ୍ତି । ଦୁଇହଜାର ବର୍ଗମାଇଲ ରକବା ମଧ୍ୟରେ ଢେଙ୍କେବାପାଙ୍କର ପସନ୍ଦ ହେଲେ ସାଢ଼େ ସାତଜଣ ଅର୍ଥାତ୍ ସାତଜଣ ସାବାଳକ ଓ ଜଣେ ନାବାଳକ । ଏଥି ମଧ୍ୟରୁ ନାବାଳକଙ୍କ କଥା ଛାଡ଼ିଦେଇ ବାକି ୭ ଜଣଙ୍କ ମଧ୍ୟରୁ କାହା ପାଖକୁ ଯିବାକୁ ହେବ ? ଆଖୁ କିଆରିରେ ପଶି କିଛି ସ୍ଥିର ହୋଇ ନ ପାରିବାରୁ ଆମ ଢେଙ୍କେମାଉସୀ କହିଲେ ଗୁଳା ପକାଯାଉ ଓ ଯେଉଁ ଭଗବାନ୍‌ଙ୍କ ନାମର ଟିକଟ ଗୁଳାରେ ଉଠିବ ତାକୁହିଁ ଢେଙ୍କେବାପା ଏ ଚଉପାଢ଼ିର ପୃଷ୍ଟପୋଷକ ଓ ଉଦରପୋଷକ ହେବାପାଇଁ ଯାଇ ପଗଡ଼ିବେ । ଢେଙ୍କେବାପାଙ୍କ ପଣନାତି ଗୁଳା ଉଠାଇଲେ । ଗୁଳା ଉଠିଲା ଜଣେ କୁଞ୍ଚୁକୁଞ୍ଚୁଆ ମାଗୁର ନିଶୁଆ ହିଆ-ଅବାଳୁଆଙ୍କ ନାମରେ । ଢେଙ୍କେବାପା ସେଠାକୁ ଯିବାର ଗୋଟାଏ କଦର ସ୍ଥିର କଲେ । 'ଅଙ୍ଗୁଳି ପ୍ରବେଶାଦ୍ ବାହୁ ପ୍ରବେଶଃ ।' ଢେଙ୍କେବାପା ସୁପାରିସ ବଳରେ ସେ ଗ୍ରାହକଙ୍କ ଦ୍ୱାରେ ଯାଇ ପହଞ୍ଚିଲେ । ସେଠାରେ ଖୁବ୍ ମୌଖିକ (ଅର୍ଥାତ୍ ମୁହଁରେ ଓ ତୁଣ୍ଡ ବା ପାଟିରେ) ସମ୍ବର୍ଦ୍ଧନା ପାଇ ଢେଙ୍କେବାପାଙ୍କ ମନ କୁଣ୍ଢେ ମୋଟ ହୋଇଗଲା । ଢେଙ୍କେବାପାଙ୍କ କାୟିକ, ମାନସିକ, ଆଧ୍ୟାତ୍ମିକ, ଆଧିଭୌତିକ, ଆଧିଦୈବିକ, ଦୁଃଖମାନଙ୍କ ପ୍ରଶମନାର୍ଥ ମାଆଲକ୍ଷ୍ମୀଙ୍କ ଭଣ୍ଡାରରୁ, ମାଆ ସରସ୍ୱତୀଙ୍କ ଗନ୍ତାଘରୁ, ମାଆ ଅଲକ୍ଷ୍ମୀଙ୍କ ଟ୍ରେଜରିରୁ ବଛା ବଛା ମାଲମାନ ଆସି ଉପସ୍ଥିତ ହେଲା । ଗ୍ରାହକଙ୍କ ଚଳନ୍ତି ପ୍ରତିମା, ଅଚଳନ୍ତି ପ୍ରତିମା, ବିଜେ ପ୍ରତିମା, ପାର୍ଶ୍ୱ ଦୈବତ ପ୍ରତିମା, ବୀର ପ୍ରତିମା, ବାର ପ୍ରତିମା, ଜନନୀ ପ୍ରତିମା, କନ୍ୟା ପ୍ରତିମା ସମସ୍ତଙ୍କୁ ଆଣି ଗ୍ରାହକ ଢେଙ୍କେବାପାଙ୍କୁ ଦର୍ଶନ କରାଇଲେ । ଢେଙ୍କେବାପାଙ୍କ ସେବା କରିବା ପାଇଁ ଦାସଦାସୀ, ମୂଲିଆ ମୂଲିଆଣୀ, କର୍ମଚାରୀ କର୍ମଚାରିଣୀ, ପାର୍ଶ୍ୱଚର ପାର୍ଶ୍ୱଚରା, ବଡିଗାର୍ଡ଼ ବଡିଗାର୍ଡ଼ୀ,

ସମସ୍ତେ ଖଞ୍ଜା ହେଲେ । ପୃଥିବୀରେ କଛନୀୟ ସବୁ ପ୍ରକାର ସୁଖ ଓ ଚର୍ଚ୍ଚା ଓ ସେବା ପାଇ ଢେଙ୍କେବାପା ଏ ସଂସାରରୁ ହାବଳି ଭଳିଆ ଉଠି ଲମ୍ଫେ ଲମ୍ଫେ ସ୍ୱର୍ଗକୁ ଲମ୍ଫ ଦେଲେ । ରାତିରେ ଢେଙ୍କେବାପା ଅତିରିକ୍ତ ମାତ୍ରାରେ କୃଷ୍ଣସେବା କରି ଢୁଳାଉଛନ୍ତି, ତାଙ୍କୁ ସ୍ୱପ୍ନ ହେଲା ଯେ ଗ୍ରାହକଙ୍କର ଧନାରୋଗ । ସେଥିକି ଚାହିଁ ସାବଧାନ ନ ହେଲେ ସବୁ ପରିଶ୍ରମ, ସବୁ ଆଶା, ସବୁ ଅଳି, ସବୁ ଅର୍ଦ୍ଦୋଳି, ସବୁ ସୁଖସ୍ୱପ୍ନ ମାଟି ହୋଇଯିବ । ଢେଙ୍କେବାପାଙ୍କର ଚାଉଁକିନି ଘୁମ ଭାଙ୍ଗିଗଲା । ସେ ବଡ଼ି ଝଟପଟିରୁ ନିତ୍ୟ ଓ ଅନିତ୍ୟ କର୍ମମାନ ସାରି ବଗଳାମୁଖୀ ସ୍ତୋତ୍ର ପାଠ କରି 'ଶତମଷ୍ଟୋଉର' ବଗଳାମୁଖୀ ମନ୍ତ୍ର ଜପ କରି ଶଗଡ଼ ଦଣ୍ଡାପରି ଏକ ଉର୍ଦ୍ଧ୍ୱ ପୁଣ୍ଡ୍ରକାଟି, ପିନ୍ଧା ପାଲୁଡ଼ା ଧଡ଼ାଚୂଡ଼ା ହୋଇ ସୂର୍ଯ୍ୟୋଦୟ ହେଲା ବେଳକୁ ଯାଇ ପହଞ୍ଚିଲେ ଧନୀଙ୍କ ଦରବାରରେ । ପାଖ ଲୋକଙ୍କ ଠାରୁ ବୁଝିବାରେ ଜଣାଗଲା ଯେ ଧନୀଙ୍କର ପହଡ଼ ଭାଙ୍ଗି ନାହିଁ । ପହଡ଼ ଭାଙ୍ଗିଲା ବାଦ୍ ଶୂଳେଇ ବିଜେ ଓ କାଠିଲାଗି ହେବା ପରେ ପନିଅର ଲାଗି, ମର୍ଦ୍ଦନ ଲାଗି ହେବ ଓ ଦିହପାଣି, ଦେବାର୍ଚ୍ଚନ ଓ ଶୀତଳମୁଣୋହି ଯୋଗାଣ ପରେ ସେ ଦରବାରରେ ବିଜେ କରିବେ । ସେଦିନ ପହଡ଼ ଭାଙ୍ଗିବାକୁ ବିଳମ୍ବ ହେଲା, ନା ପ୍ରତିଦିନ ସୂର୍ଯ୍ୟୋଦୟ ପରେ ପହଡ଼ ଭାଙ୍ଗେ, ଏକଥା ଢେଙ୍କେବାପା ପାଖ ଲୋକଙ୍କ ଠାରୁ ବୁଝିବାରେ ଜଣାଗଲା ଯେ ମାଲିକଙ୍କୁ କାଲି ରାତିରୁ 'ଧନାରୋଗ'ର ଫିଟ୍ ଧରିଛି, ଏଥିପାଇଁ ଆଜି ଟିକିଏ ଉଠିବାକୁ ବିଳମ୍ବ ହେବ । ପାର୍ଶ୍ୱଚରମାନେ କହିଲେ ଛାମୁଙ୍କ ବଂଶରେ ପୂର୍ବେ ଏ ରୋଗ ନ ଥିଲା । ତାଙ୍କ ମାତୃ ଅଂଶରୁ ଏ ରୋଗ ଉପକ୍ରମିବାର ଜଣାପଡୁଛି - ଧନୀଙ୍କର ତଳିଆ ଭାଇ ଦୁଇ ଜଣ ଅଛନ୍ତି, ତାଙ୍କୁ ମଧ୍ୟ ଧନାରୋଗ । ଧନାରୋଗର ପ୍ରଧାନ ଲକ୍ଷଣ ଏହିକି ରୋଗୀଙ୍କ ସଦର ଡେରକ୍ସୁଡ଼ୀ ଡବଲ ଲକ୍କୁ ଯାଇଥିବା ତହବିଲର ଲେଉଟ ସୁଅ ପଡ଼ିବାର ଉପକ୍ରମ ହେଲେ ତାଙ୍କୁ ଧନାରୋଗର ଫିଟ୍ ହୁଏ ଓ ଏ ଲେଉଟ ସୁଅର ଆଶଙ୍କା କମିଗଲେ ଧନାରୋଗର ହପ୍ପା କମିଯାଏ, କିନ୍ତୁ ବରାବର ଏହା ରୋଗୀକୁ ଛାଡ଼େ ନାହିଁ । ଏଥିପାଇଁ କେତେ ଡାକ୍ତର, କେତେ ବୈଦ୍ୟ, କେତେ ହକିମ, କେତେ ହୋମିଓପାଥି, କେତେ-ଆଲୋପାଥି, କେତେ ହାଇଡ୍ରୋପାଥି, କେତେ ଇଲେକ୍ଟ୍ରୋପାଥି, କେତେ ବାୟୋପାଥି, କେତେ କାୟୋପାଥି ଆସିଲେଣି, ସମ୍ୟକ ଫଳ ଦର୍ଶୁ ନାହିଁ । ଢେଙ୍କେବାପା ତ ଆମର ନିପଟ ମଫସଲିଆ, ସେ କେବେ ଧନାରୋଗର ଅନୁଭବ କରି ନ ଥିଲେ, ଏଥିପାଇଁ ଥରେ ଏ ରୋଗର ହାଲଚାଲ ଜାଣିବାପାଇଁ କୌତୂହଳ ହେଲା ଓ ଧନୀରୋଗୀଙ୍କର ତଟକା ଲକ୍ଷଣମାନ ଦେଖିବା ପାଇଁ ଢେଙ୍କେବାପା ଟାକି ରହିଲେ, ଘଡ଼ିକ ବାଦ ଅନ୍ଦର ମହଲରେ ଶଙ୍ଖ ଓ ତୂରୀ ବାଜି ଉଠିଲା । ଦରବାରର ଓ ଧନୀବାଟୀର ସବୁଆଡ଼େ କୋଳାହଳ ଲାଗିଗଲା ଯେ ଛାମୁଙ୍କର ପହଡ଼ ଭାଙ୍ଗିଲା - ଦଣ୍ଡେ ଘଡ଼ିଏ ଲେଖାଏଁ ଯାଉଥାଏ, ଥରେ ଲେଖାଏଁ ଶଙ୍ଖ କାହାଳୀ ବାଜିଉଠେ, ହୁଲର ହୁଏ ଯେ ଛାମୁ ଶୂଳେଇ ବିଜେ ହେଲେ । ଛାମୁ କାଠିଲାଗି ହେଲେ, ପନିଅର ଲାଗି, ଫୁଲୁରିଲାଗି ଦିହପାଣି ହେଲେ । ଦିନ ୧୦ଟା ବେଳକୁ ଯୁଗପତ ଘଣ୍ଟ ମାଦଳ, ତୂରୀ

କାହାଳି, ଶଙ୍ଖ ମହୁରି, ଘଷାଢୋଲକୀ ବାଜି ଉଠିଲା । ସବୁଆଡ଼େ ସୋର ହୋଇଗଲା ଯେ ଛାମୁ ଦୈବାର୍ଚ୍ଚନକୁ ବିଜେ କଲେ - ଦିନ ୧୧ଟା ବାଜି ୩୫ ମିନିଟ ହେଲାବେଳକୁ ଛାମୁ ବଇଠକଖାନା ବା ଦରବାର ହଲକୁ ବିଜେ କରି ଆଜ୍ଞା ହେଲେ । ଢେଙ୍କେବାପା ଛାମୁକୁ ଦେଖି ଆସନ ତ୍ୟାଗ କରି ଅଣ୍ଟାଠାରୁ ସମସ୍ତ ପୂର୍ବାଙ୍ଗକୁ ଭୂମିର ସମତଳ କରି କରତଳ ଦ୍ୱୟକୁ ପୁଟୀକୃତ କରି ଗୋଟାଏ ରସରସିଆ ଆଶୀର୍ବାଦ ଶ୍ଳୋକ ଆବୃତ୍ତ କଲେ । ଶ୍ଳୋକଟି ସଂସ୍କୃତରେ ଥିବାରୁ ଓ ଆଜିକାଲି ପାଟଣା ବିଶ୍ୱବିଦ୍ୟାଳୟ ସଂସ୍କୃତ ଶିକ୍ଷାକୁ ବାଧତାମୂଳକ କରୁ ନ ଥିବାରୁ କାଳେ ପାଠୁଆ ପାଠୋଇଙ୍କର ସଂସ୍କୃତ ଶ୍ଳୋକର ତାତ୍ପର୍ଯ୍ୟାର୍ଥେ ଦିଆଗଲା :- ମାଆଲକ୍ଷ୍ମୀ ଆପଣଙ୍କ ଘରେ ବିରାଜନ୍ତୁ, ମାଆ ସରସ୍ୱତୀ କଣ୍ଠରେ ବିଜେ କରନ୍ତୁ, ମାଆ ଜନ୍ମଦାତ୍ରୀ ଅରଣ୍ୟରେ ରହନ୍ତୁ, ମାଆ ଖାଦ୍ୟଦାତ୍ରୀ ବାଡ଼ିଆଡ଼େ ରହନ୍ତୁ, ମାଆକୁଟୁନ୍ତୁଣୀ ଢିଙ୍କିଶାଳରେ ରହନ୍ତୁ, ମାଆ ସହଧର୍ମିଣୀ ଉଆସରେ ରହନ୍ତୁ, ମାଆ ଅନ୍ନପୂର୍ଣ୍ଣା କାଶୀରେ ରହନ୍ତୁ, ମାଆ ଡାକ୍ତରୁଣୀ ମଲୁଖାନାରେ ରହନ୍ତୁ, ମାଆ ବଗଳା ଛାମୁଙ୍କ ଶତ୍ରୁଙ୍କ ବାଡ଼ିଆଡ଼େ ରହନ୍ତୁ, ମାଆ ଛିନ୍ନମସ୍ତା ଛାମୁଙ୍କ ଶ୍ରୀଅଙ୍ଗରେ ବିଜେ କରନ୍ତୁ, ମାଆ ଧୂମାବତୀ ଛାମୁଙ୍କ ନଅରରେ ରହନ୍ତୁ, ମାଆ ମେରୀ ଗିରିଜାରେ ରହନ୍ତୁ, ମାଆ ଖାଦିଜା ମସ୍‌ଜିଦରେ ରହନ୍ତୁ । ଛାମୁ ଏ ଶ୍ଳୋକଟି ଶୁଣି ପ୍ରସନ୍ନ ହୋଇଗଲା ଭଳି ତାଙ୍କ ମୁଖସିଂଘାରରୁ ଢେଙ୍କେବାପାକୁ ମାଲୁମ ପଡ଼ିଲା । ଛାମୁ ଲଥକିନି ଆସନରେ ବସିଗଲେ । ସେଥିରୁ ଢେଙ୍କେବାପା ନିଜର ଏ ଯାତ୍ରାର ଉଦ୍ଦେଶ୍ୟ ବୟାନ କରିବାକୁ ଲାଗିଲେ । ଦେଖୁ ଦେଖୁ ଧନୀ ଶିବନେତ୍ର, ଗର୍ଦ୍ଦଭକର୍ଣ୍ଣ, ରୋମାଞ୍ଚିତ କଳେବର, ମୁଷ୍ଟିବଦ୍ଧ ହସ୍ତ, କୁକୁର ନାସିକ, କାକମୁଖ ପାଲଟିଲେ । ପଛକୁ ଢେଙ୍କେବାପାଙ୍କୁ ଲକ୍ଷ୍ୟ କରି ଭାଷିଲେ-

(୧) ଆପଣ ଯେ ଆପଣଙ୍କ ଚଉପାଢ଼ିରେ ଆମକୁ ପୃଷ୍ଟପୋଷକ କରିବାକୁ ପ୍ରସ୍ତାବ କରୁଛନ୍ତି ସେଇଟା ଗୋଟାଏ ସହରିଆ ଅନୁଷ୍ଠାନ ଥିବାରୁ ସେଥିରୁ ପୃଷ୍ଟ ପୋଷଣ କରିବାକୁ ଆମ ଉଆସଆଡ଼େ ଭାରି ନାରାଜ, ଏମନ୍ତ କି କାଲି ଆପଣ ଏଥିଲାଗି ଆସିବାର ଖବର ଆମ ଅନ୍ତଃପୁରରେ ରାଷ୍ଟ୍ର ହୋଇଯିବାରୁ ଉଆସ ଆଡ଼ର ମଣିମା ଏପରି ନାରାଜ ହୋଇ ଯାଇଛନ୍ତି ଯେ 'ଚରଣାୟୁଧବୃନ୍ଦ ରଚିଲାରେ' ତଥାପି ସେ ମାନଗଣ୍ଠି ଫିଟିଲାରେ । ଏହାହିଁ ଆମର ବିଳମ୍ବ ପହଡ଼ ଭଙ୍ଗାର ମୁଖ୍ୟ କାରଣ ।

(୨) ଆମେ ଯେତେ ଯେତେ କୀର୍ତ୍ତି ଆମ ମଫସଲରେ କଲୁଣି ସେଥିପାଇଁ ତ ଇଲାକା ଯାକ ପିଷ୍ଟପେଷଣ କରି ସାରିଲୁଣି । ମନୁଷ୍ୟକୁ ବଳଦ, ମଇଁଷି କଲୁଣି, କୁକୁରକୁ ମନୁଷ୍ୟ କଲୁଣି, ପଶୁକୁ ପକ୍ଷୀ କଲୁଣି, ଭଲଲୋକକୁ ବୋକ୍‌କା ବନେଇଲୁଣି, ପୁରୁଷକୁ ସ୍ତ୍ରୀ କଲୁଣି, ସ୍ତ୍ରୀକୁ ପୁରୁଷ କଲୁଣି, ଜନୟିତ୍ରୀଙ୍କୁ କେରଲୀ କଲୁଣି ଆଉ ଏ ମଫସଲ୍‌ର ବାହାରେ କୀର୍ତ୍ତି କଲେ ଆମର ଆଉ ବେଶି କଅଣ ନାମ ହେବ ?

(୩) ଆମ ଇଲାକାରେ ଆମ୍ଭ ବାହୁଛାୟାରେ ବାସ କରୁଥିବା ଚାରିଜାତି ଛତିଶ ପାଟକମାନେ ରାମରାଜ୍ୟ ଅପେକ୍ଷା ବେଶି ମଉଜରେ ଶିବରାଜ୍ୟରେ ଅଛନ୍ତି ।

ସହରିଆଗୁଡ଼ାକ ଭାରି ଓଲ୍ଲୁ । ସେମାନେ ମ୍ୟୁନିସିପାଲିଟି ଖାସମାହାଲରୁ ଉଠି ଆମ ମଫସଲରେ କିଆଁ ବସୁବାସ କରି ବାଳବଚ୍ଚା ଧରି ରହୁ ନାହାନ୍ତି, ତୁମେ ଆମ ଗାଆଁଯାକ ବୁଲି ଆସ, ଆମେ ଆମେ ଗାଆଁବାଲାଙ୍କୁ ଏପରି ସନ୍ତୁଷ୍ଟ କରି ରଖିଛୁଁ ଯେ ଏ ଗାଆଁର ବିରାଡ଼ିଛୁଆଟିଏ ସୁଦ୍ଧା ଆମ ବିରୋଧରେ ପଦେ କହିବ ନାହିଁ । ସମସ୍ତଙ୍କ ମୁହଁ ଏକବାରିକ ଜଉମୁଦରେ ବନ୍ଦ । ଏହାଠାରୁ ଶିବରାଜ୍ୟର ଆଉ କି ଜ୍ୱଳନ୍ତ ପ୍ରମାଣ ମିଳିବ ?

(୪) ବଦମାସ୍ ସହରିଆଗୁଡ଼ାକ ଆମ ନାମରେ ବେଳେବେଳେ ଖବରକାଗଜରେ ଯେଉଁ ବାଜେ କଥା, ଅମୂଳକ, ଅଡ଼ାଳକ, ଅପତ୍ରିକ, ଅଖଣ୍ଡିକ କୁତ୍ସାମାନ ରଚନା କରନ୍ତି ତାର ପ୍ରତିବାଦ ତୁମେମାନେ ନ କର କିଆଁ ?

(୫) ତୁମ ଚଉପାଢ଼ିକୁ ଯେବେ ସହରରୁ ଉଠାଇ ଆଣି ଆମ ମଫସଲରେ କରିବ ତେବେ ଆମେ ତୁମକୁ କୋହଳ ଜମାରେ ଖଣ୍ଡିଏ ଜମି ଇଚ୍ଛାଧୀନ ପ୍ରଜାରୂପେ ପଟ୍ଟାଦେବା, ବେଠିରେ ଚଉପାଢ଼ି ଓ ଛାତ୍ରାବାସ ତୋଳାଇ ଦେବା, ବେଠିରେ ଚେର ମୂଳିମୂଳିକା ଅଣାଇ ଦେବା; ମାଗଣ କରି ତୈଳ, ଔଷଧ ଓ ମୋଦକାଦି ପାଇଁ ଘିଅ, ତେଲ, ଗୁଡ଼, ଚିନି ଆଦି ଯୋଗାଇବା, ଏମନ୍ତ କି ଏ ବିଦ୍ୟାଳୟ ପାଇଁ ବେଠିରେ ଶିକ୍ଷକ ଜୁଟାଇଦେବା । ଏତେ ସୁବିଧା ପାଇବାର ଆଶାକୁ ଛାଡ଼ି ତୁମେ ସହରରେ କିଆଁ ଏ କାମ କରୁଛ ?

(୬) ସବୁ ପ୍ରକାରେ ତୁମର ପୃଷ୍ଟପୋଷଣ, ଉଦର ପୋଷଣ, ଶରୀର ପୋଷଣ, ସ୍ୱାସ୍ଥ୍ୟ ପୋଷଣ, ଇଜ୍ଜତ ପୋଷଣ, ଧନ ଶୋଷଣ, ମନତୋଷଣର ଭାର ଆମେ ଗ୍ରହଣ କରିବାକୁ ପ୍ରସ୍ତୁତ ଅଛୁଁ । କିନ୍ତୁ ଏଥିର ପ୍ରତିବଦଳରେ ତୁମକୁ କେତେଗୁଡ଼ିଏ କର୍ମ କରିବାକୁ ହେବ । ସେଗୁଡ଼ିକ କରିପାରିଲେ ତୁମେ ଆମର ଜଣେ ପ୍ରଧାନ ପାର୍ଶ୍ୱଚର, ପୃଷ୍ଠଚର, ବହିଶ୍ଚର, ଅନ୍ତଶ୍ଚର, ଉଦରଚର, ପାଦଚର, କର୍ଣ୍ଣଚର ହେବ ଓ ସେଥିପାଇଁ -

(କ) ଦେଶ ବିଦେଶର ଓ ବିଶେଷତଃ ତୁମ ସହରର ଭଦ୍ର ଓ ପଦସ୍ଥ ବ୍ୟକ୍ତିମାନଙ୍କ ଗୃହଛିଦ୍ର ପାରିବାରିକ ବ୍ୟକ୍ତିଗତ କୁତ୍ସା ତୁମକୁ ଖୋଜିବାକୁ ହେବ ଓ ଯୋଡ଼ିବାକୁ ହେବ ଓ ସେଗୁଡ଼ିକ ନିୟମିତ ରୂପେ ଆମ ଛାମୁକୁ ଯୋଗାଇବାକୁ ହେବ ଓ ଆବଶ୍ୟକ ପଡ଼ିଲେ ଉକ୍ତ ବିଷୟମାନଙ୍କ ସତ୍ୟତା ସମ୍ବନ୍ଧେ ତୁମ୍ଭଙ୍କୁ ମୌଖିକ ଓ ଲିଖିତ ହଲଫାନ ପ୍ରମାଣ ଯୋଗାଡ଼ କରିବାକୁ ହେବ ।

(ଖ) ଭଦ୍ର ସମାଜରେ ଆମ୍ଭେ ଥିବା ସମୟରେ ଓ ବିଶେଷତଃ ଦେଶର ମାନ୍ୟଗଣ୍ୟ ଲୋକେ ଆମ ପାଖେ ଥିଲାବେଳେ ଆମେ ତୁମ୍ଭ ନାମରେ ଓ ତୁମ ପରିବାରବର୍ଗଙ୍କ ନାମରେ ଯେଉଁ ଯେଉଁ ନାମୁସ୍କୀ କଥା ଓ କାହାଣୀମାନ କହିବୁ ସେଗୁଡ଼ିକ ସତ୍ୟ ଥିବାର ତୁମକୁ ସେମାନଙ୍କ ଆଗେ କହିବାକୁ ପଡ଼ିବ, ନଚେତ୍ ଅନ୍ତତଃ ମୁଣ୍ଡ ଟୁଙ୍ଗାରିବାକୁ ପଡ଼ିବ ।

(ଗ) ତୁମ୍ଭଙ୍କୁ ଆମ୍ଭେ ଓ ଆମ୍ଭର ଭ୍ରାତା, ଭଗ୍ନୀ, ସ୍ତ୍ରୀ, ମାତା, ପାର୍ଶ୍ୱଚର, କୁଳଚର, ବିଲଚର, ଜଳଚର, ସ୍ଥଳଚର, ଉଭୟଚର, ଖଳଚର, ଦଳଚରମାନେ ଯେତେବେଳେ

ଯାହା ଗାଳି ବା ଅପମାନ ଦେବୁଁ ତାହା ତୁମେ ସହାସ୍ୟ ମୁଖରେ ଓ ସରସ ବଦନରେ ଗ୍ରହଣ କରୁଥିବ ।

(ଘ) ପ୍ରତି ସପ୍ତାହରେ ଆମ ନାମରେ ଗୁଡ଼ିଏ କଳ୍ପିତ ପ୍ରଶଂସା ଓ ପ୍ରଶଂସ୍ତାଜନକ ସମ୍ବାଦ ଦେଶର ଭିନ୍ନ ଭିନ୍ନ ସମ୍ବାଦପତ୍ରମାନଙ୍କରେ ଓ ପୁସ୍ତକ ପୁସ୍ତିକାରେ ତୁମେ ପ୍ରକାଶିତ କରିବ ।

(ଙ) ଯେଉଁଠାରେ ମୁହଁରେ ବା ଲେଖାରେ ଆମର କେହି ନିନ୍ଦା ବା କୁତ୍ସା କରୁଥିବେ ତାହାର ସଙ୍ଗେ ସଙ୍ଗେ ତୀବ୍ର ଓ ଅଭଦ୍ର ପ୍ରତିବାଦ କରିବ ।

(ଚ) ଆମ ଛାମୁରେ ପ୍ରତ୍ୟର୍ଥୀ ରୂପେ ଠିଆହେବା ବେଳଠାରୁ ତୁମର ପଦ ମର୍ଯ୍ୟାଦା, ବୟସ ମର୍ଯ୍ୟାଦା, ବଂଶ ମର୍ଯ୍ୟାଦା, ପାରିବାରିକ ଶାନ୍ତି, ନୈତିକତା, ଧାର୍ମିକତା ଆଦି କିଛି ରହିବ ନାହିଁ ।

(ଛ) ଆମେ ଦେବୁ ତୁମକୁ ଧନ, ଏହି ଆଶା କୁହୁକର ବଦଳରେ ତୁମେ ବଳିଦେବ ତୁମର ବିବେକକୁ, ତୁମର ସତ୍ୟକୁ, ତୁମର ଧର୍ମକୁ, ତୁମର ହୃଦୟକୁ, ତୁମ ପାପପୁଣ୍ୟ ବିଚାରକୁ ।

(ଜ) ଅଶ୍ଳୀଳତା, ନିଷ୍ଠୁରତା, ମିଥ୍ୟାବାଦିତା, ଭୁରୁଡ଼, କ୍ରୂରତା, ନିଅକ୍ଲତା, ଅନୈତିକତା, ପାପାଚାର ଏଗୁଡ଼ିକ ୬ ମାସ ସକାଶେ ଆମ ଉଆସ ସଂଲଗ୍ନ ବିଦ୍ୟାଳୟରେ ନିଯୁକ୍ତ ଓସ୍ତାଦମାନଙ୍କଠାରୁ ସାର୍ଟିଫିକେଟ ହାସଲ କରିବ ।

(ଝ) ତୁମ ସାମନାରେ ନରହତ୍ୟା, ବଳୋତ୍ପୀଡ଼ନ (ବାଳଉପୁଡ଼ା ନୁହେଁ) କର୍ଣ୍ଣ-ସ୍ଫୋଟନ, କେଶାକର୍ଷଣ, ମୁଖରେ ନିଷ୍ଠୀବନ ପ୍ରକ୍ଷେପ ଆଦି ଜୀବନ ନିର୍ଯାତନ ଯାହା ଘଟିବାମାନ ଘଟିବ, ତାହା ଘଟି ନାହିଁ ବୋଲି ହଲପ କରିବାକୁ ହେବ ।

ଏସବୁ ସର୍ତ୍ତରେ ତୁମେ ରାଜି ହେଲେ ଆମେ ତୁମର କଳ୍ପିତ ଚଉପାଢ଼ିର ବିଶିଷ୍ଟ ପୃଷ୍ଠ-ପୋଷକ ହେବାକୁ ପ୍ରସ୍ତୁତ ଅଛୁଁ ଓ ଏ ଅନୁଷ୍ଠାନର ଶୁଭ ଦେବା ପାଇଁ ଆମେ ଜଣେ ବଢ଼ିଆ ହାକିମକୁ ନିମନ୍ତ୍ରଣ କରିବୁଁ ।

ଏହି ସମସ୍ତ କଥା ଶେଷ ହେଲା ବେଳକୁ ଛାଇ ଗଡ଼ିଲାଣି । ଢେଢେବାପାଙ୍କୁ ଧନୀ କହିଲେ ଯେ, ଏ ସର୍ତ୍ତମାନ ଲେଖାପଢ଼ି ଓ ଦସ୍ତଖତ୍ କରି ରେଜେଷ୍ଟର କରିଦେଲେ ଆମ ଭଣ୍ଡାରର ଦ୍ୱାର ତୁମ ପାଇଁ ଉଜୁଆଁ ରହିବ । ସବୁ ତୁମର, କିନ୍ତୁ ସାବଧାନ ! କାହିଁରେ ତୁମେ ହାତ ଦେବ ନାହିଁ -

ଢେଢେବାପା ଏ ସବୁ ସର୍ତ୍ତ ଶୁଣି କହିଲେ ଯେ, ଏଥିରେ ତ ଆମ ଚେତାଳ ଘରବାଲୀଙ୍କ ପାଳନୀୟ କେତେକ କଥା ଅଛି । ଅତଏବ ମୁଁ ଯାଇଁ ଛାମୁଙ୍କ ଶ୍ରୀମୁଖେରିତ ପଦମାନ ଆମ ଘରଆଡ଼େ ଜଣାଇ ତାଙ୍କ ମତ ନେଇ ତାଙ୍କୁ ସଙ୍ଗରେ ଆଣି ଦଲିଲ ଲେଖାପଢ଼ି କରିଦେବି । ଢେଢେବାପା ମୁହଁରେ ସିନା ଏତକ କହିଲେ, କିନ୍ତୁ ପେଟରେ ହାତ ବୁଲାଇ ଦେଖିଲେ ଯେ ତାଙ୍କ ପିଳେହି ପାଣି ହୋଇ ଯାଇଅଛି । ଘରୁ ଅନୁକୂଳ କଲାବେଳେ ତେଲୀ ବାପୁଡ଼ା, ଶାଗୁଣା, ଖାଲିମାଠିଆ ଆଦି ଦେଖି ଆସିଥିବା କଥା ତାଙ୍କର ମନେପଡ଼ିଲା ।

ଘରକୁ ଫେରିଆସି ଧନୀଙ୍କଠାକୁ ନିମ୍ନଲିଖିତ ପତ୍ର ଦେଲେ, ଧନୀଶେଠ ! ଆପଣ ଯେବେ ଏହି ଏହି ସର୍ତ୍ତ ମୋ ପକ୍ଷରେ ଲେଖିଦିଅନ୍ତି ତେବେ ମୁଁ ଆପଣଙ୍କ ଭଳି ଜୀବଙ୍କ ପୋଷଣ ଭାର ନେବାକୁ ପ୍ରସ୍ତୁତ ଅଛି, ଅନ୍ୟଥା ''ନଗଙ୍ଗଦତ୍ତଃ ପୁବରେତିକୂପଂ । ମୁଁ ଧନାରୋଗର ଲକ୍ଷଣମାନ ବୁଝିବା ପାଇଁ ଛାମୁକୁ ଯାଇଥିଲି - ଖେଦା ପାଇଁ ମୋର ମାଲମସଲା ସଂଗ୍ରହ ହେଲା । ମାଆଙ୍କୁ କହିଦେବ ବଳଦ ବିକିବେ ନାହିଁ, ମୋ ବଇକ୍ଷମ ହେବା କଥା ନୋହିଲା - ଛତି'' ।

ଏ ଚିଠିଖଣ୍ଡି ଢେଙ୍କେବାପା ଡାକଲଫାଫାରେ ମୁଦି ଡାକଘରେ ପକାଇ ଡାକମୁନ୍ସିଙ୍କ ଠାରୁ ଖଣ୍ଡିଏ ପୋଷ୍ଟିଙ୍ଗ ସାର୍ଟିଫିକେଟ ହାସଲ କରି ଘରକୁ ଫେରିଲେ । ଧନାଶେଠ ଏ ଚିଠି ପାଇଲେ କି ନାହିଁ, ତାହା ଭଗବତୀଙ୍କୁ ଗୋଚର । କିନ୍ତୁ ସେଦିନ ଠାରୁ ଧନାଶେଠଙ୍କର କୌଣସି ସମ୍ବାଦ ଢେଙ୍କେବାପାଙ୍କୁ ମିଳି ନ ଥିଲା । ଏଥିର କେତେଦିନ ବାଦ ଢେଙ୍କେବାପାଙ୍କ ସଂସାର ଲୀଳା ସାଙ୍ଗ ହେଲା । ଫଳତଃ ଧନାରୋଗ ପୋଥି ପାଠ ହୋଇ ରହିଗଲା ।

ରସଚକ୍ର : ୨ୟ ଭାଗ, ୧ମ ସଂଖ୍ୟା, ୧୩୪୧ ସାଲ ।

## ।। ସାତ ।।

### ଢୋକାରୋଗ

[ ନୋଟ ]

ପାଠକ ପାଠିକାମାନେ ଧୁନ୍ଧୁମାର ପାଣିଙ୍କ ସଙ୍କଳିତ ଢେଙ୍କେବାପାଙ୍କ ଟୁଣିମୁଣିର ପୂର୍ବ ପୁଡ଼ାମାନଙ୍କରୁ ଅବଶ୍ୟ ଠଉରେଇ ଥିବେ ଯେ 'ଯାହା ବାପ ଚଢ଼େ ଘୋଡ଼ା, ତା ପୁଅ ଚଢ଼େ ଥୋଡ଼ା' ଏ ପ୍ରବଚନ ଅନୁସାରେ ପାଣିଏ ମଧ ନାଡ଼ିଚିପା ସମ୍ବନ୍ଧେ ନିପଟ ମୂର୍ଖ ନୁହନ୍ତି । ବଂଶାନୁଗତ କାମଟା ତାଙ୍କର ରକ୍ତମଜ୍ଜାଗତ ହେବାରୁ ପାଣିଏ ରୋଗୀଟାଏ ଦେଖିଲେ କିମ୍ବା ମଲୁଠାରେ ବଇଦ ଡାକତର ଲାଗିବାର ଦେଖିଲେ ସେ ମୁକର ଘରକୁ ଯାଇ ଢେଙ୍କେବାପାଙ୍କ ଟୁଣିମୁଣି ଦରାଣ୍ଡନ୍ତି ଓ ପରିଦୃଷ୍ଟ ରୋଗୀର ରୋଗ କଅଣ, ନିଦାନ କଅଣ, ସେଥିପାଇଁ ପାଞ୍ଚଣ କଅଣ, ଏହାସବୁ ମୁଣିରେ ଥିବା ଖେଦାରୁ ଉଣ୍ଡି ରୋଗୀ ପ୍ରତି ଅନାହୂତ ଉପକାର ବାଢ଼ି ବସନ୍ତି । ଆଜିକାଲି ପାଣିଙ୍କ ଦୃଷ୍ଟିରେ ଜାତିଏ ରୋଗୀ ପଡୁଛନ୍ତି । ସେ ରୋଗ ସମ୍ବନ୍ଧରେ ଜ୍ଞାତବ୍ୟ ବିଷୟମାନ ଜାଣିବା ପାଇଁ ସେ ରୋଗର ନାମଟା ତ ଖେଦାରୁ ଠିକଣା କରିବା ଦରକାର । ଖେଦାରେ ଅନେକ କିସମର ଦୈହିକ, ମାନସିକ, ନୈତିକ, ଭୌତିକ, ଆତ୍ମିକ ରୋଗର ବିଷୟ ଓ ନାମ ଥିବା କଥା ଆଗରୁ ଆପଣମାନେ ଜାଣିଛନ୍ତି । କେତେଗୁଡ଼ିଏ ରୋଗ ଟିପା ଅଛି, ତହିଁର ନାମ ସଙ୍ଗେ ଆଜିକାଲିର ନାମ ମିଳୁ ନାହିଁ, ତଥାପି ପାଣିଏ ଛାଡ଼ିବା ଜନ୍ତୁ ନୁହନ୍ତି । ଆଜିକାଲି ପାଣିଙ୍କ ହାବୁଡ଼େ ଯେଉଁ ରୋଗୀ ପଡୁଛନ୍ତି ସେ ରୋଗ ସମ୍ବନ୍ଧେ ଖେଦା କଅଣ ଡାକୁଛି ଏହା ଅନୁସନ୍ଧାନ କରିବାକୁ ଖେଦା

ଲେଉଟାଇ ପାଣିଏ ଏ ପ୍ରସ୍ତାବର ଶିରୋଦେଶରେ ଲେଖାଥିବା ରୋଗର ନାମୋଲ୍ଲେଖ ପାଇଲେ । ପାଣି କହନ୍ତି ଯେ ଢେଙ୍କେବାପାଙ୍କ ନାମକରଣ ସର୍ବଜନବୋଧ ନ ଥିବାରୁ ଏହାକୁ 'ଛେପ ଢୋକା ରୋଗ' କିମ୍ବା 'ପକାଛେପ ଢୋକାରୋଗ' କହିଲେ ନାମରୁ ରୋଗର ପ୍ରକୃତି କେତେ ପରିମାଣର ଠଉରାଇ ହେବ । ଢେଙ୍କେବାପାଙ୍କ ଏଭଳି ଖାଣ୍ଟି ନାମକରଣ ବଦଳାଇବାଟା ପାଣିଙ୍କ ପକ୍ଷରେ ଗୋସ୍ତାକୀ ବା ଅଭବ୍ୟ ହେବ । ଯେବେ ନାମ ବଦଳାଇବାକୁହିଁ ହେବ ତେବେ ଏହାକୁ ପଣ୍ଡିତ ସାଧାରଣ ବୋଧ କରିବା ପାଇଁ 'ପ୍ରତିଶ୍ରୁତି-ପ୍ରତ୍ୟାହାର' ରୋଗ, ଶିକ୍ଷିତ ସାଧାରଣ ବୋଧ କରିବାପାଇଁ 'ଅଙ୍ଗୀକାର ଲଙ୍ଘନ' ରୋଗ, ଇତର ସାଧାରଣ ବୋଧ କରିବାପାଇଁ 'ଜବାବ ଭଙ୍ଗା' ରୋଗ, ଗ୍ରହିତୃ ସାଧାରଣ ବୋଧ କରିବାକୁ'ସତ୍ୟ ଭ୍ରଂଶରୋଗ ଓ ଦାତୃ ସାଧାରଣ ବୋଧ କରିବା ପାଇଁ ଗୃହ୍ୟୀକୃତ ମୁଖ ରୋଗ ଓ ସର୍ବ-ସାଧାରଣ ଜାଣିବା ପାଇଁ 'ଜବାବ ହାରାମା' ରୋଗ ଏହିପରି ନାନା ନାମରେ ଚିହ୍ନା ଯାଇପାରେ । ଏପରି ପରିସ୍ଥିତିରେ ଢେଙ୍କେବାପାଙ୍କ ପ୍ରତି ଭକ୍ତି ପ୍ରଦର୍ଶନାର୍ଥ ଅନ୍ତତଃ ଢେଙ୍କେବାପାଙ୍କ ନାମଟା ଅବିକଳ ରଖିବା ଉଚିତ ବୋଲି ମନେ କରିବାରୁ ପାଣିଏ ଆପଣେ ଏହି ହେଡ଼ିଙ୍ଗ୍ (ଢୋକା ରୋଗ) ଶିରୋନାମାରେ ଦେବା ବିଷୟ ସ୍ଥିର କଲେ ।

ଧନାରୋଗ ଯେଉଁ ଶ୍ରେଣୀର ଲୋକଙ୍କୁ ଧରେ ଏ ରୋଗ ମଧ୍ୟ ସେହି ଶ୍ରେଣୀର ଲୋକଙ୍କଠାରେ ବେଶି ଦେଖାଯାଏ । ଏଥିଯୋଗୁଁ ଢେଙ୍କେବାପା ଏ ରୋଗକୁ ଧନାରୋଗ ତଳେ ଟିପିଥିବାରୁ ଆମେ ଟିକିଏ ହଲାପଟାରେ ପଡ଼ିଲୁଁ । କାରଣ ଏ କିସମର ରୋଗ ମହାଜନ (ଉତ୍ତମର୍ଣ୍ଣ), ବ୍ୟବସାୟୀ, କନ୍ୟାପିତା, କୁଲି ସରଦାର, ସମ୍ପତ୍ତି କ୍ରେତା ବିକ୍ରେତା, ଲଙ୍ଗଳଧାରୀ, ଖଣ୍ଡାଧାରୀ, ଶ୍ରେଷ୍ଠ ନାୟକ, ଚିତାତିଳକ କଟା, ରାଜ୍ୟ ନିୟାମକ, ମଠ ମହନ୍ତ ଆଦି ଦ୍ୱାରିକା ଛାପାଧାରୀ ଶ୍ରେଣୀଙ୍କ ମଧ୍ୟରେ ବି ଦେଖାଯାଏ ଓ ଏହି ରୋଗ ଓ ତତ୍‌ସମ୍ବନ୍ଧୀୟ ବମେ ବିଧିବିଧାନ କଟକଣା ଓ ପ୍ରତିକାର ସରକାର ତାଙ୍କ 'ଚୁକ୍ତି ଆଇନ୍'ରେ କରିଅଛନ୍ତି । ସେ ରୋଗଟା ଶାରୀରିକ ରୋଗ ନ ହେଲେ ମଧ୍ୟ ବଡ଼ ରୋଗ ମଧ୍ୟରେ ଗଣ୍ୟ ହେବା ଉଚିତ । ଶାରୀରିକ ରୋଗ ମଧ୍ୟରେ କୁଷ୍ଠରୋଗକୁ ଯେଉଁପରି ବଡ଼ ରୋଗ ବୋଲାଯାଏ, ମାନସିକ ରୋଗ ମଧ୍ୟରେ ଏହାକୁ ସେହିପରି ବଡ଼ ରୋଗ (Mental or moral leprosy) ବୋଲାଯିବା ଉଚିତ । ଏ ରୋଗ ବଡ଼ ରୋଗଠାରୁ ମଧ୍ୟ ବେଶି ସଂକ୍ରାମକ । କାରଣ ବଡ଼ରୋଗୀ ଦେହ, ଉଚ୍ଛିଷ୍ଟ ଓ ଲୁଗାପଟା ବା ବ୍ୟବହୃତ ଜିନିଷ ଅନ୍ୟବ୍ୟକ୍ତିଠାରେ ନ ଲାଗିଲେ ବଡ଼ରୋଗ ଡିଏଁ ନାହିଁ, କିନ୍ତୁ ଏ ଢୋକା ରୋଗୀର ପବନ ଓ ଏହାର ଛେପ ଯେଉଁ ପବନରେ ମିଶେ ସେ ପବନ ଯାହାଙ୍କ ଦିହରେ ଲାଗେ, ଏ ରୋଗୀର ଦାନା ଯାହା ପେଟରେ ପଡ଼େ, ଏ ରୋଗୀର ଶାସନରେ ବା ରାଜ୍ୟରେ ଯେ ରହେ, ଏହା ଅଧୀନରେ ଯେ କୁଲି ବା ମୂଲିଆ ହୋଇ ମୂଲ ଲାଗେ ତା ଠାକୁ ମଧ୍ୟ ଏ ରୋଗ ଡେଇଁବାର ଦେଖାଯାଏ । ଢେଙ୍କେବାପା ଅନ୍ୟ ରୋଗମାନଙ୍କ ସମ୍ବନ୍ଧେ ଯେଉଁ ପ୍ରଣାଳୀ ଅବଲମ୍ବନ କରି ଅଛନ୍ତି, ଏ

ରୋଗ ପାଇଁ ମଧ ସେହିତା କରିଅଛନ୍ତି । ଅର୍ଥାତ୍ କେଉଁ ଉପଲକ୍ଷରେ ରୋଗୀ ତାଙ୍କ ହାବୁଡ଼େ ପଡ଼ିଥିଲେ ଓ ରୋଗୀ ପାଇଁ ଉପଚାର ଓ ଚିକିତ୍ସା କଅଣ ଓ କେଉଁ ପାଞ୍ଚଣରେ ସେ ରୋଗ ଓ ରୋଗୀ ଦୁହେଁ ସାଧ ହେଲେ ତାହା ଲେଖିଅଛନ୍ତି ।

ଢେଙ୍କେବାପା ଆମର ଧର୍ମ 'ଧାତୁ'ର ମଣିଷ ଥିଲେ । ଅର୍ଥାତ୍ ତାଙ୍କ ମନଟା ସବୁବେଳେ ରଢେଇ ଖଢେଇ ହଉଥାଏ ଧର୍ମ କର୍ମ କରିବାକୁ । ଢେଙ୍କେବାପା ତ ମାଆ କୋଳରୁ ଶୁଣି ଶୁଣି ଆସିଥିଲେ 'ଦେଉଳ ତୋଳେଇଲେ ନାଁ ପଡ଼େ' । ଅତଏବ ଗୋଟିଏ ମନ୍ଦିର ତୋଳେଇ ଏକ କ୍ରିୟାକୁ ଦ୍ୱାର୍ଥକରୀ କରି (ଧର୍ମ କରିବା ଓ ନାମ କରିବା) ପାଇଁ ଦିନାକେତେ ଭାରି ଅମୁରହ୍ଲୁକ ହେଲେ । ଏଣେ 'ପୁଅ ବାହାକରି ମନ, ହାତରେ ନ ଥାଇ ଧନ' । ନାମ କରିବା କଥାଟା ଖାଲି ଢେଙ୍କେବାପାଙ୍କର ଏକା ପ୍ରେୟ ନୁହେଁ । ଆମେ ଅନୁଭବରେ ମଧ ଜଗତଯାକ ତାହାହିଁ ଦେଖୁଥାଇଁ । ଜଣେ ଇଂରାଜ ଲେଖକ ଲେଖିଛନ୍ତି, "Hinkering after fame is the last infirmity of noble minds." ଗ୍ରୀକ୍ ଜେତା ସିକନ୍ଦର ବାଦଶାହଙ୍କ ଠାରୁ ସିକନ୍ଦର ଖାଁ ପିଅନ୍ ପର୍ଯ୍ୟନ୍ତ, ରାମଚନ୍ଦ୍ର ମହାପ୍ରଭୁଙ୍କ ଠାରୁ ରାମା ତନ୍ତୀ ପର୍ଯ୍ୟନ୍ତ ବ୍ରାହ୍ମଣ ଗୋସେଇଁଙ୍କ ଠାରୁ ଓଡ଼ସୁଅ ପର୍ଯ୍ୟନ୍ତ ରାଜ୍ୟ ଆକ୍ରମଣକାରୀ ରାଜ୍ୟଦସ୍ୟୁ ଠାରୁ ଆରମ୍ଭ କରି ଗ୍ରାମଲୁଣ୍ଠନକାରୀ ଡକାଇତ ପର୍ଯ୍ୟନ୍ତ ସମସ୍ତଙ୍କର ସେହି ନାଆଁ ପାଇଁ ଧାଉଡ଼ି ଲାଗିଥିଲା, ଲାଗିଅଛି ଓ ଲାଗିଥିବ । ଢେଙ୍କେବାପା ଦେଉଳଟିଏ ତୋଳାଇବାର ସଂକଳ୍ପ କରି ଦେଉଳ ତୋଳାର ବିଧିବିଧାନ ଠିକଣା କରିବା ପାଇଁ ବହୁତ ବହୁତ ଓଡ଼ିଶୀ ଶିଳ୍ପଶାସ୍ତ୍ର ଧୁଣ୍ଡିଲେ । ସେଥିରେ କେଉଁ ଦେବତା ସ୍ଥାପନା କରିବେ ସେଥିପାଇଁ ମଧ ବହୁତ ବହୁତ ଲୋକଙ୍କ ପରାମର୍ଶ ନେଲେ । ସେ ଦେଉଳର ନାଆଁ କଣ ଦେବେ ସେଥିପାଇଁ ମଧ ବହୁତ ବହୁତ କଳ୍ପନା ଜଳ୍ପନା କଲେ । ସେ ଦେଉଳର ଅଗ୍ରଫଳକ (ସାଇନ୍ ବୋର୍ଡ଼) ରେ କାହା ନାମ ଖୋଳାହେବ ତହିଁର ବହୁତ ଆଲୋଚନା କଲେ । କେହି କେହି ବନ୍ଧୁ ପରାମର୍ଶ ଦେଲେ ଯେ ଏ ଦେଉଳ ଏକ ରଥ ହେବ, କେହି କହିଲେ ତ୍ରିରଥ, କେହି କହିଲେ ପଞ୍ଚରଥ, କେହି କହିଲେ ଏହା ସପ୍ତରଥ, ଶେଷରେ ସ୍ଥିର ହେଲା ଏହା ସପ୍ତରଥ ହେବ । ଅନ୍ୟମାନେ ପରାମର୍ଶ ଦେଲେ ଯେ ହିନ୍ଦୁମାନଙ୍କ ପୂଜ୍ୟ ତ୍ରିନାଥ (ବ୍ରହ୍ମା, ବିଷ୍ଣୁ, ମହେଶ) କିମ୍ବା ପଞ୍ଚଦେବତା (ମହାଦେବ, ବିଷ୍ଣୁ, ସୂର୍ଯ୍ୟ, ଗଣପତି ଓ ଦୁର୍ଗା) କିମ୍ବା ଦେବୀ (ସରସ୍ୱତୀ, ଲକ୍ଷ୍ମୀ, ଦଶ ମହାବିଦ୍ୟା) କିମ୍ବା ଦଶଅବତାର (ମତ୍ସ୍ୟ, କଚ୍ଛପ, ବରାହ, ବାମନ, ନରସିଂହ, ପରଶୁରାମ, ରାମ, ବଳରାମ, ବୌଦ୍ଧ, କଳ୍କି) କିମ୍ବା ଦଶଦିଗପାଳ (ବ୍ରହ୍ମା, ଇନ୍ଦ୍ର, ବରୁଣ, କୁବେର, ଯମ, ଅଗ୍ନି, ସୋମ, ନୈର୍ଋତ, ଈଶାନ, ପ୍ରଜାପତି) କିମ୍ବା ନବଗ୍ରହ (ରବି, ସୋମ, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନି, ରାହୁ, କେତୁ) ଙ୍କ ମଧରେ ଗୋଟିଏ ଦେବତାଙ୍କୁ ସେ ମନ୍ଦିରରେ ସ୍ଥାପନା କରନ୍ତୁ । ପଛକୁ ଢେଙ୍କେମାଆ ଆଦିଙ୍କ ସଙ୍ଗେ ସଲ୍ଲା ହୋଇ ସ୍ଥିର ହେଲା ଯେ ଢେଙ୍କେବାପା ତ ଘରୁ ଖାଇ ଘୋଡ଼ା ଆଗରେ ଡେଇଁବେ ନାହିଁ । ଏ ଦେଉଳ ତୋଳା ପାଇଁ ଯେଉଁ

ଦାତାଙ୍କଠାରୁ ସାହାଯ୍ୟ ପାଇବେ ସେହି ଦାତାଙ୍କ ନାମ ସଙ୍ଗେ ଯେଉଁ ଦେବତାଙ୍କ ନାମର ସାମଞ୍ଜସ୍ୟ ଥିବ ସେହି ଦେବତାଙ୍କୁ ଏଥିରେ ପ୍ରତିଷ୍ଠିତ କରାଯିବ ଓ ତଦନୁସାରେ ଏହାର ନାମକରଣ ହେବ । ଏତଦ୍ଦ୍ୱାରା ଦାତାଙ୍କ ମନବୋଧ ହେବ ଯେ ତାଙ୍କ ନାମରେ ଏ ଦେଉଳ ହେଲା ଓ ଚିରକାଳ ତାଙ୍କ ନାମଖ୍ୟାତି ରହିଯିବ; ସାଧାରଣ ଭକ୍ତ ବୁଝିବେ ଯେ ଅମୁକ ଦେବତାଙ୍କ ପୂଜା ପାଇଁ ଢେଙ୍କେବାପା ଦେଉଳ ତୋଳାଇଲେ । ମନେକରନ୍ତୁ ଦେବେନ୍ଦ୍ର, ରାଜେନ୍ଦ୍ର, ନୃପେନ୍ଦ୍ର ନାମଧାରୀଙ୍କ ବଦାନ୍ୟରୁ ଏ ମନ୍ଦିର ଗଢ଼ା ହେବ, ତେବେ ଏ ଦେଉଳରେ ଇନ୍ଦ୍ର ଦେବତା ପୂଜା ହେବେ ଓ ଦେଉଳର ନାମ ହେବ ଇନ୍ଦ୍ର ଦେଉଳ । ଭାସ୍କର ଆଦିତ୍ୟ ବା ବୀର ମିତ୍ରୋଦୟ ନାମକ ଦାତାଙ୍କ ବଦାନ୍ୟ ଦ୍ୱାରା କାର୍ଯ୍ୟ ସିଦ୍ଧ ହେଲେ ଏଥିର ନାମ ହେବ ସୂର୍ଯ୍ୟ ଦେଉଳ । ଶଙ୍କର, ଶଶିଭୂଷଣ, ଈଶ୍ୱର, ଶିବ ନାମଧେୟ ଦାତାଙ୍କ ଧନରେ ହେଲେ ଶିବ ଦେଉଳ । ଗଣନାଥ ଦାତାଙ୍କ ନାମ ଅନୁସାରେ ଗଣପତି; କୃଷ୍ଣଚନ୍ଦ୍ର, ରାମଚନ୍ଦ୍ର, ରାଧାନାଥ, କମଳାକାନ୍ତ ନାମ ଅନୁସାରେ ବିଷ୍ଣୁ ଦେଉଳ । ପାର୍ବତୀ, ଦୁର୍ଗାବତୀ, ଅନ୍ନପୂର୍ଣ୍ଣା ଦାତ୍ରୀଙ୍କ ନାମରେ ଦୁର୍ଗା ଦେଉଳ । ମହାବୀର, ବୀରବିକ୍ରମଙ୍କ ନାମରେ ମହାବୀର ଦେଉଳ । ପୂର୍ଣ୍ଣଚନ୍ଦ୍ର ସୁଧାଂଶୁ ନାମରେ ଚନ୍ଦ୍ର ଦେଉଳ । ବାଣୀ, ସରସ୍ୱତୀଙ୍କ ନାମରେ ସରସ୍ୱତୀ ଦେଉଳ । ରମା, କମଳା, ଲକ୍ଷ୍ମୀଙ୍କ ନାମରେ ଲକ୍ଷ୍ମୀ ଦେଉଳ । ଢେଙ୍କେଆଇ ଆମର ଚେତାଳ । ସେ କହିଲେ ଆରେ ! ଜଣକ ଉପରେ ନିର୍ଭର କଲେ କାମ ପୂରା ପଟିଲା ପରି ଲାଗୁ ନାହିଁ । ଜଣକ ଉପରେ ନିର୍ଭର କରି ଦଦରା ଡଙ୍ଗାରେ ବସିଲେ ଯେବେ ସେ ମଝି ନଈରେ ଦଗାଦିଏ ତେବେ ତ ଦେଉଳର ମୁଣ୍ଡି ମରିବ ନାହିଁ ଓ ଢେଙ୍କେବାପାଙ୍କ 'ଲଣ୍ଡା ଦେଉଳ' ନାଆଁଟା ଦେଶରେ ଗୋଟାଏ ପ୍ରବଚନ ଓ ନ୍ୟାୟ ହୋଇ ରହିବ । ଦେଉଳଟି କେତେ ମାହାଲା କରାଯାଉ; ଯେ ଯେଉଁ ମାହାଲାର ଖରଚ ଦେବେ ସେହି ମାହାଲାତ ତାଙ୍କ ନାମରେ ଡକାଯାଉ ଓ ସେହି ମାହାଲାରେ ତାଙ୍କ ନାମାନୁସାରେ କଳ୍ପିତ ଦେବତାଙ୍କର ପ୍ରତିଷ୍ଠା ହେଉ । ଢେଙ୍କେବାପା କହିଲେ ଯେ ଦେଉଳର ମୂଳଦୁଆ ଉଠିବା ଖରଚ ସମ୍ଭାଳିବେ ତାଙ୍କ ନାମରେ ଦେଉଳର ନାମକରଣ ହେବା ଉଚିତ ! ତାପରେ ଗୋଟିଏ ମାହାଲାର ଖରଚ ଯାହାଙ୍କ ଖରଚରେ ଉଠୁଥିବ ସେହି ମାହାଲାକ ତାଙ୍କ ନାମରେ ଡକାଯିବ ଓ ସେହି ମାହାଲାର ୪ ପାଖରେ ୪ ଭାଷାରେ ତାଙ୍କ ନାମ ଲେଖାଯିବ । ଦେଉଳର ଶିଳ୍ପୀମାନଙ୍କୁ ଡକାଇବାରେ ସେମାନେ କହିଲେ ଦେଉଳକୁ ୩ ଅଙ୍ଗରେ ବିଭକ୍ତ କରାଯାଇପାରେ - ୧ - ମୂଳଦୁଆ ଓ ପୀଠ ୨ - ଜଂଘା, ବରୁଣ୍ଡୀ ଓ ପାଖ (କାନ୍ଥ), ୩- ବିମାନ (ତ୍ରିଭୁଜାକାର ଅଂଗ) ଅତଏବ ଏ ଗୋଟିଏ ଗୋଟିଏ ଅଙ୍ଗରେ ଖରଚା ଯେ ତୁଲାଇବେ ସେହି ଅଙ୍ଗଟିମାନଙ୍କରେ ତାଙ୍କ ନାମ ଯୋଡ଼ା ଯିବ ଓ ଚାରି ଭାଷାରେ ତାଙ୍କ ନାମ ଦେଉଳର ଚାରି ପଟରେ ଲେଖାଯିବ ।

ପରିଶେଷରେ ସ୍ଥିର ହେଲା ଯେ ଦାତା ଓ ଦାନ ପରିମାଣ ଠିକଣା ହୋଇ, ଦାନଧନ ହସ୍ତଗତ ହେଲା ପରେ ନାମକରଣ କଳ୍ପନା କାର୍ଯ୍ୟରେ ପରିଣତ ହେବ । ଢେଙ୍କେବାପାଙ୍କ

ପରିବାରରେ ଜଣେ ହରିଜନ ଭକ୍ତ ଥିଲେ, ସେ କହିଲେ ଯେ ଏ ଦେଉଳକୁ ହରିଜନମାନଙ୍କର ପ୍ରବେଶାଧିକାର ରହିବ, ତଥାକଥିତ ଅସ୍ପୃଶ୍ୟମାନଙ୍କୁ ଏଠାରେ ପ୍ରବେଶ କରିବାକୁ ବାରଣ କରାଯିବ ନାହିଁ । ପାରିବାରିକ ଆଲୋଚନା ସଭାରେ ବହୁତ ରଦଖଦ ହୋଇ ସ୍ଥିର ହେଲା ଯେ ଯେଉଁମାନଙ୍କ ଦେହକୁ ମନକୁ ବଡ଼ରୋଗ ରାଜଯକ୍ଷ୍ମା, ବେଙ୍ଗାରୋଗ, କୁକୁରିଆ ରୋଗ, ଧନାରୋଗ, ଢୋକାରୋଗ, ବାଘୁଆ-ରୋଗ, ସେବାରୋଗ, ଓ ଡିଆଁରୋଗ ଧରିଥିବ ସେହିମାନଙ୍କ ଛଡ଼ା ଅନ୍ୟ ସମସ୍ତ ବ୍ୟକ୍ତି, ଜାତି, ବର୍ଣ୍ଣ ନିର୍ବିଶେଷରେ ଏ ମନ୍ଦିରରେ ପ୍ରବେଶାଧିକାର ଓ ପୂଜାଧିକାର ପାଇବେ ଓ ଏ ମନ୍ଦିର ହିନ୍ଦୁଙ୍କ ଦେବାଳୟ, ମୁସଲ୍‌ମାନ ଓ ଖ୍ରୀଷ୍ଟାନଙ୍କ ଭଜନାଳୟ, ବୌଦ୍ଧଙ୍କ ନିର୍ବାଣାଳୟ ରୂପେ ମଧ୍ୟ ବ୍ୟବହୃତ ହୋଇପାରିବ । କିନ୍ତୁ ଏଥିରେ ଆମ ଢେଙ୍କେନାନୀଙ୍କର ଅମତ ହେବାରୁ ଓ ହିନ୍ଦୁଙ୍କ ପୂଜା ବେଳେ ମୁସଲମାନମାନଙ୍କ ନମାଜ ବେଳେ ପଡ଼ିଲେ ପଛକୁ ଏଥିରୁ ହିନ୍ଦୁ ମୁସଲମାନ ଅରଷ୍ଟି ଜାତ ହେବ । ଏହି ଆଶଙ୍କାରୁ ଏପରି କଳ୍ପନା ପରିତ୍ୟକ୍ତ ହେଲା ଓ ଶେଷରେ ସିଦ୍ଧାନ୍ତ ଏପରି କଳ୍ପନା ପରିତ୍ୟକ୍ତ ହେଲା ଓ ଶେଷରେ ସିଦ୍ଧାନ୍ତ ହେଲା ଯେ ଏ ଦେଉଳଟି ସାର୍ବଜନୀନ, ସାର୍ବଧର୍ମୀଣ ହେବା ଉଦ୍ଦେଶ୍ୟରେ ଏଥିର ଗଢ଼ଣ ହିନ୍ଦୁଙ୍କ ମନ୍ଦିର, ମୁସଲମାନଙ୍କ ମସ୍‌ଜିଦ, ଖ୍ରୀଷ୍ଟାନଙ୍କ ଗିରିଜା, ବୌଦ୍ଧଙ୍କ ସ୍ତୂପ, ଜୈନଙ୍କ ଦେଉଳ, ଶିଖଙ୍କ ଗୁରୁଦ୍ୱାରା ପରି ହେବ ଓ ଏହାର ଶିଖରରେ ହିନ୍ଦୁଙ୍କ ନୀଳଚକ୍ର, ମୁସଲମାନମାନଙ୍କ ଖଣ୍ଡଚନ୍ଦ୍ର (ଚନ୍ଦ୍ରକଳା) ଖ୍ରୀଷ୍ଟାନଙ୍କ କ୍ରୁଶ, ବୌଦ୍ଧଙ୍କ ତ୍ରିପିଟକ, ଶିଖଙ୍କ ସ୍ୱର୍ଣ୍ଣକଳଶ ସବୁ ରହିବ । ଦେଉଳ ମଧ୍ୟରେ ମଧ୍ୟ ହିନ୍ଦୁଙ୍କ ତ୍ରିଦେବ ବା ପଞ୍ଚଦେବ, ମୁସଲମାନମାନଙ୍କ କଦମ୍‌ରସୁଲ, ଖ୍ରୀଷ୍ଟାନ୍‌ଙ୍କ କୁମାରୀ ମେରୀ, ଶିଖଙ୍କ ଗ୍ରନ୍ଥସାହେବ, ପାର୍ଶୀଙ୍କ ଅଗ୍ନ୍ୟାଧାନ, ବୌଦ୍ଧଙ୍କ ଧ୍ୟାନୀବୁଦ୍ଧ, ଜୈନଙ୍କ ନଗ୍ନ ତୀର୍ଥଙ୍କର ସବୁ ଦେବତା ବା ମୂର୍ତ୍ତିଙ୍କର ଥାପନା ହେବ ।

ପାଠକ-ପାଠିକାମାନେ ଏ ପ୍ରସ୍ତାବଟା ଶୁଣି ଢେଙ୍କେବାପାଙ୍କୁ ବାତୁଳାଶ୍ରମ ବାସୋପଯୋଗ୍ୟତାର ସାର୍ଟିଫିକଟ ଦେବାକୁ ପାଞ୍ଚୁବେଣି । କିନ୍ତୁ ଇଂରାଜୀ କବି କହିଛନ୍ତି - 'There is pleasure in being mad which none but madmen know' (ଅର୍ଥାତ୍ ବାତୁଳାରେ ଯେଉଁ ଆନନ୍ଦ ନିହିତ ଅଛି ତାକୁ ଏକା ବାତୁଳମାନେ ହିଁ ଜାଣନ୍ତି ।

ଏକଥାକୁ ସମସ୍ତେ ବୁଝିପାରିବେ ନାହିଁ, ଏ ପନ୍ଥରେ ଯେ ପଥୁକୀ, ଏ ଭାବରେ ଯେ ଭାବୁକ, ଏ ଚିନ୍ତାରେ ଯେ ଚିନ୍ତକ ସେହି ଏକା ଏ କଥା ବୁଝିପାରିବେ । ଅବଶ୍ୟ ଆମ ଭାରତବର୍ଷରେ ଏ କଥାକୁ ବୁଝାଇବାକୁ ବେଶି ମିହନ୍ତ ପଡ଼ିବ ନାହିଁ । ଅନେକ ସ୍ଥାନରେ ଦେଖାଅଛି ଯେ ଏକ ଦେବତାଙ୍କୁ ବା ତୀର୍ଥକୁ ବା ସାଧୁଙ୍କୁ ହିନ୍ଦୁମାନେ ତାଙ୍କର, ମୁସଲମାନମାନେ ତାଙ୍କର ଓ ବୌଦ୍ଧମାନେ ତାଙ୍କର ବୋଲି ମାନୁଛନ୍ତି । କିନ୍ତୁ ଆଜି ପର୍ଯ୍ୟନ୍ତ ପ୍ରକାଶ୍ୟରେ ଡେଙ୍ଗୁରା ଦିଆହୋଇ ସର୍ବଧର୍ମ ପୂଜ୍ୟ, ସର୍ବଜନ ଗଣ୍ୟ, ସର୍ବଜାତି ମାନ୍ୟ ଦେଉଳ କେହି ଗଢ଼ିବାର ଶୁଣା ନ ଥିଲା । ବଙ୍ଗଳାର ବ୍ୟଙ୍ଗ କବି ଡ଼ି. ଏଲ. ରାୟ ଗୋଟିଏ କବିତା ଲେଖିଅଛନ୍ତି 'ଆମି ନୂତନ କିଛି କର୍ବ' ଅର୍ଥାତ୍ ଗୋଟାଏ କିଛି ନୂଆ କଥା କରି

ମୁଁ ଜଗତରେ ନାମ ରଖିଯିବି, ଆମ ଜେଜେବାପାଙ୍କର ସେହି ମନୋଭାବ ବା ମନୋଗତି (Mentality) ଥିଲା ଓ ସେହି ମନୋଗତିର କରାମତ ଜାହିର କରି ସେ ଏ ହରରଙ୍ଗୀ ଦେଉଳ ପ୍ରସ୍ତାବ ବଦାନ୍ୟ ସାଧାରଣଙ୍କ ଛାମୁରେ ବାଢ଼ିଲେ ଓ ପର ମୁଣ୍ଡରେ ନଡ଼ିଆ ଭାଙ୍ଗିବା ରୀତି ଅନୁସରଣ କରି ନିର୍ବୁଦ୍ଧିଆ ପଇସାର ଜିମାଦାରଙ୍କ ଠାରୁ ଧନ କାଢ଼ିବେ ବୋଲି ସ୍ଥିର କଲେ । ସେହି ଧନରେ ଯେଉଁ ଦେଉଳ ହେବ ସେଥିର ସେବାଏତ୍ ଆମ ଜେଜେବାପା ଓ ତାଙ୍କ ଅନ୍ତେ ତାଙ୍କ ଓ୍ୟାଲି, ଉଆରସ୍, ଉତ୍ତରାଧିକାରୀ, ସ୍ଥଳାଭିଷିକ୍ତ, କାଏମ ମୁକାଏମମାନେ ହେବେ । ପାଠକ ଅବଧାନ୍‌ମାନେ ! ଆପଣମାନେ ଭାବନ୍ତୁ ଦେଖି, ଏଇଟା କଅଣ ଗୋଟାଏ କମ୍ ସୁତୁର ? ଯେ ଧନ ଦେବେ ତାଙ୍କ ଫମ୍ପା ନାମଟାଏ ଦେଉଳରେ ଯୋଡ଼ାଯିବ, କିନ୍ତୁ ଏଥିରେ ମାଲିକ ହେବେ ଜେଜେବାପା । ଓଡ଼ିଶାରେ କିଆଁ, ଭାରତବର୍ଷ ତମାମ, ଏମନ୍ତ କି ପୃଥିବୀ ତମାମ୍ ଦେଖା ଯାଇଅଛି ଯେ 'ସର୍ବସାଧାରଣଙ୍କ ହିତ'ର ଦ୍ୱାହି ଦେଇ କେତେ ଜଣ ହୁସିଆର୍ 'ଦେଶସେବୀ' ସରଳ (ଓରଫ ଗମାର) ଧନୀ (ଓରଫ ଧନର) ଜଗୁଆଳଙ୍କ ଠାରୁ ଧନ ମାରିଆଣି ସାଧାରଣ ଅନୁଷ୍ଠାନ ନାମରେ ଆପଣାର ଓ ଆପଣା ବାଲବଚ୍ଚାଙ୍କର ପୋଷିହେବା ମାର୍ଗକୁ ଫିଟାଇବାରେ ଲାଗିଅଛନ୍ତି ।

ସାଧାରଣଙ୍କ ହିତାର୍ଥ ଗୋଟିଏ ବିଦ୍ୟାଳୟ ଖୋଲାଯିବ, ଅତଏବ ଦେଶର ଧନକୁବେରମାନେ କିଛି କାଢ଼ । କିରେ ! ଏ ବିଦ୍ୟାଳୟର ସ୍ୱତ୍ୱାଧିକାରୀ କିଏ ? ଏଥିର ଉତ୍ତର :-

ସ୍ୱୟଂ ଏ ଉଦ୍ୟମର ଅନୁଷ୍ଠାତା ଓ ତାଙ୍କ ପୁତ୍ରପୌତ୍ରାଦି । ଏହିପରି କେତେ ଲାଇବ୍ରେରୀ, କେତେ ମନ୍ଦିର, କେତେ ଛାପାଖାନା, କେତେ ଇସ୍କୁଲ, କେତେ ଡାକ୍ତରଖାନା, କେତେ ସେବାଶ୍ରମ, କେତେ ପାନ୍ଥନିବାସ, କେତେ ନାଚଖାନା, କେତେ ସଦାବ୍ରତ ଖାନା, ଦେଶରେ ହୋଇ ଗଲାଣି ଓ ହେଉଛି । ଢୋଲ ଖାଉଛି ମାଡ଼, ହାଡ଼ି ଖାଉଛି କଉଡ଼ି । ଆମ ଦେଶରେ ଯେଉଁସବୁ ଦେବୋତ୍ତର ଅନୁଷ୍ଠାନମାନ ହୋଇଛି ସେଥିର ମୌଳିକ ପ୍ରତିଷ୍ଠାତା ମହାପୁରୁଷ 'ଦେଶହିତାର୍ଥ' ଦୁଃସ୍ଥ, ଦରିଦ୍ର, ରୋଗୀ, ବିଦ୍ୟାର୍ଥୀ, ଧର୍ମାର୍ଥୀ ଆଦିଙ୍କ ସେବା ପାଇଁ ସଦାବ୍ରତ ପାଇଁ, ସେବସେବା ପାଇଁ, ତଦାନୀନ୍ତନ ବଦାନ୍ୟ ବ୍ୟକ୍ତିମାନଙ୍କଠାରୁ ଧନ ଓ ଜମିବାଡ଼ି ମାରଫତଦାରଙ୍କ ତଳେ ଖଞ୍ଜା କରେଇଲେ । ଉକ୍ତ ଦତ୍ତ ସମ୍ପତ୍ତିର ମାରଫତଦାର ହେଲେ ଖୋଦ ପ୍ରତିଷ୍ଠାତା ଓ ତାଙ୍କ ପରେ ତାଙ୍କର ଚେଲା, ବରଚେଲା (ପୌତ୍ର) ଆଦି । ଯେଉଁ ଉଦ୍ଦେଶ୍ୟରେ ଦାତାମାନେ ଜମିବାଡ଼ି ଖଞ୍ଜିଲେ ସେ ଗଲାଣି କୁଆଡ଼େ ଗାଧୋଇ । ଯେଉଁ ଦୁଃସ୍ଥ, ଦରିଦ୍ର ରୋଗୀ, ବିଦ୍ୟାର୍ଥୀମାନଙ୍କ ସେବାର୍ଥଦାତାମାନେ ଖଞ୍ଜା କରିଥିଲେ ସେମାନେ ଯେଝା କର୍ମ ଆଦରି କିଏ କେଉଁଠାରେ ଲାଖିଲେଣି । ବର୍ତ୍ତମାନ ହେଲେଣି ମାଲିକ ମୌଳିକ ମହାପୁରୁଷଙ୍କ ବେନାମୀ ପୁତ୍ରପୌତ୍ରାଦି । ଖଞ୍ଜା ସମ୍ପତ୍ତିର ଆୟରୁ ନାଲିପାଣି, ଦେଶୀପାଣି, ବିଲାତୀପାଣି, ଆସବ, ନିର୍ଯ୍ୟାସ, ବିଷ୍ଣୁଙ୍କ ମତ୍ସ୍ୟ, କଚ୍ଛପ,

ବରାହ ଅବତାରମାନଙ୍କ ଭର୍ଜିତ ଓ କଟଲେଟୀକୃତ ରୂପ, ଆଧୁନିକ ମାର୍ଜିତ ସମାଜ ତନ୍ତ୍ରାନୁମୋଦିତ ପଞ୍ଚ 'ମ'କାର ସାଧନ (ମଦ୍ୟ, ମାଂସ, ମତ୍ସ୍ୟ, ମୃଗୟା, ମଟର) ଓ ମାରଫତଦାର ଗଦ୍ୟାଧିଷ୍ଠିତ ମହାପୁରୁଷଙ୍କ ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ, ଗେୟ, ଧେୟ, ଦେୟ, ହେୟ, ଶ୍ରେୟ ଓ ପ୍ରେୟ ଅଉଲ ନମ୍ବରର ଟଟକା ସଜୀବ ଓ ନିର୍ଜୀବ ବସ୍ତୁମାନ ସରବରାହ ହୋଇ ଦେଶ ବିଦେଶର ଆନ୍ତର୍ବାଣିଜ୍ୟ ବହିର୍ବାଣିଜ୍ୟର ତଥା ଆନ୍ତର୍ଜାତିକ ଓ ଆନ୍ତଃଧାର୍ମିକ ଅନୁଷ୍ଠାନମାନଙ୍କର ମଙ୍ଗଳ ସମାହିତ ହେଉଅଛି । ମରହଟ୍ଟିଆ ଓଲ୍ଡ-ଦାତାମାନଙ୍କର ଦୃଷ୍ଟି ଥିଲା ଐକଦେଶିକ, କିନ୍ତୁ ବର୍ତ୍ତମାନ ଗଦିନସିନ ମହାତ୍ମାମାନେ ଖଞ୍ଜା ସମ୍ପତ୍ତିର ଆୟରେ ସଭ୍ୟ ଜଗତର ବାଣିଜ୍ୟର, ବ୍ୟବସାୟର, ସରକାରଙ୍କ ଅବକାରୀ ବିଭାଗର ବେସରକାରୀ ମଟରଗାଡ଼ି, ଏରୋପ୍ଲେନ, ରେଲ, ସିନେମା, ଜାହାଜ ଆଦି ବିଭାଗର ଆୟର ପୁଷ୍ଟିସାଧନ କରି ସାର୍ବଜନୀନ ପ୍ରେମର ଯେଉଁ ମହୋଦ୍ଦାର ଉଦାହରଣ ଦେଖାଉ ଅଛନ୍ତି ତାହା ଯୁଗ ଯୁଗକୁ ଆଦର୍ଶ ହୋଇ ରହିବ ।

ଅତଏବ ଏବଂ ବିଧି-ବିଧାନ-ବିଶିଷ୍ଟ ଆଲୋଚନା ପରେ ଢେଙ୍କେବାପା ଯାଇ ପହଞ୍ଚିଲେ ଏକ ଧନାଶେଠଙ୍କ ଦିହୁଡ଼ିରେ । ଶେଠକୁ ସମସ୍ତ କଥା ବୁଝାଇ କହିବାରୁ ଶେଠ କହିଲେ, ଆମେ ବରଷକ ବାଦ ଦେଉଳର ମୂଳଦୁଆ ବା ପିଢ଼ ଉଠିବା ଖରଚଟା ଦେବୁଁ - ଢେଙ୍କେବାପା ଏହା ଶୁଣି ଭାରି ଖୁସିରେ ଘରକୁ ଫେରିଲେ ଓ ଘରକୁ ଆସି ଦେଶର ସଂବାଦ-ପତ୍ରମାନଙ୍କୁ ଧନାଶେଠଙ୍କ ପ୍ରଶଂସା-ବାଦ ଓ ବଦାନ୍ୟତାକୁ ଶତମୁଖରେ ପ୍ରଶଂସା କରି ଗୁପ୍ତନାମରେ ପ୍ରେରିତ ପତ୍ର ପଠାଇଲେ । ଚାହୁଁ ଚାହୁଁ ଦେଶତମାମ ଧନାଶେଠଙ୍କ ବଦାନ୍ୟତା ସଙ୍ଗୀତରେ ପ୍ରତିଧ୍ୱନିତ ହେବାକୁ ଲାଗିଲା । ସମୟ ଓ ଡାକର ଗତିରେ ଏ ସବୁ ପ୍ରତିଧ୍ୱନି ଧନାଶେଠଙ୍କ ଦିହୁଡ଼ି ଠାରୁ ଘର ଆଡ଼ ଉଆସ ପର୍ଯ୍ୟନ୍ତ ସବୁ ସ୍ଥାନକୁ ମୁଖରିତ କଲା । ଢେଙ୍କେବାପା ମନେ ମନେ ମିଠେଇ ଖାଇ ବସିଲେ ଓ ଶେଠଙ୍କଠାରୁ ନିର୍ଦ୍ଧାରିତ ମିଆଦରେ ଟଙ୍କା ଆଣିବାକୁ ଛଣିର ମୁଣି ବୁଣିବାରେ ଲାଗିଲେ ଓ ମିଆଦଗତେ ଯାଇ ପହଞ୍ଚିଲେ ଶେଠଙ୍କ ସିଂହ ଦରଜାରେ । ଶେଠ ଢେଙ୍କେବାପାଙ୍କୁ ଦେଖିବାକ୍ଷଣି ତାଙ୍କର ପୂର୍ବ ଦୃଷ୍ଟ ଅବତାର ପରିବର୍ତ୍ତେ ଏକ ନୂତନ ଆରକ୍ତ ନେତ୍ର ଅବତାର କାଢ଼ିଲେ ।

ଶେଠଜୀ ଖୋଲଟିମିଶା ଭାଷାରେ କହିଲେ - ପାଣିଏ ! ତୁମ୍ଭେ ଆମ୍ଭର ଯେ ଅନିଷ୍ଟ କରିଛ, ଅନ୍ୟ କିଏ ହୋଇଥିଲେ ଆମ୍ଭେ ତାକୁ ପୁଲିସରେ ଦେଇ ଥାଆନ୍ତୁ, ଆମ୍ଭର ସମସ୍ତ ଦାନ ସାତ୍ୱିକ ଅଟେ । ଆମ୍ଭେ ଧନଦେଇ ନାମ କିଣିବାକୁ ଚାହୁଁ ନାହିଁ । ଆମ୍ଭେ ତୁମ ମନ୍ଦିର ପାଇଁ ଯାହା ଦାନ ଦେବୁଁ ବୋଲି କହିଥିଲୁଁ, ସେମାନେ ତୁମେ ବାହାର ପ୍ରକାଶ କରି ଆମ୍ଭର ଇହକାଳରେ ସୁଖ୍ୟାତି ସଙ୍ଗେ ପରକାଳର ଗତିମୁକ୍ତିକୁ ସମୂଳେ ବିନିଷ୍ଟ କରିଦେଲ । ଏହି ପ୍ରସଙ୍ଗରେ ଆମ୍ଭ ନାମ ଯେଉଁ ଦିନ ଖବରକାଗଜରେ ବାହାରିଲା ଓ ହାକିମହୁକୁମା ଆମକୁ ସରକାରଙ୍କ ଠାରୁ ଗୋଟାଏ ତକମା ମିଳିବା ଉଦ୍ଦେଶ୍ୟରେ ଆମ୍ଭ ଦାନର ତାଲିକା ଆମ୍ଭକୁ ମାଗିଲେ ସେଦିନ ଆମ ପେଟକୁ ଦାନା ଯାଇ ନାହିଁ । ଆଜିଯାକେ ଆମେ ଯାହା ଯାହା

ଦାନ କରିଥିଲୁଁ, ତାକୁ ଆମର ଡାହାଣ ହାତ ଦେଇଥିଲା, କିନ୍ତୁ ଆମ ବାଆଁ ହାତ ସେ ଦାନ କଥାର ଗନ୍ଧ ପାଇ ନ ଥିଲା । ତୁମ୍ଭେ ଆମ୍ଭ ଜୀବନର କେଡ଼େ ବଡ଼ ଆଧାତ୍ମିକତାଟାକୁ ମାଟି କରି ଦେଲ ! ତାପରେ ଆମ୍ଭେ ତୁମ୍ଭଙ୍କୁ ଯେଉଁ ସର୍ତ୍ତରେ ପରେ ମନ୍ଦିର ପାଇଁ ଦାନ ଦେବାକୁ କହିଥିଲୁଁ, ସେ ସର୍ତ୍ତ ମଧ ଭଙ୍ଗ ହୋଇଛି । ଏପରି ଅବସ୍ଥାରେ ପକାଇଥିବା ଛେପକୁ ବାଧ ହୋଇ ଆମକୁ ଢୋକିବାକୁ ହେଲା । ଅତଏବ ତୁମ୍ଭଙ୍କୁ ଆଜିଠାରୁ ଆମ୍ଭର ଦିହୁଡ଼ିରେ ଓ ଆମ୍ଭ ସାଇରେ ପ୍ରବେଶାଧିକାର ନିଷିଦ୍ଧ ହେଲା । ତୁମେ ଆମଠାରୁ ଯେଉଁ ନମ୍ବରୀ ନୋଟ ଖଣ୍ଡି ଗତ ଥର ବିଦାକି ରୂପେ ନେଇଛ ସେ ଖଣ୍ଡକ ତୁମ ଠାରୁ ଆଦାୟ ହେବା ନିମନ୍ତେ ଉପାୟ ଅବଲମ୍ବନ କରିବା ପାଇଁ ଆମ୍ଭେ ଆମ୍ଭର ଦଲଖିଆ ବନ୍ଧା ଓକିଲଙ୍କ ଠାରେ ଭାର ଦେଇ ସାରିଥିଲୁଁ । ତୁମେ ଆସି ପହଞ୍ଚି ନ ଥିଲେ ଶୀଘ୍ର ମୋକଦ୍ଦମା ଦାଏର ହୋଇ ଥାଆନ୍ତା । ଏତକ ଶୁଣି ଢେଙ୍କେବାପାଙ୍କ ମୁଣ୍ଡ ଘାଉଁରି ଖାଇଲା ଓ ବାପାଙ୍କ ମଗଜରେ ତିନ୍ତୁଳିଆବିଛା ସଲ ସଲ ହେଉଥିବା ଓ ପେଟରେ କରଡ଼ି ଜଳୁଥିବା ଅବସ୍ଥାରେ ସେ ଶେଠଙ୍କ ଦିହୁଡ଼ି ଛାଡ଼ି କୁଆଡ଼େ ଯିବେ ଏହା ଭାବି ଭାବି ତାଙ୍କ ଆଖି ଆଗରେ ଜୁଳୁଜୁଳିଆ ପୋକ ଉଡ଼ିଲେ । ସେ ଏକମୁହାଁ ହୋଇ ଧାଇଁଲେ ଏକ ଅସଲ ରାଜବାଟୀକୁ । ବହୁତ ଅନୁସରଣ ପରେ ଗମ୍ଭୀରିସାଆନ୍ତଙ୍କ ସଙ୍ଗେ ଭେଟ ହେଲା । ତାଙ୍କୁ ଢେଙ୍କେବାପା ଏ ଦେଉଳ ତୋଳାର ଅଉଲରୁ ଆଖର ପର୍ଯ୍ୟନ୍ତ ହକିକତ କହିଲେ । ଗମ୍ଭୀରି-ସାଆନ୍ତଙ୍କ ମୁଖରୁ ହୁକୁମ ହେଲା "ଆମ ଛାମୁରୁ ତୁମ ଦେଉଳକୁ ପଚିଶଟା ଦିଆଯିବ" ଓ ସଙ୍ଗେ ସଙ୍ଗେ ସୂଚନା ଦେଲେ ଯେ ତାଙ୍କ ଦଦେଇ ସାଆନ୍ତଙ୍କ ନାମ ଏ ଦେଉଳର ବରଣ୍ଡୀ କରାଗଲେ ମାସକୁ ମାସ ରାଜକୋଷରୁ ଚାରିଟଙ୍କା ଦୁଇଅଣା ଆଠପାହୁଲା ଲେଖାଏଁ ଗଣ୍ଡୀଟଙ୍କା ମିଳିବ ।

ଢେଙ୍କେବାପା ତ ଗୋଟାଏ ଭାରି କୋଡ଼ମେଇଆଁ ଆଶା ବୁଜୁଳି ବାନ୍ଧି ଯାଇଥିଲେ, ବିଚାରିଥିଲେ ନହରରୁ ଫେରିଲା ବେଳକୁ କୋଡ଼ମେଇଏ ଟଙ୍କା ନଇଲେ ପାଛିଆଏ ଜଇପୁରୀ ମଉଡ଼ ଘେନି ନିଜେ ବୁହାଇ ଆଣି ନ ପାରିଲେ ଖଣ୍ଡେ ରିକ୍ସାରେ ବୁହାଇ ଘରକୁ ଆଣିବେ । ରଜାପୁଅଙ୍କର ପଚିଶ ଟଙ୍କା ମୁହଁରୁ ବାହାରି ପଡ଼ିବାରୁ ଶୁଣି ବାପାଙ୍କ ମୁହଁଟା ତିନ୍ତୁଳି ଚକଟିଲା ଭଳି ହୋଇଗଲା । ଏ ବିକାର ଦେଖି ରାଜକୁମାରେନ୍ଦ୍ର କହି ଆଜ୍ଞାଦେଲେ, "ଆମ ଛାମୁଙ୍କ ନାମଟା ତୁମର ପୃଷ୍ଠପୋଷକମାନଙ୍କ ତାଲିକାରେ ରହିଲା । ଏତିକି ତୁମର ଓ ତୁମ ମନ୍ଦିରର ବହୁଭାଗ୍ୟ ବୋଲି ବିଚାର । ଆମ ନାମଟି ଦେଖିଲାକ୍ଷଣି ଉତ୍କଳର ଅଘର-ଦ୍ୱାରୀ ଲୋକେ ତୁମ ମନ୍ଦିର ପାଇଁ ଖାଲି ଟଙ୍କା ବୃଷ୍ଟି କରିଦେବେ - ଆମରି ନାଆଁ ବିକି ତୁମେ ଓ ତୁମର ମନ୍ଦିର ନିହାଲ ହୋଇଯିବ ।" ବାପା ବିଚାରିଲେ ହଉ, ଆମ ରାଜକୁମାରଙ୍କର ବଂଶାନୁଗତ ନାମ ବଡ଼ା ଦର୍ଶନ ଥୋଡ଼ା ପଣକୁ ମୋ ଭାଗ୍ୟକୁ ତ ଏତକ ମିଳିଲା । ଦିହୁଡ଼ିରେ ତ ଦେଖି ଆସିଲି ଅନୁସରଣିଆ ଫାଟକ ପାଖରେ କିଏ ପନ୍ଦରବର୍ଷ କିଏ ଦଶ ବର୍ଷ ହେଲା ପଡ଼ି କାହାର ବାଳ ପାଚିଲାଣି, କାହାର ମୁଣ୍ଡ

ଚନ୍ଦା ହେଲାଣି, କାହାର ଆଖିକୁ ଚାଳିଶା ଧରିଲାଣି, କାହାର ଦାନ୍ତ ପଡ଼ିଲାଣି, ତେବେସୁଦ୍ଧା ରାଜକୋଷର ଲସି ଫିଟି ନାହିଁ । ଏହା ଭାବି ଏତକ ନଗଦ ପାଇବା ଆଶାରେ ବାପା ବସିଛନ୍ତି । ଶ୍ରୀମୁଖରୁ ହୁକୁମ ହେଲା ଯେ ଆମେ ହୁକୁମଟା ବିଲ୍‌ରେ ପରିଣତ ହୋଇ ତୁମ ପାଖକୁ ଚେକ୍ କିମ୍ବା ମନିଅର୍ଡ଼ର ଅବତାର ଧାରଣ କରି ଯିବ । ଅଗତ୍ୟା ବାପା ତୁଚ୍ଛା ହାତ ଓ ଝାଲି କୋଡ଼ମେଲରେ ଫେରିଲେ । ତାପରେ ମାସ ୨।୩ ଅନ୍ତେ ଦିନେ ଗୁରୁବାର ବାରବେଳା କାଳ ବେଳାରେ ଡାକବାଲା ମନିଅର୍ଡ଼ରରେ ପହଞ୍ଚାଇଲା ଟ୧୨ । କୁପନରେ ଲେଖାଅଛି ଯେ ଆଗାମୀ ଅଫିସିୟାଲ୍ ଇଆର୍‌ରେ ବାକି ଟଙ୍କା ଆଲଟ୍‌ମେଣ୍ଟ ହୋଇ ଥିବାରୁ ତାହାପରେ ମିଳିବ - ଢେଙ୍କେବାପା ପୁଣି କପାଳକୁ ଠୁକି ବରଷେ ଚାହିଁ ବସିଲେ - ବରଷେ ଟପିଲା ପରେ ପୁଣି ଯାଇ ରାଜଦ୍ୱାରରେ ପହଞ୍ଚିଲେ । ବାକି ଟଙ୍କା କଥା ଶ୍ରୀଛାମୁଙ୍କୁ ଶୁଣାଇବାରୁ ଛାମୁ ଏକଦମ୍ ଆଖି ତରାଟି କହିଲେ 'ଆମେତ ଏପରି କିଛି ଅଙ୍ଗୀକାର କରି ନାହୁଁ' । ବାପା କାନମୁଣ୍ଡା ଆଉଁଶି ଘରକୁ ଆସିଲେ ଓ ଗତ ବର୍ଷ ମନିଅର୍ଡ଼ର କୁପନ୍ ଖଣ୍ଡି ଧୁଣ୍ଡି ପାଇଲେ । ସେ ଖଣ୍ଡିକ ନେଇ ଗମ୍ଭୀରିସାଆନ୍ତଙ୍କ ଶ୍ରୀମୁଖ ଆଗରେ ପେଶ କରି ତାଙ୍କ ଛେପଢୋକା କଥାକୁ ମୁଆଢା କରିବେ ବୋଲି ମନରେ ଗେଣ୍ଠ ବାନ୍ଧିଲେ । କିନ୍ତୁ ଜଣେ ବନ୍ଧୁ ତାକୁ ଚେତାଇ ଦେଲେ ଯେ ଯେବେ ସେଖଣ୍ଡି ଛାମୁଙ୍କର କେହି ପାର୍ଶ୍ୱଦେବତା କାଢ଼ିନେଇ ଗାଏବ୍ କରନ୍ତି ତେବେ ବାପା ପୁଣି କଚେରିରେ ହଲାପଟା ଓ ଘୋଷରାଟାଏ ପାଇବେ । ଢେଙ୍କେବାପା ଅଗତ୍ୟା ସେ ଯାତ୍ରା ସ୍ଥଗିତ ରଖିଲେ ଓ ମନ୍ଦିରର ଭବିଷ୍ୟତ ଇତିହାସ ସଂଗ୍ରାହକଙ୍କ ପାଇଁ କୁପନ ଖଣ୍ଡି ପାଟକନାରେ ଗୁଡ଼ାଇ ପେଡ଼ିରେ ସାଇତି ରଖିଲେ ।

ବାପା ରାଜଦ୍ୱାରରୁ ନିରାଶ ହୋଇ କାନମୁଣ୍ଡା ଆଉଁଶି ଏକଦମ୍ ଏକ କ୍ଷେତ୍ରକୁ ପଳାଇ ଆସି ସେଠାରେ ଏକ ମଠରେ ଦେବତାଙ୍କ ଆଶ୍ରୟ ନେଲେ ଓ ଅଧାପଡ଼ିଲେ । ଦେବତା ବରଦେଲେ ଓ ଦେବତାଙ୍କ ସ୍ୱପ୍ନାଦେଶ ଅନୁସାରେ ତାଙ୍କ ମାରଫତଦାର ପୂଜାହାରୀ ପୁଷ୍ପକ ବିମାନରେ ଛତ୍ରୀ, ତ୍ରାସ, କାହାଳୀ, ରାମାନନ୍ଦି ଚିତା, ଚଇତନ, ଖୋଳ, କରତାଳ ସମଭିବ୍ୟାହାରରେ ଦିନେ ମନ୍ଦିର ପାଖକୁ ବିଜେ କଲେ ଓ ସେଠାରେ ତାକୁ ୩୬ ଉପଚାରରେ ପୂଜା, ବନ୍ଦନା, ସମ୍ବର୍ଦ୍ଧନା ଓ ଭାସ୍କରମାଳା ଦିଆ ସରିବା ପରେ ଆଦେଶ ହେଲା ଯେ ଠାକୁରଙ୍କ କୋଠଭଣ୍ଡାରରୁ ସହସ୍ର ମୁଦ୍ରା ହେଲେ ଏ ମନ୍ଦିର ପାଇଁ ଦିଆଯିବ । ଏ ମନ୍ଦିରକୁ ଆମ ମଠ ଦିଅଁଙ୍କ ନାମରେ ଉତ୍ସର୍ଗ କରିବାକୁ ହେବ । ପାଠ ଅଛି ''କ୍ଳେଶଃ ଫଳେ ନହି ପୁନର୍ନିବତାଂବିଧତ୍ତେ'' ବିଜେ ପ୍ରତିମାଙ୍କ ଶ୍ରୀମୁଖରୁ ଏତକ ଶୁଣି ଢେଙ୍କେବାପା ପୂର୍ବୋକ୍ତ ଛେପଢୋକାମାନଙ୍କ କଥା ପାସୋରି ପକାଇ କଳ୍ପନା ଚକ୍ଷୁରେ ମନ୍ଦିର ଦ୍ୱିତଳ ପ୍ରାସାଦର ରୂପ ଆଙ୍କି ନେଲେ ଓ ତାଙ୍କ ମନଟା ଚିତଉ ପିଠା ଭଳି ଫଉଲି ଗଲା । ସେଠାରୁ ଆସି ଢେଙ୍କେବାପା ମନ୍ଦିରର ଗୋଟିଏ ଚିକଣିଆ ଅନୁଷ୍ଠାନ ପତ୍ର ଛପାଇ ନେଲେ ଓ ସହରର ଜଣେ ଜମିଦାରଙ୍କ ଠାରେ ଖଣ୍ଡିଏ ଜମି ପାଇବା ପାଇଁ ଅନୁସରଣ କଲେ । ଜମିଦାର ଏ ଅନୁଷ୍ଠାନ ଦ୍ୱାରା ଦେଶର ଭାବୀ ଉନ୍ନତି ହେବାର ବୁଝିପାରି ମନ୍ଦିର ପାଇଁ

ଦୁଇଗୁଣ୍ଠ ଜମି ଚିରକାଳ ନିଷ୍କର ରୂପେ ପଟା ଦେଲେ । ବର୍ତ୍ତମାନ ଜମି ଖଣ୍ଡି ହେଲା । ପୂଜାହାରୀ ମହାରାଜ ତ ହଜାରେ ଟଙ୍କା ଦେବାକୁ କହିଛନ୍ତି, ସେଥିରେ ମନ୍ଦିର ନିର୍ମାଣ ହୋଇଯିବ ଏହି ଆଶାରେ ଜେଜେବାପା ଦଉଡ଼ିଲେ ପ୍ରତିଶ୍ରୁତିଦାତା ପୂଜାହାରୀ ମହାରାଜାଙ୍କ ଛାମୁକୁ । ସେଠାରେ ପହଞ୍ଚି କହିଲେ ''ଆଜ୍ଞା ! ଛାମୁଙ୍କ ଚରଣ ଦୟାରୁ ମନ୍ଦିର ପାଇଁ ଜମି ଖଣ୍ଡ ମାଗଣା ମିଳିଗଲା । ବର୍ତ୍ତମାନ ଆପଣ ପ୍ରତିଶ୍ରୁତି ରକ୍ଷା କଲେ ମନ୍ଦିର ତିଆରି ହେବ'' । ମହାରାଜ ଏହା ଶୁଣି ଭ୍ରୂକୁଟି-କୁଟିଳାନନ ହୋଇ ଭାଷିଲେ - ''କିହୋ ! ଆମେ ସିନା କହିଥିଲୁଁ ସାହାଯ୍ୟ ଦେବୁ ବୋଲି, କିନ୍ତୁ କେବେ ଦେବୁଁ ତାହାତ ଆମେ ଏଗ୍ରିମେଣ୍ଟ ଲେଖି ଦେଇ ନାହୁଁ । ତୁମେତ ଆମର ଡିଗ୍ରିଦାର ବା ରେଜିଷ୍ଟରି ବନ୍ଧକଦାର ମହାଜନ ନୁହଁ, ଆମ ମନ ରସିଥିଲା ଆମେ କହିଥିଲୁଁ, ବର୍ତ୍ତମାନ ଆମ ମନ ନ ହେଲା, ଆମେ ନ ଦେଲୁଁ, ଏଥିପାଇଁ ଏତେ ତମ୍ଭି କିଆଁ ? ଓଡ଼ିଶାରେ ଯେଉଁ ମରୁଡ଼ି, ନଈବଢ଼ି ଓ ଦୁର୍ଭିକ୍ଷ ସବୁ ପଡ଼ିଛି ସେଥିରେ ଦାତାମାନଙ୍କ ବଂଶତ ନିର୍ମୂଳ ହୋଇ ନାହିଁ କି ଦାତାମାନଙ୍କ ଘର ଦ୍ୱାର ମୂଳ ପୋଛ କି ଧୋଇ ହୋଇ ନାହିଁ, ଆମେ ଜଣେ ସିନା ନ ଦେଲୁଁ, ଆଉ ତ ଓଡ଼ିଶାରେ ନାମ ଥୋଡ଼ା ଦର୍ଶନ ବଡ଼ା ନାମ ଥୋଡ଼ା ଦର୍ଶନ ଥୋଡ଼ା, ନାମ ବଡ଼ା ଦର୍ଶନ ବଡ଼ା ଓ ନାମ ବଡ଼ା ଦର୍ଶନ ଥୋଡ଼ା ରାଜାରାଜୁଡ଼ା, ସନ୍ଥ-ମହନ୍ତ, ଅଦିଆ ବିନ୍ଧଣା, ଦିଆ ବିନ୍ଧଣା, ଚିତାକଟା, ମାଳିଜପା ନଅଶ ଅନେଶ୍ୱତ ଜଣ ଦାତା ଅଛନ୍ତି । ସେମାନଙ୍କର ବଂଶ ବୁଡ଼ି ନାହିଁ, ସେମାନଙ୍କ ଭିହରେ ବିଲୁଆ ଡେଇଁ ନାହାନ୍ତି, ସେମାନଙ୍କ ଟାଟି କବାଟରେ ମାଟି କଣ୍ଟା ଛଟା ହୋଇ ନାହିଁ । ସେମାନଙ୍କ ଠାକୁ ଯାଇ ମନ୍ଦିର ତିଆରିର ଖରଚ ଉଠାଉ ନାହଁ କିଆଁ ? ମନ୍ଦିର ତିଆରି କାମ ସରିଲେ ଆମେ ଟଙ୍କା ଦେବା ।'' ପୂଜାହାରୀ ମହାରାଜଙ୍କର ଏହି ସମ୍ବର୍ଦ୍ଧନାରେ ଜେଜେବାପାଙ୍କ ପେଟ ପୂରିଗଲା ଓ ଘରକୁ ଆସି ତାଙ୍କ ଅର୍ଦ୍ଧାଙ୍ଗକୁ (ଆମ ଜେଜେମାଆଙ୍କୁ) କହିଲେ, 'ବାପାଙ୍କୁ କହିବ ବଳଦ ବିକିବି ନାହିଁ, ମୋ ବଇଷମ ହବା କଥା ନୋହିଲା ।' ତଦ୍‌ପରେ ରେଜିଷ୍ଟରି ଖାନାକୁ ଯାଇ ଖଣ୍ଡିଏ ପୈତୃକ ସମ୍ପତ୍ତି ବିକି କିଛି ଟଙ୍କା ଆଣି ଦାତାମାନଙ୍କଠାକୁ ଯିବା ପାଇଁ ଦେଣା କରିଥିବା ଅଡୁଆ ତୁଟାଇ ମନ୍ଦିର ତୋଳା ପ୍ରସ୍ତାବକୁ ଭାଙ୍ଗି ଦେଲେ ଓ ପୂର୍ଣ୍ଣ ହୃଦୟରେ ଘରେ କବାଟ କିଳି ରହିଲେ । ଜେଜେବାପା ଆମର ଛେପ ଢୋକା ରୋଗର ତିନୋଟି ବିଭିନ୍ନ ଲକ୍ଷଣାକ୍ରାନ୍ତ ରୋଗୀଙ୍କି ଦେଖିଥିଲେ ।

(୧) କାଇଲା ଛାପକୁ ପୂରା ଢୋକା ରୋଗୀ ।

(୨) ଦରଢୋକା ରୋଗୀ ।

(୩) ଦରପକା ଦରଢୋକା ରୋଗୀ ।

ପ୍ରଥମ ଶ୍ରେଣୀର ରୋଗୀମାନେ ଥରେ ଛାପକୁ ପକାଇ ସାରି ତାକୁ ବିବାକ ପୋଛିପାଛି ଚାଟି ଚୁଟି ଢୋକି ନିଅନ୍ତି । ଦ୍ୱିତୀୟ ଶ୍ରେଣୀର ରୋଗୀ ପକାଇବା ଛାପକୁ ଅଧେ ଛାଡ଼ନ୍ତି ଅଧେ ଢୋକନ୍ତି, ତୃତୀୟ ଶ୍ରେଣୀୟ ରୋଗୀ ଛାପକୁ ନିଃଶେଷ କରି ପକାନ୍ତି ନାହିଁ ଓ ଯେତେକ ଛାପ

ପକାଇ ଥାଆନ୍ତି ତାକୁ ଢୋକିବା ପାଇଁ ଜିଭ ଲହ ଲହ କରୁଥାଆନ୍ତି, ବେଳେ ବେଳେ ଛାପ ପାଖକୁ ଜିଭ ଆଣୁ ଥାଆନ୍ତି ପୁଣି କେଜାଣି କାହିଁକି ଜିଭକୁ ପାଟି ଭିତରକୁ ନେଉ ଥାଆନ୍ତି । ଏହିପରି କରୁ କରୁ ତାଙ୍କର ଛେପ ପକାଇବାରେ ସ୍ୱସ୍ତି ହୁଏ ନାହିଁ କି ଢୋକିବାରେ ସ୍ୱସ୍ତି ହୁଏ ନାହିଁ; ପଛକୁ ବେଳ କାଳ ଉଣ୍ଡି ଦରପକା ଛାପକୁ ଦରଢୋକା କରନ୍ତି ।

ଢେଙ୍କେବାପା ତାଙ୍କ ଜୀବନର ଦୁଇଟି ବଡ଼ ବ୍ରତ ସାଧନ ପାଇଁ ଲକ୍ଷ୍ମୀ ସାଆନ୍ତାଣୀଙ୍କର ଯେଉଁ ସେରନ୍ତା ଅଲିଅଳ ପୁଅମାନଙ୍କ ଦିହୁଡ଼ିକି ଯାଇଥିଲେ, ସେ ଦେଖିଲେ, କେତେଜଣଙ୍କୁ ଧରିଛି ଧନାରୋଗ, କେତେଜଣଙ୍କୁ ଢୋକା ରୋଗ, ପୁଣି କେତେଜଣଙ୍କୁ ଏ ଦୁଇ ରୋଗ ଏକାଠେଇଁ ପଗଡ଼ିଛି । ପଛକୁ ସେ ବିଚାରିଲେ ଏ ରୋଗଗୁଡ଼ାକ ବୋଧହୁଏ ଆମ ଦେଶର ଆମ ହାଉଆ (ଜଳବାୟୁ ଦୋଷରୁ ହେଉଛି ପରା । ଏ ରୋଗୀଙ୍କର ଗୋଟାଏ ପ୍ରଧାନ ଲକ୍ଷଣ ଏହିକି ଏମାନେ ବାହାରେ ଦେଖାଇ ହୁଅନ୍ତି ଓ କହି ବୁଲନ୍ତି ଆମେ ଧନ ଦେଇ ନାଆଁ କିଣିବାକୁ ଘୃଣା କରୁ । କିନ୍ତୁ ପ୍ରତି ମୁହୂର୍ତ୍ତରେ ଖବରକାଗଜରେ, ସଭ୍ୟ ସମାଜରେ, ବଡ଼ଲୋକଙ୍କ ସମାଜରେ, ସରକାରୀ ମହଲରେ କିପରି ଏମାନେ ଦାତାପଣିଆ ଯୋଗୁଁ ଗୋଟାଏ ଲେଖାଏଁ ନାଆଁ ବା ଦ୍ୱାରିକା ଛାପା ବା ତକମା ପାଇବେ ଏହାହିଁ ଜପୁଥାଆନ୍ତି ।

ଢେଙ୍କେବାପା ଏ ରୋଗର ଔଷଧ ଡାବ ମଧ୍ୟ ଖେଦାରେ ଟିପିଯାଇଛନ୍ତି । ପ୍ରତି ରୋଗୀଙ୍କ ପାଇଁ କଳିଚୂନ ପାଏ, ହାଣ୍ଡିକଳା ପାଏ, ସିନ୍ଦୂର ଛଟାଙ୍କିଏ ଓ ହରିତାଳ ଛଟାଙ୍କିଏ । ଔଷଧ ତିଆରି କରିବାର ପ୍ରଣାଳୀ କଳିଚୂନ ସଙ୍ଗେ ଘୋରା ଚନ୍ଦନ, ହାଣ୍ଡିକଳା ସଙ୍ଗେ ଚୂଆ, ସିନ୍ଦୂର ସଙ୍ଗେ କଣ୍ଡପୁରୀ ଜଡ଼ା ତେଲ ଓ ହରିତାଳ ସଙ୍ଗେ ନୟନସୁଖ ତେଲ ତଦଭାବେ ପୁଲାଙ୍ଗ ମାଲପା ଫେଣ୍ଟି ଏ ଚାରିଗୋଟି ସ୍ୱତନ୍ତ୍ର ମଲମ ବା ଅବଲେହ ତିଆରି କରିବାକୁ ହେବ । ରୋଗ ଆକ୍ରମଣ କଲାବେଳେ ଅର୍ଥାତ୍ ରୋଗୀ ପକାଇଥିବା ଛେପକୁ ଢୋକିବାକୁ ଜିଭ କାଢ଼ିବା କ୍ଷଣି ରୋଗୀଙ୍କ ଜିଭରେ ଓ ଛାତିରେ ହରିତାଳ ଲେପ, ଡାହାଣ ଗାଲରେ କଳିଚୂନ ଲେପ, ବାଆଁ ଗାଲରେ ହାଣ୍ଡିକଳା ଲେପ ଓ ମୁଣ୍ଡରେ ଓ ପିଠିରେ ସିନ୍ଦୂର ଲେପ ଲଗାଇ ଦେବ । ତାହା ହେଲେ ରୋଗୀଙ୍କ ପାଟିରୁ ଗୁଡ଼ିଏ ଲାଳ ସ୍ରାବ ହୋଇ ରୋଗର ପ୍ରକୋପଟା କମିଯିବ । ବେଳକାଳ ଉଣ୍ଡି ଏ ଲେପକୁ ଲେଉଟ ପାଉଟ କରି ଷଡ଼ଋତୁରେ ଦେହର ଛଅ ସ୍ଥାନରେ ଜିଭ, ଛାତି, ଡାହାଣ ଗାଲ, ବାଆଁଗାଲ, ମୁଣ୍ଡ ଓ ପିଠିରେ, ଛଅଥର ପ୍ରୟୋଗ କଲେ ଏ ରୋଗର ଆକ୍ରମଣ ଆଉ ତାଙ୍କୁ ଆକର୍ଷିବ ନାହିଁ । ଥରେ ଲେପ ଦିଆଯିବା ପରେ ସ୍ଥାନୀୟ ସଂବାଦପତ୍ରମାନଙ୍କରେ ଏଥିରୁ ବିଜ୍ଞାପନ ବାହାରୁଥିବ ଓ ଗୋଟିଏ ଲେଖାଏଁ ସାନ୍ଧ୍ୟ ସମ୍ମିଳନ କରି ସେଠାରେ ଗୋଟିଏ ଉଚ୍ଚ ମଞ୍ଚା ବାନ୍ଧି ଓ ହରରଙ୍ଗୀ ଜୀବଙ୍କୁ ନେଇ ସେଠାରେ ବସାଇବାକୁ ହେବ । ତାହା ହେଲେ ସଙ୍ଗେ ସଙ୍ଗେ ରୋଗର ବୀଜନାଶ ଓ ନାମର କରାମତ ପ୍ରକାଶ ଦୁଇ କଥା ହୋଇଯିବ ।

ଏଥିପରେ ପୋଥି ଡାକୁଛି ସେବା ରୋଗ ।

ରସଚକ୍ର : ଦ୍ୱିତୀୟ ଭାଗ, ୪ର୍ଥ ସଂଖ୍ୟା, ଜ୍ୟେଷ୍ଠ, ୧୩୪୧ ସାଲ ।

## ।। ଆଠ ।।

### ସେବାରୋଗ

ଆମ ଦେଶରେ ସେବା କହିଲେ, ପୂର୍ବ ଶବ୍ଦର ଭାବାର୍ଥ ନେଇ ଏଥିର ନାନା କିସମର ଅର୍ଥ କରାଯାଏ । ଯଥା : ଅତିଥି ସେବା, ଦେବ ସେବା, ରୋଗୀ ସେବା, ସାହିତ୍ୟ ସେବା, ମାଦକ ସେବା, ଗ୍ରାମ ସେବା, ପାଦୁକ ସେବା, ନିର୍ମାଲ୍ୟ ସେବା, ମହାପ୍ରସାଦ ସେବା । ଅତିଥି ସେବାର ଅର୍ଥ ଗୃହରେ ଉପସ୍ଥିତ ଅଭ୍ୟାଗତଙ୍କ ବାସ, ଗ୍ରାମ, ବାସଃ, ସୁବାସ, ଅଙ୍ଗ ସଂବାହନାଦି ଦ୍ୱାରା ସଂବର୍ଦ୍ଧନା, ଦେବସେବାର ଅର୍ଥ ଧୂପ, ଦୀପ, ନୈବେଦ୍ୟ, ଗନ୍ଧ, ମାଲ୍ୟାଦି ଓ ଅଙ୍ଗନ୍ୟାସ, କରନ୍ୟାସ, ଭଜନ, ସ୍ମରଣାଦି ଦ୍ୱାରା ଠାକୁରପୂଜା, ରୋଗୀ ସେବାର ଅର୍ଥ ଉପଯୁକ୍ତ ଔଷଧ ଓ ପଥ୍ୟାଦି ପ୍ରୟୋଗ ଦ୍ୱାରା ରୋଗୀର ପରିଚର୍ଯ୍ୟା, ସାହିତ୍ୟ ସେବାର ଅର୍ଥ ଗଦ୍ୟ-ପଦ୍ୟ-ମୂଳକ ନାଟକ, ଉପନ୍ୟାସ, ନବନ୍ୟାସ, ବର୍ଣ୍ଣବିନ୍ୟାସ, ଶବ୍ଦ ବିନ୍ୟାସ, ବାକ୍ୟ ବିନ୍ୟାସ, ପତ୍ରପତ୍ରିକା, ପତ୍ରୀ ଆଦିର ରଚନ, ସଂଗ୍ରହଣ, ପରିଶୋଧନ, ପରିମାର୍ଜନ, ପଠନ, ପାଠନାଦି ଦ୍ୱାରା କୌଣସି ଦେଶର ବା ଜାତିର ସାହିତ୍ୟ ରାଜ୍ୟରେ ଗାନ୍ଥିନୀ କରିବା, ମାଦକ ସେବାର ଅର୍ଥ ପ୍ରତିଦିନ ଦୈନନ୍ଦିନ କରୁଣୀୟ କର୍ମ ମଧ୍ୟରେ ଆପଣାର ମନ, ମୁନ, ଚଇତନ୍ୟ ରୂପ କଳକୁ 'ଅଏଲିଙ୍ଗ' କରି ଶରୀର-ରୂପ ଶଗଡ଼ରେ କାଳି ଦେବା ବା ଗାଡ଼ି ଚକରେ ନର୍ବୀ ଚକଡି ଦେବା କର୍ମକୁ ପ୍ରଥମ ସ୍ଥାନ ଦେବା, ଗ୍ରାମ ସେବାର ଅର୍ଥ ଗ୍ରାମବାସୀଙ୍କୁ ନାପିତ ରୂପେ କ୍ଷୌର, ନଖ ରଞ୍ଜନ, ରଜକ ରୂପେ ଧୋବଲୁଗା ପିନ୍ଧାଇବା, ଗଣକ ରୂପେ ଦିନ, ବାର, ତିଥି, ନକ୍ଷତ୍ର, ଯୋଗ, କରଣାଦିର ଗଣାପୋଛା ଜିଜ୍ଞାସୁଙ୍କ ଟିପ୍‌ପଣା ଓ ପାଞ୍ଜି ଦେଖି ଶୁଭ ଅନୁକୂଳ ପ୍ରତିଷ୍ଠା, ବ୍ରତ, ବିବାହ ଆଦି କର୍ମ ପାଇଁ ଶୁଭଲଗ୍ନ ନିରୂପଣ କରିବା, ପାଦୁକ ସେବାର ଅର୍ଥ ଦେବ ପ୍ରତିମାଙ୍କ ସ୍ନାନୋଦକରୁ ଟୋପାଏ ଜିଭରେ ଲଗାଇବା, ନିର୍ମାଲ୍ୟ ସେବାର ଅର୍ଥ ଖରାରେ ଶୁଖା ହୋଇ ସାଇତା ହୋଇଥିବା ଶ୍ରୀଜଗନ୍ନାଥଙ୍କ ଅନ୍ନକଣାରୁ ଗୋଟିଏ ମାତ୍ର ସ୍ନାନାନ୍ତେ ପାଟିରେ ପକାଇ ପାରତ୍ରିକ ରାସ୍ତାରୁ ଅଳିଆ ସଫା କରିବା, ମହାପ୍ରସାଦ ସେବାର ଅର୍ଥ ପୁରୀର ଶ୍ରୀଜଗନ୍ନାଥ, ଭୁବନେଶ୍ୱରର ଶ୍ରୀଲିଙ୍ଗରାଜ, କଟକର ଶ୍ରୀଚଣ୍ଡୀ, କଲିକତାର ମାଆକାଳୀ ଆଦି ମାର୍କାମରା ଦେବତାଙ୍କୁ ବିନିବେଦିତ ସୁଚର୍ବ୍ୟ, ସୁଚୋଷ୍ୟ, ସୁଲେହ୍ୟ, ସୁପେୟ, ଘୃତାନ୍ନ, ଦଧ୍ୟନ୍ନ, ମିଷ୍ଟାନ୍ନାଦିର ଆକଣ୍ଠ ଭୋଜନ । ଅତଏବ 'ସେବା' ଶବ୍ଦର ନାନା ଅର୍ଥର, ନାନାକିସମର, ନାନା ଗ୍ରେଡ୍‌ର, ନାନା ଧାତୁର ସୁଯୋଗ ଭାଷାରେ ଦେଖାଯାଏ । ଲୀନ ସେବା ଗୋଟାଏ ରୋଗ ବୋଲି କେବେ ଶୁଣା ନ ଥିଲା । ଢେଙ୍କେବାପା ଯେଉଁ ରୋଗର ବର୍ଣ୍ଣନା ତାଙ୍କ ଖେଦାରେ କରିଅଛନ୍ତି ତାହାର କେତେକ ନିଦାନ ଓ ଲକ୍ଷଣ ଅଧୁନା ପରିଲକ୍ଷିତ ଦେଶ ସେବା ବା ଜନ ସେବା ବ୍ରତଧାରୀ ଅନେକଙ୍କ ଠାରେ ଦେଖାଯାଉଥିବାରୁ ତାହା ଏହି ତା ବୋଲି ଆମ୍ଭମାନଙ୍କ ମନକୁ ଘେନୁଛି ।

ପୂର୍ବେ ଏହା ବେଳେବେଳେ ମନୁଷ୍ୟ ନାମଧାରୀ ପୁଂ ଜନ୍ତୁଙ୍କୁ ଧରୁଥିବ । କିନ୍ତୁ ବର୍ତ୍ତମାନ ଏହା ଆମ ଦେଶରେ ସଂକ୍ରାମକ ବା 'ଡିଆଁ ରୋଗ' ଆକାର ଧରି ବ୍ୟାପକ ଭାବରେ

ଏ ଦେଶର ପୁଂ, ସ୍ତ୍ରୀ ଓ ନପୁଂସକ ଜୀବଙ୍କଠାରେ ଘୋଟକ ଥିବାର ଦେଖାଯାଉଅଛି । ଏହି ରୋଗର ଓ ରୋଗୀଙ୍କର ବିବରଣ ଢେଙ୍କେବାପାଙ୍କ ମୁଣିରୁ ଯଥା ଦୃଷ୍ଟଂ ତଥା ଲିଖିତଂ ଶୁଣିବାକୁ ଆଜ୍ଞା ହୁଅନ୍ତୁ ହେ ପାଠକ-ପାଠିକାଗଣ !

ଏ ରୋଗ ଉତ୍ପତ୍ତିର କାରଣଗୁଡ଼ିକ ମଧ୍ୟରୁ କେଉଁ ରୋଗୀର ଗୋଟିଏ, କାହାର ଯୋଡ଼ିଏ, କାହାର ତଦଧିକ, କାହାର ସବୁଗୁଡ଼ିକ କାରଣ ବିଦ୍ୟମାନ ଥାଏ । ତୁଳସୀ ଦୁଇ ପତ୍ରରୁ ବାସିଲା ଭଳି ଭାବୀ ରୋଗୀ ପିଲା ଦିନରୁ ବିଦ୍ୟା ଶିକ୍ଷାରେ ମନ ଦିଅନ୍ତି ନାହିଁ । ଚାହାଳିରେ ଯେଉଁମାନେ ଖଡ଼ିପାଠ ଓ ପୋଥିପାଠ ପଢୁଥାଆନ୍ତି ସେମାନେ ଗାଆଁର ମୂର୍ଖଲୋକଙ୍କର କାହାର ମହାଜନି ଖାତକି ହିସାବ, କାହାର ଦୋକାନ ହିସାବ, କାହାର ମୂଲ ମଜୁରି ହିସାବକୁ ଖଡ଼ିପାଠରେ ଛିଣ୍ଡାଇ ଦିଅନ୍ତି ଓ କାହାର ଡାକ ଚିଠି ଖଣ୍ଡେ ନେଇ ଦିଅନ୍ତି ଓ ପଢ଼ି ଦିଅନ୍ତି ଓ ମନିଅର୍ଡ଼ର ଫାରମ ପୂରଣ କରି ଏଥିରେ ପ୍ରତିବଦଳରେ ଶାଗକେରାଏ, ମୀନମାଛ ପୁଞ୍ଜାଏ ସାରୁ ବାଣ୍ଟେ ଏତକ ପାଇ ପରିବାର ପୋଷଣରେ ସହାୟ ହୁଅନ୍ତି । ତାପରେ ଚାହାଳି ବା ଖଡ଼ିପାଠ ଛାତ୍ର ସ୍କୁଲରେ ପଢ଼ିବା ସମୟରେ ସାଙ୍ଗ ପିଲାଙ୍କର ଓ ଶ୍ରେଣୀର ବୁଦ୍ଧିଆ ପିଲାଙ୍କର ସ୍ୱକଳ୍ପିତ କ୍ଷମତାପ୍ରାପ୍ତ ମୁଖିଆରୁ ଶିକ୍ଷକଙ୍କର ପଢ଼ାଇବାରେ ଅଯତ୍ନ, ପିଲାମାନଙ୍କୁ ସେବା ଆଦି ବିଷୟରେ ପ୍ରତିବାଦ କରନ୍ତି ଓ ଏ କଥାର ପ୍ରତିକଥା ପାଇଁ କ୍ଲାସପିଲା ଓ ଇସ୍କୁଲ ପିଲାମାନଙ୍କ ମଧ୍ୟରେ ମେଳ ବନ୍ଧାନ୍ତି ଓ ସେ ମେଳିର ଦଳପତି ହୁଅନ୍ତି । ସେଥିରେ କାର୍ଯ୍ୟ ହାସଲ ନ ହେଲେ ସ୍ୱୀୟ ଓ ପରକୀୟ ଅଭିଭାବକମାନଙ୍କ କର୍ଣ୍ଣରେ ବାତୁଳମଣ୍ଡଳୀର ଅଭିଯୋଗମାନ ପକାନ୍ତି । ସେଥିରେ କାମ ହାସଲ ନ ହେଲେ ସ୍କୁଲ ବାହାରେ ଶିକ୍ଷକଙ୍କୁ ଏକାକୀ ଓ ନିରାଶ୍ରୟ ଅବସ୍ଥାରେ ଅନ୍ଧାର ଗଳିରେ, ହାଟରେ, ଜନତାପୂର୍ଣ୍ଣ ଛକ ଜାଗାରେ, ଜନପୂର୍ଣ୍ଣ ଯାତ୍ରା ଆଦିର ଗହଳିରେ, ଆପଣା ଗଠିତ ଦଳଦ୍ୱାରା କୋଡ଼ି ହୁଅନ୍ତି, ସେଥିରେ କୃତକାର୍ଯ୍ୟ ନ ହେଲେ ଶିକ୍ଷକଙ୍କ ପାଖକୁ ଅକଭାଷା ଓ କଳଙ୍କପୂର୍ଣ୍ଣ ବେନାମୀ ଚିଠି ପକାନ୍ତି, ଶିକ୍ଷକଙ୍କ ନାମରେ ଡାହିକା, ଢଗ, ଗୀତ ବୋଲନ୍ତି ଓ ଇସ୍କୁଲ କାନ୍ଥରେ ଓ ନାନା ପ୍ରକାଶ୍ୟ ସ୍ଥାନରେ ଛକି ଛକି ହୋଇ ଶିକ୍ଷକଙ୍କ ନାମରେ ଅକଥ୍ୟ ଓ ଅଶ୍ରାବ୍ୟ ଶବ୍ଦମାନ ଅଙ୍ଗାରରେ ବା ଚକଖଡ଼ିରେ ବଡ଼ ଅକ୍ଷରରେ ଲେଖନ୍ତି । ଏଥିରେ ମଧ୍ୟ କାମ ହାସଲ ନ ହେଲେ ଇସ୍କୁଲ ଘରୁ କାଗଜପତ୍ର ଓ ଅନ୍ୟାନ୍ୟ ବହି ଚୋରି କରନ୍ତି, ଇସ୍କୁଲରେ ନାନାପ୍ରକାର ଉତ୍ପାତ କରନ୍ତି । ଫଳକଥା ଏହିକି - ଇସ୍କୁଲରେ ଏପରି ଘଟଣା ଘଟିବାର ଦେଖାଯାଏ, ସେହି ବିଦ୍ୟାଳୟରେ ଜଣେ ବା ତଦଧିକ ଭାବୀ ସେବା-ରୋଗୀଙ୍କର ତିନି ଗୁଣା ହୋଇଛି ଓ ସେ ଅଞ୍ଚଳରୁ ଶୀଘ୍ର ସେବାରୋଗୀ ବାହାରିବେ ବୋଲି ନିଃସନ୍ଦେହରେ ଠଉରାଇ ହେବ। ଅଧିକାଂଶ ରୋଗୀ ସ୍କୁଲରେ ହିଁ ପଠଦଶାର ପୂର୍ଣ୍ଣାହୂତି ଦିଅନ୍ତି ଓ ଶେଷ ପରୀକ୍ଷା ବା ଗଧ କାଲଭୂତ (bridge) ପାର ନ ହେଉଣୁ ଦେଶସେବା ବ୍ରତରେ ଦୀକ୍ଷିତ ହୁଅନ୍ତି ଓ ଜନସେବକ ସମାଜ, ସମାଜ ସଂସ୍କାରକ ସଂସିତ ଦୁଃସ୍ଥୋଦ୍ଧାରଣ କମିଟି, ସ୍ତ୍ରୀ ଶିକ୍ଷା ସ୍ୱାଧୀନତା ବିଧାୟିଣୀସଭା ନିର୍ବରାଦୁଃଖନିବାରଣ-ସଂଘ, ପତିତପାବନ ଦଳ ଆଦିରେ ପ୍ରଥମେ ବକ୍ତା ରୂପେ ଓ

ପରେ ତନ୍ତ୍ରୀ ଓ ଯନ୍ତ୍ରୀ ରୂପେ ହୁଅନ୍ତି ଓ ଏ ସବୁ ସଭାର ପ୍ରୋସିଡିଙ୍ଗ କାର୍ଯ୍ୟ ଦିଅନ୍ତି ଓ ପ୍ରସ୍ତାବ ଓ ନିର୍ଦ୍ଧାରଣମାନ ପ୍ରଥମେ ଦୂରବର୍ତ୍ତୀ ଓ ପରେ ନିକଟବର୍ତ୍ତୀ ସଂବାଦପତ୍ରମାନଙ୍କରେ ପ୍ରଥମେ ବେନାମୀ ଓ ଡାକନାମୀରେ, ପରେ ସ୍ୱ-ନାମୀରେ ପ୍ରକାଶ କରନ୍ତି । ଏଥିମଧ୍ୟରୁ ଯେଉଁମାନେ ଭାଗ୍ୟବାନ୍ ସେମାନେ ଏହି ଦୁଇପତ୍ରରୁ ଚାରିପତ୍ର ଧରି ଲଟାନ୍ତି, କିଏ ଷଣ୍ଢା ମାରନ୍ତି, କିଏ କୁଆଁ ଦିଅନ୍ତି, କିଏ ଶାଖା ପ୍ରଶାଖା ବିସ୍ତାର କରି ଅନତି-ବିଳମ୍ୱେ ଦେଶର ଜଣେ ଜଣେ ଉଦୀୟମାନ ନେତା ବୋଲି ଦ୍ୱାରିକା ଛପାରେ ଭୂଷିତ ହୁଅନ୍ତି । ଯେଉଁମାନଙ୍କ କରାମତ ଟାଣୁଆ ନୁହେଁ, ସେମାନେ ଦେଖନ୍ତି ଯେ ଗୋଟାଏ ସରକାରୀ ବିଭାଗୀୟ ମାର୍କାମରା ମୁଖା ନ ପିନ୍ଧିଲେ ସଭାସମିତି ମହଲରେ, ଖବରକାଗଜ ମହଲରେ, ଜନସାଧାରଣଙ୍କ ନିକଟରେ ଓ ସମ୍ପାଦକମାନଙ୍କ ଦପ୍ତରରେ ଖାତିର ରହିବ ନାହିଁ, ଏଥିପାଇଁ ସେମାନେ କାୟିକ, ମାନସିକ ପରିଶ୍ରମ କରି ଯେନତେନ ପ୍ରକାରେ ବିଶ୍ୱବିଦ୍ୟାଳୟର ବା ସଂସ୍କୃତ-ପରୀକ୍ଷକ-ମଣ୍ଡଳୀର ଛାପା ଅର୍ଥରେ ଲଗାନ୍ତି ବା ଏ ଦେଶରୁ ନ ହେଲେ ଡାକଦ୍ୱାରା ବିଦେଶରୁ ଶିକ୍ଷାଲାଭ କରି ଇଂରାଜୀ ବର୍ଣ୍ଣମାଳାରୁ ଗୁଡ଼ିଏ ବଛା ଅକ୍ଷର ଆପଣା ନାମ ପଛରେ ଲଗାନ୍ତି । ଯାହାଙ୍କର ଏ ସବୁ ପାଇଁ ଜନ, ଧନ, ମନ, କସରତ, କରାମତ ବା ନସିବ ଆଦି ନାହିଁ ସେମାନେ କୌଣସି ଦେଶ-ପ୍ରସିଦ୍ଧ-ସଙ୍ଗ ବା ଦେଶ-ପ୍ରସିଦ୍ଧ-ନେତାଙ୍କ ପଛରେ ଗଧା-ବୋଟ ବାନ୍ଧି ହେଲା ଭଳି ଦିନାକେତେ ଉମେଦ୍‌ୱାରୀ କରନ୍ତି । ତା'ପରେ ନିଜ ଦିହ ଓ ମୁହଁ ଟିକିଏ କାଠୁଆ ହୋଇ ଗଲେ ବା ଉକ୍ତ ନେତାଙ୍କର ଦେହରକ୍ଷା ହୋଇଗଲେ, ନିଜ ଗୋଡ଼ରେ, ନିଜ ହାତରେ, ନିଜ ପେଟରେ, ପିଠିରେ, ଆଣ୍ଠୁରେ ଦେଇ ଚାଲନ୍ତି ଓ କ୍ରମଶଃ ମୁହଁ ଫିଟୁ ଫିଟୁ କଲମ ଫିଟେ, ଦିହ, ହାତ ଓ ଗୋଡ଼ ଫୁଟେ । କିଛିଦିନ ପରେ କି ଦୈନିକ, କି ସାପ୍ତାହିକ, କି ପାକ୍ଷିକ, କି ମାନସିକ, କି ଦ୍ୱୈମାସିକ, କି ତ୍ରୈମାସିକ, କି ଷାଣ୍ମାସିକ, କି ବାର୍ଷିକ, କି ଦ୍ୱୈବାର୍ଷିକ ପତ୍ର-ପତ୍ରିକାରେ ପ୍ରତି ସଂଖ୍ୟାରେ ତାଙ୍କ କରାମତ ଜାହେରୀ ଅର୍ଥାତ୍ ଦେଶସେବାର ଗୋଟାଏ ନା ଗୋଟାଏ ଉଦାହରଣ ପ୍ରକଟିତ ହେବାର ଦେଖାଯାଏ । ପ୍ରଥମେ ତାଙ୍କ ଦେଶସେବା ନିହିତ ସେବାର ଅର୍ଥ କ୍ରମଶଃ ପ୍ରମୋଶନ ଓ ଡବଲ ପ୍ରମୋଶନ ପାଇ ପାଇ ଅତିଥି ସେବା, ଦେଶ ସେବା, ରୋଗୀ ସେବା, ସାହିତ୍ୟ ସେବା, ମାଦକ ସେବା, ଗ୍ରାମ ସେବା, ପାଦୁକ ସେବା, ନିର୍ମାଲ୍ୟ ସେବା, ନିହିତ ସେବା ଶଙ୍କର ଅର୍ଥ ବାଟେ ପାହାଞ୍ଚେ ପାହାଞ୍ଚେ ଉଠି ଶେଷରେ ଦେଶବାସୀଙ୍କ ଧନର ମହାପ୍ରସାଦ ସେବା ନିହିତ ଅର୍ଥ ପର୍ଯ୍ୟନ୍ତ ପହଞ୍ଚେ । ସେତେବେଳେ 'ବସୁଧୈବ କୁଟୁମ୍ୱକଂ' ନୀତି ଓ ବାନାଧାରୀ ଦେଶସେବୀଙ୍କ ପକ୍ଷରେ ଦେଶବାସୀଙ୍କ ଧନ ନିଜ ଧନର ଆକାର ଧାରଣ କରେ ଓ ତଦ୍ଦ୍ୱାରା ନିଜର, ନିଜ ପରିବାରର, ନିଜ ବାଲବଚ୍ଚାଙ୍କର, ନିଜର ଆଶ୍ରିତଙ୍କର, ନିଜର ବ୍ୟୟ ଓ ଗୁଜରାନ ମେଣ୍ଟାଇବା ବିବେକ-ବିରୁଦ୍ଧ ବୋଲି ବିବେଚିତ ହୁଏ ନାହିଁ । କଥାଟା ସୂକ୍ଷ୍ମ ଦୃଷ୍ଟିରେ ଓ ବିବେକ ଦୃଷ୍ଟିରେ ଓ ନିଶାପ ଦୃଷ୍ଟିରେ ବୁଝିବାକୁ ଗଲେ ଯେ ଦେଶବାସୀଙ୍କ ସେବା ପାଇଁ ନିଜ ଶରୀରକୁ ହରିଚଣ୍ଡୀଙ୍କ ବୋଦା ବା କନ୍ଧମାନଙ୍କ ମେରିଆ ପରି ଉତ୍ସର୍ଗ କଲା, ତାର ଦେହ ଓ ତାର ପରିବାର ଆଦି ପୋଷ୍ୟବର୍ଗଙ୍କ ଦେହ ଦେଶବାସୀଙ୍କ

କୋଠ ସମ୍ପତ୍ତି ଥିବା ଲିହାଜରେ ସେ ଦେଶବାସୀଙ୍କ ଧନରେ ଯେବେ ପୋଷା ନ ହେବ, ତାଙ୍କର ତେବେ ପୋଷିବ କିଏ, ତାଙ୍କ ପିନ୍ଧିବା ଲୁଗା ଓ ଗହଣା, ରହିବା ବାସଗୃହ ବା ଶୋଇବା ଶଯ୍ୟା ପଲ୍ୟଙ୍କାଦି ଓ ଯିବାଆସିବା ଯାନ-ବାହନାଦିର ଖରଚ ଯେବେ ଦେଶ ଫଣ୍ଡରୁ ଖରଚ ନ ହେବ, ତେବେ ତାହା ଖରଚ ହେବ କେଉଁ ଫଣ୍ଡରୁ ? ତାପରେ ଦେଖାଯାଉ ଯେ ଏ ଦେଶ-ସେବକମାନେ ହେଲେ ଦେଶବାସୀଙ୍କ ପୋଷିଆଁପୁଅ ଓ ସେମାନଙ୍କ ଆସନବନ୍ଧୁ ମହାଫିସ ଓ ରକ୍ଷକ । ସେବକମାନଙ୍କ ମନ ଥଣ୍ଡାରେ ଓ ଦେବ ଅଯସରେ ନ ରହିଲେ ଦେଶଲାଗି ଭାବିବା ନିଶ୍ଚିନ୍ତତା ଦରକାର, ତାହା ସେମାନଙ୍କର ଆସିବ କାହୁଁ ? ଅତଏବ ସେମାନଙ୍କୁ ଓ ସେମାନଙ୍କ ପରିବାରବର୍ଗଙ୍କୁ ଅଯସରେ, ସୁଖରେ, ସଉଖୀନରେ ରଖିବାପାଇଁ ସେମାନଙ୍କ ଘର ଖରଚ, ଦାଣ୍ଡ ଖରଚ, ପଦର ଖରଚ, ମଫସଲ ଖରଚ, ସାନ୍ଧ୍ୟ ଖରଚ, ପ୍ରାତଃ ଖରଚ, ମକଦ୍ଦମା ଖରଚ ଚଳାଇବା ପାଇଁ ଦେଶବାସୀ ଧର୍ମତଃ ବାଧ । କିନ୍ତୁ ଯେତେବେଳେ ଗମାର-ଦେଶବାସୀଗୁଡ଼ାକ ଏ କର୍ତ୍ତବ୍ୟକୁ ଠଉରାଇ ନ ପାରନ୍ତି ସେତେବେଳେ ତାଙ୍କ ଆଖିରେ ଧୂଳିଦେଇ ତାଙ୍କ ମୁହଁରେ ଅନ୍ଧପୋଟଳି ବାନ୍ଧି, ତାଙ୍କ ପ୍ରଦତ୍ତ ଚାନ୍ଦା ଧନରୁ ଧୀରଚିତ୍ତ ସ୍ଥିର ବୁଦ୍ଧିରେ ଯେବେ କିଛି ଆପଣାର ଓ ଆପଣା ପରିବାରର ଗ୍ରାସାଚ୍ଛାଦନ, ସାବୁନ, ବାସନାତେଲ, ଏସେନ୍‌ସ, ବାରିକ ଲୁଗା କୁର୍ତ୍ତା, କୋଠାବାଡ଼ି ତିଆରି, ଜମିବାଡ଼ି ଖରିଦ ଓ ଦେଣାସୁଝା ଓ ମକଦ୍ଦମା ଚଳାଇବାରେ ବ୍ୟୟ କରନ୍ତି, ଏହା ଈଶ୍ୱରଙ୍କ ଚକ୍ଷୁରେ ଦଗାବାଜୀ ବା ତହବିଲ-ତୋଷରଫ ନୁହେଁ, ଏହା ଧର୍ମ ସାଧନର ଅଙ୍ଗମାତ୍ର । ତେବେ ତୁମେ କହିପାର ଯେ ଦେଶସେବୀଯାକ ପ୍ରକାଶ୍ୟରେ ଏହା ଖାଆନ୍ତି ନାହିଁ କିଆଁ ? ଏଥିର ଉତ୍ତରରେ ଏତିକି ବୋଲାଯାଇପାରେ ଯେ, ଯେଉଁ ଖାମିନ୍ଦ ଚାକରର ଗୁଣ ଚିହ୍ନି ଉପଯୁକ୍ତ ପାରିଶ୍ରମିକ ଦେବାର ବ୍ୟବସ୍ଥା ନ କରେ, ତା ଠାରୁ ନିଜର ଧର୍ମ ବିବେକାନୁମୋଦିତ କିଛି ପାରିଶ୍ରମିକ ଲୁଚା ଚୋରା କରି ନେଲେ ଏଥିରେ ଧର୍ମ-ହାନି ନାହିଁ ।

ଏଟାକୁ ଜେଢେବାପା ଆମର ରୋଗ ମଧ୍ୟରେ ଧରିଛନ୍ତି । ଦେଶସେବାର ଦୁଇଟା ପନ୍ଥା ଅଛି, ଗୋଟାଏ ସରକାରୀ ମାର୍କାମରା ଡିଷ୍ଟ୍ରିକ୍ଟ ବୋର୍ଡ଼, ମିଉନିସିପାଲିଟି, ଲୋକାଲ ବୋର୍ଡ଼, କୋଅପରେଟିଭ, ଏଣ୍ଡାଉମେଣ୍ଟ କମେଟି ଇତ୍ୟାଦି ଓ ଗୋଟିଏ ବେସରକାରୀ ଯଥା : କଂଗ୍ରେସ, ସାମ୍ୟବାଦୀ, ଖଦଡ଼ ପ୍ରଚାର ସଂଘ, ବିଧବା-ବିବାହ-ସହାୟକ ସମାଜ, ସମାଜ ସଂସ୍କାରକ-ସମିତି, ନାରୀଶିକ୍ଷା-ପ୍ରଚାର-ସମିତି, ପ୍ରାଚ୍ୟ ବିଦ୍ୟା-ପ୍ରଚାର-ସଂଘ, ସାହିତ୍ୟ-ବିବର୍ଦ୍ଧିନୀ-ସଭା ଇତ୍ୟାଦି ।

ଯେଉଁଥିରେ ସେବା ପାଇଁ ପଶିବ, ସେଥିରେ ବେଳକାଳ ଉଣ୍ଡି, ଶିରା ଓ ଧମନୀ ଉଣ୍ଡି, ବୁଡ଼ି ପାଣି ପିଇପାରିଲେ ବେସରକାରୀ ମହାମାନବଙ୍କଠାରୁ ଆରମ୍ଭ କରି ସରକାରୀ ଦାସ ମନୋଭାବ ବିଶିଷ୍ଟ ଜୀବମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ଓଲୁ ବନାଇ ଦିଆ ଯାଇପାରେ ଓ ପାହ୍ୟାକୁ ପାହ୍ୟା ଉଠି ଶେଷରେ ଭାଟ-ସଭା, ବାଟ-ସଭା, କାଟ-ସଭା, ଚାଟ-ସଭା, ହାଟ-ସଭାରେ ସଦସ୍ୟ, ମନ୍ତ୍ରୀ, ତନ୍ତ୍ରୀ ଓ ଯନ୍ତ୍ରୀ ପଦଲାଭ କରାଯାଇପାରେ । ଦେଶସେବାର ଆଉ ଗୋଟିଏ ଆକର ସଂବାଦପତ୍ରର ସମ୍ପାଦକଗିରୀ ଓ ନାମଜାଦା ସଂବାଦପତ୍ରର

ସଂବାଦଦାତାଗିରୀ, ଦେଶର ସଂବାଦପତ୍ର (ଦୈନିକ, ନାନା ଅର୍ଥର, ନାନା କିସମର, ନାନା ଗ୍ରେଡ଼୍‌ର, ସୁଯୋଗ ଭାଷାରେ ଦେଖାଯାଏ । କିନ୍ତୁ ସେବା ଗୋଟାଏ ସାପ୍ତାହିକ, ମାସିକ, ବାର୍ଷିକ, ଦ୍ୱୈବାର୍ଷିକ, ତ୍ରୈବାର୍ଷିକ ଓ ଇନ୍ଦ୍ରଧନୁ ପ୍ରକୃତିକ) ଚଳିଲେ ଦେଶରେ ଜନମତ ନିୟନ୍ତ୍ରିତ, ଗଠିତ, ପୁଷ୍ଟିତ ଓ ଫଳିତ୍ ହେବ । ଏହି ପବିତ୍ର ଉଦ୍ଦେଶ୍ୟ ଧରି ଗୋଟାଏ ମୁଖାପିନ୍ଧି ପହିଲେ ହାତରୁ କିଛି ଖରଚ କରି ବାହାରି ପଡ଼ିଲେ, ଦେଶର ଧନ କୁବେରମାନଙ୍କଠାରୁ ସଂବାଦପତ୍ରର ସେବା ଓ ନିଜର ପରିବାର ସେବା ଓ ଉଦରସେବା, ମହାପ୍ରସାଦ ସେବା ପାଇଁ ଅଲବତ ସେମାନଙ୍କ ତେରଜୁଡ଼ୀରୁ କିଛି ଖସିବ । ନ ଖସିଲେ ସ୍ୱନାମୀ ଓ ବେନାମୀରେ ତାଙ୍କ ଉପର ତଳ ୧୪ ପୁରୁଷ ଉଝଲା ଯିବ । ଉପରୋକ୍ତ ତାଲିକାରୁ ପାଠକମାନେ ବୁଝିବେ ନାହିଁ ଯେ ସାଧାରଣ ଅନୁଷ୍ଠାନମାନଙ୍କ ସଙ୍ଗେ ବା ସଂବାଦପତ୍ରମାନଙ୍କ ସହିତ ଯେତେ ଲୋକ ସମ୍ପର୍କ ରଖନ୍ତି ସମସ୍ତଙ୍କୁ ସେବା ରୋଗ ଧରେ । ଏ ସେବକମାନଙ୍କ ମଧରେ ଯେତେ ଜଣ ନିପାତନ-ସିଦ୍ଧ ବ୍ୟକ୍ତି ଅଛନ୍ତି ଯେଉଁମାନଙ୍କୁ ସେ ରୋଗ ଆକ୍ରମଣ କରିପାରେ ନାହିଁ କିନ୍ତୁ ଆମ ଦେଶରେ ଅଧିକାଂଶ ଦେଶସେବା-ବାନାଧାରୀ ଲୋକଙ୍କୁ ସେବା-ରୋଗ ଧରନ୍ତି ଯେଉଁପରି କେତେକ ବାବାଜି ଭେକ ନେଇ ଫେରି କୌପୁନୀ ଗ୍ରହଣ କରି ଚିତା, ଚଇତନ, ଜଟା, ବଳକଳ, ଭସ୍ମ, ତିଳକ, ମାଳା, ଚୁମୁଟା ଧାରଣ କରି ବୈରାଗୀ ବୋଲାଇ ସଂସାରୀଙ୍କଠାରୁ ବେଶି ଇନ୍ଦ୍ରିୟପରାୟଣ, ସଂସାରୀଙ୍କ ଠାରୁ ବେଶି କ୍ରୋଧପରବଶ, ବେଶି ଲୋଭୀ, ଏହିକି ମଉଜ ମଜଲିସରେ ବେଶି ଲିପ୍ତ ଥିବାର ଦେଖାଯାଏ, ଯେଉଁପରି ବ୍ରାହ୍ମଣଙ୍କ ମଧରେ ଦେଖାଯାଏ ଯେ ଅଧିକାଂଶ ଲୋକ ଚିତା ପଇତାକୁ ଗୋଟାଏ ପାସପୋର୍ଟ (ଛାଡ଼ ଚିଠି)ରେ ପରିଣତ କରିଅଛନ୍ତି, ସେହିପରି ଦେଶସେବା ବ୍ରତଧାରୀ ଲୋକଙ୍କୁ ଓ ତାଙ୍କ ଚେଲା, ଚେଲୀ, ଟହଲିଆ, ଲେହୁଣ୍ଡୀଙ୍କୁ ଏ ସେବା ରୋଗ ଧରି ଥିବାର ଦେଖାଯାଏ । ଜେଜେବାପା ଆମର ଘରଛାଡ଼ି ଦୂର ବିଦେଶକୁ ଯାଇ ନ ଥିଲେ, ସେ କେବଳ ଆପଣା ଦେଶର ଲୋକଙ୍କ ନାଡ଼ି ଚିପୁଥିଲେ । ପରମୁଣ୍ଡରେ ନଡ଼ିଆ ଭାଙ୍ଗିବା, ପର ପଇସାରେ ଅୟସ କରିବା, ପର ଧନରେ ବନ୍ଧୁ ଅର୍ଜିବା, ପର ପରିଶ୍ରମରେ ନାମ ଅର୍ଜିବା ଓ ଭେଲକୁ ଗିଲ୍‌ଟୀ କରି ଦାଣ୍ଡରେ ଭଲ ବୋଲିବା ଲାଗି କରିବା, ସାଧାରଣ ହିତକର ଅନୁଷ୍ଠାନ ନାମରେ ଦେଶବାସୀଙ୍କଠାରୁ ସେମାନଙ୍କ ଝାଳବୁହା କଉଡ଼ି ଆଣି ସେଥିରେ ନିଜର ଜମିବାଡ଼ି କିଣିବା, ନିଜର ଦୋମାହାଲା ଉଆସ ତୋଳିବା, ନିଜର ଗୃହୋପଯୋଗୀ (ଗୃହିଣୀଦ୍ୱୟ ଉଚ୍ୟତେ) ବିଶୁଦ୍ଧ ଦାମୀକରାଭରଣ ଯୋଗାଇବା, ନିଜର ଦେହାବରଣ ପାଇଁ ମହାର୍ହ ଚୀନାଂଶୁକ ଆଣିବା, ନିଜର ପାଣ୍ଠିକରି ନିଜ ନାମରେ ବ୍ୟବସାୟ ଓ ମହାଜନି ଅଥଚ ଏ ସେବା କର୍ମରେ ନିଜର ସ୍ୱାର୍ଥ ଛଦାମେ ନାହିଁ ବୋଲି ସର୍ବତ୍ର ଘୋଷଣା କରିବା ଓ ପୂତ ଦେଶସେବାରେ ପୂତ ଉଦର ସେବାର କାଣିଚାଏ ସମ୍ବନ୍ଧ ନାହିଁ ବୋଲି ଆସ୍ଫାଳନ କରିବା ଏ ସବୁ ସେବାରୋଗୀ ଓ ତାଙ୍କ ଲକ୍ଷଣ ବୋଲି ଜେଜେବାପା ଟିପି ଯାଇଛନ୍ତି । ପୋଥିରେ ଏ ରୋଗ କେବଳ ପୁଂଶ୍ଚିହ୍ନଧାରୀ ଜୀବଙ୍କୁ ଧରିବାର ଲେଖାଅଛି, କିନ୍ତୁ ଆଜିକାଲିକାର ଅବସ୍ଥା ଓ ସଭ୍ୟତା ବୃଦ୍ଧି ସଙ୍ଗେ ଉନ୍ନତି ହାନି କରି ଥିବାରୁ ଏ ରୋଗର ସ୍ତ୍ରୀଲିଙ୍ଗ ଓ ନପୁଂସକ ଲିଙ୍ଗପ୍ରତି ଶୁଭ

ଦୃଷ୍ଟି ପଡ଼ିଥିବାର ଠାଏ ଠାଏ ଦେଖା ଗଲାଣି । ଏକ ପ୍ରକାରର ବାତୁଳତା ରୋଗ ଅଛି, ତହିଁରେ ସବୁବେଳେ କହି ହୁଅନ୍ତି 'ମୁଁ ବାତୁଳ ନୁହେଁ' ଓ ଯେବେ ତାଙ୍କୁ ଆକ୍ରାନ୍ତ ରୋଗୀ କେହି କହିଦେବ ଯେ 'ତୁମେ ପାଗଳ' ତାହାହେଲେ ସେମାନଙ୍କର ପାଗଳାମୀ ବାହାରି ପଡ଼େ । ସେହିପରି ସେବା ରୋଗୀ ସଭା-ମଞ୍ଚରେ, ଗ୍ରାମ-ଦାଣ୍ଡରେ, ବାଆନ ବଜାର ତେପନ ଗଳିରେ, ଦୋଛକି, ତିଛକି, ଚଉଛକିରେ, ହାଟବଜାରରେ, ସଂବାଦପତ୍ରରେ, ନୋଟିସ, ହାଣ୍ଡବିଲ ଆଦିରେ ଘୋଷଣା କରନ୍ତି ଯେ ସେହିମାନେହିଁ ପରୋପକାରୀ ନିଃସ୍ୱାର୍ଥପର ଧାରଣୀ, ପରାର୍ଥ-ଜୀବନତ୍ୟାଗୀ ଅଟନ୍ତି, କିନ୍ତୁ ଯେବେ ତାଙ୍କୁ କେହି କେହି କହିଦେବ ଯେ 'ତୁମେ ସେ ବାରୋଗୀ ତାହାହେଲେ କଥାକରଗତ ଚଉବନ ପୁରୁଷ ସ୍ୱର୍ଗ ନରକାଦି ସ୍ଥାନରୁ ଓ ଆଗାମୀ ସତାବନ ପୁରୁଷ ଭବିଷ୍ୟତ ଗର୍ଭରୁ ଆନୀତ ହୋଇ ବିଦ୍ବବଜାରରେ ଖୁବ୍ ଘୁଷମାନାଟାଏ ପାଇଯିବେ । ଏ ରୋଗୀଙ୍କର ଆଉ ଗୋଟାଏ ପ୍ରଥମ ଗୁଣ ପର ନିନ୍ଦା, ସରକାର ନିନ୍ଦା, ସମାଜ ନିନ୍ଦା, ପ୍ରାଚୀନ ବ୍ୟକ୍ତି ଓ ଅନୁଷ୍ଠାନ ଓ ପଦ୍ଧତିମାନଙ୍କର ନିନ୍ଦା ଓ ଯାହା ତାହାର ପ୍ରଶଂସା । ଏ ରୋଗୀଙ୍କ ଆଖିରେ ଯେଉଁ ପରଳ ମାଡ଼ିଥାଏ ସେହି ପରଳର କରାମତରେ ଏମାନଙ୍କୁ ଧରାକୁ ସରା ପରି ବୁଢ଼ା ଲୁଚାକ ସଢ଼ା ପଚା ମାଲ ପରି, ଭେଲଟା ଭଲ ପରି, ଭଲଟା ସଲ ପରି ଦେଖାଯାଏ । ସନ୍ଧ୍ୟାବେଳଠାରୁ ସକାଳ ପର୍ଯ୍ୟନ୍ତ ପହରେ ପହରେ ଅନ୍ତରେ ବିଲୁଆ ରଡ଼ିର ଅନୁଭୂତି ଯାହାଙ୍କର ଅଛି ତାହାଙ୍କୁ ସେବା ଗୋଟାଏ ସାଧାରଣ ଗୁଣ ସହଜ-ବୋଧଗମ୍ୟ ଲୋକ ଗୋଟାଏ ବିଲୁଆ 'ହୁକେ ହୋ' କରିବା ମାତ୍ରକେ ଶତଶତ ମୋମୟଙ୍କ ହୁକେ ହୋ ରବରେ ଗ୍ରାମୋପକଣ୍ଠସ୍ଥ ଦଣ୍ଡାପଡ଼ିଆ, ଜଙ୍ଗଲ ଯେଉଁପରି ମୁଖରିତ ହୁଏ, ଦେଶର ଏକପ୍ରାନ୍ତରେ ଏ ରୋଗୀ ଜଣେ ଗୋଟାଏ ବୋବାଳି ଛାଡ଼ିଦେବାମାତ୍ରେ ଦେଶର ରଙ୍ଗମଞ୍ଚ, ସଭାମଞ୍ଚ, ପତ୍ରପତ୍ରିକାର ଛାଡ଼ିଦେବା ଶତ ଶତ ରୋଗୀଙ୍କ ହୁକ୍କେ ହୋ ରବରେ ମୁଖରିତ ହୋଇଯାଏ । ସେବା ବାନଧାରୀ ଯେଉଁ କେତେକଙ୍କୁ ଏ ରୋଗ ଧରି ନ ଥାଏ ସେ କେତେ ଜଣ ନାକରେ, କାନରେ, ଆଖିରେ, ମୁହଁରେ, ମୁଣ୍ଡରେ ହାତ ଦେଇ ଏ ରବୟା ଦେଖୁ ଥାଆନ୍ତି ଓ କବାଟ କିଳି 'ବିପଦେ ମଧୁସୂଦନଂ' ମନ୍ତ୍ର ପୁରଶ୍ଚରଣ କରନ୍ତି । ଏହି କେତୋଟିଙ୍କ ଦଶା ଦେଖିଲେ କରୁଣା ରସର ଉଦ୍ରେକ ହୁଏ । ଏମାନେ ତ ଡୋର କଉପୁନୀ, ମାଳା, ଝୁଲି ନେଇ ସାରିଛନ୍ତି । ପୁଣି ପୂର୍ବ ଆଶ୍ରମକୁ ଫେରିଯିବାକୁ ବାଟ ନାହିଁ । ଅଥଚ ସେ ରୋଗୀଙ୍କ ସଙ୍ଗେ ଚଳିବାକୁ ଓ ଜନ ସମାଜରେ ମୁଣ୍ଡ ଟେକି ଚାଲିବାକୁ ଏମାନଙ୍କୁ ଦୁର୍ବହ ଭାର ହୋଇ ଉଠେ । ଅଗତ୍ୟା ଏମାନଙ୍କୁ ତପସ୍ୟାର୍ଥେ ହିମାଳୟ କନ୍ଦର କିମ୍ବା ଆତ୍ମରକ୍ଷାର୍ଥେ ଅନ୍ୟ ବସ୍ତୁର ଆଶ୍ରୟ ନେବାକୁ ହୁଏ ।

ସେମାନେ ଗୋଟାଏ ହିମାଳୟନିଭ ଭ୍ରମ କରନ୍ତି । ଢେଙ୍କେବାପାଙ୍କ ସାଆନ୍ତବାପା ତାଙ୍କ ଭ୍ରମଣ ବୃତ୍ତାନ୍ତରେ ଗାଇଛନ୍ତି 'ଘରୁ ଖାଇ ପରକାମ କରେ କିଏ ବାପା ?' ଏ କଥାଟା ଏ ନିରୀହ ପ୍ରାଣୀଙ୍କ ମସ୍ତିଷ୍କରେ ପଶିପାରେ ନାହିଁ । ଯେବେ ପଶୁଥାନ୍ତା ଏମାନେ ମଧ ସେବା-ରୋଗୀ ଦଳ ବୃଦ୍ଧି କରନ୍ତେ ।

ଢେଙ୍କେବାପା ସ୍ଥିର କରିଛନ୍ତି ଯେ ପିତ୍ତ ଚହଟିଲେ ଏ ରୋଗ ଧରେ । ଏଥିପାଇଁ ପ୍ରତିଦିନ ତ୍ରିସନ୍ଧ୍ୟାରେ ଅଷ୍ଟାଙ୍ଗପାଞ୍ଚଣ, (ରୋଗୀର ଅଷ୍ଟାଙ୍ଗରେ ପାଞ୍ଚଣ ପ୍ରୟୋଗ ?) ସିଂହଳୀ ଧୂପ (ଲଙ୍କାମରିଚ ଧୂପ) ଓ ମୂତ୍ର-ବାଷ୍ପ-ସ୍ନାନ (ଗଧମୂତର ବାମ୍ଫୁଆଣୀ ?) ଦେଲେ ଓ ପକ୍ୱ ମହାକାଳ ଫଳର ଶସ ଦେହରେ ଲେପିଲେ ଓ ପ୍ରସାରଣୀ ବ୍ୟଜନ (ସପତ୍ର ପସାରୁଣୀ ଲତାରେ ବିଞ୍ଚିବା ?) ଓ କଟକ ସହରର ମ୍ୟୁନିସିପାଲିଟିର ସୀମା ମଧ୍ୟସ୍ଥ ଗଭୀର ନର୍ଦ୍ଦମାର ଗଭୀରତମସ୍ତରର ଅଜଳ-ଅତରଳ-ପଙ୍କ ମୁଣ୍ଡରେ ଲଦିଲେ ଏ ରୋଗର ପ୍ରକୋପ କମିଯିବ ବୋଲି ଢେଙ୍କେବାପା ଡାବ ଟିପିଯାଇ ଅଛନ୍ତି । କିନ୍ତୁ ଆମ୍ଭେମାନେ ବିଚାରୁଛୁଁ- ଆମ ବିଦେଶୀ ସରକାର ବର୍ତ୍ତମାନ ରାଞ୍ଚି ନିକଟରେ ଯେଉଁପରି ଗୋଟିଏ ମାନସ ଚିକିତ୍ସାଳୟ (Mental Hospital) ପ୍ରତିଷ୍ଠା କରିଅଛନ୍ତି, ପ୍ରଭୁଙ୍କ ଦୟାରୁ ଆମକୁ ସ୍ୱରାଜ ମିଳିଗଲେ ଏହି ରୋଗୀମାନଙ୍କ ପ୍ରତିନିଧିଙ୍କ ଦ୍ୱାରା ଗଠିତ ବ୍ୟବସ୍ଥାପକ ସଭାରେ ପାଣ୍ଡୁଲିପି (ବିଲ୍) ପାଶ କରାଇ ନେଇ ସ୍ୱରାଜ ସରକାରଙ୍କ ଦ୍ୱାରା ଗୋଟିଏ 'ସେବାରୋଗ - ଆଶ୍ରମ' ଖୋଲିବା ପାଇଁ ବ୍ୟବସ୍ଥା କରାଗଲେ, ଦେଶରୁ ଏ ରୋଗ ନିର୍ବାସିତ ହେବ । ସେହି ହସ୍ପାତାଳର ଘେରଦ ମଧ୍ୟରେ ରୋଗୀମାନେ ପ୍ରତିଦିନ ଘଣ୍ଟାଏ ଲେଖାଏଁ ଦେଶସେବାର ଅଭିନୟ ତୌର୍ଯ୍ୟତ୍ରିକ ସହକାରେ କରି ନିଜ ନିଜର ଚିତ୍ତ ବିନୋଦନ କରିବେ - ଏହାପରେ ଖେଦା ଡାକୁଛି 'ହାମ୍ ବଡ଼ା' ରୋଗ ।

ରସଚକ୍ର : ୨ୟ ଭାଗ / ୫।୬ଷ୍ଠ ସଂଖ୍ୟା, ୧୩୪୨ ସାଲ ।

## ।। ନଅ ।।

### ହାମବଡ଼ା ରୋଗ

ଆମ ଦେଶରେ ତ ହାମ୍‌ବଡ଼ା ରୋଗ କେତେ ପ୍ରକାର ଅଛନ୍ତି । ଏମିତି ଥରେ ଦୁଇଜଣ ହାମବଡ଼ା ଚଦାଚଦି ହେଲେ । ଏହିପରି ବେଳକାଳ ଉଣ୍ଡି ଜଣେ ଜଣେ ନୂତନ ହାମ୍‌ବଡ଼ା ରୋଗୀ-ସଭ୍ୟ ମଙ୍ଗଧରାଙ୍କ ପାଖକୁ ଆସନ୍ତି । ଦୁହେଁ ରବେଇ ଖବେଇ ହୁଅନ୍ତି ଯାଆନ୍ତି । ପଛକୁ ହାତାହାତି, ଗୋଡ଼ାଗୋଡ଼ି, ଜଂଘାଜଂଘିର ଉପକ୍ରମ ହେଲା । ଏହା ଦେଖି ଆମ ମଙ୍ଗଧରାଙ୍କର ଭାରି ଭାଳେଣି ପଡ଼ିଲା, ଏମନ୍ତ କି ତାଙ୍କର ଖିଆପିଆ, ଶୁଆବସା, ଦିଆନିଆ, ଲେଖାପଢ଼ା, କୁହାବୋଲା, ବୁଲାଚଲା, ସବୁ ବନ୍ଦ ହୋଇଗଲା । ଦିନେ ସଭାର ବଇଠକ ହେଲା । ଆମ ମଙ୍ଗଧରା ହାମ୍‌ବଡ଼ା ରୋଗୀ ଓ ନୂତନ ସଦସ୍ୟ ହାମ୍‌ବଡ଼ା ରୋଗୀଯାକ ସେଠାରେ ଣ୍ଡୀଭୂତ ହେଲେ । ଲାଗିଲା ଦାହିକାମାଡ଼, ଲାଗିଲା ଯାଉଁଳିପାଲା, ଲାଗିଲା ଚଅଁର କେଞ୍ଚାକେଞ୍ଚି, ହାମ୍ ଶବ୍ଦ ସଙ୍ଗେ ଯେତେ ପ୍ରକାର ଅତୀତ କାଳ କ୍ରିୟା ଲାଗି ପାରେ ଆମ ସାବକ ମଙ୍ଗଧରା ସଭା ସମ୍ପର୍କରେ ସେ ସବୁ କ୍ରିୟା ଲଗାଇ ହିନ୍ଦୀରେ ଆପଣା କରାମତ ପ୍ରଚାର କଲେ, କହିଲେ ''ହାମ୍‌ବଡ଼ା ହାମ୍ ଏ ସଭାକୋ ବଞ୍ଚାୟା, ହାମ୍ ଏ ସଭାକୋ ତାଜା ରଖା, ହାମ୍ ଏ ସଭାକା ମହଲ ବନୟା, ହାମ୍ ଏ

ସଭାକା ନାମ୍ ଜାହିର କରାୟା, ହାମ୍ ଏ ସଭାମେ ମିସଲ ଜମାୟା, ହାମ୍ ଏ ସଭାମେ ବିଲୋରୀ ଟଙ୍ଗାୟା, ଏ ସଭାମେ ତସବୀର ଲଟକାୟା'' ଇତ୍ୟାଦି ଇତ୍ୟାଦି । ଏ କଥା ଶୁଣି ହାମବଡ଼ା ସଦସ୍ୟ ରୋଗୀମାନେ ଏକମୁଖରେ ରାବିଉଠିଲେ ଓ ହାମ୍ ଶବ୍ଦ ସଙ୍ଗେ ଯେତେ ପ୍ରକାର ଭବିଷ୍ୟତ୍ କାଳର କ୍ରିୟା ଲାଗିପାରେ ସେ ସବୁ କ୍ରିୟା ଲଗାଇ ହିନ୍ଦୀ ମିଶା ଓଡ଼ିଆରେ ଆପଣାର ଭାବୀ କରାମତ ପ୍ରଚାର କଲେ, କହିଲେ ହାମ୍‌ବଡ଼ା, ହାମ୍ ଏ ସଭାକୋ ଇସ୍ତମରାରୀ ହକ୍‌ଦାର କରାଦେଗା, ହାମ୍ ଏ ସଭାକା ଧନ ଭଣ୍ଡାର ଭର୍‌ପୂର୍ କର୍‌ଦେଗା, ହାମ ଏ ସଭାରେ ବିଜ୍‌ଲିବତି ଖଞ୍ଜା ଦେଗା, ହାମ୍ ଏ ସଭାକା ଅନ୍ଦର-ମହଲ ବନାଦେଗା, ହାମ୍ ଏ ସଭାକା ବଦନାମ ଜାହିର କର୍‌ଦେଗା, ହାମ୍ ଏ ସଭାମେ ମଜ୍‌ଲିସ୍ ଜମାଦେଗା, ହାମ୍ ଏ ସଭାମେ ପରଦା ଟଙ୍ଗାଦେଗା, ହାମ୍ ଏ ସଭାକେ ତସବୀରକା ଅସଲୀ ନାଚାଏଗା, ହାମ୍ ଏ ସଭାକୋ ଇନ୍ଦରକା ସଭା ବନାଦେଙ୍ଗା ଇତ୍ୟାଦି ଇତ୍ୟାଦି - ଏହି ବଚନିକା ଓ ଦାହିକାମାନ ଶୁଣି ଆମେ ଯେଉଁ ପଞ୍ଚାଙ୍କ ନୀରୋଗ ଥିଲୁ ସେମାନଙ୍କ ଆଖି ତରାଟି ହୋଇଗଲା, କାନ ବହିରା ହୋଇଗଲା, ଦାନ୍ତ ନେଫେଡ଼ି ହୋଇଗଲା, ମୁହଁ ବଙ୍କା ହୋଇଗଲା, ହାତୁଟାମାନ ମୁଠା ମୁଠା ହୋଇଗଲା, ଗୋଡ଼ ଲାଠି ଲାଠି ହୋଇଗଲା । ସଭାରେ ସ୍ଥିର ହେଲା ଯେ ସାବକ ମଙ୍ଗଧରା କେତେ ପ୍ରକାର ଅତୀତ କାଳର କ୍ରିୟାର କର୍ତ୍ତା ହୋଇଅଛନ୍ତି ତହିଁ ସଙ୍ଗେ ଭାବୀ ଦାବିଦାରମାନେ କେତେ ପ୍ରକାର ଭବିଷ୍ୟତ୍ କାଳର କ୍ରିୟାର କର୍ତ୍ତା ହେବେ ବୋଲି ହଲପାନ ଇଜାହାର ହେଉଅଛନ୍ତି ସେସବୁ ଗୋଟିଏ ଶବସମିତିରେ ରଦଖଦ ହେବା ପରେ, ଉଭୟ ପକ୍ଷର ଜବାବ, ରଦଜବାବ, ହଦ୍ଦଜବାବ, କଦ୍‌ଦଜବାବ ନିଆ ଯିବା ପରେ ସାବକବାଲାଙ୍କର ଗୋଟିଏ ଅତୀତ କାଳର କ୍ରିୟା ପାଇଁ ହାଲବାଲାଙ୍କର ଗୋଟିଏ ଭବିଷ୍ୟତକାଳର କ୍ରିୟାକୁ କଟାକଟି, ଭେଟାଭେଟି, ଛଟାଛଟି, ମଜୁରାମଜୁରି କରି ଯାହାର କ୍ରିୟାର ସଂଖ୍ୟା ଅଧିକା ହେବାର ଦେଖାଯିବ ତାଙ୍କୁ ଏଣିକି ମଙ୍ଗଧରା କରାଯିବ । ଶବସମିତି ତ ସହଜେ ମୂର୍ଦ୍ଧାର, ସେଥିରୁ ଗଠିତ ହେଲା ଶାଖା ସମିତି, ସଖା ସମିତି, ପ୍ରଶାଖା ସମିତି, ଗୁଳ୍ମ ସମିତି, ଲତା ସମିତି, ବନସ୍ପତି ସମିତି, ରଙ୍ଗ ବିରଙ୍ଗ ସମିତି - ଅମରକୋଷରେ ଥିବା ପର୍ଯ୍ୟାୟ ଓ ବର୍ଗଯୁକ୍ତ ସମିତି । ଏହିପରି ସବୁ ସମିତି ଗଢ଼ା ହେବା ପରେ ଆମେ ଦେଖିଲୁଁ ଯେ ପୁରୁଣା ମଙ୍ଗଧରାକୁ ନୂଆ ହାମ୍‌ବଡ଼ା ଲୁଚାକଙ୍କ ଦାଉରୁ ରକ୍ଷା କରିବାର ଏକମାତ୍ର ଉପାୟ, ନୂଆ ଅଧିକାର ପ୍ରାର୍ଥୀଙ୍କ ମଧ୍ୟରେ ଖୁଆଖୋଇ, ଥୁଆଥୋଇ, କାମୁଡ଼ାକାମୁଡ଼ି, ରାମ୍ପୁଡ଼ାରାମ୍ପୁଡ଼ିର ଅବତାରଣା । ଏହି କଥା ସ୍ଥିର କରି ଶାଖା ସମିତିରେ ସ୍ଥିର କଲୁଁ ଯେ ଭବିଷ୍ୟତ୍ କ୍ରିୟାବାଚୀଙ୍କ କରାମତ ଅତୀତ କ୍ରିୟାବାଚୀ ମଙ୍ଗଧରାଙ୍କ କରାମତ ଅପେକ୍ଷା ବେଶି ହେଲା, ଅତଏବ ନୂତନ ରୋଗୀଦଳଙ୍କ ଉପରେ ସଭାର ସବୁ ଭାର, ସବୁ ବେଭାର, ସବୁ ବନ୍ଧୁ-ସଙ୍ଖୁଳା, ସବୁ କୋଡ଼ିହଣା, ପାଣିବୁହା, କନ୍ୟାଦେଖା, ବାଇଗଣବିକା, ମୁହଁରେ ଚୂନକଳା ଏଥିରୁ ଲଦାଯିବ ଓ ସେମାନେ ନିଜ ନିଜ ମଧ୍ୟରେ କିଏ କେଉଁ ବୋଝ ଖେଞ୍ଚିବେ ତାହା ସ୍ଥିର କରନ୍ତୁ ।

ବହୁତ ନେହୁରା ନମସ୍ତେ, ସାଧ ସାଧନା, ଦୁର୍ଜ୍ଜୟ ମାନଭଞ୍ଜନ, କଟୁକାଟବ୍ୟ, ସ୍ତବ ସ୍ତୁତି, ତର୍ଜ୍ଜନଗର୍ଜ୍ଜନ, କଚ୍ଚନଜଚ୍ଚନ ପରେ ପୁରୁଣା ମଙ୍ଗଧରାଙ୍କ ଠାରୁ ସୁକାନୀଟି କାଢ଼ି

ନେଇ ନୂଆ କର୍ମେଚ୍ଛୁମାନଙ୍କ ପାଇଁ ସୁକାନୀପୀଠଟି ଖାଲି କରି ଦିଆଗଲା । ପୂର୍ବରୁ ବୋଲା ଯାଇଅଛି ଯେ ଆମ ଅମଳରେ ସିନା ଆମ ଭିତରୁ କେବଳ ମଙ୍ଗଧରାଙ୍କୁ ହାମ୍‌ବଡ଼ା ରୋଗ ଧରିଥିଲା ଓ ଦଳର ଅନ୍ୟ ସମସ୍ତଙ୍କୁ ମୁଖୋଚ୍ଚାରିତ 'ଆପ୍‌ବଡ଼ା' ଔଷଧ ପ୍ରୟୋଗରେ ସେ ରୋଗ ସାଧ୍ୟାବସ୍ଥାରେ ଥିଲା; କିନ୍ତୁ ବର୍ତ୍ତମାନ କାମ କରିବାକୁ ଆଗୁଆଳ ହୋଇଥିବା ସବୁ ବୀରଙ୍କୁ ହାମ୍‌ବଡ଼ା ରୋଗ ଧରିଛି । ଏ କହିଲା ହାମ୍‌ବଡ଼ା, ସେ କହିଲା ହାମ୍‌ବଡ଼ା । ଏହିପରି ହଉ ହଉ କେତେ ଅଭିନୟ କେତେ ସୁନୟ, କେତେ ଦୁର୍ଣ୍ଣୟ କାଣ୍ଡ ଘଟିଲା । ସୁକାନୀଟି ଅଧରା ରହିଲା, ଏଣେ ସଭାଡଙ୍ଗାଟି ସ୍ରୋତ ଓ ପବନ ଗତିରେ ଚାଳିତ ହୋଇ ଏକୂଳ ସେ କୂଳରେ ମଙ୍ଗ ଧକ୍‌କା ଖାଇ, କେତେ ଖୁଣ୍ଟା, ଝୁଣ୍ଟା, ଥୁଣ୍ଟା, ଚୁଣ୍ଟା ଆଦିରେ ହାବୁଡ଼ି ଦିନାକେତେ ବାଦ ଡଙ୍ଗାଟି ଚୂରମାର ହୋଇଗଲା । ଏଥିପାଇଁ ଆମ ମରହଟ୍ଟିଆ ଡଗର ସମ୍ମାର୍ଜିତ ସଂସ୍କରଣ ବାହାର କରିବାକୁ ପଡ଼ିଲା - ''ଯୋଗୀ ଏ କେଉଁ ନୁହନ୍ତି ଯୋଡ଼ା, ଯେବେ ହେବେ ଯୋଡ଼ା, ତେବେ ପାଇବେ କାମୁଡ଼ା ।''

ଢେଙ୍କେବାପାଙ୍କ ଏ ଅନୁଭବ କେଉଁଠାରେ କେଉଁ ସଭାରେ କେଉଁ ରୋଗୀଙ୍କଠାରେ ହୋଇଥିଲା ତାହା ଖେଦାରେ ଟିପା ନାହିଁ । କେବଳ ଏତିକି ଲେଖାଅଛି ଯେ ଏ ରୋଗକୁ ଭଲ କରିବା ଉପାୟ ରୋଗୀଙ୍କ ରସନେନ୍ଦ୍ରିୟ ଓରଫ କଥନେନ୍ଦ୍ରିୟ ଓରଫ ଜିଭକୁ ମୂଳପୋଛ କରି କାଟିଦେବା । ମୁହଁ ନ ଫିଟିଲେ ଏ ରୋଗ ମନକୁ ଉଭେଇ ଯାଏ । ଢେଙ୍କେବାପା ଲେଖି ଅଛନ୍ତି ବେଙ୍ଗଙ୍କର ଓ ବିଲୁଆଙ୍କ ସମାଜରେ ଏ ରୋଗର ପ୍ରାବଲ୍ୟ ବେଶି, କିନ୍ତୁ ସୁଖର ବିଷୟ ଯେ ଏ ରୋଗ ସଂକ୍ରାମକ ନୁହେଁ । ଯା ପରେ ଖେଦା ଡାକୁଛି ବିରାଡ଼ିଆ ରୋଗ ।

ରସଚକ୍ର : ୨ୟ ବର୍ଷ / ୭ମ ସଂଖ୍ୟା / ୧୩୪୨ ସାଲ ।

## ।। ଦଶ ।।

### ବିରାଡ଼ିଆ ରୋଗ

ବିରାଡ଼ି ବାଘର ମାଉସୀ ବୋଲି ଲୋକ-ସାଧାରଣରେ ଗୋଟାଏ ବାଚନୀ ଅଛି । 'ବାଘ ନ ଦେଖିଲେ ବିରାଡ଼ି ଦେଖ୍' ବୋଲି ପ୍ରବଚନ ଅଛି । ବାଘର ଚମଡ଼ାର ବର୍ଣ୍ଣ ଈଷତ୍ ହଳଦିଆ ଓ ତହିଁ ଉପରେ କଲରାପତ୍ର ପରି କିମ୍ବା ପଟା ଭଳି ଦାଗ ଥାଏ । କିନ୍ତୁ ବିରାଡ଼ିର ବର୍ଣ୍ଣ ବାଘ ପରି ନୁହେଁ, କେତେକ ବିରାଡ଼ି ପାଉଁଶିଆ, କେତେକ ଧଳା, କେତେକ କଳା, କେତେକ ଛାପଛାପିକିଆ ଭଳି କଳା ଚିହ୍ନମାନ ଥାଏ । ଏହାର ସଂସ୍କୃତ ନାମ ବିଡ଼ାଳ, ମାର୍ଜାର, ଆଖୁଭୁକ । ବିରାଡ଼ି ଅନ୍ଧାରରେ ଉତ୍ତମ ରୂପେ ଦେଖିପାରେ । ଏହାର ଚକ୍ଷୁର ଗୋଲକ ମଧ୍ୟରେ ଥିବା 'ପୁଅ'ର ବିଶେଷତ୍ୱ ହେତୁ ଅନ୍ଧାରରେ ଏହା ଦେଖିପାରେ ବୋଲି ପଣ୍ଡିତମାନେ ସ୍ଥିର କରିଅଛନ୍ତି । ବିରାଡ଼ି ସମ୍ବନ୍ଧେ ଗୁଡ଼ିଏ ଢଗ ଆମ ଭାଷାରେ ଚଳି ଆସୁଅଛି; ଯଥା, 'ବିରାଡ଼ି ଆଖିବୁଜି ଦୁଧ ପିଇଲାବେଳେ ବିଚାରେ ଯେ ମୁଁ ଯେଉଁପରି ଆଖି ବୁଜିଛି, ସଂସାର ଯାକର ସମସ୍ତେ ସେହିପରି ଆଖି ବୁଜିଛନ୍ତି ଓ ମୋ ଦୁଧପିଆ

ଦେଖିପାରୁ ନାହାନ୍ତି' 'କାଣୀ ବିରାଡ଼ି କୁଜି ଅସରପା ଓପରକୁ ଷେଣ୍ଡ' 'ମୂଷାଙ୍କୁ ମାରିବାକୁ ବିରାଡ଼ି ପୋଷିବା ନ୍ୟାୟ ।' 'ବିରାଡ଼ି କପାଳକୁ ଶିକା ଛିଣ୍ଡିବା ନ୍ୟାୟ', 'ବିରାଡ଼ି ବେକରେ ମୂଷାଏ ଘଣ୍ଟି ବାନ୍ଧିବା ନ୍ୟାୟ' ଗୃହସ୍ଥର ବିରାଡ଼ି ଏକ ଦୃଷ୍ଟିରେ ଉପକାର କରନ୍ତି । ଗୃହ ଆକ୍ରମଣକାରୀ ମୂଷାମାନଙ୍କର ବଂଶ ନିପାତ କରେ, ଅନ୍ୟ ଦୃଷ୍ଟିରେ ଗୃହରେ ରଖା ଯାଇଥିବା ଦୁଧ ହାଣ୍ଡିରୁ ଦୁଧ ଓ ମାଛ ହାଣ୍ଡିରୁ ମାଛ ଏମାନେ ଲୁଚାଇ କରି ଖାଆନ୍ତି । ବିରାଡ଼ିମାନେ ତୁଳିମୁଣ୍ଡେ, କଅଁଳ ଖରାରେ ଓ ଶେଯ ଆଦି କୋମଳ ଶଯ୍ୟାରେ ଶୋଇବାକୁ ଭାରି ସୁଖ ପାଆନ୍ତି । ବିରାଡ଼ିଙ୍କର 'ମୟ' ବା ସଙ୍ଗମ କାଳର ଋତୁ ଅଛି । ବିରାଡ଼ି ଏକାଥରକେ ଦୁଇରୁ ଅଧିକ ଛୁଆ ଜନ୍ମକରେ, ପ୍ରଥମେ ଛୁଆମାନଙ୍କର ଆଖି ଫିଟି ନ ଥାଏ । ଭୁଆଁ ବିରାଡ଼ି ଛୁଆମାନଙ୍କୁ ଖାଇଯିବ ବୋଲି ମାଆ ବିରାଡ଼ି ଛୁଆମାନଙ୍କ ବେକ ଉପରେ କାମୁଡ଼ି କରି ଏକ ସ୍ଥାନରୁ ଅନ୍ୟ ନିରାପଦ ସ୍ଥାନକୁ ନେ ଆଣ କରୁଥାଏ । ମାଆ ବିରାଡ଼ି ଦରମରା ମୂଷାଙ୍କୁ ଆଣି ଆପଣା ଛୁଆମାନଙ୍କୁ ଶିକାର କୌତୁକ ଶିଖାଇବା ଦୃଶ୍ୟ ବଡ଼ କୌତୁକପ୍ରଦ । ହିନ୍ଦୀରେ ଗୋଟିଏ ପ୍ରବଚନ ଅଛି 'ବାଘ୍ ବିରାଲ୍ ବାଚ୍ଚାକୋ ଝପଟ୍ ଶିଖାୟା କୌନ୍ ।' ବାଘ ଓ ବିରାଡ଼ିମାନଙ୍କର ଶିକାର କରିବା ନୈସର୍ଗିକ ଶକ୍ତି ଅଟେ । ବିରାଡ଼ିମାନଙ୍କ ନଖ ତଳିପାର କୋମଳମାଂସ ମାନ ପଶିଥାଏ, ସେମାନେ ରାଗିଗଲେ ନଖମାନ ପଦାକୁ ବାହାରି ପଡ଼େ । କୌଣସି ସ୍ଥାନରେ ମୁନ୍ଦରା ଓ ମସିଣା ଦେଖିଲେ ବିରାଡ଼ିମାନେ ତାକୁ ନଖରେ ରାମ୍ପୁଡ଼ନ୍ତି । ଭୁଆଁ ବିରାଡ଼ିମାନେ ପରସ୍ପର ମଧ୍ୟରେ ଖୁଆଖୋଇ ଓ ରାମ୍ପୁଡ଼ା ରାମ୍ପୁଡ଼ି ହେବାର ଦେଖିଲେ ଡରମାଡ଼େ । ପୋଷା ବିରାଡ଼ିଙ୍କର ଗୋଟାକେତେ ଗୁଣ ଅଛି ଯେ ସେମାନଙ୍କ ଅନୁଲୋମ (ଅର୍ଥାତ୍ ସେମାନଙ୍କର ତୁମର ଅନୁକୂଳ ଦିଗରେ) ଆଉଁଶିଲେ ସେମାନେ ଘୁଡୁ ଘୁଡୁ ଶବ୍ଦ କରନ୍ତି । ଅବଶ୍ୟ ବିରାଡ଼ିଙ୍କ ସମ୍ବନ୍ଧେ ଏ ସମସ୍ତ ବିଷୟମାନ ଢେଙ୍କେବାପାଙ୍କ ଖେଦାରେ ଟିପା ନାହିଁ, ଶାସ୍ତ୍ର ବର୍ଣ୍ଣିତ ରୋଗକୁ ଢେଙ୍କେବାପା କାହିଁକି ବିରାଡ଼ିଆ ଯମ ନାମ ଦେଇଅଛନ୍ତି, ତାହାର ଉପରୋକ୍ତ କୌଣସି ବର୍ଣ୍ଣନାର କିନାରା କରାଯାଇପାରିବ ବୋଲି ଏଠାରେ ସେ ସମସ୍ତ ଦିଆଗଲା ।

ଯାହାଙ୍କୁ ବିରାଡ଼ିଆ ରୋଗ ଧରିଥାଏ ସେମାନେ ଚିଡ଼ଲ୍, ଟିକିଏ କଥାରେ ସେମାନେ ଚିଡ଼ି ଯାଆନ୍ତି । ଯେତେବେଳଯାକେ ତୁମେ ଆଉଁଶୁଥିବ ସେତେବେଳଯାକେ ସେମାନେ ତୁମ ଗୋଡ଼ରେ ଓ ଦିହରେ ଘଷି ହେଉଥିବେ, କର୍ଣ୍ଣ ମଧୁର ଘୁଡୁ ଘୁଡୁ ଶବ୍ଦ କରି ତୁମ ଦେହ ଭିତରକୁ ପଶୁଥିବେ, କିନ୍ତୁ ତାଙ୍କୁ ପ୍ରତିଲୋମ (ରୋଗର ବିପରୀତ ଦିଗରେ) ବ୍ୟବହାର କର ଦେଖିବ ଯେ ସେମାନେ ତାଙ୍କ ତଳିପା ମଧ୍ୟରୁ ନଖକୁ ବାହାର କରି ତୁମ୍ଭଙ୍କୁ ରାମ୍ପୁଡ଼ି ଦେବେ । ପୂର୍ବରୁ ତାଙ୍କୁ ହଜାରେ ତୁମେ ଅନୁଲୋମ ଥିବ, ଦୁଧଭାତ, ମାଛଭାତ ଖାଇବାକୁ ଦେଇଥିବ, ପୁସ୍ ପୁସ୍ ବୋଲି କେତେ ଚୁଚୁକାଳି ମାରିଥିବ, ସେ ଆଦର, ସେ ସ୍ନେହ, ସେ ବନ୍ଧୁତା ସେମାନେ କ୍ଷଣକ ରୁକ୍ଷ ବ୍ୟବହାରରେ ପାସୋରି ପକେଇବେ ଓ ତୁମ ଦିହରେ ନଖ ମାରିଦେବେ । ଢେଙ୍କେବାପାଙ୍କର ଜଣେ ବନ୍ଧୁଙ୍କୁ ବିରାଡ଼ିଆ ରୋଗ ଧରିଥିଲା ।

ଢେଙ୍କେବାପା ତାଙ୍କୁ ପୂର୍ବରୁ ବହୁତ ସ୍ନେହ, ବହୁତ ଆଦର କରିଥିଲେ, ହଠାତ୍ ଢେଙ୍କେବାପାଙ୍କ ଅଜାଣତରେ ବନ୍ଧୁଙ୍କ ଦେହରେ ଢେଙ୍କେବାପାଙ୍କ 'ପ୍ରତିଲୋମ' ଚଳିଗଲା । ତତ୍‌କ୍ଷଣାତ୍ ବନ୍ଧୁ ଢେଙ୍କେବାପାଙ୍କୁ ନଖରେ ରାମ୍ପୁଡ଼ି ଖଣ୍ଡିଆ କରି ପକେଇଲେ ।

ବିରାଡ଼ିଆ ରୋଗୀଙ୍କର ଆଉ ଗୋଟିଏ ଲକ୍ଷଣ ଯେ ସେମାନେ କର୍ମକ୍ଷେତ୍ରରେ ଆପଣାର ପ୍ରତିଦ୍ୱନ୍ଦ୍ୱୀ ଅନ୍ୟ ବ୍ୟକ୍ତିକୁ ଦେଖିଲା ମାତ୍ରେ ତା ସଙ୍ଗେ ଖୁଆଖୋଇ, ରାମ୍ପୁଡ଼ା ରାମ୍ପୁଡ଼ି ହେବେଇ ହେବେ । ସେତେବେଳେ ତାଙ୍କର ବୋବାଳି, ତାଙ୍କର ଗର୍ଜନ ଶୁଣିଲେ ମନରେ ଭୟ ଜାତ ହେବ । ଢେଙ୍କେବାପା ଗୋଟାଏ ବିଷମରିଚ୍ୟାଦି ତୈଳର ଡାବ ଘେନି ମଫସଲର ଅନେକ ସ୍ଥାନ ବୁଲୁଥିଲା ବେଳେ ସେହି ତେଲର ଡାବ ଘେନି ଜଣେ ବିରାଡ଼ିଆ ରୋଗଗ୍ରସ୍ତ ବୈଦ୍ୟଙ୍କ ହାବୁଡ଼େ ପଡ଼ିଲେ । ଘରକୁ ଫେରିଲା ବେଳକୁ ଢେଙ୍କେବାପାଙ୍କ ଦିହଯାକ କାମୁଡ଼ା ଓ ରାମ୍ପୁଡ଼ାର ଚିହ୍ନରେ ଭରା ହୋଇଥିଲା । ରୋଗୀଙ୍କର ତୃତୀୟ ଲକ୍ଷଣ ଏହିକି ସେମାନେ ବିରାଡ଼ି ଆଖିବୁଜି ଦୁଧ ପିଇଲା ଭଳି ଲୁଚେଇ ଚୋରେଇ କେତେ କାମ କରନ୍ତି ଓ ସେମାନେ ବିଚାରନ୍ତି ଯେ ସେମାନେ ଏ କାମକୁ ଲୁଚେଇ ଚୋରେଇ କରୁଥିବାରୁ ସେମାନଙ୍କ କାମକୁ ସଂସାର ଦେଖୁ ନାହିଁ । ସେମାନେ ବିରାଡ଼ି ଖୁବ୍ ବଡ଼ ଆରାମରେ ଦୁଧ ଖାଇଲା ଭଳି ସେ କାମ କରୁଥାଆନ୍ତି; କିନ୍ତୁ ଯେତେବେଳେ ବିରାଡ଼ିଙ୍କ ଉପରେ ଦୁଗ୍ଧସ୍ୱାମୀଙ୍କ ଛାଟ ବାଜିଲା ଭଳି ତାଙ୍କ ଦେହରେ ଛାଟ ବାଜେ, ସେମାନେ ସେତେବେଳେ ଖାଇବା ଛାଡ଼ି ପଳାନ୍ତି । ଏଥିପାଇଁ ଆମ ଢେଙ୍କେମାଆ ଗୀତ ବୋଲନ୍ତି :-

କାଳୀ ବିରାଡ଼ି ! ରାଡ଼ି ରାଡ଼ି ଦୁଧ ଚାଟୁଥା ମୁହଁମାଡ଼ି
ପିଠିରେ ବସିଲେ ଚିତ୍ରବାଡ଼ି ପଳାଇବୁ ରାଇଜ ଛାଡ଼ି ।

ଏଥର ପ୍ରତିକାର ପାଇଁ ଢେଙ୍କେବାପା ଖେଦାରେ କେତେଗୁଡ଼ିଏ ଔଷଧ ଟିପିଛନ୍ତି, କିନ୍ତୁ ତହିଁର ଡାବ, ପ୍ରୟୋଗ ପ୍ରଣାଳୀ, ଅନୁପାନ ଆଦି କିଛି ଲେଖା ନ ଥିବାରୁ ଆମ୍ଭେମାନେ ତହିଁର କିଛି ଇଦମିତ୍ଥ ସ୍ଥିର କରିପାରିଲୁ ନାହିଁ ।

ଜାଉଁଳି ବେତ (ବେତ କନ୍ଦା ହେବ କି ?)
ଲଙ୍କାମରିଚ (ଗୁଣ୍ଡା ବା ଧୂଆଁ ଖେଦାରେ ଲେଖା ନାହିଁ)
କର୍ଣ୍ଣପୁରୀ ଜଡ଼ା (ତେଲ କି ମଞ୍ଜି ଲେଖା ନାହିଁ)
ସୀପତୁନ (ଫୁରୁସା କି ଅଫୁରୁସା ଲେଖା ନାହିଁ)

ହାଣ୍ଡିକଳା

ଏଗୁଡ଼ିକ ପ୍ରୟୋଗ ହେବାପାଇଁ ଗୋଟିଏ ତେଲଉଣି, ପୁଳାଏ ଝୋଟ, ମୋଟ କିଆପଟ ଓ ଗୋଟାଏ ଜଳଜଳା ମାଠିଆ । ଏଥିରୁ ଆମ୍ଭେମାନେ କିଛି ଠଉରାଇ ପାରିଲୁଁ ନାହିଁ । ଏହାପରେ ଖେଦା ଡାକୁଛି ବେନାମୀ ରୋଗ ।

ରସଚକ୍ର : ୨ୟ ଭାଗ / ନବମ ସଂଖ୍ୟା, ୧୩୪୨ ସାଲ ।

# ନକ୍ଷତ୍ର

## ୧୯୩୬ - ୧୯୩୭

'ନକ୍ଷତ୍ର' ଗୋପାଳ ଚନ୍ଦ୍ର ପ୍ରହରାଜଙ୍କ ଏକ ଭିନ୍ନସ୍ୱାଦର ରଚନା । ରସଚକ୍ର ପତ୍ରିକାର ପ୍ରଥମ ବର୍ଷ ସପ୍ତମ ସଂଖ୍ୟାଠାରୁ ଆରମ୍ଭ ହୋଇ ୧୦ମ ସଂଖ୍ୟା ମଧ୍ୟରେ ତିନୋଟି ଅଧ୍ୟାୟରେ ପ୍ରକାଶିତ । ଏହି ଆଲୋଚନା ଅପୂର୍ଣ୍ଣ ରହିଛି । ନକ୍ଷତ୍ର ସଂପର୍କରେ ଶ୍ରୀ ଜଳନ୍ଧର ଦେବ ମଧ୍ୟ ଆପଣାର ମନ୍ତବ୍ୟ ପ୍ରକାଶ କରିଛନ୍ତି ପତ୍ରିକାର ୮/୯ମ ସଂଖ୍ୟାର ୩୨୭ ରୁ ୩୩୦ ପୃଷ୍ଠା ମଧ୍ୟରେ । ମାତ୍ର ପ୍ରହରାଜ ଏହି ଆଲୋଚନା ସମ୍ବନ୍ଧରେ କୌଣସି ପ୍ରତିକ୍ରିୟା ପ୍ରକାଶ କରି ନାହାନ୍ତି । ଶ୍ରୀ ଦେବଙ୍କ ଆଲୋଚନା ପାଠକୀୟ ଅବଗତି ନିମନ୍ତେ ଏଠାରେ ସଂଯୋଜନ କରାଯାଉଛି ।

ସଂପାଦକ

### ।। ଏକ ।।

ଚନ୍ଦ୍ରମାଙ୍କ ପଥରେ ପଡ଼ିବା ତାରା ବା ତାରାମାନଙ୍କୁ ସମୂହ ବା ଗୁଚ୍ଛ, ଯେଉଁମାନଙ୍କର ଚିହ୍ନିବା ପାଇଁ ଜ୍ୟୋତିଷୀମାନେ ସେମାନଙ୍କୁ ଭିନ୍ନ ଭିନ୍ନ ନାମ ଦେଇ ଅଛନ୍ତି, ଏହି ତାରାମାନେ ଗ୍ରହମାନଙ୍କ ଠାରୁ ପୃଥକ୍ ଅଟନ୍ତି । ଗ୍ରହମାନେ ଆମ୍ଭମାନଙ୍କ ସୌରଜଗତର ଅନ୍ତର୍ଗତ ଗୋଟିଏ ଲେଖାଏଁ ଜ୍ୟୋତିଷ ପିଣ୍ଡ । ଗ୍ରହମାନେ ସୂର୍ଯ୍ୟଙ୍କ ଚାରିଆଡ଼େ ଘୁରୁଅଛନ୍ତି । ସେମାନେ ଆମ୍ଭମାନଙ୍କ ଚକ୍ଷୁକୁ ତାରାମାନଙ୍କ ପରି ଉଜ୍ଜ୍ୱଳ ଦେଖାଯାଆନ୍ତି, କିନ୍ତୁ ତାରାମାନଙ୍କ ପରି ଗ୍ରହମାନଙ୍କର ଆକାଶ ମଣ୍ଡଳରେ ନିର୍ଦ୍ଦିଷ୍ଟ ସ୍ଥାନ ନାହିଁ । ଯେଉଁ ତାରା ଆଜି ରାତିରେ ଆକାଶମଣ୍ଡଳର ଯେଉଁ ସ୍ଥାନରେ ଦେଖା ଯାଉଅଛନ୍ତି, ବାରମାସ ପରେ ପୁଣି ଆଜି ରାତିରେ ସେହି ତାରା ଆକାଶରେ ସେହି ସ୍ଥାନରେ ଦେଖାଯିବ; କିନ୍ତୁ ଗ୍ରହମାନଙ୍କ ଅବସ୍ଥିତି ସବୁ ସମୟରେ ଏକ ନୁହେଁ । ଏମାନେ ତାରାଙ୍କଠାରୁ ସ୍ୱତନ୍ତ୍ର । ନକ୍ଷତ୍ରମାନଙ୍କ ତୁଳନାରେ ଗ୍ରହମାନେ କ୍ଷୁଦ୍ର କ୍ଷୁଦ୍ର ପିଣ୍ଡ ଅଟନ୍ତି । ଏମାନେ ସ୍ୱୟଂ ଗୋଟିଏ ଗୋଟିଏ ପ୍ରକାଣ୍ଡ ସୂର୍ଯ୍ୟ ଓ ସୂର୍ଯ୍ୟ ପୃଥିବୀଠାରୁ ଯେତେ ଦୂରରେ ଅଛନ୍ତି, ତାରାମାନେ ତଦପେକ୍ଷା ବହୁ ଦୂରରେ ଥିବାରୁ ଆମ୍ଭମାନଙ୍କ ଆଖିକୁ ସାନ ସାନ ଦେଖା ଯାଉ ଅଛନ୍ତି । ଜ୍ୟୋତିଷୀମାନେ ଅନୁସନ୍ଧାନ ଓ ଯନ୍ତ୍ର ସାହାଯ୍ୟରେ ତାରାମାନଙ୍କର ପୃଥିବୀଠାରୁ ଦୂରତ୍ୱ ସ୍ଥିର କରି ଅଛନ୍ତି ।

ସୂର୍ଯ୍ୟ ଆମ୍ଭମାନଙ୍କ ଠାରୁ ଯେତେ ଦୂରରେ ଅବସ୍ଥିତ, ଗୋଟିଏ ଗୋଟିଏ ନକ୍ଷତ୍ର (ଯଥା : ସ୍ୱାତୀ, ଧନିଷ୍ଠା, ଶ୍ରବଣା) ତଦପେକ୍ଷା ୨୦ ହଜାର ୬ ଶହ ଗୁଣ ଅଧିକ ଦୂରରେ ଅଛନ୍ତି । ସୂର୍ଯ୍ୟ ଆମ୍ଭମାନଙ୍କଠାରୁ ୧୦୪ କୋଟି ୬୫ ଲକ୍ଷ ମାଇଲ ଦୂରରେ ଅଛନ୍ତି । ସୂର୍ଯ୍ୟର ବ୍ୟାସ ଚାରି ଲକ୍ଷ ତେତିଶ ହଜାର ମାଇଲ । ଅନେକ ନକ୍ଷତ୍ର ଆକାରରେ ସୂର୍ଯ୍ୟଙ୍କଠାରୁ ଢେର ବଡ଼ । ଏଥିରୁ ନକ୍ଷତ୍ରମାନଙ୍କର ଆକାର ଓ ଦୂରତ୍ୱର କଳ୍ପନା କରାଯାଇପାରେ । ଆଲୋକର ଗତି ଏକ ସେକେଣ୍ଡରେ ୧ ଲକ୍ଷ ୮୬ ହଜାର ମାଇଲ । ଅର୍ଥାତ୍ ଆମ ଠାରୁ ୧ ଲକ୍ଷ ୮୬ ହଜାର ମାଇଲ ଦୂରରେ ଥିବା ଆଲୋକର ଜ୍ୟୋତି ଆମ ପାଖରେ ପହଞ୍ଚିବାକୁ ଏକ ସେକେଣ୍ଡ ମାତ୍ର ସମୟ ଲାଗେ । ଯେଉଁ ତାରା ଆମର ଖୁବ୍ ପାଖରେ ଅଛନ୍ତି ତାହାର ଆଲୋକ ଆମପାଖେ ପହଞ୍ଚିବାକୁ ୩୦୦ ବର୍ଷ ଲାଗୁଛି । ଏଥିରୁ ତାରାମାନେ ପୃଥିବୀରୁ କେତେ ଦୂରରେ ଅଛନ୍ତି ଏହା ଥରେ କଳ୍ପନା ଦ୍ୱାରା ମଧ ଠଉରେଇବାକୁ କଷ୍ଟ ହେବ - ଏହି ଶୂନ୍ୟମଣ୍ଡଳରେ ତାରାମାନଙ୍କ ସଂଖ୍ୟା ଅଗଣିତ, ଯେଉଁ ତାରାମାନେ ଆଖିକୁ ଦେଖା ଯାଉଅଛନ୍ତି ତଦପେକ୍ଷା ଶହେ ଦୁଇଶହ ଗୁଣ ତାରା ଦୂରବୀକ୍ଷଣ ସାହାଯ୍ୟରେ ଦେଖା ଯାଆନ୍ତି । ତଦପେକ୍ଷା କେତେ ଶହ କି କେତେ ହଜାର ଗୁଣ ତାରା ଥିବେ, ଯାହାକି ଦୂରବୀକ୍ଷଣରେ ସୁଦ୍ଧା ଦେଖାଯାଇପାରୁ ନାହାନ୍ତି । ଏ ତାରାମାନେ ଗୋଟିଏ ଲେଖାଏଁ ବଡ଼ ସୂର୍ଯ୍ୟ ଓ ସୂର୍ଯ୍ୟଙ୍କ ଚାରିଆଡ଼େ ପୃଥିବୀ, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର ଓ ଶନି ଘୂରିଲାଭଳି ପ୍ରତ୍ୟେକ ତାରାଙ୍କ ଚାରିପାଖେ ଗୁଡ଼ିଏ ଲେଖାଏଁ ଗ୍ରହ ଘୂରୁଅଛନ୍ତି । ସୂର୍ଯ୍ୟ ଏବଂ ସୂର୍ଯ୍ୟଙ୍କ ଚାରିପାଖେ ଘୂରୁଥିବା ଗ୍ରହମାନଙ୍କୁ ଘେନି ଯେଉଁପରି ଆମର ସୌରଜଗତ ଆମକୁ ଜଣା, ସେହିପରି ପ୍ରତ୍ୟେକ ତାରାଙ୍କର ଗୋଟିଏ ଗୋଟିଏ ସୌରଜଗଦ୍ ଅଟେ । ଏହିପରି ଅଗଣିତ ସୌରଜଗଦ୍ ସମ୍ମିଳିତ ବିଶ୍ୱ-ବ୍ରହ୍ମାଣ୍ଡ କି ପ୍ରକାଣ୍ଡ, ଥରେ ଏହା କଳ୍ପନା କରିବାକୁ ବସିଲେ କଳ୍ପନା ଶକ୍ତି କେଉଁ ଆଡ଼େ ଉଭେଇ ଯାଏ, ଏ ଛାର କୀଟାଦ୍‌କୀଟତର ମନୁଷ୍ୟ ନିଜର ସତ୍ତାକୁ ଭୁଲିଯାଏ ଓ ବିଶ୍ୱ-ନିୟନ୍ତାଙ୍କ ସୃଷ୍ଟିର ଅପାରତା ଓ ବୈଚିତ୍ର୍ୟ ଭାବୁ ଭାବୁ ଅସ୍ମିତା ବିସ୍ମୟ ମଧ୍ୟରେ ଟୁବ୍‌କିନି ବୁଡ଼ିଯାଏ । ଏଥିପାଇଁ ଭାଗବତକାର ଗାଇଅଛନ୍ତି "ବ୍ରହ୍ମାଣ୍ଡ ମାଳ ମାଳ ହୋଇ, ତୋ ଲୋମକୂପେ ବିରାଜଇ ।"

ହିନ୍ଦୁ ଜ୍ୟୋତିଷୋକ୍ତ ୨୭ ନକ୍ଷତ୍ରର ନାମ - ଅଶ୍ୱିନୀ, ଦ୍ୱିଜା, କୃତ୍ତିକା, ରୋହିଣୀ, ମୃଗଶିରା, ଆର୍ଦ୍ରା, ପୁନର୍ବସୁ, ପୁଷ୍ୟା, ଅଶ୍ଳେଷା, ମଘା, ପୂର୍ବଫାଲ୍‌ଗୁନୀ, ଉତ୍ତରଫାଲ୍‌ଗୁନୀ, ହସ୍ତା, ଚିତ୍ରା, ସ୍ୱାତୀ, ବିଶାଖା, ଅନୁରାଧା, ଜ୍ୟେଷ୍ଠା, ମୂଳା, ପୂର୍ବାଷାଢ଼ା, ଉତ୍ତରାଷାଢ଼ା, ଶ୍ରବଣା, ଧନିଷ୍ଠା, ଶତଭିଷା, ପୂର୍ବଭାଦ୍ରପଦ, ଉତ୍ତରଭାଦ୍ରପଦ ଓ ରେବତୀ ।

ନକ୍ଷତ୍ରମାନଙ୍କ ସମ୍ବନ୍ଧରେ ବିଶେଷ ବିବରଣ -

ପୃଥିବୀ ବର୍ଷକେ ଥରେ ସୂର୍ଯ୍ୟଙ୍କର ଚାରିଆଡ଼େ ଘୂରି ଆସେ । କିନ୍ତୁ ଜ୍ୟୋତିଷ ଗଣନାର ସୁବିଧା ପାଇଁ ପଣ୍ଡିତମାନେ କଳ୍ପନା କରି ଅଛନ୍ତି ଯେ ସମୁଦାୟ ଆକାଶ ବା

ଖଗୋଳରେ ଥାଇ ସୂର୍ଯ୍ୟ ୧୨ ମାସ ବା ୩୬୫ ଦିନରେ ବା ଏକ ସୌର ବର୍ଷରେ ପୃଥିବୀର ଚାରିଆଡ଼େ ଥରେ ଘୂରି ଆସନ୍ତି । ବର୍ଷକ ୧୨ ମାସ ଥିବାରୁ ଖଗୋଳ (୩୬୦ ଡିଗ୍ରୀ) କୁ ୧୨ ଭାଗରେ ବିଭକ୍ତ କରା ଯାଇଅଛି । ଏହି ପ୍ରତ୍ୟେକ ଭାଗ ୩୦ ଡିଗ୍ରୀ ଅଟେ ଓ ପ୍ରତ୍ୟେକ ୩୦ ଡିଗ୍ରୀ ପରିମିତ ସୀମା ମଧ୍ୟରେ ଦେଖା ଯାଉଥିବା କେତେକ ଉଜ୍ଜ୍ୱଳ ନକ୍ଷତ୍ରମାନଙ୍କୁ ଯୋଗ କରି ଗୋଟିଏ ଗୋଟିଏ ଜୀବ (ଯଥା - ମେଷ, ବୃଷ, ମିଥୁନ, କକଡ଼ା, ସିଂହ, କନ୍ୟା, ବିଛା, ମକର, ମୀନ)ର ବା ବସ୍ତୁ (ଯଥା - ତୁଳାଯନ୍ତ୍ର, ଧନୁ, କୁମ୍ଭ)ର ଛବି କଳ୍ପନା ସାହାଯ୍ୟରେ ଅଙ୍କିତ କରାଯାଇ ସେହି ନକ୍ଷତ୍ରମାନଙ୍କୁ ସେହି ଜୀବ ବା ବସ୍ତୁ ନାମରେ ଡକାଯାଇଅଛି । ଉଦାହରଣସ୍ୱରୂପ ଦେଖାଯିବ ଯେ, ଯେଉଁ ୩୦ ସୀମା ମଧ୍ୟରେ ବିଛା ରାଶି ଅବସ୍ଥିତ, ସେଥିରେ ଥିବା ଉଜ୍ଜ୍ୱଳ ତାରାଗୁଡ଼ିକ ଯୋଗ କଲେ ଗୋଟିଏ କଙ୍କଡ଼ାବିଛାର ରୂପ କଳ୍ପିତ ହୋଇପାରିବ । ଏଥି ପାଇଁ ଉକ୍ତ ୩୦ ଡିଗ୍ରୀକୁ ବିଛା ରାଶି ନାମରେ ଡକା ଯାଏ । ଏହାହିଁ ରାଶିମାନଙ୍କ ନାମକରଣ ।

ଚନ୍ଦ୍ର ପୃଥିବୀର ଚାରିଆଡ଼େ ୩୦ ଦିନରେ ଥରେ ଘୂରି ଆସନ୍ତି । ଏଥିପାଇଁ ଚାନ୍ଦ୍ରମାନ ମାସକ ୩୦ ଦିନ ଓ ଚାନ୍ଦ୍ରମାନ ବର୍ଷକ ୩୬୦ ଦିନ ।

ରସଚକ୍ର/ପ୍ରଥମ ଭାଗ/ ସପ୍ତମ ସଂଖ୍ୟା/ଭାଦ୍ର/ ୧୩୦୪ ସାଲ ।

## ॥ ଦୁଇ ॥

ପ୍ରତ୍ୟେକ ନକ୍ଷତ୍ର ପୃଥିବୀର ଚାରିଆଡ଼େ ୨୭ ଦିନରେ ଥରେ ଘୂରି ଆସେ । ଏଥିପାଇଁ ନାକ୍ଷତ୍ରିକ ମାସ ୨୭ ଦିନ । ନକ୍ଷତ୍ରମାନଙ୍କୁ ହିନ୍ଦୁ ଜ୍ୟୋତିଷୀମାନେ ୨୭ଟି ସ୍ୱତନ୍ତ୍ର ତାରକା ବା ତାରକାପୁଞ୍ଜରେ ବିଭକ୍ତ କରି ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଏଁ ସ୍ୱତନ୍ତ୍ର ନାମ ଦେଇ ଅଛନ୍ତି । ନକ୍ଷତ୍ରମାନଙ୍କ ଅବସ୍ଥିତି ବିଷୟ ଭାଗବତ ୫ମ ସ୍କନ୍ଧ ୨୩ଶ ଅଧ୍ୟାୟରେ ବିବୃତ ହୋଇଅଛି । ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ପରି ନକ୍ଷତ୍ରମାନେ ପୂର୍ବରେ ଉଦିତ ହୋଇ ପଶ୍ଚିମରେ ଅସ୍ତ ଯାଆନ୍ତି । ସବୁ ନକ୍ଷତ୍ର ଆକାଶର ଉତ୍ତର ଦିଗରେ ଥିବା ଧ୍ରୁବ ନକ୍ଷତ୍ରକୁ କେନ୍ଦ୍ର (ବା ବେଙ୍ଗଳାର ମେରୀଖୁଣ୍ଟ) କରି ତାହାର ଚାରିଆଡ଼େ ପୂର୍ବରୁ ପଶ୍ଚିମକୁ ଘାଉଁରି ଖାଇ ବୁଲୁଅଛନ୍ତି । ଧ୍ରୁବ ନକ୍ଷତ୍ର ପୃଥିବୀର ଉତ୍ତର ମେରୁର ଠିକ ମୁଣ୍ଡ ଉପରେ ଆକାଶରେ ଅବସ୍ଥିତ । ଏହା ସର୍ବଦା ଆକାଶରେ ଏକ ସ୍ଥାନରେ ସ୍ଥିର ହୋଇଥାଏ । ଏହାର ଉଦୟ ବା ଅସ୍ତ ନାହିଁ । ନାବିକମାନେ ଓ ମରୁଭୂମିରେ ଭୁଆଁ ବୁଲିବା ବାଟୋଇମାନେ ଏହି ଧ୍ରୁବ ନକ୍ଷତ୍ରକୁ ଦେଖି ଅକୂଳ ସମୁଦ୍ରରେ ଓ ଅପନ୍ତରା ମରୁଭୂମିରେ ରାତ୍ରିରେ ଦିଗ ନିର୍ଣ୍ଣୟ କରନ୍ତି । ଏ ଧ୍ରୁବ ନକ୍ଷତ୍ରକୁ ଚିହ୍ନିବା ସହଜ ଅଟେ । ଉତ୍ତରାକାଶରେ ସପ୍ତର୍ଷିମଣ୍ଡଳ ନାମକ ୭ଟି ଉଜ୍ଜ୍ୱଳ ନକ୍ଷତ୍ର ବିଶିଷ୍ଟ ଗୋଟିଏ ନକ୍ଷତ୍ରପୁଞ୍ଜ ଅଛି । ଏହି ମଣ୍ଡଳର ମୁଣ୍ଡପାଖର ୨ଟି ନକ୍ଷତ୍ରକୁ ଯୋଗ କରି ସେହି ଗାରକୁ ବଢ଼ାଇ ଦେଲେ ତାହା ଧ୍ରୁବ ତାରା ପାଖ ଦେଇଯିବ ।

ଥରେ ଧ୍ରୁବକୁ ଓ ସପ୍ତର୍ଷିମଣ୍ଡଳକୁ ଚିହ୍ନି ରଖିଲେ ତାରାମାନଙ୍କୁ ଚିହ୍ନିବାକୁ ସହଜ ହୁଏ । ପ୍ରତିଦିନ ପ୍ରତି ନକ୍ଷତ୍ର ପୂର୍ବଦିନ ଅପେକ୍ଷା ୪ ମିନିଟ୍ ଲେଖାଏଁ ଡେରି କରି ଉଦିତ ହୁଏ ଅର୍ଥାତ୍ ଆଜି ଯେଉଁ ତାରା ସନ୍ଧ୍ୟା ୭ଟା ବେଳେ ଉଇଁଛି କାଲି ସେ ତାରା ଉଇଁଲାବେଳକୁ ୭ଟା ବାଜି ୪ ମିନିଟ୍ ହୋଇଥିବ । ସୂର୍ଯ୍ୟ ଯେଉଁ ରାଶିରେ ଯେଉଁ ମାସରେ ଅବସ୍ଥାନ କରୁଥାଆନ୍ତି ସୌର ମାସର ନାମକରଣ ସେହି ରାଶିର ନାମ ଅନୁସାରେ ହୁଏ । ଯେଉଁ ଚାନ୍ଦ୍ରମାସର ପୂର୍ଣ୍ଣିମାର ସନ୍ଧ୍ୟାରେ ଚନ୍ଦ୍ର ଯେଉଁ ନକ୍ଷତ୍ର ସଙ୍ଗେ ଉଦିତ ହୁଅନ୍ତି, ସେହି ନକ୍ଷତ୍ରର ନାମ ଅନୁସାରେ ତତ୍‌ପୂର୍ବବର୍ତ୍ତୀ ଚାନ୍ଦ୍ରମାସର ନାମକରଣ ହୁଏ । ଯଥା - ବୈଶାଖ ପୂର୍ଣ୍ଣିମାରେ ଚନ୍ଦ୍ର ବିଶାଖା ନକ୍ଷତ୍ର ସଙ୍ଗେ ଉଦିତ ହୁଅନ୍ତି ବୋଲି ପୂର୍ବବର୍ତ୍ତୀ ମାସର ନାମ ବୈଶାଖ । ଆକାଶରେ ନକ୍ଷତ୍ର ଓ ନକ୍ଷତ୍ରପୁଞ୍ଜମାନଙ୍କ ଅବସ୍ଥିତିମାନଙ୍କୁ ଧ୍ରୁବର ଅବସ୍ଥିତି ସଙ୍ଗେ ଓ ପରସ୍ପରର ଅବସ୍ଥିତି ସଙ୍ଗେ ତୁଳନା କଲେ ଧ୍ରୁବର ଅବସ୍ଥିତି ଅପରିବର୍ତ୍ତନୀୟ ବୋଲି ଜଣାଯାଏ । କିନ୍ତୁ ଆକାଶରେ ଆଉ କେତେଗୁଡ଼ିଏ ଉଜ୍ଜ୍ୱଳ ବସ୍ତୁ ବେଳେ ବେଳେ ଦେଖାଦିଅନ୍ତି ସେମାନଙ୍କ ଗତି ଓ ଅବସ୍ଥିତି ନିୟମିତ ନୁହେଁ । ଏମାନଙ୍କୁ ଗ୍ରହ ବୋଲାଯାଏ । ଏମାନେ ତାରା ନୁହନ୍ତି କିନ୍ତୁ ତାରା ପରି ଉଜ୍ଜ୍ୱଳ ଦେଖାଯିବାରୁ ଲୋକେ ଏହାଙ୍କୁ ବେଳେ ବେଳେ ଭ୍ରମରେ ତାରା ନାମରେ ଡାକନ୍ତି; ଯଥା - ପାହାନ୍ତି ତାରା ବା ପହରିକିଆ ତାରା । ଏହା ଶୁକ୍ର ନାମକ ଗୋଟିଏ ଗ୍ରହ । ବୃହସ୍ପତି, ଶନି, ବୁଧ, ମଙ୍ଗଳ ମଧ ଗୋଟିଏ ଲେଖାଏଁ ଗ୍ରହ । ଆଖିକୁ ଦେଖାଯିବା ଗ୍ରହମାନଙ୍କ ସଂଖ୍ୟା ୫ ଅଟେ । ଯଥା - ଶୁକ୍ର, ବୃହସ୍ପତି, ବୁଧ, ଶନି ଓ ମଙ୍ଗଳ । ଚନ୍ଦ୍ରର କକ୍ଷ ଓ କ୍ରାନ୍ତିରେଖାର ଅଧଃପାତ ବିନ୍ଦୁକୁ କେତୁ ଓ ଉର୍ଦ୍ଧ୍ୱପାତ ବିନ୍ଦୁକୁ ରାହୁ ବୋଲି ଦୁଇଟି ଗ୍ରହ ରୂପେ ହିନ୍ଦୁ ଜ୍ୟୋତିଷମାନେ ଗଣନ କରିଅଛନ୍ତି । ଚନ୍ଦ୍ର, ସୂର୍ଯ୍ୟ, କେତୁ, ରାହୁ ଓ ଉପରୋକ୍ତ ୫ଟି ଗ୍ରହକୁ ହିନ୍ଦୁମାନେ ନବଗ୍ରହ ରୂପେ ଗଣନା କରନ୍ତି ଓ ସୂର୍ଯ୍ୟଙ୍କୁ ଗ୍ରହରାଜ କହନ୍ତି ।

ପ୍ରାଚୀନ ହିନ୍ଦୁମାନେ ଚନ୍ଦ୍ରର ଗତିପଥର ସୀମା ମଧରେ ଥିବା ଭିନ୍ନ ଭିନ୍ନ ନକ୍ଷତ୍ରମାନଙ୍କୁ ୨୭ଟି ନାମ ଦେଇଥିଲେ ଓ ଏ ୨୭ ନକ୍ଷତ୍ରରୁ ଅଧିକା ଅଭିଜିତ୍ ନାମରେ ଆଉ ଗୋଟିଏ ନକ୍ଷତ୍ରକୁ ଗଣୁଥିଲେ । ଏହା ଛଡ଼ା ଆକାଶର ଭିନ୍ନ ଭିନ୍ନ ଅଞ୍ଚଳରେ ଥିବା ଆଉ ଗୁଡ଼ିଏ ନକ୍ଷତ୍ରକୁ ହିନ୍ଦୁମାନେ ନାମ ଦେଇଥିଲେ । ହିନ୍ଦୁମାନଙ୍କ ବାରଟି ରାଶିର ନାମ ସଙ୍ଗେ ପ୍ରାଚୀନ ମିଶର, ଆରବ, ଗ୍ରୀସ୍ ଓ ରୋମବାସୀମାନଙ୍କ ପ୍ରଦତ୍ତ ନାମର ସାମଞ୍ଜସ୍ୟ ଅଛି । ଯଥା - ହିନ୍ଦୁମାନଙ୍କ ସିଂହ ରାଶି ଗ୍ରୀକ୍‌ମାନଙ୍କର ଲିଓ ସିଂହ; କିନ୍ତୁ ହିନ୍ଦୁମାନଙ୍କ ପ୍ରଦତ୍ତ ନକ୍ଷତ୍ରମାନଙ୍କ ନାମ ସଙ୍ଗେ ଗ୍ରୀକ୍ ଆଦିଙ୍କ ପ୍ରଦତ୍ତ ନକ୍ଷତ୍ରମାନଙ୍କ ନାମର ସାମଞ୍ଜସ୍ୟ ଦେଖାଯାଏ ନାହିଁ । ହିନ୍ଦୁ ଜ୍ୟୋତିଷୋକ୍ତ ୨୭ ନକ୍ଷତ୍ର ଯଥାକ୍ରମେ ପଶ୍ଚିମ ପୂର୍ବଆଡ଼କୁ ଉଣ୍ଡିବାକୁ ହେବ । ଏ ନକ୍ଷତ୍ରମାନଙ୍କ ଆକାରର ସୂଚନା ବରାହମିହିର ଓ କାଳିଦାସ କୃତ ସଂସ୍କୃତ କଟପାୟା ନାମକ ଗ୍ରନ୍ଥରେ ଓ କବିସୂର୍ଯ୍ୟଙ୍କ ସମକାଳୀନ କବିଚନ୍ଦ୍ରଙ୍କର ଓ ଆଧୁନିକ ଜ୍ୟୋତିଷୀ ଧନୀ ଦାସଙ୍କ ରଚିତ ଓଡ଼ିଆ ପଦ୍ୟ କଟପାୟାରେ ସୂଚିତ ହୋଇଅଛି ।

ଖଗୋଳ ୪ ସମକୋଣ ୩୬୦ ଡିଗ୍ରୀ । ଏହି ୩୬୦ ଡିଗ୍ରୀକୁ ୧୨ଟି ରାଶି ଏବଂ ୨୭ଟି ନକ୍ଷତ୍ର ଅଧିକାର କରିଅଛି । ପ୍ରତ୍ୟେକ ରାଶିର ଅଧିକୃତ ସ୍ଥାନ $= \frac{୩୬୦}{୧୨} =$ ୩୦ ଡିଗ୍ରୀ ଏବଂ ପ୍ରତ୍ୟେକ ନକ୍ଷତ୍ରର ଅଧିକୃତ ସ୍ଥାନ $\frac{୩୬୦}{୨୭} = ୧୩\frac{୧}{୨}$ ଡିଗ୍ରୀ ଅର୍ଥାତ୍ ପ୍ରତ୍ୟେକ ରାଶିର ସୀମା ମଧ୍ୟରେ $୨\frac{୧}{୪}$ ନକ୍ଷତ୍ର ଅଛି ।

୧. ମେଷ ରାଶି (ଲାଟିନ୍ Aries; ଇଂ The ram) = ୧ ଅଶ୍ୱିନୀ ନକ୍ଷତ୍ର + ୧ ଭ୍ରିଚ୍ଛା + $\frac{୧}{୪}$ କୃତ୍ତିକା ।

୨. ବୃଷ ରାଶି (ଲାଟିନ୍ - Taurus, ଇଂ The bull) = $\frac{୩}{୪}$ କୃତ୍ତିକା ୧ ରୋହିଣୀ + $\frac{୧}{୨}$ ମୃଗଶିରା

୩. ମିଥୁନ ରାଶି (ଲାଟିନ Gemini; ଇଂ The twins) = $\frac{୧}{୨}$ ମୃଗଶିରା ୧ ଆର୍ଦ୍ରା + $\frac{୩}{୪}$ ପୁନର୍ବସୁ ।

୪. କକଡ଼ା ରାଶି (ଲାଟିନ Cancer, ଇଂ The crab) = $\frac{୧}{୪}$ ପୁନର୍ବସୁ ୧ ପୁଷ୍ୟା ୧ ଅଶ୍ଳେଷା ।

୫. ସିଂହ (ଲାଟିନ୍ Leo; ଇଂ Lion) = ୧ ମଘା ୧ ପୂର୍ବଫାଲ୍‌ଗୁନୀ + $\frac{୧}{୪}$ ଉତ୍ତରଫାଲ୍‌ଗୁନୀ ।

୬. କନ୍ୟା (ଲା. Virgo; ଇଂ Virgin) = $\frac{୩}{୪}$ ଉତ୍ତର ଫାଲ୍‌ଗୁନୀ ୧ ହସ୍ତା + $\frac{୧}{୨}$ ଚିତ୍ରା ।

୭. ତୁଳା (ଲା. Libra ଇଂ. The scales) = $\frac{୧}{୨}$ ଚିତ୍ରା ୧ ସ୍ୱାତୀ + $\frac{୩}{୪}$ ବିଶାଖା ।

୮. ବିଛା (ଲା. Scorpio ଇଂ. Scorpion) = $\frac{୧}{୪}$ ବିଶାଖା ୧ ଅନୁରାଧା ୧ ଜ୍ୟେଷ୍ଠା ।

୯. ଧନୁ (ଲା. Sagitarius ଇଂ. The archer) = ୧ ମୂଳା ୧ ପୂର୍ବାଷାଢ଼ା + $\frac{୧}{୪}$ ଉତ୍ତରାଷାଢ଼ା ।

୧୦. ମକର (ଲା. Capricornus ଇଂ. Capricornus) $\frac{୩}{୪}$ ଉତ୍ତରାଷାଢ଼ା ୧ ଶ୍ରବଣା $\frac{୧}{୨}$ ଧନିଷ୍ଠା ।

୧୧. କୁମ୍ଭ (ଲା. Aquarius ଇଂ. Water bearer) = $\frac{୧}{୨}$ ଧନିଷ୍ଠା ୧ ଶତଭିଷା $\frac{୩}{୪}$ ପୂର୍ବଭାଦ୍ରପଦ ।

୧୨. ମୀନ (ଲା. Pisces ଇଂ Fishes) = $\frac{୧}{୪}$ ପୂର୍ବ ଭାଦ୍ରପଦ ୧ ଉତ୍ତର ଭାଦ୍ରପଦ ୧ ରେବତୀ ।

ରସଚକ୍ର/ପ୍ରଥମ ଭାଗ/୮ମ-୯ମ ସଂଖ୍ୟା କାର୍ତ୍ତିକ ୧୩୫୧ ସାଲ ।

## ।। ତିନି ।।

ନକ୍ଷତ୍ରମାନଙ୍କ ପରିଚୟ -

୧. ହିନ୍ଦୁମତରେ ନାମ - ଅଶ୍ୱିନୀ ।

କେଉଁ ରାଶିରେ ଅବସ୍ଥିତ - ମେଷରେ ।

ଆକାଶରେ କେଉଁଠାରେ ଅବସ୍ଥିତି - ଉତ୍ତରାକାଶରେ ।

ଆକାର ଓ ତାରକା ସଂଖ୍ୟା - ୩ଟି ଅନୁଜ୍ଜ୍ୱଳ ତାରା । ଏ ତିନି ତାରାକୁ ଯୋଗ କଲେ ଗୋଟିଏ ସ୍ଥୂଳକୋଣୀ ତ୍ରିଭୁଜ ହେବ । ଏହାକୁ ଘୋଡ଼ାର ମୁଣ୍ଡପରି କଳ୍ପନା କରାଯାଇ ପାରେ ।

ପାଶ୍ଚାତ୍ୟ ନାମ - 1. Hamal; 2. Sheritan; 3. Mesarthen.

ପାଶ୍ଚାତ୍ୟରାଶି ଅନୁସାରେ ଜ୍ୟୋତିଷିକ ପରିଚୟ - In Aries 1. Alpha Arietes; 2. Beta Arietes; 3. Gamma Arietes.

କଟପାୟାରେ ଲିଖିତ ସୂଚନା - ଅଶ୍ୱମସ୍ତକାକାର ତାରକା ।

ମନ୍ତବ୍ୟ - ନକ୍ଷତ୍ରର ଉଜ୍ଜ୍ୱଳତମ ତାରାକୁ ଯୋଗତାରା କୁହାଯାଏ । ଏହି ଯୋଗତାରାର ନାମ ସଂ. ମୁଖରଶ୍ମି । ଆଶ୍ୱିନପୂର୍ଣ୍ଣିମା ଦିନ ଚନ୍ଦ୍ର ଏହି ନକ୍ଷତ୍ର ସଙ୍ଗେ ଥାଆନ୍ତି ।

୨. ହିନ୍ଦୁମତରେ ନାମ - ଦ୍ୱିଜା, ଭରଣୀ ବା ଯମ ।

କେଉଁ ରାଶିରେ ଅବସ୍ଥିତ - ମେଷରେ ।

ଆକାଶର କେଉଁଠାରେ ଅବସ୍ଥିତ - ଉତ୍ତରାକାଶରେ, ଅଶ୍ୱିନୀର ପଶ୍ଚିମରେ ।

ଆକାର ଓ ତାରକା ସଂଖ୍ୟା - ୩ଟି କ୍ଷୀଣତାରା । ଏ ତିନି ତାରାକୁ ଯୋଗ କଲେ ଗୋଟିଏ ସମବାହୁ ତ୍ରିଭୁଜ ହେବ ।

ପାଶ୍ଚାତ୍ୟ ନାମ - Musca Borealis.

ପାଶ୍ଚାତ୍ୟରାଶି ଅନୁସାରେ ଜ୍ୟୋତିଷିକ ପରିଚୟ -

In Aries 1. 35 Arietes; 2. 39 Arietes. 3. 41 Arietes.

କଟପାୟାରେ ଲିଖିତ ସୂଚନା - ତ୍ରିକୋଣାକାର ତିନିତାରା ।

ମନ୍ତବ୍ୟ - ଏଥିର ଯୋଗତାରା ୩ ଚିହ୍ନିତ ।

୩. ହିନ୍ଦୁମତରେ ନାମ - କୃତ୍ତିକା, ମାତୃମଣ୍ଡଳ, ବହୁଳା ବା ଅନଳ ।

କେଉଁ ରାଶିରେ ଅବସ୍ଥିତ - ମେଷରେ $\frac{୧}{୪}$ ଓ ବୃଷରେ $\frac{୩}{୪}$ ।

ଆକାର ଓ ତାରକା ସଂଖ୍ୟା - ୬ଟି ତାରା, ଏମାନଙ୍କୁ ଯୋଗ କଲେ ଗୋଟିଏ କଟାର ବା ବଢ଼େଇର କାଠମୁଗୁରାର ଆକାର ହେବ ।

ସଂ ନାମ - ୧. ସଂଭୂତି, ୨. ଅନସୂୟା, ୩. ସନ୍ନତି, ୪. ଲଜ୍ଜା, ୫. ପ୍ରୀତି, ୬. ଦେବସେନା ବା ଷଷ୍ଠୀ ।

ଓଡ଼ିଆ ବା ଦେଶୀୟ ନାମ - କାର୍ତ୍ତିକପୁଞ୍ଜା ସମ୍ବଲପୁରୀ ନାମ କଠଲା ତାରା (କଠଲା ବଢ଼େଇର ମୁଗୁରା) ।

ପାଶ୍ଚାତ୍ୟ ନାମ - ଇଂ Hen and chickens; the Pleidas. ଆ - Ath thuraya. ଗ୍ରୀକ୍ - Pleides; Virgilii; Atlantaides. ହେବ୍ରୁ - Kimah ଲା. 1. Maina. 2. Taygeta; 3. Celieno; 4. Electra; 5. Merobe; 6. Alcyone.

ପାଶ୍ଚାତ୍ୟରାଶି ଅନୁସାରେ ଜ୍ୟୋତିଷିକ ପରିଚୟ - In Taurus - 1. 19 Tauri; 2. 16 Tauri; 3. 17 Tauri; 4. 23 Tauri; 5. 27 Tauri; 6. Pi Tauri.

କଟପାୟାରେ ଲିଖିତ ସୂଚନା - ଅଗ୍ନିଶିଖା ତୁଲ୍ୟ ୬ ତାରା ।

ମନ୍ତବ୍ୟ - ଏଥିର ଯୋଗତାରା ୬ ଚିହ୍ନିତ । ପାଶ୍ଚାତ୍ୟମାନେ ଏହି ପୁଞ୍ଜରେ ୧ ନମ୍ବରର ଉତ୍ତରପୂର୍ବକୁ ଆଉ ଗୋଟିଏ ତାରା (Asterope; Eta Tauri)କୁ ମିଶାଇ ଏ ପୁଞ୍ଜରେ ୭ଟି ତାରା ଗଣନା କରନ୍ତି । ପୁରାଣ ମତରେ ବଶିଷ୍ଠ ପତ୍ନୀ ଅରୁନ୍ଧତୀଙ୍କ ଛଡ଼ା ଏମାନେ ଅନ୍ୟ ୬ ଜଣ ସପ୍ତର୍ଷି ପତ୍ନୀ ଅଟନ୍ତି । ଏ ୬ ଜଣ କାର୍ତ୍ତିକେୟଙ୍କୁ ୬ ମୁଖରେ ସ୍ତନ୍ୟପାନ କରାଇଥିଲେ । କାର୍ତ୍ତିକପୂର୍ଣ୍ଣିମା ଦିନ ଚନ୍ଦ୍ର ଏହି ପୁଞ୍ଜ ସଙ୍ଗେ ଥାଆନ୍ତି ।

୪. ହିନ୍ଦୁମତରେ ନାମ - ରୋହିଣୀ ବା ପ୍ରଜାପତି ବା ରୋହିତ ତାରା ।

କେଉଁ ରାଶିରେ ଅବସ୍ଥିତ - ବୃଷ ରାଶିରେ ।

ଆକାଶର କେଉଁଠାରେ ଅବସ୍ଥିତ - ଉତ୍ତରାକାଶରେ । ଏହା ତ୍ରିଭୁଜାକୃତି ।

ଆକାର ଓ ତାରକା ସଂଖ୍ୟା - ୫ ଗୋଟି ତାରା, ଏ ୫ ତାରାକୁ ଯୋଗକଲେ ଗୋଟିଏ ସମଦ୍ୱିବାହୁ ତ୍ରିଭୁଜ ବା ଶଗଡ଼ଦଣ୍ଡାର ଆକାର ହେବ ।

ଓଡ଼ିଆ ବା ଦେଶୀୟ ନାମ - ରୋହିଣୀ ଶକଟ ।

ପାଶ୍ଚାତ୍ୟ ନାମ - Hyades.

ପାଶ୍ଚାତ୍ୟ ରାଶି ଅନୁସାରେ ଜ୍ୟୋତିଷିକ ପରିଚୟ - In Taurus; 1. Alpha Tauri; 2. Theta Tauri; 3. Gamma Tauri; 4. Delta Tauri; 5. Epsilon Tauri.

କଟପାୟାରେ ଲିଖିତ ସୂଚନା - ଶକଟାକୃତି ୫ ତାରା ।

ମନ୍ତବ୍ୟ - ଏ ନକ୍ଷତ୍ରର ସମଦ୍ୱିବାହୁ ତ୍ରିଭୁଜର ଭୂମିର ଦକ୍ଷିଣ କୋଣର ଉଜ୍ଜ୍ୱଳତମ ତାରା ହଳଦିଆ ୧ ଚିହ୍ନିତ । ଏହି ତାରାର ପାଶ୍ଚାତ୍ୟ ନାମ Aldeberan । ତ୍ରିଭୁଜର ଦୁଇ ବାହୁର ମଝିରେ ଥିବା ତାରା-ଦ୍ୱୟ ଖାଲି ଆଖିକୁ ପ୍ରଥମେ ଗୋଟିଏ ଲେଖାଏଁ ଦେଖାଯାଆନ୍ତି, କିନ୍ତୁ ସେମାନେ ଏକାଧିକ ଅଟନ୍ତି । ଚନ୍ଦ୍ର ଯେବେ ରୋହିଣୀ-ଶକଟକୁ ଭେଦ କରିବାର ଦେଖାଯାଏ । ତେବେ ରାଜ୍ୟରେ ଅନିଷ୍ଟ-ଆଶଙ୍କା କରାଯାଏ ।

ହଂସଚକ୍ର - ପ୍ରଥମ ଭାଗ/୧୦ମ ସଂଖ୍ୟା/ମାର୍ଗଶିର/୧୩୪୧ ସାଲ ।

## ନକ୍ଷତ୍ର*

### ଶ୍ରୀ ଜଳନ୍ଧର ଦେବ

ଭାଷାକୋଷ ଓଡ଼ିଆଜାତିର ଶବ୍ଦ-ସମ୍ପଦ ହେବ ବୋଲି ଆଶା କରାଯାଏ । ଏହି ଭାଷାକୋଷ ବର୍ତ୍ତମାନ ଯନ୍ତ୍ରସ୍ଥ । ସେଥିରୁ ନକ୍ଷତ୍ର ବିବରଣ ପାଠକମାନଙ୍କ ଜ୍ଞାତାର୍ଥେ

* (ଶ୍ରୀ ଗୋପାଳ ଚନ୍ଦ୍ର ପ୍ରହରାଜ, ବି.ଏଲ.ଙ୍କ ଲିଖିତ ପ୍ରବନ୍ଧ ସମ୍ବନ୍ଧେ ବକ୍ତବ୍ୟ)

ପ୍ରକାଶ କରି ତହିଁର ମତ ଗ୍ରହଣ କରିବାକୁ ସ୍ୱଗ୍ରାହକ ଆଗ୍ରହ ପ୍ରକାଶ କରିବା ହେତୁରୁ ତାଙ୍କର ଉଦାରତାର ଯଥେଷ୍ଟ ପରିଚୟ ମିଳୁଅଛି । କେବଳ ଏତିକି ନୁହେଁ । ଯେବେ କେହି ପାଠକ ଦୟା କରି ତାଙ୍କୁ ଏ ସମ୍ବନ୍ଧରେ ଆଉ କିଛି ଅଧିକ ସମ୍ବାଦ ଦେବେ, କୌଣସିଠାରେ ଭ୍ରମ ପ୍ରମାଦ ଥିବାର ଦେଖାଇବେ ତାହା ସେ କୃତଜ୍ଞତା ସହକାରେ ଗ୍ରହଣ କରି ଭାଷାକୋଷର ଯଥାସ୍ଥାନରେ ଯଥାସମୟରେ ଯଥାବାଧାରେ, ସେମାନ ଯୋଗ ଓ ସଂଶୋଧନ କରିବେ । ଅତି ଉତ୍ତମ ପ୍ରସ୍ତାବ । ମାତ୍ର ଏ ଦେଶର ବୈଜ୍ଞାନିକ କିମ୍ବା ଜ୍ୟୋତିର୍ବିଦମାନେ ଏ ସମ୍ବନ୍ଧେ ପଦେଅଧେ ଲେଖିବେ କି ? ଆଶା ନାହିଁ । ଆମ ତମ ଭଳିଆ ଲୋକେ ପଦେଅଧେ ବା ଲେଖିପାରନ୍ତି, ମାତ୍ର ତାର ମୂଲ୍ୟ କ'ଣ ? ତଥାପି ସଂଗ୍ରାହକଙ୍କର ଅନୁରୋଧ ରକ୍ଷା କରିବା ଉଚିତ । ଏଣୁ ରସଚକ୍ରର ସାମାନ୍ୟ ସ୍ଥାନାଧିକାର କରିବାକୁ ଆଗ୍ରହ କରିଅଛି । ଏତାଦୃଶ ଅପରାଧ ସାଲିସଯୋଗ୍ୟ । ଏଣୁ ଆଗତୁରା କ୍ଷମା ପ୍ରାର୍ଥନା ।

ଗୋଟିଏ ମୋର ବହୁକାଳର ଅଭ୍ୟାସ - ଭଲ କି ମନ୍ଦ ତାହା ମୁଁ କହିପାରୁ ନାହିଁ - ବିଜ୍ଞାନ ସମ୍ବନ୍ଧୀୟ, କ୍ରମବିକାଶ ସମ୍ବନ୍ଧୀୟ ଏବଂ ଜ୍ୟୋତିର୍ବିଦ୍ୟା ସମ୍ବନ୍ଧୀୟ ପ୍ରବନ୍ଧ ଉପରେ ମୋର ନଜର ପ୍ରଥମରେ ପଡ଼େ ଏବଂ ତାହା ପାଠକରିବାର ଲୋଭ ସମ୍ବରଣ ମୁଁ କରିପାରେ ନାହିଁ । ଏଣୁ କହିବା ବାହୁଲ୍ୟ ଯେ, ରସଚକ୍ରର ନକ୍ଷତ୍ର ପ୍ରବନ୍ଧ ପଢ଼ିବାକୁ ମୋର ଏଡ଼େ ଆଗ୍ରହ ।

ଅନ୍ୟ ପାଠକଙ୍କ ପ୍ରତି ଲେଖକଙ୍କ ସୂଚନା କୌତୁକପ୍ରଦ ହେଉ ବା ନ ହେଉ, ମୋ ପ୍ରତି ଏହା ବଡ଼ କୌତୁକପ୍ରଦ । ଲେଖକ ଆକାଶରେ ନକ୍ଷତ୍ରମାନଙ୍କୁ ନିରୂପଣ କରିବା ସକାଶେ ଯେଉଁ ପଥର ପଥିକ ବହୁଦିନ ପୂର୍ବେ ମୁଁ ସେହି ପଥର ପଥିକ ହୋଇଥିଲି । ବିଦ୍ୟା ନାହିଁ, ମାତ୍ର ଆଗ୍ରହଟା ବଡ଼ ବେଶି । ୧୯୧୦ ଇଂ ରେ ଯେଉଁଦିନ ହେଲିର ଧୂମକେତୁ ତାର ପୁଚ୍ଛ ଦ୍ୱାରା ଆମ୍ଭମାନଙ୍କୁ ଆବୃତ କଲା ସେଦିନ ମୁଁ ରାଞ୍ଚିରେ । ଏହି ଅଭୂତପୂର୍ବ ଘଟଣା ପର୍ଯ୍ୟବେକ୍ଷଣ ସୁଖ ବିଷୟରେ ଅନନ୍ୟୋପାୟ ହୋଇ ରାଞ୍ଚି ବିସପଙ୍କ ଦ୍ୱାରସ୍ଥ ହେଲି । ବିସପଙ୍କର ସୌଜନ୍ୟରେ ସେଦିନ ସକାଳଓଳିଟା ତାଙ୍କ ସହିତ ସୂର୍ଯ୍ୟ ବୀକ୍ଷଣରେ ଅତିବାହିତ କଲି । ସୂର୍ଯ୍ୟ ଦିହରେ ହେଲିର ତ ଚିହ୍ନ ବକ୍ରେ ପାଇଲୁଁ ନାହିଁ । କେବଳ ଗୋଟାକେତେ ସୌରକଳଙ୍କ ଦେଖି ତୃପ୍ତି ଲାଭ କଲୁଁ । ପୁରୀ ମୋକଦ୍ଦମା ଘେନି ୧୯୨୦ ଇଂ ରେ ମୁଁ କଟକରେ ଅବସ୍ଥାନ କରୁଥିବାବେଳେ ଶୁକ୍ରର କଳା ପରିବର୍ତ୍ତନ ଦେଖିବାକୁ ଆଗ୍ରହ ବଳିଲା । ରେଭେନ୍ସା କଲେଜର ଦୁଇଜଣ ଅଧ୍ୟାପକଙ୍କ ସୌଜନ୍ୟରେ ଦିନେ ସନ୍ଧ୍ୟାରେ କଲେଜ ପଡ଼ିଆରେ କଲେଜର ଦୂରବୀକ୍ଷଣ ଯନ୍ତ୍ର ବ୍ୟବହାର କରିବାର ଅନୁମତି ପାଇଥିଲି । ଜଣେ ଅଧ୍ୟାପକ ଓ ତିନି ଚାରିଜଣ କଲେଜ ଛାତ୍ରଙ୍କ ସହିତ ସେ ସନ୍ଧ୍ୟାଟି ଶୁକ୍ର ଓ କେତେକ ନକ୍ଷତ୍ର ପର୍ଯ୍ୟବେକ୍ଷଣରେ ଅତି ଆନନ୍ଦରେ ଅତିବାହିତ ହୋଇଥିଲା । ସେ ଦିନଠାରୁ ମୋର ଦୃଢ଼ ଧାରଣା ଏହି ଯେ ଅପରିଚିତ ହେଉ ପଛକେ ଜ୍ଞାନ-ପିପାସୁର-ତୃପ୍ତି ନିମନ୍ତେ କଲେଜ ଅଧ୍ୟାପକଗଣ ସଦା ମୁକ୍ତ-

ହୃଦୟ । ଯେଉଁମାନେ ଅପରିଚିତ ହସ୍ତରେ ଯନ୍ତ୍ର ସମର୍ପଣ କରିପାରନ୍ତି - ସେମାନେ ଯେ ପୁସ୍ତକ ଦ୍ୱାରା ଏବଂ ଉପଦେଶ ଦ୍ୱାରା ଅନ୍ୟକୁ ଅକ୍ଲେଶରେ ଚରିତାର୍ଥ କରିବେ, ଏଥିରେ ସନ୍ଦେହ କ'ଣ ?

ହାତ ପାଖରେ କଲେଜ ଲାଇବ୍ରେରୀ, ଦୂରବୀକ୍ଷଣ ଯନ୍ତ୍ର ଏବଂ ସହୃଦୟ ଅଧ୍ୟାପକମାନେ ଥାଉଁ ଥାଉଁ, ସତ୍ୟ-ସମାଚାରର ସମ୍ପାଦକ, ଅସହଯୋଗ-ନୈତିକ ଗାନ୍ଧି-ପ୍ରତିଷ୍ଠିତ ଦୂର ଗୁଜୁରାଟ ବିଦ୍ୟାପୀଠର ଅସହଯୋଗୀ ଅଧ୍ୟକ୍ଷ କାକାଙ୍କର ପ୍ରସାଦ ଭିକ୍ଷା କଲେ କାହିଁକି ? ଏହା ଯେମନ୍ତ ଆଶ୍ଚର୍ଯ୍ୟଜନକ ତେମନ୍ତ କୌତୁକାବହ ।

ସଂଗ୍ରାହକଙ୍କ ବହୁ ପରିଶ୍ରମ ଓ ଯତ୍ନଲବ୍ଧ ନକ୍ଷତ୍ର ବିବରଣ ପ୍ରମାଦ-ଶୂନ୍ୟ ନୁହେଁ ବୋଲି ମୋର କ୍ଷୁଦ୍ର ବୁଦ୍ଧିର ଧାରଣା, ଏଣୁ ଶବ୍ଦକୋଷରେ ସ୍ଥାନ ପାଇବା ଉପଯୁକ୍ତ ନୁହେଁ । ପ୍ରତିଦ୍ୱନ୍ଦ୍ୱୀଙ୍କର ସାହଚର୍ଯ୍ୟରୁ ଏ ପ୍ରମାଦ ଘଟିଲା କି ?

ନକ୍ଷତ୍ର ବିବରଣରେ ନକ୍ଷତ୍ର ଅପେକ୍ଷା ସୂର୍ଯ୍ୟ, ଚନ୍ଦ୍ର, ଗ୍ରହମାନଙ୍କ ବିବରଣ ବିସ୍ତର ଭାବରେ ରହିଲା । ଗ୍ରହମାନେ ଜ୍ୟୋତିଷ୍କ ପିଣ୍ଡ କି ? ଏହା ସର୍ବବାଦିସମ୍ମତ ନୁହେଁ । କୌଣସି କୌଣସି ବଙ୍ଗଳା କୋଷରେ ଗ୍ରହମାନଙ୍କୁ ଜ୍ୟୋତିଷ୍କ ବୋଲା ଯାଇଅଛି ଏବଂ ଭାରତୀୟ କେତେକ ଜ୍ୟୋତିଷ ଶାସ୍ତ୍ରରେ ଏମାନଙ୍କୁ ଜ୍ୟୋତିଷ୍କ ବୋଲା ଯାଇଅଛି, ମାତ୍ର ତାହା ଯଥାର୍ଥ ନୁହେଁ । ଏମାନଙ୍କର ସ୍ୱତଃ ଦୀପ୍ତି ନାହିଁ । ଏମାନେ ସୂର୍ଯ୍ୟ ଦ୍ୱାରା ଆଲୋକିତ ।

''ସୂର୍ଯ୍ୟ ଆମ୍ଭମାନଙ୍କଠାରୁ ଯେତେ ଦୂରରେ ଅବସ୍ଥିତ, ଗୋଟିଏ ଗୋଟିଏ ନକ୍ଷତ୍ର (ଯଥା : ସ୍ୱାତୀ, ଧନିଷ୍ଠା, ଶ୍ରବଣା) ତଦପେକ୍ଷା ୨୦ ହଜାର ୬ ଶହ ଗୁଣ ଅଧିକ ଦୂରରେ ଅବସ୍ଥିତ ।'' ନକ୍ଷତ୍ର ସମ୍ବନ୍ଧେ ଏ ପ୍ରକାର ମତ କୌଣସି ଜ୍ୟୋତିର୍ବିଦ୍ ପ୍ରକାଶ କରି ନାହାନ୍ତି । ଆମ୍ଭମାନଙ୍କର ଅତି ନିକଟବର୍ତ୍ତୀ ନକ୍ଷତ୍ର ନାମ ଏଲଫା ସେଣ୍ଟରି । ଆମ୍ଭମାନଙ୍କଠାରୁ ଏ ନକ୍ଷତ୍ର ଦୂରତା ୪.୪ ଆଲୋକବର୍ଷ ଅର୍ଥାତ୍ ପୃଥିବୀଠାରୁ ସୂର୍ଯ୍ୟର ଦୂରତା ଅପେକ୍ଷା ୨୭୫୦୦୦ ଗୁଣ ଦୂରରେ ଏହି ନକ୍ଷତ୍ର ଅବସ୍ଥିତ । ସ୍ୱାତୀ, ଧନିପ୍ରବଣାର ଦୂରତାର ହିସାବ କଲା କିଏ ? ତାଛଡ଼ା ଧନିଷ୍ଠା, ଶ୍ରବଣା ଗୋଟିଏ ତାରା ନୁହନ୍ତି, ଏମାନେ ତାରାପୁଞ୍ଜ । ପାଶ୍ଚାତ୍ୟ ଥରେ ମତ ଛାଡ଼ିଦେଲେ ସୁଦ୍ଧା ହିନ୍ଦୁ ଶାସ୍ତ୍ରମତେ ଶ୍ରବଣା ତିନି ଏବଂ ଧନିଷ୍ଠା ପାଞ୍ଚ ତାରା ସମଷ୍ଟି ଏବଂ ଗୋଟିଏ ତାରା ଯେ ଅନ୍ୟଠାରୁ କେତେକୋଟି ମାଇଲ ଦୂରରେ ଅବସ୍ଥିତ ତାହା କେହି ଗଣନା କରିବାକୁ ସକ୍ଷମ ହୋଇ ନାହିଁ । ପୃଥିବୀଠାରୁ ଏମାନଙ୍କ ଦୂରତା ମଧ୍ୟ ସ୍ଥିରୀକୃତ ହୋଇ ନାହିଁ ।

''ସୂର୍ଯ୍ୟ ଆମ୍ଭମାନଙ୍କଠାରୁ ୧୦୪ କୋଟି ୬୫ ଲକ୍ଷ ମାଇଲ ଦୂରରେ ଅଛନ୍ତି ।'' ସୂର୍ଯ୍ୟ ଆମ୍ଭମାନଙ୍କଠାରୁ ଏତେ ଦୂରକୁ ଗଲେ କେବେ ? ମୁଁ ବାଲ୍ୟକାଳରୁ ୧୯୨୯ ଇଂ ପର୍ଯ୍ୟନ୍ତ ଜାଣିଅଛି ଯେ ସୂର୍ଯ୍ୟ ଆମ୍ଭମାନଙ୍କଠାରୁ ୯୩୦୦୦୦୦୦ ମାଇଲ ଦୂରରେ ଅଛନ୍ତି । ଯେବେ ୧୯୩୩ରେ ପୃଥିବୀ ଓ ସୂର୍ଯ୍ୟର ବ୍ୟବଧାନ ୧୦୪୬୫୦୦୦୦୦ ମାଇଲ ହୋଇଥାଏ, ତାହାହେଲେ ସ୍ୱୀକାର କରିବାକୁ ହେବ ଯେ ପୃଥିବୀ ପ୍ରତିବର୍ଷେ ସୂର୍ଯ୍ୟଠାରୁ ୨୩୮୩୭୫୦୦୦ ମାଇଲ ଦୂରକୁ ଚାଲି ଯାଉଅଛି । ଏ ଅନୁପାତରେ ବାର୍ଷିକ

ସୂର୍ଯ୍ୟ ଓ ପୃଥିବୀର ବ୍ୟବଧାନ ଘଟିଲେ ପୃଥିବୀ ଯେ ଅଚିରେ ଧ୍ୱଂସ ପ୍ରାପ୍ତ ହେବ, ତାହା କହିବା ବାହୁଲ୍ୟ ମାତ୍ର । ତାଛଡ଼ା କେତେ ବର୍ଷରେ ପୃଥିବୀର ଦୁର୍ଦ୍ଦଶା ଘଟିବ, ତାହା ମଧ୍ୟ ଅନାୟାସରେ ଗଣନା କରାଯାଇପାରେ । ବାହାର ଗଣନା ଓ ସଂଖ୍ୟା ପ୍ରମାଦ-ଦୁଷ୍ଟ ? ବିଦ୍ୟାପୀଠର ଅଧ୍ୟକ୍ଷଙ୍କର କିମ୍ବା ପାଶ୍ଚାତ୍ୟ ଗଣିତ ଶାସ୍ତ୍ରର ? ସ୍କୁଲରେ ପ୍ରଚଳିତ ଭୂଗୋଳ ପ୍ରଭୃତିରେ ଯେବେ ଗୋଟାଏ ଭୁଲ ଅଙ୍କ ଲେଖା ଯାଉଥାଏ, ତେବେ ଗଭର୍ଣ୍ଣମେଣ୍ଟ ଓ ଶିକ୍ଷା ବିଭାଗ କର୍ତ୍ତୃପକ୍ଷ ଦୋଷୀ ହେବେ ନାହିଁକି ?

ସୂର୍ଯ୍ୟର ବ୍ୟାସ ୮୬୬୦୦୦ ମାଇଲ, ଏହା ସମସ୍ତେ ଜାଣନ୍ତି । ସୂର୍ଯ୍ୟର ବ୍ୟାସ ୪୩୩୦୦୦ ମାଇଲ ହେଲା କେବେ ? ଅବଶ୍ୟ ସୂର୍ଯ୍ୟ ବାର୍ଷିକ ତେଇଶ କୋଟି ମାଇଲ ଦୂରକୁ ଚାଲିଲେ ଏତାଦୃଶ କ୍ଷୁଦ୍ରାବୟବ ଦେଖାଯିବା ଅସମ୍ଭବ ନୁହେଁ ।

ପୃଥିବୀର ଚାରିଆଡ଼େ ଚନ୍ଦ୍ର ଘୂରିଆସେ ସତ । ମାତ୍ର କେତେ ଦିନରେ ? କୋଷ-ସଂଗ୍ରାହକ ଲେଖି ଅଛନ୍ତି ୩୦ ଦିନରେ । ଏହା କାହାର ମତ ? ପାଶ୍ଚାତ୍ୟ ଗଣିତ-ଶାସ୍ତ୍ର କି ଭାରତୀୟ ଗଣିତ-ଶାସ୍ତ୍ରର ? ସୂର୍ଯ୍ୟ ସିଦ୍ଧାନ୍ତ ମତରେ ଚନ୍ଦ୍ରର ଭ୍ରମଣ ଭୋଗକାଳ ୨୭୩୩୨୧୬୭, ପାଶ୍ଚାତ୍ୟ ମତରେ ୨୭ ଦିନ ୭ ଘଣ୍ଟା ୪୩ ମିନିଟ୍ ୧୧ ସେକେଣ୍ଡ । ସୂର୍ଯ୍ୟର ସ୍ଥିତି ଓ ପୃଥିବୀର ଗତି ସହିତ ଚନ୍ଦ୍ରର ଗତିର ସମତା ରକ୍ଷା କରିବା ନିମନ୍ତେ ଚନ୍ଦ୍ରର ପ୍ରଦକ୍ଷିଣ କାଳ ୨୯ ଦିନ ୧୨ ଘଣ୍ଟା ୪୪ ମିନିଟ୍ ୩ ସେକେଣ୍ଡ ନିଶ୍ଚୟ କରାଯାଇଅଛି । ଏ ଅନୁସାରେ ଚାନ୍ଦ୍ରମାନ ବର୍ଷ ୩୫୫ ଦିନ ଧରାଯାଇପାରେ । ଏହା ଯେ କୌଣସି ବର୍ଷର ପାଞ୍ଜିରୁ ପରୀକ୍ଷା କରାଯାଇପାରେ । ୧୯୩୨-୩୩ ଇଂ ମେଷ ସଂକ୍ରାନ୍ତି ଆରମ୍ଭ ଏପ୍ରିଲ ତା ୧୩ରେ ଏବଂ ବର୍ଷ ଶେଷ ଏପ୍ରିଲ ତା ୧୨ରେ । ସଂକ୍ରାନ୍ତି ଆରମ୍ଭ ଦିନ ବୈଶାଖ କୃଷ୍ଣପକ୍ଷ ସପ୍ତମୀ ଚନ୍ଦ୍ର ଥିଲା ଆର୍ଦ୍ରା ନକ୍ଷତ୍ରରେ । ଶେଷ ଦିନ କୃଷ୍ଣପକ୍ଷ ଦ୍ୱିତୀୟା ଏବଂ ଚନ୍ଦ୍ର ଥିଲା ସ୍ୱାତୀ ନକ୍ଷତ୍ରରେ । ସଂକ୍ରାନ୍ତି ଆରମ୍ଭ ଦିନ ସୂର୍ଯ୍ୟ ଯେଉଁ ନକ୍ଷତ୍ରରେ ଥିଲା ପୁଣି ବର୍ଷାରମ୍ଭକୁ ସେହି ନକ୍ଷତ୍ରକୁ ଆସିବାକୁ ତାକୁ ୩୬୫ ଦିନ ୬ ଘଣ୍ଟା ଲାଗିଲା । ଚନ୍ଦ୍ର, ସଂକ୍ରାନ୍ତି ଦିନ ଆର୍ଦ୍ରା ନକ୍ଷତ୍ରରେ ଥିଲା - ସେହି ଆର୍ଦ୍ରା ନକ୍ଷତ୍ରକୁ ଏପ୍ରିଲ ତା ୧୩ରେ ପହଞ୍ଚିଲା ଅର୍ଥାତ୍ ୩୫୫ ଦିନରେ ତାର ଭ୍ରମଣ ଆରମ୍ଭ ସ୍ଥାନରେ ପହଞ୍ଚିଲା । ଏଣୁ ସୌରମାନ ବର୍ଷ ୩୬୫ ଦିନ ଛଅଘଣ୍ଟା ଏବଂ ଚାନ୍ଦ୍ରମାନ ବର୍ଷ ୩୬୦ ଦିନ ନ ହୋଇ ୩୫୫ ଅଟେ । ଏଣୁ ସୌରମାନ ଓ ଚାନ୍ଦ୍ରମାନ ବର୍ଷର ସମତା ରକ୍ଷା ନିମନ୍ତେ ପାଞ୍ଜିରେ ଏତେ କ୍ଷୟ ବୃଦ୍ଧି । ମୁସଲମାନ ପାଞ୍ଜିରେ କ୍ଷୟ ବୃଦ୍ଧି କରା ନ ଯାଇ ଚାନ୍ଦ୍ରମାନ ପ୍ରତି ଦ୍ୱିତୀୟାକୁ ମାସର ପ୍ରଥମଦିନ ଧରା ଯାଉଥିବାରୁ ମାସ ଓ ପର୍ବ ଦିବସର ସାମ୍ୟ ଋତୁ ସହ ରକ୍ଷା ହୋଇ ପାରୁ ନାହିଁ । ଏତିକି ।

ରସଚକ୍ର/ପ୍ରଥମ ଭାଗ - ୮/୯ମ ସଂଖ୍ୟା - ପୃ ୩୨୭-୩୩୦ ।

[ଏହା ସଂଗ୍ରାହକଙ୍କ ଲେଖାର ପ୍ରତିବାଦ ନୁହେଁ । ତାଙ୍କ ଅନୁରୋଧକ୍ରମେ ତାଙ୍କ ଲେଖାର ସଂଶୋଧନ ନିମନ୍ତେ ଇଙ୍ଗିତ ମାତ୍ର । ଏହି ଲେଖାରେ ମୋର ମଧ୍ୟ ଭୁଲ ଥାଇପାରେ । ତୃତୀୟ ବିଜ୍ଞବ୍ୟକ୍ତି ଦ୍ୱାରା ଏଥିରେ ମୀମାଂସା ହେଲେ ଭାଷାକୋଷର ନକ୍ଷତ୍ର ବିବରଣଟି ପରିଷ୍କାର ଓ ଶୁଦ୍ଧ ହୋଇ ରହିବ । ଏହି ଆଶା କରି କ୍ଷାନ୍ତ ହେଲି ।]

# ଦୁନିଆର ରୀତି ଏ

## ୧୯୪୩ - ୧୯୪୫

'ଦୁନିଆର ରୀତି ଏ' ପ୍ରହରାଜଙ୍କ ଜୀବନର ଶେଷ ଦୀର୍ଘ ରଚନା । ଏହାକୁ ତାଙ୍କ ଦୀର୍ଘ ଜୀବନାଭୂତିର 'ଚରୁ' କୁହାଯାଇପାରେ । ଆପଣା ଅଧ୍ୟୟନ, ପ୍ରଜ୍ଞା ଓ ଅନୁଭବରେ ପରିସିଦ୍ଧ ଦାର୍ଶନିକ ।

ଶ୍ରୀ ରାଧାଗୋବିନ୍ଦ ଦାସ ଓ ଶ୍ରୀ ବସନ୍ତ କୁମାର ଶତପଥୀଙ୍କ ସଂପାଦିତ ଓ ମୟୂରଭଞ୍ଜ ମହାରାଜାଙ୍କ ପୃଷ୍ଠପୋଷକତାରେ ପ୍ରକାଶିତ 'ଭଞ୍ଜ ପ୍ରଦୀପ'ର ୧୧ ଭାଗ ପ୍ରଥମ ସଂଖ୍ୟା (୧୩୪୯) ସାଲ ଠାରୁ ଆରମ୍ଭ ହୋଇ ୧୪ଶ ଭାଗ ୩ୟ/୪ର୍ଥ ସଂଖ୍ୟା (୧୩୫୨) ସାଲ ମଧ୍ୟରେ ଦଶଗୋଟି ସଂଖ୍ୟାରେ ପ୍ରକାଶିତ । ମାତ୍ର ଆଲୋଚନା ତେର ଅଧ୍ୟାୟ ବିଶିଷ୍ଟ । ସମ୍ପାଦକ

॥ ଏକ ॥

What is friendship but a name,
A charm that lulls to sleep,
A shadow which follows wealth and fame,
But leaves the wretch to weep ? - Cowper

ସମ୍ପାଦକ ମହାଶୟ

ବାର୍ଦ୍ଧକ୍ୟସୁଲଭ ସ୍ମୃତିଶକ୍ତି ହ୍ରାସ ଯୋଗୁଁ ଇଂରେଜ କବି କାଉପରଙ୍କ କବିତାର ପ୍ରଥମ ଓ ତୃତୀୟ ଛତ୍ର ମୋର ମନେଅଛି - ଆଉ ଦୁଇ ପଦ ଜଣେ ଯୁବକ ବନ୍ଧୁଙ୍କ ଦୟାରୁ ପାଇଲି । ମୋ ଭଳି ଜରାଜୀର୍ଣ୍ଣ ଲେଖକକୁ କ୍ଷମା ନ ଦେଲେ ଆପଣଙ୍କ ପତ୍ରିକା ପାଇଁ ସନ୍ଦର୍ଭ ଆଶା କରିବେ ନାହିଁ ।

ଏ ସନ୍ଦର୍ଭର ଶିରୋନାମରେ ଉଦ୍ଧୃତ ପଦ୍‌କ୍ତିଚତୁଷ୍ଟୟର ଅନୁବାଦ

ବନ୍ଧୁଗଣ, କେବଳ ଗୋଟିଏ ନାମ (ଆଭିଧାନିକ ଶବ୍ଦ) ଛଡ଼ା ଆଉ କିଛି ନୁହେଁଟି ଏହି ଗାରିଡ଼ି ମନ୍ତ୍ରରେ ଲୋକ ଭୋଳ ହୋଇ ଶୋଇପଡ଼େ; ଏହା ଧନର ଓ ଯଶର ଅନୁସାରିଣୀ ଛାୟାଟିଏ ସିନା ଓ ଏଥିରେ ଭୋଳ ହେବା ହତଭାଗାର କାନ୍ଦୁ କାନ୍ଦୁ ଦିନ ସରେ ନାହିଁ ।

ଏ କବିତାରେ କବି ନିଜ ଅନୁଭୂତି ଲିପିବଦ୍ଧ କରିଛନ୍ତି ଓ ଏହା ଅଳ୍ପ ବହୁତ ସମସ୍ତେ ଅନୁଭବ କରିଥାଇଁ, କିନ୍ତୁ କର୍ମକ୍ଷେତ୍ରରେ ଏଥି ପ୍ରତି ଆମର ହେଜ ରହେ ନାହିଁ । ମୋ ଜୀବନର ପ୍ରଥମ ଦଶ ବର୍ଷ ଅଣହେଜ ଅବସ୍ଥାରେ ବିତିଲା । ତାପରେ ମୋ ହେତୁ ପାଇବା ଦିନରୁ ଆଜିକୁ ୫୭ ବର୍ଷ ହେଲା ମୁଁ ଦୁନିଆରେ ନାନା କ୍ଷେତ୍ରରେ, ନାନା ପ୍ରସଙ୍ଗରେ, ନାନା ଅବସ୍ଥାରେ, ନାନା ସ୍ଥାନରେ, ନାନା ପ୍ରକାରେ ଠେକିଛି, କିନ୍ତୁ ଠେକି କରି ଶିଖି ନାହିଁ, ଏହାହିଁ ଗଭୀର ଆକ୍ଷେପର ବିଷୟ । ଏହି ଦୀର୍ଘକାଳ ମଧ୍ୟରେ ଜନ୍ମତଃ, ବିବାହତଃ, ସମାଜତଃ, କର୍ମକ୍ଷେତ୍ରତଃ, ସଂସାରତଃ, ବ୍ୟବସାୟତଃ, ସାହିତ୍ୟତଃ, ଏହିପରି ଅନେକତଃ ବହୁ ସହସ୍ର ବ୍ୟକ୍ତିଙ୍କ ସଙ୍ଗେ ମୋର 'ସାପ୍ତପଦୀନ' ଆଳାପ ପରିଚୟ ହୋଇଅଛି । ସେମାନଙ୍କ ମଧ୍ୟରୁ ବହୁଶତ ବ୍ୟକ୍ତିଙ୍କ ସଙ୍ଗେ ଆଳାପ ପରିଚୟ ଅପେକ୍ଷା ଦୃଢ଼ତର ସମ୍ପର୍କ ହୋଇଅଛି, ସେମାନଙ୍କ ମଧ୍ୟରୁ ବହୁ 'କୋଡ଼ି' ବ୍ୟକ୍ତିଙ୍କ ସଙ୍ଗେ 'ବନ୍ଧୁତା' ହୋଇଅଛି, ତହିଁ ମଧ୍ୟରୁ କେତେ ଡଜନ୍ ବ୍ୟକ୍ତିଙ୍କ ସଙ୍ଗେ ସୌହାର୍ଦ୍ଦ୍ୟ ସ୍ଥାପିତ ହୋଇଅଛି । ଏକେତ ଡଜନ୍ଙ୍କ ମଧ୍ୟରେ ମହାପ୍ରସାଦ ବନ୍ଧୁ ବା ପ୍ରୀତିବନ୍ଧୁ, ସଗୋତ୍ର ଓ ଅସଗୋତ୍ର ବନ୍ଧୁ, ସପିଣ୍ଡ ଓ ଅସପିଣ୍ଡ ବନ୍ଧୁ, ସମାନୋଦକ ଓ ଅସମାନୋଦକ ବନ୍ଧୁ, ସାକୁଲ୍ୟ ଓ ଅସାକୁଲ୍ୟ ବନ୍ଧୁ, ସମଧର୍ମୀ ଓ ଅସମଧର୍ମୀ ବନ୍ଧୁ, ସମକର୍ମୀ ଓ ଅସମକର୍ମୀ ବନ୍ଧୁ, ସହପାଠୀ ଓ ଅସହପାଠୀ ବନ୍ଧୁ, ସହଯୋଗୀ ଓ ଅସହଯୋଗୀ ବନ୍ଧୁ, ସମଲେଖକ ଓ ଅସମଲେଖକ ବନ୍ଧୁ, ସମପକ୍ଷ ଓ ଅସମପକ୍ଷ ବନ୍ଧୁ, ସମାନୁଭୂତି ଓ ଅସମାନୁଭୂତି ବନ୍ଧୁ, ସମଦଶାପନ୍ନ ଓ ଅସମଦଶାପନ୍ନ ବନ୍ଧୁ ଅଛନ୍ତି । ଅଛନ୍ତି ବୋଲି ନ କହି 'ଥିଲେ' ବୋଲି କହିଥିଲେ କଥାଟା ବାସ୍ତବତା ସଙ୍ଗେ ଜୋଟ୍ ଖାଆନ୍ତି । ଏହି 'ସମ' ଓ 'ଅସମ' ତାଲିକାରେ 'ବିଷମ' ବିଶେଷଣ-ବିଶିଷ୍ଟ ବନ୍ଧୁମାନେ ମଧ୍ୟ ଭୁକ୍ତ । ଏ ବନ୍ଧୁମାନଙ୍କ ସଙ୍ଗେ ସମ୍ପର୍କ 'ଆଭାଷଣ-ପୂର୍ବ ସାପ୍ତପଦୀନ'ଠାରୁ ଆରମ୍ଭ କରି କରମର୍ଦ୍ଦନ, ଅଙ୍ଗମର୍ଦ୍ଦନ, ଉତ୍ତମାଙ୍ଗ ଓ ଅଧମାଙ୍ଗାଦିରେ ତୈଳମର୍ଦ୍ଦନ, ଆଶ୍ଲେଷ ଚୁମ୍ବନାଦି, ଚପେଟମୁଷ୍ଟ୍ୟାଦି, କାଗଜ କଲମ, ସମାଲୋଚନ, ଡାକଘର ଜରିଆରେ ରେଜିଷ୍ଟରି, ଗଏର୍ ରେଜିଷ୍ଟରି, ମନିଅର୍ଡ଼ର, ଇନ୍ସିଓର୍, ଟେଲିଗ୍ରାମ, ଟେଲିଫୋନ୍, ଗ୍ରାମଫୋନ୍, ଟକୀ, ସିନେମା, ପୁସ୍ତକାଦିର ମୁଦ୍ରଣ, ସମ୍ମାର୍ଜନ, ପ୍ରକାଶ ଓ ପ୍ରଚାର ଦ୍ୱାରା ଘଟିଅଛି ଓ ଘଟିଥିଲା । ଏମାନଙ୍କ ଛଡ଼ା "ଉତ୍ସବେ ବ୍ୟସନେଚୈବ ଦୁର୍ଭିକ୍ଷେ ରାଷ୍ଟ୍ରବିପ୍ଲବେ, ରାଜଦ୍ୱାରେ ଶ୍ମଶାନେଚ ଯସ୍ତିଷ୍ଠତି ସବାନ୍ଧବଃ" ଉକ୍ତ ଅନୁସାରେ ଗୁଡ଼ିଏ ବାନ୍ଧବ ମଧ୍ୟ ଜୁଟିଲେ ।

କିନ୍ତୁ, "ପାପାନ୍ନିବାରୟତି ସଦେବ ହିତେପ୍ରଯୁକ୍ତଃ
ଗୂହ୍ୟାନିଗୂହତିଗୁଣାନ୍ ପ୍ରକଟୀକରୋତି
କାଳେ ଜହାତି ନ ଜହାତି ବିପତ୍ତିକାଳେ
ସନ୍ନିସଲକ୍ଷଣମିଦଂ ପ୍ରବଦନ୍ତି ଧୀରାଃ ।"

ଅର୍ଥାତ୍ ସନ୍ମିତ୍ରର ଲକ୍ଷଣମାନ ପଣ୍ଡିତମାନେ ନିମ୍ନଲିଖିତ ଭାବରେ ପ୍ରକାଶ କରିଅଛନ୍ତି ପ୍ରକୃତ ମିତ୍ର ମିତ୍ରଙ୍କୁ ପାପରୁ ନିବୃତ୍ତ କରାନ୍ତି, ସର୍ବଦା ମିତ୍ରଙ୍କର ହିତ ସାଧନରେ ରତ ହୋଇଥାନ୍ତି, ମିତ୍ରଙ୍କର ଗୋପନୀୟ ବିଷୟମାନ ଗୋପନ ରଖନ୍ତି, ମିତ୍ରଙ୍କ ଅପ୍ରକଟିତ ଗୁଣମାନଙ୍କୁ ପ୍ରକଟିତ କରନ୍ତି, ମିତ୍ରଙ୍କ ସମ୍ପଦ କାଳରେ ପାଖରେ ରହିବାକୁ ଆଗ୍ରହାନ୍ୱିତ ହୁଅନ୍ତି ନାହିଁ, କିନ୍ତୁ ମିତ୍ରଙ୍କୁ ବିପତ୍ତି ପଡ଼ିଲେ ତାଙ୍କ ପାଖେ ପାଖେ ରହନ୍ତି । ଏ କଷଟିରେ ମୋର ଗତ ୫୭ ବର୍ଷରେ ଅର୍ଜିତ ବନ୍ଧୁମାନଙ୍କ ବନ୍ଧୁତାକୁ ପରୀକ୍ଷା କଲା ବେଳକୁ ପୁଞ୍ଜିଏ ଖଣ୍ଡେ ଖାଣ୍ଟି ବନ୍ଧୁ ଧରା ପଡ଼ିଲେ ନାହିଁ । Wealth (ଧନ)ରେ ମୁଗ୍ଧ ହୋଇ ଯେଉଁମାନେ ମୋ ସଙ୍ଗେ ବନ୍ଧୁତା କରିଥିଲେ, Fame (ଯଶ ବା ପ୍ରତିପତ୍ତି) ଯୋଗୁଁ ଯେ ମୋ ଆଡ଼କୁ ଆଉଜି ଥିଲେ, position (ପଦବୀ) ହେତୁ ଯେ ମୋ ସଙ୍ଗେ ବନ୍ଧୁତାର ସୂତ୍ରପାତ କରିଥିଲେ ଓ ମୋ ଦ୍ୱାରା ତାଙ୍କର ଉପସ୍ଥିତ ବା ଭବିଷ୍ୟତ୍ କାର୍ଯ୍ୟ ସାଧିତ ହେବା ପାଇଁ ଯେ ମୋ ସଙ୍ଗେ ବନ୍ଧୁତା ଡୋରି ଲଗାଇଥିଲେ ଓ ଯାହାଙ୍କ ମଧ୍ୟରୁ ଅଧିକାଂଶ ମୋ ମୁଣ୍ଡରେ ନଡ଼ିଆ ଭାଙ୍ଗି ଉଖୁଡ଼ା ଖାଇଥିଲେ, ଫଳରେ ଦେଖିଲି ଯେ ସାପ ଦେହରୁ କାତି ଛାଡ଼ିଗଲା ପରି ମୋଠାରୁ ଧନ, ପ୍ରତିପତ୍ତି, ପଦବୀ କାର୍ଯ୍ୟସାଧନ ଶକ୍ତି ଖସିପଡ଼ିବା ସାଙ୍ଗେ ସାଙ୍ଗେ ସେ ବନ୍ଧୁଗୁଡ଼ିକ ଖାଡ଼େଦମ କେଉଁଆଡ଼େ ଉଭେଇ ଗଲେ । ସେତିକିରେ ଯେବେ ପାଠ ସରିଥାନ୍ତା ତେବେ ଅବଶ୍ୟ ରକ୍ଷା ହୋଇଥାନ୍ତା ଓ କବି ଲେଖି ନ ଥାନ୍ତେ, But leaves the wretch to weep (ହତଭାଗାର କାନ୍ଦୁ କାନ୍ଦୁ ଦିନ ସରେ ନାହିଁ) । ସଂସାରରେ ଦେଖାଯାଏ ଯେ, ଅଧିକାଂଶ (ଅଧିକାଂଶ କାହିଁକି, ପନ୍ଦର ପଣ ଉଣେଇଶ ଗଣ୍ଡା ତିନି କଡ଼ା ଦୁଇ କ୍ରାନ୍ତି) ବନ୍ଧୁତା 'ହୈତୁକ' ବା କାମର ପିଆରା ବନ୍ଧୁତା । ସେ ବନ୍ଧୁତାରୁ ପନ୍ଦର ପଣ ଉଣେଇଶ ଗୁଣ୍ଡା ମହାପ୍ରସାଦ ବା ଖୋଦାଂକ ନାମ ଉପରେ ଗଢ଼ା ହୋଇଥାଏ । ସେହି ମହାପ୍ରସାଦ ବା ଖୋଦାଙ୍କ ନାମର ନିଶାରେ ମୁଁ ସେଥିମଧ୍ୟରୁ ପନ୍ଦର ପଣ ବନ୍ଧୁଂକ ହାତକୁ ମୋ ବାଡ଼ି ଦୁଆରର ଗଳି କବାଟର କଞ୍ଚି ବଢ଼ାଇ ଦେଇଥିଲି; ବଢ଼ାଇ ଦେଇଥିଲି ନ କହି, ମୁଁ ସେ ନିଶାରେ ଚୂରଥିବା ବେଳେ ସେମାନେ ମୋ ଅଣ୍ଟାରୁ ବା ପକେଟରୁ ତାହା କାଢ଼ି ନେଇଥିଲେ । କାମ ସରିଲା, ବନ୍ଧୁତା ବନ୍ଧନ ହୁଗୁଳା ହୋଇଗଲା, କିନ୍ତୁ କଞ୍ଚିଟି 'ବନ୍ଧୁ'ଙ୍କ ଅକ୍ତିଆରରେ ରହିଲା । ପୁଣି କେତେ ବନ୍ଧୁ ମୋଠାରୁ ଈପ୍ସିତ ଉପକାର ବା କାମ ହାସଲ କରିସାରି ଦେଖିଲେ ଯେ ମୋ ବିପକ୍ଷଙ୍କୁ ଅନୁସରଣ କଲେ ତାଙ୍କର ଆହୁରି ଭବିଷ୍ୟତ୍ ଉପକାର ହେବ । ଅତଏବ ମୋ ବିପକ୍ଷଙ୍କୁ ଆଶ୍ରା କରି ମୋ ନାମରେ ଦୁର୍ନାମ ରଚନା, ଏ ମସ୍ତକ ମୋ ବିରୋଧରେ ଧର୍ମାଧିକରଣରେ, ସମାଜର ଇଜଲାସ୍‌ରେ ସାକ୍ଷ ଦେବାକୁ କୁଣ୍ଠିତ ହେଲେ ନାହିଁ । ଦିନେ ମହାତ୍ମା ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କୁ ଆସି ଜଣେ କହିଲେ - ''ଅମୁକ ଆପଣଙ୍କ ନାମରେ ଭାରି ଦୁର୍ନାମ ରଟନା କରୁଛନ୍ତି ।' ମହାପୁରୁଷ ଏହା ଶୁଣି ଟିକିଏ ଗୁମ୍ ଖାଇ ବସିଗଲେ । ରିପୋର୍ଟକାରୀ

ଏହି ତୂଷ୍ଣୀଭାବର କାରଣ ପଚାରିବାରୁ ଈଶ୍ୱରଚନ୍ଦ୍ର କହିଲେ : 'ନିନ୍ଦାକାରୀଙ୍କର ମୁଁ କେବେ କୌଣସି ଉପକାର କରିଛି କି ନାହିଁ ଏହି କଥାର ହେଜ କରୁଥିଲି । ମୁଁ ତାଙ୍କର କେବେ କିଛି ଉପକାର କରିଛି ବୋଲି ମୋର ସ୍ମରଣ ହେଉ ନାହିଁ; ଏପରି ଅବସ୍ଥାରେ ସେ କାହିଁକି ମୋର ଦୁର୍ନାମ କରିବାରେ ମାତିଛନ୍ତି, ମୁଁ ବୁଝିପାରୁ ନାହିଁ । ଫଳରେ ମଧ ଦେଖାଯାଏ ଯେ ବହୁ ସ୍ଥଳରେ ତୁମେ ଯାହାଙ୍କ ଉପକାର କରିଥାଅ, ଯେ ତୁମ ଅନ୍ନରେ ପ୍ରତିପାଳିତ, ଯେ ତୁମ ସ୍ୱାର୍ଥତ୍ୟାଗ ଓ ପରିଶ୍ରମ ଫଳରେ 'ମଣିଷ' ହୋଇଛନ୍ତି, ଯେ ତୁମ ରକ୍ତରେ ଗଢ଼ା, ସେହି ପୁଣି ତୁମର କଟ୍ଟର୍ ଦୁସ୍‌ମନ୍ ହୋଇ ଠିଆ ହୁଅନ୍ତି । ଏଥିରେ ମନୋବିଜ୍ଞାନାନୁମୋଦିତ ସତ୍ୟ ନିହିତ ଅଛି । ଯାହାଙ୍କର ମୁଁ ଉପକାର କରେଁ ସେ ଜାଣନ୍ତି ଯେ ଏହି ଉପକାରର ବଦଳରେ ପ୍ରତ୍ୟୁପକାର ବା ଅନ୍ତତଃ କୃତଜ୍ଞତା ତାଙ୍କ ଠାରୁ ମୋର ଧର୍ମତଃ ପ୍ରାପ୍ୟ ଅଟେ ଓ ସେହି ପାଉଣା ପରିଶୋଧ କରିବାକୁ ସେ ବାଧ ଅଟନ୍ତି । ଏହି ବାଧବାଧକତା ହିଁ ସଂସାରର ବହୁ ଅନର୍ଥର ମଞ୍ଜି । ଆପଣ ସ୍ୱଇଚ୍ଛାରେ ଦଶ ଟଙ୍କା କାହାକୁ ଦାନ ବା ସାହାଯ୍ୟ କରିବେ, ସେ କଥା ଆପଣଙ୍କୁ କଷ୍ଟପ୍ରଦ ହେବ ନାହିଁ, କିନ୍ତୁ ଜଣେ ଆସି କହୁ ଯେ ଆପଣ ମୋତେ ଟଙ୍କାଏ ଦେବାକୁ ବାଧ ଅଟନ୍ତି, ତେବେ ଦେଖିବେ ତତ୍‌କ୍ଷଣାତ୍ ଆପଣଙ୍କ ମନ ଏ ଟଙ୍କାଟିଏ ଦେବା ପାଇଁ ବିଦ୍ରୋହ କରିଉଠିବ । ଆପଣଙ୍କଠାରୁ ଚାନ୍ଦା ବା ଭିକ୍ଷା ରୂପେ ଦଶ ଟଙ୍କା ଆଦାୟ ହେଉ, ତାହା ଆପଣଙ୍କୁ ବାଧିବ ନାହିଁ । କିନ୍ତୁ ବାଧବାଧକତା ରୂପେ ଟଙ୍କାଟିଏ ଆପଣଙ୍କ ଉପରେ 'ଟାକ' ବସାଣ, ଦେଖିବେ ଯେ ଆପଣଙ୍କ ମନ ତତ୍ ପ୍ରତି ବିଦ୍ରୋହୀ ହୋଇ ଉଠିବ । ଅତଏବ ଆପଣଙ୍କୁ ବିପଦ ପଡ଼ିବା ସମୟରେ ଆପଣ ଦେଖିବେ ଯେ, ଆପଣ କେବେ ଯାହାଙ୍କର କିଛି ଉପକାର କରି ନାହାନ୍ତି, କିମ୍ବା ଯେ ଆପଣଙ୍କୁ ସାହାଯ୍ୟ କରିବେ ବୋଲି ଆପଣ ସ୍ୱପ୍ନରେ ସୁଦ୍ଧା ଭାବି ନାହାନ୍ତି, ସେ ସ୍ୱତଃ ପ୍ରଣୋଦିତ ହୋଇ ଆପଣଙ୍କୁ ବିପଦରୁ ଉଦ୍ଧାର କରିବାକୁ ଆସି ପହଞ୍ଚି ଯିବେ । କିନ୍ତୁ ଆପଣଙ୍କ ଉପକାର ପ୍ରତିଦାନରେ ଯେ ଆପଣଙ୍କୁ ସାହାଯ୍ୟ କରିବାକୁ ଅନ୍ତତଃ ଧର୍ମତଃ ବାଧ ସେ ଦିହ ଛପା ଦେବେ, ବରଂଚ ଆପଣଙ୍କୁ ଅକଳରେ ପଡ଼ିଥିବା ଦେଖି ସେ ଆପଣଙ୍କ ଠେଂଗୁରେ ସେତିକି ବେଳେ ଥଣ୍ଟରେ ଠକ୍ ଠକ୍ କରି ହାଣି ଦେବେ । ମୁଁ ୫୭ ବର୍ଷ ଅନୁଭବରେ ଏହାହିଁ ଅଧିକାଂଶ ସମୟରେ ଅଙ୍ଗେ ନିଭାଇଛି । ସେଥିପାଇଁ ମହାଜନମାନେ କହିଛନ୍ତି, ଫଳରେ କାମନା ନ ରଖି, ପ୍ରତ୍ୟୁପକାରର ଆଶା ନ କରି, ପରିଶୋଧ ପାଇବାର ଇଲାମ ନ କରି ପବିତ୍ର କର୍ତ୍ତବ୍ୟ ଜ୍ଞାନରେ ପରର ଉପକାର କରିଯାଅ । ଯେଉଁଠାରେ ଫଳର ଆଶାରଖି ଉପକାର ବା ବନ୍ଧୁତା କରିବ ସେଠାରେ ନିଶ୍ଚୟ ଚିଆଁ ପାଇବ । ତେବେ ସଂସାରରେ ନିଃସ୍ୱାର୍ଥ ବନ୍ଧୁତା ନାହିଁ ବୋଲି ମୁଁ କହୁ ନାହିଁ । କିନ୍ତୁ ଏ ନିଃସ୍ୱାର୍ଥ ଓ ଅହୈତୁକୀ ବନ୍ଧୁତା ଫଳ, କାମନା ବିରହିତ ଉପକାର ସଂସାରରେ ବିରଳ । ଇଂରାଜୀରେ ପ୍ରବଚନ ଅଛି 'Friend in need, is an friend

indeed'. ଆବଶ୍ୟକତା ବା ବିପଦ ବେଳେ ବନ୍ଧୁ, ପ୍ରକୃତ ବନ୍ଧୁ । ନଚେତ୍ ଦୃଢ଼ ରକ୍ତ ସଂପର୍କ, ଦୃଢ଼ କର୍ମ ସଂପର୍କ ଆଦି ଜନିତ ବନ୍ଧୁତାକୁ ବନ୍ଧୁତା ବୋଲାଯାଇ ନ ପରେ । ଅଫଳପ୍ରଦ ବନ୍ଧୁ ପ୍ରକୃତ ବନ୍ଧୁ । ଏଥିପାଇଁ ଭଗବାନ୍‌ଙ୍କୁ ଦୀନବନ୍ଧୁ ନାମ ଦିଆଯାଇଛି । ଏକା ସେହି ବନ୍ଧୁ ପଦବାଚ୍ୟ । ଅନ୍ୟ ସବୁ ବନ୍ଧୁତା ଦେଖା ସୁନ୍ଦର-କଖାରୁବଡ଼ି । ଅନ୍ୟ ସବୁ ବନ୍ଧୁତା କାମର ପିଆରା, ନାମର ପିଆରା, ଦାମର ପିଆରା, ଧାମର ପିଆରା । ଏ ସନ୍ଦର୍ଭର ଶିରୋନାମାରେ ଉଦ୍ଧୃତ ପଙ୍‌କ୍ତିରେ ଯେବେ କବି ବନ୍ଧୁତାକୁ କେବଳ ଧନର, ଯଶର ଅନୁସାରିଣୀ ଛାୟାନଗରରେ, ତା ସଙ୍ଗେ ସଙ୍ଗେ ଯେବେ ପଦବୀ (Position) ଆବଶ୍ୟକତା (necessity) ପ୍ରଭୁତ୍ୱ (mastership) ଯୋଡ଼ିଥାନ୍ତେ, ତେବେ କବିତାଟି ବାସ୍ତବତା ସଙ୍ଗେ ଆହୁରି ବେଶି ଖାପ ଖାଇଥାନ୍ତା । ଯେଉଁ ପଦବୀରେ ତୁମେ ବହୁ ଲୋକଙ୍କ ଉପକାର କରିପାରିବ, ବହୁ ଲୋକଙ୍କୁ ସନ୍ତାଇପାରିବ, ବହୁ ଲୋକଙ୍କ ଉପରେ ଅଧିକାର ଜମାଇପାରିବ, ବହୁ ଲୋକଙ୍କ ଗୋଛି ଓ ଗଳା କାଟିପାରିବ, ସେପରି ଗୋଟିଏ ପଦବୀରେ ତୁମେ ପାଦ ଦେବା ମାତ୍ରକେ ଦେଖିବ ଯେ, ବନ୍ଧୁଜନ ପଙ୍ଗପାଳ ପରି ମାଡ଼ି ଆସିବେ । କିଏ ତମ ପାଦରେ ତାଙ୍କ ଧନ-ଜନ-ଗୋପ-ଲକ୍ଷ୍ମୀ ଢାଳି ଦେବାକୁ ବସିବେ, କିଏ ତାଙ୍କ ଇଜ୍ଜତ, ହୁରୁମତ ତୁମ ଆଗରେ ଅଜାଡ଼ି ଦେବେ, ଇହଲୋକର କଥା ଗାଧୋଇ ଯାଉ, କେହି କେହି ତାଙ୍କ ପାରଲୌକିକ ଆଶାକୁ ତୁମପାଇଁ ଜଳାଞ୍ଜଳି ଦେବାକୁ ତିଆରି ଅଛନ୍ତି ବୋଲି କହିବେ ଓ ତୁମର ଲୋଡ଼ା ହେଲେ ବାଘ ଦୁଧ, ପିମ୍ପୁଡ଼ି ରକତ, କପୋତ ପିତ୍ତ, ଆକାଶ କୟାଁ, ନିର୍ମୂଳୀ ମୂଳ, ସାପ ଗୋଡ଼, ବେଙ୍ଗ ଜିଭ ଆଣିବାକୁ ବାହାରି ପଡ଼ିବେ । କିନ୍ତୁ ଈଶ୍ୱରଙ୍କ ଦୟାରୁ ହେଉ ବା ବେଅନୁଗ୍ରହରୁ ହେଉ ତୁମେ ସେ ପଦରୁ ଯେଉଁଦିନ ଖସିବ, ତହିଁ ଆରଦିନ କୁଆ କା କା ନ କହୁଣୁ ତୁମର ପଦାଧିଷ୍ଠାନଜନିତ ବନ୍ଧୁଯାକ ସମସ୍ତେ ଭଚ୍ଛା ପଡ଼ିଯିବେ ଓ କେତେକ ପୁଣି ତୁମ ବିରୋଧରେ ହତିଆର ଧରି ଠିଆ ହୋଇଯିବେ ଓ ତୁମ ବିପକ୍ଷରେ ବା ଶତ୍ରୁଙ୍କର ଲୋଡ଼ା ହେଲେ ତୁମଠାରେ ଚୋଟ ଲଗାଇବାକୁ, ତୁମ ଶ୍ରୀଅଙ୍ଗରେ ଘାଉଡ଼ ଲଗାଇବାକୁ କୁଣ୍ଠିତ ହେବେ ନାହିଁ । ଯାହାଙ୍କ ସଙ୍ଗେ କିପରି ଜଡ଼ାତେଲ ମେଣ୍ଢାବାଳ ସମ୍ପର୍କ ଥିଲା, ଆଜି ତାଙ୍କ ସଙ୍ଗେ ଝୋଟ-ନିଆଁ ସମ୍ପର୍କ ଉପୁଜିବ ଓ ତୁମ ବାଡ଼ି ଦୁଆରର କିମ୍ବା ତୁମ ପ୍ରତିଦ୍ୱନ୍ଦ୍ୱୀ ବା ସମସ୍ତଙ୍କ ହାତରେ ପଡ଼ିବାକ୍ଷଣି ତାପରେ ଲାଗିବ ବନ୍ଧୁ ବନ୍ଧୁଙ୍କ ମଧ୍ୟରେ ଠରାଠରି, ଡରାଡରି, ଧରାଧରି, ପରାପରି, ମରାମରି, ସରାସରି ଓ ଶେଷକୁ ହରାହରି, ଆଜି ଯେଁ ବନ୍ଧୁତା ସ୍ଥାନେ କାଲି ସେ ଅରାତି ପାଲଟିଯିବେ । ବାଘର ଘରେ ମିରିଗର ନାଟ ଲାଗିଯିବ ଓ ତୁମେ ଆମେ କଲବଲ କରି ଚାହିଁ ଜଳକା ବନି ଚାହିଁଥିବା । ଆଜି ଏତିକି ।

ଭଞ୍ଜପ୍ରଦୀପ - ୧୧ଶ ବର୍ଷ / ୧ମ ସଂଖ୍ୟା / ୧୩୪୯ ସାଲ ।

## ।। ଦୁଇ ।।

"There is pleasure in madness which none but madmen know".

– Shakespeare

ଗଲାଥର ଏ ଦୁନିଆରେ ବନ୍ଧୁତା କଥା କହୁଥିଲି । ଆଜି ଦୁନିଆର ଆଉ ଏକ ରୀତି କଥା କହିବି । ଆମେରିକାର ଜଣେ ଚିନ୍ତାଶୀଳ ଲେଖକ କହିଛନ୍ତି ଯେ ଦୁନିଆରେ ଯେତେ ଅଘଟଣ ଘଟନା ଘଟେ ଓ ଯେତେ ଅଛିଣ୍ଡା ପାଠ ନେଇ ଆମକୁ ଘାଣ୍ଟିହେବାକୁ ହୁଏ, ସେସବୁ ଦେଖି ଲୋକେ କାହିଁକି ଯେ ପାଗଳ ହୋଇ ନ ଯାଆନ୍ତି, ଏହାହିଁ ଆଶ୍ଚର୍ଯ୍ୟ ବିଷୟ । ସଂସାରରେ ପ୍ରତିଦିନ ଏପରି ସବୁ ଅସଜିଆ କଥାକୁ ଯେବେ ଦୃଢ଼ ରୂପେ ଭାବନ୍ତେଇଁ ତେବେ ଦେଖି ପାରନ୍ତେଇଁ ଯେ, ଏ ଦୁନିଆରେ ଧର୍ମ, ସତ୍ୟ, କୃତଜ୍ଞତା, ସହୃଦୟତା, ନିଷ୍ଠା, ନିଃସ୍ୱାର୍ଥ କର୍ମ ଆଦି ଚିଜର ଏକାନ୍ତ ଅଭାବ । ଦେଖୁଥାଇଁ ଯେ ଅଧର୍ମ ବିର ବହୁତ ବଢ଼ୁଛି, ପରର ଅପକାରୀ ବ୍ୟକ୍ତିର ଉନ୍ନତି ହେଉଛି, ଅଯୋଗ୍ୟ ବ୍ୟକ୍ତି ଯୋଗ୍ୟ ବ୍ୟକ୍ତି ଅପେକ୍ଷା ଉଚ୍ଚରେ ଆସନ ପାଉଛି, ଧର୍ମଧ୍ୱଜୀ ବ୍ୟକ୍ତି ପାଦପୂଜା ପାଉଛି, ଯେଉଁ ବ୍ୟକ୍ତି ଅତି 'ଭଲଲୋକ' ତାହାରି ଉପରେ ଖଳ ଦୁର୍ଜନଙ୍କର ଓ ସଂସାରର କୋଡ଼ମାଡ଼ ବେଶି ପଡ଼ୁଛି, ଦୋଷୀଲୋକ ବେକ୍‌ସୁର୍ ଖଲାସ ପାଉଛି, ନିର୍ଦ୍ଦୋଷ ଲୋକ ଦଣ୍ଡ ପାଉଛି; ଆମେ ପିଲାଦିନରୁ ବାପମାଆଙ୍କଠାରୁ, ଗୁରୁଙ୍କଠାରୁ, ବହି ପାଠରୁ, ଶାସ୍ତ୍ରରୁ ଯାହା ଯାହା ଇଲମ୍ ହାସଲ କରି ଥାଇଁ, ସଂସାରରେ ପଶି ଦେଖିଲା ବେଳକୁ ଅନେକ ସ୍ଥଳରେ ସେସବୁ ସରଜମିନ୍‌ରେ ମେଳ ଖାଉ ନାହିଁ । ଏ ସବୁ ଦେଖି ମନୁଷ୍ୟର ପାଗଳ ହୋଇଯିବା ସ୍ୱାଭାବିକ ନୁହେଁ କି ?

ପିଲାଦିନେ ଜଣେ ବାରବୁଲା ବାୟାଲୋକ ଆମ ଗାଆଁରେ ଆସି ଦିନାକେତେ ରହିଥିଲା । ତାକୁ ଯେ ଯାହା ଦେଉଥିଲା ସେ ତାହା ଖାଉଥାଏ; ସେ ଅଧିକାଂଶ ସମୟ ଆନନ୍ଦରେ କାଳ କାଟୁଥାଏ; କେହି ତାକୁ ଗାଳିଦେଲେ ବା ନିନ୍ଦା କଲେ ସେ ଦୁଃଖ ପ୍ରକାଶ କରୁ ନ ଥାଏ । ସେ କହୁଥାଏ, "ସଂସାର କହୁଛି ମୁଁ ବାୟା, ମୁଁ କହୁଛି ସଂସାର ବାୟା ।" କଥାଟା ଏକା ମୋ ମନକୁ ଖୁବ୍ ପାଇଲା । ସଂସାରରେ ପନ୍ଦର ପଣ ଉଣେଇଶ ଗଣ୍ଡା ଲୋକେ ଯେଉଁ ଯେଉଁ ଲକ୍ଷ୍ୟ ପ୍ରତି ଜୀବନ ମୂର୍ଚ୍ଛା ହୋଇ ଦଉଡ଼ିଥାଆନ୍ତି, ସେସବୁର ବିଷୟ ଦୃଢ଼ ଭାବରେ ଚିନ୍ତାକଲେ ଦେଖାଯିବ ଯେ, ବୋଧହୁଏ ସେମାନେ ପାଗଳ, ନଇଲେ ଆମେ ଦେଖଣାହାରି ପାଗଳ ।

ବାତୁଳ, ପାଗଳ ବା ବାୟା କାହାକୁ ବୋଲାଯାଏ ? ତୁମେ ଆମେ ସଂସାରର ବିଷୟମାନଙ୍କୁ ଯେଉଁ ଦୃଷ୍ଟିକୋଣରୁ ଦେଖୁଁ, ଯେଉଁ ବ୍ୟକ୍ତି ସେ ଦୃଷ୍ଟିକୋଣରୁ ସେ ବିଷୟମାନଙ୍କୁ ନ ଦେଖେ, ତାକୁ ଆମେ 'ବାୟା' ଉପାଧି ଦେଉଁ, ସେ ମଧ୍ୟ ଆମକୁ ବାୟା

ବୋଲି ସ୍ଥିର କରେ । ଲୋକ ବାୟା ହୁଏ କାହିଁକି ? ସଂସାରରେ ଯେତେବେଳେ ଏପରି ଏକ ବା ବହୁ ଘଟନା ଘଟିଯାଏ, ଯାହାର ମନବୋଧିଆ କାରଣ ବା ସନ୍ତୋଷଜନକ କୈଫିୟତ୍ ଲୋକ ସ୍ଥିର କରି ନ ପାରେ ଓ ତାକୁ ସେ ଘଟନା ଭାରି ଅଡୁଆ ଲାଗେ, ସେତେବେଳେ ସେ ଘାବରେଇ ଯାଏ, ତାର ବହୁକାଳ ପୋଷିତ ଧାରଣାଗୁଡ଼ିକ ଉଭେଇ ଯାଏ, ତାର ପିଲାଦିନରୁ ଶିଖିଥିବା ହରିଗୁଣଫେଡ଼ାମିଶା ହିସାବ ସବୁ ଗୋଳିଆ ପୋଳିଆ ହୋଇଯାଏ, ସେତେବେଳେ ସେ ବାୟା ହୋଇଯାଏ । ଅନେକ 'ବାୟା' ଲୋକଙ୍କ ଚାଲିଚଳଣ, ଭାବଧାରା, ଚିନ୍ତାଶକ୍ତି, କାର୍ଯ୍ୟକଳାପ ଓ ଯୁକ୍ତିପନ୍ଥା, ମୁଁ ନିରୀକ୍ଷଣ କରି ଦେଖିଛି ଯେ, ବାୟାଙ୍କର ଚିନ୍ତାଶକ୍ତିକୁ ଆମେ ଗୋଡ଼ାଇ ପାରୁ ନାହିଁ ବୋଲି, ତାଙ୍କ ଯୁକ୍ତି ପାହାଞ୍ଚରେ ଆମେ ଉଠିପାରୁ ନାହିଁ ବୋଲି, ଆମକୁ ସେସବୁ ଅଡୁଆ ଲାଗେ ଓ ଆମେ ତାଙ୍କୁ 'ବାୟା' ଉପାଧି ଦେଇ ସେସବୁ ଅଡୁଆରୁ ନିଜକୁ ରକ୍ଷା କରୁଁ । ଯେଉଁ ବ୍ୟକ୍ତି ଦିନକୁ ରାତି ବୋଲି କହେ, ରାତିକୁ ଦିନ ବୋଲି କହେ ତାକୁ ଆମେ କହୁଁ ବାୟା । କିନ୍ତୁ ଥରେ ଦୃଢ଼ ଭାବରେ ଚିନ୍ତାକଲେ ଦେଖିପାରିବା ଯେ ଅନେକ ସମୟରେ ଶେଷରେ ଆମେ ବାୟା ବୋଲି ପ୍ରମାଣିତ ହେଉଁ ଓ 'ବାୟା' ଯାହା କହିଥାଏ ତାହା ଠିକ୍‌ଥିବା ପ୍ରମାଣିତ ହୁଏ । ଏଣେ ମଧ ଦେଖାଯାଏ ଯେ ଏ ଦୁନିଆରେ ଦୁଇ ମୁଣ୍ଡ ସମାନ । ସଭ୍ୟତାର ଉଚ୍ଚତମ ସୋପାନରେ ଆରୋହଣ କରି ଆଜି ଜଗତରେ ଯେଉଁ ସବୁ ତାଣ୍ଡବ ଲୀଳାର ଅଭିନୟ ହେଉଛି, ସେଥିରୁ ବୁଝାଯାଉଅଛି ଯେ, ଯାହାକୁ ଆମେ ମାର୍ଜିତ ସଭ୍ୟତା ଆଖ୍ୟା ଦେଇଥିଲୁଁ, ତାହାର ପରିଣତି ହେଲା ବର୍ବରତା । ଯାହାକୁ ବିଚାରୁଥାଉଁ ଘୋର କଳିଯୁଗର ଶେଷ, ତାହାହିଁ ସତ୍ୟଯୁଗର ଆରମ୍ଭ । ଏହିପରି ଦୁନିଆର ରୀତି ଚାଲିଥିଲା, ଚାଲିଛି ଓ ଚାଲିଥିବ । ଆଜି ଏତିକି । (ଚାଲିବ)

ଭଞ୍ଜପ୍ରଦୀପ - ୧୧ଶ ବର୍ଷ / ୨ୟ ସଂଖ୍ୟା / ୧୩୪୯ ସାଲ ।

## ।। ତିନି ।।

''ବତେଇ ଦିଏ ପରକୁ, ବୁଦ୍ଧି ନ ଆସେ ଘରକୁ''

ମୁଁ ପୂର୍ବରୁ ଅନେକ ସ୍ଥଳରେ ଅନେକ ପ୍ରସଙ୍ଗରେ କହିଛି ଯେ, ବହୁକାଳ ହେଲା ସଂସାରରେ ଦୁଃଖସୁଖ ଅନୁଭବ କରୁଥିବା ବ୍ୟକ୍ତିମାନଙ୍କ ଅନୁଭୂତିର ଅର୍କଚୁଆ ହୋଇ ଦେଶର ପ୍ରବଚନମାନ ବାହାରିଛି । ଯେଉଁପରି ତଟକା ଫୁଲ ନ ଶୁଂଘି କରି ଫୁଲରୁ ଚୁଆ ହୋଇ ବାହାରିଥିବା ଅର୍କ ଶୁଂଘି ଲୋକେ ଫୁଲର ଗନ୍ଧ ଅନୁଭବ କରିପାରନ୍ତି, ସେହିପରି ନିଜେ ଅନୁଭବ ଦ୍ୱାରା ଶିକ୍ଷା ନ ପାଇ ସୁଦ୍ଧା ଅନୁଭବରୁ କଢ଼ା ଅର୍କ 'ପ୍ରବଚନ'ରୁ ଆମକୁ ବାସ୍ତବ ଅନୁଭବ ସିଦ୍ଧ ଜ୍ଞାନର ସୁବିଧା ମିଳିଯାଏ । ଆପଣମାନେ ଦେଖନ୍ତୁ ଯେ ଗୋଟିଏ ଗୋଟିଏ ପ୍ରବଚନର ମୂଲ୍ୟ ନିରୂପଣ କରି ହେବ ନାହିଁ ।

ଆମ ମଧ୍ୟରୁ ଅନେକେ କାହାଣୀରେ ଗୋଟିଏ ବାଦଶାହଙ୍କ ଗପ ଶୁଣିଛନ୍ତି । ବାଦଶାହଙ୍କୁ ଜଣେ ଆସି କହିଲା, ଲକ୍ଷେ ଅସରଫି ମୂଲ୍ୟର ଗୋଟିଏ ଚିଜ ଆପଣଙ୍କୁ ଦେବି । ବାଦଶାହ କୌତୂହଳ ପରବଶ ହୋଇ ସେ ଲୋକଠାରୁ 'ତଲବି ଗୁଜର୍ ଜାଏଗା' ପ୍ରବଚନ ପଦକ ନେଲା ଓ ତାକୁ ନଗଦ ଲକ୍ଷେ ଅସରଫି ଦେଲେ । ପ୍ରଥମେ ବାଦଶାହ ଏ ପ୍ରବଚନର ମୂଲ୍ୟ ଉପଲବ୍ଧି କରିପାରିଲେ ନାହିଁ । କିନ୍ତୁ ଘଟନାଚକ୍ରରେ ତାଙ୍କ ଅନୁଭବରୁ ଏ ପ୍ରବଚନର ସାରବତ୍ତା ହୃଦୟଙ୍ଗମ କରି ପ୍ରବଚନଦାତାକୁ ଆଉ ଅଧିକା ପାରିତୋଷିକ ଦେଇଥିଲେ । ଏହି ପ୍ରବଚନକୁ ହେଜି ବାଦଶାହ 'ସମ୍ପଦ' ବେଳେ ଚାତର କଲେ ନାହିଁ ଓ 'ବିପତ୍ତି' ବେଳେ କାତର ହେଲେ ନାହିଁ । ଏଥିର ଫଳରେ ତାଙ୍କ ପରବର୍ତ୍ତୀ ଜୀବିତକାଳ ଶାନ୍ତିମୟ ହେଲା । ଏ ଉଦାହରଣ ଦେବାର ଉଦ୍ଦେଶ୍ୟ ଏହିକି, ଦୁନିଆର ବହୁ ଲୋକ ଏକ ବିଷୟର ଅନୁଭବ କରି ଯେଉଁ ଜ୍ଞାନ ଲାଭ କରିଥାଆନ୍ତି, ସେ ଜ୍ଞାନକୁ 'ପ୍ରବଚନ' ରୂପ ବୋତଲରେ ସାଇତି କରି ବଂଶଧରମାନଙ୍କ ପାଇଁ ରଖି ଦେଇ ଯାଆନ୍ତି ଓ ବଂଶଧରମାନେ ବୁଦ୍ଧିଆ ହୋଇଥିଲେ ଅନୁଭବ ଦ୍ୱାରା ଚକଟା ମଞ୍ଚା ହେବା ଆଗରୁ ସେ 'ପ୍ରବଚନ' ଦ୍ୱାରା ନିଜର କର୍ମ ପନ୍ଥାକୁ ନିୟନ୍ତ୍ରିତ କରନ୍ତି । ଆହୁରି ମଧ୍ୟ ଏ ପ୍ରସଙ୍ଗରେ ଆହୁରି ଗୋଟିଏ କଥା ଆମ ଆଖିରେ ପଡ଼େ । ଯୁଧିଷ୍ଠିର ଧର୍ମବକର ପ୍ରଶ୍ନର ଉତ୍ତରରେ କହିଥିଲେ ''ଅହନ୍ୟହନି ଭୂତାନି ଗଚ୍ଛନ୍ତି ଯମ ମନ୍ଦିରଂ ଶେଷାଶ୍ଚ'ରାୟୁରିଚ୍ଛନ୍ତି, କିମାଶ୍ଚର୍ଯ୍ୟ ମତଃପରଂ ।'' ଅର୍ଥାତ୍ ସମସ୍ତେ ଦେଖୁଥାଇଁ ଯେ ଆମ ଆଖି ଆଗରେ ଶତ ଶତ ଜୀବ ମରୁଛନ୍ତି, କିନ୍ତୁ ଏହା ଦେଖି ସୁଦ୍ଧା ଆମ ଭିତରୁ ଯେ ବାକି ରହି ଯାଉଥାଇଁ, ଆମେ ବିଚାରୁ ଥାଇଁ ଯେ, ଆମେ ମରିବା ନାହିଁ, ଆମେ ଅମର ହୋଇ ରହିବା । ପ୍ରବଚନ ବା ଉପଦେଶ ଦ୍ୱାରା କିଏ ଆମ ଆଖି ଫିଟାଇଦେଲେ ଆମ ଆଖି ଫିଟିବା କଥା ଦୂରେ ଥାଉ, ଅନୁଭବ ଦ୍ୱାରା ଠେକି କରି ସୁଦ୍ଧା ଆମ ଆଖି ଫିଟେ ନାହିଁ । 'କିମାଶ୍ଚଯଦମ ମତଃପରଂ?' ଏହାଠାରୁ ବଳି ଆଶ୍ଚର୍ଯ୍ୟ କଅଣ ଅଛି ? 'ନିଆଁରେ ହାତ ଦେଲେ ହାତ ପୋଡ଼ିଯିବ; ଏ ଉପଦେଶ ବା ପ୍ରବଚନ ଦ୍ୱାରା ଆମର ଉପକୃତ ହେବା ଗାଧୋଇଯାଉ, ଥରେ, ଦୁଇଥର, ତିନିଥର, ଦଶଥର, ପଚାଶଥର ନିଆଁରେ ହାତ ଦେଇ ଆମ ହାତ ପୋଡ଼ିଯାଇଥିଲେ ମଧ୍ୟ ପୁଣି ନିଆଁ ଦେଖି ଉପଦେଶ ଓ ପ୍ରବଚନ ଓ ଅନୁଭବକୁ ଭୁଲି ଯାଇ ଆମେ ନିଆଁରେ ହାତ ପୂରାଉଁ ଓ ଏଥି ଫଳରେ ଆମ ହାତ ପୋଡ଼ିଯାଏ । ଏପରି ଘଟନା ସମସ୍ତେ ଅଳ୍ପ ବହୁତ ଅଙ୍ଗେ ନିଭାଇ ଥାଇଁ । ଆଜି ଏହିପରି ଗୋଟିଏ ପ୍ରବଚନ ବା ଅନୁଭୂତି କଥା ଆପଣଙ୍କୁ କହିବି ।

'ବତେଇ ଦିଏ ପରକୁ, ବୁଦ୍ଧି ନ ଆସେ ଘରକୁ ।'

ଏ ଗୋଟିଏ ପ୍ରବଚନ ଆବହମାନ କାଳରୁ ଏ ସଂସାରରେ ଚଳି ଆସିଛି ଓ ପ୍ରବଚନରେ ସୂଚିତ ଅନୁଭବ ମଧ୍ୟ ଆବହମାନ କାଳରୁ ଚଳି ଆସୁଛି । କିନ୍ତୁ ଏଥିରୁ ଆମେ ସାଧାରଣ ମନୁଷ୍ୟ କିଛି ଶିଖିଥାଇଁ କି ? ପରକୁ ବୁଦ୍ଧି ବତାଇବା ବେଳେ ଆମ

ମଗଜରେ ଜ୍ଞାନଗୁଡ଼ାକ ତୁଚ୍ଛା ଗଜ ଗଜ ହେଉଥାଏ, କିନ୍ତୁ ଯେତେବେଳେ ଆମ ବେକରେ ଯୁଆଳି ଥୁଆ ହୁଏ, ଯେତେବେଳେ ଆମ ଉପରେ ଆସି ବିପଦ ଗିରେ ସେତେବେଳେ ଆମ ମଗଜ 'ଗଜଭୁକ୍ତ କପିତ୍ଥ' ବା 'ଭୂତପିଆ ନଡ଼ିଆ' ପାଲଟିଯାଏ ।

ଦୁଃଖ କହିବି ? କି ସୁଖ କହିବି ? ଯାହା ଅଙ୍ଗେ ନିଭେଇଛି ତା କହିବି । ମୁଁ ମୋ ନିଜ ଅନୁଭବ କଥା କହେଁ । ପାଠକ-ପାଠିକାଗଣ ଶୁଣିବାକୁ ସାବଧାନ ମଣିମା !

''ଈଶ୍ୱର ସର୍ବ ଘଟରେ, ସର୍ବତ୍ର, ସର୍ବଦା ବିଦ୍ୟମାନ, ସର୍ବଦା ଈଶ୍ୱରଙ୍କୁ ଭକ୍ତି କରିବ ।'' ଏହା ପିଲାଦିନୁ ଚାଟଶାଳୀ ପାଠରୁ ଆରମ୍ଭ କରି କଲେଜ ପଢ଼ା ବହି ପର୍ଯ୍ୟନ୍ତ, ଚାହାଳିର ଅବଧାନଙ୍କଠାରୁ ଆରମ୍ଭ କରି କଲେଜର ପ୍ରୋଫେସର ପର୍ଯ୍ୟନ୍ତ, ପିତୃଦେବଙ୍କଠାରୁ ଆରମ୍ଭ କରି ମନ୍ତ୍ରଗୁରୁ ପର୍ଯ୍ୟନ୍ତ ସବୁଠାରୁ ଶୁଣି ଆସିଲି ଓ ମୋ ମୁଣ୍ଡକୁ ହାତ ପାଇବା ଦିନଠାରୁ କଳିଷଠା ଟପିବା ପର୍ଯ୍ୟନ୍ତ ମୋର ଯାହା ଯାହାଙ୍କ ଉପରେ ଅଧିକାର ଜମିଲା, ତାଙ୍କୁ ମେଘମନ୍ଦ୍ର ଧ୍ୱନିରେ ଏ ଉପଦେଶ ଦେଇ ମୋ ଋଣକୁ ଚକ୍ରବୃଦ୍ଧି କସୋଟରେ ସୁଝିଲି । କିନ୍ତୁ ମୁଁ ଦେଖୁଛି ଯେ ଏ ଉପଦେଶ ଆମ୍ଭମାନଙ୍କ ଭଳି ଦୁନିଆର ଜୀବଙ୍କ ପକ୍ଷରେ ତୁଚ୍ଛା ପୋଥି ପାଠ । ଏ ଯେଉଁ ଜୀବନ୍ତ ସର୍ବବ୍ୟାପୀ, ସର୍ବଦର୍ଶୀ ଈଶ୍ୱରଙ୍କ ଚିତ୍ର ଆମେ ଆଙ୍କୁଥାଇ, ସେଥିର ପ୍ରକୃତତାରେ ଆମର ବିଶ୍ୱାସ ଅଛି କି ? ମୁହଁରେ ଅବଶ୍ୟ ସମସ୍ତେ କହିବା 'ହଁ' । କିନ୍ତୁ ଫଳରେ କଅଣ ଦେଖୁଥାଇଁ ? ଯେବେ ଆମେ ବିଶ୍ୱାସ କରୁଥାନ୍ତୁ ଯେ ଈଶ୍ୱର ସର୍ବତ୍ର ବିଦ୍ୟମାନ, ଈଶ୍ୱର ଆମର ସବୁ କାର୍ଯ୍ୟ ସବୁ ଚିନ୍ତା ଦେଖୁଛନ୍ତି ଓ ଜାଣୁଛନ୍ତି, ତେବେ ଏ ସଂସାର ଏକା ଦିନକେ ବେଦଭୂମି ପାଲଟି ଯାଆନ୍ତା । ଆମେ ଅଧର୍ମ କରିବାକୁ, ଅସତ୍ୟ କହିବାକୁ କଦାପି ଚେଷ୍ଟା କରନ୍ତୁ ନାହିଁ । ଏ ଦୁନିଆରେ 'ଈଶ୍ୱର' ଗୋଟିଏ ଅଭିଧାନଗତ ପଦ ପାଲଟିଛନ୍ତି । ପରୋପଦେଶ ପାଣ୍ଡିତ୍ୟ କଲାବେଳକୁ ମୋ ପାଟିରୁ 'ଈଶ୍ୱର' ବାହାରନ୍ତି । ଘର ଭିତରକୁ ପଶିଲା ବେଳକୁ 'ଈଶ୍ୱର' ବାଡ଼ିଆଡ଼େ ଯାଇ ଲୁଚନ୍ତି । ଏଥିପାଇଁ ବଡ଼ ବଡ଼କେ କହି ଯାଇଛନ୍ତି ''ମନରେ ନାହିଁ କି ମାଳିରେ ନାହିଁ, ଭଜି ଭଜି କରି ପାଇବୁ କାହିଁ ?''

## ॥ ଚାରି ॥

''ତଳ ବରଡ଼ା ଖସୁଛି, ମଝି ବରଡ଼ା ହସୁଛି,
ଉପର ବରଡ଼ା ଥାଇ ବୋଇଲା, ଆମ ଦିନକାଳ ଆସୁଛି ।''

ପୂର୍ବରୁ ଆପଣମାନଙ୍କୁ ଜଣାଇଛି ଯେ ଦେଶ ପ୍ରଚଳିତ ଢଗମାନ ଆମର ବହୁପୁରୁଷାର୍ଜିତ ଅନୁଭବରୁ ଛଙ୍କା ହୋଇଥିବା ବହୁମୂଲ୍ୟ ଅର୍କ । ଆପଣ ଯା ଇଚ୍ଛା ତା ଢଗଟିଏ ଧରନ୍ତୁ; ଦେଖିବେ ଯେ ତହିଁରେ ଥିବା ସାରମର୍ମ ଖାଣ୍ଟି ଅନୁଭବସିଦ୍ଧ ସତ । ଜଣଙ୍କର ଦୁଃଖ ଦେଖିଲେ ଆଉ ଜଣଙ୍କର ମୁହଁରେ ହସ ଫୁଟେ । ଜଣଙ୍କର ସୁଖ

ଦେଖିଲେ ଆଉ ଜଣଙ୍କର ଦିହ ଜଳିଯାଏ । ଏହା ଆମେ ଏ ସଂସାରରେ ପନ୍ଦର ପଣ ଊଣେଇଶ ତିନି କଡ଼ା ଦୁଇକ୍ରାନ୍ତି ପନ୍ଦର ବିଶ୍ୱା ଲୋକଙ୍କଠାରେ ଅନୁଭବ କରୁଁ । କେବଳ କ୍ରାନ୍ତିକର ଏକ ବିଶ୍ୱା ଲୋକଙ୍କଠାରେ ଦେଖି ତାର ଦୁଃଖ ଦେଖିଲେ ତାଙ୍କ ମୁହଁ ବିରସ ପଡ଼ିଯାଏ ଓ ପରର ସୁଖ ଦେଖିଲେ ତାଙ୍କ ମୁହଁ ସରସ ହୋଇଯାଏ । ଏହି କ୍ରାନ୍ତିକର ଏକ ବିଶ୍ୱା ଲୋକେ ଜଗତ୍‌ରେ ପୂଜ୍ୟ, ସଂସାରରେ ନମସ୍ୟ, ସଂସାରରେ ଉପଦେଶକ, ସମାଜର ଗୁରୁ । ସଂସାରର ପନ୍ଦର ପଣ ଊଣେଇଶ ଗଣ୍ଡା ତିନି କଡ଼ା ଦୁଇ କ୍ରାନ୍ତି ପନ୍ଦର ବିଶ୍ୱା ଲୋକଙ୍କ ହସିଲା ବେଳେ ସେମାନେ କାନ୍ଦନ୍ତି ଓ ସେ ଲୋକଙ୍କ କାନ୍ଦିଲା ବେଳେ ଏମାନେ ହସନ୍ତି । ଏଥିପାଇଁ ଗୀତା କହିଛି :- "ଯା ନିଶା ସର୍ବଭୂତାନାଂ ତସ୍ୟାଂ ଜାଗର୍ତ୍ତି ସଂଯମୀ, ଯସ୍ୟାଂ ଜାଗ୍ରତି ଭୂତାନି ସା ନିଶା ପଶ୍ୟତୋମୁନେଃ ।" ସଂସାରର ସମସ୍ତ ଭୂତଙ୍କର ଯାହା ରାତି, ସଂଯମୀ ଲୋକର ତାହା ଦିନ; ସଂସାରର ଅନ୍ୟ ସମସ୍ତେ ଯେତେବେଳେ ଶୋଇ ଥାଆନ୍ତି, ସେତେବେଳେ ସଂଯମୀ ଚେଇଁ ଥାଆନ୍ତି ।

ସଂସାରର ଅନ୍ୟ ସମସ୍ତ ଭୂତଙ୍କୁ ଏ ଜଗରେ ମଝି ବରଡା କରାହୋଇଛି ଓ ସଂଯମୀଙ୍କୁ ଉପର ବରଡ଼ା କରାହୋଇଛି । ନଡ଼ିଆଗଛର ସବ୍‌ଭା ତଳ ବରଡ଼ାଟି ଶୁଖି ଯାଇ ଯେତେବେଳେ ଗଛରୁ ଝଡ଼ିପଡ଼େ ସେତେବେଳେ ତାର ଠିକ୍ ଅଦୂରଦର୍ଶୀ ମଝି ବରଡ଼ାଟି ତଳ ବରଡ଼ା ପତନ ଦେଖି ହସିଦିଏ । କିନ୍ତୁ ତା ଉପରେ ଥିବା ସୁଦୂରଦର୍ଶୀ ଉପର ବରଡ଼ା ସମସ୍ତଙ୍କର ଅନ୍ତିମ ପତନ କଳ୍ପଚକ୍ଷୁରେ ଉପଲବ୍ଧି କରି କହନ୍ତି :- 'ଆରେ ଭାଇ ! ହସୁଛୁ କାହିଁକି ? ଦିନେ ତୋର ଓ ମୋର ମଧ ଏହି ପତନ ଅବଶ୍ୟମ୍ଭାବୀ, ଅତଏବ ହସନା । ଯୁଧିଷ୍ଠିରଙ୍କୁ ଧର୍ମବକ ଯେଉଁ ପ୍ରଥମ ପ୍ରଶ୍ନଟି କରିଥିଲେ - ଏହାଠାରୁ ବଳି କ'ଣ ଆଶ୍ଚର୍ଯ୍ୟ କଥା ଅଛି (କିମାଶ୍ଚର୍ଯ୍ୟମତଃପରଂ) ? ଏଥିର ଉତ୍ତର ଯୁଧିଷ୍ଠିର କହିଥିଲେ - 'ଅହନ୍ୟହନିଭୂତାନି ଗଚ୍ଛନ୍ତି ଯମ ମନ୍ଦିରମ୍ ଶେଷାଶ୍ଚିରାୟୁରିଚ୍ଛନ୍ତି କିମାଶ୍ଚର୍ଯ୍ୟ ତତଃପରଂ ପ୍ରତିଦିନ ସଂସାରର ପ୍ରାଣୀମାନେ ମରୁଛନ୍ତି, ଅଥଚ ଏହା ଦେଖିଶୁଣି ଜାଣିଶୁଣି ଯେଉଁମାନେ, ଏ ଘଡ଼ିକ ବର୍ତ୍ତି ଯାଉଛନ୍ତି ସେ ବିଚାରୁଛନ୍ତି ଯେ ଆମେ ମରିବା ନାହିଁ, ଚିରକାଳ ବଞ୍ଚି ରହିବା, ଏହାଠାରୁ ବଳି ଆଶ୍ଚର୍ଯ୍ୟ ଆଉ କଅଣ ହୋଇପାରେ ?) ବର୍ତ୍ତମାନ ଲାଗିଥିବା ଯୁଦ୍ଧର ଶୂନ ବୋମାମାଡ଼ ପ୍ରସଙ୍ଗରେ ଲୋକଙ୍କ ମନୋଭାବ ଦେଖି ମୋର ଏହି ଢଗଟି ମନେ ପଡୁଛି । ଆଜି ବୋର୍ଣ୍ଣିଓ ଗଲା, ସେଲିବମ୍ ଗଲା, ଯାଭା ଗଲା, ସିଙ୍ଗାପୁର ଗଲା, ରେଙ୍ଗୁନ୍ ଗଲା । ସରକାରଙ୍କ ପଲଟଣ ଇଲାକାର ଜଂଘୀଲାଟ ବିବ୍ ବଜାରରେ ନାଗରା ପିଟିଦେଲେ ଯେ, ଭାରତର ପୂର୍ବ ଉପକୂଳ ଅଞ୍ଚଳମାନଙ୍କ ଉପରେ ଚଢ଼ାଉ ଓ ଶୂନ୍ ବୋମା ମାଡ଼ର ଡର ମାଡ଼ି ଆସିଲାଣି । ଏ ଅବସ୍ଥା ଦେଖି, ଶୁଣି ଓ ପଢ଼ି ଆମେ ମନବୋଧିଆ ଆଶ୍ୱାସନା ଆମ ମନକୁ ଦେଉଥାଇ ଯେ, ଭାରତରେ ହଜାର ହଜାର ମାଇଲ ଉପକୂଳବର୍ତ୍ତୀ ଅଞ୍ଚଳ ଓ ହଜାର ହଜାର ସହର ଥାଉଁ ଥାଉଁ ଜାପାନ କିଆଁ ଆସି ଆମ କଟକ ଜିଲ୍ଲାକୁ ଚଢ଼ଉ କରିବ ? ଅତଏବ ଆମେ ଗହମ

ନିଦରେ ଶୋଇରହି ନିରାପଦ ଅବସ୍ଥାର ସୁଖସ୍ୱପ୍ନ ଦେଖୁଥାଇଁ । 'ଘର ବୁଡ଼ି ପାଣି ଆଣ୍ଠୁଏ ହେଲାଣି କଣା ବୋଲେ ମେଘ ଦୁଲୁକୁଛି' । ଆମର ସେହି ଅବସ୍ଥା ହୋଇଛି । ତା'ପରେ ଆମରି ଭିତରେ ମୋ ଭଳି ଆଉ କେତେକ ଚିଆଁ ପହଡ଼ିଆ ଅଛୁଁ । ମୁଁ ମନରେ ଗେଣ୍ଠ୍ ବାନ୍ଧି ବସିଛି ଯେ କଟକ ସହରର ସବୁ ଜାଗାରେ ସବୁ ବାବୁଙ୍କ କୋଠାରେ ବୋମା ପଡ଼ିବ, କିନ୍ତୁ ମୋ କୋଠା ଖଣ୍ଡିକରେ ପଡ଼ିବ ନାହିଁ । ସତେ ଯେପରି ମୁଁ ଖୋଦ ମହାପ୍ରଭୁଙ୍କ ଗେହ୍ଲାପୁଅ । ଏହି ସବୁ ମନର ରେଣ୍ଡହିଁ ଅଧଃପତନର ପୂର୍ବାଭାଷ । ସଂସାରରେ ସମସ୍ତେ ମରୁଛନ୍ତି, କିନ୍ତୁ ଅମର, ଅଜର ହୋଇ ବସିଥିବି । ଏହି ସର୍ବନାଶିଆମାନେ ମନୋଭାବ ହତଭାଗ୍ୟ ଲୋକଠାରେ ଉପୁଜେ । ଏହି ମନୋଭାବ ହେତୁରୁ ଆମ ଦେଶର ଅଧିକାଂଶ ଲୋକେ ଲାହିରେ ତେଲ ପକାଇ ଶୋଇଥାଉଁ । କିନ୍ତୁ ଦେଶକୁ ବିପଦ ପଡ଼ିଲେ ସମସ୍ତେ ଅଥଳ ସମୁଦ୍ରରେ ଉବେଇ ଟୁବେଇ ହୋଇ ମରିବା । ଭାରତବର୍ଷ ଭଳି ଏଡ଼େ ବିରାଟ ଦେଶରେ ଯୁଦ୍ଧକାଳୀନ ଅବଶ୍ୟମ୍ଭାବୀ ବିପଦରୁ ଦେଶକୁ ଓ ଦେଶବାସୀଙ୍କୁ ଓ ନିଜ ନିଜକୁ ରକ୍ଷା କରିବା ପାଇଁ ସ୍ୱେଚ୍ଛାସେବକ ମିଳୁ ନାହାନ୍ତି । ଏଥିରୁ ବଡ଼ ଆଶ୍ଚର୍ଯ୍ୟ କଥା ଆଉ କଅଣ ହୋଇପାରେ ? ତଳ ବରଡ଼ା ଖସୁଛି ଆମେ ହସୁଛୁ, କିନ୍ତୁ ଜ୍ଞାନୀ ଭବିଷ୍ୟଦ୍‌ବେତ୍ତା ଉପର ବରଡ଼ାମାନେ ଡାକ ପକାଇଛନ୍ତି ଓ ଆମକୁ ଚେତାଇ ଦେଉଛନ୍ତି ଯେ ଆମ ଦିନ କାଳ ଆସୁଛି ।

ଏହି ସମ୍ପର୍କରେ ପୁଣି ଗୋଟାଏ ଦମ୍ଭ ଆମ ମନକୁ ଆସୁଛି । ତାହା ଏହି :- ଦୁନିଆରେ ତ ସମସ୍ତେ ପୂର୍ବ କାମରେ ବାହାରିଛନ୍ତି, ମୁଁ ଜଣେ ନାଆଁ ନ ଲେଖାଇଲେ କଅଣ କ୍ଷତି ଅଛି ? ଏ ମନୋଭାବ ପୂର୍ବୋକ୍ତ ମନୋଭାବଠାରୁ ଆହୁରି ମାରାତ୍ମକ । କଲେଜରେ ପଢ଼ିବା ସମୟରେ ଜଣେ ପ୍ରସିଦ୍ଧ ଲେଖକଙ୍କ ଗ୍ରନ୍ଥରେ ଗୋଟିଏ ଗପ ପଢ଼ିଥିଲି । ଥରେ ଏକ ରାଇଜର ରାଜା ହୁକୁମ ଜାରି କଲେ ଯେ ଅମୁକ ମାସ ଅମୁକ ତାରିଖ ରାତି ଠିକ୍ ୯ଟା ବେଳେ ରାଜ୍ୟର ଆବାଳବୃଦ୍ଧବନିତା 'ବୋ' ବୋଲି ଗୋଟାଏ ଖୁବ୍ ଉଚ୍ଚ ଧ୍ୱନି କରିବେ । ସମସ୍ତଙ୍କ ଧ୍ୱନି ମିଶି ଏପରି ଏକ ଉଚ୍ଚ ଧ୍ୱନି ହେବ ଯେ, ଏହା ଆବହମାନ କାଳରୁ କେବେହେଲେ ପୃଥିବୀରେ ଶୁଣା ଯାଇ ନାହିଁ । ଏହି ହୁକୁମ ଖବରକାଗଜରେ ହାଟ, ବାଟ, ଘାଟ, ସହର, ବଜାର ସର୍ବତ୍ର ଘୋଷଣା ଦ୍ୱାରା ପ୍ରକାଶିତ ହେଲା । ସେ ଦିନ ଠିକ୍ ରାତି ୯ଟା ବେଳକୁ ସମସ୍ତେ ଯେ ଯେଉଁଠାରେ ଥିବେ ଏହି ଧ୍ୱନି କରିବେ ବୋଲି ରାଜ୍ୟ ତମାମ୍ ହୁକୁମ୍ ବୁଲିଗଲା । ଇତ୍ୟବସରରେ ପ୍ରତ୍ୟେକ ବ୍ୟକ୍ତି ମନେ ମନେ ଭାବିଲେ 'ରାଜ୍ୟର ଅଘର ଦ୍ୱାରୀ ସମସ୍ତେ ଧ୍ୱନି କରିବେ, ଏପରି ଅବସ୍ଥାରେ ମୁଁ ଜଣେ ମାତ୍ର ବ୍ୟକ୍ତି ଧ୍ୱନି ନ କଲେ କଅଣ କ୍ଷତି ହେବ ? ଏ ଧ୍ୱନିଟି କିପରି ଶୁଭିବ ମୁଁ ଏହା ଶୁଣିବି' । ରାଜ୍ୟର ସମସ୍ତେ ଏହା ବିଚାରି ଧ୍ୱନି ଶୁଣିବାକୁ କାନ ଡେରି ରହିଲେ । ଫଳରେ ଏହିତା ଘଟିଲା ଯେ ସେ ଦିନ ରାତି ୯ଟା ବେଳେ ରାଜ୍ୟ ତମାମ୍ ଯେଉଁ ନିସ୍ତବ୍ଧତା ହେଲା, ଏପରି ନିସ୍ତବ୍ଧତା ଆବହମାନକାଳରୁ ହୋଇ ନ ଥିଲା । ଆମ

ଭାରତବାସୀଙ୍କର ଯୁଦ୍ଧ ପ୍ରଚେଷ୍ଟାରେ ଯୋଗ ଦେବା ସମ୍ବନ୍ଧୀୟ ମନୋଭାବର ଫଳ ଏହିତା ହେବ । ସମସ୍ତେ ବିଚାରୁଥାଇଁ ଯେ ଆଉ ସମସ୍ତେ ତ ଯୁଦ୍ଧରେ ସାହାଯ୍ୟ କରୁଛନ୍ତି, ମୁଁ ଜଣେ ନ କଲେ କଅଣ କାମ ଅଟକିଯିବ ? ଏହାଠାରୁ ଆହୁରି ଗୋଟିଏ ହଂସାଉଡ଼ା ମନୋଭାବ ଆମଠାରେ ଦେଖା ଯାଉଛି - ''ପିଠା ଖାଇଲା ବେଳକୁ ପୁଅର ମାଆ, ହୁଳହୁଳି ପକାଇଲା ବେଳକୁ ଢିଭରେ ଘାଆ'' । ଆମେ ପାଟି କରି ତ୍ରିଲୋକ ଫଟାଉଥାଇଁ ଯେ ଆମକୁ ଇଂରେଜ ସରକାର ସ୍ୱରାଜ୍ୟ ଦିଅନ୍ତୁ । କିନ୍ତୁ ବର୍ତ୍ତମାନ ଯୁଦ୍ଧ ଚପଟ ପଡ଼ିଲା ବେଳକୁ କହୁଥାଇଁ - ଆମେ ନିରାଶ୍ରୟ, ନିର୍ବଳ, ନିରସ୍ତ୍ର, ଆମେ କି ଲଢ଼େଇ କରିବୁଁ ? ସରକାର ଯାହା କରିବାର କରନ୍ତୁ ! ଆମକୁ ତ ସରକାର ଅସ୍ତ୍ର ଶସ୍ତ୍ର ଦେଉ ନାହାନ୍ତି, ଯୁଦ୍ଧବିଦ୍ୟାରେ ତାଲିମ୍ କରି ନାହାନ୍ତି, ବର୍ତ୍ତମାନ ଆମେ ଅକାମିକାଗୁଡ଼ାକ ଯୁଦ୍ଧଭୂଇଁକୁ ଯାଇଁ କଅଣ କରିବୁଁ ? ମାଇପଙ୍କ ଢଗ ଆମେ ଆବୃତ୍ତି କରୁଥାଇଁ - ''ବିରି ଅଟକାଳି ଖୋଇଛି ଯେ, ରାତିରେ ଦାଣ୍ଡକୁ ନେଉଟି ସେ ।'' ବର୍ତ୍ତମାନ ଆମକୁ ନିପାରିଲା କରି ରଖିଥିବାରୁ ସରକାର ସବୁ ବାଜି ସମ୍ଭାଳନ୍ତୁ । କିନ୍ତୁ ଏଥିର ପ୍ରତିକାର ପାଇଁ ସରକାର ଯେତେବେଳେ ଡାକ ମାରୁଛନ୍ତି - ହେ ଭାରତ ନରପୁଙ୍ଗବମାନେ ! ଯୁଦ୍ଧବିଦ୍ୟାରେ ତାଲିମ ହେବାକୁ ଆସ । ସେତେବେଳେ ଶିକାର ବେଳେ ଶ୍ୱାନର ଅବସ୍ଥା ଠାରୁ ଆମ ଅବସ୍ଥା ବଳୁଛି । ଏହାକୁ କହନ୍ତି 'ଘଷି ଗୋଟେଇବାକୁ ନ ଯାଇ ଚୋକେଇ ଫୋପାଡ଼ିବା ନ୍ୟାୟ' ।

ଭଞ୍ଜପ୍ରଦୀପ - ୧୧ଶ ଭାଗ/ ୩ୟ ସଂଖ୍ୟା/୧୩୪୯ ସାଲ ।

## ।। ପାଞ୍ଚ ।।

''ତୁ ଦେଉଥିବୁ, ମୁଁ ଖାଉଥିବି, ତୋର ସୁନ୍ଦର ବଦନ ଚାହୁଁଥିବି
ତୁ ନ ଦବୁ କି, ମୁଁ ନ ଖାଇବି, ତୋ ଫୁଲଫୁଲା ମୁହଁ ନ ଚାହିଁବି ।''

ଏଇଟି ଆମ ପାଠକ-ପାଠିକାଙ୍କ ଭିତରୁ ଅନେକେ ଶୁଣିଥିବେ । ଏ ଢଗ ମାନବ ପ୍ରକୃତିର ଗୋଟିଏ ଅତି ସୁନ୍ଦର ବିଶ୍ଳେଷଣ ଆତ୍ମପ୍ରକାଶ କରିଛି । ଆମେ ସମସ୍ତେ ଅଳ୍ପ ବହୁତ ଅଙ୍ଗେ ନିଭାଉଥାଇଁ ଯେ ଯେଉଁ ବ୍ୟକ୍ତି ମୋର ଉପକାର କରୁଛନ୍ତି ସେ ମୋତେ ଦାନାକନା ଦେଉଛନ୍ତି, ଯେ ମୋତେ ସାହାଯ୍ୟ ଦେଉଛନ୍ତି ତାଙ୍କ ପ୍ରତି ମୁଁ ପ୍ରସନ୍ନ ଓ ମୋ ଅଷ୍ଟାଙ୍ଗ ପ୍ରସନ୍ନ, ମୋ ମନ ପ୍ରସନ୍ନ, ମୋ ଅଞ୍ଜଳିବଦ୍ଧ ହସ୍ତଦ୍ୱୟ ପ୍ରସନ୍ନ ଓ ମୋ ଠାରେ ପ୍ରସନ୍ନ । ଏହି ପ୍ରସନ୍ନତା ଫଳରେ ମୁଁ ତାଙ୍କର ପ୍ରଶଂସା ଗାନ କଲେ ତାଙ୍କୁ ସାଷ୍ଟାଙ୍ଗ ନମସ୍କାର କରେଁ, ମନେ ମନେ ତାଙ୍କର ମଙ୍ଗଳ କାମନା କରେଁ ଓ ତାଙ୍କ 'ବଦନ' ମୋ ଆଖିକୁ ସୁନ୍ଦର ଦେଖାଯାଏ । ଏ ଢଗରେ ବ୍ୟବହୃତ 'ଦେବା' କ୍ରିୟାର କେବଳ 'ଦାନ କରିବା' ଅର୍ଥ କଲେ ହେବ ନାହିଁ । ଦେବା କ୍ରିୟାରେ ଧନ ଦେବା, ସାହାଯ୍ୟ ଦେବା, ହିମ୍ମତ

ଦେବା, ପେଟକୁ ଦାନା ଦେବା, ପିଠିକୁ କନା ଦେବା, ନିକମ୍ମାକୁ କାମ ଦେବା, ପୁରସ୍କାର ଦେବା, ଅଣ୍ଟାଗୁଞ୍ଜା ଦେବା, ମିଠେଇଖିଆ ଦେବା ଆଦି ନାନା ପ୍ରକାରରେ ଉପକାର କରିବା ସୂଚିତ ହେଉଅଛି । ଆପଣମାନେ ଅନୁଭବ କରିଛନ୍ତି କି ନାହିଁ ? ଅନୁଭବ କରିଥିଲେ ମାନିବେ କି ନାହିଁ ? ମୁଁ ନିଜେ ଯାହା ଅନୁଭବ କରିଛି, ତା କହୁଛି । ମୁଁ ଯାହାଙ୍କଠାରୁ ଧନଆଦି ପାଇଛି ତାଙ୍କର ବିକଟାଳ ଲେପେଡ଼ା ମୁହଁଟି ମୋତେ ଭାରି ସୁନ୍ଦର ଦିଶିଛି ଓ ମୁଁ ବିଚାରିଛି - ତୁ ଦେଉଥା, ମୁଁ ଖାଉଥାଏଁ, ତୋ ସୁନ୍ଦର ବଦନ ଚାହୁଁଥାଏ ।'' କିନ୍ତୁ ଯେଉଁ ବ୍ୟକ୍ତିଙ୍କ ଠାରୁ କିଛି ପାଇ ନ ଥାଏଁ ବା ଯେ ମୋ ଆଶା ଭାଙ୍ଗି ଦିଅନ୍ତି ତାଙ୍କ ଡଉଲ ଡାଉଲ ମୁହଁଟି ମୋତେ ଫୁଲାଫୁଲା ଦିଶେ ଓ ମୁଁ ବିଚାରେ - ''ତୁ ନ ଦେ କି ମୁଁ ନ ଥାଏଁ ତୋ ଫୁଲାଫୁଲା ମୁହଁ ନ ଚାହେଁ ।'' କାରଣ, ତାଙ୍କ ଦାନା ଏ ପେଟରେ ପଡ଼ିଲା ନାହିଁ, ଅତଏବ ତାଙ୍କ ଫୁଲଫୁଲା ମୁହଁକୁ ଚାହିଁବାକୁ ମୋ ଆତ୍ମାପୁରୁଷ ରାଜି ହେଲା ନାହିଁ ।

ଏ ସମ୍ପର୍କରେ ଆମର ଆଉ ଗୋଟିଏ ଅଙ୍ଗେ ନିଭାଇବା କଥା ମୁଁ ଏଠାରେ ବଖାଣୁଛି । ଯେଉଁମାନଙ୍କୁ 'ଆମେ ଧର୍ମାବତାର ବୋଲି ମୁହଁରେ ଓ ଲେଖାଲେଖିରେ ସମ୍ବୋଧନ କରୁଁ ସେମାନଙ୍କ ମଧ୍ୟରୁ ଧର୍ମର ଅବତାର ଢାତକରା ହଜାରକରା ବା କାହାଣକରା କେତେ ତାହା ଆମେ ଓର ଲଗାଉଁ ? ଯେତେ ଓର ଲଗାନ୍ତେଇଁ ଓ ହରିଗୁଣପେଡାମିଶା କରି ତାଙ୍କ ଅନୁଷ୍ଠିତ 'ଧର୍ମ' କର୍ମକୁ କପଡ଼ାଛାଣି କରନ୍ତୁ ତେବେ ଦେଖନ୍ତେଇଁ ଯେ ସେମାନଙ୍କ ମଧ୍ୟରୁ ପନ୍ଦର ପଣ ଉଣେଇଶ ଗଣ୍ଡା ଅର୍ଥାତ୍ ହଜାରକେ ୩.୧୨୫ 'ଧର୍ମ'ର ଧାର ଧାରନ୍ତି ନାହିଁ ଓ ସେମାନେ 'ଅଧର୍ମର ଅବତାର' । ଯେଉଁମାନଙ୍କୁ ଆମେ ଅକଳରେ ପଡ଼ି Your Honour (ହଜୁର୍ ! ଖୋଦାଓ୍ୱନ୍ଦ୍ ଖାଓ୍ୱନ୍ଦ୍ !) ବୋଲି ସମ୍ବୋଧନ କରୁଁ ଓ ଏହିସବୁ ସମ୍ବୋଧନ ଦ୍ୱାରା ଯାହାଙ୍କର ଏକାଧିକ ଅଙ୍ଗରେ ତୈଳ ମର୍ଦ୍ଦନ କରୁଁ, ସେମାନଙ୍କ ମଧ୍ୟରୁ ଅଧିକାଂଶ ସଙ୍ଗେ Honour (ସମ୍ମାନ)ର ସମ୍ପର୍କ ନଦାରଦ୍ । ସେହି ଅଧିକାଂଶଙ୍କ ଭିତର ବାହାର, ଦାଣ୍ଡଆଡ଼ ବାରିଆଡ଼, ସଦର ଦରୋଜା ଓ ଖିଡ଼ିକି ଦୁଆର, ମୁହଁ ଓ ପେଟ ଭିତର, ଚମଡ଼ା ଓ ଅନ୍ତବୁଜୁଳା, ବହିର୍ବାସ ଓ ଅଧୋବାସ, ମାଇନା କଲେ ଦେଖାଯିବ ଯେ, ପହିଲି ଆଷାଢ଼ୁଆ ପିତାପାଣି ଅସରା ବରଷିବା ବାସିଦିନ ତେଲୁଣୀପୋକ, ଗଉଡୁଣୀ ପୋକଙ୍କ ପରି ସବୁଠାରେ Dishonour (ଅସଦାଚରଣ ବା ଅସମ୍ମାନ) ସାଲୁ ସାଲୁ ହେଉଛି । କିନ୍ତୁ ସେମାନଙ୍କ ସଙ୍ଗେ ଆମର ଖାଉନ୍ଦ ଓ ନୌକର ସମ୍ବନ୍ଧ, ସର୍ଦ୍ଦାର ଓ ବିରାଦର ସମ୍ପର୍କ, ହାକିମ ଓ ଅମଲା ସମ୍ବନ୍ଧ, ଦାତା ଓ ଗ୍ରହୀତା, ବିଚାରପତି ଓ ପକ୍ଷ, ମହାଜନ ଓ ଖାତକ, ଡିଗ୍ରିଦାର ଓ ଦେଣଦାର, ଜଜ୍ ଓ ଆସାମୀ, ବଡ଼ଲୋକ ଓ ମୋସାହେବ, ରାଜା ଓ ପ୍ରଜା, ଦାନାଦିଆ ଓ ଦାନାଖିଆ, ମୁଦି ଦୋକାନୀ ଓ କାଳି ଖାଉତି ଗହକୀ, ଗୁରୁ ଓ ଶିଷ୍ୟ, ପ୍ରୋଫେସର ଓ ଛାତ୍ର ଆଦି କୌଣସି ନା କୌଣସି ସମ୍ବନ୍ଧ ଛନ୍ଦଣିମନ୍ଦଣି ହୋଇ ଲାଗି ଥିବାରୁ ଓ ବିଧିବିଡ଼ମ୍ବନାରୁ ତାଙ୍କର 'ଉପର ହାତ' ଓ ଆମର 'ତଳ ହାତ' ହୋଇଥିବାରୁ ସେ ଯେଡ଼େ ଇଚ୍ଛା ତେଡ଼େ ଧର୍ମହୀନ ହୋଇଥାନ୍ତୁ ପଛକେ, ତାଙ୍କୁ ଧର୍ମାବତାର ଓ ସେ

ଯେଡ଼େ ଇଚ୍ଛା ତେଡ଼େ ସମ୍ମାନାଯୋଗ୍ୟ (dishonourable) ହୁଅନ୍ତୁ ପଛକେ ତାଙ୍କୁ Your Honour ! (ସମ୍ମାନପାତ୍ର ହଜୁର) ବୋଲି ସମ୍ବୋଧନ କରୁଁ । ଯେଉଁମାନଙ୍କ ସଙ୍ଗେ ଆମର ଏ ସବୁ ବାଧକ-ବାଧିତ ସମ୍ପର୍କ ନାହିଁ । ସେମାନଙ୍କୁ ଆମେ ପାସଙ୍ଗରେ ପକାଉ ନାହିଁ । ଦୁନିଆଟା ଏହି ଦେଏଣ ନେଏଣ ସମ୍ପର୍କରେ ଛନ୍ଦା । ବନ୍ଧୁବାନ୍ଧବ ସମ୍ପର୍କ କୁହ, ପିତା ପୁତ୍ର ସମ୍ପର୍କ କୁହ, ସ୍ୱାମୀ ସ୍ତ୍ରୀ ସମ୍ବନ୍ଧ କୁହ, ରାଜା ପ୍ରଜା ସମ୍ପର୍କ କୁହ, ହାକିମ୍ ହୁକୁମ୍ ବରଦାର୍ ସମ୍ପର୍କ କୁହ, ସବୁଠାରେ ଏହି ଦିଆନିଆ ସମ୍ପର୍କ ଓ କାରବାର ଚାଲିଛି । ଯେ ଦେଲା ସେ ହେଲା ସୁବନ୍ଧୁ, ସୁପୁତ୍ର, ସୁଭର୍ତ୍ତା, ସୁରାଜା, ସୁହାକିମ ଯେ ନ ଦେଲା ସେ ହେଲା କୁବନ୍ଧୁ, କୁପୁତ୍ର, କୁଗ୍ରହୀତା, କୁରାଜା ଓ କୁହାକିମ । ଏଥିପାଇଁ ଶଙ୍କରାଚାର୍ଯ୍ୟ କହି ଯାଇଛନ୍ତି-

"ଯାବଦ ବିତ୍ତୋପାର୍ଜ୍ଜନଶକ୍ତଃ
ତାବନ୍ନିଜପରିବାରୋରକ୍ତଃ
ତଦପିଚଜରୟାଜର୍ଜ୍ଜର ଦେହେ
ବାର୍ତ୍ତାକୋଽପି ନପୃଚ୍ଛତି ଗେହେ ।"

(ଅର୍ଥାତ୍ ତୁମର ଖୋଦା-ପ୍ରଦତ୍ତ ଯୋଡ଼ି-ଘୋଡ଼ା ଟାଣୁଆ ଥିବା ପର୍ଯ୍ୟନ୍ତ, ତୁମର ଧନ ଉପାର୍ଜ୍ଜନ କରିଆଣି ପରିବାରଙ୍କ ଛାମୁରେ ପଏଠ କରିବା ଶକ୍ତି ଥିବା ପର୍ଯ୍ୟନ୍ତ, ତୁମ ପରିବାରର ସମସ୍ତେ ତୁମଠାରେ ଅନୁରକ୍ତ ହୋଇଥିବେ । ତୁମ ଦିହରେ ଟିକିଏ ଆଁଚ୍ ଲାଗିଗଲେ ତୁମ ପରିବାରଙ୍କ ଆଖିରୁ ଶ୍ରାବଣ ଧାରା ପରି ଟପ ଟପ ଲୁହ ଗଡ଼ି ପଡୁଥିବ, ସମସ୍ତେ ତୁମକୁ ଛିଞ୍ଚାବିଞ୍ଚି, ଘଷାଆଉଁଶା, ଚାହିଦା-ହିପାଜିତ୍‌ରେ ରାତି ଅନିଦ୍ରା ହୋଇ ଓ କେଶବାସ ଅସମ୍ଭାଳ ହୋଇ ଦିନରାତି, ସଞ୍ଜ ସକାଳ ଲାଗିଯିବେ; କିନ୍ତୁ ତୁମେ ବୁଢ଼ା ହଡ଼ା ହୋଇଗଲେ, ତୁମ ଚାରି ଟାପୁ ଅଚଳ ହୋଇଗଲେ, ତୁମ ଠେଙ୍ଗୁରେ କାଉ ଠକ ଠକ କରି ହାଣୁ ଥିବେ, ମାଛି, ମଶା, ଡାଉଁଶ ଅଂଶେଇ ତୁମ ଦିହଯାକ ବେଢ଼ିଥିବେ, ତୁମେ ବାପ ଲୋ !, ମାଆ ଲୋ ! ହୋଇ ବିକଳ ରଡ଼ି ଛାଡୁଥିବ, ତୁମ ହଂସା ଉଡ଼ିଯାଉଥିବ, ତୁମେ ଭୋକରେ ଶୋଷରେ ଆଉଟ ପାଉଟ ହେଉଥିବ, ପରିବାରର ସମସ୍ତେ ଏହା ଦେଖୁଥିବେ; କିନ୍ତୁ କାଉ ହୁରୁଡ଼ାଇବା, ମାଛି, ମଶା ଆଦିଙ୍କୁ ତଡ଼ିଦେବା, ତୁମ୍ଭଙ୍କୁ ଲୋଡ଼ା ପଥ୍ୟ ପାନୀୟ ଦେବା ଏ ସବୁ କଥା ଗାଧୋଇ ଯାଉ; କେହି ତୁମ ଦଶା ଦେଖି 'ଆହା' କରିବାକୁ ସାହା ହେବେ ନାହିଁ) ।

ଏ ସନ୍ଦର୍ଭର ଶିରୋନାମରେ ଉଦ୍ଧୃତ ଢଗର ବିଶେଷ କଥନ ଶଙ୍କରାଚାର୍ଯ୍ୟଙ୍କର ଏ ଶ୍ଳୋକରେ ନିହିତ ଅଛି । ଏହି ପ୍ରସଙ୍ଗରେ ସଂସାରର ଅନୁଭୂତି ବିଷୟ ମାର୍କଣ୍ଡେୟ ପୁରାଣାନ୍ତର୍ଗତ 'ସପ୍ତଶତୀ ଦେବୀ ମାହାତ୍ମ୍ୟ'ରେ (ଯେଉଁ ଗ୍ରନ୍ଥକୁ ଆମେ ସାଧାରଣତଃ ଚଣ୍ଡୀପୁରାଣ ଆଖ୍ୟା ଦେଇଥାଉଁ । ତହିଁରେ ସୂଚିତ ହୋଇଅଛି । ଏ 'ଦିଆଖିଆ ସଙ୍ଗେ' ସୁନ୍ଦର ବଦନ ବହାର ସମ୍ପର୍କ କେବଳ ମାନବ ପ୍ରକୃତିସୁଲଭ ନୁହେଁ ଏହା ସାଧାରଣ ଜୀବ

ପ୍ରକୃତିସୁଲଭ ଅଟେ । ପ୍ରାଚୀନ କାଳରେ ଚୈତ୍ର ବଂଶରେ ସୁରଥ ନାମକ ସମସ୍ତ କ୍ଷିତି ମଣ୍ଡଳର ଜଣେ ରାଜା ଜନ୍ମଗ୍ରହଣ କରିଥିଲେ । ସେ ପ୍ରଜାମାନଙ୍କୁ ଆପଣା ଔରସ ପୁତ୍ର ପରି ପାଳୁଥିଲେ । ତାଙ୍କର ଶତ୍ରୁମାନଙ୍କ ସଙ୍ଗେ ଯୁଦ୍ଧ ହେଲା ଓ ରାଜା ପରାସ୍ତ ହେଲେ । ତତ୍ପରେ ପ୍ରବଳ ଶତ୍ରୁମାନଙ୍କ ଦ୍ୱାରା ଆକ୍ରାନ୍ତ ହୋଇ ରାଜା ନିଜପୁରକୁ ବାହୁଡ଼ି ଅଇଲେ ଓ ସୁପୁର ସନ୍ନିହିତ ଅଞ୍ଚଳର ଅଧିପତି ହୋଇ ରହିଲେ । ଇତ୍ୟବସରରେ ସୁପୁରରେ 'ପଞ୍ଚମ ବାହିନୀ'ଙ୍କ ଆବିର୍ଭାବ ହେଲା ଓ ରାଜାଙ୍କ ଦୁର୍ବଳତାର ସୁଯୋଗ ପାଇ ଦୁଷ୍ଟ ଦୁରାତ୍ମା ଅମାତ୍ୟମାନେ ରାଜାଙ୍କ ଧନରତ୍ନ, ଯାନବାହନାଦି ଅପହରଣ କଲେ । ଏ ଦୁରବସ୍ଥା ଦେଖି ଭ୍ରଷ୍ଟରାଜ୍ୟ ସୁରଥ ଦିନେ ଶିକାର କରିବାକୁ ଯାଉଛନ୍ତି ବୋଲି ବାହାନା କରି ଅଶ୍ୱାରୋହଣରେ ଏକାକୀ ଘୋର ଅରଣ୍ୟକୁ ବାହାରିଗଲେ ଓ ଅଗନାଗ୍ନି ବନସ୍ତରେ 'ମେଧା' ନାମକ ମୁନିଙ୍କ ଆଶ୍ରମରେ ଯାଇ ପହଞ୍ଚିଲେ । ମୁନି ତ ସଂସାରୀ ନ ଥିଲେ, ସେଥି ଯୋଗୁଁ 'ଢିଆଖିଆ' ଓ 'ସୁନ୍ଦର ବଦନ ଚାହାଁ'ର ପ୍ରଭାବ ତାଙ୍କୁ ଗ୍ରାସ କରି ନ ଥିଲା । ମୁନି ଆଗନ୍ତୁକ ରାଜାଙ୍କ ସତ୍କାର କଲେ ଓ ମୁନିଙ୍କ ଅତିଥି ହୋଇ ରାଜା କିଛିକାଳ ସେ ଆଶ୍ରମରେ ରହିଲେ । ଆଶ୍ରମରେ ଥିବା ସମୟରେ ରାଜା ଭାଳୁଥାଆନ୍ତି - "ଆହା ! ମୋ ଅସଚ୍ଚରିତ୍ର ଭୃତ୍ୟମାନେ ମୋ ପିତୃପିତାମହାଦିଙ୍କ ପାଳିତ ରାଜ୍ୟକୁ ଧର୍ମତଃ ପାଳୁଛନ୍ତି କି ନାହିଁ ? ମୁଁ ଯେଉଁ ପାଟହାତୀକୁ ଖୁବ୍ ଅୟସରେ ରଖିଥିଲି, ଯାହାକୁ ନିତି ପାଟକନାରେ ପୋଛୁଥିଲି, ସେ ବର୍ତ୍ତମାନ ଶତ୍ରୁର ହାତରେ ପଡ଼ି କି ଅବସ୍ଥାରେ ଅଛି ? ଯେଉଁମାନେ ମୋଠାରୁ ଅନୁଗ୍ରହ, ଧନ ଓ ଭୋଜନାଦି ଲାଭ କରି ମୋ ଅନୁଗତ ହୋଇଥିଲେ, ଆଜି ନିଶ୍ଚେ ସେମାନେ ମୋ ଶତ୍ରୁର ଆନୁଗତ୍ୟ ସ୍ୱୀକାର କରିଛନ୍ତି । ମୋ ଦ୍ୱାରା ବହୁ କଷ୍ଟରେ ସଞ୍ଚିତ ରାଜକୋଷକୁ ଅଯଥା ବ୍ୟୟଶୀଳ ବ୍ୟକ୍ତିଗଣ ଅପବ୍ୟୟଦ୍ୱାରା କ୍ଷୟ କରୁଥିବେ ସିନା ।" ରାଜା ଏହି ଭାବନା କରି ମୁନିଙ୍କ ଆଶ୍ରମରେ ଥାଆନ୍ତି; ଏହି ସମୟରେ ସେ ଉକ୍ତ ଆଶ୍ରମରେ ଜଣେ ଆଗନ୍ତୁକଙ୍କୁ ଭେଟିଲେ । ରାଜା ନବାଗତ ବ୍ୟକ୍ତିକୁ ତାଙ୍କ ପରିଚୟାଦି ପଚାରିବାରୁ ସେ ବ୍ୟକ୍ତି କହିଲେ - "ମୁଁ ଜାତିରେ ବୈଶ୍ୟ, ଧନୀମାନଙ୍କ କୁଳରେ ମୋ ଜନ୍ମ; ନାମ ସମାଧି । ଧନ ଲୋଭ ପରବଶ ହୋଇ ଅସାଧୁ ସ୍ତ୍ରୀ ପୁତ୍ର ମୋତେ ଘରୁ ତଡ଼ି ଦେଇଛନ୍ତି । ମୁଁ ଏଠାରେ ରହିଥିବାରୁ ସ୍ତ୍ରୀପୁତ୍ରାଦି ସ୍ୱଜନଙ୍କ କୁଶଳାକୁଶଳ ବାର୍ତ୍ତା ଜାଣିପାରୁ ନାହିଁ । ସେମାନେ ଗୃହରେ ମଙ୍ଗଳରେ ଅଛନ୍ତି ବା ଅମଙ୍ଗଳରେ ଅଛନ୍ତି, ସେମାନେ ସଦାଚାରୀ ବା ଦୁରାଚାରୀ ହୋଇଛନ୍ତି, ଏ ପ୍ରଶ୍ନମାନ ମୋତେ ସର୍ବଦା ବ୍ୟାକୁଳ କରୁଛି ।" ଏହା ଶୁଣି ରାଜା ସମାଧି ବୈଶ୍ୟକୁ "ଧନ ଲୋଭରେ ଲୁବ୍ଧ ପୁତ୍ରଦାରଗଣଙ୍କ ଦ୍ୱାରା ଗୃହରୁ ବିତାଡ଼ିତ ହୋଇ ସୁଦ୍ଧା ତୁମ୍ଭ ମନ ସେମାନଙ୍କଠାରେ କାହିଁକି ସ୍ନେହରେ ଆବଦ୍ଧ ହେଉଛି ?" ସମାଧି ଉତ୍ତର କଲେ, "ଆପଣ ଯାହା କହିଲେ ତାହା ପ୍ରକୃତ ଅଟେ; କିନ୍ତୁ ମୋ ମନ ତ ନିଷ୍ଠୁରତା ଅବଲମ୍ବନ କରିପାରୁ ନାହିଁ । ମୋର ଚାରା ନାହିଁ ? ଯେଉଁମାନେ ପିତୃସ୍ନେହ ଓ ପତିସ୍ନେହ ପରିତ୍ୟାଗ କରି ମୋତେ ଘରୁ ଘଉଡ଼ି ଦେଇଛନ୍ତି, ସେହିମାନଙ୍କ ପ୍ରତି ମୋ ମନ ତ

ପ୍ରୀତିଯୁକ୍ତ ହେଉଛି । ସେମାନଙ୍କ ଚିନ୍ତାରେ ମୁଁ ଦୀର୍ଘ ନିଃଶ୍ୱାସ ତ୍ୟାଗ କରୁଛି ଓ ମୋ ମନ ଅତି ବ୍ୟାକୁଳ ହେଉଛି ।'' ରାଜା ବୈଶ୍ୟଙ୍କ ଠାରୁ ଏହା ଶୁଣି ତାଙ୍କ ମନୋଭାବ ସଙ୍ଗେ ବୈଶ୍ୟଙ୍କ ମନୋଭାବର ମେଳ ହେଇଥିବା ଦେଖି ବୈଶ୍ୟଙ୍କୁ ସଙ୍ଗେ ଘେନି ମୁନିଙ୍କ ନିକଟକୁ ଗଲେ ଓ ସେମାନଙ୍କର ଏହି ମମତାର କାରଣ ମୁନିଙ୍କୁ ପଚାରିଲେ । ମୁନି କହିଲେ - ''ପ୍ରତ୍ୟୁପକାର ଆଶାରେ ଲୋଭବଶତଃ ମନୁଷ୍ୟମାନେ ସନ୍ତାନମାନଙ୍କ ପ୍ରତି ଅନୁରକ୍ତ ହୁଅନ୍ତି । ମନୁଷ୍ୟେତର ଜୀବମାନେ ମଧ୍ୟ ଏ ଅନୁରକ୍ତିରୁ ମୁକ୍ତ ନୁହନ୍ତି । ଭଗବତୀ 'ମହାମାୟା'ଙ୍କ ପ୍ରଭାବରୁ ସେମାନେ ମମତାରୂପ ପାଣି ଭଉଁରୀରେ ଘାଉଁରୀ ଖାଉଥାନ୍ତି । ଏହି 'ମହାମାୟା' ଜୀବମାନଙ୍କ ଠାରୁ ଜବର୍‌ଦସ୍ତି ଝିଙ୍କି ଏହି ମୋହରୂପ ଭଉଁରୀରେ ପକାନ୍ତି । ଏହି ମହାମାୟା ହିଁ ଦେବୀ ଭଗବତୀ ।'' ତତ୍‌ପରେ ରାଜାଙ୍କ ପ୍ରଶ୍ନର ଉତ୍ତରରେ 'ଭଗବତୀଙ୍କ ଚରିତମାନ ମୁନି ବର୍ଣ୍ଣନା କଲେ । ଏହା ହିଁ ଚଣ୍ଡୀ ପୁରାଣ ବର୍ଣ୍ଣିତ ବିଷୟ ।

ଏତେଗୁଡ଼ିଏ ଆପାତତଃ ଅପ୍ରାସଙ୍ଗିକ ବିଷୟର ଅବତାରଣା କରି ପାଠକ-ପାଠିକାମାନଙ୍କର ବହୁମୂଲ୍ୟ ସମୟ ନଷ୍ଟ କଲି ବୋଲି ସେମାନେ ବିରକ୍ତ ହେଉଥିବେ । କିନ୍ତୁ ଏ ପ୍ରସଙ୍ଗ ଉତ୍ଥାପନ କରିବାର ଉଦ୍ଦେଶ୍ୟ ଏହି ଯେ ସନ୍ତାନସନ୍ତତିଙ୍କଠାରୁ ପ୍ରତ୍ୟୁପକାର ପାଇବେ ବୋଲି ଆଶା କରି ପିତାମାତା ସେହି ଲୋଭରେ ସନ୍ତାନସନ୍ତତିଙ୍କୁ ଆଦର ଓ ପାଳନ କରନ୍ତି । ଏ କଥାଟା ମୋ ମନଗଢ଼ା କଥା ନୁହେଁ । ଏହି କଥା ଆପଣମାନଙ୍କୁ ବୁଝାଇ 'ଅଷ୍ଟକୌ ସଲ ନଜିର୍' (Privy Council Ruling) ଦେବା ପାଇଁ ଚଣ୍ଡୀ ପୁରାଣ ବିଷୟ ଏ ପ୍ରସଙ୍ଗରେ ମୋତେ ବାଢ଼ିବାକୁ ପଡ଼ିଲା । ଅତଏବ 'କ୍ଷନ୍ତବ୍ୟୋମେଽପରାଧଃ' ।

ସନ୍ତାନସନ୍ତତିଙ୍କୁ ଲାଳନ ପାଳନ ଓ ଆଦର ସ୍ନେହ ମନୁଷ୍ୟ କରେ କାହିଁକି ? ସନ୍ତାନସନ୍ତତିଙ୍କ ପାଇଁ ବାପା ମା ଏତେ ଦୁଃଖ ଦହଗଞ୍ଜ ଭୋଗ କରନ୍ତି କାହିଁକି ? ଏ ପ୍ରଶ୍ନ ଦ୍ୱୟର ଉତ୍ତର ଏ ସନ୍ଦର୍ଭର ଶିରୋନାମରେ ଉଦ୍ଧୃତ ଢଗରେ ନିହିତ ଅଛି । ସନ୍ତାନକୁ ଚାହିଁ ମାତା ପିତା ମୁହଁରେ ନ କହନ୍ତୁ ପଛକେ, ମନେ ମନେ ଗୁଣି ହେଉ ଥାଆନ୍ତି - 'ତୁ ଦଉଥିବୁ, ମୁଁ ଖାଉଥିବି, ତୋ ସୁନ୍ଦର ବଦନ ଚାହୁଁଥିବି' । ଏହି ଆଶା-ପ୍ରଣୋଦିତ ମାତା-ପିତାଙ୍କୁ ପୁତ୍ରଗାତ୍ରସ୍ୟ ସଂସ୍ପର୍ଶଃଚନ୍ଦନାତ୍ ଅଭିରିଚ୍ୟତେ' (ଅର୍ଥାତ୍ ପୁଅର ଦେହ ବାପମାଆଙ୍କୁ ଚନ୍ଦନଠାରୁ ବଳି ସୁଖସ୍ପର୍ଶ ହୁଏ) । ଯେଉଁ ପୁଅ ବାପ-ମାଙ୍କୁ ପାଳିଲା, ବାପ-ମାଙ୍କର ସେବା କଲା ସେ ପୁଅ ହେଲା ସୁପୁତ୍ର ବା କୁଳନନ୍ଦନ ଯେ ବାପ-ମାଙ୍କୁ ନ ପାଳିଲା ସେ ହେଲା କୁପୁତ୍ର ବା 'ଘୋଡ଼ାମୁହାଁ' ବା 'ଫୁଲୁଫୁଲାମୁହାଁ' । ଏଥିପାଇଁ ଲୋକେ କହନ୍ତି ''କୁଳକ୍ଷୟ ବେଳକୁ ଘୋଡ଼ାମୁହାଁ ପୁଅ ଜାତ ।''

ଆପଣମାନେ ସଂସାରର ସବୁ କ୍ଷେତ୍ରରେ, ସବୁ ପରିବାରରେ, ସବୁ ଇଲାକାରେ ଟିକିଏ ତଳେଇ କରି ନିରିଖନ୍ତୁ; ଦେଖିବେ ଯେ, ରାଜାଙ୍କ ପ୍ରାସାଦଠାରୁ ରଙ୍କର ପତର କୁଡ଼ିଆ ପର୍ଯ୍ୟନ୍ତ, ପ୍ରିଭି କାଉନସିଲ ଠାରୁ ଗ୍ରାମ ପଞ୍ଚାୟତ ପର୍ଯ୍ୟନ୍ତ, ପାର୍ଲିଆମେଣ୍ଟ ଠାରୁ

ଚଉକିଦାରି ୟୁନିଅନ୍ ପର୍ଯ୍ୟନ୍ତ, ବିଶ୍ୱଭାରତୀ ଠାରୁ ପ୍ରାଇମେରୀ ସ୍କୁଲ ପର୍ଯ୍ୟନ୍ତ, ଗୁରୁକୁଳ ଠାରୁ ଗାଁ ଚାହାଳି ପର୍ଯ୍ୟନ୍ତ, ଲାଟସଭା ଠାରୁ ଜାତିଆଣ ସଭା ପର୍ଯ୍ୟନ୍ତ ସବୁଠାରେ ଲାଗିଛି ଏହି 'ପେଟ ପାଇଁ ନାଟ' । ଏହି ପେଟ ପାଇଁ ଲାଗିଥିବା 'ନାଟ'କୁ ଲକ୍ଷ୍ୟ କରି ପୁରୀ ଜିଲ୍ଲା ଗହାଙ୍ଗ ଶାସନମାନଙ୍କ ଗାଆଁ ମାଇପେ ଢଗ ମେଲନ୍ତି - ''ଏହି ପେଟ, ଏହି ପେଟ ଲାଗି ସବୁ ନାଟ, ଏହି ପେଟ ଲାଗି ଧାନ କୁଟ, ଏହି ପେଟ ଲାଗି ବଙ୍ଗଳା ବାଟ, ଏହି ପେଟ ଲାଗି ତିନ୍ତୁଳି ଛାଟ,ଏହି ପେଟ ଲାଗି ଅଇଁଠା ଚାଟ ଇତ୍ୟାଦି ଇତ୍ୟାଦି'' । ତୁମେ ମୋତେ ଦେଉଥିବା ଯାକେ, ତୁମ ଦାନା ମୋ ପେଟରେ ପଡୁଥିବା ଯାକେ, ତୁମ କନା ମୋ ପିଠିରେ ଲାଗୁଥିବା ଯାକେ, ତୁମ ଧନ ମୋ ଅଣ୍ଟାରେ ଖୋଷା ହେଉଥିବା ଯାକେ ତୁମେ ମୋର 'ପ୍ରିୟବନ୍ଧୁ', ତୁମ ମୁହଁ ମୋ ଆଖିରେ 'ଚନ୍ଦ୍ର ବଦନ । ତୁମର ଏ 'ଦେବା' କଥାଟି ବା ତହିଁର ଆଶା ବନ୍ଦ ହେବାକ୍ଷଣି ତୁମେ ହେଲ ମୋର 'ଦୁଷ୍‌ମନ୍' । ତୁମ ମୁହଁ ମୋ ଆଖିରେ ହେଲା, 'ଫୁଲୁଫୁଲା ମୁହଁ' । ମଣିଷ ଗଛଟିଏ ଲଗାଏ, ତାକୁ ଖୁବ୍ ଯତ୍ନରେ ବଢ଼ାଏ, ମୁଣ୍ଡ ଝାଳ ତୁଣ୍ଡକୁ ବୁହାଇ ଗଛ ମୂଳେ ପାଣି ଦିଏ, ତା ତାଳୁଠାରୁ ତଳିପା ପର୍ଯ୍ୟନ୍ତ ସେ ଗଛର ସେବାରେ ଖଟିଥାଏ । ମନୁଷ୍ୟ ଏ ମିହନ୍ତ କରେ କାହିଁକି ? ଗଛରେ ଫୁଲ ଫୁଟିଲେ ବା ଫଳ ଧଇଲେ ମନୁଷ୍ୟ ସବୁ ଦୁଃଖ ପାସୋରି ଯାଏ । ଗଛରେ ଯେବେ ଫୁଲ ବା ଫଳ ନ ଧଇଲା ତେବେ ସେ 'ଅଣ୍ଡିରା ଗଛ'ର ମୁହଁ ଚାହିଁ ଯୋଗାଏ ନାହିଁ । ଏ ସନ୍ଦର୍ଭର ଶିରୋଭାଗରେ ଉଦ୍ଧୃତ ଢଗର ମୂଳରେ ଏହି ସତ୍ୟ ହିଁ ନିହିତ ଅଛି । ଯେ ମୋତେ ଦେଲା ତା ପ୍ରଶଂସା ମୋ ମୁହଁରେ ଅଜସ୍ର ବାହାରେ, ଯେ ନ ଦେଲା ତା ନିନ୍ଦା ଗାଉ ଗାଉ ମୋ ଦିନ ସରେ ନାହିଁ ।

ସବୁ ନିୟମର ନିପାତନ ଅଛି । ଏଥିର ମଧ୍ୟ ନିପାତନ ଅଛି । ନିପାତନ ହେଲା 'ଅକାଳ ଫଳ' । ଅକାଳ ଫଳଟିଏ ଦେଖିଲେ ଲୋକେ ତାକୁ ଭାରି ଆଦର କରନ୍ତି । କିନ୍ତୁ 'ଅକାଳ ଫଳରେ ସଂସାରର ଗୁଜରାନ୍ ମେଣ୍ଟେ ନାହିଁ ।

## ।। ଛଅ ।।

''କହିବି ନାହିଁ, କହିଲେ ଏ ଘରେ ରହିବି ନାହିଁ
ଖଣ୍ଡିଆ ପଥୁରି ଟାଟିକିଳା ମାଡ଼ ନିତି ନିତି ଆଉ ସହିବି ନାହିଁ ।।''

ପାଠକ-ପାଠିକାମାନେ ବୋଧହୁଏ ଜାଣିଛନ୍ତି ଯେ ମୁଁ 'କଳିଷଠା'କୁ ୧୦ ବର୍ଷ ହେଲା ଟପିଲିଣି । ଆପଣମାନେ ବଢ଼ିଆ ହ୍ୱିସ୍କୀ (ବିଲାତି ସୁରା) ବିଜ୍ଞାପନରେ ଦେଖିଥିବେ - "Born in 1793 & still going strong" (ଅର୍ଥାତ୍ ଏ ସୁରାର ଜନ୍ମ ଶହେ ବର୍ଷ ପୂର୍ବେ ହୋଇଥିଲା, ଏହାର ବୟସ ଶହେ ବର୍ଷକୁ ଟପି ଦେଢ଼ଶହ ବର୍ଷରେ ଧାପ ଦେଲାଣି; ତଥାପି ବର୍ତ୍ତମାନ ଏ ଖୁବ୍ ବଳୁଆ ରହିଛି) । ମୋକଥା ସେହି ଭଳି, Born in 1874.

still going strong (ମୋ ଜନ୍ମ ୧୮୭୪ ସାଲରେ, ବର୍ତ୍ତମାନ ମୁଁ ବଳୁଆ ରହିଛି) ମୋର ''ଅଙ୍ଗମ୍ ଗଳିତଂପଳିତଂ ମୁଣ୍ଡଂ, ଦନ୍ତବିହୀନଂ ଯାତୁ ତୁଣ୍ଡମ୍, କରଧୃତ କମ୍ପିତ ଶୋଭିତ ଦଣ୍ଡଂ, ତଦପି ନ ମୁଞ୍ଚତ୍ୟାଶାଭାଣ୍ଡଂ'' (ଅର୍ଥାତ୍ ଅଙ୍ଗଗଳିତ ହେଲାଣି, ମୁଣ୍ଡର କେଶ ଧଳା ହେଲାଣି, ତୁଣ୍ଡରୁ ଦାନ୍ତଯାକ ବିଦାୟ ନେଲେଣି, ହାତ ଥରିଲାଣି, ବାଡ଼ି ଖଣ୍ଡିଏ ନ ଧରିଲେ ଚାଲିପାରୁ ନାହିଁ, ତଥାପି ଆଶା ଛାଡୁ ନାହିଁ) । ଶଙ୍କରାଚାର୍ଯ୍ୟଙ୍କର ଏ ଶ୍ଳୋକର ଶେଷ ଚରଣକୁ 'ତଦପି ନ ମୁଞ୍ଚତି ଲେଖନୀ ଦଣ୍ଡମ୍' (ଅର୍ଥାତ୍ - ତଥାପି ମୋ ହାତରୁ କଲମ ଖସିପଡ଼ି ନାହିଁ) କରି ଆପଣମାନେ ମୋ ପ୍ରସଙ୍ଗରେ ପାଠ କରିବେ । ମୋର ଜଣେ ବାଲ୍ୟସଙ୍ଗୀ ଅଛନ୍ତି, ତାଙ୍କ ହାତ ଥରିଲାଣି, କିନ୍ତୁ ସେ ଅବଧି 'ଲେଖନୀଦଣ୍ଡ' ଛାଡ଼ି ନାହାନ୍ତି । ସାହିତ୍ୟ ସାଧନା କହନ୍ତୁ, ସରସ୍ୱତୀ ସେବା କହନ୍ତୁ, ମୋ ପକ୍ଷରେ ଏହା ଏକ ପ୍ରକାର ମାନସିକ କଣ୍ଡୁ । 'ବସିବା ଠାରୁ କାଶିବା ଭଲ' ଏହି ନ୍ୟାୟରେ ପଶା ତାସ ଖେଳ, ଖୁସିଗପ, ପରଚର୍ଚ୍ଚା (gossip) ଆଦି ଅପେକ୍ଷା କଲମି ଠେଲା ମୋତେ ବେଶି ସୁଖ ଲାଗେ । ମୋ କଲମ ଚାଲିଲା ବେଳେ ଚଇତି ମାସରେ ନୂଆ ଗୁଡ଼ ଖାଇଥିବା ଲୋକଙ୍କ ଅବସ୍ଥା ମାସେ ଖଣ୍ଡକ ପରେ ଯାହା ହୁଏ, ମୋ ଅବସ୍ଥା ସେହିତା ହୁଏ । ସେ ନିଶାରେ ସ୍ଥାନ ଅସ୍ଥାନ, ପାତ୍ର ଅପାତ୍ର, ସମୟ ଅସମୟ, ସବୁ କେଉଁ ଆଡ଼େ ଉଭେଇଯାଏ । ଢେଲାଟା ଲକ୍ଷ୍ୟ ବସ୍ତୁରେ ବାଜୁ ଅବା ନ ବାଜୁ, ସେଥିରେ କେହି ବ୍ୟକ୍ତି ଘାଇଲା ହୁଅନ୍ତୁ କି ନ ହୁଅନ୍ତୁ, ଟେକାଟା ଲକ୍ଷ୍ୟଭ୍ରଷ୍ଟ ହୋଇ ଛିଡ଼ିକି କରି ଆଉ କାହା ଦେହରେ ବାଜୁ କି ନ ବାଜୁ, ଏ ସବୁ ବିଷୟ ପ୍ରତି ମୋର ଖିଆଲ୍ ରହେ ନାହିଁ । ସାଇପଡ଼ିଶାଙ୍କ ପିଠା ଖିଆ ଦେଖି ମୋ ମନ ରବେଇ ଖବେଇ ହୁଏ ଓ ମୁଁ ଘଷିଫଡ଼ାକରେ, ମନର ଓରମାନକୁ ମେଣ୍ଟାଏଁ । ମୋ ହାତରେ ଘଷିଫଡ଼ା ଦେଖି ଯେବେ କେହି ତାକୁ 'ଇଣ୍ଡୁରି ପିଠା' ବୋଲି ଭାବନ୍ତି, ସେଥିପାଇଁ ମୁଁ ଦୋଷୀ ନୁହେଁ । ବିଲାତର Dean Swift (ଡିନ୍ ସ୍ୱିଫ୍ଟ) ବୋଲି ଜଣେ ଲେଖକ ଥିଲେ । ସେ କହିଥିଲେ "If you want to throw a stone, every lane will furnish one." (ଯେବେ ତୁମର କାହାକୁ ଢେଲା ମାରିବାକୁ ଇଚ୍ଛା ହେବ, ତେବେ ଯେକୌଣସିଠାରେ ତୁମ୍ଭଙ୍କୁ ଢେଲାର ଅଭାବ ହେବ ନାହିଁ ।)

ଦିନେ ମୋ ଭଗ୍ନୀପ୍ରତିମା ଜଣେ ବର୍ଷୀୟସୀ କୁମାରୀ ମୋ ପାଖରେ ଆସି ପହଞ୍ଚି ଏକ ସରକାରୀ ବିଭାଗର କର୍ତ୍ତାଙ୍କର ଗୋଟିଏ ସରକାରୀ ଚିଠି ମୋ ଆଗରେ ପେସ୍ କଲେ ଓ ଉକ୍ତ ପତ୍ର ସମ୍ବନ୍ଧେ ମୋର ଲିଖିତ ମତ ଲୋଡ଼ିଲେ । ସେ ଲିଖିତ ମତ ପାଇଁ ମୋ ସଙ୍ଗେ ଭାରି ଅଳି କରିବାରୁ ମୁଁ ମୋ ମତକୁ କଲମ ବନ୍ଦ କରି ତାଙ୍କ ହାତକୁ ଦେଲି । ଦିନାକେତେ ବାଦ କୁମାରୀ ଆସି ମୋତେ କହିଲେ - ''ତୁମ ମତକୁ କର୍ତ୍ତାଙ୍କ ଆଗରେ ପେସ୍ କରିବାରୁ କର୍ତ୍ତା ତାକୁ ପାସଙ୍ଗରେ ପକାଇଲେ ନାହିଁ; କହିଲେ ଯେ ତୁମେ ନିପଟ ଖୋସାମଦିଆ, ଅତଏବ ତୁମ ମତର କିଛି ମୂଲ୍ୟ ନାହିଁ ।'' ପାଠ ତାକୁଛି ସବୁ କହିବ ମରମ କଥା ନ କହିବ । ବିଭାଗୀୟ କର୍ତ୍ତାଙ୍କର ମୋ ପ୍ରତି 'ଖୋସାମଦିଆ' ଉପାଧି

ପ୍ରୟୋଗ କଥାଟା ମୋ ଦେହରେ ଚାଉଁକିନା ବାଜିଗଲା । ଏ କଥା ଶୁଣି କେତେ ଭାବ, କେତେ ବିଭାବ, କେତେ ଅନୁଭାବ, କେତେ ପୁରୋଭାବ, କେତେ ଅଭାବ, କେତେ ସ୍ୱଭାବ ମୋ ମନରେ ଖେଳେଇ ହୋଇଗଲା ଓ ମୋ ମଗଜରେ ନଈ ବଢ଼ି ପାଣି ଭଳି ମାଡ଼ିଯାଇ ଥିବା ଭାବନାର ଢେଉକୁ ପାଠକ-ପାଠିକାଙ୍କ ଆଗରେ ବାଢ଼ିବି ବୋଲି କଲମ ଧଇଲି ।

ଏହି 'ଖୋସାମଦ' ଶବ୍ଦ ଫାର୍ସୀ 'ଖୁସ୍-ଆମଦ' ଶବ୍ଦରୁ ଅପଭ୍ରଷ୍ଟ । ଏ ଶବ୍ଦ ବଙ୍ଗ ଭାଷାରେ 'ତୋଷାମୋଦ, ଆକାରରେ ଅପଭ୍ରଷ୍ଟ ହୋଇଅଛି । 'ଫାର୍ସୀ ଖୁସ-ଆମଦ' ଶବ୍ଦର ଅର୍ଥ ଅନ୍ୟ ବ୍ୟକ୍ତିକୁ ଖୁସି କରିବା ପାଇଁ କରା ହେବା ମିଥ୍ୟା ପ୍ରଶଂସା । ଓଡ଼ିଆ ଭାଷାରେ 'ଖୋସାମଦିଆ' ଶବ୍ଦ ଦୁଇଟି ଅର୍ଥରେ ବ୍ୟବହୃତ ହୁଏ । ଯେଉଁ ବ୍ୟକ୍ତି ଚାଟୁକରେ ସେ ଖୋସାମଦିଆ ଓ ଯେଉଁ ବ୍ୟକ୍ତି ଚାଟୁପ୍ରିୟ ତାକୁ ମଧ ଖୋସାମଦିଆ ବୋଲାଯାଏ । ଅତଏବ ଚାଟୁକାର ଚାଟୁଗ୍ରାହୀ, ଉଭୟ ବ୍ୟକ୍ତିଙ୍କ ପ୍ରତି ଏ ବିଶେଷଣ ଆମ ଭାଷାରେ ଚଳେ । କର୍ତ୍ତା ମୋତେ କେଉଁ ଶ୍ରେଣୀରେ ପକାଇଲେ, ମୁଁ ତାହା ପହିଲେ ଠଉରାଇ ପାରିଲି ନାହିଁ । ବରଞ୍ଚ ମୋ ସଙ୍ଗେ ଉକ୍ତ କର୍ତ୍ତାଙ୍କ ସମ୍ପର୍କିତ ମୁଁ ଏ ଦୁଇ ଅବତାର ଗ୍ରହଣ କରିଛି ବୋଲି ମନେ ପଡ଼ିଲା । ମୁଁ ନିଜେ ଜାଣେ ଯେ କର୍ତ୍ତାଙ୍କର ବହୁତ ଗଲତି ଅଛି । କର୍ତ୍ତା ମୋହକତ ମିଛୁଆ, ପୟୋମୁଖବିଷକୁମ୍ଭ, ଚିକ୍କଣକୁହା । ସେ ଅନେକ ସ୍ଥଳରେ ମିଥ୍ୟା, ଅନୀତି, ଅସତ୍ ଓ ଅଧର୍ମ ଆଚରଣ କରି ଥାଆନ୍ତି, ବା ତହିଁର ପ୍ରଶ୍ରୟ ଦେଇ ଥାଆନ୍ତି । ତାଙ୍କର ଏ ସ୍ୱରୂପ ଜାଣିଶୁଣି ମୁଁ ତାଙ୍କୁ 'ଧର୍ମାବତାର' ବୋଲି ଯେଉଁ ସମ୍ବୋଧନ କରିଛି, ତାହାକୁ ଖୋସାମଦ ଛଡ଼ା ଆଉ କିଛି କୁହାଯାଇ ପାରିବ ନାହିଁ । କର୍ତ୍ତା ମଧ ଜାଣନ୍ତି ଯେ ମୁଁ ଅପଦାର୍ଥ ଓ ଅଯୋଗ୍ୟ ଏବଂ ସେ ମୋ ଆଜ୍ଞାବହ ଭୃତ୍ୟ ନୁହନ୍ତି; କିନ୍ତୁ ସରକାରୀ ଚିଠିକୁ ସେ I beg to remain Sir, "Your most obedient servant (ମହାଶୟ, ମୁଁ ଆପଣଙ୍କର ପରମ ଆଜ୍ଞାକାରୀ ନୌକର ହୋଇ ରହିଛି - ବାକ୍ୟଚୟ ଦ୍ୱାରା ଭଣିତା କରିଥାନ୍ତି । ଏପରି ସ୍ଥଳରେ ତାଙ୍କୁ ଧର୍ମାବତାର' ସମ୍ବୋଧନ କଲାବେଳେ ମୁଁ ହୁଏ ଚାଟୁକାର, ସେ ହୁଅନ୍ତି ଚାଟୁଗ୍ରାହୀ; ମୋର 'ପରମ ଆଜ୍ଞାକାରୀ ନୌକର' ହେଲାବେଳେ ସେ ହୁଅନ୍ତି ଚାଟୁକାର, ମୁଁ ହୁଏଁ ଚାଟୁଗ୍ରାହୀ । ଏପରି ସ୍ଥଳରେ ମୋତେ ଏ ବିଶେଷଣ ଦ୍ୱାରା ଅଳଙ୍କୃତ କରି ସେ ଠିକ୍ କରିଛନ୍ତି ବୋଲି ମନକୁ ବୋଧ ଦେଲି - ମୁଁ କଥାଟାକୁ ଖୁବ୍ ଦୃଢ଼ ଭାବରେ ଚିନ୍ତା କଲି ଓ ଦେଖିଲି ଯେ ଏ ଦୁନିଆରେ ଅଳପ ଅଧିକ ସମସ୍ତେ ଖୋସାମଦ କରନ୍ତି ଓ ଖୋସାମଦ ଶୁଣନ୍ତି । ଭଗବଦ୍ ଗୀତାରେ ବର୍ଣ୍ଣିତ 'ତୁଲ୍ୟ ନିନ୍ଦାସ୍ତୁତି' ବ୍ୟକ୍ତି ସଂସାରରେ ବ୍ୟର୍ଥ, ଏମନ୍ତ କି ନଦାରଦ କହିଲେ ଅତ୍ୟୁକ୍ତି ହେବ ନାହିଁ । ବରଫ ସମସ୍ତଙ୍କୁ ଶୀତଳ ଲାଗେ, ନିଆଁ ସମସ୍ତଙ୍କ ଦିହକୁ ଜାଳିଦିଏ । ପାଠରେ ପଢ଼ିଥାଇଁ ଶାସ୍ତ୍ରରେ ଶୁଣିଥାଇଁ ଯେ ଏପରି ଯୋଗ ସାଧକ ମୁନିଋଷି ଓ ସିଦ୍ଧପୁରୁଷ ଅଛନ୍ତି, ବରଫ ଓ ନିଆଁ ସଂସ୍ପର୍ଶରେ ଯାହାଙ୍କର ସମାନ ଅନୁଭୂତି ହୁଏ । କିନ୍ତୁ ଏପରି ସିଦ୍ଧପୁରୁଷ କର୍ତ୍ତାଙ୍କ ଭଳି ସରକାରୀ ବିଭାଗରେ ହାକିମ ହେବାକୁ ଆସନ୍ତି ନାହିଁ, କିମ୍ବା ମୋ ଭଳି ଅନୁଗ୍ରହ - ଭିକାରି ହୋଇ

କର୍ତ୍ତାଙ୍କ ଘର ଆଡ଼େ ବା ଅଫିସ ଆଡ଼େ ଖଡ଼ା ପହରା ଦେବାକୁ ଆସନ୍ତି ନାହିଁ । ଟିକିଏ ଲକ୍ଷ କଲେ ଦେଖିବା ଯେ ସଂସାରଟା Mutual Flatterin Society (ପରସ୍ପର ଖୋସାମଦିଆ ସଂଘ) ଅଟେ । ମୁଁ ତୁମ୍ଭଙ୍କୁ ଖୋସାମଦ କରୁଛି, ତୁମେ ଉଧାର ମାଣକ ପାଞ୍ଚ ପାଆ ରେଟ୍‌ରେ ମୋତେ ଖୋସାମଦ କରୁଛ । ଏ ସଂସାରରେ ସରକାରୀ ଓ ବେସରକାରୀ, କଂଗ୍ରେସୀ ଓ ବେକଂଗ୍ରେସୀ, ଜମିଦାରି ଓ ମହାଜନି, ରାଜନ୍ୟମଣ୍ଡଳୀ ଓ ପ୍ରଜାମଣ୍ଡଳ, ହାକିମ ଓ ପକ୍ଷ, କମ୍ପାନୀ ଓ ଯୌଥାନୁଷ୍ଠାନ, ସବୁଠାରେ ଖୋସାମଦ ଲାଗିଛି । କାର୍ଯ୍ୟୋଦ୍ଧାର କରିବା ପାଇଁ, ଧନ ପ୍ରାର୍ଥନା କରିବା ପାଇଁ, ଅନୁଗ୍ରହ ଲାଭ କରିବା ପାଇଁ, ଚାକିରି ଖଣ୍ଡେ ପାଇବା ପାଇଁ, ଦାନାପାଣି ଲଭିବା ପାଇଁ ଆମେ ଯାହା ଯାହାଙ୍କ ପାଖରେ ଯାଇ ପହଞ୍ଚୁ ତାଙ୍କୁ ଖୋସାମଦ ନ କଲେ ଆମ କାମ ଫତେ ହୁଏ ନାହିଁ । ମୁଁ ଜାଣୁଛି ଯେ ଅମୁକ ରଜାଟା ନିପଟ ମିଛୁଆ, ପରସ୍ୱାପହାରୀ, ପରଦାରାପହାରୀ ଉତ୍ପୀଡ଼କ, ଆପସୁଆର୍ଥୀ, ଧର୍ମହୀନ, ଅବିଚାରକ, ତଥାପି ସେ ରାଜାଙ୍କ ଶ୍ରୀଛାମୁରେ ଅନୁସରଣିଆ ବା ଉମେଦ୍‌ୱାର୍ ହୋଇ ପହଞ୍ଚିଲା ବେଳେ ତାଙ୍କର ପ୍ରଶଂସା କରିବାକୁ ମୋର ଖୋଲା ମୁହଁ ଯଥେଷ୍ଟ ହୁଏ ନାହିଁ ବୋଲି ମୁଁ ଅବସୋସ କରେଁ । ଏହିପରି ମୋଠାରୁ ଯାହାର କୌଣସି କାମ ହାସଲ କରିବାକୁ ପଡ଼େ ସେ ଜାଣନ୍ତି ଯେ, ମୋ ଦେହରେ ରୁମ ଯେତେ ମୋ ଭିତର ଦୁର୍ଗୁଣ ସେତେ; କେବେ ସୁଦ୍ଧା ସେ ମୋତେ ଗୁଣବାନ୍, ନ୍ୟାୟବନ୍ତ, ଧାର୍ମିକ, ସଚ୍ଚରିତ୍ର ବୋଲି ବର୍ଣ୍ଣନା କରନ୍ତି । ରଜାଙ୍କୁ ତୁମେ ବୋଲି ସମ୍ବୋଧନ ନ କରି 'ଛାମୁ', ବିଚାରପତିଙ୍କୁ ଧର୍ମାବତାର, ହାକିମଙ୍କୁ 'ହଜୁର୍', ଦୁଶ୍ଚରିତ୍ରାଙ୍କୁ ଆଦର୍ଶ ଚରିତ୍ରା ଉତ୍ପୀଡ଼କଙ୍କୁ ଅପତ୍ୟ ନିର୍ବିଶେଷରେ ପ୍ରଜାପାଳକ', ଲକ୍ଷ୍ମୀଛଡ଼ାଙ୍କୁ ଶ୍ରୀମାନ୍ ଓ ଭ୍ରଷ୍ଟାଙ୍କୁ 'ଶ୍ରୀମତୀ' ଆଦି ସମ୍ବୋଧନ ଖୋସାମଦର ଗୋଟିଏ ଗୋଟିଏ ସଂସ୍କରଣ ମାତ୍ର । ''ମୋର ତୁମଙ୍କୁ କହିବାର ବିଷୟ ଏହିକି'' ନ କହି ''ଅଧୀନର ଶ୍ରୀହଜୁରଙ୍କ ଛାମୁରେ ସବିନୟ ନିବେଦନ ଏହି କି'' କହିବା ଖୋସାମଦ ଛଡ଼ା ଆଉ କିଛି ନୁହେଁ । ଦେଖାଯାଏ ଯେ, ସମସ୍ତେ ଅଳ୍ପ ବହୁତ ଆପଣାର ପ୍ରଶଂସା ଶୁଣିବାକୁ ସୁଖ ପାଆନ୍ତି ଓ ଆପଣାର ନିନ୍ଦା ଶୁଣିଲେ ବ୍ୟଥିତ ହୁଅନ୍ତି ଓ ତଳ ପାହ୍ୟାର ଲୋକେ ଉପର ପାହ୍ୟାର ଲୋକଙ୍କୁ ଅଳ୍ପ ବହୁତ ଖୋସାମଦ କରନ୍ତି । ଖୋଦ୍ ଈଶ୍ୱରଙ୍କୁ ମଧ୍ୟ ଖୋସାମଦ କରି ଆମେ ଆମ କାମ ହାସଲ କରିବାକୁ ପାଞ୍ଚ କରୁଁ । ଆମ ବଡ଼-ବଡ଼ୁଆମାନେ କହି ଯାଇଛନ୍ତି ''ସତ୍ୟଂ ବ୍ରୂୟାଦ୍ ପ୍ରିୟଂ ବ୍ରୂୟାଦ୍ ମା ବ୍ରୂୟାଦ୍ ସତ୍ୟ ମପ୍ରିୟଂ'' (ଅର୍ଥାତ୍ ସତ କହିବ, ପ୍ରିୟ କଥା କହିବ, ସତ୍ୟ ଓ ଅପ୍ରିୟ କଥା କହିବ ନାହିଁ) । ଦୁନିଆରେ ସବୁଠାରେ ଅଳ୍ପ ବହୁତ ଏ ଖୋସାମଦର ଖେଳ ଲାଗିଚି । ତେବେ ଏ ମଳିମୁଣ୍ଡିଆ ଉପରେ ଧୋବ-ଧୋବଳିଆ କର୍ତ୍ତାଙ୍କର ଚୋଟ ପଡ଼ିଲା କିଆଁ ? ଏ କଥା ହିଁ ମୁଁ ମନେ ମନେ ବାଣ୍ଟୁଛି ।

ଭଞ୍ଜପ୍ରଦୀପ - ୧୧ଶ ଭାଗ/୪ର୍ଥ ସଂଖ୍ୟା/୧୩୪୯ ସାଲ ।

## ॥ ସାତ ॥

ଭଞ୍ଜ ପ୍ରଦୀପର ସମ୍ପାଦକଙ୍କ ଠାରୁ ଫରମାସ ଆସିଲା, ଆଶ୍ୱିନ ସଂଖ୍ୟା ପାଇଁ ଗୋଟିଏ ସରସ ସନ୍ଦର୍ଭ ଲୋଡ଼ା । ସନ୍ଦର୍ଭ ଲେଖକମାନେ ହେଲେ ସମ୍ପାଦକଙ୍କର ପଡ଼ିଖିଆ ଲାଗୁଆ ମାଲ ଯୋଗାଣିଆ । ଦୁର୍ଗା ପୂଜା ବେଳେ ଆମ ଭଳି ମଳିମୁଣ୍ଡିଆଙ୍କ ଛଡ଼ା ଅଘର ଦୁଆରୀ ରସ-ରହସ୍ୟର ହରିଲୁଟ୍ ହୁଏ । ଯାହାଙ୍କର ଶକ୍ତି ଥାଏ ସେମାନେ ପାଟ ପୀତାମ୍ବରୀ, ସାଲଦୋସାଲା, ଶାନ୍ତିପୁରୀ, ଫରାସିଡାଙ୍ଗା, ଢାକାଇ, ମାଣିଆବନ୍ଧି, ରଣପୁରୀ, ସେଲମ୍ ଆଦି ମହାର୍ହ ନବବସ୍ତ୍ର ପରିଧାନ କରି ମନର ସାଧ ମେଣ୍ଟାନ୍ତି । ଯାହାଙ୍କର ସେଥିପାଇଁ କମର ଜୋର୍ ନ ଥାଏ ସେମାନେ ପେଡ଼ି-ଲୁଗା ବାହାର କରନ୍ତି । ଯାହାଙ୍କର ପେଡ଼ିଲୁଗା ନ ଥାଏ ସେମାନେ ଧୋବା ପ୍ରସାଦରୁ ବାସିଧୋବ ଲୁଗାରେ ଓରମାନ ମେଣ୍ଟାନ୍ତି ଓ ଯାହାଙ୍କର ହଜିଗଲେ ଖୋଜିବାକୁ ନାହିଁ, ଛିଣ୍ଡିଗଲେ ଗଇଣ୍ଠେଇବାକୁ ନାହିଁ ସେମାନେ ହାଜୀ ଅଲତାଫ୍ ମିଆଁଙ୍କ ଦୋକାନରୁ ପଇସିକିଆ ଲୁଗାକଚା ସାବିନି ଆଣି ତତ୍‌ପ୍ରସାଦାତ୍ ଖଦଡ଼ ପଖାଳକରା ଲୁଗାକୁ କାଚିକୁଚି ସଫା କରି 'ଦେବୀ' ଦେଖି ବାହାରନ୍ତି । ବାବୁଭୟା ଅତର, ଏସେନ୍‌ସ, ବାବୁଆଣୀ ଓ (ଭୟାଣୀ ଶବ୍ଦ ଓଡ଼ିଆରେ ନ ଥିବାରୁ) ଠାକୁରାଣୀମାନେ ସ୍ନୋ, ପାଉଡର, ରୁଜ୍ ବୋଲି ହୋଇ ତାଙ୍କ ସଉକୀ ମେଣ୍ଟାନ୍ତି, ମୂଲିଆ ନଡ଼ିଆତେଲ ଓ ମୂଲିଆଣୀ ଚୁଆ, ମଥାଘସା ଓ ମେଥିଚୂନା ଲଗାଇ ଦଶହରା ସମୟରେ ତା ବେଶର ସାଧ ମେଣ୍ଟାଏ । ଏ ସମୟରେ ଜାଗିରିଖିଆ, ଦରମାଖିଆ, ପଡ଼ିଖିଆ, ସିଧା ସଞ୍ଚାଖିଆ, ହେତାଖିଆ ଖିଦ୍‌ମଦ୍‌ଗାର ଓ କାରିଗରମାନେ ଆପଣା ଆପଣା ଆଶ୍ରୟଦାତାମାନଙ୍କୁ ସ୍ୱହସ୍ତରଚିତ ସଉକୀ ଜିନିଷ ଭେଟନ୍ତି; ଗଉଡ଼ ବସାଦହି ଭେଟନ୍ତି ଓ ଭଣ୍ଡାରି ତ ଆଉ କିଛି ପାଆନ୍ତି ନାହିଁ, ପାନଖିଲମାନ ଭାଙ୍ଗି ଖାଉନ୍ଦ ଖାଉନ୍ଦାଣୀମାନଙ୍କ ପାଖରେ ଭେଟି ଦିଅନ୍ତି । ଦୁଧ ଘିଅ ଲାଗୁଆ ଦେଲାବାଲାମାନଙ୍କୁ ଖାଉନ୍ଦମାନଙ୍କର ହୁକୁମ ହୋଇଥାଏ ଦୁର୍ଗାପୂଜାକୁ ନିରୋତା ଓଖର (ଗୋ-କ୍ଷୀର) ଓ ଅସଲି ଗୁଆଘିଅ ଯୋଗାଇବାକୁ । ବଡ଼ ଲୋକଙ୍କୁ ଉତ୍ତର ନାହିଁ, କି ସରଗକୁ ନିଶୁଣି ନାହିଁ, ଏହି ନଜିର ଅନୁସାରେ ଲାଗୁଆ ହେଲାବାଲା ଖାଉନ୍ଦଙ୍କ କୁଶାଗ୍ରୀୟା ବୁଦ୍ଧିକୁ ବାହାଦୁରି ନ ଦେଇ ରହିପାରି ନାହିଁ । ସେ ବିଚାରେ ଆଜି ଦଶହରା ଘଡ଼ି ହେଲାବୋଲି ନିରୋତା କ୍ଷୀର ଓ ଖାଣ୍ଟି ଗୁଆଘିଅ ଦେବାକୁ ଖାଉନ୍ଦ ହୁକୁମ କରୁଛନ୍ତି, ଏଥିର ମର୍ମ ଏହି ଯେ, ବର୍ଷକର ୩୬୪ ଦିନ ଯାକ ମୁଁ ଯାଙ୍କୁ ଯାହା ଦେଉଥିଲି ତାହା ନିରୋଳା ଓ ଖାଣ୍ଟି ମାଲ ନୁହେଁ, ଯେବେ ନିତି ମୁଁ ଯାଙ୍କୁ ଯେଉଁ ମାଲ ଦିଏ ତା ଯେବେ ନିରୋଳା ଓ ଖାଣ୍ଟି ମାଲ ହୋଇ ଥାଆନ୍ତା, ତେବେ ଆଜି କିଆଁ ନିରୋଳା ଓ ଖାଣ୍ଟି ମାଲ ପାଇଁ ଏ ଫରମାସ ଦିଅନ୍ତେ ? ଅତଏବ ଏ ନିଶ୍ଚେ ଓଲୁ ଓ ବେକୁବ୍ ଓ ଏହାଙ୍କୁ ଚାହିଁଜଳକା ବନେଇ ଆମେ ଆଠକାଳି ବାର ମାସ ଯାଙ୍କୁ ଯେଉଁ ପାଣିମିଶା କ୍ଷୀରରେ ଟିକିଏ ଘିଅ ଓ

ଚର୍ବିମିଶା ଗୁଆଘିଅ ଦେଉଁ, ଦଶରା ଦିନ ମଧ ସେହିତା ଦେବୁଁ, କିନ୍ତୁ ସାଆନ୍ତଙ୍କ ମନ ମନେଇବା ଲାଗି ଟିକିଏ ପାଲୁଅ ଚୂନା ଓ ଘିଅରେ ଟିକିଏ ହଳଦୀଗୁଣ୍ଡ ମିଶେଇ ଦେବୁଁ । ଏ ଉଦାହରଣଟା ଦେବାର ମତଲବ୍ ଏହି ଯେ ସମ୍ପାଦକଙ୍କର ଆଶ୍ୱିନ ସଂଖ୍ୟା ପାଇଁ 'ଉନ୍ଦାମାଲ୍' ତଲବ ସତ୍ତ୍ୱେ ତାଙ୍କ ପଡ଼ିଶା ଆଙ୍କ ମଗଜ ଭଣ୍ଡାରରେ ଯାହା ଅଛି, ତାହା ସେ ଅବଶ୍ୟ ଯୋଗାଇବେ, ଅସଲ ମାଲ ଫରମାସ ନ ହେଲେ ମଧ ଯୋଗାନ୍ତେ । ଯେ ହେଉ, ପୁଣ୍ୟ ପର୍ବ-ଘଡ଼ିରେ ସମ୍ପାଦକଙ୍କର ତଲବ କରିବା ଅଧିକାରଟା ସେ ଛାଡ଼ନ୍ତେ କିଆଁ ?

ମାଲର ମଛା ଦେଖି ଆଜ୍ଞା ହୁଅନ୍ତୁ -

ଶାଶୂ ମାରୁଥାଏ ବୋହୂକୁ;

ବୋହୂ ଛାର ହୋଇ କାହାକୁ ମାରିବ ? ମାରୁଥାଏ ଚୁଲି ମୁହଁକୁ ।

ଏ ଢଗଟି ଅଚ୍ଛ ବହୁତ ସମସ୍ତେ ଶୁଣିଥାଇଁ ଓ ଶୁଣିବା ଲୋକଙ୍କ ମଧରୁ ପନ୍ଦର ପଣ ବ୍ୟକ୍ତିଗତ ଅନୁଭବ କରିଥାଇଁ । କଚେରିରେ ନିମ୍ନପାହ୍ୟା (ministerial service)ରେ କାମ କରୁଥିବା ଅମଲାମାନଙ୍କ ଉପରେ ସେମାନଙ୍କ ଉପରିସ୍ଥ ହାକିମଙ୍କର ଯେଉଁ ଦିନ ବେଶି କୋଡ଼ମାଡ଼ ହୁଏ, ସେ ଦିନ ସେମାନେ 'ରାଜକର୍ମ'ରେ ଏହି ସ୍ୱତଃସିଦ୍ଧ ମୀମାଂସାରେ ଉପନୀତ ହୁଅନ୍ତି ଯେ, ଆଜି ହାକିମ ତାଙ୍କ ଉପରିସ୍ଥ ହାକିମଙ୍କ ଠାରୁ ଚଉରସ ରଗଡ଼ଟାଏ ପାଇଛନ୍ତି; ନଚେତ ଅଙ୍କଲକ୍ଷ୍ମୀଙ୍କ ଶ୍ରୀହସ୍ତାଳଙ୍କରୀ ଝାଡୁ ମୁଠା ବା ଖଡୁ ସଙ୍ଗେ ହାକିମଙ୍କର ଔର୍ଦ୍ଧ୍ୱଦୈହିକ ସମ୍ପର୍କ ଘଟିଅଛି । ଏହି ସ୍ୱତଃସିଦ୍ଧରେ ଉପନୀତ ହୋଇ ଅମଲାମାନେ ଉପରିସ୍ଥ ହାକିମଙ୍କ ଲୋକଙ୍କୁ ସମ୍ଭାଳି ନିଅନ୍ତି । ଇସ୍କୁଲର ନିମ୍ନତର ଶିକ୍ଷକମାନେ ହେଡ଼ମାଷ୍ଟରଙ୍କ ଗର୍ଜନ ଘାତ ଯେଉଁ ଦିନ ଶୁଣନ୍ତି ବା ଦେଖନ୍ତି ସେ ଦିନ ସ୍ୱତଃସିଦ୍ଧ କରିନିଅନ୍ତି ଯେ, ଆଜି ହେଡ଼ମାଷ୍ଟର ତାଙ୍କ ସରକାରୀ ମାହୁନ୍ତ (ଡାଇରେକ୍ଟର, ଇନ୍ସପେକ୍ଟର ଆଦି)ଙ୍କଠାରୁ ବା ବେସରକାରୀ ମାହୁନ୍ତାଣୀଙ୍କ ଠାରୁ ଚଉରସିଆ ଆଙ୍କୁଶା କେଞ୍ଚାଟାଏ ପାଇଛନ୍ତି । କ୍ଲାସ ମାଷ୍ଟରଙ୍କର ଯେଉଁ ଦିନ ଛାତ୍ରମାନଙ୍କ ଉପରେ ଖୁବ୍ ଜୋର୍ ଘାତ ହୁଏ, ସେ ଦିନ ପିଲାମାନେ ସ୍ୱତଃସିଦ୍ଧ କରି ନିଅନ୍ତି ଯେ, ହେଡ଼ମାଷ୍ଟରଙ୍କଠାରୁ ଆମ କ୍ଲାସ ମାଷ୍ଟରେ କିଛି ଉତ୍ତମ ମଧ୍ୟମ ପାଇଛନ୍ତି ବା ଘରେ ଗୃହଦେବତାଙ୍କ ନୈବେଦ୍ୟ ସମର୍ପଣରେ କିଛି ଗଫିଲତି ଘଟିଛି । ଓକିଲମାନେ ଯେଉଁ ଦିନ ବିଚାରପତିଙ୍କ ଠାରୁ ପଦେ ଅଧେ କଡ଼ା ବଚନିକା ଶୁଣି ଥାଆନ୍ତି, ସେଦିନ ସେମାନେ ଘରକୁ ଆସି ମକେଲଙ୍କ ଉପରେ ତୁହେ ରବେଇ ଖବେଇ ହୋଇ ମନର ଓରମାନ ମେଣ୍ଟାନ୍ତି । ଏହିପରି ଉପର ପାହ୍ୟାର ଲୋକେ ତାଙ୍କ ତଳ ପାହ୍ୟାର ଲୋକଙ୍କ ଉପରେ ମାଡ଼ ଚଢ଼ାନ୍ତି ଓ ଏ ମାଡ଼ର ଦରଜ ମେଣ୍ଟାଇବାକୁ ତଳ ପାହ୍ୟାର ଲୋକେ ତାଙ୍କ ତଳ ପାହ୍ୟା ଲୋକଙ୍କୁ ଗୋଗଛ ବାଡ଼ିଆ କରନ୍ତି ।

ଏ ଯେଉଁ ପ୍ରବଚନଟି ଏ ସନ୍ଦର୍ଭର ଶିରୋନାମରେ ଉଦ୍ଧୃତ ହୋଇଛି ତାହା ଆଧୁନିକ ସଭ୍ୟତାଲୋକୋଦ୍ଭାସିତ ପାଠକପାଠିକାମାନେ ହଠାତ୍ ହୃଦୟଙ୍ଗମ କରିପାରିବେ ନାହିଁ । ଶାଶୂମାନଙ୍କ ବୋହୂକୁ ମାଡ଼ ମାରିବା ଯୁଗ ଆଉ ନାହିଁ ଓ ବୋହୂମାନଙ୍କର ଚୁଲିମୁହଁ ସଙ୍ଗେ ଅଚ୍ଛେଦ୍ୟ ସମ୍ବନ୍ଧର ଯୁଗ ଗଲାଣି । ଆଧୁନିକ ଯୁଗର ଶାଶୂ ବୋହୂକୁ ମାଡ଼ ମାରିବା ତ ଦୂରର କଥା, ସେମାନେ ବଧୂମାନଙ୍କର ଆଜ୍ଞାବହା କିଙ୍କରୀ । ଗୃହର ସବୁ ଆଡ଼କି ପାଇଟି ତୁଲାନ୍ତି ଶାଶୂମାନେ ଓ ଏପରି ଶ୍ରମର ମୂଲସ୍ୱରୂପ ପୁଅବୋହୂଙ୍କ ଠାରୁ ମୁଠିଏ ଖାଇବାକୁ ଓ ଖଣ୍ଡିଏ ପିନ୍ଧିବାକୁ ପାଆନ୍ତି । ଯେଉଁ ସସ୍ତ୍ରୀକ ବାବୁଙ୍କର ପୂଜାହାରୀ ପୋଷିବାର ଶକ୍ତି ନ ଥାଏ, ତାଙ୍କ ପାକ ବିଧି ମଧ ମାତୃଦେବୀଙ୍କ ଦ୍ୱାରା ସମାହିତ ହୁଏ । ନାଟକ ଉପନ୍ୟାସ ପଢ଼ିବା, ସିନେମା, ବାୟୋସ୍କୋପ୍, ଥିଏଟର ଦେଖିବା, ପ୍ରତିବେଶିନୀ ବାନ୍ଧବୀମାନଙ୍କୁ ଶଙ୍ଖୁଳିବା ଆଦି ଝଞ୍ଜଟରୁ ଯେବେ ବୋହୂଙ୍କୁ ଫୁରସେଦ୍ ମିଳେ, ତେବେ ସେ ସମୟତକ ବେଶ ପ୍ରସାଧନାଦି କର୍ମକୁ ନିଅଣ୍ଟ; ଏପରି ସ୍ଥଳରେ ଚୁଲି ମୁଣ୍ଡକୁ ଯିବାକୁ ତାଙ୍କୁ ସମୟ କାହିଁ ? ଏପରି ଘଟନା ମଧ ଦେଖା ଯାଇଛି ଯେ ଶାଶୂ ନ ଥିବା ପରିବାରର ଶିକ୍ଷିତା ବଧୂ ସଭା, ସମିତି, ସଂଘ, ସମାଜ, ସ୍ୱେଚ୍ଛାସେବିକା ଅନୁଷ୍ଠାନମାନଙ୍କରେ ଯୋଗ ଦେବାକୁ ଯାଆନ୍ତି ଓ ସ୍ୱାମୀ ପାଚକ ଅବତାର ଗ୍ରହଣ କରି ବଧୂଙ୍କର ପ୍ରତ୍ୟାଗମନ ବେଳକୁ ତାଙ୍କ ପାଇଁ ରୁଚିକର ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟର ବ୍ୟବସ୍ଥା କରିବାରେ ଲାଗି ଥାନ୍ତି । ବହିର୍ଜଗତରୁ ପ୍ରତ୍ୟାଗତା ବଧୂ ସ୍ୱାମୀ ପକ୍ୱ ଖାଦ୍ୟାଦିର ସଦ୍‌ବ୍ୟବହାର କରନ୍ତି ଓ ଯେବେ ଖାଦ୍ୟପାକରେ କିଛି ତ୍ରୁଟି ଘଟିଥାଏ, ତେବେ ସ୍ୱାମୀଙ୍କୁ ସେ ରାତିକ 'ଶନି-ସପ୍ତା' ଦଶା ପଡ଼େ ଓ ରାତ୍ରି ତମାମ 'ଦେହି ପଦପଲ୍ଲବମୁଦାରଂ' କରୁ କରୁ 'ଚରଣାୟୁଧବୃନ୍ଦଙ୍କ ରଟିବା' ସମୟ ଉପସ୍ଥିତ ହୋଇଯାଏ ।

ଏ ଉଦ୍ଧୃତ ପ୍ରବଚନ ଯେଉଁ ସମୟର ଦୈନନ୍ଦିନ ଘଟନା ଥିଲା, ସେ ସମୟର ସମାଜ ଆଜି ଆଉ ନାହିଁ । ଶତାବ୍ଦୀ କଥା ଦୂରେ ଥାଉ, ୬୦ ବର୍ଷ ତଳେ ଆମ ଭଳି ମଧ୍ୟବିତ୍ତଙ୍କ ପାରିବାରିକ ଆବହାଓ୍ୱା ଯାହା ଥିଲା, ଆଜି ତାହା ନାହିଁ । ସେ ସମୟରେ ଶାଶୂଙ୍କଠାରୁ ବୋହୂଙ୍କର ମାଡ଼ଖାଇବା କଥା ନିତ୍ୟ ଘଟନା ଥିଲା । ବିଶେଷତଃ ବ୍ରାହ୍ମଣ ଓ କରଣ ପରିବାରର ବଧୂମାନଙ୍କ ଦୁର୍ଦ୍ଦଶା କହିଲେ ସରିବ ନାହିଁ । ଲେଖକ ସ୍ୱୟଂ ୬୦ ବର୍ଷ ତଳେ ଏକାଧିକ ପରିବାରରେ ବୋହୂମାନଙ୍କ ହୀନ ଅବସ୍ଥା ଦେଖିଛି । ବୋହୂ ବେଚାରୀ ଶାଶୂ ଘରେ ପାଦ ଦେବା ମାନେ ଶାଶୂ, ନଣନ୍ଦ, ସାଇମାଇପେ, ସାଇ ପିଲାଏ ସମସ୍ତେ ତା ଉପରେ ଅତ୍ୟାଚାର କରୁଥିଲେ । ରାତି ନ ପାହୁଣୁ ଉଠି ଘରର 'ବାସି ଆଡ଼ତି' (ଘରଦ୍ୱାର ଅଗଣା ଓଳାଇବା, ଲିପାପୋଛା କରିବା, ବାସନ ଧୋଇବା ଆଦି) ସାରି ଗ୍ରାମ ପୋଖରୀରେ ଗାଧୋଇ ଘରେ ଆସି ପହଞ୍ଚିବା ବେଳକୁ କୁଆ ବୋବାଇ ନ ଥିବ । ତାପରେ ଘରକୁ ଆସି ପାଗହାଣ୍ଡି ଧୂଆଧୋଇ କରି, ଚୁଲି

ଲିପାପୋଛା କରି, ଚୁଲିରେ କୁହୁଳା ପକାଇ ଶାଶୂଙ୍କ ପ୍ରାତଃଭୋଜନ (ପଖାଳ ଭୋଜନ) ପାଇଁ ଶାଗ ଖରଡ଼ା, ସନ୍ତୁଳା, ବଡ଼ି ଫୁଲା ଆଦି କରିବାକୁ ହେବ । ଶାଶୂଙ୍କ ପାଇଁ ଦାନ୍ତକାଠି ପାଣି ସଜାଇ କରି ରଖିବାକୁ ହେବ । ତା ପରେ ପରିବାରୀୟ ବ୍ୟକ୍ତିମାନଙ୍କର ପୂର୍ବାହ୍ନ ଭୋଜନାର୍ଥେ ରନ୍ଧନ କର୍ମ କରିବାକୁ ହେବ । ଇତି ମଧ୍ୟରେ ଶଶୁରଙ୍କର ଗାଧୋଇ ଆସିବା ବେଳକୁ ଠାକୁର ଘରର ବାସନକୁସନ ମାଜି, ଠାକୁରଘର ଲିପାପୋଛା କରି ଶଶୁରଙ୍କର ପୂଜାଆହ୍ନିକ ପାଇଁ ଚନ୍ଦନାଦି ଘୋରି ରଖିବାକୁ ହେବ, ଶଶୁରଙ୍କର ମଠାକୁ କୁଞ୍ଚ କରି ସଜାଡ଼ି ରଖିବାକୁ ହେବ । ଶଶୁରଙ୍କ ଭୋଜନ ପାଇଁ 'ଠାଆ' କରିବାକୁ ହେବ, ଶଶୁରଙ୍କ ଆଞ୍ଚୋଇବା ପାଇଁ ଢାଳ, ଗାମୁଛା, ଦାନ୍ତଖୁଣ୍ଟା ଓ ପାନଖିଲ ସଜାଡ଼ି କରି ଯଥାସ୍ଥାନରେ ରଖିବାକୁ ହେବ ଓ ପୂର୍ବାହ୍ନରେ ପରିବାରର ଅନ୍ୟ ସମସ୍ତ ବ୍ୟକ୍ତିଙ୍କ ଭୋଜନାନ୍ତେ ଯାହା ଖାଦ୍ୟ ବଳିଥିବ, ସେଥିରେ ଉଦର ତୁଷ୍ଟି କରିବାକୁ ହେବ । ଉପର ଓଳି ଶାଶୂଙ୍କର ଓ ନିଜ ଗୃହକୁ ସମାଗତା ସାଇର ମାନ୍ୟା ସ୍ତ୍ରୀଲୋକମାନଙ୍କର ଗୋଡ଼ ଘଷିବାକୁ ହେବ । ପୁଣି ଅପରାହ୍ନରେ ପରିବାରର ରାତ୍ରିଭୋଜନ ପାଇଁ ରନ୍ଧନ କରିବାକୁ ହେବ ଓ ସମସ୍ତେ ଭୋଜନ କରିସାରିଲେ ଯାହା ଖାଦ୍ୟ ବଳିଥିବ ସେଥିରେ ଉଦର ପୂର୍ତ୍ତି କରି ଶାଶୂଙ୍କ ପାଦ ସେବା କରିବାକୁ ହେବ ଓ ଶାଶୂଙ୍କଠାରୁ ଆଦେଶ ନ ମିଳିବା ପର୍ଯ୍ୟନ୍ତ ପାଦମର୍ଦ୍ଦନରୁ ବିରତ ହେବ ନାହିଁ । ଶାଶୂଙ୍କଠାରୁ ଅନୁମତି ମିଳିଲେ ପାଦମର୍ଦ୍ଦନରୁ ଅବ୍ୟାହତି ପାଇ ନିର୍ଜନ ରାତି (ଅନ୍ତତଃ ରାତି ୧୨ଟା ପରେ) ପରିବାରର ଅନ୍ୟ କେହି ଯେଉଁପରି ଏଥିର ସୁରାକ୍ ନ ପାଆନ୍ତି, ସେହିପରି ଲୁଚିଛପି ସ୍ୱାମୀଙ୍କ ଶୟନାଗାରକୁ ଯାଇ ଦାମ୍ପତ୍ୟ କର୍ତ୍ତବ୍ୟ ସମାହିତ କରିବାକୁ ହେବ । ବୋହୂ ସିଧା ହୋଇ ଠିଆ ହେବ ନାହିଁ, ମୁହଁରୁ ଓଢ଼ଣା କାଢ଼ିବ ନାହିଁ, ପାଟିକରି କଥା କହିବ ନାହିଁ । 'ଚୁଁ' କରି ବା 'ଠାର' ଦ୍ୱାରା ପରିବାରର ଅନ୍ୟ ବ୍ୟକ୍ତିମାନଙ୍କଠାରେ ମନୋଭାବ ପ୍ରକାଶ କରିବ, ପୁରୁଷ ପୁଅଙ୍କୁ 'ମାଇନ' କରିବ । ଦିନବେଳେ ଲଘୁଶଙ୍କା ଓ ଗୁରୁଶଙ୍କା ହେଲେ ମଳମୂତ୍ର ବେଗକୁ ରାତି ଅନ୍ଧାର ପର୍ଯ୍ୟନ୍ତ ଅଟକାଇ ରଖିବାକୁ ହେବ । ଏସବୁ ଘର ଭିତରର ଅତ୍ୟାଚାର ଉପରେ ସାଇପଡ଼ିଶା ସ୍ତ୍ରୀଲୋକମାନଙ୍କର ଓ ଅଧିକାଂଶ ସ୍ଥଳରେ ଶାଶୂଙ୍କର କଠୋର ସମାଲୋଚନା ଓ ବାଗ୍‌ବାଣ ସହିବାକୁ ହେବ ଓ କେତେ ଭାଗ୍ୟବତୀ ବୋହୂଙ୍କ ଭାଗ୍ୟରେ ଶାଶୂଙ୍କଠାରୁ ଦିହରେ ମୁଣ୍ଡରେ ମଧ କିଛି ମିଳୁ ଥିଲା । ସସ୍ତ୍ରୀକ ବିଦେଶବାସ ସେହି ସମୟରେ ସମାଜରେ ନିଷିଦ୍ଧ ଥିବାରୁ ସ୍ୱାମୀମାନେ ଅର୍ଜନ କରିବାକୁ ଅଧିକାଂଶ ସମୟ ବିଦେଶରେ ରହୁଥିଲେ; କେବେ କେବେ ଘରକୁ ଆସିଲେ ତାଙ୍କ କାନରେ ସବୁ ଅତ୍ୟାଚାର ପକାଇବାକୁ ବୋହୂମାନେ ସାହସ କରୁ ନ ଥିଲେ; କାନରେ ପକାଇଲେ ମଧ ସ୍ୱାମୀମାନେ ତହିଁର ପ୍ରତିକାର କରୁ ନ ଥିଲେ ବା କରିବାକୁ ଅସମର୍ଥ

ଥିଲେ । ସ୍ୱାମୀଙ୍କ ଆଗେ ଫେରାଦ ହେବା କଥା ଯେବେ ଶାଶୂ ଘୁଣାକ୍ଷରରେ ଜାଣିପାରୁ ଥିଲେ, ତେବେ ପୁଅମାନେ ବିଦେଶକୁ ଯିବା ପରେ ବୋହୂଙ୍କ ଉପରେ କଠୋର ଦଣ୍ଡଭୋଗ ବିଧାନ ହେଉଥିଲା । ବାପଘରୁ ଆସିଥିବା ଭାର ବୋଝରେ କିଛି ତ୍ରୁଟି ଲକ୍ଷିତ ହେଲେ ସେ ତ୍ରୁଟି ପାଇଁ କୋଡ଼ମାଡ଼ ବୋହୂ ଉପରେ ପଡୁଥିଲା । ସେ କାଳର ସମାଜରେ ଶାଶୂମାନଙ୍କର'ବୋହୂତୋହୀ' ପଣ ଥିଲା ବିଧି ଓ 'ବୋହୂ ସୁହାଗୀ' ପଣ ଥିଲା ନିପାତନ ।

ଏସବୁ ଏଠାରେ କହିବାର ଉଦ୍ଦେଶ୍ୟ ଏହିକି, କହିବାକୁ ଗଲେ ଚୁଲିମୁଣ୍ଡ ହିଁ ବୋହୂର ଏକମାତ୍ର ଆଶ୍ରୟସ୍ଥଳ ବା ହାକିମୀ ଜାହେର୍ କରିବାର ଇଲାକା ଥିଲା ଓ ଶାଶୂଙ୍କ ମାଡ଼ ଖାଇ ବୋହୂ ସେ ପ୍ରହାରଜନିତ ରାଗକୁ ଚୁଲି ମୁହଁରେ ମେଣ୍ଟାଉ ଥିଲା । ଶାଶୂଙ୍କ ଠାରୁ ପ୍ରହାର ଖାଇବା ଆସାମୀ ସଜୀବ, କିନ୍ତୁ ବୋହୂଙ୍କଠାରୁ ମାଡ଼ ଖାଇବା ଆସାମୀ ନିର୍ଜୀବ । ହେଲେ କଅଣ ହେବ, ଚୁଲିକୁ ସମ୍ବୋଧନ କରି ଗାଳି ଦେଇ, ଚୁଲି ମୁହଁକୁ ଗୋଇଠା, ଚାପୁଡ଼ା ଆଦି ମାରି ବୋହୂ ପରିବାରରେ ଭୋଗୁଥିବା ନିର୍ଯାତନର ଦୁଃଖକୁ କଥଞ୍ଚିତ୍ ମେଣ୍ଟାଉ ଥିଲା । କବି କାଳିଦାସ ତାଙ୍କ ମେଘଦୂତରେ କହିଛନ୍ତି -

'କାମାର୍ତ୍ତା ହି ପ୍ରକୃତିକୃପଣା ଚେତନାଚେତନେଷୁ' - କାମାର୍ଥୀ ବ୍ୟକ୍ତି ସଚେତନ ଅଚେତନଙ୍କ ମଧ୍ୟରେ ଠଉରାଇବାକୁ ଅକ୍ଷମ । ଏ ବିଷୟରେ କାଳିଦାସଙ୍କ ଅମଳରେ କାମାର୍ଥୀ ଯକ୍ଷର ଚେତନାଚେତନ ବିଚାର-ଶୂନ୍ୟତା ୫୦।୬୦ ବର୍ଷ ତଳର ବଧୂମାନଙ୍କ ଠାରେ ପ୍ରବର୍ତ୍ତୁଥିଲା । ତା ପରେ ଦେଖାଯିବ ଯେ କେବଳ କାମାର୍ତ୍ତ କାହିଁକି, ଦୁଃଖାର୍ତ୍ତ, ଶୋକାର୍ତ୍ତ, ଚିନ୍ତାର୍ତ୍ତ ଏମନ୍ତ କି ମନୁଷ୍ୟ ମାତ୍ରେ ସମୟରେ ଚେତନାଚେତନ ବିଚାରବିହୀନ ହୋଇ ପଡ଼ନ୍ତି । ''କୋଇଲି ଲୋ କେଶବ ଯେ ମଥୁରାକୁ ଗଲା''ଠାରୁ ଆରମ୍ଭ କରି କବିମାନଙ୍କର ସଜୀବ ଓ ନିର୍ଜୀବ ପ୍ରକୃତିକୁ ସମ୍ବୋଧନ ପର୍ଯ୍ୟନ୍ତ ସବୁଠାରେ ମାନବ ପ୍ରକୃତିର ଏହି ଖେଳ ଲାଗିଛି । ଏଥିପାଇଁ 'Personification' ନିର୍ଜୀବ ବସ୍ତୁଠାରେ ଚେତନ ଧର୍ମାରୋପଣ କାବ୍ୟର ପ୍ରଧାନ ଅଙ୍ଗ ଓ କଳ୍ପନାର ପ୍ରଧାନ ବିଳାସ । ଅତଏବ ଅତ୍ୟାଚାରିତା ବୋହୂ ବେଚାରୀର ଚୁଲିଠାରେ ଚେତନ ଧର୍ମାରୋପଣପୂର୍ବକ ତାହାଉପରେ ଅତ୍ୟାଚାରର ପ୍ରତିଶୋଧ ମେଣ୍ଟଣ ଦୁନିଆର ରୀତି  ବେଚାରୀ ଏହା କଲା ବୋଲି ଦୁନିଆ ତା ନାମରେ ଢଗ ଢମାଳି ମେଲିଲା । କିନ୍ତୁ କବି କଳ୍ପନା ନିଶାରେ ଭୋଳ ହୋଇ ଅଚେତନ ବସ୍ତୁଠାରେ ଚେତନ ଧର୍ମାରୋପଣ କଲେ ବୋଲି ସେ ବିଶ୍ୱ ବନ୍ଦ୍ୟ ହେଲେ, ନୋବେଲ ପ୍ରାଇଜ ପାଇଲେ । ଏଥିପାଇଁ ଢଗଅଛି - ବଡ଼ଲୋକ ଯେବେ ଚାଉଳ ଚୋବାଏ - ବାତପିତ୍ତନାଶନଂ । ଦୁଃଖୀ ଲୋକ ଯେବେ ସେହିତା କରେ - ଆରେ ସେ ରଙ୍କୁଣାଟାଏ ।

ଭଞ୍ଜପ୍ରଦୀପ - ୧୨ଶ ଭାଗ/୧ମ ସଂଖ୍ୟା/ ଆଶ୍ୱିନ/୧୩୫୦ ସାଲ ।

## ।। ଆଠ ।।

କୌଣସି କର୍ତ୍ତବ୍ୟକର୍ମ ସମାହିତ ହୋଇ ନ ଥିଲେ ଅଧିକାଂଶ ସ୍ଥଳରେ ଦେଖାଯାଏ ଯେ 'ମୋତେ ସମୟ ହେଲା ନାହିଁ' ଲୋକେ ଏହି ଆଳ (Excuse)ର ପ୍ରଶ୍ରୟ ନେଇ ଥାଆନ୍ତି । କେତେକ ବ୍ୟକ୍ତି କାର୍ଯ୍ୟ ବ୍ୟସ୍ତତାର ବାହାଦୁରି କରି କହି ଥାଆନ୍ତି - 'ମତେ ତ ମରିବାକୁ ଫୁରସେତ୍ ନାହିଁ ।' ଆମେ ନିଜେ ମଧ ଏହିପରି କହିଥାଉଁ । କିନ୍ତୁ ମୁଁ ଦେଖିଛି ଯେ କୌଣସି କାର୍ଯ୍ୟ କରିବାକୁ ଦୃଢ଼ସଂକଳ୍ପବାନ୍ ବ୍ୟକ୍ତିଙ୍କୁ ଉକ୍ତ କାର୍ଯ୍ୟ କରିବାକୁ ଫୁରସେତ୍ ଅବଶ୍ୟ ମିଳିଥାଏ । ''ମୋତେ ଅମୁକ କାର୍ଯ୍ୟ କରିବାକୁ ବେଳ ହେଲା ନାହିଁ'' ଏହା କେବଳ ଅଳସୁଆ ଲୋକଙ୍କ ଆଳ ଅଟେ । କର୍ମୀଲୋକଙ୍କ ଜୀବନଚରିତରୁ ଦେଖାଯାଏ ଯେ ସେମାନେ କୌଣସି ନିର୍ଦ୍ଦିଷ୍ଟ ସମୟ ମଧରେ ଯେତେ କର୍ମ କରି ଥାଆନ୍ତି, ତାହା କରିବାକୁ ସେମାନେ କିପରି ସମର୍ଥ ହେଲେ ଏହାହିଁ ଆମେ ଭାବୁଁ ।

ବ୍ରହ୍ମ ବିଦ୍ୟା ସମାଜ (ଥିଓସୋଫିକାଲ୍ ସୋସାଇଟି)ର ସ୍ୱର୍ଗତା ପ୍ରେସିଡେଣ୍ଟ ଶ୍ରୀମତୀ ଆନୀ ବେସାନ୍ତଙ୍କ ଜୀବନଚରିତରୁ ଦେଖାଯାଏ ଯେ ପୃଥିବୀର ଅଧିକାଂଶ ଦେଶ ପରିଭ୍ରମଣ କରିବା, ସ୍ଥାନେ ସ୍ଥାନେ ବକ୍ତୃତା କରିବା, ବନାରସ ବାଳକ ଓ ବାଳିକା ବିଦ୍ୟାଳୟ ସ୍ଥାପନ କରିବା ଆଦି ଏତେ କର୍ମ ସେ ଏତେ ଅଳ୍ପ ସମୟରେ କରିପାରିଥିଲେ ଯେ, ତାହା ଭାବିଲେ ସ୍ତମ୍ଭୀଭୂତ ହେବାକୁ ହୁଏ । ବ୍ରହ୍ମବିଦ୍ୟା ସମାଜର ପ୍ରତିଷ୍ଠାତ୍ରୀ ମାଡାମ୍ ବ୍ଲାଭାଟ୍‌ସ୍କୀ ଓ ତାଙ୍କ ସହକର୍ମୀ କର୍ଣ୍ଣେଲ ଅଲ୍‌କଟ୍‌ଙ୍କ ଜୀବନଚରିତରେ ମଧ ଏହି କର୍ମବହୁଳତାର ସହସ୍ର ସହସ୍ର ନିଦର୍ଶନ ବିବୃତ ହୋଇଅଛି । ଏଥିରୁ ଅନ୍ତତଃ ଆମର ଏତିକି ଶିଖିବାର ବିଷୟ ଯେ, କୌଣସି କର୍ମ ସାଧନ କରିବା ପାଇଁ ଦୃଢ଼ସଂକଳ୍ପବାନ୍ ବ୍ୟକ୍ତି ଆଗରେ ସବୁ ବାଧା, ସବୁ ସମୟାଭାବ, ସବୁ ଅସୁବିଧା, ସବୁ ଅସୁଯୋଗ ଉଭେଇଯାଏ । ଏ ଯେଉଁ ସଂକଳ୍ପ (will power) କଥା କହିଲି, ଏହି ସଂକଳ୍ପ ଦ୍ୱାରା ମନୁଷ୍ୟ ଅସାଧ ସାଧିପାରେ, ସମଗ୍ର ଜଗତ୍ ତାର ବଶୀଭୂତ ହୁଏ, ପ୍ରକୃତି ଓ ଜଡ଼ ଓ ଜୀବଜଗତ ତାହାର ଦାସ ହୁଅନ୍ତି । ଆବହମାନ କାଳରୁ ଯେଉଁ ମହାପୁରୁଷମାନେ ଅସାଧ ସାଧନ କରିଯାଇଅଛନ୍ତି, ସେମାନଙ୍କର ଦୃଢ଼ସଂକଳ୍ପ ହିଁ ସେମାନଙ୍କୁ ଅସାଧାରଣ ଶକ୍ତି ପ୍ରଦାନ କରିଅଛି । ପ୍ରାଚୀନ ଆର୍ଯ୍ୟ ଋଷିମାନେ ଯୋଗ ସାଧନ ବଳରେ ତ୍ରିକାଳଦର୍ଶୀ ଓ ସର୍ବଜ୍ଞ, ସର୍ବଦ୍ରଷ୍ଟା, ସର୍ବଶ୍ରୋତା, ସର୍ବକର୍ତ୍ତା ହୋଇ ପାରିଥିଲେ । ଆଜି ଯାହା ବିଜ୍ଞାନ ବଳରେ ସାଧିତ ହୋଇପାରୁଅଛି, ତହିଁରୁ ସହସ୍ର ସହସ୍ର ଗୁଣ ଆଶ୍ଚର୍ଯ୍ୟତର ବିଷୟମାନ ଯୋଗସିଦ୍ଧ ପୁରୁଷମାନେ ସାଧନ କରିପାରୁଥିଲେ । ଯୋଗ ଯେତେ ଦୂର ଜ୍ଞାନ ଓ ଶକ୍ତି ଅର୍ଜନ କରିଥିଲା, ବିଜ୍ଞାନ (Science) ଆଜି ପର୍ଯ୍ୟନ୍ତ ସେ ପର୍ଯ୍ୟନ୍ତ ଅଗ୍ରସର ହୋଇପାରି ନାହିଁ । ଯୋଗ ମୂଳରେ ସଂକଳ୍ପ ବା will power ବିଦ୍ୟମାନ । ଏହି powerର କର୍ଷଣ ଦ୍ୱାରା ମନୁଷ୍ୟ ଅମରତ୍ୱ ଲାଭ କରିପାରେ । Will powerକୁ ତାଲିମ କରି ବାଟକୁ ଆଣିପାରିଲେ ମନୁଷ୍ୟର ଅସାଧ, ଅଜ୍ଞେୟ, ଅକରଣୀୟ ହୋଇ କିଛି ରହେ ନାହିଁ ।

ଜ୍ଞଂଜପ୍ରଦୀପ - ୧୨୩ ଭାଗ/୨ୟ ସଂଖ୍ୟା/୧୩୫୦ ସାଲ ।

॥ ନଅ ॥

ଇତର ତାପଶତାନି ଯଥେଚ୍ଛୟା,
ବିତରତାନି ସହେ ଚତୁରାନନ
ଅରସିକେଷୁ ରମସ୍ୟ ନିବେଦନଂ
ଶିରସି ମା ଲିଖ ସାଲିଖ ମା ଲିଖ ।

କବି କହିଛନ୍ତି ହେ ଚତୁରାନନ ବା ଚାରିମୁହାଁ (ବ୍ରହ୍ମା ବା ବିଧାତା), ଆଉ ସବୁ ଦୁଃଖ ଦିଅ, ମୁଁ ତାକୁ ସବୁ ସହିବାକୁ ରାଜି ଅଛି, କିନ୍ତୁ ରସିକ ଲୋକଠାରେ ରସର ନିବେଦନ ମୋ କପାଳରେ ନ ଲେଖ । ସଂସାରରେ ଆମେ ଯେତେ ଦୁଃଖସୁଖ ଭୋଗ କରୁଥାଉଁ, ସେସବୁ ଚତୁରାନନଙ୍କ ଲେଖନ ମୁନରୁ ବାହାରିଥାଏ । ଚତୁରାନନର ଓଡ଼ିଆ ଅନୁବାଦ ଚାରିମୁହାଁ ଯେଉଁଲୋକ ଗୋଟିଏ କଥା କହି ପରେ ସେ କଥାକୁ ବଦଳାଏ, ତାକୁ ଆମେ ତାକୁ ଦୋମୁହାଁ । ଦୋମୁହାଁଙ୍କୁ ସମସ୍ତେ ଡରୁଁ, ଏମନ୍ତ କି ତାଙ୍କ ମୁହଁକୁ ଆମେ ଅନ୍ୟତର ହୀନ ଅବୟବ ସଙ୍ଗେ ତୁଳନା କରିବାକୁ କୁଣ୍ଠିତ ହେଉଁ ନାହିଁ । ଦୋମୁହାଁଙ୍କ ହୁକୁମରେ ଚଳିବା ବଡ଼ ଦୁଃଖର ବିଷୟ । ଏପରି ସ୍ଥଳରେ ଚଉମୁହାଁଙ୍କ କଥା ଭାବିଲା ବେଳକୁ ଆମ ପିଳେହି ଚମକିଉଠେ । ଏ ଚଉମୁହାଁଙ୍କର ବଚନର ସ୍ଥିରତା ନ ଥାଏ, କାମର ସ୍ଥିରତା ନ ଥାଏ, ତାଙ୍କ ଲେଖନ ମୁନର ସ୍ଥିରତା ନ ଥାଏ । ''କାହା କରମରେ କ୍ଷୀରୀକ୍ଷୀରିସା, କାହା କରମରେ ଲଡୁ, କାହା କରମରେ ଖାରିଆ ଖଡ଼ା, ଚୋବେଇ ଚୋବେଇ ମରୁ ।'' କାହାକୁ ଆଜି ନେଇ ରାଜେନ୍ଦ୍ରାସନରେ ବସେଇଛନ୍ତି ତ, କାଲି ତାକୁ ନେଇ ବାର ଦୁଆର ବୁଲା ଫକୀର ପାଲଟେଇ ଦିଅନ୍ତି । ତାଙ୍କର ପ୍ରାୟ ସବୁ କଥା ଅନ୍ଧାରୁଆ । ଅନ୍ଧାରୁଆ ଚିଜ ଆମକୁ ଦେଖା ପଡ଼େ ନାହିଁ । ଅତଏବ ତାଙ୍କ କଲମରୁ ବାହାରିବା କଥାକୁ ଆମ୍ଭେ ନାଆଁ ଦେଇଛୁ 'ଅଦୃଷ୍ଟ' ବା 'ଅଦେଖା ଚିଜ' । ଏହି ଅଦୃଷ୍ଟ ଆଜି ନେଇ ଆମକୁ 'ପାଲିଙ୍କି ଉପରେ ପାଟଛତା' ଦେଉଛି ତ କାଲି ନେଇ 'ବେଡ଼ି ଉପରେ କୋରଡ଼ା' ଦେଉଛି । ସେହି ଅଦେଖା ଚିଜ ତ ଦେଖିବାର ଜୁ ନାହିଁ । ଏଥିପାଇଁ ଆମେ ସମସ୍ତେ ସେ ଚଉମୁହାଁକୁ ପାର୍ଥନା କରୁଁ ''ହେ ଚତୁରାନନ ! ଆମକୁ ଆଉ ସବୁ ଦୁଃଖ ଦିଅ ପଛକେ, ଅମୁକ ଦୁଃଖ ଆମ କପାଳରେ ନ ଲେଖ ।''

ଆଜିର ଏ ଶିରୋନାମରେ ଲେଖା ଥିବା ଶୋକ କଥା ଏକ ଘଟନାରୁ ମନେ ପଡ଼ିଗଲା । ଆମ ଓଡ଼ଶୀ କବି ଦୀନକୃଷ୍ଣ ଦାସ ଗାଇଛନ୍ତି ''କବି ଯାକରେ ମୂର୍ଖକୁ ସ୍ତୁତି, ଏଥିରୁ ବଳି ନାହିଁ ବିପତ୍ତି, ଏଥିକୁ ପ୍ରତି ଛାତିରେ କାତି, ମାରିବା ଭଲ ଯେ ।'' ଭିନ୍ନ ଭିନ୍ନ ବ୍ୟକ୍ତି ଆପଣାର ଅନୁଭବକୁ ଲକ୍ଷ୍ୟ କରି ଗୋଟିଏ ଗୋଟିଏ ଦୁଃଖକୁ ଅନ୍ୟସବୁ ଦୁଃଖଠାରୁ ବେଶି ହଂସାଉଡ଼ା ବୋଲି ସ୍ଥିର କରି ନିଅନ୍ତି । ଉଦାହରଣସ୍ୱରୂପ ଦେଖିଲି ଯେ ଯେଉଁଠାରେ ତୁମେ କିଛିଦିନ ହାକିମ ବା କର୍ତ୍ତା ଗାଦିରେ ବସିଥିବ, ଉପରିଉକ୍ତ ଚଉମୁହାଁଙ୍କ କାରସାଦି ଯୋଗୁଁ ଯେବେ ସେହିଠାରେ ତୁମ୍ଭଙ୍କୁ ଅଧସ୍ତନ ପାହିଆ ମିଳେ, ତେବେ ଏହାଠାରୁ ବଳି

ଦୁଃଖକର ବିଷୟ ଆଉ କିଛି ନାହିଁ । ଯେବେ ବିଧାତାଙ୍କର 'ବେଡ଼ି ଉପରେ କୋରଡ଼ା' ଦେବାକୁ ଇଚ୍ଛା ହୁଏ ଓ ଯେବେ କାଲି ଯେ ତୁମର ହୁକୁମ୍ ବର୍‌ଦାର ଥିଲେ, ଆଜି ଯେବେ ସେ ତୁମର ହାକିମ ହୁଅନ୍ତି ତେବେ ତୁମେ ଜୀଇଁ ଥାଉଁ ଥାଉଁ ମଲ ବୋଲି ଜାଣ । କାଲି ତୁମେ ହାକିମ ଆସନରେ ବସି ଯାହାକୁ ତୁମ ପାଦତଳେ ଖଟାଉଥିଲ, ଆଜି ଯେବେ ତୁମ ଅଦୃଷ୍ଟ ଫଳରୁ ସେ ପୁଣି ତୁମ ଉପରେ ହାକିମ ହୁଅନ୍ତି ତେବେ ତୁମର ହନ୍ତସନ୍ତ ହେବା ସାର ହେବ ସିନା ! ଏପରି ଘଟନା କେତେ ଆମ ଆଖି ଆଗରେ ଘଟୁଛି ଓ ଆମ ଅନୁଭବରେ ଆସୁଛି । ''ଅଖ ଗଡୁଥିଲେ ଚକ ଗଡୁଥାଏ, ଗଡ଼ି ଯାଉଥାଏ ପହି, ସଂସାର ଭିତରେ ଘର କରିଥିଲେ ପଥର ପଡ଼ିଲେ ସହି ।'' ଏହି ପ୍ରବଚନର ଦ୍ୱାହି ଦେଇ ଆମେ କାଠମୁଖା ବାନ୍ଧି ସବୁକଥା ସମ୍ଭାଳି ନେଉଁ । ଆମେ

''କଥା କହୁଥାଉଁ ଭରମକୁ
ଚାଲି ଯାଉଥାଉଁ ଶରମକୁ
ମରମେ ମରମେ ଯାହା ହେଉଥାଏ,
ସାକ୍ଷୀ ଦେଉଥାଉଁ ଧରମକୁ ।''

ସେତେବେଳେ ମନରୁ ବାହାରୁଥାଏ, ''ମା ବସୁଧା ! ତୁ ଫାଟି ଯା, ମୁଁ ତୋ ପେଟ ଭିତରେ ପଶିଯାଏଁ, ମୋ ନାଆଁ ତିନି ପାଞ୍ଜିରୁ ପୋଛି ହୋଇ ଯାଉ ।''

ବିଧାତାଙ୍କ କଲମ ଜୋର୍‌ରେ ଯେଉଁମାନଙ୍କ ଉପରେ ହାତୀ ସୁନା କଳସ ଢାଳି ଥିବାରୁ ସେମାନଙ୍କୁ ହାକିମି ପାହିଆ ମିଳି ଥାଏ, ସେ ଜାତିଆ ଜୀବମାନଙ୍କୁ ସେମାନଙ୍କଠାରେ ପରିଲକ୍ଷିତ ବୈଶିଷ୍ଟ୍ୟ ଯୋଗୁଁ ମୁଁ ସେମାନଙ୍କୁ ହାତୀ, ବାଘ, ସିଂହ, ମାଙ୍କଡ଼, ନେଉଳ, ସାପ, ଘୁଷୁରି, ବିଲୁଆ ଆଦି ଜୀବଙ୍କ ଶ୍ରେଣୀଭୁକ୍ତ କରିଥାଏଁ ଓ ସେମାନଙ୍କୁ ସ୍ତ୍ରୀ, ପୁଂ, ନପୁଂସକ ଭେଦରେ ମଧ୍ୟ ଭେଦଭୁକ୍ତ କରିଥାଏଁ । ଏହି ଶ୍ରେଣୀ ବିଭାଗଭୁକ୍ତ ଦୋମିଶା ତମ୍ପ ଶ୍ରେଣୀର ଜଣେ ବ୍ୟକ୍ତିଙ୍କୁ ଦିନାକେତେ କୌଣସି ଜିଲ୍ଲାରେ 'ବଡ଼ ସାହାବ' ପାହ୍ୟା ମିଳିଗଲା । ସେ ହାକିମି ଚଉକିରେ ବିଜେ କରି ତୁଚ୍ଛା ନିରୀହ ଜୀବଙ୍କୁ ଡଂଶିବାରେ ଲାଗିଲେ । ଏମନ୍ତ କି ତାଙ୍କ ପାଖ ମାଡ଼ିବାକୁ ଲୋକଙ୍କର ଛାତି ପତାଇଲା ନାହିଁ । ଅନ୍ୟମାନଙ୍କ କଥା ଗାଧୋଇ ଯାଉ, ଅଉଲ ନମ୍ବର ଗାରିଡ଼ିଆ କେଳା ବି ତାଙ୍କ ପାଖକୁ ଭରସି କରି ପଶିଲେ ନାହିଁ । ସେ ତାଙ୍କ ଦଂଶନ ଲୀଳାରେ ଲାଗି ଥାଆନ୍ତି । ଏହି ସମୟରେ ଚାରିମୁହାଁଙ୍କ ଅଦୃଷ୍ଟ ଚକ୍ର ଘୂରିଗଲା । ସେ 'ପୁନର୍ମୂଷିକୋଭବ' ହୋଇ ତଳ ପାହିଆକୁ ଖସି ଆସିଲେ, ଏଥିରେ ତାଙ୍କ ହୃଦ ଭିତର ରାମ୍ପି ହୋଇ ଯାଉଥାଏ । କଥାରେ ଅଛି ଆପଣା ଦୁଃଖ ପର ଆଗରେ ଖୋଲି ଦେଲେ ମନଟା କିୟଦ୍ ପରିମାଣରେ ଉଶ୍ୱାସ ହୁଏ । କିନ୍ତୁ ସେ ତ ସମସ୍ତଙ୍କୁ ଦଂଶିଛନ୍ତି ଓ ଜୀବନରେ ଜଣେ ସୁଦ୍ଧା ଅନ୍ତରଙ୍ଗ ବନ୍ଧୁ ଅର୍ଜି ନାହାନ୍ତି । ଶେଷରେ ଦିନେ ତାଙ୍କର ପୂର୍ବତନ ଅବତାରରେ ତାଙ୍କ ଦ୍ୱାରା ଦୃଷ୍ଟ ଏକ ଜୀବଙ୍କ ହାବୁଡ଼େ ପଡ଼ିଗଲେ ।

ଲାଗିଲା ଦୁହିଁଙ୍କ ମଧ୍ୟରେ ଟକାଟକ୍ ଝଙ୍କାଝଙ୍କ୍ । ଶେଷକୁ ସେ ହାରିଗଲେ ଓ ତାଙ୍କର ଫେଣା ସଙ୍କୁଚିତ ହୋଇଗଲା । ମୁହଁଟିକୁ ଗୋଳା କରି ସ୍ଥାନତ୍ୟାଗ କରି ସେ ଯାତ୍ରାରୁ ରକ୍ଷା ପାଇଗଲେ । ମୁଁ ମନେ ମନେ ଭାବିଲି ଏ ତ ଦୁନିଆରେ ବନ୍ଧୁ କମେଇ ନାହାନ୍ତି, ଯାଙ୍କର ଯେବେ ଜଣେ ଅଧେ ଅନ୍ତରଙ୍ଗ ବନ୍ଧୁ ଥାଆନ୍ତେ, ତେବେ ଏ ତାଙ୍କ ହୃଦର ବେଦନା ବନ୍ଧୁଙ୍କ ଆଗେ କହି ଟିକିଏ ହେଲେ ମନରେ ଶାନ୍ତି ପାଆନ୍ତେ । ବର୍ତ୍ତମାନ ଏକୁଟିଆ ଥିବାବେଳେ ଦିନରେ ଚିତି ହୋଇ ଶୋଇ ଛାତର କଡ଼ି ବରଗା ଗଣିବା ଓ ରାତିରେ ବିଛଣାରେ ତକିଆକୁ ବେତାର ଭାଷଣରେ ଆପଣା ମନର ବେଦନା ଜଣାଇବା ଛଡ଼ା ଏହାଙ୍କର ଅନ୍ୟ ବାଟ ନଦାରଦ୍ ।

## ।। ଦଶ ।।

ପାଠକ-ପାଠିକାମାନେ ବୋଧହୁଏ ଓ୍ୱାକବ୍‌ଦାର ଅଛନ୍ତି ଯେ 'କୁମ୍ଭାର ଘର ବୋହୂ - ଝାଟିକି ନ ଗଲେ ମାଟିକି ଯାଉ' ପ୍ରବଚନ ଅନୁସାରେ ଭାଷାକୋଷ କାମ ସମ୍ପୂର୍ଣ୍ଣ ହେଲାରୁ ଗଙ୍ଗାସ୍ନାନ ନ କରି ସୁଦ୍ଧା ଗଙ୍ଗାସ୍ନାନ ଫଳ ଲାଭ କରି ପୁଣି ମୁଁ ଚୂଡ଼ାଧଡ଼ା ପିନ୍ଧି କଚିରିମାନଙ୍କରେ ଓକାଲତି ଆରମ୍ଭ କଲି । କାରଣ, 'ଇୟଂ ତୁ ଜାଠରୀ କାକୂରାକୁଳାକୁରୁତେ ନ କିଂ ?' ଏ ପେଟ ଚାଖଣ୍ଡକର ଜ୍ୱାଳା କାହାକୁ ଅଥୟ ନ କରୁଛି ଯେ ମତେ ଛଟପଟ କଲା ବୋଲି ଆପଣମାନେ ଆଶ୍ଚର୍ଯ୍ୟ ହେବେ ? ପିଲା ଦିନେ ହିତୋପଦେଶରେ ପଢ଼ିଥିଲି, ''ଜୀର୍ଯ୍ୟନ୍ତି ଜୀର୍ଯ୍ୟତଃ କେଶାଃ, ଦନ୍ତାଃ ଜୀର୍ଯ୍ୟତଃ, ଜୀର୍ଯ୍ୟତଶ୍ଚକ୍ଷୁଷିଶୋତ୍ରେ ତୃଷ୍ଣୈକାତରୁଣାୟତେ' ଅର୍ଥାତ୍ ବୃଦ୍ଧ ବ୍ୟକ୍ତିର କେଶମାନ ଜରାଜୀର୍ଣ୍ଣ ହୁଏ, ଦନ୍ତମାନ ଜରାଜୀର୍ଣ୍ଣ ହୁଏ, ଚକ୍ଷୁ ଓ କର୍ଣ୍ଣ ଜରା-ଜୀର୍ଣ୍ଣ ହୁଏ, କିନ୍ତୁ ଏକା ତୃଷ୍ଣା ତରୁଣାବସ୍ଥା ଲାଭ କରୁଥାଏ । ଏ ତୃଷ୍ଣାର ଅର୍ଥ ଶୋଷ ନୁହେଁ, ଏଥିର ଅର୍ଥ ଲୋଭ । କିନ୍ତୁ ଲୋଭ ସିନା ବଢ଼େ, ମାତ୍ର ବୁଢ଼ାଙ୍କର ଭୋକ ତ ସେହି ଅନୁପାତରେ ବଢ଼େ ନାହିଁ । ଯେ ହେଉ ସେ କଥା ଛାଡ଼, ୭୦ ବର୍ଷ ବୟସରେ ତୃଷାଧିକ୍ୟ କ୍ଷୁଧାମାନ୍ଦ୍ୟ ନୁହେଁ । ଉଦର ନାମକ ଗହ୍ୱରକୁ ଶାକାନ୍ନ ହେଉ ପାକାନ୍ନ, ଡାକାନ୍ନ (ମନିଅର୍ଡ଼ର ଦ୍ୱାରା ପ୍ରାୟ ଧନଜାତ ଅନ୍ନ, ପଳାନ୍ନ ହେଉ, ଦଳାନ୍ନ ହେଉ, ଜଳାନ୍ନ ହେଉ, ଗଳାନ୍ନ ହେଉ, ମନ୍ଦାନ୍ନ, ଶଳାନ୍ନ, ତଳାନ୍ନ, ଯେକୌଣସି ପ୍ରକାର ଅନ୍ନ ଦ୍ୱାରା ଭରୋଟ କରିବାକୁ ହେବ । ଏହି ଚିନ୍ତାର ଫଳରେ ପୁନର୍ବାର ଧର୍ମାଧିକରଣରେ ପ୍ରବେଶାଧିକାର ମତେ ଜାହେର କରିବାକୁ ପଡୁଛି । ଇଂରାଜୀରେ 'Rip Van Winkle' ନାମକ ବ୍ୟକ୍ତିଙ୍କ କାହାଣୀ ପଢ଼ିଥିଲି । ସେ ବ୍ୟକ୍ତି କେତେ ଯୁଗ ଶୋଇପଡ଼ିଲେ ନିଦ୍ରାରୁ ଉଠି ଦେଖିଲେ ଯେ ସଂସାରରେ ଭୟଙ୍କର ପରିବର୍ତ୍ତନ ଘଟି ଯାଇଛି, ତାଙ୍କ ଅନୁପସ୍ଥିତିରେ 'ବାଘର ଘରେ ମିରିଗର ନାଟ' ଲାଗିଛି, ତାଙ୍କ ଗ୍ରାମବାସୀ କେହି ତାଙ୍କୁ ଚିହ୍ନି ପାରିଲେ ନାହିଁ, ସେ ମଧ୍ୟ କାହାକୁ ଚିହ୍ନି ପାରିଲେ ନାହିଁ । ତାଙ୍କ ଶୟନାବସ୍ଥାରେ ଦୁନିଆଟା ଏକଦମ୍

ବଦଳି ଯାଇଛି । ମୁଁ କୋଡ଼ିଏ ବରଷ କାଳ ଓକାଲତି ଛାଡ଼ି ବର୍ତ୍ତମାନ ଦେଖିଲି ଓକିଲ ହେବାରେ ନୂଆ ମୁହଁ, ବିଚାରାସନରେ ନୂଆ ମୁହଁ, ଅମଲାଖାନାରେ ନୂଆମୁହଁ । ମତେ ଜଣାଗଲା ମିସଲରେ ବସିବା ଜୀବଗୁଡ଼ାକ ସାପ ପାଲଟି ଗଲେଣି ।

ଆପଣମାନେ ଜାଣନ୍ତି ଯେ ଓକିଲମାନେ କେଳା ବନି ହାକିମ-ସାପମାନଙ୍କୁ 'ପଦ୍ମତୋଳା' ବୋଲି ପୋଷା ମନାନ୍ତି । ପଦ୍ମତୋଳା ତ ଛାଡ଼ିଥିଲି, ପୁଣି ଏ ବୟସରେ ପଦ୍ମତୋଳା ବୋଲି ଆୟତ୍ତ କରିବାକୁ ପଡ଼ିଲା । କିନ୍ତୁ ଦେଖିଲି ଯେ ମୋ ପଦ୍ମତୋଳା ଅନେକ ସାପଙ୍କ ଠାରେ କାଟୁ କରୁ ନାହିଁ । ମୁଁ ପଦ୍ମତୋଳା ବୋଲିଲି, କିନ୍ତୁ ଦେଖିଲି ଯେ ଅନେକ ସାପ ଫଣା ଟେକିଲେ ନାହିଁ । ମୋ ପଦ୍ମତୋଳା ଶୁଣି ଫଣା ଟେକି ତୁନିତାନି ହୋଇ ରହନ୍ତେ କଅଣ, ଓଲଟି କରି ମୋ ଶ୍ରୀଅଙ୍ଗରେ ଚୋଟ ମାରିବାକୁ ତିଆର ହେଲେ ! ସେଥିରୁ ମୋର ବାଲ୍ୟବନ୍ଧୁ ଶଶିଭାଇ (ଶ୍ରୀ ଶଶିଭୂଷଣ ରାୟ)ଙ୍କୁ ଏ କଥାର ଭେଦ ପଚାରିଲି । ସେ କହିଲେ "ଆରେ ଭାଇ ! ନାଗ ସିନା ପଦ୍ମତୋଳାକୁ ମାନି ଫଣା ଟେକିବେ, ଢମଣାଙ୍କ ଆଗେ ପଦ୍ମତୋଳା ବୋଲିଲେ ପଦ୍ମତୋଳାର ମହତ୍ତ୍ୱ ନଷ୍ଟ ହେବ ସିନା ! ଅତଏବ ପହିଲେ ସାପକୁ ଚିହ୍ନ ତା ପରେ ପଦ୍ମତୋଳା ବୋଲିବ ।" କଥାଟା ଏକା ମୋ ମନକୁ ଖୁବ୍ ପାଇଗଲା । ମୁଁ ସବୁ ହାକିମଙ୍କୁ ପହିଲେ ଶ୍ରେଣୀ ବିଭାଗ କରି ମୋ ଡାଇରିରେ ଲିପିବଦ୍ଧ କଲି । ପାଠକମାନଙ୍କ କୌତୂହଳ ଚରିତାର୍ଥ କରିବା ପାଇଁ ମୋ ଶ୍ରେଣୀ ବିଭାଗର ନମୁନା ଏଠାରେ ଦିଆ ଯାଇଅଛି । ପାଠକମାନେ ଶୁଣିବାକୁ ସାବଧାନ ହୁଅନ୍ତୁ - ପାଣି ଧଣ୍ଡ ଓ ଢମଣାମାନଙ୍କର ଫଣା ନାହିଁ । ସେମାନେ ନିର୍ଜୀବ କିନ୍ତୁ ଡଂଶିବା ଖୋଇ ଛାଡ଼ି ନାହାନ୍ତି - ଗୋଟାଏ ଲୋକ ବିଶ୍ୱାସ ଅଛି ଯେ ପାଣି ଧଣ୍ଡ ଯେଉଁ ଲୋକକୁ କାମୁଡ଼େ ସେ ଲୋକକୁ ଅନ୍ୟ ସାପ କାମୁଡ଼ା କାଟେ ନାହିଁ । ସାଧାରଣ ବିଶ୍ୱାସ ଅଛି ଯେ, ଚମ୍ପଗୁଡ଼ାକ ଦୋମିଶା, ଅର୍ଥାତ୍ ଗୋଖର ଓ ଢମଣାଙ୍କ ଦୋନେସଲା । ଲୋକବିଶ୍ୱାସ ଅଛି ଯେ ନାଗ ଉପରେ ଆଘାତ ନ ଲାଗିଲେ ସେ କାହାକୁ କାମୁଡ଼େ ନାହିଁ, କିନ୍ତୁ ଏ ଦୋମିଶା ଚମ୍ପଗୁଡ଼ାକ ଲୋକଙ୍କୁ ଗୋଡ଼ାଇକରି ଡଂଶନ୍ତି । ଜାତିଏ 'ଅଢ଼େଇ କିଆରିଆ' ଚମ୍ପ ଅଛନ୍ତି । ସେଗୁଡ଼ାକ ଅଢ଼େଇ କିଆରି ଦୂରରୁ ଲୋକଙ୍କୁ ଗୋଡ଼ାଇ ଆସି କାମୁଡ଼ନ୍ତି । ଅଜଗର ସାପଙ୍କର ବିଷ ନାହିଁ, ତାଙ୍କ ଆଗରେ ପଡ଼ିବା ଜୀବଙ୍କୁ ଗିଳି ଥାଆନ୍ତି । ସାପମାନେ ଅଣ୍ଡଜ, କିନ୍ତୁ ସାପଙ୍କ ଭିତରେ ଗଣା ହେଉଥିବା ବୋଡ଼ା ନୁହନ୍ତି, ଏମାନେ ଛୁଆ ପ୍ରସବ କରନ୍ତି । ଏମାନଙ୍କ କାମୁଡ଼ା ଅନ୍ୟ ପ୍ରାଣଘାତୀ ନୁହେଁ । କିନ୍ତୁ ଏମାନେ ଯେଉଁ ଅଙ୍ଗକୁ କାମୁଡ଼ନ୍ତି ସେ ଅଙ୍ଗ ଫୁଲିଯାଏ ଓ ଦୀର୍ଘକାଳ ପରେ ଦଷ୍ଟ ବ୍ୟକ୍ତି ପକ୍ଷରେ ଏ ସାପର ବିଷ ମାରାତ୍ମକ ହୁଏ । ଗୋଧିମାନେ ଚତୁଷ୍ପଦ ଜନ୍ତୁ, ଏହାକୁ ଲୋକେ ସାପ ବୋଲି କହନ୍ତି । ପ୍ରବାଦ ଅଛି ଯେ ଗୋଧି ସାପର କାମୁଡ଼ା ମାରାତ୍ମକ ଓ ଏ ସାପ କାମୁଡ଼ିବା ପରେ ଘଡ଼ଘଡ଼ି ନ ମାଇଲେ ଏ ସାପର ବିଷ ମନୁଷ୍ୟ ଦେହରୁ ଝଡ଼େ ନାହିଁ, ଅଗତ୍ୟା ସେ ମନୁଷ୍ୟର ପ୍ରାଣ ଯାଏ ।

ମୁଁ ଯେଉଁ ହାକିମଙ୍କ ପାଖେ ହାଜର ହୁଏ - ତାଙ୍କ ଚାଲିଚଳଣ, ଢଙ୍ଗଢାଙ୍ଗ ଶ୍ରୀମୁଖର ଓ ଶ୍ରୀଅଙ୍ଗର ବିକାର, ଫଁ ଫଁ ଧ୍ୱନିର ଉପସ୍ଥିତି ବା ଅନୁପସ୍ଥିତି । ଦୂରରୁ କି ନିକଟରୁ ମନୁଷ୍ୟକୁ କାମୁଡ଼ିବାକୁ ଉହୁଙ୍କିବା ମୋ ପଦ୍ମତୋଳା ବୋଲାର ଫଳ । ଏହି ସବୁ ଲକ୍ଷଣକୁ ମାଇନା କରି ମୁଁ ତାଙ୍କୁ ବିଭିନ୍ନ ଜାତିର ସାପ ତାଲିକାରେ ପୂରାଏଁ । ମୁଁ ମଧ୍ୟ ମନେ ମନେ ବିଚାରେ ଯେ ହାକିମମାନେ ମଧ୍ୟ ବ୍ୟବହାର ଜୀବ (ଓକିଲ ମୁକ୍ତାର)ଙ୍କୁ ବିଭିନ୍ନ ଜାତିର କେଳା ତାଲିକାରେ ପୂରାଉ ଥିବେ (ଯଥା : ସାପୁଆ କେଳା, ନକୁଆ କେଳା, ସବାଖିଆ,କେଳା, ମୁଣ୍ଡପୋତା କେଳା) ଓ କେତେ ଓକିଲ ମୁକ୍ତାରଙ୍କୁ ଦେଖି ହାକିମମାନେ ବିଚାରୁ ଥିବେ ଯେ, ଏ ବିଛାମନ୍ତ୍ର ନ ଜାଣି ସାପଗାତରେ ହାତ ପୂରାଇବାକୁ ଆସିଛି । କେଳାମାନେ ଅତି ଦୁର୍ଦ୍ଧାନ୍ତ ଓ ଅଣବିଶ୍ୱାସିଆ ସାପଙ୍କୁ ଆଣି ତାଙ୍କ ମୁଣ୍ଡରୁ ମଣି କାଢ଼ି ନିଅନ୍ତି ଓ ତାଙ୍କ ବିଷ ଦାନ୍ତ ଭାଙ୍ଗିଦିଅନ୍ତି । ବିଷଦାନ୍ତ ଭାଙ୍ଗିଗଲେ ତାହା ପୁଣି ଗଜୁରିବା ପର୍ଯ୍ୟନ୍ତ ସାପ ଫଣା ଟେକି ଫଁ ଫଁ ହୁଏ ଓ କେଳାର ଅଙ୍ଗରେ ଚୋଟ ମାରେ, କିନ୍ତୁ ସେଥିରେ କେଳାର କିଛି ଅନିଷ୍ଟ ହୁଏ ନାହିଁ । ଅତି ଦୁଷ୍ଟ ହାକିମଙ୍କ ଫଁଫଁ ଅତି ଅସହ୍ୟ ହେଲେ ଓ ସେ ପଦ୍ମତୋଳା ଡାକ ନ ଶୁଣିଲେ ଆମେ ତାଙ୍କ ବିଷ ଦାନ୍ତ ଭାଙ୍ଗିବାକୁ ଉଦ୍ୟମ କରୁ । କିନ୍ତୁ ଯେଉଁଗୁଡ଼ାକଙ୍କ ଦାନ୍ତ ଅଭଙ୍ଗା ରହେ ବା ଦରଭଙ୍ଗା ହୁଏ ସେଗୁଡ଼ାକ ଆମକୁ ଭାରି ହଇରାଣ କରନ୍ତି ଓ ଦାଉ ପାଇଲେ ଆମ ଉତ୍ତମାଙ୍ଗ ଅଧମାଙ୍ଗରେ ଚୋଟ ମାରନ୍ତି । ଏଥିପାଇଁ ଅନୁଭବୀ କେଳା ସବୁବେଳେ ଆପଣା ପାଖରେ ଗଦ ଓ ଜାରମହୁରା ରଖି ଥାଆନ୍ତି । ଯେତେବେଳେ ଦେଖନ୍ତି ଯେ ପଦ୍ମତୋଳା ଆଉ କାମ୍‌ କଲା ନାହିଁ, ସେତେବେଳେ ସେ ସାପକୁ ଗଦ ଶୁଂଘାଇ ଦିଅନ୍ତି, କିମ୍ବା ଚୋଟମରା ଅଙ୍ଗରେ ଜାରମହୁରା ଲଗାଇ ଦିଅନ୍ତି । ଅଉଲ ନମ୍ବର ଗଦର ଏପରି ଗୁଣ ଅଛି ଯେ ଯେଡ଼େ ଇଚ୍ଛା ତେଡ଼େ ବିଷ ଦାନ୍ତିଆ ସାପ ହୋଇଥାଉ ପଛକେ, ସେ ଫେଣା ଟେକି ଡଂଶିବାକୁ ଉହୁଂକିବା ବେଳେ ତା ଆଗରେ ଗଦକୁ ଦେଖାଇଦେଲାକ୍ଷଣି ସେ ଫଣାକୁ ସଂହରଣ କରି ତୁନି ହୋଇ ଫଣାହୀନ ମୁହଁକୁ ଅନ୍ୟ ଆଡ଼କୁ ବୁଲାଇ ନିଏ । ଏ ଭଳି ବଡ଼ ବଡ଼ ଗୁଣିଆ ଅଛନ୍ତି ଯେ, କୌଣସି ବ୍ୟକ୍ତିକୁ ସର୍ପାଘାତ ହେଲେ ସେ ସଂଜ୍ଞାହୀନ ଅବସ୍ଥାରେ ପଡ଼ି ରହିଥିବା ଅବସ୍ଥାରେ ଗୁଣିଆ ଆସି ସେ ଲୋକଙ୍କ ପାଖେ ପହଞ୍ଚି ଚାରି କଡ଼ା କଉଡ଼ିକୁ ଅଭିମନ୍ତ୍ରିତ କରି ଚାରି ଦିଗକୁ ଫିଙ୍ଗେ ଓ ଯେଉଁ ଦିଗରେ ଦଂଶନ କରିଥିବା ସାପ ଥାଏ, ସେ ସେହି ଦିଗରୁ ସେଠାକୁ ଆସେ ଓ ତା ମୁଣ୍ଡ ଉପରେ କଡ଼ାଏ କଉଡ଼ି ଲାଗିଥାଏ । ସାପ ଆସି ଦଷ୍ଟ ବ୍ୟକ୍ତି ନିକଟକୁ ଯାଇ ତାର କ୍ଷତ ସ୍ଥାନରେ ମୁହଁ ଲଗାଇ ବିଷତକ ଶୋଷିନିଏ । ଦଷ୍ଟ ବ୍ୟକ୍ତି ତାଜା ହୋଇଉଠେ ଓ ସାପଟି ନିସ୍ତେଜ ହୋଇ ସେହିଠାରେ ପଡ଼ି ମରିଯାଏ ।

ଅବଶ୍ୟ ମୁଁ ଏହା ଦେଖି ନାହିଁ; କିନ୍ତୁ ଏହା ଦେଖିଥିବା ବ୍ୟକ୍ତିଙ୍କଠାରୁ ଶୁଣିଛି । ଏହିପରି ଅନୁଭବ ମୋର ଥରେ ଗୋଟାଏ ଦୋମିଶା 'ଅଢ଼େଇ କିଆରିଆ' (ହାକିମ) ଜୀବ ବିଷୟରେ ହୋଇଥିଲା । ଜଣେ ଭେଣ୍ଡିଆ କେଳା (ଓକିଲ)ର ପଦ୍ମତୋଳା ଗୀତକୁ ଖାତର

ନ କରି ସାପ ତା ହାତ ପାପୁଲିକୁ ଚୋଟ ମାରିଲା । ଚାହୁଁ ଚାହୁଁ କେଳା ସେହିଠାରେ ଅଜ୍ଞାନ ହୋଇ ପଡ଼ିଗଲା ଓ ସାପ ପେଡ଼ିରେ ନ ପଶି ବାହାରି ଚାଲିଗଲା । ଦର୍ଶକମାନେ ଏହା ଦେଖି ସମସ୍ତେ ତ୍ରସ୍ତ ହେଲେ । ନିକଟରେ ଜଣେ ଅଉଲ ନମ୍ବର ଗୁଣିଆଙ୍କ ଘର ଥିଲା । ତାଙ୍କ ନିକଟକୁ ଖବର ଗଲା । ସେ ଆସି ପହଞ୍ଚି ଚାରି କଡ଼ା କଉଡ଼ି ମନ୍ତୁରି କରି ଚାରି ଦିଗକୁ ଦୂରକୁ ଫିଙ୍ଗି ଦେଲେ । କିଛିକ୍ଷଣ ପରେ କେଳାକୁ ଦଂଶିଥିବା ସାପ କପର୍ଦ୍ଦକସ୍ଥାପିତ-ମସ୍ତକ ହୋଇ ସେଠାକୁ ଆସି ଭେଣ୍ଡିଆ କେଳାର ହାତ ପାପୁଲିର ଦଷ୍ଟ ସ୍ଥାନରେ ମୁହଁ ଲଗାଇ ଶୋଷିନେଲା ଓ କିଛିକ୍ଷଣ ନିର୍ଜ୍ଜୀବ ହୋଇ ପଡ଼ି ସେଠାରେ ପ୍ରାଣତ୍ୟାଗ କଲା । ଅବଶ୍ୟ ସାପ ତାହାର ସର୍ପଲୀଳା ସଂବରଣ କଲା ବୋଲି ଆପଣମାନେ ବିଚାରିବେ ନାହିଁ ଯେ ଭେଣ୍ଡିଆ ଓକିଲଙ୍କୁ ଦଂଶିଥିବା ହାକିମ ଇହଲୀଳା ସମ୍ବରଣ କଲେ । କିନ୍ତୁ ସେହିଠାରେ ହିଁ ତାଙ୍କର 'ହାକିମଲୀଳା'ର ଜନ୍ମ ପତ୍ରିକାର ଗଣନା ଅନୁସାରେ ଅର୍ଥାତ୍ ତ୍ରିପାପ ସପ୍ତଶୂନ୍ୟ (ମାରକ) ଦଶାର ଅୟମାରମ୍ଭ ହେଲା; ତାଙ୍କ ଚୋଟମରା ହାକିମର ଇତିଶ୍ରୀ ହେଲା ।

ଆମର ଉଦ୍ଭଟ ଶ୍ଳୋକ ଅଛି - ''ଭାଗ୍ୟଂ ଫଳତି ସର୍ବତ୍ର, ନ ବିଦ୍ୟା ନ ଚ ପୌରୁଷଂ । ଏ କଥା ଏକା ସତ । ମୁଁ ନିଜେ ଅନୁଭବରେ ଜାଣିଛି ଯେ ମୋର ଜଣେ ସହପାଠୀ କ୍ଲାସରେ ଲାଷ୍ଟ ହେଉଥିଲେ, ପରୀକ୍ଷାରେ ଫେଲ ହେଉଥିଲେ, କ୍ଲାସରେ ଶିକ୍ଷକଙ୍କର ପାଠ ପଢ଼ାଇବା ବେଳେ ଢୁଳାଉଥିଲେ । ସେ ଏକାଧିକ ଥର ଫେଲ୍ ହୋଇ ଶେଷକୁ ଥାର୍ଡ଼ ଡିଭିଜନରେ 'ଏଣ୍ଟ୍ରାନ୍ସ' (ଆମ ବେଳେ ମାଟ୍ରିକୁଲେସନ୍ ନାମକରଣ ହୋଇ ନ ଥିଲା) ପାଶ୍ କଲେ । ଏହିପରି ହାମୁଡ଼େଇ ହାମୁଡ଼େଇ ସେ ଏକାଧିକ କଂସ କଚଡ଼ା ଖାଇ ନିମ୍ନ ଶ୍ରେଣୀରେ ବି.ଏ. ଖଣ୍ଡକ ପାସ୍ କଲେ । ପାସ୍ କରିବା ପରେ ତାଙ୍କୁ ଖଣ୍ଡିଏ ସାମାନ୍ୟ ସରକାରୀ ଚାକିରି ମିଳିଲା ଓ ତାଙ୍କ ନିର୍ବୋଧପଣ ଓ ଆଳସ୍ୟ ଆଦି ଦେଖି ଉପରିସ୍ଥ ହାକିମ ତାଙ୍କୁ ଡିସ୍‌ମିସ୍ କରିବାକୁ ମନସ୍ଥ କରିଥିଲେ । ଏବଂ ଭୂତ ଅବସ୍ଥାରେ ଭାଗ୍ୟଦେବୀ ତାଙ୍କ ପ୍ରତି ବରଦା ହେଲେ ଓ ତାଙ୍କୁ ଉପର ପାହ୍ୟାର ସରକାରୀ ଚାକିରି ପରୁଆନା ମିଳିଗଲା । ଚାହୁଁ ଚାହୁଁ ସେ ଫାଷ୍ଟକ୍ଲାସ ହାକିମ ବନିଲେ ଓ ସରକାର ତାଙ୍କ ପାରିବାର ପଣ ଦେଖି ତାଙ୍କ ମୁଣ୍ଡରେ ଶାଢ଼ି ବାନ୍ଧି ଦେଲେ । ଏଠାରେ ଏ କଥାର ଉଲ୍ଲେଖ କରିବାର ଉଦ୍ଦେଶ୍ୟ ଏହି କି, ଭାଗ୍ୟଦେବୀଙ୍କ କରାମତରୁ ଅନେକ ଅମନୁଷ୍ୟ ହାକିମ ଗାଦିରେ ବସନ୍ତି । ସେମାନେ ନିଜର ଅମଣିଷପଣ ଅବଶ୍ୟ ଜାଣନ୍ତି । କେହି ତାଙ୍କ ପାଖେ ରଜଘଷ ହେଲେ ତାଙ୍କ ଗୁମର ପଦାରେ ପ୍ରକାଶିତ ହେବ, ଏଥିପାଇଁ ସେ ସମସ୍ତଙ୍କ ଉପରେ ଫଁ ଫଁ ହୁଅନ୍ତି ଓ କାହାକୁ ପାଖରେ ପୂରାଇ ଦିଅନ୍ତି ନାହିଁ ଓ ଅନେକ ଲୋକଙ୍କୁ ଦଂଶନ୍ତି । କିନ୍ତୁ ଭାଗ୍ୟଦେବୀଙ୍କ ଆଡ଼ ଦୃଷ୍ଟି ପଡ଼ିଲାକ୍ଷଣି ଅଉଲ ନମ୍ବର ଗୁଣିଆ ଆସି ତାକୁ ଗଦ ଶୁଂଘାନ୍ତି, ବା ତାଙ୍କ ବିଷଦାନ୍ତ ଭାଙ୍ଗି ଦିଅନ୍ତି । ନଇଲେ ମନ୍ତ୍ର ବଳରେ ତାଙ୍କ ଦ୍ୱାରା ନିଜର ଉଦ୍ଗାରିତ ଗରଳକୁ ଶୋଷି ତାଙ୍କ ହାକିମ ଲୀଳାର ଇତିଶ୍ରୀ କରାନ୍ତି ।

ଭଞ୍ଜପ୍ରଦୀପ - ୧୨ଶ ଭାଗ/୩/୪ର୍ଥ ସଂଖ୍ୟା/ଚୈତ୍ର/୧୩୫୦ ସାଲ ।

## ।। ଏଗାର ।।

ସମ୍ପାଦକ ମହାଶୟ !

ଦୁଃଖ କହିବି ? କି, ସୁଖ କହିବି ?

ଯାହା ଅଙ୍ଗେ ନିଭାଉଛି, ତା କହିବି ।

ଆପଣ ଅବଶ୍ୟ ଜାଣନ୍ତି, ନ ଜାଣିଥିଲେ ଆଇନ ଅନୁସାରେ ଆପଣ ଜାଣିବାକୁ ବାଧ୍ୟ କାରଣ ଦେଖନ୍ତୁ ଯେ ଆପଣ ଏ ଦୁନିଆର ଜଣେ ଜନ୍ତୁ ରୂପେ ଆପଣା ଅଙ୍ଗରେ ସବୁକଥା ଲିଭାଉଛନ୍ତି । ସେସବୁରେ ଦୁଃଖ ଅଛି, ସୁଖ ବି ଅଛି । ଏପରି ସ୍ଥଳରେ ଆପଣଙ୍କୁ କେହି କିଛି ପ୍ରଶ୍ନ କଲେ ଆପଣ ଯାହା ଅଙ୍ଗେ ନିଭାଉଛନ୍ତି, ତାହା କହିବେ । କିନ୍ତୁ ତାହା କହିବା ପୂର୍ବରୁ ଆପଣ ଆଉ ଗୋଟିଏ ପ୍ରିଭି କାଉନ୍ସିଲ ନଜିରକୁ ତାମିଲ କରିବାକୁ ହେବ । ଆମ ଶାସ୍ତ୍ର ବୋଇଲା - 'ସତ୍ୟଂ ବ୍ରୂୟାତ କିନ୍ତୁ ସେଥିରେ ଆଉ ଜଣେ ଶାସ୍ତ୍ରକାର ଯୋଡ଼ି ଦେଲେ ପ୍ରିୟଂ ବ୍ରୂୟାତ୍' 'ସତ୍ୟ' ହେଲା ଉପଦେଶର ଗୋଟାଏ ପାଖ ପ୍ରିୟ ହେଲା ଉପଦେଶର ଅନ୍ୟ ପାଖ । ଏ ଦୁଇ ପାଖକୁ ଏକାବେଳକେ ଜଗି ହେବ ନାହିଁ । ଏଥିପାଇଁ ତୃତୀୟ ଉପଦେଶକ କହିଲେ 'ମାବ୍ରୂୟାତ୍ ସତ୍ୟମପ୍ରିୟଂ' । ଏ ତିନି ଉପଦେଶ ଦିଆ ହେଲା ପରେ 'ଅପ୍ରିୟଂ ଚାହିତଂଚାପି ପ୍ରିୟାୟାତିହିତଂବଦେତ୍'ରେ ଶ୍ଳୋକ ପୂରଣ କରାଗଲା । ଏ ପଦର ଅର୍ଥ ପ୍ରିୟ ବ୍ୟକ୍ତି ତୁମ କଥାକୁ ଅପ୍ରିୟ ଓ ଅହିତ ଜ୍ଞାନ କଲେ ମଧ୍ୟ ପ୍ରିୟ ବ୍ୟକ୍ତିଙ୍କୁ ତାଙ୍କର ହିତ କଥା କହିବ । ଅତଏବ ଏ ଗୋଲକଧନ୍ଦାରେ ପଶି ମନୁଷ୍ୟ ବେଳେ ବେଳେ ସନ୍ତପନ୍ତ ଓ ହଇରାଣ ହୁଏ । କବି ଗାଇ ଯାଇଛନ୍ତି ''ହିତଂ ମନୋହାରୀଚ ଦୁର୍ଲ୍ଲଭଂବଚଃ'' ଅର୍ଥାତ୍ ଏକାଧାରରେ ହିତକର ଅଥଚ ମନୋହର ବା ପ୍ରିୟ ବାକ୍ୟ ଦୁର୍ଲଭ ଅଟେ । ପୁଣି ସେହି ଶ୍ରେଣୀର ଜଣେ ଉପଦେଶକ ଗାଇଲେ ''ଶତ୍ରୋରପି ଗୁଣଃବାଚ୍ୟଃ ଦୋଷଃବାଚ୍ୟଃ ଗୁଣୋରପି'' । ଅର୍ଥାତ୍ ଶତ୍ରୁର ମଧ୍ୟ ଗୁଣ କହିବ, ଗୁରୁଙ୍କର ମଧ୍ୟ ଦୋଷ କହିବ । ଏ ହାଲତରେ ଦୁନିଆରେ ମଣିଷ କରିବ କ'ଣ ?

ଏଥିରୁ ଉଧୁରିବାର ଏକମାତ୍ର ଉପାୟ 'ମୌନଂ ସର୍ବତ୍ର ଶୋଭନଂ ।' ସବୁଠାରେ ମୌନ ହିଁ ଶୋଭନୀୟ । ପାଶ୍ଚାତ୍ୟ ପଣ୍ଡିତ ମଧ୍ୟ କହିଛନ୍ତି 'Silence is golden' ଅର୍ଥାତ୍ ମୌନ ହିଁ ମଧୁମୟ ଅଟେ । ଏସବୁ ହେଲା ଏକ ପାଖରେ, ଅନ୍ୟ ପାଖରେ ହେଲା ମନୁଷ୍ୟର । ଅବଶ୍ୟ ମନର ହସ୍ତା ସରଜମିନରେ । ଯେତେବେଳେ ମନୁଷ୍ୟ କୌଣସି ଅବିଚାର, ଅନାଚାର, କଦାଚାର, ଦୁରାଚାର ଦେଖେ ସେତେବେଳେ ହାଉଡ଼ାଟା ମଧ୍ୟ ସମ୍ଭାଳି ହୋଇ ପାରେ ନାହିଁ । ନେତ୍ରବକ୍ର ବିକାର ଅଙ୍ଗ, ପ୍ରତ୍ୟଙ୍ଗ ଆକ୍ଷେପ ଦ୍ୱାରା ଆପଣାର ଅସନ୍ତୋଷକୁ ପ୍ରକାଶିତ କରେ । ଏପରି ଅବସ୍ଥାରେ ଯାହାର ପାଟି ଫିଟୁଛି, ସେ ତୁନି ହୋଇ ରହିପାରେ ନାହିଁ ଓ ସେତେବେଳେ ସବୁ ଉପଦେଶ, ସବୁ ସଂଯମ, ସବୁ ତାକିଦ୍,

ସବୁ ଆପ୍ତବଚନ ପାସୋରି ପକାଏ । ସମସ୍ତେ ଜାଣନ୍ତି ଯେ ଦୁନିଆଟା ଦୋରଙ୍ଗୀ, ଅର୍ଥାତ୍ ଏଥିରେ ଭଲ ମନ୍ଦ ସବୁ ଅଛି । ପ୍ରିୟ ଅଛି ଅପ୍ରିୟ ଅଛି, ସତ ଅଛି ମିଛ ଅଛି, ଧର୍ମ ଅଛି ଅଧର୍ମ ଅଛି, ସରଳତା ଅଛି, କପଟ ଅଛି, ନ୍ୟାୟ ଅଛି ଅନ୍ୟାୟ ଅଛି; ତାରଣ ଅଛି, ମାରଣ ଅଛି, ସନ୍ଥ ପାଳନ ଓ ସନ୍ଥ ଦଳନ ଅଛି ପରପୁଅ ପ୍ରତି ବ୍ୟବହାର, ଅଧର୍ମାଚରଣ, ମାରଣ, ଉତ୍ପୀଡ଼ନ, ଅବିଚାର ହେଲେ ସାଧାରଣତଃ ଦେଖଣାହାରିଙ୍କ ମନକୁ ସେ କଥାଟା ଭାରି କାଟେ ନାହିଁ, କିନ୍ତୁ ଅପଣା ପ୍ରତି ଅବିଚାର, ଅନ୍ୟାୟାଚାର ଦୁର୍ବ୍ୟବହାର ଆଦି ହେଲେ ଦିହରେ ଚାଉଁକିନାଁ ନିଆଁଖୁଣ୍ଟା ମାଡ଼ି ହୋଇଯାଏ ଓ ମନୁଷ୍ୟ ଜୀବନବିକଳରେ କିଳିକିଳାରବ ଛାଡ଼େ । ଯେବେ ଅନ୍ୟାୟକାରୀକୁ ଦଣ୍ଡ ଦେବାର କ୍ଷମତା ମନୁଷ୍ୟଠାରେ ଥାଏ ତେବେ ସେ ଅନ୍ୟାୟକାରୀକୁ ଉତ୍ତମ ଶିକ୍ଷାଟାଏ ଦିଏ । ଯେବେ କ୍ଷମତା ନ ଥାଏ, ତେବେ ଦିପଦ ଚାରିପଦ 'ଅପ୍ରିୟ ସତ୍ୟ' କହି ମନର ଓରମାନ ମେଣ୍ଟାଇ ନିଏ ।

ଦୁନିଆରେ ଦେଖୁଥାଇଁ- ମନ ଓରମାନ ମେଣ୍ଟା ଅପ୍ରିୟ ସତ୍ୟ କହିବା ଅଧିକାଂଶ ସ୍ଥଳରେ ଘଟେ । ସେଥିରେ ଯେବେ ଅନ୍ୟାୟାଚାରୀ ଚେତିଯାଏ ତେବେ ରକ୍ଷା । ନଚେତ୍ ତୁମର ପ୍ରତିବାଦ ଅରଣ୍ୟ ରୋଦନରେ ପରିଣତ ହୁଏ । ଆମେ ଦେଖିଥାଇଁ ଯେ ଆମ ଆଖି ଆଗରେ ଶତ ଶତ ନିର୍ଦ୍ଦୋଷ ଦଣ୍ଡ ପାଉଛନ୍ତି, ନିରପରାଧ ସଜା ପାଉଛନ୍ତି, ଅଯୋଗ୍ୟ ଲୋକ ଯୋଗ୍ୟୋଚିତ ଆସନ ଅଧିକାର କରୁଛନ୍ତି, ଶତ ଶତ ସ୍ଥାନରେ କ୍ଷମତାର ଅପବ୍ୟବହାର ହେଉଛି, ଅମଣିଷ ମଣିଷରେ ସୁମାରି ହେଉଛନ୍ତି, ମୂର୍ଖ ପଣ୍ଡିତର ସାର୍ଟିଫିକେଟ ହାସଲ କରୁଛନ୍ତି । ଭଲ ମାଲ ଉପରେ ସଢ଼ା ମାଲର ମାର୍କା କରା ହେଉଛି, କେତେ ଅପରାଧୀ, କେତେ ଖୁଣୀ ଆସାମୀ, କେତେ ଗଣ୍ଠିକଟା, କେତେ ଡକେଇତ ଦାଣ୍ଡରେ ହେଣ୍ଡି ମାରି ବୁଲୁଛନ୍ତି, ଅଥଚ କେତେ କେତେ 'ଧର୍ମଯୁଦ୍ଧେଚ୍ଛୁ' ଜେଲଖାନାରେ କତା ବାଡ଼ଉଛନ୍ତି ଓ ତେଲ ଘଣା ପେଲୁଛନ୍ତି । ତା ଉପରେ ଆଜିକାଲି କି ଇଉରୋପ, କି ଏସିଆ, କି ପୂର୍ବ, କି ପଶ୍ଚିମ, କି ଉତ୍ତର, କି ଦକ୍ଷିଣ ସବୁଆଡ଼େ ରଣଚଣ୍ଡୀଙ୍କର ଲହୁ ଲେଲିହାନ ଜିହ୍ୱା ହାବୁଡ଼େ ଯେ ପଡୁଛନ୍ତି, ଦୁର୍ଭିକ୍ଷର ଦାଉଘାତ ଯାହାଙ୍କଠେଇ ବାଜୁଛି ସେମାନଙ୍କ ହଲାପଟା ସେହି ସେହି ମୁଲକର କଦର୍ଥନା ଅକଥ୍ୟ, ଅଶ୍ରୁତପୂର୍ବ ଓ ଅଦୃଷ୍ଟପୂର୍ବ । ତୁମେ ବଲବଲ କରି ଚାହିଁଥାଅ, କିନ୍ତୁ ଯେବେ ପଦେକଥା କହିବ, ଯେବେ ପାଟି ଫିଟାଇବ ତେବେ ତୁମକୁ ବେଡ଼ି ଶାଂକୋଳି ପିନ୍ଧିବାକୁ ହେବ । ଏଥିପାଇଁ ସବୁ ଦେଖୁଥାଅ, ସବୁ ଶୁଣୁଥାଅ, ସବୁ ଅଙ୍ଗେ ନିଭାଉଥାଅ, କିନ୍ତୁ ମୁହଁରେ ପାଲବିଣ୍ଡା ମାର । ବର୍ତ୍ତମାନ ଯେଉଁ ସମୟ ପହଞ୍ଚିଛି ସେଥିରେ ସବୁ ଗୁରୁବଚନ, ସବୁ ଶାସ୍ତ୍ର ବାକ୍ୟ, ସବୁ ଆପ୍ତବଚନ, ସବୁ ବିବେକବାଣୀ, ସବୁ ନ୍ୟାୟ, ସବୁ ଧର୍ମନୀତି ପାଣି ଫୋଟକା ଭଳି ମିଳେଇ ଯାଉଛି ।

ଆଜିଯାକେ ଶୁଣି ଆସିଲେଇଁ, ପଢ଼ି ଆସିଲେଇଁ, ଦେଖି ଆସିଲେଇଁ, ଧର୍ମର ଜୟ, 'ସତ୍ୟର ଜୟ, ଅଧର୍ମର ପରାଜୟ ସତ୍ୟର ପରାଭବ । କିନ୍ତୁ ଆଜି ଆଖି ଆଗରେ ଦେଖୁଥାଇଁ

ଅଧର୍ମର ଜୟ, ଅସତ୍ୟର ଜୟ, ଧର୍ମର ପରାଜୟ, ଅସତ୍ୟର ପରାଭବ । ଆଖି ଆଗରେ ଏସବୁ ଦେଖି ମନେ ହେଉଛି ଧର୍ମ, ସତ୍ୟ, ନ୍ୟାୟ ଏଗୁଡ଼ାକ କେବଳ ପୋଥିଗତ ବିଦ୍ୟା । ତେବେ ମନକୁ ତ ବୋଧଶୋଧ କରିବା ଦରକାର । ଏଥିପାଇଁ ତମକୁ ଉପଦେଶ ବାକ୍ୟର ପୂର୍ବରେ ଆଉ ଗୋଟିଏ ଶବ୍ଦ ଯୋଡ଼ିବାକୁ ହେଉଛି 'ଧର୍ମର ଜୟ' ପଛରେ 'ଶେଷକୁ' ପଦଟିଏ ଯୋଡ଼ିଅଛି, ଆମର ମନକୁ ବୋଧଶୋଧ କରୁଥାଇଁ । ଆଜି ସିନା ଘରୁଆ ଶତ୍ରୁ ଅଧର୍ମ କରି, ଅନ୍ୟାୟ କରି, ଅସଦାଚରଣ କରି, ଦୁନିଆରେ ଜିତି ଯାଉଛି, କିନ୍ତୁ ଶେଷରେ ସେ ପରାଜିତ ହେବ, ଶେଷରେ ସେ 'ସମୂଳେ ବିନଶ୍ୟତି' ହେବ । ଏହି ମନବୋଧିଆ ବଚନ ଶୁଣି ମୋ ମନରେ ଏହିତା ଉଦୟ ହେଉଛି - ଅଧର୍ମର ଜୟକୁ ଯେଉଁମାନେ ଅଙ୍ଗେ ନିଭାଉଛନ୍ତି, ସେଠାରେ ଧର୍ମର ଜୟ ହେଲା ବେଳକୁ ସେମାନେ ତ ଇହ ସଂସାରରେ ନ ଥିବେ, ସେମାନଙ୍କ ନାଆଁ ତିନି ପାଞ୍ଜିରୁ ତ ପୋଛା ସରିଥିବ । ସେତେବେଳକୁ 'ଧର୍ମର ଜୟ' ହେଲେ ତାଙ୍କର ଯାଏ କେତେ ? ଆସେ କେତେ ?''

ଆଚ୍ଛା, ଏ କଥାକୁ ଆଉ ଗୋଟାଏ ଦୃଷ୍ଟିକୋଣରୁ ଆଲୋଚନା କରାଯାଉ । ଅନ୍ୟାୟକାରୀ ଶତ୍ରୁ ତା ଅନ୍ୟାୟ କାର୍ଯ୍ୟରେ ଲାଗିଛି । ଆମେ ତା ଅନ୍ୟାୟର ସମାଲୋଚନା କଲେ, ତାକୁ ପଦେ ଅଧେ 'ଅପ୍ରିୟ ସତ୍ୟ' ଶୁଣାଇ ଦେଲେ, ସେ ତା ଅନ୍ୟାୟ ଆଚରଣରୁ ବିରତ ହେଉ ନାହିଁ । ଏପରି ସ୍ଥଳରେ ଆମ 'ଅପ୍ରିୟ ସତ୍ୟରେ' ତାର ଯାଏ କେତେ ? ଆସେ କେତେ ? ଅନ୍ୟାୟକାରୀ ଅତ୍ୟାଚାର ଫଳରେ କେତେ ଦେଶ ଉଚ୍ଛନ୍ନ ହେଲା । କେତେ ଶତ ପ୍ରାଚୀନ-କୀର୍ତ୍ତି ଧୂଳିସାତ୍ ହେଲା । କେତେ ସହସ୍ର ନଗର ଭସ୍ମୀଭୂତ ହେଲା, କେତେ ଅୟୁତ ପରିବାର ନିରାଶ୍ରୟ ହେଲେ, କେତେ ଲକ୍ଷ ବ୍ୟକ୍ତି ମୃତ ହେଲେ, କେତେ ନିୟୁତ ଜୀବଜନ୍ତୁ ଇହଲୀଳା ସାଙ୍ଗ କଲେ, କେତେ କୋଟି ସ୍ତ୍ରୀ ଓ ଶିଶୁ ଅନାଥ ହେଲେ, କେତେ ଅର୍ବୁଦ ମୁଦ୍ରା ଅପବ୍ୟୟ ହେଲା, ଏସବୁର କ୍ଷତିପୂରଣ 'ଶେଷରେ ଧର୍ମର ଜୟ ଓ ଅଧର୍ମର ପରାଜୟ' ଦ୍ୱାରା ହେବଟି କି ?

ଏ ପ୍ରଶ୍ନର ସନ୍ତୋଷଜନକ ଉତ୍ତର କଅଣ ? ଏହା ଆମ୍ଭମାନଙ୍କର ଜାଣିବା ଉଚିତ । ପରନ୍ତୁ ଏ ପ୍ରଶ୍ନର ସମାଧାନ କରିବା ପାଇଁ ଏହି ମାତ୍ର ବୋଲାଯାଇପାରେ ଯେ, ଯେତେବେଳେ ବିଶ୍ୱସ୍ରଷ୍ଟା ଦେଖିଲେ ଯେ ସଂସାରରେ ଅନ୍ୟାୟ, ଅଧର୍ମ, ଅସତ୍ୟ, ଅନାଚାର, ଅତ୍ୟାଚାର, ଅବିଚାରର ମାତ୍ରା ଅତି ବଢ଼ିଗଲା, ସେତେବେଳେ ବିଷସ୍ୟ ବିଷମୌଷଧଂ' ନୀତିକୁ ଖଟାଇ ସେ ସଂସାରରୁ ଅନ୍ୟାୟ, ଅଧର୍ମ, ଅସତ୍ୟକୁ ମୂଳପୋଛ କରି ଜୀର୍ଣ୍ଣ ଦୁନିଆର ସଂସ୍କାର କରିବାକୁ, ସେ ଅନ୍ୟାୟର, ଅଧର୍ମର ଓ ଅସତ୍ୟର ମାତ୍ରାକୁ ବଢ଼ାଇ ଦେଇ ସଂସାରକୁ ଛାରଖାର କରି ଦେଲେ ଓ ଚଷା ଏ ବର୍ଷର ପରାନ୍ନ ଶସ୍ୟକୁ ଅଧିକାଂଶକୁ ଖାଇବାରେ ବ୍ୟୟ କରି ବାଛିକରି ଯେଉଁ ଅଳ୍ପାଂଶ ରଖେ ସେହି ବିହନରୁ ପୁଣି ଆଗାମୀ ବର୍ଷର ଫସଲ ଉତାରିବା ଭଳି ଏ ମହା ବିପ୍ଳବରୁ ଯେଉଁମାନେ ବର୍ତ୍ତିକରି

ରହିଯିବେ ତାଙ୍କୁ ବିହନ ରୂପେ ବ୍ୟବହାର କରି ଭବିଷ୍ୟତ୍ ସଂସାର ଗଢ଼ିବାକୁ ଭଗବାନ୍ ପାଞ୍ଚକରି ଏ ଲୀଳା ଭିଆଇ ଅଛନ୍ତି । ଗୀତାରେ ଭଗବାନ୍ କହିଅଛନ୍ତି "ଯଦାଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ ! ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ" - ଅର୍ଥାତ୍ ସଂସାରରେ ଧର୍ମର ଗ୍ଲାନି ଓ ଅଧର୍ମର ଅଭ୍ୟୁତ୍ଥାନ ଘଟିଲେ ମୁଁ ସାଧୁମାନଙ୍କ ପରିତ୍ରାଣ ଓ ଦୁଷ୍କୃତ ବ୍ୟକ୍ତିମାନଙ୍କ ବିନାଶ ନିମନ୍ତେ ପୃଥିବୀରେ ଯୁଗକୁ ଯୁଗ ଅବତୀର୍ଣ୍ଣ ହୁଏ । ଆଜିକୁ ୩୦/୪୦ ବର୍ଷ ହେବ ଏସିଆର, ଇଉରୋପର ଓ ଆମେରିକାର ବହୁ ଚିନ୍ତାଶୀଳ ବ୍ୟକ୍ତି ଆଧୁନିକ ସଭ୍ୟତାର ସ୍ୱରୂପକୁ ଅଧ୍ୟୟନ କରି ବରାବର କହୁଥିଲେ ଯେ ସଂସାରରେ ଅଧର୍ମର ଅଭ୍ୟୁତ୍ଥାନ ଓ ଧର୍ମର ଗ୍ଲାନି ଉପସ୍ଥିତ ହେଲାଣି ଓ ଏ ସଭ୍ୟତା ଖୁବ୍ ବେଗରେ ସୁଗଭୀର ଅତଡ଼ା ଆଡ଼କୁ ଦଉଡ଼ିଛି । ଜ୍ଞାନୀମାନେ ଏହା ଦେଖିପାରିଲେ, ଭଗବାନ୍‌ଙ୍କ ଆଖି ଅବଶ୍ୟ ସଂସାରର ଏ ଅବସ୍ଥା ଉପରେ ପଡ଼ିଲା ଓ ସେ ଦୁଷ୍ଟ ଦଳନ ଓ ଶିଷ୍ଟ ପାଳନ ପାଇଁ 'ବିଶ୍ୱବ୍ୟାପୀ ସମର ଦେବତା' ଅବତାର ଗ୍ରହଣ କରି ୧୯୩୯ରେ ପୃଥିବୀରେ ଆସି ପହଞ୍ଚିଛନ୍ତି ଓ ପୃଥିବୀରୁ ଦୁଷ୍କୃତିମାନଙ୍କର ମୂଳପୋଛ ନ ହେବା ପର୍ଯ୍ୟନ୍ତ 'ସମର ଦେବତାଙ୍କ ଲୀଳା ସାଙ୍ଗୋପାଙ୍ଗ ହେବ ନାହିଁ । ଏଥିରେ ସନ୍ଦେହ ନାହିଁ । ଆମ ମାଳିକା ମଧ୍ୟ ଶହେ ଦେଢ଼ଶହ ବର୍ଷ ଆଗରୁ ଏ କଥା ଡକା ଛାଡ଼ିଛନ୍ତି ।

ପାଠକ-ପାଠିକାମାନେ ବିଚାରୁ ଥିବେ "ବାର୍ଦ୍ଧକ୍ୟରେ ମତିଭ୍ରମ ହୁଏ, ଏ ବଚନର ସତ୍ୟତା ଏ ଲେଖାରେ ପ୍ରତିପାଦିତ ହେଉଛି । କାରଣ ପ୍ରସଙ୍ଗ ଆରମ୍ଭ ହେଲା କେଉଁଠାରେ ? ବାର୍ଦ୍ଧକ୍ୟ ଜୀର୍ଣ୍ଣ ଲେଖକ ପ୍ରସଙ୍ଗକୁ କେଉଁଠାକୁ ଗଡ଼ାଇ ଆଣିଲେଣି ? ଏଥିରେ ଦୁଃଖ କଥା, ସୁଖ କଥା ବା ଅଙ୍ଗେ ନିଭାଇବା କଥା ତ କିଛି ନାହିଁ ।" ଏ ଅଭିଯୋଗ (Charge)ର ସାଫିଆନା (Defence)ରେ ଲେଖକ ନିବେଦନ କରୁଅଛନ୍ତି ଯେ, ଆଜିକାଲି ସମସ୍ତେ ମହାଯୁଦ୍ଧଜନିତ ଦୁଃଖ ଓ ସୁଖ ଅଳ୍ପବହୁତ ଅଙ୍ଗେ ନିଭାଇ ଥାଇଁ । ଆମ ବଡ଼ବଡ଼ିଆ ମୁଖିଆ କୁହାଳିଆମାନେ ବରାବର କହି ଆସୁଛନ୍ତି ଯେ ଆମକୁ ସ୍ୱାଧୀନତା ନ ଦେଇ ବ୍ରିଟିଶ ଜାତି ପରାଧୀନ କରି ରଖିଛନ୍ତି, ଆମ ଭାରତ ସ୍ୱାଧୀନ ଦେଶ ହୋଇଥିଲେ ଆମେ କେଡ଼େ ସୁଖରେ ଥାଆନ୍ତେ; କିନ୍ତୁ ଆଜି ପୃଥିବୀର 'ସ୍ୱାଧୀନ' ଜାତିମାନଙ୍କ ଦୁର୍ଦ୍ଦଶା ଦେଖି ଅନ୍ତତଃ ମୋର ମନେ ହେଉଛି ଯେ ଆମେ ଏଥିପୂର୍ବରୁ ସ୍ୱାଧୀନ ହୋଇଥିଲେ ଆଜି ଏହି ମହାଯୁଦ୍ଧର ଫଳରେ ଆମ ଅବସ୍ଥା ଗାଆଣୀ ଗାଇଲେ ସରୁ ନ ଥାନ୍ତା । ଇଉରୋପର ସ୍ୱାଧୀନ ଫ୍ରାନ୍ସ, ସ୍ୱାଧୀନ ଇଟାଲୀ, ସ୍ୱାଧୀନ ବେଲଜିଅମ, ସ୍ୱାଧୀନ ଡେନ୍‌ମାର୍କ ଦେଶମାନଙ୍କ କଥା ଛାଡ଼, ଆମ ଆଖିଆଗରେ ଏସିଆର ସ୍ୱାଧୀନ ଚୀନର, ସ୍ୱାଧୀନ ଶ୍ୟାମ ଦେଶର ଯାହା ଅବସ୍ଥା ହୋଇଛି ତାହା ଆମେ ଦେଖୁଥାଇଁ । ଆଜି ଭାରତ ସ୍ୱାଧୀନ ରାଜ୍ୟ ହୋଇଥିଲେ ଜାପାନର ପାଟିରୁ ଲାଳ ବୋହି ଥାଆନ୍ତା ଓ ଆଜି ଭାରତ ପ୍ରାଚୀନ କାଳରେ ପଶ୍ଚିମ ଆଡୁ ଆକ୍ରମଣ ବଦଳରେ ପୂର୍ବ ଆଡୁ ଆକ୍ରମଣର ତୋଡ଼ ସମ୍ଭାଳୁ ଥାଆନ୍ତା ।

ଯୁଦ୍ଧ କ୍ଷେତ୍ରର ସାକ୍ଷାତ୍ ବିପରିମାନ ଭାରତକୁ ପଡ଼ି ନାହିଁ, କିନ୍ତୁ ଯୁଦ୍ଧର ଯେତିକି ଆଞ୍ଚ ଭାରତ ଦେହରେ ଲାଗିଛି ସେତିକିରେ ତ ଆମ ହଂସା ଉଡ଼ି ଯାଉଛି । ଧନ-ଜନ-ଗୋପ-ଲକ୍ଷ୍ମୀ-ପୂର୍ଣ୍ଣା ଭାରତ ଭୂମି ଆଜି ଏ ଯୁଦ୍ଧର ଫଳରେ ଖାଦ୍ୟହୀନତା ଓ ବସ୍ତ୍ରହୀନତା ଭୋଗ କରୁଅଛି, ଆଜି ସମସ୍ତ ଦେଶକାର୍ଯ୍ୟ ଦ୍ରବ୍ୟର ମୂଲ୍ୟ ବହୁଗୁଣ ବଢ଼ିଅଛି, ଗମନାଗମନର ଅସୁବିଧା ଆଉ ଭୟଙ୍କର ଭାବରେ ବଢ଼ିଛି, ନାନାପ୍ରକାର କଟକଣାରେ ଲୋକେ ହଇରାଣ ହେଉଛନ୍ତି, ଖାଦ୍ୟ-ପଡ଼ି କଟକଣା, ଲୁଗାପଟା ବିକ୍ରି ଖରଦିର କଟକଣା, ତେଲଲୁଣ ଆଦିର କଟକଣା, ପରିବାପତ୍ରର କଟକଣା, ଆଲୁଅ କଟକଣା, ମୁଦ୍ରା ଓ ରେଜା ମୁଦ୍ରା ବିଷୟରେ କଟକଣା, ରେଲରେ ମାଲ ନେବା ଆଣିବା କଟକଣା, କାଗଜ କଲମର କଟକଣା, ଘର ଭଡ଼ାଦେବା ଓ ନେବା କଟକଣା, ସମ୍ବାଦପତ୍ରମାନଙ୍କ କଟକଣା, କଥାବାର୍ତ୍ତା ବିଷୟରେ କଟକଣା, ସଭାସମିତି ବିଷୟରେ କଟକଣା, ଭୋଜିଭାତରେ କଟକଣା । ଦିନକୁଦିନ କଟକଣା ଉପରେ କଟକଣା ସହି ସହି ଓ ତଜ୍ଜନିତ ଚଟକଣା ଉପରେ ଚଟକଣା ଖାଇ ଖାଇ ଆମେ ସବୁ ଗୟାଁ ହୋଇ ଗଲୁଣି । ଏ କଟକଣାରେ ଗୋଟିଏ ବିଶେଷତ୍ୱ ଏହିଯେ, ପଣ୍ୟଦ୍ରବ୍ୟାଦିର କ୍ରୟ-ବିକ୍ରୟ ପାଇଁ ଆଗେ ଗୋଟିଏ ପ୍ରକାଶ୍ୟ ବଜାର ଓ ଗୋଟିଏ ଗୋଟିଏ ଦାଣ୍ଡ ଭାଉ ଥିଲା, କିନ୍ତୁ କଟକଣା ଫଳରେ ଆହୁରି ଗୋଟିଏ ଚୋରା ବଜାରର ଜନ୍ମ ହେଲା । ଗୋଟିଏ ଦ୍ରବ୍ୟର ଭାଉକୁ ସରକାର କଟକଣା କଲା ବାସିଦିନ, ସେ ଦ୍ରବ୍ୟ ପ୍ରକାଶ୍ୟ ବଜାରରୁ ଉଭେଇ ଯାଉଛି ଏବଂ ସରକାରୀ କଟକଣା ଭାଉରେ ସେ ଦ୍ରବ୍ୟ ଦାଣ୍ଡ ବଜାରରେ ମିଳୁ ନାହିଁ । କିନ୍ତୁ କଟକଣା ଭାଉରୁ ଡବଲ ତିପଟ ଦାମରେ ଚୋରା ବଜାରରେ ସେ ଦ୍ରବ୍ୟ ମିଳୁଛି ।

'ବେଡ଼ି ଉପରେ କୋରଡ଼ା' ଭଳି ଏ ଯୁଦ୍ଧ ଦାଉ ଉପରେ ଭାରତର ବହୁ ଅଞ୍ଚଳକୁ ଦୁର୍ଭିକ୍ଷ, ଅତିବୃଷ୍ଟି, ଅନାବୃଷ୍ଟି, ତୋଫାନ ଯୋଗୁଁ ଅକାଳ ମାଡ଼ି ବସିଲା ଓ ଏଥିର ଫଳରେ ସହସ୍ର ସହସ୍ର ନରନାରୀ, ବାଳକ ବାଳିକା ଯମପୁରକୁ ଗଲେ ଏବଂ ବଳକା ଅଞ୍ଚଳମାନଙ୍କରୁ ନଅଣ୍ଟ ଅଞ୍ଚଳମାନଙ୍କୁ ଖାଦ୍ୟ-ଶସ୍ୟ ପଠାଯିବାର ସରକାରୀ ବ୍ୟବସ୍ଥା ହେଲା । ନଅଣ୍ଟିଆ ଅଞ୍ଚଳକୁ ଖାଦ୍ୟଦ୍ରବ୍ୟ ପଠାଯିବା ବିଷୟରେ ଅଟକଳ ରହି ନ ପାରିବା ଯୋଗୁଁ ବଳକା ଅଞ୍ଚଳମାନଙ୍କ ଅବସ୍ଥା ନଅଣ୍ଟିଆ ଅଞ୍ଚଳମାନଙ୍କ ଅବସ୍ଥାର ସମକକ୍ଷ ହେଲା । ଭାରତ ସରକାର ପ୍ରାଦେଶିକ ସରକାର, ସ୍ଥାନୀୟ ସରକାର ଓ ରାଜୋଡ଼ା ସରକାରମାନେ ନିଜ ନିଜ ଇଲାକାରେ ଖାଦ୍ୟ-ଦ୍ରବ୍ୟମାନଙ୍କ ସମ୍ବନ୍ଧେ କଟକଣା ଜାରି କଲେ । ୧୮୬୬ ସାଲର ଓଡ଼ିଶାର ଚିରସ୍ମରଣୀୟ 'ନଅଙ୍କ' ଦୁର୍ଭିକ୍ଷ ସମୟରେ ଟଙ୍କାକୁ ୨ ଗୌଣୀ ଚାଉଳ (୪ ସେର ମିଳୁଥିଲା) ଆଜି ୧୯୪୨-୪୩-୪୪ର ଅକାଳରେ ଚାଉଳ ଟଙ୍କାକୁ ୨ସେର ଅଧେ ଠାରୁ ୨ ସେର ହେଲା । ଏହା ଦେଖି ଧାନର ପୁଞ୍ଜିଦାରମାନେ ଆହୁରି ମହର୍ଗ ହେବ ବୋଲି ନିଜ ନିଜର ଧାନକୁ ଲୁଚାଇଲେ । ଅତଏବ ସରକାର ବାଧ୍ୟ ହୋଇ

'ଧାନୁଆ'ମାନଙ୍କଠାରୁ ବଳକା ଧାନ କିଣିଲେ । ଏହି କିଣା ବିକା ମାମଲତ ପାଇଁ କି ସହର, କି ମଫସଲ, କି ଜିଲ୍ଲା, କି ସବ୍‌ଡିଭିଜନ, କି ଥାନା, କି ଫାଣ୍ଡି, କି ପରଗନ୍ନା, କି ମଉଜା ସର୍ବତ୍ର ଧାନ ଚାଉଳ କଟକଣା କଳାବାଲା ହାକିମଗୁଡ଼ାକ ଚତୁର୍ମାସ୍ୟାରେ ତେଲୁଣୀ ପୋକ ମନ୍ଧା ଭଳି ସାଲୁ ସାଲୁ ହେଲେ । ଗରିବ, କିଣିଖିଆ, ମୂଲିଆ, ଭିକାରି ଓ ଭୂମିହୀନ ଲୋକଙ୍କ ପେଟ ସଙ୍ଗେ ଥାନପତି ହାକିମମାନଙ୍କ ପାଟଣା (ପେଟ ପାଟଣା) ଯୋଗ ହେଲା । ଏହି ସୁଯୋଗରେ ପୀଠ ଦେବତା, ପାର୍ଶ୍ୱ ଦେବତା, ବାସ୍ତୁ ଦେବତା, କୁଳ ଦେବତା, ପିତୃ ଦେବତା, ମାତୃକା ଦେବତା, ପୂଜା ଦେବତା, ଅପୂଜା ଦେବତା, ଗଣ ଦେବତା, ବଣ ଦେବତା, ରଣ ଦେବତା, ଜଣ ଦେବତା, ଅପ ଦେବତା, ଗ୍ରାମ ଦେବତା, ପ୍ରଗନ୍ନା ଦେବତା, ଥାନା ଦେବତା, ସବ୍‌ଡିଭିଜନ ଦେବତା, ଅନାହାରୀ ଦେବତା, ନିରାହାର ଦେବତା, ନୀରହାରୀ ଦେବତା, ଗ୍ରହ ଦେବତା, ଜଳଚର ଦେବତା, ସ୍ଥଳଚର ଦେବତା, ଉଭୟଚର ଦେବତା, ରେଳବାଇ ଦେ[illegible]ତା, ନୌ-ଦେବତାମାନ[illegible] ଆବିର୍ଭାବ ଓ କେତେକଙ୍କର ଆବିର୍ଭାବ ପରେ ତିରୋଭାବ [illegible] ରେସିଡେଣ୍ଟ, ପ୍ରେସି[illegible], ସୁପ୍ରି[illegible]. ଇଣ୍ଡେଣ୍ଟ, ଡିପେଣ୍ଡେଣ୍ଟ, ଇଣ୍ଡିପେଣ୍ଡେଣ୍ଟ, ରୋ[illegible]ଡେଣ୍ଟ, ଷ୍ଟୁଡେଣ୍ଟ, ଏହି[illegible] ନାନା ଜାତିର, ନାନା କିସମର,ନାନା ନାମର, ନାନା ପାହିଆ[illegible] ଚଳାଚଳ ଦେବଦେବୀମାନଙ୍କ ପୂଜା, ଅର୍ଚ୍ଚନା, ବନ୍ଦନା, ବନ୍ଦାପନା, ଆରା[illegible]ରେ ଗରିବଗୁରୁବାଙ୍କଠାରୁ ଆରମ୍ଭ କରି ଶେଠ ସାହୁକାର, ଶତପତି, ସହସ୍ରପତି, ଲକ୍ଷପତି, କୋଟିପତି ପର୍ଯ୍ୟନ୍ତ ସବୁ ଲାଗିଗଲେ । କେଉଁଠାରେ ତ୍ରିନାଥ ମେଳା, କେଉଁଠାରେ ସତ୍ୟନାରାୟଣ ପୂଜା, କେଉଁଠାରେ ପୋଥି ପୂଜା, କେଉଁଠାରେ ଠିଆପାଲା, କେଉଁଠାରେ ଲଢ଼େଇ (ବାଦୀ) ପାଲା ଲାଗିଲା; ଏବକା ପ୍ରଚାର ଠାରୁ ଷୋଡ଼ଶୋପଚାର ପର୍ଯ୍ୟନ୍ତ ସବୁ ଶ୍ରେଣୀର, ସବୁ ସଂଖ୍ୟାର ଉପଚାର ବିଶିଷ୍ଟ ପୂଜାରେ ଦେଶ ଉବେଇ ଟୁବେଇ ହେଲା । ଧାନ କୋଠି, ଧାନ ଅମାର, ପାଳ ମରେଇ, ଧାନମେଦ, ଧାନଗଦା, ଘୁମ, ଧାନ ଓଳିଆ, ଭୁଜ ଓଳିଆ, ବିହନ ଓଳିଆ, ମୁଗ ଓଳିଆ, ବିରି ଓଳିଆ ସବୁ ପାଣ୍ଠି ପୁଞ୍ଜି ଉପରେ ଦେବତାମାନଙ୍କ ଦୃଷ୍ଟି, ସୃଷ୍ଟି, କୃଷ୍ଟି, ପୁଷ୍ଟି, ମୁଷ୍ଟି ପଡ଼ିଲା ଓ ଦୃଷ୍ଟି ଫଳରେ ନୋଟରୂପିଣୀ ମାଆ ଲକ୍ଷ୍ମୀ ଭକ୍ତଙ୍କ କ୍ରୋଡ଼ରୁ ଦେବତାଙ୍କ ପକେଟକୁ ଡିଆଁ ମାରିଲେ । ଶତଶତ ଲୋକ ମାଆ ଲକ୍ଷ୍ମୀଙ୍କ ପୋଷିଆ ପୁଅ ବନିଗଲେ । କିନ୍ତୁ ଏ ପରିସ୍ଥିତିକୁ ସରକାରୀ କର୍ତ୍ତୃପକ୍ଷମାନେ ଖୁବ୍ ବିଚକ୍ଷଣତା ସହିତ ସୁଧାରିଛନ୍ତି ।

ଏ ହେଲା ଭାରତବର୍ଷର ସାଧାରଣ ଚିତ୍ର । ଉତ୍କଳ ଦେଶ ତ କଳାରେ ସବୁ ଦେଶଠାରୁ ଉତ୍କୃଷ୍ଟ । ଯୁଦ୍ଧଚିତ୍ର ଓ ଅକାଳବକ୍ର ସାଙ୍ଗକୁ ଓଡ଼ିଶାରେ ମନ୍ତ୍ରିମଣ୍ଡଳ ଚିତ୍ର ପ୍ରଦର୍ଶିତ ହେଲା । ମାଆ ଲକ୍ଷ୍ମୀତ ଅଘରଦ୍ୱାରୀ ବୁଲିଲେ, ମାଆ ସରସ୍ୱତୀ ଦେଖିଲେ ଯେ ସବୁଠାରେ ତାଙ୍କ ପାଇଁ କବାଟ କିଳା ହୋଇଛି, ସେଥିରୁ ସେ ଆଶ୍ରୟସ୍ଥଳ ଉଣ୍ଡି ବୁଲିଲେ; ପଛକୁ ଦେଖିଲେ ସେ ଓଡ଼ିଶାର ମନ୍ତ୍ରିମଣ୍ଡଳ ଓ ମଣ୍ଡଳୀର ଭକ୍ତ ଓ ପାରିଷଦ ମଣ୍ଡଳରେ ଜଣେ କେତେ ତାଙ୍କ ବରପୁତ୍ର ଅଛନ୍ତି ।

ପଣ୍ଡିତ ଓ ପଣ୍ଡିତଙ୍କ ମଧ୍ୟରେ ଯୁଦ୍ଧ ଲାଗିଲା । ସବୁ ଯୁଦ୍ଧରେ ଦୁଇ ପକ୍ଷ ଥାନ୍ତି । କିନ୍ତୁ ଆମ ଓଡ଼ିଶାର ତ ବିଶେଷତ୍ୱ ରହିବା ଦରକାର । ଏଥିପାଇଁ ଏ ମନ୍ତ୍ରୀ ଯୁଦ୍ଧରେ ଅଧିକ ପକ୍ଷ ସଜବାଜ ହୋଇ ଯୁଦ୍ଧ ଭୂଇଁକୁ ବାହାରି ପଡ଼ିଲେ । ଆବହମାନ କାଳରୁ ଦୁନିଆରେ ଯେତେ ଯୁଦ୍ଧ ଲାଗିଛି, ସେସବୁ ଯୁଦ୍ଧରେ ଗୋଟିଏ ପକ୍ଷ ହାରେ ଓ ଗୋଟିଏ ପକ୍ଷ ଜିତେ; ନଚେତ୍ ରଣ କଣ୍ଡୁର ନିବୃତ୍ତ ହେଲେ ଦୁଇ ପକ୍ଷ ମଧ୍ୟରେ ସନ୍ଧି ହୁଏ । କିନ୍ତୁ ଓଡ଼ିଶାର ତ ବିଶେଷତ୍ୱ ରହିବା ଦରକାର । ଏ ଯୁଦ୍ଧରେ ଉଭୟ ପକ୍ଷଙ୍କର 'ସନ୍ଧି' ବା 'ସନ୍ନିପାତ' ହେଲା ନାହିଁ । କିମ୍ବା ଏକପକ୍ଷର 'ଜିତାପଟ' ଓ ଅନ୍ୟ ପକ୍ଷର 'ହାରପଟ' ହେଲା ନାହିଁ । ଉଭୟପକ୍ଷ ଚିତ୍‌ପଟାଙ୍ଗ ହେଲେ ଓ କାଳନେମିର ଲଙ୍କା ଭାବ ହେଉ ହେଉ ଶ୍ରୀରାମଚନ୍ଦ୍ର ଆସି ଲଙ୍କା ଅଧିକାର କଲେ । ଯୁଦ୍ଧାଗ୍ନି ନିର୍ବାପିତ ହେଲା । ଯୁଦ୍ଧ କଣ୍ଡୁର ନିବୃତ୍ତ ଘଟିଲା । ଉଭୟ ପକ୍ଷ ଯେଝା ଦଳବଳ ନେଇ ଯେଝା ଶିବିରକୁ 'ଚିତ୍‌ପଟାଙ୍ଗ' ପତାକା ଉଡ଼ାଇ ଉଡ଼ାଇ ପ୍ରତ୍ୟାବୃତ୍ତ ହେଲେ । ଅବଶ୍ୟ ମୁଖ କଣ୍ଡୁ ମରି ନାହିଁ କିମ୍ବା ଯୁଦ୍ଧାଗ୍ନିର କୁହୁଳା ବନ୍ଦ ହୋଇ ନାହିଁ । ଜାଳ ଯୋଗା ନ ହେଲେ ନିଆଁ ବଳେ ବଳେ ଲିଭିଯିବ । କାଲି ସକାଳେ ରାମଚନ୍ଦ୍ର ରାଜା ହେବେ କଅଣ, ସକାଳୁ ଉଠି ସୀତା ଓ ଲଇଖ୍ୟଣଙ୍କୁ ଘେନି ସେ ବନବାସକୁ ଗଲେ । ଏ Cyclone (ଝଡ଼)ରେ ଶିଳ ଶିଳପତା ଗଗନେ ଉଡୁଛନ୍ତି, ଶିମିଳିତୁଳା କହୁଛି ମୁଁ ଭୂଇଁରେ ଟାଣ ହୋଇ ରହିବି । ଷାଠିଏ ମହଣ ଘିଅ ହେବ ନା ରାଧା ନାଚିବ ! ନାଚନ୍ତୁରେ, କିଏ ନା କରୁଛି । କିନ୍ତୁ ଏହି ଦନି କେତୁଟାରେ ଖୁବ୍ ଢୋଲ ପିଟା, ଝାଞ୍ଜ ବାଡ଼ିଆ, ମୃଦଙ୍ଗ ଫଟା, ଦାଏକା ମାଡ଼, ମଇଳା କନା ଧୁଆ ଧୋଇ, ଗୋଇ ଖୋଳାଖୋଳି, ଯେଝାର ସଚ୍ଚୋଟପଣ ଜାହେରି ହୋଇଗଲା । ହଉ ଥାଉରେ ବାବା ! କିଏ ମନା କରୁଛି ?

ଏ ମନ୍ତ୍ରିମଣ୍ଡଳ ବହୁତ ବାହାଦୁରି କାମ କରିଛନ୍ତି ବୋଲି ଆମର ଶାସକପୁଙ୍ଗବ ସେମାନଙ୍କଠାରୁ ବିଦାୟ ନେଲାବେଳେ ତାଙ୍କୁ ଫୁଲୁବୁକୁ-ଉଲୁସା ଧନ୍ୟବାଦଟାଏ ଦେଲେ । ଏ ମନ୍ତ୍ରିମଣ୍ଡଳର ଶୁଦ୍ଧିକ୍ରିୟା ବେଳକୁ ଦେଶବାସୀ ଥୋକେ ମୁରୁକିହସା ଦେଲେ, ଥୋକେ ଟାକରା ଆମ୍ବୁଲ ଚାଟିଲା ଭଳି ମୁହଁ କଲେ । ଏଥିମଧ୍ୟରୁ କାହା ସଂଖ୍ୟା ବେଶି, ଆଗାମୀ ଭୋଟ ସୁମାରିବେଳେ ଜଣା ପଡ଼ିବ । ଆଜିକାଲି ତ ଚତୁର୍ମାସ୍ୟା ବେଳ ବେଙ୍ଗ କହୁଛି 'ବେଙ୍ଗୁଲୀଲୋ, ଏ ଦୁନିଆ କ୍ଷଣକ୍ଷଣକେ ଆନ ।' ଶେଷକୁ ମାନ୍ୟବର ଲାଟ ସାହେବ ନାଚାର ହୋଇ ଶାସନ ଭାର ନିଜ ହାତକୁ ନେଲେ ଓ ଓଡ଼ିଶା ସ୍ୱସ୍ତିର ନିଃଶ୍ୱାସ ମାଇଲା ।

ଓଁ ଶାନ୍ତିଃ ! ଶାନ୍ତିଃ !! ଶାନ୍ତିଃ !!!

ଏଥିପାଇଁ ମୁଁ ପହିଲେ ଯାହା ଆରମ୍ଭ କରିଥିଲି, ସେହି କଥାର ଉପସଂହାର କରି 'ଦୁଃଖ କହିଲି ସୁଖ କହିଲି ଯାହା ଅଙ୍ଗେ ନିଭେଇଛି ତା କହିଲି' ।

ଭଞ୍ଜପ୍ରଦୀପ - ୧୩ଶ ଭାଗ/ତୃତୀୟ ସଂଖ୍ୟା/ଚୈତ୍ର - ୧୩୫୧ ସାଲ ।

## ।। ବାର ।।

ବୃଦ୍ଧ ମନୁଷ୍ୟର ବୟୋବୃଦ୍ଧି ଅର୍ଥାତ୍ ବାର୍ଦ୍ଧକ୍ୟର ଆକ୍ରମଣ ସଙ୍ଗେ ସଙ୍ଗେ ବହିରିନ୍ଦ୍ରିୟ ଓ ଅନ୍ତରିନ୍ଦ୍ରିୟମାନେ ଅମାନିଆ ଓ ମଗରା ହୋଇ ଯାଆନ୍ତି । ଅନୁଭବରେ ଦେଖା ଯାଇଛି ଯେ ଗୋଟିଏ ଚାକର ଏକ ଖାମିନ୍ଦଙ୍କ ଘରେ ବହୁଦିନ ଚାକିରି ରହିଗଲେ ସେ କ୍ରମେ କ୍ରମେ ଅମାନିଆ ହୋଇଯାଏ ଓ ମୁନିବଙ୍କ କଥାକୁ ଅନେକ ସମୟରେ ପିଠେଇ ଦିଏ, ନଚେତ୍ ଏଡ଼ି ଦିଏ । ସେହିପରି ବହିରିନ୍ଦ୍ରିୟ ଓ ଅନ୍ତରିନ୍ଦ୍ରିୟମାନେ ମାଲିକର ବହୁଦିନ ଚାକିରି କରି ବୃଦ୍ଧାବସ୍ଥାରେ ଅମାନିଆ ଓ ମଗରା ପାଲଟି ଯାଆନ୍ତି । କର୍ମେନ୍ଦ୍ରିୟମାନେ ମାଲିକଙ୍କ ହୁକୁମ ମାନନ୍ତି ନାହିଁ ।

ଏ କଥାର ଅବତାରଣା କରିବାର ମତଲବ ଏହି ଯେ ବୃଦ୍ଧାବସ୍ଥାରେ ମୁଁ ନିଜେ ଅନୁଭବ କରୁଛି ଯେ ହାତଗୋଡ଼, ଜିଭ, ନାକ, କାନ, ଆଖି, ଚମଡ଼ା ଆଦି କର୍ମେନ୍ଦ୍ରିୟମାନ ଓ ଜ୍ଞାନେନ୍ଦ୍ରିୟମାନ ସମସ୍ତେ ଶିଥିଳ ହେଲେଣି । ଆଗେ ଯେଉଁଠାକୁ ଯିବାକୁ ମନ ହେଉଥିଲା ହାତଗୋଡ଼ ସେଠାକୁ ଯିବା ପାଇଁ ହୁକୁମ ମୁତାବକ ଖଡ଼େଦମ୍ ତିଆର ହେଉଥିଲେ । କିନ୍ତୁ ଆଜିକାଲି ହୁକୁମ ବରଦାରମାନେ ହୁକୁମ ତାମିଲ କରିବାକୁ ପଛଉଛନ୍ତି । ଏଥିଲାଗି ସେ ଚାକରମାନଙ୍କ ଉପରେ ଷୋଳପଣ ଦୋଷ ଲଦି ହେଉ ନାହିଁ । ସେମାନେ ଯୁକ୍ତି କରୁଛନ୍ତି ଯେ ତୁମର ଜ୍ଞାନ ପାଇବା ଦିନଠାରୁ ଆଜିକି କମ୍ ବହୁତ ୬୦/୬୫ ବର୍ଷ ହେଲା ଯାହା ଚାଖି ଆସିଛି, ଯାହା ଶୁଙ୍ଘି ଆସିଛି, ଯାହା ଶୁଣି ଆସିଛି, ଯାହା ଦେଖି ଆସିଛି, ଯାହା ଛୁଇଁ ଆସିଛି, ଆଜି ତ ସେହିତା ଅନୁଭବ କରିବ, ବୃଥାରେ ଅନ୍ୟକୁ ଖଟେଇ କରି ଲାଭ କଅଣ ?'' ଏ କୈଫିୟତଟାକୁ ବାଏଁ ବାଏଁ ଉଡ଼େଇ ଦେବାର ଜୁ ନାହିଁ ।

ଗୋଟିଏ ଅନୁଭୂତି କଥା ଧରାଯାଉ । ସଭାସମିତି ଆଦିରେ ଆବାଲ୍ୟ ମୁଁ ବରାବର ଦେଖି ଆସିଛି ଯେ ବକ୍ତାମାନେ ଉପସ୍ଥିତ ଶ୍ରୋତୃମଣ୍ଡଳୀକୁ 'ହେ ଭାଇମାନେ !' 'ଉପସ୍ଥିତ ଭ୍ରାତୃମଣ୍ଡଳି !' ଆଦି ସମ୍ବୋଧନ କରି ଥାଆନ୍ତି । ଏ ସମ୍ବୋଧନର ସୂଚିତାର୍ଥ ବା ଧ୍ୱନ୍ୟାର୍ଥ ଏହି ଯେ, ଆପଣ (ଶ୍ରୋତା)ମାନେ ମୋ (ବକ୍ତା)ର ଭାବଲେଖା, ଅର୍ଥାତ୍ ଭାଇ ଭଳି ମୋର ସ୍ନେହଭାଜନ । କିନ୍ତୁ ସଂସାରରେ ଦେଖୁଥାଇଁ ଯେ ପନ୍ଦରପଣ ଉଣେଇଶ ଗଣ୍ଡା ତିନି କଡ଼ା ଦୁଇ କ୍ରାନ୍ତି ଭାଇ ଭାଇ ମଧ୍ୟରେ ଅହିନକୁଳ ସମ୍ବନ୍ଧ । ଏଥିପାଇଁ ଭାଇର ସହଚର ବା ପ୍ରଚର ବା ଅନୁଚର ବା ପାର୍ଶ୍ୱଚର ଶବ୍ଦ ରୂପେ 'ଭଗାରି' ଶବ୍ଦ ଭାଷାରେ ବ୍ୟବହୃତ ହେଉଛି । ଦୁନିଆରେ ଯେତେ ଶତ୍ରୁତା ଯେତେ ମାଲିମୋକଦ୍ଦମା, ଯେତେ ବିବାଦ ବିସମ୍ବାଦ, ଯେତେ ଟଣାଓଟରା, ଯେତେ ଝଙ୍କା ଘୋଷରା ଦେଖାଯାଏ, ତହିଁର ଆପଣ ନିଜର ଅନୁଭବ ଅନୁସାରେ ଗୋଟିଏ ହିସାବ କଲେ ଦେଖିପାରିବା ଯେ ଦଶ ଜଣଙ୍କ ମଧ୍ୟରୁ ଅନ୍ତତଃ ୮ ଜଣଙ୍କର ଆପଣା ଭାଇଙ୍କ ସଙ୍ଗେ ଶିଳପୁଆ ଓ କାଚଘଡ଼ି ସମ୍ବନ୍ଧ । ଖୋଦ ବକ୍ତାଙ୍କ ଗୋଇ ଖୋଳି ବସିଲେ ଦେଖାଯିବ ଯେ ତାଙ୍କ ସଙ୍ଗେ ତାଙ୍କ ଭାଇଙ୍କର ବିଧି ବନେ ନାହିଁ । ଏହି ମଧୁର ସମ୍ବନ୍ଧକୁ ବକ୍ତା ଆଣି ବିଚ୍ ବଜାରରେ ସାଧାରଣ ସଭାରେ ଶ୍ରୋତୃବର୍ଗଙ୍କ ସଙ୍ଗେ ପ୍ରତିଷ୍ଠା କରୁଛନ୍ତି । ଏହିପରି ମଧ୍ୟ ଦେଖାଯାଏ ଯେ 'ମାତୃଭୂମି', 'ମାତୃଭାଷା',

ଆଦି ଶବ୍ଦ ବ୍ୟବହାର କରି ମାତାଙ୍କ ସଙ୍ଗେ ଆମେ ସ୍ୱଦେଶକୁ ସ୍ୱଭାଷାକୁ ଉଚ୍ଚାସନ ଦେଉଁ । କିନ୍ତୁ ପରଦା ଟେକି ଅଧିକାଂଶଙ୍କ ଅନ୍ଦର ମହଲା ଭିତରକୁ ପଶି ଉଣ୍ଡିଲେ (ଯାହାକୁ ବଙ୍ଗଳାରେ 'ଉଙ୍କିମରା' କହନ୍ତି) ଦେଖିବା ଯେ ମାତୃଭକ୍ତି ପୋଥି ବାଇଗଣ । ମାତୃଭକ୍ତିଟା କେବଳ ଗୋଟାଏ ଆଭିଧାନିକ ଶବ୍ଦ । ପ୍ରକୃତରେ ଶହେ ମାଆଙ୍କ ସଙ୍ଗେ ନବେ ଜଣ ଅଦିନକାରୁଆ, ମାମଲତକାର, ସିଆଣା, ଧୋବଧାବଳିଆ ପୁଅଙ୍କର ଓ ପୁଅଙ୍କ 'ଘରଆଡ଼'ଙ୍କର ବିଧି ବନେ ନାହିଁ । ଯେଉଁ ପୁଅକୁ ମାଆ ସୂତାକାଟି, ଢିଙ୍କି କୁଟି, ପରର ଗୁହାଳ ପୋଛି, ବାସନ ମାଜି ମଣିଷ କରାଇ ଥାଆନ୍ତି, ପୁଅଙ୍କ ମୁଣ୍ଡକୁ ହାତ ପାଇଲାକ୍ଷଣି ପୁଅଙ୍କର ସସ୍ତ୍ରୀକ ବିଦେଶବାସ ରୂପ ଧର୍ମାଚରଣ ଆରମ୍ଭ ହୁଏ ଓ ମାଆଙ୍କ ଭାଗ୍ୟରେ ଗାଆଁରେ ପୂର୍ବର ସୂତାକଟା, ଢିଙ୍କିକୁଟା ହଳଦିବଟା ଆଦି କାଏମ ରହେ । ଯେବେ ଗୃହିଣୀଙ୍କ ଦୟାରୁ ପୁଅଙ୍କ ସପରିବାର ବିଦେଶବାସରେ ମାଆ ଭାଗିନୀ ହୁଅନ୍ତି, ତେବେ ତାଙ୍କ ଭାଗ୍ୟରେ ପଡ଼େ ପୁଅ ବୋହୂଙ୍କର ରାନ୍ଧୁଣୀପଣ, ନାତି ନାତୁଣୀଙ୍କ ଆୟାପଣ, ଘର ଓଳିଆ ଓ ବାସନମଜା କାମ । ଏ ଯେଉଁ ମଧୁର ସମ୍ପର୍କ ଆମର ମାଆମାନଙ୍କ ସଙ୍ଗେ ଫଳତଃ ଦେଖାଯାଏ, ସେହି ସମ୍ପର୍କକୁ ଆମେ ଆଣି 'ମାତୃଭୂମି' ଓ 'ମାତୃଭାଷା' ଉପରେ ଲଦି ଦେଉଁ ।

ପିତୃଭକ୍ତି, ଗୁରୁଭକ୍ତି, ମାତୃଭକ୍ତି, ଭ୍ରାତୃସ୍ନେହ ଏ ସବୁ ଆଜିକାଲି ଆଭିଧାନିକ ଶବ୍ଦରେ ପର୍ଯ୍ୟବସିତ ହୋଇଅଛି । ଆମେ ମୁହଁରେ କହୁଁ "ମୁଁ ଅମୁକାଙ୍କୁ ମାତୃବତ୍ ଭକ୍ତି କରେଁ" କିନ୍ତୁ ସରଜମିନରେ ଆମ ମାତୃଭକ୍ତିର ନମୁନା ଯେବେ ଅମୁକ ଦେଖିପାରୁ ଥାଆନ୍ତେ, ତେବେ ଏ 'ମାତୃଭକ୍ତି'ଠାରୁ ଶହେ କୋଶ ଦୂର ଛଡ଼ାହୋଇ ରହିବାକୁ ଭଗବାନ୍‌ଙ୍କୁ ଡକା ପକାନ୍ତେ, ଆଉ ଯେଉଁ 'ଗୁରୁଭକ୍ତି' କଥା ପୁରାଣଆଦିରେ ଶୁଣୁଥାଇଁ ସେସବୁ ବର୍ତ୍ତମାନ 'ଶଶବିଷାଣ' (ଠେକୁଆ ସିଂହ), 'ଖପୁଷ୍ପ' (ଆକାଶ ଫୁଲ) ଭଳି ସପନ-ପାଠ ହୋଇ ରହିଲାଣି । ସେଦିନ ଆମ ଦେଶର ଖୁବ୍ ଉଚ୍ଚଶିକ୍ଷିତ ନବ୍ୟଯୁବକ ଛାତ୍ରଯାକ ଉତ୍କଳର ପ୍ରଧାନ ଶିକ୍ଷାପୀଠରେ ଗୁରୁଭକ୍ତିର ଯେଉଁ ମୌଖିକ ପ୍ରମାଣ ଦେଖାଇଲେ, ତାହା ଦେଖି ମୁଁ ମନେ ବିଚାରିଲି ଯେ ଆମ ଦେଶରୁ ଏ ସବୁ ମାନ୍ଧାତାଙ୍କ ଅମଳର ତୁଆ (ଯଥା - ପିତୃଭକ୍ତି,ଗୁରୁଭକ୍ତି, ମାତୃଭକ୍ତି, ଭ୍ରାତୃସ୍ନେହ, ପୁତ୍ର ବାତ୍ସଲ୍ୟ) ନିର୍ମୂଳ ହୋଇଗଲେ ଦୁନିଆର ମଙ୍ଗଳ । ଏହିପରି 'ପୁରୁଷର ଯତିତ୍ୱ', 'ସ୍ତ୍ରୀର ସତୀତ୍ୱ' ଏ ସବୁ ତୁଆ ମଧ୍ୟ ସମାଜରୁ ଯେତେ ଶୀଘ୍ର ଲୋପପାଏ, ସମାଜ ସେତେ ଶୀଘ୍ର ଚାଳକହୀନ ଏରୋପ୍ଲେନରେ ସଶରୀର ସ୍ୱର୍ଗଲାଭ କରିବ । ସେହି ମରହଟିଆ କୁସଂସ୍କାରଗୁଡ଼ାକ ଦିନରାତି ଘୋଷିହେଲେ ସମାଜର ଅବନତି ଅବଶ୍ୟମ୍ଭାବୀ - ଏ ସବୁ ନବ୍ୟ ସଭ୍ୟତା ପ୍ରଚୋଦିତ ଉନ୍ନତିର ପରିପନ୍ଥୀ । ଏଗୁଡ଼ିକ ଶୀଘ୍ର ଛାଡ଼ିବାକୁ ହେବ ଓ ଦୁନିଆର ପ୍ରାଚୀନ ରୀତିକୁ ବଦଳାଇବାକୁ ହେବ । ଆଜିକାଲିର ଦୁନିଆ ହେଉଛି ନୂତନତା ଓ ନିତ୍ୟ ନବନବୋନ୍ମେଷଶାଳିନୀ ବୁଦ୍ଧି ବା ପ୍ରତିଭା । ପୁରୁଣା ରୀତି, ପୁରୁଣା ଚାଲିଚଳନ, ପୁରୁଣା ରୁଚି, ପୁରୁଣା ସାଜ, ପୁରୁଣା ପାଠ ଏ ସବୁ ଛାଡ଼ି ନୂଆ ନୂଆ ଢଙ୍ଗ ସମାଜରେ ପୂରାଇ ସମାଜକୁ ସଭ୍ୟ, ଜୀବନ୍ତ ଓ ଉନ୍ନତ

କରିବାକୁ ହେବ । ଯେଉଁ କେତେଟା ନିର୍ବୁଦ୍ଧିଆ, ଓଲୁ, ଏ ସବୁ ପୁରୁଣା କଥାକୁ ଜାବୁଡ଼ିକରି ଧରି ବସୁଛନ୍ତି ସେଗୁଡ଼ାକ ସମାଜର ଆବର୍ଜନା । ସେମାନଙ୍କୁ ସମାଜ ସଂସ୍କାର ରୂପ ସମ୍ମାର୍ଜନୀ ଦ୍ୱାରା ସଫା କରିବାକୁ ହେବ । ଆଗେ ଥିଲା -

''ଶୈଶବେଭ୍ୟସ୍ତ ବିଦ୍ୟାନାଂ
ଯୌବନେ ବିଷୟୈଷିଣାଂ
ବାର୍ଦ୍ଧକ୍ୟେ ମୁନିବୃତ୍ତୀନାଂ
ଯୋଗେନାନ୍ତେ ତନୁତ୍ୟଜାଂ''

ଶୈଶବରେ ବିଦ୍ୟାଭ୍ୟାସ, ଯୌବନରେ ବିଷୟଭୋଗ, ବାର୍ଦ୍ଧକ୍ୟରେ ମୁନିବୃତ୍ତି ଓ ଶେଷରେ ଯୋଗାବଲମ୍ବନପୂର୍ବକ ମରଣ । ଏ ସବୁ ଲେଖାର ନୂଆ ସଂସ୍କରଣ (Edition) କରିବାକୁ ହେବ :

ଶୈଶବେ ଧ୍ୱପ ବିଦ୍ୟାନାଂ
ଯୌବନେଽନ୍ୟାୟଚାରିଣାଂ
ବାର୍ଦ୍ଧକ୍ୟେ ବକବୃତ୍ତୀନାଂ
ରୋଗେନାନ୍ତେ ତନୁତ୍ୟଜାଂ

ଶୈଶବରେ ବିଦ୍ୟାଧ୍ୱଂସ, ଯୌବନରେ ଅନ୍ୟାୟାଚରଣ, ବାର୍ଦ୍ଧକ୍ୟରେ ବକବୃତ୍ତି ଓ ଶେଷରେ ରୋଗରେ ଛଟପଟ ହୋଇ ତନୁତ୍ୟାଗ । ଏ ହେଲା ଆଜିକାଲି ଦୁନିଆର ଉପଯୋଗୀ ।

ମୁଁ ବର୍ତ୍ତମାନ ଦେଖିପାରୁଛି ଯେ ପୂର୍ବକାଳର ଆମ ଶାସ୍ତ୍ର, ଆମ ପୁରାଣ, ଆମ ଧର୍ମନୀତି, ଆମ ସମାଜ ନୀତି ସବୁ obsolate (ରଦ୍ଦ) ଓ out of date (ମରହଟ୍ଟିଆ) ହୋଇ ଗଲାଣି । ଏସବୁ ସଙ୍ଗେ ଆଜିକାଲିର ଦୁନିଆ ରୀତି ଖାପ ଖାଉ ନାହିଁ । ଅତଏବ ଏଗୁଡ଼ିକର Revised annotated Edition ପରିମାର୍ଜିତ ସଟୀକ ସଂସ୍କରଣ ବାହାର କରିବାକୁ ହେବ । ଏ ସମୟରେ ଆମ ଦେଶର ନବ୍ୟ ଶିକ୍ଷିତ ସମାଜରେ ଖୁବ୍ କାଟ୍ତି ହେବ, ଏପରି ଅବସ୍ଥାରେ ଗ୍ରନ୍ଥ ପ୍ରକାଶକଙ୍କର ଶତକଡ଼ା ଦୁଇଶହ ଲାଭ ହେବ । ଏଡ଼େ ବଡ଼ ଲାଭବିଶିଷ୍ଟ ବ୍ୟବସାୟକୁ ଅନ୍ୟ କାହାରି ହାତରେ ସମ୍ପି ଦେବାକୁ ମନ ଡାକୁ ନାହିଁ । କିନ୍ତୁ ୭୨ ବର୍ଷ ବୟସରେ ହାତରୁ ଟଙ୍କା ଖରଚ କରି ମଜଲି ମୁଣ୍ଡରେ ପହଞ୍ଚିଲା ପରି ଆଶା ହେଉ ନାହିଁ । ଏଥିପାଇଁ ଜଣେ Adventurous Publisher (ପାଣିକୁ ଡେଇଁପଡ଼ିବା ଭଳି ସାହସ ବିଶିଷ୍ଟ ପ୍ରକାଶକ)କୁ ଭାଗଦାର ଖୋଜୁଛି । ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ମୁଦ୍ରଣ ଓ କାଗଜ ଆଦିର ବ୍ୟୟ ପଡ଼ିଲା ୧ ସେଟକୁ ଏକଶ କୋଡ଼ିଏ ଟଙ୍କା ଓ ବର୍ତ୍ତମାନ ରଦ୍ଦି କାଗଜ ଓଜନରେ ବିକ୍ରି ହେଲା ଏକ ସାରକୁ କୋଡ଼ିଏ ଟଙ୍କା; ଏପରି ସ୍ଥଳରେ ଲାଭ ହେଲା ସେଣ୍ଟ ପରସେଣ୍ଟ । ସମ୍ପାଦକ ମହାଶୟ ଏପରି ଲାଭପ୍ରତ୍ୟାଶୀ ପ୍ରକାଶକ ଠିକଣା କରିବେ କି ? ପରେ ପୁଣି ଦେଖାସାକ୍ଷାତ୍ ଓ ଦର ଛିଣ୍ଡାଛିଣ୍ଡି ।

ଭଞ୍ଜପ୍ରଦୀପ - ୧୪ଶ ଭାଗ/୧ମ ସଂଖ୍ୟା/ଆଶ୍ୱିନ ୧୩୫୨ ସାଲ ।

## ।। ତେର ।।

ସେନସସ (ଜନସୁମାରୀ) ବେଳେ ଶିକ୍ଷିତ-ଅଶିକ୍ଷିତ, ସ୍ତ୍ରୀ-ପୁରୁଷ, ଯୁବକ-ବୃଦ୍ଧ, ଶିଶୁ-କିଶୋର, ବାଳ-କୁମାର ଆଦିଙ୍କର ଯେଉଁପରି ସୁମାରି ନିଆଯାଏ, ସେହିପରି ଯେବେ ରାଜଭକ୍ତ-ଅରାଜଭକ୍ତ ଭିନ୍ନ ଭିନ୍ନ ଶ୍ରେଣୀର ମାଦକ ଭକ୍ତ-ଅମାଦକ ଭକ୍ତଙ୍କର ସୁମାରି ନିଆ ଯାଆନ୍ତା ତେବେ ଅନେକ ଆଧିଭୌତିକ, ଅଧିଦୈବିକ ଓ ଆଧ୍ୟାତ୍ମିକ ତତ୍ତ୍ୱର କିନାରା ହେବା ପାଇଁ ସଫା ବଡ଼ଦାଣ୍ଡ ଫିଟି ଯାଆନ୍ତା ଓ ରାଜ୍ୟ ଶାସନ କର୍ମ ପାଇଁ ସରକାରଙ୍କ ଆୟାସ କେତେ କମି ଯାଆନ୍ତା ଓ ପିଟଣା ପୁଲିସ (Punitive Police)ଙ୍କ କାମ ମଧ୍ୟ ସୁଗମ ହୁଅନ୍ତା । ଲେଖକଙ୍କର ଉଦ୍ଦେଶ୍ୟକୁ ବୋଧହୁଏ ପାଠିକା-ଉପପାଠିକା ଓ ପାଠକ-ଉପପାଠକ ଗିରଫ କରିପାରୁ ନାହାନ୍ତି ।

(ନୋଟ୍ : ସ୍ତ୍ରୀଲିଙ୍ଗ ପୁଂଲିଙ୍ଗ ବାଚକ ଶବ୍ଦମାନଙ୍କ ପ୍ରୟୋଗ ବେଳେ, ପହିଲେ ସ୍ତ୍ରୀମାନଙ୍କ ନାମ ଉଲ୍ଲେଖ କରିବା ଚିରନ୍ତନ ଭବ୍ୟତାନୁମୋଦିତ । ଦେଖନ୍ତୁ ଯେ କାଳିଦାସ ଲେଖିଗଲେ 'ପାର୍ବତୀପରମେଶ୍ୱରୌ ।' ଶାସ୍ତ୍ର ମଧ୍ୟ କହିଛି 'ପ୍ରକୃତିପୁରୁଷ' ଆମେ କହୁଥାଇଁ - ସୀତାରାମ, ଲକ୍ଷ୍ମୀନୃସିଂହ, ରାଧାକୃଷ୍ଣ – ହିନ୍ଦୁସ୍ଥାନୀମାନେ କହନ୍ତି ସୀୟାବରରାମଚନ୍ଦ୍ରକୀ ଜୈ !' ମାନ୍ଧାତାଅମଳର ଏତେ ନଜିର ଥାଇ ସୁଦ୍ଧା ଆମେ ସାହିତ୍ୟସେବୀମାନେ ନରନାରୀ, ବାଳକ ବାଳିକା ପ୍ରୟୋଗ କରି ବସୁଁ ଓ ବକ୍ତୃତା ମଞ୍ଚରେ ବକ୍ତାମାନେ ଆରମ୍ଭ କରନ୍ତି, "ହେ ସମବେତ ଭାଇ ଓ ଭଉଣୀମାନେ !" ଏମନ୍ତ କି ସରକାରୀ ଉଦ୍ୟାନ ସମ୍ମେଳନ ଓ ସାନ୍ଧ୍ୟ ସମ୍ମେଳନର ନିମନ୍ତ୍ରଣ ପତ୍ରରେ To meet His Excellency Sir ଅମୁକ & Lady ଅମୁକା, ମଧ୍ୟ ଲେଖା ଯାଇଥାଏ । କିନ୍ତୁ ଆଜିକାଲି ଦେଶରେ ଯେଉଁ ମୌସୁମୀ ବାୟୁ ବହୁଛି, ସେ ପରିସ୍ଥିତିରେ 'ପାଠକପାଠିକା' ବୋଲି ଲେଖିଲେ ଲେଖକ ବିଚରା ଉପରେ ପାଠିକା, ଉପପାଠିକାମାନେ ଅଗ୍ନିଶର୍ମଣୀ (ଅଗ୍ନଶର୍ମନ୍ ଶବ୍ଦର ଅପ୍ଲୁତ ସୃଷ୍ଟ ସ୍ତ୍ରୀଲିଙ୍ଗ) ହେବେ । ଏଥିପାଇଁ ଆଗ କରି ସ୍ତ୍ରୀଲିଙ୍ଗ ଶବ୍ଦମାନଙ୍କୁ ଥୋଇ ତାଙ୍କ ପଛରେ ପୁଂଲିଙ୍ଗ ଶବ୍ଦକୁ ଗୋଡ଼ାଣିଆ କରି ପ୍ରୟୋଗ କରାଗଲା ।)

ମଝିରେ ମଝିରେ ଭାରତୀୟ ଜାତୀୟ କଂଗ୍ରେସର କର୍ଣ୍ଣଧାର ମହାତ୍ମା ଗାନ୍ଧିଙ୍କ ଦ୍ୱାରା ପରିଚାଳିତ ଅସହଯୋଗ ଆଇନ ଅବଜ୍ଞା, ଖଜଣା ବନ୍ଦ ଆଦି ଆନ୍ଦୋଳନ ଉପଲକ୍ଷରେ ଓ ବିଶ୍ୱବ୍ୟାପୀ ଯୁଦ୍ଧ ପରିସ୍ଥିତିଜନିତ ଅବଶ୍ୟମ୍ଭାବୀ ଭାରତ ରକ୍ଷା ଆଇନ କାନୁନ ସମ୍ପର୍କରେ ଗୁଇନ୍ଦା ପୁଲିସ (Detective Police)କୁ ଯେତେ କଠୋର ପରିଶ୍ରମ କରିବାକୁ ପଡୁଛି ଓ ଗୁଇନ୍ଦା ପୁଲିସ ବିଭାଗ ଓ ଅପରାଧ ଧରାଳି ବିଭାଗ ପିଛା ସରକାରଙ୍କର ଯେତେ ବ୍ୟୟ ହେଉଛି, ସେ ବ୍ୟୟ ଢେର କମି ଯାଆନ୍ତା । ସରକାର ଯେବେ ସେନ୍ସସ୍ କାଗଜ ସାହାଯ୍ୟରେ ପୂର୍ବରୁ ଅପରାଧକାରୀ ଓ ଅପରାଧୀ ସମର୍ଥ (ସପ୍ତମୀ ତତ୍‌ପୁରୁଷ) ଲୋକଙ୍କୁ ପୃଥକ୍ ପୃଥକ୍ କରି ଦିଅନ୍ତେ ତାହାହେଲେ ଏହି ଲେଖକ ଶ୍ରେଣୀର ଅପରାଧ ସମର୍ଥ ଲୋକେ ଶାନ୍ତିରେ ଓ ସ୍ୱସ୍ତିରେ ନିଃଶ୍ୱାସ ମାରନ୍ତେ ।

ଆପଣମାନଙ୍କୁ ସମସ୍ତଙ୍କୁ ଜଣା ଯେ, ଦଣ୍ଡବିଧି ଆଇନରେ ଅପରାଧୀକୁ ଦଣ୍ଡ ଦିଆ ହେବାର ବ୍ୟବସ୍ଥା ଏହି ଯେ, ଅପରାଧୀର ଦଣ୍ଡଭୋଗ ଦେଖିଲେ ଅନ୍ୟ ଲୋକେ ଭବିଷ୍ୟତ୍‌ରେ ଅପରାଧ କରିବାକୁ ସାହସ କରିବେ ନାହିଁ । ଯେତେଗୁଡ଼ିଏ ଦଣ୍ଡ ଅଛି ତହିଁ ମଧ୍ୟରେ କାରାଦଣ୍ଡଟା ହଂସାଉଡ଼ା ଦଣ୍ଡ ଏବଂ ଏହି କାରାଦଣ୍ଡର ହଲାପଟାର ଆଶଙ୍କା ଲୋକଙ୍କୁ ଅପରାଧରୁ କ୍ଷାନ୍ତ କରାଏ । ପୂର୍ବକାଳରେ କାରାରୁଦ୍ଧ ବ୍ୟକ୍ତି (ବନ୍ଦୀ)ମାନଙ୍କର କାରାବାସ ଯେଡ଼େ କଠୋର ଥିଲା ଦେଶଭକ୍ତ ଓ ପରୋପକାରୀମାନଙ୍କ ଆନ୍ଦୋଳନ ଫଳରେ ତାହା ଅନେକ ପରିମାଣରେ କୋହଳ ହୋଇଅଛି । ଏପରି କି ସରକାରଙ୍କ ମନୋନୀତ କାରାଗାରର ନିରାହାର ପରିଦର୍ଶକମାନଙ୍କର ଅନୁଭୂତିରୁ ଜଣାପଡୁଛି ଯେ ଜେଲଖାନାରେ ବନ୍ଦୀମାନେ ଆହାର ବିହାରାଦି ବିଷୟରେ ଆଜିକାଲି ଯେଉଁପରି ଭୋଗ, ସ୍ୱାଛନ୍ଦ୍ୟ ଓ ଆରାମରେ ଅଛନ୍ତି, ଜେଲ ବାହାରେ ଥିବା ତତ୍ତଦ୍ ଶ୍ରେଣୀର ମୁକ୍ତ ବ୍ୟକ୍ତିମାନଙ୍କ ଭାଗ୍ୟରେ ସଚରାଚର ତାହା ସବୁ ଜୁଟେ ନାହିଁ । ଜଣେ ବେସରକାରୀ ଜେଲ ପରିଦର୍ଶକଙ୍କ ପରିଦର୍ଶନ ବେଳେ ଲେଖକ ଉପସ୍ଥିତ ଥିଲା । ସେହି ସମୟରେ ବନ୍ଦୀମାନଙ୍କ ପାକଶାଳାରେ ସେମାନଙ୍କ ଆଶୁ ଭୋଜନ ପାଇଁ ରନ୍ଧା ହୋଇଥିବା ଖାଦ୍ୟ ସବୁ ପ୍ରସ୍ତୁତ ହୋଇ ପାରିଥିଲା । ତାଙ୍କ ସଙ୍ଗେ ଥିବା ଜେଲ ରକ୍ଷକଙ୍କ ଆଦେଶ ଅନୁସାରେ ଜଣେ ପାଚକ ବନ୍ଦୀ ବନ୍ଦୀମାନଙ୍କ ପାଇଁ ପ୍ରସ୍ତୁତ ହୋଇଥିବା ଭିନ୍ନ ଭିନ୍ନ ପ୍ରକାରର ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ଦ୍ରବ୍ୟମାନଙ୍କର ନମୁନା ଗୋଟିଏ ଥାଳିରେ ସଜାଇ କରି ପରିଦର୍ଶକଙ୍କ ସମ୍ମୁଖକୁ ଆଣିଲେ ଓ ଉକ୍ତ ଦ୍ରବ୍ୟମାନ ପରୀକ୍ଷା କରିବା ପାଇଁ ଅନାହାରୀ ପରିଦର୍ଶକ ଚାଖିଲେ ଓ ଚାହୁଁ ଚାହୁଁ ସେତକ ଜିହ୍ୱାସ୍ଥ, ପରେ କଣ୍ଠସ୍ଥ, ତତ୍‌ପରେ କଣ୍ଠନାଳୀସ୍ଥ ଓ ଶେଷକୁ ଉଦର ଗହ୍ୱରସ୍ଥ କଲେ । ପରେ ପରିଦର୍ଶକଙ୍କ ଆକାର, ଇଙ୍ଗିତ, ଗତି, ଚେଷ୍ଟା, ଭାଷିତ, ନେତ୍ର, ବକ୍ତ୍ର ବିକାରକୁ ବୁଝାଗଲା ଯେ ବନ୍ଦୀମାନଙ୍କ ପାଇଁ ପ୍ରସ୍ତୁତ ଖାଦ୍ୟମାନଙ୍କ ପ୍ରକାର ଓ ସଂଖ୍ୟା ତାଙ୍କ ଆମ ଭଳି ସାଧାରଣ ଗୃହସ୍ଥଙ୍କ ଭାଗ୍ୟରେ ପ୍ରତିଦିନ ମିଳେ ନାହିଁ । ତତ୍‌ପରେ ଜେଲଖାନାର ଭଣ୍ଡାର ଘରକୁ ତାଙ୍କ ସଙ୍ଗେ ଲେଖକ ଗଲା ଓ ସେଠାରେ ସଙ୍ଗତିସମ୍ପନ୍ନ ଗୃହସ୍ଥଙ୍କ ଭଣ୍ଡାର ଘରେ ତାଙ୍କ 'ବେତାଳ ଘରଣୀ'ଙ୍କ ଦ୍ୱାରା ସାଇତା ହୋଇଥିବା ହରେକ୍ କିସମର ପାକ ସାମଗ୍ରୀ ପୃଥକ୍ ପୃଥକ୍ ଭାଣ୍ଡମାନଙ୍କରେ ଟିକଟ ମରା ହୋଇ ସୁରକ୍ଷିତ ଭାବରେ ରଖା ହୋଇ ଥିବାର ଦେଖାଗଲା । ସେ ଦ୍ରବ୍ୟମାନଙ୍କ ମଧ୍ୟରୁ ଆମ୍ବ ଆଚାର, କାଗଜି ଆଚାର, ଜୁଆ ତେନ୍ତୁଳି ଆଦି ଦେଖି ଲେଖକର ପାଟିରୁ ଲାଳସ୍ରାମ ହେଲା ଓ ଜେଲଖାନାର ଆଇନ କାନୁନ୍ ଭୁଲି ଯାଇ ଲେଖକ ଚାଖିବା ବାହାନାରେ ସେ ଆଚାରକୁ କିଛି କିଛି ଆସ୍ୱାଦନ କଲେ । ଡାଲି ରଗଡ଼ା ହେଉଥିବା ସ୍ଥାନକୁ ଯାଇ ଦେଖିଲୁଁ ଯେ ସାଧାରଣ ବିଭବଶାଳୀ ଗୃହସ୍ଥଙ୍କ ଘରେ ଡାଲି ଏତେଦୂର ଯତ୍ନ ସହକାରେ ପ୍ରସ୍ତୁତ ହୁଏ ନାହିଁ । ଏ ସବୁ ଦେଖି ଜେଲଖାନାରେ ବନ୍ଦୀମାନଙ୍କ ଖାଦ୍ୟାଦି ବିଷୟକ ଅସୁବିଧା ଓ ଅଭାବମାନଙ୍କ ବିଷୟରେ ଲେଖକ କଳ୍ପନା ଚକ୍ଷୁରେ ପୂର୍ବରୁ ଯେଉଁ ସବୁ ମର୍ମନ୍ତୁଦ ଚିତ୍ର

ଆଙ୍କି ଥିଲା ତା ମନରୁ ସେଗୁଡ଼ିକର ମୂଳପୋଛ ହେଲା । ଏ ଉପାଖ୍ୟାନ ଉଲ୍ଲେଖ କରିବାର ଉଦ୍ଦେଶ୍ୟ ଏହି କି ପୂର୍ବେ ବନ୍ଦୀମାନଙ୍କର ଯେତେ ଦୁରବସ୍ଥା ଥିଲା ତାହା ଆଜିକାଲି ନାହିଁ ବୋଲି ଦମ୍ଭ ସହକାରେ କୁହାଯାଇପାରେ । ଦୁଃଖୀ, ରଙ୍କୀ, ଚାଷୀ, ମୂଲିଆ ଶ୍ରେଣୀର ଲୋକେ ଘରେ ଯାହା ଖାଇବାକୁ ପାଆନ୍ତି, ତାହା ଅପେକ୍ଷା ଜେଲଖାନାରେ ଭଲ ମାଲ ଖାଇବାକୁ ପାଆନ୍ତି ଓ ପୀଡ଼ିତ ହେଲେ ସେ ଶ୍ରେଣୀର ମୁକ୍ତ ବ୍ୟକ୍ତିମାନଙ୍କ ଅପେକ୍ଷା ଭଲ ଚିକିତ୍ସା ଓ ପଥ୍ୟ ପାଆନ୍ତି । ଏ ତ ଗଲା ସାଧାରଣ ବନ୍ଦୀମାନଙ୍କ ହାଲଚାଲ । ଯେଉଁମାନେ 'ଏ' କ୍ଲାସର ବା ପ୍ରଥମ ଶ୍ରେଣୀର ବନ୍ଦୀ, ସେମାନେ ଖୁବ୍ ଅଯସ, ଆରାମରେ ଥାଆନ୍ତି । ସେମାନଙ୍କ ପକ୍ଷରେ କେବଳ ସ୍ୱାଧୀନତାର ଅଭାବ ଦୁଃଖପ୍ରଦ ହୁଏ । ତା ପରେ ଜେଲରେ ଆଉ ଗୋଟିଏ ଗୁରୁତର ଅଭାବ ଅଛି । ସେଠାରେ ମଦୁଆ (ମଦ୍ୟପାୟୀ), ଧୂଆଁ ପତରିଆ (ତାମ୍ରକୁଟ ଭକ୍ତ), ଗଞ୍ଜେଇଆ (ଗଞ୍ଜିକା ସେବକ) ଓ ଆପୁଆ (ଅହିଫେନସେବୀ) ମାନଙ୍କ ପ୍ରିୟତମ ବସ୍ତୁ ଯୋଗାଇ ଦିଆ ହେବାର ବ୍ୟବସ୍ଥା ନାହିଁ । ଜେଲରେ ଏହି ଅଭାବ ତତ୍ତଦ୍ ଦ୍ରବ୍ୟ ସେବନରେ ଅଭ୍ୟସ୍ତ ବ୍ୟକ୍ତିମାନଙ୍କ ପକ୍ଷରେ ଅତି କଷ୍ଟପ୍ରଦ ହୁଏ । ଏଥିପାଇଁ ଶୁଣାଅଛି ଯେ ଜେଲରେ ଏହି ଦ୍ରବ୍ୟମାନଙ୍କ ସମ୍ପର୍କରେ ଅନେକ ଚୋରା ମାମଲତ ଚଳେ । କିନ୍ତୁ ଏ ସବୁ ମାଦକଦ୍ରବ୍ୟ ମଧ୍ୟରୁ ଅହିଫେନର ଏକ ବିଶିଷ୍ଟ ସ୍ଥାନ ଓ ମାହାତ୍ମ୍ୟ ଅଛି । ଆଉ ସବୁ ମାଦକଦ୍ରବ୍ୟର ଭକ୍ତମାନେ ଜେଲଖାନାରେ ତାଙ୍କ ସେବନୀୟ ଦ୍ରବ୍ୟ ଅକାଳେ ସକାଳେ ପାଇଲେ ତାହା ସେବନ କରି କିଛି ଦିନ ପାଇଁ ମନର ଓରମାନ ମେଣ୍ଟାଇ ନିଅନ୍ତି । କିନ୍ତୁ ଅହିଫେନ ଭକ୍ତଙ୍କୁ ଦିନର ନର୍ଦ୍ଧାରିତ ସମୟରେ ନିର୍ଦ୍ଦିଷ୍ଟ ମାତ୍ରାରେ ଆପୁ ନ ମିଳିଲେ ସେମାନଙ୍କ ଦଶା ଅତି ଦୁଃଖମୟ ହୁଏ । ଏଥିପାଇଁ ଜେଲ ଦଶା ପ୍ରଭୁ ତାଙ୍କୁ ନ ଦିଅନ୍ତୁ ବୋଲି ଆପୁଆମାନେ ମହାପ୍ରଭୁଙ୍କୁ ପ୍ରାର୍ଥନା କରନ୍ତି । ଆପୁଆମାନେ ଜାଣନ୍ତି ଯେ ଜେଲଖାନାକୁ ଗଲେ ଧର୍ମ-ଅର୍ଥ-କାମ-ମୋକ୍ଷ ଚତୁର୍ବର୍ଗ ଲାଭ ପାଇଁ ଲୋଡ଼ା ସବୁ ପଦାର୍ଥ ମିଳି ପାରିବ, କିନ୍ତୁ ତାଙ୍କ ଅଭ୍ୟାସ ଅନୁସାରେ ଦିବସର ନିର୍ଦ୍ଧାରିତ ସମୟରେ ନିର୍ଦ୍ଧାରିତ ମାତ୍ରାରେ ତାଙ୍କ ଧେୟ ବସ୍ତୁ ମିଳି ପାରିବ ନାହିଁ ଓ ତଦଭାବେ ସେମାନେ କଣ୍ଠାଗତପ୍ରାଣ ହେବେ । ଏତେ କଥା କହିବାର ଉଦ୍ଦେଶ୍ୟ ଏହି ଯେ ଗମ୍ଭାର ବା ନିର୍ବୁଦ୍ଧିଆ ପାଠିକା-ପାଠକମାନେ ଜାଣନ୍ତୁ ଯେ, ଏ ସଂସାରରେ ଥିବା ଲୋକମାନଙ୍କ ମଧ୍ୟରେ ଆପୁଆମାନଙ୍କର ଜେଲଖାନା ଦଣ୍ଡ ପ୍ରତି ଯେଡ଼େ ଡର, ଅନ୍ୟମାନଙ୍କ ମନରେ ସେ ଡରର କାଣିଚାଏ ନ ଥାଏ । ଆପଣମାନଙ୍କ ମଧ୍ୟରେ ଯେବେ କେହି 'ଉରଗଫେନ'ର ଉପାସକ ଥିବେ ତେବେ ସେ ଏ 'ଉର'ର ସ୍ୱରୂପକୁ ଅନୁଭବ (personify) କରିପାରିବେ । ଅପରାଧ କଲେ ଦଣ୍ଡବିଧି ଆଇନ ଅନୁସାରେ ଜେଲ ଭୋଗିବାକୁ ହେବ ଓ ଜେଲଖାନାକୁ ଗଲେ ଅହିଫେନ ସେବାରୁ ବଞ୍ଚିତ ହେବାକୁ ହେବ; ଏହି ଭୟ ଯୋଗୁଁ ଦେଖାଯାଏ ଯେ ଆପୁଆମାନେ ସର[illegible] ଆଇନ ଅବଜ୍ଞା (Cirol disobedienec) କରିବାକୁ ଏକଦମ ନାରାଜ । ଯେଉଁମାନେ ମହାତ୍ମା ଗାନ୍ଧିଙ୍କ ଆଜ୍ଞାରେ ଅସହଯୋଗ ଆଇନ ଅବଜ୍ଞା, ନିଷ୍କ୍ରିୟ ପ୍ରତିରୋଧ

ଆଦି କରି ଜେଲ ଯାଇଛନ୍ତି ସେମାନଙ୍କର ସେନ୍ସସ୍ (ସୁମାରି) ନିଆଗଲେ ଦେଖାଯିବ ଯେ, ସେମାନଙ୍କ ମଧ୍ୟରେ ଆପୁଆ ଶତକଡ଼ା ଶୂନ୍ୟ । ଏଥିପାଇଁ କହୁଥିଲି ଯେ ଆପୁ ଭକ୍ତଯାକ ରାଜଭକ୍ତ, ଆଇନ ଭକ୍ତ, ହାକିମ ଭକ୍ତ ଓ ସରକାର ଭକ୍ତ । ସେମାନେ ପୁତ୍ର ଶୋକ, ପତ୍ନୀ ଶୋକ, ଧନ ଶୋକ, କ୍ଷୁଧାଶୋକ ସବୁ ଶୋକକୁ ସମ୍ଭାଳିବେ, କିନ୍ତୁ ଆପୁ ଶୋକଠାରୁ ବଳି ଶୋକ ତାଙ୍କର ନାହିଁ । ଅତଏବ କହୁଥିଲି ଯେ ରାଜଭକ୍ତ ଓ ଅରାଜଭକ୍ତଙ୍କ ଜନସୁମାରି କରାଗଲେ ଲେଖକ ଶ୍ରେଣୀର ଆପୁଭକ୍ତମାନଙ୍କ ମଧ୍ୟରୁ ଜଣେ ହେଲେ 'ଅରାଜଭକ୍ତ' ତାଲିକାଭୁକ୍ତ ହେବେ ନାହିଁ ଓ ସେମାନଙ୍କ ପିଛା ଧରିବା ପାଇଁ ସରକାରଙ୍କର ଚୋରା ପୁଲିସ ଲୋଡ଼ା ହେବେ ନାହିଁ । ଏ ଗୁମର କଥାଟା ସରକାରଙ୍କ କାନକୁ ଆଣିବା ପାଇଁ ସମ୍ପାଦକ କିଛି ଉପାୟ ବତାଇ ଦେଇ ପାରିବେ କି ?

ଢିଙ୍କିଶାଳରେ ଆସି ଢେଙ୍କାନାଳ ଚିନ୍ତା ପହଞ୍ଚି ଗଲା ।

ଏ ଜେଲ୍‌ଖାନା ପ୍ରସଙ୍ଗରେ ଆଉ ଗୋଟିଏ କଥା ମନେ ପଡ଼ିଲା । କେତେଦିନ ପୂର୍ବେ ଲେଖକ ମହାତ୍ମା ଜବାହରଲାଲଙ୍କ 'ଆତ୍ମଜୀବନଚରିତ' (Autobiography) ପଢୁଥିଲା । ଜବାହରଲାଲ ଏଥି ପୂର୍ବେ ଜେଲରେ ଥିବା ବେଳେ ଏ ଜୀବନଚରିତ ଲେଖିଥିଲେ । ସେ ପୁସ୍ତକରେ ଭର୍ଣ୍ଣାକ୍ୟୁଲର (ମାତୃଭାଷା)ର ବ୍ୟୁତ୍ପତ୍ତିଗତ ଅର୍ଥର ଉଲ୍ଲେଖ ଅଛି । ଦେଶପ୍ରଚଳିତ ଭାଷାକୁ ଇଂରାଜୀରେ 'ଭର୍ଣ୍ଣାକ୍ୟୁଲର' ବୋଲାଯାଏ । ଇଂରାଜୀ ଭର୍ଣ୍ଣାକ୍ୟୁଲର ଶବ୍ଦ ଲାଟିନ ଭର୍ଣ୍ଣା (Verna) ଶବ୍ଦରୁ ଉତ୍ପନ୍ନ । ଲାଟିନ ଭର୍ଣ୍ଣା ଶବ୍ଦର ଅର୍ଥ ଗୋଲାମ (home-born slave) ବା ଗୃହସ୍ୱାମୀଙ୍କ ରକ୍ଷିତା ଦାସୀର ପୁତ୍ର । ଏଟା ଆମ କଥିତ ଭର୍ଣ୍ଣାକ୍ୟୁଲରର ଆକ୍ଷରିକ ଇଂରାଜୀ ଅର୍ଥ । ତାର ଭାଷା ତେଣେ ଦେଖିଲାବେଳକୁ ଭାରତର ପୁରାକାଳରେ ସଂସ୍କୃତ ଭାଷାକୁ 'ଦେବଭାଷା' ବୋଲା ଯାଉଥିଲା । ବର୍ତ୍ତମାନ ତାକୁ ମୃତ ଭାଷାରେ ସୁମାରି କରା ଯାଉଛି । ସତକୁ ସତ ସେ ଭାଷା ମଲାଣି ଓ ଭାଷା ସଙ୍ଗେ ସଙ୍ଗେ ସେ ଭାଷାଭାଷୀ ଦେବପ୍ରତିମ ଲୋକମାନେ ମଧ୍ୟ ମଲେଣି । ପୁଣି ଆଜିକାଲିର ଦୁନିଆର ରୀତିକୁ ଦେଖିଲେ ବୋଧ ହେଉଛି ଯେ ଦେବମାନେ ସଂସାରରୁ ବିଦାୟ ନେଲେଣି ଓ ବର୍ତ୍ତମାନ ରାକ୍ଷସୀ ଲୀଳା ସର୍ବତ୍ର ଲାଗିଛି । ଆହୁରି ଏକ ଦୃଷ୍ଟିକୋଣରୁ ଦେଖାଯିବ ଯେ ପ୍ରାଚୀନ ଭାରତ ଦେବଭୂମି ଥିଲା ଓ ଆଜିକାଲିର ଭାରତ 'ଦାସଭୂମି' ବା ଦାସମାନଙ୍କ ଆବାସ ଭୂମି ପାଲଟିଛି । ଏ ଦାସମାନଙ୍କର ଦାସଭୂମି କେବେ ମୁକ୍ତ ହେବ ତାହା ଦେବଙ୍କୁ ଜଣା । ଆଜି ଏତିକିରେ ଥାଉ ।

ଭଞ୍ଜପ୍ରଦୀପ - ଚତୁର୍ଦ୍ଦଶ ଭାଗ/ ତୃତୀୟ-୪ର୍ଥ ସଂଖ୍ୟା/ଚୈତ୍ର/ଆଷାଢ଼/୧୩୫୨ ସାଲ ।

---

ତାଙ୍କ ରକ୍ତରେ - ସାମନ୍ତବାଦର ଉପସର୍ଗ । ଜୀବିକା - ଓକିଲାତି । ପ୍ରେମ - ଭାଷା, ସାହିତ୍ୟ ଓ ସଂସ୍କୃତି । ମାତ୍ର ମୃତ୍ୟୁରେ ଦାରିଦ୍ର୍ୟ, ଅବିଶ୍ୱାସ ଓ ବିଷର ଉପହାସ ।

ତାଙ୍କ ଜାତି ପ୍ରୀତିବୋଧର ଅଲିଭା ଅଭିବ୍ୟକ୍ତି ଉତ୍କଳର କାହାଣୀ, ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ, ଢଗ-ଢମାଳି-ବଚନ ଏବଂ ବହୁ ରମ୍ୟରଚନା ।

ତାଙ୍କ ସମ୍ପର୍କରେ ବୁମ୍ୱକରେ ଏତିକିମାତ୍ର କୁହାଯାଇପାରେ ଯେ, ଗତ ଶତାବ୍ଦୀର ପ୍ରଥମ ପାଦରେ ସଂଘଟିତ ଓଡ଼ିଆ ଜାତି ଓ ସାହିତ୍ୟର ନବ-ନିର୍ମାଣ ଅୟନରେ ସେ ଅନ୍ୟତମ ଅୟସ୍କାନ୍ତ । ଉତ୍କଳ ସମ୍ମିଳନୀର ଜନ୍ମ-ଜାତକ ସଂରଚନାର ସେ ତରୁଣତମ ଓ ବିଚକ୍ଷଣ ଗଣକ ଏବଂ ରାଜନୀତି-ଖେଳରେ ପରାଜିତ ସ୍ୱପ୍ନଚାରୀ ।

ତାଙ୍କ ବ୍ୟକ୍ତିକ ଜୀବନ, ବହୁ ପରସ୍ପର ବିରୋଧୀ ବିଚାରାଦର୍ଶର ପରୀକ୍ଷାଗାର; ତେଣୁ ରହସ୍ୟମୟ ଓ ହୃଦ୍ୟ । ଅଳ୍ପରେ କହିଲେ - ସେ ଓଡ଼ିଆ ଜାତିର ଏକ ବିକଳ୍ପହୀନ ଆବଶ୍ୟକତା, ଏକ ଚମକ ।

## ପ୍ରହରାଜ ଗ୍ରନ୍ଥାବଳୀ

### ରମ୍ୟରଚନା ୨ୟ ଖଣ୍ଡ

ତାଙ୍କୁ ପଢ଼ିଲାବେଳେ ଲାଗେ, ସତେଅବା ମୁଁ ନିଜକୁ ପଢୁଛି, ନିଜକୁ ଦେଖୁଛି ଏବଂ ମୋ ଭିତରେ କେବଳ ମୁଁ ନାହିଁ, ସେ ଅଛନ୍ତି; ସମୟ, ସମାଜ ଓ ସମସ୍ୟାମାନେ ବି ଅଛନ୍ତି । ଏବଂ, ସର୍ବୋପରି ନିହିତ ରହିଛି ସମାଜ ଗଢ଼ଣ, ସମସ୍ୟା ସମାଧାନ ଓ ସମୟ ଅତିକ୍ରମଣର ବହୁ ବିକଳ୍ପ ନିଦାନ ।

ଲାଗେ, ସେଗୁଡ଼ିକ ଧର୍ମ, ସମାଜ, ସଂସ୍କୃତି, ବିଜ୍ଞାନ ଓ ମନର ଅଗମ୍ୟ ଅନୁଭବର କଳାତ୍ମକ କୋଲେଜ, ଯାହା ସମାଲୋଚନା ପରିଭାଷାରେ କବିତା, ଗପ, ନାଟକ, ଉପନ୍ୟାସ ଓ ସମୀକ୍ଷା ଆଦି ସକଳ ପ୍ରକରଣର ସମୀକୃତ ରୂପ, ରମ୍ୟରଚନା ।

ତାଙ୍କ ଶବ୍ଦବସାଣ କଳା-କାରିଗରୀରେ ସମାହିତ ହୋଇଯାଆନ୍ତି ପାଠକମାନେ । ତାହା ସତେଯେପରି ଗ୍ରାମ୍ୟ ଓ ଅଭିଜାତ ଅନୁଭବର ଅନୁପମ ଦ୍ରବଣ, ଅରମ୍ୟର ରମ୍ୟାୟନ ।

---

**ବିଦ୍ୟାପୁରୀ**

ବାଲୁବଜାର, କଟକ ୭୫୩୦୦୨

ISBN 81-7411-531-5 ଟ ୨୮୦.୦୦